# କୁଞ୍ଜବିହାରୀ ଗ୍ରନ୍ଥାବଳୀ

( ତୃତୀୟ ଭାଗ )

ଡକ୍ଟର କୁଞ୍ଜବିହାରୀ ଦାଶ



ଓଡ଼ିଶା ବୁକ୍ ଷ୍ଟୋର

# କୁଞ୍ଜବିହାରୀ ଗ୍ରନ୍ଥାବଳୀ


ରଚନା :
ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ
ଉଦୟଶ୍ରୀ, କଟକ-୧୨



ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ—୭୫୩୦୦୨

ପ୍ରଚ୍ଛଦ :
ଅସିତ ମୁଖାର୍ଜୀ

ପ୍ରଥମ ପ୍ରକାଶ :
ରସ ପୂର୍ଣ୍ଣିମା—୧୯୮୫

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍,
ଝୋଲସାହି ( ନହରକଲୋନି )
କଟକ—୭୫୩୦୦୧

ମୂଲ୍ୟ : **ପଞ୍ଚଷଠୀ ଟଙ୍କା**


**KUNJABEHARI GRANTHABALI**


Written by :
Lokaratna,
**Dr. Kunjabehari Dash**



Published by :
**Gobinda Charan Patra**
Orissa Book Store

1st Edition—1985

**Price Rs. 65/...**

# ଚକେ ଗଲେ ବାର ହାତ

ମୁଁ ତିନି ଚକ ଆଗେଇଲି । ଆହୁରି ନ' ଚକ ବାକି, ସାହିତ୍ୟର ଯୋଉ ଚକଟି ଚଷିଥିଲି, ତାହା ଲୋକଚକ୍ଷୁକୁ ଆସି, ଆସି ପାରିନାହିଁ । ବାରେଟି ଗ୍ରନ୍ଥାବଳୀରେ ତାହା ପୂର୍ଣ୍ଣ ରୂପ ପାଇବ ଓ ମୁଁ ପରମ ତୃପ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିବି ।

ଏବେ ଲେଖାଲେଖିରୁ ମନ ଛାଡ଼ିନାହିଁ । ମୁଁ ନିଜେ ଦୌଡ଼ିବା କ୍ଷମତା ହରାଇଥିଲେ ବି କଲମ ଦୌଡ଼େ । ଆବେଗ ଭିତରୁ ମୁଁ କଳାଦେବୀଙ୍କ ମୃଦୁ ମଧୁର ପଦଧ୍ୱନି ଶୁଣେ ।

ସାହିତ୍ୟସୃଷ୍ଟିର ଶ୍ରେଷ୍ଠ ଲାଭ—ଆନନ୍ଦ । ତାହା ସ୍ୱାସ୍ଥ୍ୟ ଓ ଶାନ୍ତିଦାୟୀ । କିଏ ମୋ ସୃଷ୍ଟିକୁ ଶ୍ରଦ୍ଧା କଲା ନ କଲା, ସ୍ନେହାଦରରେ ଫୁଲ କେଣ୍ଡାଏ ଦେଲା, ନ ଦେଲା ସେ କଥା ଭାବି ମୁଁ କ୍ଷୁଣ୍ଣ ହୋଇନାହିଁ; କାରଣ କାଳ ଶ୍ରେଷ୍ଠ ବିଚାରକ । ତାର ବିଚାର ଯୁଗକୁ ଯୁଗ ଲାଗିଥାଏ । ଏ ଲେଖକର ଦେହ ନ ଥିଲେ ବି ତାର ବଡ଼ବଡ଼ିଆ ଏହାର ବାସନା ପାଉଥାଏ ।

ଗୋଟିଏ ପତ୍ରିକା ମୋ 'ଲୋକରତ୍ନ' ଉପାଧି ପ୍ରାପ୍ତି ବିଷୟରେ ଭୁଲ୍ ତଥ୍ୟ ପରିବେଷଣ କରିଥିବାରୁ ପଦେ ଲେଖୁଛି । ତିରିଶ ବର୍ଷ କଠୋର ପରିଶ୍ରମ ଫଳରେ ଲୋକସାହିତ୍ୟର ବ୍ୟାପକ ସଂଗ୍ରହ ଓ ଗବେଷଣା ସମ୍ଭବ ହୋଇଥିଲା ଓ ମୁଁ ଭାରତ ଓ ବିଦେଶର ବିଦଗ୍ଧ ଦୃଷ୍ଟି ଆକର୍ଷଣ କରିବାକୁ ସମର୍ଥ ହୋଇଥିଲି । ଏଥିଲାଗି ଯଥେଷ୍ଟ ସମ୍ମାନ ପାଇଛି । ଏସୀୟ ଲୋକ ସଂସ୍କୃତି ସମ୍ମେଳନରେ ଯୋଗ ଦେବା ଲାଗି ଆମେରିକାର ଇଣ୍ଡିଆନା ବିଶ୍ୱବିଦ୍ୟାଳୟ ମୋତେ ନିମନ୍ତ୍ରଣ କରିଛି ଓ ଭାରତର ଜଣେ ପ୍ରତିନିଧି ଭାବରେ ମୁଁ ସେଥିରେ ଯୋଗ ଦେଇଛି । ସର୍ବଭାରତୀୟ ଲୋକସଂସ୍କୃତି ସମ୍ମେଳନର ସାହିତ୍ୟ ବିଭାଗର ସଭାପତି ଭାବେ ଏକାଧିକ ବାର ବରିତ ହୋଇଅଛି । କଲିକତାର ଏକାଡେମୀ ଅଫ୍ ଫୋକ୍‌ଲୋର୍ ଲୋକସାହିତ୍ୟକୁ ମୋର ବିପୁଳ ଦାନ ବିବେଚନାରେ ବାଲିଗଞ୍ଜରେ ଏକ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବ କରି ଭାରତରୁ ମୋତେ ଓ ପୂର୍ବଜର୍ମାନୀରୁ ହିଞ୍ଜ୍ ମୋଦେଙ୍କୁ 'ଲୋକରତ୍ନ' ଉପାଧିରେ ଭୂଷିତ କରିଛନ୍ତି । କିନ୍ତୁ ଏହି ଉପାଧି ପ୍ରାପ୍ତି ଦିନଠୁ ମୁଁ

ବହୁ ଇର୍ଷୀ ଓ ଅସହିଷ୍ଣୁ ଲେଖକଙ୍କ ଅକାରଣ ଆକ୍ରମଣର ଶରବ୍ୟ ହୋଇଅଛି । ମୋର ପୂର୍ବତନ ଏକାଧିକ ସାହିତ୍ୟିକଙ୍କୁ ମଧ୍ୟ ଏହି ଦୁର୍ଦ୍ଦଶା ଭୋଗ କରିବାକୁ ହୋଇଥିଲା । ତେଣୁ କିଛି ଆଶ୍ଚର୍ଯ୍ୟ ହୋଇନାହିଁ ବା ମୋ କଲମକୁ ଏହା ଅଟକାଇ ପାରିନାହିଁ ।

ମୁଁ ଉପାଧି ସେନି ଜନ୍ମ ହୋଇ ନ ଥିଲି, କି ତାହା ସଙ୍ଗରେ ସେନି ଯିବିନାହିଁ । ସେଥିରୁ ଯାହା ଗୌରବ ବା ଆନନ୍ଦ ପାଇବାର କଥା, ମୁଁ ପାଇ ସାରିଛି । କିଛି ଯଶ ପ୍ରତିଷ୍ଠା ଅର୍ଜ୍ଜନ ପରେ ଏ ସବୁ ଉପାଧିକୁ ଏବେ ମୁଁ ଅନାବଶ୍ୟକ ମନେକରେ । କେବଳ ଯେଉଁ ଅନୁଷ୍ଠାନ ମୋତେ ଏହା ଦେଇଛି, ତାର ସମ୍ମାନ ରକ୍ଷାର୍ଥେ ମୁଁ ଏହା ବ୍ୟବହାର କରୁଛି ।

ଗ୍ରନ୍ଥାବଳୀ ତୃତୀୟ ଭାଗରେ ରହିଲା ଭ୍ରମଣକାହାଣୀ, ରମ୍ୟରଚନା ଓ କ୍ଷୁଦ୍ରଗଳ୍ପ । ଚତୁର୍ଥ ଭାଗରେ ରହିବ ଲେଖମାଳା । ମୋର ପ୍ରିୟ ପ୍ରକାଶକ ଶ୍ରୀ ଗୋବିନ୍ଦଚରଣ ପାତ୍ରଙ୍କୁ ଭଗବାନ୍ ମୋଠାରୁ ଅଧିକ ଦୀର୍ଘାୟୁ କରନ୍ତୁ, ମୁଁ ହଠାତ୍ ବିଦାୟ ନେଲେ ମୋର ବାକି ଖଣ୍ଡମାନ ଛାପିବା ପାଇଁ ।

ମୂଳରୁ ଚାଲିଲା ମୋର ସ୍ନେହ, ପ୍ରଫେସର୍ ଡକ୍ଟର ନରେନ୍ଦ୍ରନାଥ ମିଶ୍ରଙ୍କୁ ମଧ୍ୟ ମୋର ଆଶୀର୍ବାଦ—ତାଙ୍କ ସହୃଦୟ ଆଲୋଚନାରେ ମୋ ପରି ବହୁ ଲେଖକ ବଞ୍ଚିରହନ୍ତୁ ।

ରାସ ପୂର୍ଣ୍ଣିମା
୧୯୮୬

କୃଷ୍ଣବିହାରୀ ଦାଶ

# ଉତ୍ସର୍ଗ

ଦେଲେ ଯେ ନିକଟ
ନ ଦେଲେ ନିକଟତର

କଣ୍ଟକର ମାଳା ଦେଲେ
ଯେ ଫୁଲମାଳାରେ ଗୁନ୍ଥିଦିଏ,

ସେଇ ମୋ ଘରଣୀ ଲତା;
ଯାହାକୁ କେବେ କିଛି ଦେଇନାହିଁ
ହାର ଅବା ଉପହାର
ତା' ହାତରେ ଦେଲି ଗୋଧୂଳିର ରଙ୍ଗୀନ୍ ନିଃଶ୍ୱାସଟିଏ—

କୁଞ୍ଜବିହାରୀ ଗ୍ରନ୍ଥାବଳୀ, ତୃତୀୟ ଖଣ୍ଡ

# ମୁଖବନ୍ଧ

ଦୁଇବର୍ଷ ପୂର୍ବେ 'କୃଷ୍ଣବିହାରୀ ଗ୍ରନ୍ଥାବଳୀ'ର ପ୍ରଥମ ଭାଗ ପ୍ରକାଶ ପାଇଥିଲା । ଏବେ ତୃତୀୟ ଭାଗ ପ୍ରକାଶିତ ହେଲା । ପ୍ରଥମ ଭାଗରେ କେବଳ ଭ୍ରମଣକାହାଣୀ, ଦ୍ୱିତୀୟ ଭାଗରେ ଭ୍ରମଣକାହାଣୀ ଓ ରମ୍ୟ ରଚନା; ତୃତୀୟ ଭାଗରେ ଭ୍ରମଣକାହାଣୀ, ରମ୍ୟରଚନା ଓ କ୍ଷୁଦ୍ରଗଳ୍ପ ସ୍ଥାନ ପାଇଛି । ଏଇ ଦିଗରୁ ତୃତୀୟ ଭାଗ ଅଧିକ ବୈଚିତ୍ର୍ୟମଣ୍ଡିତ, କ୍ଷୁଦ୍ରଗଳ୍ପ ନୂତନ ସଂଯୋଜନ । ଏଇ ଭାଗରେ ସ୍ଥାନ ପାଇଥିବା ଶ୍ରୀମନ୍ତ (୧୯୬୦) ରମ୍ୟ ରଚନା ତରୁଣ ବୟସର ଓ ହସକାନ୍ଦର ଗପ (୧୯୭୮), ଆମେରିକା : ପୁନଶ୍ଚ (୧୯୮୫) ପରିଣତ ବୟସର ସୃଷ୍ଟି । ସୃଷ୍ଟିଶୀଳ ଗଦ୍ୟଶିଳ୍ପୀ ଭାବରେ କୃଷ୍ଣବିହାରୀଙ୍କ ଦୀର୍ଘ ସାଧନାର ନିଦର୍ଶନ ଏଇ ଭାଗରୁ ମିଳିବ ।

( ୧ )

କିଶୋର ବୟସରୁ କୃଷ୍ଣବିହାରୀ କବି ହେବାର ସ୍ୱପ୍ନ ଦେଖିଛନ୍ତି, କବି ଭାବରେ ସାଧନା କରିଛନ୍ତି ଆଜୀବନ । ୧୯୫୦-୬୧ ଏଇ ଏଗାର ବର୍ଷ କବିଗୁରୁ ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନରେ ରହିଥିବା କାଳରେ ତାଙ୍କର କାବ୍ୟସାଧନା ବିକାଶର ନବ ନବ ଧାରା ସନ୍ଧାନ କରିଛି । ରସଦୃଷ୍ଟି, ବିଦ୍‌ବତ୍ତା, ବିଶ୍ୱଜନୀନ ମାନବତା ତାଙ୍କ ସୃଷ୍ଟିଧାରାକୁ ପ୍ରସାରିତ କରିଛି । ଲୋକଗୀତ, ଲୋକଗଳ୍ପ ସଂଗ୍ରହ, ସମୀକ୍ଷା ଓ ସଂକଳନର ଯୁଗାନ୍ତକାରୀ ସାଧନା ସଙ୍ଗେ ନୂତନ ଧରଣର କବିତା ରଚନା, କବିତ୍ୱମୟ ଗଦ୍ୟ ରଚନାରେ ସେ ହାତ ଦେଇଛନ୍ତି । ଏଇ ଯୁଗର ସୃଷ୍ଟି 'ଶ୍ରୀମନ୍ତ' । ଶ୍ରେଷ୍ଠ ଲେଖକମାନେ ଆତ୍ମଆବିଷ୍କାର ମଧ୍ୟରେ ହିଁ ବିଶ୍ୱ ଆବିଷ୍କାର କରନ୍ତି । 'ମୋ ଜୀବନର ଗୋଟିଏ ଅଧ୍ୟାୟ', 'ମୁଁ କାହିଁକି ଲେଖେ', 'ବସ୍ତୀ', 'ଲୁନା ଦାଶଙ୍କ ଡାଇରି'—ଆଦି ସ୍ୱତନ୍ତ୍ର ରଚନା ମଧ୍ୟରେ ଜଣେ ନିପୁଣ ଶାଳ୍ପିକ ଓ ନିଖୁଣ ରସବନ୍ତ ଗଦ୍ୟଶିଳ୍ପୀଙ୍କ ପରିଚୟ ମିଳେ । ପରବର୍ତ୍ତୀ କାଳରେ ଲେଖା ବହୁ ସମ୍ମାନିତ କବିଙ୍କ ଆତ୍ମକାହାଣୀ 'ମୋ କାହାଣୀ'କୁ ଯଦି ଏଇ

## ( ଖ )

ମହାକାବ୍ୟକ ଚଶତୋପନ୍ୟାସ କୁହାଯାଏ, ତେବେ ତାହାର ଅଙ୍କୁର ଶ୍ରୀମନ୍ତର ମନୋଜ୍ଞ କାବ୍ୟକ ରମ୍ୟ ରଚନାରେ ଦେଖାଯାଇପାରେ ।

ସାହିତ୍ୟର ଏକ ଶିଳ୍ପରୂପ ଭାବରେ ରମ୍ୟ ରଚନାର ସ୍ଥାନ ଏବେ ବି ସୁନିର୍ଦ୍ଦିଷ୍ଟ ନୁହେଁ । ମନୋଜ୍ଞ ସରସ ଭାବରେ ଲିଖିତ ପ୍ରବନ୍ଧକୁ ରମ୍ୟ ରଚନା ବୋଲି ସହଜରେ ଭ୍ରମ ହୁଏ । ମାତ୍ର ପ୍ରବନ୍ଧ ବହିର୍ଜଗତର ତଥ୍ୟ ଉପରେ ଓ ରମ୍ୟରଚନା ଅନ୍ତର୍ଜଗତର ଅନୁଭବସିଦ୍ଧ ସତ୍ୟ ଉପରେ ଆଧାରିତ । ଏହି ଭାବରେ ଗଦ୍ୟରେ ଲିଖିତ ହେଲେ ବି ରମ୍ୟ ରଚନା ଗୀତିକବିତାର ଦୋସର । ରମ୍ୟରଚନାରେ ଲେଖକ ନିଜ ସ୍ମୃତିଚିତ୍ର ଅଙ୍କନ କଲାବେଳେ ଏହା ହୋଇଉଠେ ଗଳ୍ପ । କାହାଣୀର ଗତିଛନ୍ଦ ଏହାକୁ ସାର୍ବଜନୀନ କରେ । 'ଶ୍ରୀମନ୍ତ'ରେ ଗାଳ୍ପିକ, ଆତ୍ମଜୀବନୀ ଲେଖକ, ମହାନ୍ ଶିଳ୍ପୀଙ୍କ ଅନ୍ତର୍ଜଗତର ଚିତ୍ର ଫୁଟିଚି । ଏହା ତାଙ୍କର ଭବିଷ୍ୟତ ସୃଷ୍ଟିଜଗତର ଅସ୍ଫୁଟ ଇଙ୍ଗିତ ବହନ କରିଛି । ନିବିଡ଼ ତନ୍ମୟ ଦୃଷ୍ଟିରେ ଜୀବନ ଅଧ୍ୟୟନ, ପ୍ରକୃତ ସନ୍ଦର୍ଶନ ଫଳରେ କୁଞ୍ଜବିହାରୀ ଗଳ୍ପ ଓ ଭ୍ରମଣ ସାହିତ୍ୟ ରଚନାରେ ଯେ ବିପୁଳ ସିଦ୍ଧିର ଅଧିକାରୀ ହେବେ—'ଶ୍ରୀମନ୍ତ' ତାହାର ନିଦର୍ଶନ ।

## ( ୨ )

ଆଧୁନିକ କ୍ଷୁଦ୍ରଗଳ୍ପର ଜନକ କବି ଏଡ୍‌ଗାର ଆଲେନ୍ ପୋ ମନେ କରୁଥିଲେ, ଗୋଟିଏ ଦିଗରେ ଗଳ୍ପର ସ୍ଥାନ କବିତାଠାରୁ ଉଚ୍ଚରେ । କାବ୍ୟ ସୌନ୍ଦର୍ଯ୍ୟର ପ୍ରଚ୍ଛନ୍ନ ସମ୍ପୂର୍ଣ୍ଣ କୃତ୍ରିମତା ମୁକ୍ତ ହୋଇ ନ ପାରେ । ଶ୍ରେଷ୍ଠ କବିତା ଅବଶ୍ୟ ଯେପରି ସୌନ୍ଦର୍ଯ୍ୟର, ସେହିପରି ସତ୍ୟର ବାହକ । କବିତାର ସତ୍ୟ ହିରଣ୍ୟ ପାତ୍ରରେ ପିହିତ । କବିତାର ସ୍ଥାନ ମନର ଉଚ୍ଚତମ ଶୃଙ୍ଗରେ ରହିପାରେ; ମାତ୍ର ଗଳ୍ପ ଏକ ଦିଗନ୍ତବ୍ୟାପୀ ଟେବଲ୍ ଲ୍ୟାଣ୍ଡ୍ । ସେଠି ସତ୍ୟର ପ୍ରକାଶ ଅବାଧ ଓ ଅକୃତ୍ରିମ । ଏଠାରେ ସବୁ କିଛି ଜୀବନ୍ତ, ବାସ୍ତବ, ଯୁକ୍ତିର ଭିତ୍ତିରେ ପ୍ରତିଷ୍ଠିତ । ବାସ୍ତବତା ଗଳ୍ପର ପ୍ରାଣ ।

କ୍ଷୁଦ୍ରଗଳ୍ପ ଲୋକଗଳ୍ପ ଓ ପ୍ରାଚୀନ ପାରମ୍ପରିକ ଗଳ୍ପଠାରୁ ସ୍ୱତନ୍ତ୍ର । ଏକ ନୂତନ ଶିଳ୍ପଙ୍ଗଢର ରଚନା ଭାବେ ଊନବିଂଶ ଶତକରେ ଏହାର ଜନ୍ମ । ସାମୟିକ ପତ୍ରର ପୃଷ୍ଠା ମଣ୍ଡନ ପାଇଁ ଏହା ପ୍ରଥମେ ରଚିତ ହୋଇଥିଲା । ସମ୍ବାଦପତ୍ରରେ ଶିକ୍ଷାନବିସ୍ ଭାବରେ ଗଳ୍ପ ଲେଖକ ସେ ଯୁଗରେ ଆତ୍ମପ୍ରକାଶ କରୁଥିଲେ, ଆଜି ବି କରୁଛନ୍ତି । ଘଟଣାର ସଦ୍ୟସ୍ପୃଷ୍ଟ ନୂତନତାକୁ ଭିତ୍ତି କରି, ଆବେଗର ଉଷ୍ମତା ଓ

କଳ୍ପନାର ମୁକ୍ତ କ୍ରୀଡ଼ାରେ ଅନୁରଞ୍ଜିତ କରି ବହୁ ଜନପ୍ରିୟ ଚମକପ୍ରଦ ଗଳ୍ପ ସୃଷ୍ଟି ହୋଇଛି । ଏହା ପାଠକ ମନରେ ଚମକ ଲଗାଏ, ଆନନ୍ଦ ଦିଏ, ମାତ୍ର ତାହାର ହୃଦୟର ଗଭୀରକୁ ପ୍ରବେଶ କରେ ନାହିଁ । ଫଳସ୍ବରୂପରୁ ଜୀବନପଥରେ ଆଲୋକ ଦେଖାଏ ନାହିଁ ।

ବିଂଶ ଶତକରେ କ୍ଷୁଦ୍ରଗଳ୍ପକ୍ଷେତ୍ରରେ ବହୁ ପରୀକ୍ଷା ଓ ପ୍ରୟୋଗ ଘଟିଛି । ରୁଷୀୟ ଗଳ୍ପର ନୈତିକ ଆବେଗ, ଫରାସୀ ଗଳ୍ପର ସ୍ୱଭାବବାଦରୁ ଆରମ୍ଭ କରି ଆମେରିକାରେ ଏକ ନ୍ୟାସନାଲ୍ ଆର୍ଟଫର୍ମ ଭାବରେ ଗଢ଼ି ଉଠିଛି କ୍ଷୁଦ୍ରଗଳ୍ପ । ଆଧୁନିକ ଜୀବନର ଅବାଧ ଗତିଛନ୍ଦ ଯେଉଁଠି ଯେତେ ବେଶୀ ଅନୁଭୂତ, କ୍ଷୁଦ୍ରଗଳ୍ପର ବିକାଶଭୂମି ସେଠାରେ ସେତେ ବେଶୀ ପ୍ରସାରିତ । ଆଧୁନିକ ଜୀବନର ବ୍ୟବଚ୍ଛିନ୍ନତା, ବ୍ୟଗ୍ରତା, ମୁହୂର୍ତ୍ତଧର୍ମିତା, ବୈଚିତ୍ର୍ୟ, ପ୍ରାଣଚଞ୍ଚଳତା ସବୁ କିଛି କ୍ଷୁଦ୍ରଗଳ୍ପର ଆଧାର । ଏ ଦିଗରେ ଅତ୍ୟାଧୁନିକ ପ୍ରୟାସ ହେଉଛି—ଏହାର ସ୍ୱାଭାବିକ, ପ୍ରାକୃତିକ ଶିଳ୍ପରୂପର ପୁନର୍ନିର୍ମାଣ । କଥକ ଓ ଶ୍ରୋତାଙ୍କ ମଧ୍ୟରେ ମୌଖିକ ସଞ୍ଚାରିତ ହେବା ଗଳ୍ପର ସ୍ୱାଭାବିକ ଗତି । ଜୀବନର ନାନା ପରିବେଶରୁ ସଦ୍ୟ ସ୍ୱଚ୍ଛ ବାକ୍‌ଭଙ୍ଗୀ ଚୟନ କରି ଆଜି ଗଳ୍ପଲେଖାର ଉଦ୍ୟମ ହେଉଛି । କେବଳ ପତ୍ରିକା ବା ପୁସ୍ତକ ମାଧ୍ୟମରେ ନୁହେଁ, ଗଳ୍ପ ପ୍ରଚାରିତ ହେଉଛି ଟେପ୍, ବେତାର, କଣ୍ଠଶିଳ୍ପ ମାଧ୍ୟମରେ । ଅତ୍ୟାଧୁନିକ କବିତାରେ ପଦ୍ଧତିର ଜଟିଳତା, ପ୍ରକାଶର ଅସ୍ୱଚ୍ଛତା ଓ ଅବବୋଧର ଦୁର୍ବୋଧତାରୁ ମୁକ୍ତିର ପ୍ରୟାସ ଭଳି କ୍ଷୁଦ୍ରଗଳ୍ପ ହୋଇ ଉଠୁଛି ସ୍ୱଚ୍ଛ, ସରଳ ଓ ଅକୃତ୍ରିମ; ଯେପରିକି ଲୋକଗଳ୍ପର ଏକାନ୍ତବର୍ତ୍ତୀ ।

ବିଶ୍ୱର ଯେ କୌଣସି ଶ୍ରେଷ୍ଠ ଲେଖକଙ୍କ ଗଳ୍ପ ତୁଳନାରେ ଲୋକଗଳ୍ପ କଳା ଦିଗରୁ ନିଖୁଣ, ଉପାଦାନ ଦିଗରୁ ସମୃଦ୍ଧ । ତେବେ ଏହା ବ୍ୟକ୍ତି ଚେତନାର ବାହକ ନୁହେଁ । ଏହାର ସ୍ରଷ୍ଟା ଅନିର୍ଦ୍ଦିଷ୍ଟ । ଜନସାଧାରଣଙ୍କ ଜୀବନର ବାସ୍ତବ ଚିତ୍ର ସମ୍ବଳିତ ଲୋକଗଳ୍ପରୁ ମିଳେ ବୁଦ୍ଧିର ପ୍ରାଖର୍ଯ୍ୟ, ସରସତା, ନୈତିକତା ଓ ବିଜ୍ଞ ବିଗ୍ଭରବୋଧ । ଏଥିରୁ ଆଧୁନିକ ଯୁଗ ଚେତନା, ଯୁଗ ଯନ୍ତ୍ରଣା ଖୋଜିଲେ ମିଳିବ ନାହିଁ । ସାମାଜିକ ଜୀବନର ବାସ୍ତବ ଆଲେଖ୍ୟ ଅଙ୍କନ ସଙ୍ଗେ, ଜଟିଳ ମନସ୍ତାତ୍ତ୍ୱିକ ଚିତ୍ର ଆଙ୍କିବା କ୍ଷୁଦ୍ରଗଳ୍ପର ଧର୍ମ ।

ଲୋକଗଳ୍ପର ଛନ୍ଦ, ପ୍ରାଣପ୍ରାଚୁର୍ଯ୍ୟ ସଙ୍ଗେ ଆଧୁନିକ ଜୀବନବୋଧର ସମନ୍ୱୟ ହିଁ କୃଷ୍ଣଚନ୍ଦ୍ର ବିହାରୀଙ୍କ କ୍ଷୁଦ୍ରଗଳ୍ପର ବୈଶିଷ୍ଟ୍ୟ । ଅଗଣିତ ଲୋକଗଳ୍ପର ରୂପସ୍ରଷ୍ଟା ନିଜର ସିଦ୍ଧ ତୂଳୀରେ, ଦୀର୍ଘ ଦିନର ବିସ୍ତୃତ ଅନୁଭୂତି ଘେନି ଗଳ୍ପ ଲେଖିଛନ୍ତି । ଗ୍ରାମୀଣ, ନାଗରିକ ଜୀବନର ସକଳ ସ୍ତରରୁ ସୁନ୍ଦର, ସ୍ମରଣୀୟ

ଟ୍ରାଜିକ୍ ଓ କ୍ଲାସିକ୍ ଚରିତ୍ରସବୁକୁ ଯେପରିକି ମହାକାଳର ଯବନିକାରେ ଅଭିନୀତ ନାଟକର ପାଦପ୍ରଦୀପ ସମ୍ମୁଖକୁ ଆଣିଛନ୍ତି । ସମସ୍ତେ ଲେଖକଙ୍କ ଏକାନ୍ତ ଅନ୍ତରଙ୍ଗ । ଚରିତ୍ରଗୁଡ଼ିକୁ ରୂପ ଦାନ କରିବାକୁ ଯାଇ ଲେଖକ ଯେପରିକି ଆତ୍ମଦାନ କରିଛନ୍ତି । ନିଜ ସୃଷ୍ଟ ଚରିତ୍ରଗୁଡ଼ିକର ମର୍ମଲୋକରେ ପ୍ରବେଶକରି ନିଜକୁ ଆବିଷ୍କାର କରିଛନ୍ତି । ଏମାନଙ୍କ ବିଷୟରେ ଲେଖି ନ ଥିଲେ, ନିଜ ଆତ୍ମାନୁସନ୍ଧାନ ସମ୍ପୂର୍ଣ୍ଣ ହୁଅନ୍ତା ନାହିଁ । ଆତ୍ମକାହାଣୀ ଅକୁହା ରହନ୍ତା ।

ପ୍ରକୃତରେ ଗଳ୍ପଗୁଡ଼ିକ ନୂତନ । ନୂତନ ଗଳ୍ପ, ନୂତନ କବିତା ଏକ ସହିତ ବହିର, ଏକ ସହିତ ଅନ୍ୟର, ଅଧୁନା ସହିତ ଐତିହ୍ୟର, ବ୍ୟକ୍ତି ସହିତ ବିଶ୍ୱର, ମୁହୂର୍ତ୍ତ ସହିତ ମହାକାଳର ନବ ନବ ସମ୍ପର୍କ ସ୍ଥାପନ କରେ । ମହତ୍ ସୃଷ୍ଟି ପାରମ୍ପରିକ ମୂଲ୍ୟବୋଧକୁ ଅସ୍ୱୀକାର କରେ ନାହିଁ, ବା ପୂର୍ଣ୍ଣତଃ ସ୍ୱୀକାର କରି ନିଏ ନାହିଁ । ଏହା ମଧ୍ୟରେ ଥାଏ ମାନବାତ୍ମାର ଉତ୍ତରଣର ଇତିହାସ । ଜୀବନର ନିତ୍ୟ ପରିବର୍ତ୍ତିମାନ ସ୍ଥିତି ଓ ସମ୍ପର୍କ ପ୍ରତି ଆନୁଗତ୍ୟ କୌଣସି ପୂର୍ବ-କଳ୍ପିତ ବିଧି ନିଷେଧର ବିରୋଧୀ । ଏଇ ବିଧିବାଦୀଙ୍କ ଦ୍ୱାରା ମନୁଷ୍ୟ ବାରମ୍ବାର ଲାଞ୍ଛିତ ହୁଏ, ଦୁଃଖ ବରଣ କରେ, କିନ୍ତୁ ସବୁଦିନ ପାଇଁ ହାରିଯାଏ ନାହିଁ । ମୁହୂର୍ତ୍ତରେ ଯାହା ହରାଏ, ମହାକାଳ ତାହାର ବହୁଗୁଣ ଫେରାଇ ଦିଏ । ଯେପରି ଫେରି ପାଇଛି ହେଲେନ୍; ଫେରି ପାଇଛନ୍ତି ହରିଶଙ୍କର ।

ବାସ୍ତବବାଦୀ ଦୃଷ୍ଟିରେ—ଅନ୍ତର୍ନିହିତ ମାନସିକ ଶକ୍ତି ଓ ସମସ୍ତ ବହିଃଶକ୍ତିର ସମାହାର ହେଉଛି ମଣିଷ । ବାହାରୁ ଯେତେ ଭାବରେ ଅନୁପ୍ରେରିତ, ନିୟନ୍ତ୍ରିତ ହେଲେ ବି, ତାହାର ସହଜାତ ଇଚ୍ଛାଶକ୍ତି, ସ୍ୱାଭାବିକ ମୂଲ୍ୟବୋଧ ତା'ଠାରୁ କେହି କାଢ଼ି ନେଇ ପାରିବ ନାହିଁ । ଏହା ହିଁ ମାନବଜୀବନର ଗତି । ଏହାର ପ୍ରବାହ ଅବାରିତ । ଏଥିରୁ ପଳାୟନ, ଭାବବାଦୀ ସ୍ୱୈର କଳ୍ପନାର ମୂର୍ଚ୍ଛର ଦହନ ବିରୋଧରେ ଯେଉଁ ବାସ୍ତବବୁଦ୍ଧି ବିଦ୍ରୋହ କରେ, କୁଞ୍ଜବିହାରୀ ତାହାର ଲାଳନ କରିଛନ୍ତି । ବିଧି ଓ ବୋଧର ନିରନ୍ତର ବିରୋଧାଭାସ ମଧ୍ୟରେ ଯେଉଁ ଗଳ୍ପ, ଯେଉଁ କବିତା ଆବିଷ୍କାର କରେ, ପ୍ରମାଣ କରେ— ବିଧାତା, ସମାଜ, ସମସ୍ତ —ସିଏ ମଣିଷକୁ ଗଢ଼ୁ ନା କାହିଁକି—ମଣିଷ ସେହା'ଠାରୁ ଅହୁରି ପାହାଚେ ଅଗ୍ର-ଗାମୀ—ତାହାହିଁ ଶ୍ରେଷ୍ଠ କବିତା, ଗଳ୍ପ । "ସେହାହିଁ ଜୀବନଟପ । ଏଥିରେ ମେଦ ନାହିଁ, କଳ୍ପନାର କ୍ଲେଦ ନାହିଁ । ଅଛି ଖୋଦ୍ ଜୀବନ ।"

( ୩ )

'ହସକାନ୍ଦର ଗପ'ରେ ଜୀବନ ଓ ଜଗତ ପ୍ରତି ଯେଉଁ ଦୃଷ୍ଟି ଅଙ୍କୁରିତ ହୋଇଛି, ତାହାହିଁ ପୁଷ୍ପିତ ଫଳିତ ହୋଇଛି ସଦ୍ୟ ରଚିତ 'ଆମେରିକା : ପୁନଶ୍ଚ' ଭ୍ରମଣ ଆଲେଖ୍ୟରେ । ଲେଖକ ସୂଚେଇ ଦେଇଛନ୍ତି—"ଏ ତ ପାହାଡ଼, ପ୍ରପାତ, ହ୍ରଦର କାହାଣୀ ନୁହେଁ, ସବୁ କିଛି ଅନୁଭବର କାହାଣୀ ।" ରମ୍ୟ ରଚନା, କବିତା, ଉପନ୍ୟାସ, କ୍ଷୁଦ୍ରଗଳ୍ପର ଆନନ୍ଦ ଦେବା ଏହାର ଲକ୍ଷ୍ୟ । ୧୯୬୮ରେ ପ୍ରକାଶିତ "ଆମେରିକାରୁ ଇଉରୋପ ଆଫ୍ରିକା"ରେ ଥିବା ଆମେରିକା ଭ୍ରମଣ-କାହାଣୀର ଏହା ପରିପୂରକ କେବଳ ନୁହେଁ, ଏକ ନୂତନ ଧରଣର କଳାତ୍ମକ ସୃଷ୍ଟି । ଲେଖକ କବି ଦୃଷ୍ଟିରେ ପ୍ରକୃତିକୁ ଦେଖିଛନ୍ତି, ମାତ୍ର ଦରଦୀ କଥାକାର ଭାବରେ ମନୁଷ୍ୟଜୀବନ ଅଧ୍ୟୟନ କରିଛନ୍ତି । କବିତାର ଅନ୍ତର୍ମୁଖୀ ଓ କାହାଣୀର ବହିର୍ମୁଖୀ ବିଶିଷ୍ଟତାରୁ ପାଠକକୁ ମୁକ୍ତି ଦେବାପାଇଁ ଯତ୍ର ସାମାନ୍ୟ ଭ୍ରମଣ ବୃତ୍ତାନ୍ତ ପରିବେଷିତ । ଦୁର୍ଭେଦ୍ୟ ପ୍ରପାତ ପାହାଡ଼ ଲଙ୍ଘନର ଦୈହିକବଳଠାରୁ ଉଚ୍ଚକୋଟୀର ଭ୍ରମଣୋତ୍ସାହ୍ୟ. ସୃଷ୍ଟି ପାଇଁ ପ୍ରୟୋଜନ ସତେଜ ସବୁଜ ମନ, ସଂସ୍କାରମୁକ୍ତ ସ୍ୱାଧୀନ ବିଚାରବୋଧ, ଉଦାର ଗ୍ରାହିକା ଶକ୍ତି । ଜଣେ ଚିର ସଂଗ୍ରାମୀ ସ୍ରଷ୍ଟା, ସାଧନାବେଦୀରେ ଉତ୍ସର୍ଗୀକୃତପ୍ରାଣ ସାଧକ ରୂପେ ଲେଖକ ଆତ୍ମପ୍ରକାଶ କରିଛନ୍ତି । ଏକ ସ୍ୱଚ୍ଛ ଫଳକରେ ଆଲୋକ ରଶ୍ମିର ପ୍ରତିସରଣ ଭଳି ତାଙ୍କର ଗ୍ରାହିକାଶକ୍ତି ଅକଳନୀୟ ।

ସାଧାରଣରେ ଧାରଣା—ଆମେରିକା ଧନ କୁବେର ଦେଶ । ସବୁଠି ବିଜ୍ଞାନ, ଅର୍ଥ ଓ ପ୍ରବୃତ୍ତି ସ୍ଖଳିତ ଧର୍ମର ଲୀଳା । ଅର୍ଥ ବଳରେ ବିଜ୍ଞାନ ଭୂତକୁ ବଶ କରି ସେ ସାରା ପୃଥିବୀରେ ଆଧିପତ୍ୟ ବିସ୍ତାର କରୁଚି । ଆମେରିକାର ଅନ୍ତରାତ୍ମା'କୁ ଗମ୍ଭୀରଭାବେ ଲେଖକ ଉପଲବ୍ଧି କରିଛନ୍ତି । ସେ ଦେଖିଛନ୍ତି ଆମେରିକା କବିତା, ସ୍ୱାଧୀନତା ଓ ମାନବତାର ଲୀଳା ଭୂମି । ପ୍ରକୃତିକୁ ଆମେରିକା ଲୁଣ୍ଠନ କରି ନାହିଁ, ସେଥିରୁ ସମ୍ପଦର ମଧୁ ସଞ୍ଚୟ କରି ଶ୍ରୀ ଭରି ଦେଇଚି । ମଣିଷକୁ ଅଧୀନ କରିନାହିଁ, ମଣିଷର ଅଧିକାରକୁ, ମେଧାକୁ ସମ୍ମାନିତ କରିଚି । ସାରା ବିଶ୍ୱର ମେଧାବୀ, ଦୁଃସାହସିକ, ସ୍ୱାଧୀନତାକାମୀ ଲୋକ ଆମେରିକାରେ ଠୁଳ ହୋଇଛନ୍ତି । ସାରା ପୃଥିବୀରେ ବିତାଡ଼ିତମାନଙ୍କ ଶ୍ରେଷ୍ଠ ଆଶ୍ରୟଦାତା, ପୁଣି ଶ୍ରେଷ୍ଠ ବୁଦ୍ଧିଜୀବୀ, ଯନ୍ତ୍ରବିଦ୍, ସାଧକଙ୍କର ସ୍ୱେଚ୍ଛା ପ୍ରବାସର ଦେଶ ଆମେରିକା । ଏଠାରେ ଯନ୍ତ୍ର ମନୁଷ୍ୟକୁ ଯନ୍ତ୍ରାରେ ପୂରାଇ ନାହିଁ; ନଗର ଉଦ୍ୟାନଭରା ପକ୍ଷୀର ସନ୍ନିଧିରୁ ବଞ୍ଚିତ ହୋଇନାହିଁ । ଯନ୍ତ୍ରର ଲୀଳାଭୂମି ଶିଳ୍ପ କାରଖାନା; ଜ୍ଞାନ ସାଧନାର ପୀଠ ବିଶ୍ୱବିଦ୍ୟାଳୟ, ସଂଗ୍ରହଶାଳା

ଓ ପ୍ରଶାନ୍ତ ମହାସାଗରର ବିଧୌତ ପଶ୍ଚିମ ଆମେରିକାର ବିସ୍ତୀର୍ଣ୍ଣ ପ୍ରକୃତିର ସୌନ୍ଦର୍ଯ୍ୟର ଅପରୂପ ମାର୍ମିକ ବର୍ଣ୍ଣନା ଏକାନ୍ତ ଉପଭୋଗ୍ୟ । ପ୍ରତ୍ୟକ୍ଷ ଅନୁଭବ ସଙ୍ଗେ ବହୁପାଠୀ ବିଦଗ୍ଧର ତଥ୍ୟନିଷ୍ଠତା ଭ୍ରମଣକାହାଣୀକୁ ବିଶେଷ ଉପାଦେୟ କରିଅଛି ।

ଦୂରରୁ ଯେପରି ଶ୍ୟାମ ବନଭୂମିର ଶୋଭା ଦେଖି ହୁଏ, ଦୂର ଦେଶରୁ ଦୃଷ୍ଟିର ଏକ ଅନାସକ୍ତ ପ୍ରସାରିତ ବଳୟରେ ସ୍ୱଦେଶର ଯଥାର୍ଥ ଆତ୍ମାକୁ ଚିହ୍ନି ହୁଏ । ଆମେରିକାରେ ଥିବା ବହୁ ଭାରତୀୟ, ଏମାନଙ୍କ ମଧ୍ୟରେ ପୁଣି ନିଜର ଏକାନ୍ତ ଜନ ଓଡ଼ିଶାର ଅଧିବାସୀଙ୍କ ସଙ୍ଗେ ଲେଖକ ନିଜକୁ ଏକାତ୍ମ କରିଛନ୍ତି । ଏଇ ଦୂର ପ୍ରବାସୀଙ୍କ ଜୀବନର ସମସ୍ୟା, ସ୍ୱଦେଶର ଭୌତିକ ଓ ଆତ୍ମିକ ବିକାଶରେ ଏମାନଙ୍କ ଭୂମିକା ସୁନ୍ଦର ଭାବରେ ବିଶ୍ଳେଷିତ ହୋଇଛି, ଏମାନଙ୍କ ଅନ୍ତଃ ଓ ବହିର୍ଜୀବନର ମର୍ମଗ୍ରାହୀ ଆଲେଖ୍ୟ ମଧ୍ୟରେ ।

ଆମେରିକା ଏକ ଦେଶ ହୋଇ ବି ମହାଦେଶ । ଏହାର ପ୍ରକୃତି ବିଶାଳ, ମାନବଜୀବନ ବିଚିତ୍ର ବିପୁଳ ଧାରାରେ ପ୍ରବାହିତ । ସମଗ୍ରର ପରିପୂର୍ଣ୍ଣ ଛବି "ଆମେରିକା : ପୁନଶ୍ଚ" ଭଳି ଏକ ଭ୍ରମଣ ଗ୍ରନ୍ଥରୁ ଆଶା କରାଯାଇ ନ ପାରେ । ସାମ୍ପ୍ରତିକ ଆମେରିକାର କବି ହୋଆର୍ଡ଼ ନେମେରୋଭଙ୍କ ସଙ୍ଗେ ସାକ୍ଷାତକାର ମଧ୍ୟରେ ସେ ଯେପରି ତାର ପରିପୂର୍ଣ୍ଣ ଜୀବନର ରୂପ ଅନୁଭବ କରିଛନ୍ତି । ନେମେରୋଭ୍ ୧୯୪୧-୪୫—ବିଶ୍ୱଯୁଦ୍ଧ କାଳରେ ଆମେରିକା ବିମାନବାହିନୀରେ ପାଇଲଟ୍ ଥିଲେ । ଯୁଦ୍ଧ ପରେ ସୈନ୍ୟବିଭାଗରୁ ଆସି ସାହିତ୍ୟ ଚର୍ଚ୍ଚା ଓ କାବ୍ୟ ସାଧନାରେ ବ୍ରତୀ ହୋଇଛନ୍ତି । ତାଙ୍କୁ ୧୯୬୩-୬୪ରେ ଆମେରିକା କବିମାନଙ୍କର ଶ୍ରେଷ୍ଠ ଆସନ (Consultant in poetry to the Library of Congress) ଦିଆ ହୋଇଥିଲା । ପରିବର୍ତ୍ତନଶୀଳ ଜୀବନ ଓ ଜଗତରେ ନିତ୍ୟ ପ୍ରତିଭାତ ଛନ୍ଦକୁ ରୂପ ଦେବା ଏହି କବିଙ୍କର ଧର୍ମ । କବି କୁଞ୍ଜବିହାରୀ ଏହାଙ୍କ ସମଧର୍ମୀ । ଏଇ ତ ଜୀବନ :—

The water that seemed to stand is gone.
The water that seemed to run is here.
Steady the wrist, steady the eye;
Paint this trhythm, not this thing.

—Howard Nemarove.

( ୩ )

ଆମେରିକାର ଚିର ଚଞ୍ଚଳ ଜୀବନପ୍ରବାହରୁ କବି କୃଷ୍ଣବିହାରୀ ଆବିଷ୍କାର କରିଛନ୍ତି ଚିର ଜୀବନର ଛନ୍ଦ, ଅଙ୍କନ କରିଛନ୍ତି ତାର ବିଚିତ୍ର ଧାରା । ଲେଖନୀ ଟିକିଏ ହେଲେ ଶିଥିଳ ହୋଇନାହିଁ, ଦୃଷ୍ଟି ମୁହୂର୍ତ୍ତିକ ଲାଗି ଟଳି ଯାଇନାହିଁ । ଅନୁଭୂତି, ପ୍ରଜ୍ଞା ଓ ପ୍ରତିଭାର ଦୁର୍ଲଭ ନିଦର୍ଶନ "ଆମେରିକା : ପୁନଶ୍ଚ" ରଚନା ପରେ କବି ଗୋଟିଏ ଚିଠିରେ ଲେଖିଥିଲେ—"ସାହିତ୍ୟରେ ପ୍ରେରଣା ଉଣା ହେଲା ପରି ଲାଗୁଚି । ଏବେ ମଝିରେ ମଝିରେ ଗଳ୍ପ ଲେଖୁଚି ।" ଏହା ଏକ ସ୍ପଷ୍ଟ ସ୍ୱୀକାରୋକ୍ତି । ବିଧାତାଙ୍କ ସୃଷ୍ଟି ପୂର୍ଣ୍ଣ ଓ ଅବାରିତ । ମାତ୍ର ପ୍ରତି ମହତ୍ ସୃଷ୍ଟି ପରେ ଶିଳ୍ପୀ ନେଉଛନ୍ତି ବିରତି । ଏଇ ବିରତି ମଧ୍ୟରେ ଚାଲେ ନୂତନ ସୃଷ୍ଟି ପାଇଁ ପ୍ରସ୍ତୁତି ।

( ୪ )

ଗ୍ରନ୍ଥାବଳୀର ତୃତୀୟ ଭାଗ ବିଗତ ଅର୍ଦ୍ଧଶତ ବର୍ଷ ମଧ୍ୟରେ ବିକଶିତ କବି କୃଷ୍ଣବିହାରୀଙ୍କ ଧ୍ୟାନ ଦୃଷ୍ଟିର ସାର୍ଥକ ପରିଚୟ ବହନ କରେ । ନିଜର ଏକାନ୍ତ ପ୍ରିୟ ପଲ୍ଲୀ, ସାଧନା ପୀଠ କବିଗୁରୁ ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ, କଟକର ସଂଘର୍ଷ-ମୟ ନାଗରିକ ଜୀବନ ଓ ସୁଦୂର ଆମେରିକାରେ ଯନ୍ତ୍ରସାରଥି ଆଧୁନିକ ମନୁଷ୍ୟର ଆତ୍ମିକ ଆବିଷ୍କାର ମଧ୍ୟରେ ଇଚ୍ଛାବିହାରୀ କବି କୃଷ୍ଣବିହାରୀଙ୍କ ସୃଷ୍ଟି ମାନସ ଯେପରି କି ଏକ ଗିରି ଝରଣାର ଉପଳ ପଲ୍ଲବମୟ ଚତ୍ୱର ଶଯ୍ୟାରୁ ଇନ୍ଦ୍ରଧନୁ ଭଳି ଉନ୍ମୀଳନ କରି ଚାଲିଚି ଉଚ୍ଚ ପର୍ବତ ଚୂଡ଼ାକୁ, ଚୂଡ଼ାରୁ ଅନନ୍ତ ଆକାଶର ଅସୀମତା ମଧ୍ୟକୁ ନବ ନବ ସୃଷ୍ଟିର ଉତ୍ସ ସନ୍ଧାନରେ । ପୁରାତନ ରଚନାର ସଂକଳନ ସଙ୍ଗେ ଗ୍ରନ୍ଥାବଳୀର ପରବର୍ତ୍ତୀ ଭାଗ ସବୁ ନୂତନ ସୃଷ୍ଟିର ଅମ୍ଳାନ ସ୍ୱାକ୍ଷର ବହନ କରୁ—ଏହାହିଁ କାମନା ।

ନରେନ୍ଦ୍ର ନାଥ ମିଶ୍ର
ବିଶ୍ୱଭାରତୀ ଓଡ଼ିଆ ବିଭାଗ
୪ । ୯ । ୮[illegible]

# କୁଞ୍ଜବିହାରୀ : ଜୀବନାଲେଖ୍ୟ

୧୯୧୪—ମାର୍ଚ୍ଚ ୭ : ଜନ୍ମ : ରେଙ୍ଗ ଶାସନ, ଜି: ପୁରୀ, ପିତା : ୰ଚନ୍ଦ୍ରାମଣି ଦାଶ (୧୮୮୨-୧୯୨୪), ମାତା : ତାରାମଣି—(ମୃ. ୧୯୫୫), ପତ୍ନୀ : ପ୍ରେମଲତା (ବିବାହ—୧୯୪୧) :

## ଶିକ୍ଷା

୧୯୩୫ : ନିମାପଡ଼ା ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ପ୍ରବେଶିକା ।

୧୯୩୯ : ରେଭେନ୍ସା ମହାବିଦ୍ୟାଳୟରୁ ବି. ଏ. ।

୧୯୪୧ : କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଏମ୍. ଏ. ରେ ପ୍ରଥମ ଶ୍ରେଣୀ ଓ ସମସ୍ତ ଭାରତୀୟ ଭାଷା ବିଭାଗରେ ପ୍ରଥମ ଓ ସ୍ୱର୍ଣ୍ଣ ପଦକ ଲାଭ ।

୧୯୪୫ : କଲିକତା ବିଶ୍ୱବିଦ୍ୟାଳୟରୁ ଘରୋଇ ଛାତ୍ର ଭାବରେ ସଂସ୍କୃତରେ ଏମ୍. ଏ. ।

୧୯୫୪ : ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ 'ଓଡ଼ିଆ ଲୋକଗୀତ ଓ କାହାଣୀ' ଚର୍ଚ୍ଚା ନିବନ୍ଧ ଲେଖି ପିଏଚ୍. ଡି. ଉପାଧି ଲାଭ ।

## କର୍ମ ଜୀବନ

୧୯୩୯ : ବାଣପୁର ହାଇସ୍କୁଲରେ ସାମୟିକ ଶିକ୍ଷକତା; ୧୯୪୦ : ବାରିପଦା ହାଇସ୍କୁଲରେ ଶିକ୍ଷକତା; ୧୯୪୧-୪୩ : ନୟାଗଡ଼ ଓ ତାଳଚେର ରାଜପୁତ୍ରଙ୍କ ଗୃହ ଶିକ୍ଷକ; ୧୯୪୪ : ଖଲ୍ଲିକୋଟ କଲେଜର ଓଡ଼ିଆ ଅଧ୍ୟାପକ; ୧୯୪୭ : ପୁରୀର ସଂସ୍କୃତ ବିଭାଗର ଅଧ୍ୟକ୍ଷ; ୧୯୪୭ : ବାଲେଶ୍ୱର ସରକାରୀ କଲେଜରେ ଅଧ୍ୟାପନା; ୧୯୫୦-୬୧ : ବିଶ୍ୱଭାରତୀ ଓଡ଼ିଆ ବିଭାଗର ଅଧ୍ୟକ୍ଷ; ୧୯୬୧-୬୯ : ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପନା; ୧୯୬୯ : ନଭେମ୍ବର ୨୧ ତାରିଖରେ ରେଭେନ୍ସା

ସ୍ନାନକୋତ୍ତର ବିଭାଗର ମୁଖ୍ୟ ଓ ପ୍ରଫେସର ପଦରୁ ଅବସର ଗ୍ରହଣ । ୧୯୭୦-୭୫ : ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପକ୍ଷରୁ ଅବସରପ୍ରାପ୍ତ ପ୍ରଫେସର ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା; ୧୯୭୭-୭୮ : ବିଶ୍ୱଭାରତୀରେ ପରିଦର୍ଶୀ ଅଧ୍ୟାପକ :

## ସାହିତ୍ୟ ଓ ସମାଜସେବା

୧୯୪୬ : ପୁରୀ : ତରୁଣ ସାହିତ୍ୟ ସମିତି ଓ ଜଗନ୍ନାଥ ଗବେଷଣା ମନ୍ଦିର ପ୍ରତିଷ୍ଠା ।

୧୯୪୮ : ବାଲେଶ୍ୱର : ଫକୀରମୋହନ ସାହିତ୍ୟ ପରିଷଦ୍ ପ୍ରତିଷ୍ଠା ଓ ପ୍ରତିଷ୍ଠାତା ସମ୍ପାଦକ ।

୧୯୫୧ : ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ୍ : ପ୍ରତିଷ୍ଠାତା-ସମ୍ପାଦକ ।

୧୯୫୮ : ନିଖିଳ ଭାରତ ଲୋକସାହିତ୍ୟ ସମ୍ମେଳନ, ଏଲାହାବାଦ—ସାହିତ୍ୟ ଶାଖାର ସମ୍ପାଦକ ।

୧୯୬୨ : କଟକ : ପୂଜ୍ୟ ପୂଜା ସଂସଦର ଅନ୍ୟତମ ପ୍ରତିଷ୍ଠାତା ୧୯୬୭ରୁ ଏହାର ସ୍ଥାୟୀ ସମ୍ପାଦକ ।

୧୯୬୭ : ଜୁନ ୨୧ : ଆମେରିକାର ଏଣ୍ଡିୟାନା ବିଶ୍ୱବିଦ୍ୟାଳୟରେ ଏସିଆ ଲୋକସଂସ୍କୃତି ସମ୍ମେଳନରେ ଭାରତର ପ୍ରତିନିଧିତ୍ୱ—ଆମେରିକା, ଇଉରୋପ, ଆଫ୍ରିକାରେ ଭ୍ରମଣ ।

୧୯୬୭ : ସ୍ୱଗ୍ରାମ ରେଞ୍ଚ ଶାସନରେ ଚନ୍ଦ୍ରମଣି ବିଦ୍ୟାପୀଠ ପ୍ରତିଷ୍ଠା ।

୧୯୭୨-୭୭ : କଟକ : 'ଉତ୍କଳ ସାହିତ୍ୟ ସମାଜ' ସମ୍ପାଦକ ।

୧୯୭୨ : 'ଆମେରିକାରୁ ଇଉରୋପ ଆଫ୍ରିକା' ଭ୍ରମଣକାହାଣୀ ଲାଗି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ।

୧୯୭୮ : ସେପ୍ଟେମ୍ବର ୨୩ : କଲିକତା, ଏକାଡେମୀ ଅଫ୍ ଫୋକ୍‌ଲୋର୍ ପକ୍ଷରୁ 'ଲୋକରତ୍ନ' ଉପାଧି ଲାଭ ।

୧୯୭୯ : 'ମୋ କାହାଣୀ' ପାଇଁ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ ।

୧୯୮୦ : କେନ୍ଦ୍ର-ସାହିତ୍ୟ ଏକାଡେମୀ ରଜତଜୟନ୍ତୀରେ ଓ ୧୯୮୨ରେ ଓଡ଼ିଶା ସାହିତ୍ୟ ଏକାଡେମୀ ରଜତଜୟନ୍ତୀରେ ସମ୍ମାନିତ ଓ ଉପାୟନ ଲାଭ ।

୧୯୮୩ : ସ୍ୱଗ୍ରାମରେ 'ଘନଶ୍ୟାମ ଆରୋଗ୍ୟ ନିକେତନ' ଦାତବ୍ୟ ଚିକିତ୍ସାଳୟ ନିର୍ମାଣ—ଟ୍ରଷ୍ଟବୋର୍ଡ଼ର ସ୍ଥାୟୀ ସଭାପତି । ସାହାଯ୍ୟକାରୀ ଆମେରିକା ପ୍ରବାସୀ କନିଷ୍ଠ ଭ୍ରାତା ଡା: ଉଦୟନାଥ ଦାଶ ଓ ଡା: ଇନ୍ଦ୍ର ଦାଶ ।

୧୯୮୪ : ପୁନର୍ବାର ଆମେରିକା ଭ୍ରମଣରେ 'ଆମେରିକା : ପୁନଶ୍ଚ' ଭ୍ରମଣ-କାହାଣୀ ରଚନା ।

## ସାହିତ୍ୟ ଜଗତ

୧୯୩୪ - ପ୍ରଥମ କବିତା ରଚନା କାଳ—କାବ୍ୟକୁସୁମ । ୧୯୪୦—ପ୍ରଥମ କବିତା ଗ୍ରନ୍ଥ ପ୍ରକାଶ 'ଛିନ୍ନମସ୍ତା' । ୧୯୪୦-୫୦ ମଧ୍ୟରେ ଦଶଖଣ୍ଡି ମୌଳିକ କବିତା ଗ୍ରନ୍ଥ ଓ ଦୁଇଖଣ୍ଡ ଲୋକକବିତା ଗ୍ରନ୍ଥ ପ୍ରକାଶ । ୧୯୫୦-୧୯୬୨ ମଧ୍ୟରେ ସାହିତ୍ୟର ନାନା ଶାଖାରେ ଆତ୍ମପ୍ରକାଶ । ପ୍ରଥମ ଭ୍ରମଣକାହାଣୀ—ଲଙ୍କାଯାତ୍ରୀ ୧୯୫୦, ପ୍ରଥମ ସମାଲୋଚନା ଇଂରେଜୀରେ ଲିଖିତ A study of Orissan Folk-lore—୧୯୫୩ । ଓଡ଼ିଆ ଭାଷାରେ ପ୍ରଥମ ପ୍ରକାଶିତ ପିଏଚ୍. ଡ଼ି ଗ୍ରନ୍ଥ "ଓଡ଼ିଆ ଲୋକଗୀତ ଓ କାହାଣୀ"—୧୯୫୮; ପ୍ରଥମ ରମ୍ୟ ରଚନା—ଶ୍ରୀମନ୍ତ ୧୯୬୦, ଆତ୍ମଜୀବନ ଚରିତ 'ମୋ କାହାଣୀ'—୧୯୬୬; ପ୍ରଥମ କ୍ଷୁଦ୍ରଗଳ୍ପ 'ହସକାନ୍ଦର ଗପ'—୧୯୬୯ ଓ ପ୍ରଥମ ଉପନ୍ୟାସ 'ମଣାଣି ତୁଳସୀ'—୧୯୮୦ । ମୋଟ ପ୍ରକାଶିତ ଗ୍ରନ୍ଥ ସଂଖ୍ୟା ଷାଠିଏରୁ ଅଧିକ । ଲୋକଗଳ୍ପ, ଲୋକଗୀତ ଓ ଲୋକବାଣୀ ଯେଉଁ ପ୍ରକାଶିତ ମୋଟ ପ୍ରାୟ ୧୫ ଖଣ୍ଡ ଗ୍ରନ୍ଥରେ ଓଡ଼ିଆ ସାହିତ୍ୟର ମୌଳିକ ଭାବ ବିଭବକୁ ଆଲୋକକୁ ଆଣିବାର ମହାନ୍ ପ୍ରୟାସ ଦେଖିବାକୁ ମିଳେ ।



# ସୂଚୀ

## ଆମେରିକା : ପୁନଶ୍ଚ

## ଶ୍ରୀମନ୍ତ



## ହସ କାନ୍ଦର ଗପ

( ପ୍ରଥମ ପର୍ବ )

( ଦ୍ୱିତୀୟ ପର୍ବ )

# ଏକ

## ଘରୁ ଯେତେବେଳେ ବାହାର ହୋଇଲି

କେବଳ ଘର, ଘର । ବାହାର ଲୀଳା ମୋ ଲାଗି ଶେଷ । ବାନପ୍ରସ୍ଥ ବା ଯତିବ୍ରତ ବୟସରେ କି ଲୀଳା ଆଉ କରିବ ? ନାତି ଅଣନାତିଙ୍କ ସହିତ ବାଳଲୀଳା !

ଏ ପରିବାର ଭଙ୍ଗା ଯୁଗରେ କାହା ନାତି ନାତୁଣୀ ପାଖରେ ରହୁଛନ୍ତି ? ଘରର ପଞ୍ଜୁରୀ ଭିତରେ ବାରବୁଲାଟାଏ କେତେ କାଳ ବଞ୍ଚିପାରେ ? ତଥାପି ଡାକ୍ତରଙ୍କ ପରାମର୍ଶ—ଘରେ ବସ, ଖରାକୁ ନ ଯାଅ । ଚଣ୍ଡାଂଶୁ ଆଘାତ କରିଛନ୍ତି । ମାରଣାସ୍ତ୍ର ଅବଶ୍ୟ ନୁହେଁ; ମୋହାସ୍ତ୍ର ସେ । ମୋହଠାରୁ ମୃତ୍ୟୁ କେତେ ଦୂର ? ମରଣବେଳେ କପରି ଲାଗେ, ମୋହ କହିପାରିବ ?

ସାହିତ୍ୟ ରସ ଓ ଜନସେବା ଭାବରେ ଉବେଇ ଟୁବେଇ ହେଉଥିବା ବେଳେ ହଠାତ୍ ମୋହ ହୋଇ ପଡ଼ିଲି—ଦୁଇଦିନ କାଳ । ମୋହ ଗୋଟାଏ ଗ୍ରେଟ ମୃତ୍ୟୁ ।

ଜୀବନ ଆଉ ମୃତ୍ୟୁ ମଧ୍ୟରେ ତ୍ରିଶଙ୍କୁ—ଦୁଇଦିନ । ଗତି ଏ ପାରିକି ନା ସେ ପାରିକି ? ଆଶା ନିରାଶା ମଝିରେ ସମ୍ପର୍କୀୟମାନେ ଘାରି ହେଉଥିବାବେଳେ ମୁଁ ଆଖି ମେଲିଲି । ଦେଖିଲି ଏକ ସଫାସୁତୁରା ସକାଳ । ଝାପ୍ସା କୁହୁଡ଼ି ଭିତରୁ କହ୍ଲାରଟିଏ ପରି ଫୁଟି ଉଠୁଥିଲା ମୋର ମନ । ତମିସ୍ରାରୁ ଜ୍ୟୋତିର୍ଗମନ କି ସୁଖକର !

ଆଜି ଏ କଣ ? ବର୍ଷକ ପରେ ଝାଙ୍ଗିଝୁଙ୍ଗି ହୋଇବସି ସେହି ଗୃହବନ୍ଦୀ ବାହାରି ପଡ଼ିଲା ବଣପରିସମାରେ । ଏ ଡାକ୍ତରଙ୍କ ଉପରେ ଯେ ମହାଡାକ୍ତର ତାଙ୍କର ବ୍ୟବସ୍ଥା । ସେ କହିଲେ—ଘରେ ବସିଲେ ଦେହରେ ମେଦ ବଢ଼େ, ମନରେ ଖେଦ ଜମେ । ମେଦ ଓ ଖେଦ କମାଇବାର ଅସଲ ଟନିକ୍ ଅଛି ବାହାରେ । ପ୍ରକୃତି ପ୍ରକୃତ ଧନ୍ୱନ୍ତରୀ ।

ଘର ନ ଭୁଲିଲେ ବାହାର ଉପଭୋଗ କରି ହୁଏ ନାହିଁ । କିନ୍ତୁ ଏଥର ଘର ବାହାରିଛି ମୋ ସଙ୍ଗରେ—ମାନେ ଘରଣୀ ! ଯେହେତୁ ଘରଣୀ ହିଁ ଘର । ଘରଣୀଙ୍କୁ ସଙ୍ଗେ ନେବା ଯାହା, ଘରକୁ ବୋଚ୍‌କା ବାନ୍ଧି ପିଠିରେ ବୋହିନେବା ସେଇଆ । ବୋଚ୍‌କା ପିଠିକି ଦାବୁଥିବା ବେଳେ ଭଲ ଆଖି ଟେକି ଉପରକୁ ବା ଚଉକତିକି ଚାହିଁବି କେମିତି ?

ପୁଣି ଘରଣୀଙ୍କର ଏମନ୍ତ ପ୍ରକୃତି—ସେ ଘରକୁ ମୁହୂର୍ତ୍ତେ ହେଲେ ଭୁଲିବାକୁ ଦିଅନ୍ତି ନାହିଁ । ଘରଣୀଙ୍କ ସଙ୍ଗେ ଘେନି ଧର୍ମ କରି ହୁଏ; ସହଧର୍ମିଣୀ ସେ । କର୍ମ ବି କରିହୁଏ; କେତେ ଦିଗରେ ସହକର୍ମିଣୀ ସେ । କିନ୍ତୁ ଯାଯାବରୀ ଯାତ୍ରାରେ ସହଭ୍ରମଣୀ କରି ନେଇ ପାରିଛି କିଏ ? ମାର୍କୋପୋଲୋ ? ନା । ଫାଇଅନ୍, ମେଘସ୍ଥିନିସ୍ ? ନା, କେହି ନୁହେଁ ।

ସଂସାରର ମେଣ୍ଢା ସେ । ତା ସଙ୍ଗେ ଗଇଁଠେଇଁ ହୋଇ ଗୋଟା ପୃଥିବୀରେ ବେଙ୍ଗଲା ବୁଲି ହୁଏ । କିନ୍ତୁ ବଳଦଙ୍କ ସଙ୍ଗେ ମେଣ୍ଢା ନିଜେ ଚାଲିଲେ ଯେ ପ୍ରଣବରୁ ଅଶୁଦ୍ଧ ହୋଇଯାଏ ! ଏକେ ତ କେତେ ଦୁଃଖରେ ଗଢ଼ା ସଂସାର ଅସମ୍ଭାଳ, ଦ୍ୱିତୀୟରେ ସୌନ୍ଦର୍ଯ୍ୟ ସ୍ରୋତରେ ନିଜକୁ ଭସାଇ ନେଇ ନ ପାରିଲେ ଭ୍ରମଣ ବି ବୃଥା ହୋଇଯାଏ । କାରଣ ପାଖେ ପାଖେ ରହି କାନେ କାନେ କହି ଓଲିଆ ମନକୁ ମୋଟେ ଅପନ୍ତରାରେ ଚରିବାକୁ ଦିଏ ନାହିଁ । ଜମାଟ ବାନ୍ଧି ଆସୁଥିବା ସ୍ୱପ୍ନକୁ ଚୂର୍ଣ୍ଣ କରି ଉଡ଼ାଇ ଦେବା ତାର କାମ ।

ପୁଣି କେହି କେହି କହନ୍ତି—ସ୍ତ୍ରୀ ଗୋଟାଏ ବ୍ୟାଙ୍କ୍ । ଅଷ୍ଟାଲଙ୍କାରମଣ୍ଡିତା, ଅସୂର୍ଯ୍ୟଂପଶ୍ୟା ଲାବଣ୍ୟବତୀମାନଙ୍କ ପକ୍ଷେ ସେ କଥା ଖାଟୁଥିଲା । ଆଧୁନିକା ଦେହରେ ଏମିତି କି ଅଳଙ୍କାର ଅଛି ଯେ ସେ ଗୋଟାଏ ବ୍ୟାଙ୍କ୍ ହେବ ? ତଥାପି ଚିନାଏ ଭରିଏ ସଧବାର ସଙ୍କେତ ଯାହା ଅଛି, ତା ଉପରେ ପୁଣି ଇଜ୍ଜତ-ମହତ ନାଶ ଭୟ ତ ରହିଛି !

ବୋଚ୍‌କା କହିଦେଲି ସିନା—ଆମ ଏବ ଅବସ୍ଥାକୁ ଦେଖୁଚ କି ହୋ ଭଗତେ ? କିଏ ପ୍ରକୃତରେ କାହାର ବୋଚ୍‌କା ? କେତେବେଳେ ଶଗଡ଼କୁ ନାଆ, ପୁଣି ନାଆକୁ ଶଗଡ଼ ବୁହେ ।

ଆମ ଭିତରୁ ଜଣେ ଅବଳା, ଆଉ ଜଣେ ଅବଳ ବୃଦ୍ଧ । ବାଳବୃଦ୍ଧ ସମାନ । ବୁଲି ନ ପାରିଲେ କାଖ ହେବା ପାଇଁ ବାଳୁତ ହାତ ଟେକେ । ଆଉ ଜଣକ ଅବସ୍ଥା ସେଇଆ ବା ସେହିପରି ।

ଆଃ, ବାରବୁଲାଙ୍କ କଥାରେ ପଡ଼ି ଜୀବନରେ କେତେ ଭୁଲ୍‌ଟାଏ କରି ବସିଲି ! ଗୋଟେ ଥାନରେ ଛିଡ଼ା କରି କରି ମେଡ଼ଟା ଉପରେ ଛତ୍ର ଫୁଟାଇ ଦେଲି । ଫୁଲଭରା ଫସଲ ପରି ଯେ ଧନେ ହସି ହଉଥିଲା, ତାକୁ ଫସିଲ୍ କରି-ଦେଲି । ଏବେ ମସ୍ତିଷ୍କର ସେଇ ମେଡ଼ଟା ଭୂଠ ପଥର ହୋଇ ପଡ଼ିଛି; ପରିବାରର ଗୋଡ଼ ଘଷା ଥାନଟି ଗ୍ରନ୍ଥି ପରୁଠି ଶିଉଳି ବସିଯାଇଚି । ଆଶ୍ଚର୍ଯ୍ୟ, ସେଥିରୁ ସେ ସୁଖ ପାଉଛି । ଟଳିବାକୁ ନାରାଜ । ସଂସାରର ଛେଳିଗ୍ଗଳଗ୍ଗରେ ହାଡ଼ ତାର ପୋପରା, ମନ ଶୁଖିଲା ଠୋଓ ଠୋଓ । ବେକରୁ ପଘା ଖସାଇ ଦେଲେ ବି ସେ ଖୁଣ୍ଟମୂଳ ଛାଡ଼ିବାକୁ ନାରାଜ । ଓଲଟି ଆଡ଼ ପଡାଉଛି; ଭୂଷି ଦେବାକୁ ଆସୁଛି ।

ମୋ ବିରୁଦ୍ଧରେ ସଦା ଅଭିଯୋଗ—କୁଆଡ଼େ ନେଲିନାହିଁ । କିଛି ଦେଖାଇଲି ନାହିଁ । ଅଥଚ ଅନ୍ୟ ବିବାହିତମାନଙ୍କର ସାରା ଜୀବନ ଗଇଁଠାଲି ଫିନ୍ଦିନାହିଁ । ଟୁର୍‌ଟାକୁ ଯଥା ସମ୍ଭବ ଘରୋଇ କରିବାକୁ ଖରିଦାମାନଙ୍କୁ ଗଇଁଠେଇ ନେଉଛନ୍ତି ।

ମୋର ତ ଖଇଁଆଣ୍ଡିନ ଗପ । ଏକୁଟିଆ ବାଆଁରି ମୁଁ, ଯୁଣ୍ଡା ମୁଣ୍ଡି ସାହାଡ଼ା ପରି; ପୃଥିବୀର ସ୍ୱରୂପ, ରସ, ସ୍ୱାଦ ଏକୁଟିଆ ଉପଭୋଗ କରେ, ଯଦିବା ସ୍ୱାଦୁ ଦ୍ରବ୍ୟ ଏକାକୀ ଭୁଞ୍ଜିବା ଅବିଧି ।

ନଗ୍ନଟିଆ ଗୋଧୂଳି ବେଳ । କେତେବେଳେ ଦେହ, ଏବେ ମନ କିନ୍ତୁ ଖୋଜେ ସଙ୍ଗ । ଦି ମନକୁ ଏକାଠି କରି ଗୋଟିଏ ବୃନ୍ତରେ ଫୁଟାଇବାକୁ, ଏକା ଛନ୍ଦରେ ଗ୍ଗଲିବାକୁ, ଏକା ସ୍ପନ୍ଦରେ ହସିବାକୁ ଭଲଲାଗେ ।

କିନ୍ତୁ ଆଉ ମନରେ ଏ ଭାବପ୍ରବଣତାର ପ୍ରଭାବ କାହିଁ ? ଗଛର ଗୋଟ୍ଟି ଗୋଟ୍ଟି ସିଅ ଯେ ଗୋଟା ସଂସାରକୁ ଜାବୁଡ଼ି ଧରିଚି । ସ୍ରୋତ କେତେ ପ୍ରଖର ହେଲେ ତାକୁ ଟାଣି ନେଇ ପାରିବ ?

ଗଛ ପଗ୍ଗରୁଛି—'କେମିତି ଯିବ ? ଘରେ କିଏ ରହିବ ? ତାର ଉତ୍ତର—କେହି ନ ରହୁ, ଘରେ କଣ ଅଛି କି ? ବହି ତ ! ବହି ଚ୍ୱେରାଇ ନେଲା ଭଳି ଶିକ୍ଷିତ, ସଭ୍ୟ ଚ୍ୱେର ଏ ଦେଶରେ ବାହାରିଲେଣି ?'

'କଣ କହିଲ ? ଘର ସାର ବୋଲି ଖଣ୍ଡେ ଦି ଖଣ୍ଡ ଜିନିଷ, ତୁମେ ତ କର ନାହଁ, ମୁଁ କରିଚି; ତାକୁ ହରାଇ ମୂଳ ବୁଡ଼ାଇବ ନା କଣ ?'

ହରାଇବାର ଭୟ ନ ଛାଡ଼ିଲେ, ବେପରୁଆ ନ ହେଲେ କେହି କଣ ଭ୍ରମଣ ଉପଭୋଗ କରିପାରେ ?

ଗୃହକର୍ତ୍ତ୍ରୀ ବୁଢ଼ୀ ବେଳକାଳ ଦେଖି ହାଙ୍କି ଦେଲ—ମୋର ପାଉଣା ଛୁଣ୍ଡାଇ ଦିଅ ଆଜି । ନାଉଣୀର ଭଗ୍ନ ମାସ । 'ହଇଓ' କାନରେ ପଥର ପଡ଼ିଚ ନା କଣ ? ଖାଲି ହାକ ହାକ ହୋଇ ବାହାର ପଡ଼ିଲେ ତ ହବ ନାହିଁ ? ପିଲି ଦୁ'ଟା ଏକୁଟିଆ ଚଳିବେ କେମିତ ?

ସୁବିଧାରେ ତ ଏତେକାଳ ଚଳାଇଲେ, ଏବେ ଅସୁବିଧାରେ କିଛି ଦିନ ଚଳନ୍ତୁ; ବୁଝିଲ, ଅସୁବିଧା ଭିତରୁ ମଣିଷ ବଡ଼ ହୋଇ ବାହାରେ...... ।

ରଖ ତୁମ ପୋଥି ବାଇଗଣ ! ଗୋଟେ ନବରଙ୍ଗ ଲଗେଇଚ !

ମୋ ମନ ଖରାକ୍ରାନ୍ତ ହୋଇ ଉଠିଲା । ଏ ଟିକ ଟିକ କଥା ତ ମଣିଷକୁ ଗଣଗଣିଆ ମାଛି ପରି କାମୁଡ଼େ ।

ଫେର୍ ଭାବିଲି— ଏ ଯୁଗରେ କିଏ କାହାର ଘରର ଗୃହକର୍ତ୍ତ୍ରୀ ହୋଇ ରହିବାକୁ ଚାହୁଁଚ ? ଲୋକେ ଭୋକ ଉପାସରେ ମରିବେ ପଛେ କାହାର 'ରେ କାର', 'ତୁ କାର' ବଚନ ସହିବେ ନାହିଁ । ପୁଣି ଯେ ବା ରହୁଛନ୍ତି, ଚଞ୍ଚଳ, ପଳେଇ ଯିବା ଭାବ; ବିଶ୍ୱସ୍ତ ଘରକରଟିଏ ମିଳୁଛି କାହିଁ ଏ ଯୁଗରେ ?

ଟିକଟ ଆସିଯାଇଚ, ଯିବା ଛଡ଼ା ଉପାୟ ନାହିଁ, ମୋର ଉତ୍ତମତର ଅଂଶ ଯେତେବେଳେ ଏ କଥା ଜାଣି ପକେଇଲା, ମୋ ଉପରେ ହେଲା ଗାଳି ବୃଷ୍ଟି । ଯେତେ ସୌଜନ୍ୟମୟୀ, ଲଜ୍ଜାଶୀଳା ବୋଧହେଲେ ବି ଗାଳି ପୁରନ୍ଧ୍ରୀର ବ୍ରହ୍ମାସ୍ତ୍ର । ସେହି ବଳରେ ସେ ସଂସାରଶୃଙ୍ଖଳା ରକ୍ଷା କରେ । ନାରୀକୁ ଯେଉଁମାନେ ଅବଳା ବୋଲି କହନ୍ତି, ସେମାନେ ବିଶ୍ୱ ହୋଇ ନାହାନ୍ତି ବା ତାର ତୁଣ୍ଡ କରାମତି ଜାଣିବାର କୌଣସି ଦୁର୍ଯୋଗ ଘଟିନାହିଁ । ବଚନର ବର୍ଚ୍ଛାଘାତ ଥରେ ବାଜିଲେ ମୂକ ହୋଇ ବସିଯିବେ ବା ବୈରାଗୀ ହୋଇ ବାଟ କାଟିବେ ।

ମୋ ପକ୍ଷେ ହଠାତ ବିପର୍ଯ୍ୟୟ ଘଟିଲା । ମୋତେ ସଂସାରର ଅଯୋଗ୍ୟତମ ବୋଲି ପ୍ରମାଣିତ କରି ସାରିଲା ପରେ, କି ତୁଣ୍ଡ ବିଥାଇଲା ପରେ ଗାଳି ବନ୍ଦ ହେଲା, କହି ପାରିବ ନାହିଁ ।

ହେ ଭଗବାନ୍, ତୁମେ କେମିତି ? ବ୍ରହ୍ମାଙ୍କ ଚତୁର୍ମୁଖର ମନ୍ତ୍ରସିକ୍ତ ବେଦ-ବାଣୀ ଅପେକ୍ଷା ତୁମକୁ କୁଆଡ଼େ ମାଇପୀ ଗାଳି ବେଶୀ ସୁଖ ଲାଗେ ? ଏ କଣ ସତ ନା ଭୁରୁଡ଼ି ? ଯଦି ସତ, ଜବାବ୍‌କୁ ସୁହାଇ ନ ଦେଇପାରି କଳା ପଡ଼ିଗଲ କାହିଁକି ?

ବୁଝିଲି, ଗାଳିର ଗୋଟାଏ ଔଷଧ ଗୁଣ ଅଛି, କଡ଼ା ଲାଗିଲେ ବା । ତା ନୋହିଲେ ତୁମେ ସର୍ବଶ୍ରେଷ୍ଠ କଳାକାର ବନି ଯାଇଥାନ୍ତ କିପରି ?

କିନ୍ତୁ ଏ ଅଭାଗା ଭାଗ୍ୟରେ କଣ ସେ କଥା ଘଟିବ ?

# ଦୁଇ

## ଦେଉଳକୁ ମୁଁ କୁଣିଆଁଳ ବଳଗଲେ……

'ଦୁଃଖରେ ତାର ଭୟ ନାହିଁ,
ଚିର ଦୁଃଖ କୋଳେ ଯେ ଲାଳିତ ।'

ଦୁଃଖ ମୋ ମେରୁ ହାଡ଼କୁ ଶକ୍ତ କରିଛି । ତେଣୁ ତନେ ଏପରି ଲେଖିଥିଲି ।
କିନ୍ତୁ କନ୍ଧଟାଠାରୁ ବୋହିବା କେଡ଼େ ଶକ୍ତ ! ନା ବାର୍ଦ୍ଧକ୍ୟରେ ଅଶକ୍ତ ହେବାରୁ
ଏପରି ଲାଗୁଛି !

ଲତା କର୍କଶ ସ୍ୱରରେ କୈଫିୟତ୍ ମାଗିଲା—ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭରସା
ହୋଇନାହିଁ କାହିଁକି ? ନିଜ କାମ ନିଜେ ନ କରି ସ୍ତ୍ରୀ ତା ହାତରେ କରାଅ
କାହିଁକି ?

ଅକର୍ମଣ୍ୟତା ଏ ବୟସରେ ନିଶ୍ଚୟ ବଢ଼େ, ବଢ଼େ ମଧ୍ୟ ପର ନିର୍ଭରତା ।
ହାକିମର ଚେହେରା ଦୃଷ୍ଟି ଦିନେ ସହିନାହିଁ; ମୀରବରେ ଏଡ଼େ ତିକ୍ତ ବଟିକା ମୁଁ ଗିଳି-
ଥାନ୍ତି କାହିଁକି ? ଉତ୍ତର ଦେଲେ ଅବସ୍ଥା ଅସମ୍ଭାଳ । ତୀକ୍ଷ୍ଣତର ଶର ରୂପରେ
ବାକ୍ ନିକ୍ଷିପ୍ତ ହେବ । ଅଶାନ୍ତି । ମୀରବତା ହିଁ ଏ ଉକ୍ତିକ ଅଙ୍କୁରେ ବିନଷ୍ଟ କରିବାର
ଏକମାତ୍ର ଉପାୟ ।

'ସାରଳା ପୁରସ୍କାର'ର ସମ୍ପାଦକ ଇଲା ପଣ୍ଡାଙ୍କ ନିର୍ଦ୍ଦେଶରେ ଇମ୍ଫାର
ଜନସମ୍ପର୍କ ଅଧିକାରୀ ମାର୍କସ୍ ଦାସ ଭରସା ଦାୟିତ୍ୱ ନେଇଥିଲେ । ତାଙ୍କ ପକ୍ଷେ ଏ
ସହଜ । କଲିକତାରେ ଇମ୍ଫାର ଅଫିସ୍ । ବ୍ୟବସାୟୀ ପଣ୍ଡା ଦମ୍ପତି ପ୍ରାୟ ପୃଥିବୀ
ଗସ୍ତରେ ଯା'ନ୍ତି, ମନ ମଉଜରେ ନୁହେଁ, ବ୍ୟବସାୟ ପ୍ରସାର ଲକ୍ଷ୍ୟରେ । ଆଜି
ଆମେରିକା, କାଲି କାନେଡ଼ା, ପରଦିନ ଗ୍ରେଟ୍ ବ୍ରିଟେନ୍ ବା ପଶ୍ଚିମ ଜର୍ମାନୀ । ବିଜୁ
ପଟ୍ଟନାୟକଙ୍କ ପରେ ବ୍ୟବସାୟ କ୍ଷେତ୍ରରେ ଓଡ଼ିଆଙ୍କ ମଧ୍ୟରେ ଏକତମ । ଓଡ଼ିଆଙ୍କୁ
ବ୍ୟବସାୟ ବୃଦ୍ଧିସମ୍ପନ୍ନ କରିବାରେ ତାଙ୍କ ଚେଷ୍ଟାର ଅନ୍ତ ନାହିଁ । ସାରଳା
ପୁରସ୍କାରର ପ୍ରବର୍ତ୍ତକ, ଏହି ଦମ୍ପତି ଓଡ଼ିଆସାହିତ୍ୟର ଆଶୁ ଉନ୍ନତି ଚାହାନ୍ତି ।

ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟିକଙ୍କୁ ବର୍ଷକୁ ପନ୍ଦର ହଜାର ଟଙ୍କା ପୁରସ୍କାର ଦିଅନ୍ତି । ଏକ ସାହିତ୍ୟ ସମାରୋହରେ ଆଡ଼ମ୍ବରସହକାରେ ଏହି ପୁରସ୍କାର ଅର୍ପିତ ହୁଏ ।

କିନ୍ତୁ କଥାଟା ଶୁଣିବାରୁ ଯେ ଅଶୁଦ୍ଧ ହୋଇଗଲା । ପୁରସ୍କାର ପ୍ରଦାନ ଉତ୍ସବ; କାର୍ଯ୍ୟକାରୀ ସଭାପତି ଭାବରେ ଅତିଥି ଅଭ୍ୟର୍ଥନାର ଚଳଚଞ୍ଚଳ ମୁହୂର୍ତ୍ତରେ ମାର୍କସ୍ ମୋ ହାତକୁ ଦରଖାସ୍ତ ବଢ଼ାଇଦେଲେ । ନ ପଢ଼ି ଦସ୍ତଖତ କରିଦେଲି, ଲତା ଦରଖାସ୍ତରେ ମୁଁ । ଲତା ମଧ୍ୟ ସେହିପରି ମୋ ଦରଖାସ୍ତରେ ଦସ୍ତଖତ କରି ଦେଲା । ଭିସା ଅଫିସ୍‌ରେ ଶେଷ ମୁହୂର୍ତ୍ତରେ ଏ ଭୁଲ୍ ଧରା ପଡ଼ିଲା । ଭିସା ଆଉ ମିଳନ୍ତା କିପରି ?

ଟିକେଟ୍ ବାତିଲ୍ ହେଲେ କେତେ ବଡ଼ କ୍ଷତି ! କି ମାନସିକ ବ୍ୟଥା ! ଅନୁତାପ ! ଘରଣୀଙ୍କ ମନର ଅଜସ୍ର ଶଙ୍କା ମୋତେ ସଂକ୍ରାମିତ କରୁଥାଏ । କାହିଁକି ସତୁରି ବର୍ଷ ବୟସରେ ଏ ପାଗଳାମି ? କଣ ଯହୁଁ ଯହୁଁ ବୁଢ଼ା ତହୁଁ ତହୁଁ ବେକୁବ୍ ! ଏତେ ଗୁଲି ଗୁଲି ମନର ଅରମାନ୍ ମେଣ୍ଟିଲା ନାହିଁ ?

ଆକାଶରେ ଶ୍ରାବଣ ମେଘ ଘନାଇ ଆସୁଥିଲା, ଯେପରି ମନରେ ଦୁଶ୍ଚିନ୍ତା ଆଉ ଶଙ୍କା । ତୋଫାନୀ ପକ୍ଷାଘାତରେ ସବୁ ଉଡ଼ାଇ ଦେଇ ଭିସା ଆସିଲା, ମନ ସ୍ୱଚ୍ଛ ସ୍ୱଚ୍ଛନ୍ଦ ଆନନ୍ଦରେ ପୁରି ଉଠିଲା ।

ଚିତଉ ଅମାବାସ୍ୟା । କିନ୍ତୁ ଚିତଉ ପିଠା ହେଲା ନାହିଁ । ହେଲା ଅନୁକୂଳ ଲେଉଟ ଚକୁଳି, ପାଖ ପଡ଼ୋଶୀ, ସାହିତ୍ୟିକ ବନ୍ଧୁବାନ୍ଧବଙ୍କ ଶ୍ରଦ୍ଧା, ଶୁଭେଚ୍ଛା ବୃଷ୍ଟି ମଝିରେ । ଅନାଧୁନିକ, ଆକର୍ଷଣହୀନ ଭୁବନେଶ୍ୱର ଷ୍ଟେସନରେ ବ୍ୟୋମଯାନରେ ବସିଲାବେଳେ ବରୁଣେଇ ପାହାଡ଼ରେ ମେଘର ବପ୍ରକ୍ରୀଡ଼ା, ନିସ୍ତବ୍ଧମୁଚ ସନ୍ଧ୍ୟାର କ୍ଷୀଣାଲୋକ ମଧ୍ୟରେ । ସେହି ବର୍ଷା ସନ୍ଧ୍ୟାଟି ପରି ଦିଶୁଥିଲା ଗୃହିଣୀଙ୍କ ମୁଖ, ବଦାୟ ଅଶ୍ରୁର ଦାଗ ଅଦ୍ୟାପି ଲାଗିଥିଲା ଗଣ୍ଡଦେଶରେ । ଦୂରେଇ ଆସିଲେ ବି ଆଖି ଦୁଇଟିକୁ ଆଚ୍ଛନ୍ନ କରିଥିଲା ସଂସାରର ଖଣ୍ଡ ଖଣ୍ଡ ଛାୟା ।

୧୯୮୪, ୧୭ତାରିଖ ଜୁଲାଇ; ଦିଲ୍ଲୀରେ ପହଞ୍ଚିଲୁ ରାତି ସାଢ଼େଆଠଟାରେ । ଏଣ୍ଡିଆନ୍ ଏୟାର୍ ଲାଇନ୍‌ସ୍ କୋଚ୍‌ରେ ଏୟାର୍ ଏଣ୍ଡିଆ ଷ୍ଟେସନକୁ ଗଲୁ । ଟ୍ରଲିରେ ଜିନିଷପତ୍ର ନିଜେ ଠେଲି ଠେଲି ନେଲୁ । ବସିଲୁ ଲୁହା ଚୌକିରେ, ରାତି ଦୁଇଟା ପର୍ଯ୍ୟନ୍ତ । କାଉଣ୍ଟର କ୍ଲାନ୍ତି ମଧ୍ୟରେ ଟିକେଟ ଚେକ୍ କଲେ ଶୁଣିଲୁ— ଜଣକର ରିଜର୍‌ଭେସନ୍ ଅଛି, ଆଉ ଜଣକର ନାହିଁ । ବଜ୍ରାଘାତ । ଦିଲ୍ଲୀରୁ ଫେରି ଯିବାକୁ ହେବ ? ଏତେ ଆୟୋଜନ ବୃଥା ।

ବିସ୍ଫୋରଣମୁଖୀ ଆଗ୍ନେୟଗିରି ପରି ଗର୍ଜୁଣୀ ଛୁଡା; ଜ୍ୱଳନ୍ତ ଲାଭା ମୋ ଉପରେ ବୋହି ନ ଗଲେ ରକ୍ଷା । ମାନସିକ ଭାରସାମ୍ୟ ନଷ୍ଟ ହୋଇଗଲା ପରି ଲାଗୁଥିଲା ।

ଭାବୁଥିଲି—ଜଣେ ଭୁଲ୍ କରିବ, ଆଉ ଜଣେ ଭୋଗିବ ଶାସ୍ତି । ଜଣେ କାହିଁକି, ଗୋଟିଏ ପରିବାର, ଗୋଷ୍ଠୀ, ଏପରିକି ସମଗ୍ର ଦେଶ ଜଣକ ଭୁଲ୍‌ର ପ୍ରତିଫଳ ଭୋଗ କରିଥାଏ । ଜଣେ ଜଳନ୍ତା ସିଗାରେଟ୍ ଖଣ୍ଡେ ପକାଏ, ବ୍ୟୋମ-ଯାନ ଜଳିଯାଏ, ଗୋଟା ଜଙ୍ଗଲ ନଷ୍ଟଭ୍ରଷ୍ଟ ହୋଇଯାଏ, ଜଣେ ଚୋରି କରେ, ଚୋର ଗ୍ରାମ ବୋଲି ବଦ୍‌ନାମ । ଏ ଅଫିସ୍‌ସବୁ କଣ ହୋଇଛି ! ଭୂତକୋଠି ! ମର୍ମେ ମର୍ମେ ଜଳୁଥିବାବେଳେ ଅନ୍ୟ ଇଜର୍‌ଭେସନ୍‌ଟି ମିଳିଗଲା, ଶୀତଳ ଜଳ କିଏ ଢାଳିଦେଲା ଯେପରି ! ହେ ଭଗବାନ୍, କି ଶାନ୍ତି !

କେତେକ ଉଗ୍ରପନ୍ଥୀ ପଞ୍ଜାବୀ ପ୍ଲେନ୍‌ଟିଏ ହାଇଜାକ୍ କରି ଲାହୋର ନେଇ ଯାଇଛନ୍ତି । ଆଉ କାଲେ କିଏ କଣ କରିବେ—ସନ୍ଦେହ ସମସ୍ତଙ୍କ ଉପରେ । ଅସ୍ତ୍ରଶସ୍ତ୍ର କେହି ଲୁଚାଇ ନେଉଛି କି ନାହିଁ, ପକେଟ୍, ସ୍ଥାନ ଅସ୍ଥାନ ଖୋଜା ଚାଲିଛି, ଯାତ୍ରୀଙ୍କ ହାଣ୍ଡବ୍ୟାଗ୍ ଏକ୍‌ସ୍‌ରେ ହେଉଛି ।

ଭାରତକୁ ଫୁଟକି ଦେଖୁଥିବା କଳିଆ ନାରଦମାନେ ବୀଣା ବଜାଉଛନ୍ତି, ଏଠି ଦଳେ ଭୂତ ପରି ନାଚୁଛନ୍ତି । ଭାରତକୁ କାଟି ଖଣ୍ଡଖଣ୍ଡ କଲା ପରେ ବି ମନ ବୋଧ ହୋଇ ନାହିଁ । ଆହୁରି ଟିକି ଟିକି କରିବା ଚେଷ୍ଟା । ଆରାଧନାର ମନ୍ଦିର ଅସ୍ତ୍ରଶସ୍ତ୍ରଭରା ଦୁର୍ଗରେ ପରିଣତ ହୋଇଛି, ଭାରତର ସର୍ବୋତ୍ତମ କୃଷୀ, ଯୋଦ୍ଧା, କଠୋର ଅଧ୍ୟବସାୟୀ ପଞ୍ଜାବୀର ଛବିମୂର୍ତ୍ତି ବିନଷ୍ଟ ହୋଇଛି ।

ସଂଶୟ ଘୂରି ବୁଲୁଛି ପ୍ରତି ବ୍ୟୋମ ଷ୍ଟେସନରେ, ଯାନ ଓ ଯାତ୍ରୀଙ୍କ ନିରାପତ୍ତା ଲାଗି; ଫଳ ସମସ୍ତଙ୍କ ଦୁର୍ଭୋଗ ।

ଘାଟି ପରେ ଘାଟି ପାର ହୋଇ ଏଣ୍ଡିୟାନ୍ ଏୟାର୍ ଲାଇନ୍‌ସ୍ ଜେଟରେ ବସିଲୁ । ପ୍ରାୟ ତିନି ଶତ ଯାତ୍ରୀ । ଦୁଇ ପଟେ ବିସ୍ତୃତ ପକ୍ଷ, ମଝିରେ ଆମ ଆସନ । ବାହାରକୁ ଦୃଷ୍ଟି ପକାଇବାର ଉପାୟ ନାହିଁ । ସହଜେ ତ ରାତ୍ରି ଅନ୍ଧକାର । ବିମାନ ଦଶ ହଜାର ଫୁଟ୍ ଉଚ୍ଚ ଆକାଶରେ । ଆମେ ସ୍ଥିର ଥିଲା ପରି ଲାଗେ, ଯାନ ଉପରକୁ ଉଠିଲେ କି ତଳକୁ ଖସିଲେ ବୁଝେଁ—ଉଡ଼ୁଛୁ ।

ଆରବ ସାଗର; ମଧ୍ୟ ପ୍ରାଚ୍ୟର ବହୁ ମରୁଦେଶ ପାରିହେଲୁ । ଦୁବାଇ ମରୁଦେଶ ବ୍ୟୋମ ବନ୍ଦର । ସୂର୍ଯ୍ୟୋଦୟ ବଳୟର କିଛି ଉପରେ । ରକ୍ତିମ ଆଭା

ଲଭ ନାହିଁ । ବାଲି କାଗଜ ବସ୍ତୁ ହେଲା ପରି ଚତୁର୍ଦ୍ଦିଗ । ଇତସ୍ତତଃ ଗୁଳ୍ମ, ଜୀବନ ସଂଗ୍ରାମର ଯନ୍ତ୍ରଣା ପଦେ ପଦେ । ଖର୍ଜୁର ଏଠି ସ୍ୱାଭାବିକ, ଫଳପ୍ରଦ ବନସ୍ପତିର ମହାନ୍ ଗୌରବ ଲାଭ କରିଛି ।

ବିଦେଶୀ ପୁଞ୍ଜିରେ ସଂଗଠିତ ଅତ୍ୟାଧୁନିକ ବ୍ୟୋମବନ୍ଦର; ଘଞ୍ଚା ବାଲି ଉପରେ ଉଠିଛି ତୁଙ୍ଗ ସୌଧ ଭରା ସହର । ଡ୍ୟୁଟି ଫ୍ରି ସପ୍ ସବୁ । ଦୋକାନୀ ରୂପସୀ ଯୁବତୀ । ସୁସଜ୍ଜିତ ବିପଣି । ଆଖି ଦୋକାନୀ ବା ଦୋକାନ ଉପରେ ବେଶୀ ଅଟକି ରହେ, କିଏ ଅଟକଳ କରିବ ?

ନେଭାଡ଼ାରେ ବୁଲିଛି । ପିରାମିଡ୍ ଅଞ୍ଚଳର ସାହାରାରେ ଆଖି ବୁଲାଇଛି । ତଥାପି ଏଠା ମରୁ-ମରୀଚିକା ଭୁଲିବାର ନୁହେ । ଫଳଭରା ଖର୍ଜୁରରୁ ଖର୍ଜୁର, ଓ ଶୂନ୍ୟ ଦିଗ୍‌ବଳୟକୁ ସେହି ନର୍ତ୍ତକୀ ଡେଇଁ ଗଲାବେଳେ ଆମ ଜେଟ୍ ଆକାଶକୁ ଉଠିଲା ।

ଭାରତରେ ଧାରା ଶ୍ରାବଣ, ଦୁବାଇରେ ଖରା । ଲଣ୍ଡନରେ ଖରାଦିନ । ଗୁପିଗୁପିକିଆ ମେଘରେ ଲୁଚକାଳି ଖେଳୁ ନାହିଁ ଲଣ୍ଡନ ନଗରୀ । ଗ୍ରୀଷ୍ମର ନିଃସଙ୍କୋଚ ପଦପାତ ସବୁଜ ପ୍ରାନ୍ତରେ, ଫୁଲଭରା ଉଦ୍ୟାନରେ, ସୌଧ ଶିରେ ଶିରେ, ବ୍ରିଟିସ୍‌ଚ୍ୟାନେଲ୍‌ର ତରଙ୍ଗେ ତରଙ୍ଗେ । ମୃଦୁ ଉତ୍ତାପ ପ୍ରାଣପୀଡ଼କ ନୁହେ । ତେଣୁ ପ୍ରସାରିତ ସ୍ୱାଚ୍ଛନ୍ଦ୍ୟର ଲୀଳା ସର୍ବସ୍ୱ ।

ଦେଢ଼ ଘଣ୍ଟା ରହଣି । ଝଡ଼ାଝଡ଼ି, ପୋଛାପୋଛି, ତକିଆ ଖୋଲ, ସିଟ୍ କଭର୍ ବଦଳାବଦଳି, ଓଲାପୋଲା କାର୍ପଟ, ସାହେବ ସାହେବାଣୀମାନେ ଜେଟ୍‌କୁ ଉଠି ଦ୍ରୁତ ଗତିରେ କରୁଥାନ୍ତି ।

## ତୁମକୁ ମିଛ ମତେ ସତ

ତୁମେ କାହାଣୀ ଶୁଣିବ; କାହାଣୀ ବନେଇ ଚୁନେଇ ଲେଖାଯାଏ । ମିଛ । ହସଖୁସିର ଖୋରାକ୍ ପାଇବ, ପଢ଼ୁଛ । ମତେ ସତ, ଉତ୍‌କଟ ଅନୁଭବ ।

ଏ ଗୋଟିଏ ଦନ୍ତ କାହାଣୀ, ବୁଦ୍ଧଦେବଙ୍କର ନୁହେ, ଦେଉଳ ତୋଳା ହୋଇଛି, ଯୁଗ ଯୁଗ ଧରି ପୂଜା ପାଉଛି; କିମ୍ବା ମୋ ଦନ୍ତକାହାଣୀ ନୁହେ, ଯାହାର ଗତି ମୂଷା ଗାତକୁ । ବେଦାନ୍ତୀ ହେବାର ଇତିହାସ କିଏ କାହିଁକି କହିବ ?

ଏ ଗୋଟାଏ ମିଛ ଦାନ୍ତର କାହାଣୀ । ପ୍ରାତଃରାଶ । ଗୁମ୍ଫି ଦାନ୍ତ ଦ'ଟା ମୋର ନକଲି । ବୁଝିଲେ ନକଲି ବୋଇଲେ ମୋର ସେଟିକ । ବାର୍ଦ୍ଧକ୍ୟକୁ ଲୁଚେଇବାକୁ ଆଉ କିଛି କରିନାହିଁ ।

ପ୍ଲେଟ୍‌ରେ ରଖି ଖାଉଥିଲି । ଖାଦ୍ୟ କଣାରେ ଖେଳ ହୋଇ ଭୁଲିଗଲି । ଦନ୍ତ ଦଓଟି ପ୍ଲେଟ୍‌ରେ ଗ୍ଲିଗଲା ।

କେତେ କେତେ ଘଟଣାରେ ଗ୍ରୁଡକ ପଥର କର ଚୂଡ଼ା ହୋଇଛି । କିନ୍ତୁ ଏଇ ଗ୍ଲେଟ ଘଟଣାଟିରେ ମୁଣ୍ଡ ବୁଲିଇ ଗଲା । ଆମେରିକାରେ ପାଦ ଦେଉଁ ଦେଉଁ ପାଗ୍ରେଟି ନେବାକୁ ଆସିଥିବା ଭାଇ, ଭାଇବୋହୂ, ଝିଆରି, ପୁରୁଗ—ଖୁସିରେ ହସି ଉଠିବେ । କିନ୍ତୁ ମୋର ହସିବାକୁ ସାହସ ହେବ ନାହିଁ । ସଙ୍କୋଚରେ ମୋ ମୁହଁ ଖୋଲିବ ନାହିଁ ।

ଜୀବନରେ କେତେ କାହାକୁ ଗାଳି ଦେଇଛି । କିନ୍ତୁ ତା ଅପେକ୍ଷା ଆଜି ନିଜକୁ ଗାଳି ଦେଲି ବେଶୀ । କଣ ମୋତେ ଅମନୋଯୋଗୀ କଲା ? କୋମଳ, ମଧୁର ଖାଦ୍ୟ ? ଜୀବନରେ ପର୍ବତ ପ୍ରମାଣେ ମଧୁର ଖାଦ୍ୟ ଖାଇଛି, ଆଉ କେତେରେ ତୃଷ୍ଣା ତୃପ୍ତ ହେବ ?

କିମ୍ବା କିଛି କାବ୍ୟ ଭାବନାରେ ବୁଡି ଏ ଭୁଲ୍ କର ବସିଲି ? ଅମନୋ-ଯୋଗୀ ହୋଇ ଜୀବନରେ ବହୁତ କିଛି ହରାଇଛି; କିନ୍ତୁ ପ୍ରାଣର କବିତାକୁ ପାଇଛି ।

ହେଲେ ଆଜି ଗ୍ଲେଟ ଜିନିଷଟି ହରାଇବାର ଦୁଃଖ ମୋତେ ମାଡ଼ିବସିଲା । ଦୁର୍ଘଟଣାରେ ବନ୍ଧୁ ଓ ପ୍ରିୟଜନଙ୍କର ସମବେଦନା ମିଳେ । ଲଜ୍ଜାର ମୁହଁରେ ତାର ଆଭାସ ନଥିଲା । ବୋଧହୁଏ ଏ ଅପରାଧ କ୍ଷମାର ବାହାରେ । ଜେଠ୍ ଭିତରେ ସୌଜନ୍ୟ ରକ୍ଷା ଦୃଷ୍ଟିରୁ ସେ ଗର୍ଜନ କରିପାରୁ ନ ଥିଲା । କିନ୍ତୁ ଢକ୍ରଭାବ ମୁହଁକୁ ବିରକ୍ତିରେ ଆରକ୍ତ ଓ ବିକୃତତର କର ଗ୍ଲିଥିଲା ।

କେତେ କେତେ ଦୁଃଖରେ ଲୋକେ ଭଗବାନ୍‌ଙ୍କର ଆଶ୍ରା ନିଅନ୍ତି । କି ଲଜ୍ଜାକର ! ଏତେ ଗ୍ଲେଟ କଥାରେ ମୁଁ ନିରୁପାୟ, ଭଗବାନ୍‌ଙ୍କର ଶରଣ ନେଲି । ଭଗବାନ୍ ଗୁରୁଗମ୍ଭୀର 'ବେଦାନ୍ତ ଶୁଣିବେ ନା, ଏ ବେଦାନ୍ତୀର ଦୁଃଖ ବୁଝିବେ । ସଂସାରର କେତେ ଦୁଃଖୀରଙ୍କୀ, ଶୋକାଶୋଷୀଙ୍କ ଦୁଃଖଯନ୍ତ୍ରଣା ଦୂର କରିବାକୁ ଥିବ । ଏଇ ଗ୍ରୁର କଥାଟା ଲାଗି ଧିକ୍ ମୋତେ, ମୁଁ ବିଶ୍ୱକର୍ମାଙ୍କର ସମୟ ନଷ୍ଟକଲି ।

ଭଗବାନ୍ କୃଷ୍ଣ ଗୀତା କହିଲାବେଳେ ବା ପରେ ବେଦାନ୍ତୀ ହୋଇଥିବେ । ନଇଲେ ଏ ଦୁଃଖ ବୁଝି ତୁରନ୍ତ ପ୍ରତିକାର କରିପାରନ୍ତେ କିପରି ?

ଢନିଶ ପ୍ଲେଟ୍, ତା ଉପରେ ତା ଉପରେ ନଦା । ଏୟାର୍ ହୋଷ୍ଟେସ୍-ମାନଙ୍କୁ କୋଟି ଧନ୍ୟବାଦ । ମୋ କଥାଟାକୁ ହସରେ ଉଡ଼ାଇ ନ ଦେଇ ଖୋଜି

ଲାଗିଲେ । ଏ ଶ୍ରମର ମୂଲ୍ୟ କିଏ ଦେଇପାରେ ? ଧନ୍ୟବାଦ ମାମୁଲି; ଦାନ୍ତଦିଓଟି ଲଗାଇ ମୁଁ ଖୁସିଭରା ହସଟିଏ ହସିଲି । ତା ମୂଲ୍ୟ ହୋଷ୍ଟେସ୍ ଢଙ୍ଗ ସଙ୍ଗେ ଶୁଝି-ଦେଲେ । ମତେ ଲାଗିଲା—ବହୁତ କିଛି ଅଣୁଝା ରହିଗଲା ପରି !

ଲଣ୍ଡନରୁ ନିଉୟର୍କ—ମଝିରେ ଆତଲାନ୍ତିକ୍ ମହା ସମୁଦ୍ର । ସାତ ଘଣ୍ଟାର ବାଟ । ବିରକ୍ତିକର, ଏତେ କାଳ ବସି ଆସିଲା ପରେ । ଯାନ ଗର୍ଜନରେ ସୁଖକର ଆଳାପ ଜମେନା । ଲେଖା ବା ପଢ଼ା ଚଳେ, ବସିବାଠାରୁ କାଟିବା ଭଲ ନ୍ୟାୟରେ ।

ନିଉୟର୍କରେ ଯାନ ଶାଳୀ ଚନ୍ଦୁ, ଷଡ଼ୁ ଇଞ୍ଜିନିଅର୍ ସୁଧାଂଶୁ । ବିଦେଶରେ ସାହାଯ୍ୟକାରୀ ନିଜ ଲୋକ ଦେଖିଲେ ଭରସା ଆସେ, ନିଜ ଦାୟିତ୍ୱ ସେମାନଙ୍କ ଉପରେ ଲଦିଦେଇ ନିଶ୍ଚିନ୍ତ ରହିବାକୁ ମନ-ଡାକେ । ପ୍ରାଣ ଖୋଲିଗଲା ପରି ଲାଗେ । ଜମେ ଅନର୍ଗଳ ଆଳାପ—ଦେଶର ହାନିଲାଭ, ଘରର ହାଲଚାଲ, ପାରିବାରିକ ସୁଖ ଦୁଃଖ କଥା ।

ନିଉୟର୍କରୁ ସେଣ୍ଟଲୁଇସ୍ ଏକ ହଜାର ମାଇଲ୍—ଦୁଇ ଘଣ୍ଟାର ବାଟ । ଜଳଯୋଗ ଭିତରେ ହିଁ କଟିଯାଏ । ଟି. ଡବ୍ଲ୍ୟୁ. ଏ. ପ୍ଲେନ୍‌ରେ ଆମେରିକାରେ ବର୍ତ୍ତୁଳ ଭ୍ରମଣର ଟିକେଟ୍ ଆମର; ଭୁବନେଶ୍ୱରରେ କରିବାକୁ ହୋଇଛି, ଦୁଇ-ଜଣଙ୍କୁ ପଡ଼ିଛି ମାତ୍ର ବାରହଜାର ଟଙ୍କା ! ଏ ସୁଯୋଗ ନ ନେଇଥିଲେ ଆମକୁ ଚତୁର୍ଗୁଣ ଖର୍ଚ୍ଚ କରିବାକୁ ହୋଇଥାନ୍ତା ।

ଷ୍ଟେସନରେ ଆଖିରେ ପଡ଼ିଲା—ଉଦ-ଉଦଆ-ଉଦଆ ଗୁନ୍ନ; ଇରା-ଇରାବତୀ-ହୀରାମଣି । ଏ ଦୁହିଁଙ୍କ ଖୁସି ହସରେ ଦୂରହେଲା ମନର ଜମାଟ ଅନ୍ଧକାର, ପଥର ଦୁର୍ଭୋଗ-ଗ୍ଲାନି ।

ଷ୍ଟେସନରୁ ଘର ୨୫ ମାଇଲ୍—ଏକମୁଖୀ ପ୍ରଶସ୍ତ ଯାତ୍ରା ପଥରେ ୨୫ ମିନିଟ୍ ଲାଗେ ।

ଏ ଘର, ଦେଶ ବା ବିଦେଶ ଯୋଉଠି ଥାଉ, କ୍ଲାନ୍ତିରେ ଶାନ୍ତିଦାୟୀ ଆଶ୍ରୟସ୍ଥଳ । ଗୋଟାଏ ଦୀର୍ଘଶ୍ୱାସରେ ସମସ୍ତ ଅବସାଦକୁ ଉଡ଼ାଇ ଦେଇ ଆରାମ-ଚୌକିରେ ଶରୀରକୁ ମେଲି ଦେଲି ।

# ତିନି

ଘରେ ପଶିବା ଆଗରୁ ଆଖି ବୁଲାଇଲି—ପିଚୁ ରାସ୍ତା ଧାରରୁ ଗଢ଼ି ଆସିଛି ଗାଢ଼ ସବୁଜ ପଡ଼ିଆ । ଅଠର ବର୍ଷ ମଧ୍ୟରେ କେତେ ପରସ୍ତ ଘାସ ଉଠିଲାଣି, ମଲାଣି । ଯେମିତି ଦିଶୁଥିଲା କିନ୍ତୁ ସେମିତି ଦିଶୁଛି । ଗଛବୃଛର ଆକୃତି ବଦଳିଛି । ମୋ ଆକୃତିରେ ଦେଖାଦେଇଛି ବିକୃତି । କିନ୍ତୁ ସେ ବିକୃତି ମନକୁ ମୋର ସ୍ପର୍ଶ କରି-ନାହିଁ । ପ୍ରକୃତିର ଶ୍ରୀକୁ ପ୍ରାଣ ଭିତରେ ଭରି ନେବା ଲାଗି ପୂର୍ବ ଆବେଗ ଅକ୍ଷୁଣ୍ଣ ରହିଛି ।

ଘରକୁ ଲାଗି କେତୋଟି ଗୋଲାପ, ବିଭିନ୍ନ ରଙ୍ଗର ଗାଢ଼ ଲାଲ୍ ଗୋଲାପ, ଗେଣ୍ଡୁ, ମେହେନ୍ଦି । ବାଲଗିଜଡ଼ାରେ ଲଟାଉଛି ଏଭରଗ୍ରିନ୍ ଲତା ।

ସେ ପାଖେ ଶ୍ରେଷ୍ଠ ପରିବା ବଗିଚାଟିଏ—କଳା ମଚମଚ ବାଇଗଣ ଲମ୍ବିଛି, ପାଚିଛି କେତୋଟି ଟମାଟୋ । ଲିଡାଇଛି କଲରା ଲତା—ଫୁଟିଛି ହଳଦିଆ କଲରେଇ ଫୁଲ । ଏ ତିକ୍ତ କିନ୍ତୁ ସ୍ୱାଦୁ ଫଳ ଉଦର ପ୍ରିୟ । ଭାରତରୁ ମଞ୍ଜି ମଗାଇ ସେ ଲଗାଇଛି—ମନେ ପଡିଗଲା—ଦେ କୁଅ, ଦେ ପାଣି, ଧୂଏ ଅଣ୍ଟା, ଧାଇଁ ଧାଇଁ ଖାଏ କଲରବେଣ୍ଟ ।

ଘର ଉପରେ ଉଡ଼ନ୍ତ ଇଗଲ—ଆମେରିକାର ଜାତୀୟ ପକ୍ଷୀ । ଲତା ପାଦ ବଢ଼ାଇବା ମାତ୍ରେ ଉଦ ବାଳକ ସୁଲଭ ଉଚ୍ଛ୍ୱାସରେ ଇଗଲକୁ କହିଲା – ଏ ଘର ଆଜି ଭାଉଜଙ୍କ ପଦ ଧୂଳିରେ ପବିତ୍ର ହୋଇଗଲା । ଆମର ପରମ ଭାଗ୍ୟ ସେ ଆସିଲେ—ଭାଇନାଙ୍କ କୃତିତ୍ୱ—ତାଙ୍କୁ ଆଣିଲେ ।

ଉଦ ଆଉ ଲତା ମଧ୍ୟରେ ପାରମ୍ପରିକ ଦିଅର ଭାଉଜ ଥଟ୍ଟା କେବେ ଚାଲି ନ ଥିଲା । ସେ ଦେଖୁଥିଲା ମାଆ ଦୃଷ୍ଟିରେ, ଯଦି ବା ତାର ବୟସ ଭାଉଜ ଅପେକ୍ଷା ଅଧିକ ଥିଲା । ବୋଉ ଗୁଡ଼ି ଚାଲିଯିବା ପରେ ସ୍ନେହ କ୍ଷୁଧିତ ମନରେ ତାର ଭାଉଜ ହିଁ ଆସନ ପାତି ବସିଥିଲା ।

ଘରେ କେତେ ପ୍ରକାର ଝୁଲନ୍ତ ଉଦ୍ଭିଦ, ଖରା ତାପ ଉପରେ ଅନିର୍ଭରଶୀଳ ।

ଘରେ ଅନେକ ଛବି—ସାରଥି କୃଷ୍ଣ ନନ୍ଦିଘୋଷ ଚଳାଇ ପ୍ରିୟ ସଖା ଅର୍ଜୁନକୁ କୁରୁକ୍ଷେତ୍ରକୁ ନେଇ ଯାଉଛନ୍ତି । ତାପରେ ତିଆରି ଚକାଡ଼ୋଳାଙ୍କ ମୂର୍ତ୍ତି,

କଳାଘୋଡ଼ା, ଧଳାଘୋଡ଼ାରେ ଚଢ଼ି କୃଷ୍ଣ, ବଳରାମଙ୍କ କାଞ୍ଚିଯାତ୍ରା, ବାଟରେ ରୂପସୀ ମାଣିକ୍ୟା ଗଉଡୁଣୀଠାରୁ ଦଧିପାନ ଦୃଶ୍ୟ ।

ଆଉ ଗୋଟିଏ କାନ୍ଥରେ ସୋଡ଼୍‌ଫିସ୍‌ର ନମୁନା ରୂପ । ଉଦ୍ ବନଗିରେ ଏହାକୁ ବାହାମାର ଦ୍ୱୀପ ସମୁଦ୍ରରୁ ଧରିଥିଲି ।

ତଳେ ଗୁଡ଼ିଏ ଡ୍ରମ୍ । ଡ୍ରମ୍ ବଜାଇବା ନେଶାର ହବି । କୋଳାହଳମୟ ସହରର ପ୍ରାଣୀ ସେ । ଯେ ଖେଳ୍ ମନରେ ଡ୍ରମ୍ ବଜାଇଲେ ଘରେ ଭୂକମ୍ପ ସୃଷ୍ଟି ହୁଏ । ଏ କୋଳାହଳ କିନ୍ତୁ ତାର ଶ୍ରୁତି-ସୁଖକର, ସେ ପ୍ରାଣ ଭରି ଉପଭୋଗ କରେ ।

ଅର ଘରେ ସ୍କି-ପଟ୍ଟା । ବିବିଧ ପ୍ରକାର ବ୍ୟୋମଯାନର ଡମି, ଛବି । ତା ଡେସ୍କ୍ ଉପରେ ବ୍ୟୋମଯାନଟିଏ ଝୁଲୁଛି । ବ୍ୟୋମଯାନ ଚାଳନ ତାର ଅନ୍ୟ ଏକ ବିନୋଦନ । ଏଇ ବିନୋଦନକୁ ସେ ଜୀବନର ବୃତ୍ତି ଭାବେ ବାଛିନେଇଛି । ସେ ଏରୋସ୍ପେସ ଇଞ୍ଜିନିୟରିଂ ପଢ଼େ । ଏକମାତ୍ର ପୁଅକୁ ଭାରତୀୟ ପିତାମାତା ହୁଏତ ଅନୁମତି ଦିଅନ୍ତେ ନାହିଁ—ସେମାନଙ୍କ ଦୃଷ୍ଟିରେ ଏ ଏକ ବିପଦ୍‌ଜନକ ଧନ୍ଦା । ଉଦ୍ ଇରା କିନ୍ତୁ କୁଣ୍ଠା ପ୍ରକାଶ କରିନାହାନ୍ତି । ସେମାନଙ୍କ ଦୃଷ୍ଟିରେ 'ଶଙ୍କାଭି ସର୍ବମାନାନ୍ତମ୍' । ଯେକୌଣସି କ୍ଷେତ୍ରରେ ବି ବିପଦ ଘଟିପାରେ । ଶଙ୍କା ବୃଥା ।

ଛୋଟିଆ ପିଲା ଏବେ ବଡ଼ ବଡ଼ । ଖେଳ ଘର ଭାଙ୍ଗି ଯାଇଛି । ଏବେ ଏଟି ପାଠାଗାର । ଆମେରିକାର ବୃହତ୍ ମାନଚିତ୍ରଟିଏ—ହେଠି ଗୋଲ୍‌ଡଟିଏ । ଏଠି ମୋଟା ପରଦା, ସେଠି ଟିଭି, ମୀରାର ପିଆନୋ । ତାର ବଡ଼ ହବି ପିଆନୋ ବଜାଇବା ।

ଆର ଘରେ ଶୀତାତପ ନିୟନ୍ତ୍ରଣକାରୀ ଯନ୍ତ୍ର, ଲଣ୍ଡ୍ରି କଳ—ଲୁଗା ସଫା କରେ, ଶୁଖାଏ । ତା ପାଖରେ ଡ଼ିପ୍ ଫ୍ରିଜ୍ ।

ଲମ୍ବା ଘରେ ପାର୍ଟି ଟେବୁଲ୍; ତା ଉପରେ ଝୁଲୁଛି ଝାଡ଼ ଆଲୁଅ । ଏ ଘରେ ଭୋଜ ହୁଏ ।

ପାଖରେ ରୋଷେଇଶାଳ; ରୋଷେଇବାସ ଜଞ୍ଜାଳ ଊଣା କରିବା ପାଇଁ ଯାନ୍ତ୍ରିକ ବ୍ୟବସ୍ଥା । ବୃହତ୍ତି ଗ୍ୟାସ୍ ଚୁଲ୍ଲୀ; ମାଇକ୍ରୋଓ୍ୱେଭ୍‌ରେ ତିନି ମିନଟ୍‌ରେ ହିମଶୀତଳ ଖାଦ୍ୟ ଓ ଜଳକୁ ଗରମ କରିହୁଏ । ଟେଲିଭିଜନ୍ ବି ଦୂରରୁ ଚଳାଇ ହୁଏ, ବନ୍ଦ କରି ହୁଏ । ରୁଚି ଅନୁଯାୟୀ ବିଭିନ୍ନ ଦିନର ଫିଲ୍‌ମ୍ ବାଛି ଦେଖିହୁଏ ।

ଘର ପଛ ପଟ ଗଛ ଗହ୍ବଳରୁ ମିସୋସ୍ତ ରାଜ୍ୟର ରଙ୍ଗୀନ୍ ଜାତୀୟ ପକ୍ଷୀ କାର୍ଡ଼ିନେଲ୍ ଟିଏ ମୁହଁ ଦେଖାଇଲା । ଏ କଣ ଅଠର ବର୍ଷ ତଳର ସେଇ ପକ୍ଷୀ, ଯାହା ସହିତ ମୋର ଖୁବ ଜମିଥିଲା ?

ପକ୍ଷୀ ଏତେ ଦିନ ବଞ୍ଚି ନ ପାରେ । ଏ ତାର ପିଲା ହୋଇଥିବ । ସେ ଆଳାପ ଭଙ୍ଗୀରେ ପାଖେଇ ଆସିଲା । ମୋତେ ଶଙ୍କୁଲାଇ ପରେ ଯେପରିକି ପଚାରିଲା—ଏତେ କାଳ କୁଆଡ଼େ ଥିଲ ?

## ମାରକ କୁକୁର

ଧରେ ତ ମାରେ । 'ମାରକ କୁକୁର ପ୍ରତି ସାବଧାନ', ବାହାରେ ଲେଖା । କାନ୍ଥ ଭିତରେ କଳାଭୁଆ ଆକୃତିର ଟିକି କୁକୁରଟିଏ । ମୁହଁରେ ଦାଢ଼ି, ଛେଳିର ଯେପରି । ଜାତି ବା ଇଜ୍ଜତ—କୁକୁର ପ୍ରତି କାହାର ସନ୍ଧାନ ନାହିଁ । ପଡ଼ୋଶୀର ସ୍ନେହର ଦାନ । ଫର୍କ ଶବ୍ଦ ଉଚ୍ଚାରଣରେ କାନ ଡେରିବାରୁ ତାର ନାମ ହେଲା ଫର୍କି ।

ବାହାରକୁ ଯିବାକୁ ମନ କଲେ ସେ ଦି ଗୋଡ଼ରେ ଛିଡ଼ା ହୋଇ ଅଳି କରେ । ଭୋକ ହେଲେ ବୋବାଏ, ଛୁଆ ଯେପରି କାନ୍ଦେ ।

ମିଶାଣିଆ ପ୍ରକୃତିର । ଖାଇପୀଇ ବଡ଼ ବଡ଼ କୁକୁର । ଗ୍ରେଟ୍ ଡେନ୍ ଭଳି ଏଇଟିକି ଏକା କାମୁଡ଼ାକେ ଖାଣ୍ଡିଦେବେ । ଶକ୍ତି ସଚେତନ । ଫର୍କି କାହା ସଙ୍ଗେ ଝଗଡ଼ା କରେ ନାହିଁ । ନିଜ ବଳର ଅବମାନନା ହେବ—ଏଥି ଲାଗି କୋଉ କୁକୁର ବି ତା ସହିତ କଳି କରନ୍ତି ନାହିଁ ।

ବିଜୁଳି ମାଇଲେ କାଚ ଦୁଆର ବାଟେ ଘରେ ମାଇଲା ପରି ଦିଶେ । ଘଡ଼ଘଡ଼ିରେ ହାଲୁକା କାଠ ତିଆରି ନିଜ ଘର ନାଚଉଠେ । ଫର୍କି ଭୟରେ ବରଡ଼ାପତ୍ର ପରି ଥରେ, ବିକଳ ଭାବେ ମାଲିକ୍ ଦୁଆରେ ଡାକେ । ଶିକାଗ୍ର ଜନ୍ତୁ—ହେ ଭଗବାନ୍, ସ୍ଥୀ ଚଉଦରେ ଏତେ ଭୟ ଦେଲ କାହିଁକି ? ଭୟରେ ନିଜେ ତ ମରୁଛି । ଏ ପୁଣି ମାରିବ କିପରି କାହାକୁ ? ଗୈର, ଡାକୁକୁ ଡରାଇବା ଲାଗି ମାତ୍ର ସେପରି ଲେଖା ଯାଇଛି । ଯେପରି ଲେଖା ହୋଇଛି—ବାହାରର ମୂଲ୍ୟବାନ୍ ପ୍ରତ୍ୟେକ ଦ୍ରବ୍ୟ ଚହ୍ନିତ; ଯୁଆଡ଼େ ବିକଲେ ବି ଧରା ପଡ଼ିଯିବ । ନିଜ ମନର ଲଘୁ ବା ଗୁରୁ ଶଙ୍କା ହିଁ ବାହାରେ ଜଳ୍ ଜଳ୍ ହୋଇ ଦିଶେ । ତା ବ୍ୟତୀତ ଅନ୍ୟ ସୁଫଳ ଲାଭ ହୁଏ ନାହିଁ ।

ଫର୍ଗିକ କେବଳ ଜଣେ ଲୋକ ଡରେ—ସେ ଡାକବାଲା । କଣ ବାରେ କେଜାଣି, ଡାକବାଲାକୁ ଦେଖିଲେ ସେ ଚମକିଯାଏ, ଡାକ ନ ଦେଇ ସେ ପଳାଏ । ତେଣୁ ଫର୍ଗିକୁ ଗୃହବନ୍ଦୀ କରି ରଖାଯାଏ, ଡାକବାଲା ଯିବାଯାଏ ।

ଫର୍ଗିକୁ ଭଲ ଦିଶେ ନାହିଁ । ଭୂକମ୍ପନରୁ ସେ ଗଲା ଅଇଲା ବାରେ । ଗୃହର ବିକଟ ବିଜନତାର ଦଂଶନରୁ ରକ୍ଷା କରେ—ଫର୍ଗିର ବଡ଼ ଦାନ ।

## ଆନ୍

ଚଉଖୁଣ୍ଟିଆ ମାଇପିଟିଏ, କାଳୀ କରାଳୀ ନିଗ୍ରୋ ଯୁବତୀ । ଗୁରୁ ଗମ୍ଭୀର । ଠାଣି ଚମକନ୍ଧନ । ଇଏ 'ଗୁଡ଼୍ ମର୍ଣ୍ଣିଂ' କହନ୍ତି ।

'ଏ ସୁବେଶିତା ଭଦ୍ରମହିଳା କିଏ ?'

'ଆନ୍ ଚାକରାଣୀ । ହପ୍ତାକେ ଦି ଥର ଆସେ, ହପ୍ତେଇ ୧୪୦ ଡଲାର୍ । ସକାଳ ନ'ଟାରେ ବସ୍ ଷ୍ଟାଣ୍ଡ୍‌ରୁ ଗାଡ଼ିରେ ଘେନିଆସେ, ଚାରିଟା ବେଳେ ଛାଡ଼ିଦିଏ ।'

ଚାକରାଣୀକ ସାଆନ୍ତାଣୀ ଆଗେ ନମସ୍କାର କରନ୍ତି । କି ଅଭଲ କଥା !

ଏ ଦେଶରେ କିଏ କି ଚାକିରି କରେ ସେ ଦିଗରୁ ବଡ଼ ସାନ ବିବେଚନା ହୁଏ ନାହିଁ । ଯେ କୌଣସି ତଳ ସ୍ତରର ବୃତ୍ତି ବି ମର୍ଯ୍ୟାଦାହାନିକାରକ ନୁହେଁ ।

ଉଦ-ଇଏ ଦିଜଣ ଡାକ୍ତରି ବ୍ୟବସାୟ କରନ୍ତି । ଏତେ ଘରଦ୍ୱାର ସଫା କରିବ କିଏ ? ଗୋଟି ଗୋଟି ଲୁଗାପଟା ଇସ୍ତ୍ରି କରିବ ବା କିଏ ? ଘର ସଜାସଜି, ଟୁକ୍‌ଟାକ୍ ରନ୍ଧାବଢ଼ା ନିଜେ କରିନିଅନ୍ତି । ଗୋଟିଗୋଟି ବାସନ ମାଜିବ କିଏ ?

ଚାକରାଣୀ ବିନା ଘର ଅଚଳ । ପଳାଇବା ଭୟ ମନରେ । ସଙ୍ଗେ ସଙ୍ଗେ ଆଉ ଗୋଟିଏ ଖୋଜି ପାଇବା ଦୁଷ୍କର, ତେଣୁ କଣ୍ଠକୁ ଅସ୍ୱାଭାବିକ ଭାବେ କୋମଳ କରି ଘରଣୀ ଇଏ କଥା କହେ । କାଳେ ତା ମନରେ ଆଘାତ ଲାଗିବ, ଏଥିଲାଗି ପଦେ ପଦେ ସତର୍କ ଥାଏ ।

ଆନ୍ ହାତରେ ଘରର ଚାବି, ଇଏର ଅନୁପସ୍ଥିତିରେ ଘର ମାଲିକାଣୀ ସେ, ସେ ବାଢ଼ି ଆଣି ଖାଏ—ଯେତେ ଇଚ୍ଛା ମାଛ, ମାଂସ, ଫଳ ରସ ବା ଫଳ,

ଛେନା ବା ରସ ମଲାଇ କମ୍ବା ଆଇସ୍‌କ୍ରିମ୍ । କିଛି କଟକଣା ନାହିଁ । ଅଖଣ୍ଡ ସ୍ୱାଧୀନତା । ଚେଷ୍ଟା କରିବା ଶୁଣା ନାହିଁ ।

ଏହି ଯୁବତୀର ପାରିବାରିକ ଜୀବନ ଭାଙ୍ଗିଯାଇଚି । ଏ ଦେଶରେ ଏଟା ମାମୁଲି କଥା । ଭଙ୍ଗାଗଢ଼ା ନିତ୍ୟ ନୈମିତ୍ତିକ । କିନ୍ତୁ ଏ ମଧ୍ୟରେ କେତେ ବର୍ଷ ଗଲାଣି । ସଂସାର ଗଢ଼ା ହୋଇନାହିଁ । ବୟସ ବଢ଼ି ଚାଲିଛି । ପଞ୍ଚାଳିଶ ପାରିହେଲେ ଆଉ ସମ୍ଭାବନା ରହିବ ନାହିଁ ।

କେତେ ସତ, କେତେ ମିଛ କିଏ ଜାଣେ ? ଏ କଥା କିଏ କହେ, ଶୁଣିବାକୁ କାହାର ବା ଅବସର ଥାଏ ? ତେବେ ଯାହା ଜଣାପଡ଼େ—ଆନ୍ ଶାନ୍ତ, ଶିଷ୍ଟ, ଭଦ୍ର; ତାର ନିଜରି ସ୍ୱାମୀ ଘୋର ମଦ୍ୟପ, ଘରେ ଉପଦ୍ରବ କରେ । ଆନ୍‌ର ଦୁଇଟି ଗର୍ଭସ୍ଥ ସନ୍ତାନକୁ ସେ ଗୋଇଠା ମାରି ହତ୍ୟା କଲା । ତା ପରେ ଆନ୍ ଛାଡ଼ପତ୍ର ଦେଲା । ଭାରତରେ ଏପରି କେତେ ଦୁଃଖିନୀ ଧନ୍ଦା କରି ଜୀବନ ବିତାନ୍ତି । ଆନ୍ ସେହିପରି କରୁଣାମୟୀ । ନ ପଚାରିଲେ ସେ କିଛି କହେ ନାହିଁ । କାମ କରି ଚାଲିଥାଏ । ସେ ହସେ ନାହିଁ । ହସିବାର ସଙ୍ଗତ ନାହିଁ ବୋଲି । ବ୍ୟବସାୟୀ ଦେଶରେ ଥିଲେ ବି କିଛି ଚାଲ୍ ତାକୁ ମାଲୁମ୍ ନାହିଁ । ସ୍ୱାମୀ ନାହିଁ, ପୁଅ କନ୍ୟା ନାହାନ୍ତି । ଧନସମ୍ପଦ ନାହିଁ । ସେ ହସିବ କେଉଁ ଭରସାରେ ?

## ବଙ୍କା ବଙ୍କା ଦେଖି ଲତା

ସେମିତି ଆମ ଘର ସାମ୍ନା ରାସ୍ତାଟି ବଙ୍କେଇ ଟଙ୍କେଇ ଚାଲିଚି । ଯାନ ଯାତାୟାତ କରେ କେବଳ ସ୍ଥାନୀୟ ଲୋକଙ୍କର, ଗଲା ଅଇଲା ବେଳ ଛଡ଼ା ରାସ୍ତାଟି ଶୋଇଥାଏ, ନୀରବ, ନିଶ୍ଚଳ ।

ଯାନର ଉପଦ୍ରବ ନାହିଁ । ବୁଲାଳିଙ୍କ ଅମରାବତୀ । ଏହା ବାହାରକୁ ଗଲେ ବିପଦ । ତେଣୁ ଏଇ ଶାଖା ରାସ୍ତା ମୁଣ୍ଡରୁ ମୋର ଯାତ୍ରାରମ୍ଭ, ରାସ୍ତା ଶେଷରେ ଶଙ୍କ ଉପରେ ଟିକିଏ ଥକା ମାରେ, ସାମ୍ନା ହାଇୱେରେ ତୋଫାନ୍ ଗତିରେ ଯାନ ଯାତାୟତ ଦେଖେ, ତାପରେ ବାହୁଡ଼ା ।

ମୋ ଜୀବନ ସଙ୍ଗିନୀ କେବେ ମୋର ଯାତ୍ରା ସଙ୍ଗିନୀ ହୋଇନାହିଁ । ଏ ବାରବୁଲାଟା ସଙ୍ଗେ ବାରବୁଲୀ ହେବାର ତାର ଅପସନ୍ଦ । ହେଲେ ବି ସେ ଜଣେ ବୁଲୀ । ବାଡ଼ିରୁ ବାଡ଼ି, ହାଣ୍ଡିଶାଳରୁ ବୈଠକ ଘରେ ତାର ବୁଲା: ପୋଛାପୋଛି, ଝାଡ଼ାଝଡ଼, ଦୁଆର ଫିଟା, ଦୁଆର ଦିଆ । ହିସାବକଲେ ତା ଚଳାପଥ ମୋଠାରୁ

ଦୀର୍ଘତର ହେବ । ହେଲେ ଏ ଘରବୁଲା ବୁଲାକୁ ଲେଖା ନୁହେଁ, ସଂସାରର ଅଧାରୁ ଅଧିକ ଲୋକ ଘରେ, ବାଣ୍ଡବଜିଗୁରେ ବୁଲଲେ ବି, ମୋ ଘରଣୀ ଦୋକାନର ବିଜ୍ଞାପନୀ ନମୁନା ରୂପସୀ ପରି ଏକ ଘର ମଣ୍ଡନ ନୁହେଁ; ଘର ଯନ୍ତ୍ରାକୁ ଅଜନ୍ତା-କରିବାରେ ଲାଗିଥାଏ ଦିନରାତି । ଘରର ଦୁର୍ଦ୍ଦାନ୍ତ ପାଣିପାଗକୁ ପୋଷା ମନେଇ ଅନୁକୂଳ କରିବାରେ ତା ଯତ୍ନର ଅନ୍ତ ନାହିଁ ।

ଅତି ଆଶ୍ଚର୍ଯ୍ୟ କଥା, ବଜାରସଉଦା କରି ଦିନଯାକ ବୁଲଲେ ବି ତାକୁ କ୍ଳାନ୍ତ ଲାଗେ ନାହିଁ । କିନ୍ତୁ କିଛି କାମ ନ ଥାଇ ବୁଲଲେ ତା ଗୋଡ ଘୋଳା କରେ ।

ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ, ସତ । କିନ୍ତୁ ବାରବୁଲା, ଘର ବା ବାହାର ସବୁ କଳରେ ନାକ ପୂରାଉଥିବା କଳିଆ ନାରଦ ମୁନିଙ୍କ ଉଡ଼ନ୍ତା ଯାନ ଢିଙ୍କିକି ଅବସର କାହିଁ ଯେ ଯେ ଧାନ କୁଟିବ ? କିନ୍ତୁ ମୋ ଢିଙ୍କିଟା ସବୁ-ବେଳେ ଧପଡ଼ ଧପଡ଼ । ସେ ନ କୁଟିଲେ ତା ଲଞ୍ଜିରେ, ପଖାରେ, ପାହୁରୁଣୀ ଆଉ ସମାରେ ଅଳସ ଜମେ ।

ଘରେ ଏତେ କାମ କରୁଥିଲା । ଏଠି କି କାମ କରିବ ? ଅଇଲବେଲୁ ଲତାର ହାତ ଖୁଜୁବୁଜୁ । ଇସ୍କୁଠାରୁ ସ୍ୱେଚ୍ଛେଇର ଯାନ୍ତ୍ରିକ କାଇଦାଟି ଶିଖିବାରେ ଲାଗିଛି ସେ । କାଲିଅନ୍ଧାରୁ ତା ଜଞ୍ଜାଳ ଲାଗିଥାଏ, ଯଦି ବା ସ୍ୱେଷେଇଟା ଏଠି ଦୈନନ୍ଦିନ ବିଷୟ ନୁହେଁ ବା ଜଞ୍ଜାଳମୟ ନୁହେଁ ।

ବଙ୍କାବଙ୍କା ରାସ୍ତାରେ ମୁଁ ଏକୁଟିଆ । ରାସ୍ତାରେ ଅଳ୍ପକେତୋଟି ମାତ୍ର ଘର; ବନ, ଉଦ୍ୟାନ ଆଉ ସବୁଜ ପ୍ରାନ୍ତରର ଘେର ମଧ୍ୟରେ । ପାଚେରି ନାହିଁ । ସ୍ୱା ହତାରେ ତା ବାଡ଼ି ମିଶେ । ପଡ଼ିଆ ବଡ଼ବଡ଼ ଗଛ ପତ୍ରରେ ନବୁଜ, ଗାଢ଼ ସବୁଜ । ତା ମନ କଥା ଝିଙ୍କାରି କହେ, ପକ୍ଷୀ କହି ଶେଷ କରି ନ ପାରିଲେ । ତାପରେ ବି ବହୁତ କିଛି ଅକୁହା ରହିଲେ ସେ ନିଜେ କହେ, ଘନ ମର୍ମରରେ ।

କ୍ୱଚିତ୍ ଏ ପଥରେ ପଦ ଗୁଳେ; ସକାଳେ ସନ୍ଧ୍ୟେ ଖଣ୍ଡିଦଉଡ଼ା ଦେଇ ଯୁବକ ଯୁବତୀ କସରତ୍ କରନ୍ତି, ବଢ଼ିକା ଓଜନ ଓ ଚର୍ବି ଉଣା କରିବା ଲାଗି । ବଣୁଆ ମାଗ୍ନୋଲିଆ ଫୁଟେ; ଫୁଟେ, ଝଡ଼େ । ନାଟଚ ବଗିଚାର ଫୁଲ, ଲାଲିତ ସେ । ଥରେ ଘାସଫୁଲ; କାଲେ କଟିଯିବ ଏଇ ଭୟରେ । କଟାକଟିର ଯନ୍ତ୍ରଣା ମଧ୍ୟରେ ହସଟିଏ ଫୁଟାଇଛି, ସଗ୍ରାମର ସ୍ୱେଦରେ । ଏ ସୌନ୍ଦର୍ଯ୍ୟ ଅତିରିକ୍ତ, ତେଣୁ

ବର୍ଜନୀୟ । ଘାସଠାରୁ ପୁଷ୍ପ କେହି ଆଶା କରେ ନାହିଁ, ସମସ୍ତେ ଉପଭୋଗ କରନ୍ତି ତାର ସବୁଜ ଯୌବନ । ଟୋପି ଟୋପି ଜାକରରେ ଦେଖେ ତାର ଅଶ୍ରୁ । ଏ କାରୁଣ୍ୟ ବୁଝିବାକୁ ଅବସର କାହିଁ କାହାର ? ସମସ୍ତେ ଧାଇଁଛନ୍ତି ପାଗଳ ପରି । ଅର୍ଥ ବିନା ଜୀବନ ଅଚଳ ।

ରବର୍ଟ୍ ଗୁଣ୍ଡୁଚିଅଇଁଠା ଆପଲ୍‌ରେ ଫୁଟବଲ୍ ଖେଳେ । ଭୋଜନ ଉପରେ ଭୋଜନ ମିଳିଲେ ଏ ଚେଲବହିରପଣ ବାହାରେ । ରବର୍ଟ୍ ଛଳରେ ଗୋଡ଼ାଉଁ ଗୋଡ଼ାଉଁ ବସିଯାଏ କୁକୁର; ବନ ପଥରେ ମହାବଳଟାଏ ଲଙ୍ଗୁଡ଼ ପିଟି ବସିଗଲା ପରି । ଆତଙ୍କରେ ଦେହ ଶୀତେଇ ଉଠେ । ବାଘ ହେଣ୍ଟାଲେ ନାହିଁ, କୁକୁର ଗର୍ଜେ, ଆତଙ୍କକୁ ଘନତର କରିବା ଲଗି । କିଛି ନ ଘଟିଲା ପରି ମୁଁ ଚାଲେ, ମାତ୍ର ଥରଟିଏ ତା ଆଡ଼କୁ ଅନାଇ ଦେଇ ।

ତା ଅର୍ଥ—ରାଜପଥରେ ତୋର ଯେତିକି ଅଧିକାର, ମୋର ସେତିକି । ଘର ଜଗିବା ତୋର କର୍ତ୍ତବ୍ୟ, ରାଜପଥ ନୁହେଁ । ମୋ ସୀମା ଜଗି ମୁଁ ଚାଲିଛି, ତୋ ଗୁରୁଗୋସେଇଁଙ୍କ ହତା ମାଡ଼ିନାହିଁ, ବୁଝିଲୁ ? ମିଛକୁ ବକ୍‌ବକ୍ କରୁଛୁ କାହିଁକି ? ତୋ ଗୋସେଇଁଙ୍କର ଖାଏ, ନା ତୋର ଧାରେ ?

ଆରେ ହେ ଅଲପେଇସ, ଶୁଣ୍, କୁକୁର ଭୁକେ, କର୍ମୀ ତା କର୍ମ କରିଯାଏ ।

କଥାରେ ଅଛି—ଭୁକିଲା କୁକୁର କାମୁଡେ ନାହିଁ । କିନ୍ତୁ ବେଳେବେଳେ କୁକୁର ଭୁକେ ଓ କାମୁଡ଼େ, ମେଘ ଗର୍ଜେ, ଆଉ ମୂଷଳ ଧାରରେ ବର୍ଷେ । ତେଣୁ ଗୁରୁ ଶଙ୍କା ।

ନିରାପଦ ସ୍ଥଳକୁ ଚାଲିଗଲା ପରେ ବୁଝିଲି—କୁକୁର ମୋ ଦେହକୁ କାମୁଡ଼ିନାହିଁ, କାମୁଡ଼ିଛି ମୋର ମନକୁ । ତାର ଆତଙ୍କ ମୋର ମର୍ମେ ମର୍ମେ । ନଇଲେ ଆତଙ୍କଜନକ ପରିସର ଅତିକ୍ରମ କଲା ପରେ ଏତେ ଆନନ୍ଦ ଆସୁଛି କାହିଁକି ?

ଅହିଂସା ଚଳନ୍ତା, ଖୁବ୍ ଆତ୍ମବିଶ୍ୱାସ ଓ ଗୁଢ଼ଦମ୍ଭ ମୋର ଥିଲେ, ହିଂସାକୁ ତେଣୁ ହିଂସ୍ର ବଳରେ ସମ୍ମୁଖୀନ ହେବା ଲଗି ମୋର ଚେଷ୍ଟା । ଏବେ ବାଡ଼ି ଖଣ୍ଡିଏ ଧରିଲେ ରାସ୍ତାକୁ ବାହାରେ, କୁକୁର ତା ମାନେ ବୁଝେ । ନିରାପଦ ଦୂରତାରେ ରହି ଭୁକେ ସିନା, ହଠାତ୍ ପାଖକୁ ଚମକି ଆସେ ନାହିଁ ।

## ଏକା-ଏକା ଏକୁଟିଆ

ହୋଟେଲର ଠାକୁରେ ଚନ୍ଦ୍ରଦଳରେ ବସି ଦ୍ୱାରେ ଦ୍ୱାରେ ବୁଲି ଭୋଗ ଖାନ୍ତି । କାନ୍ଥଆଳୀ ନ ମିଳିଲେ ତାଙ୍କ ଗୃହଚଙ୍ଗୀ ଭୋଗଷିଆ ବନ୍ଦ ହୋଇଯାଏ । ସେମିତି ଆମ ଦଶା । କଏ ବୋହୂନେଲେ ଯାଉ, ନଇଲେ ଟେଲିଭିଜନ ଦେଖୁ, ବସିବସି ବହି ପଢ଼ୁ । ବୁଢ଼ିଘର ଧରି ହଦ, ଇଗ୍ର କାର୍ଯ୍ୟବ୍ୟସ୍ତ; ଲତା ହୋଷ୍ଟେଲଶାଳରେ । ମୁଁ କଣ ଏକୁଟିଆ ବସି ମାଳି ଜପିବି ? ବହି ମୋର ଜୀବନସଙ୍ଗୀ । ମୁଁ 'On living alone'; 'The last third life' ନାମକ ଦୁଇଖଣ୍ଡି ବହି ଲାଇବ୍ରେରୀରୁ ବାଛିନେଇ ପଢ଼ିଲି—ଦୁଇଟିଯାକ ବୟସୋପଯୋଗୀ—ପୃଥିବୀର ବୁଢ଼ାମାନେ କେମିତି କାଳ କଟାନ୍ତି ।

କେହି ଏକୁଟିଆବାଆସ୍ତ କରେ ନାହିଁ । ଆପେ ଆପେ ବୁଢ଼ା ବୟସରେ ମଣିଷ ଏକୁଟିଆ ହୋଇଯାଏ । ଆମେରିକା, ଇଉରୋପରେ, ଭାରତରେ ବି ଏ ସମସ୍ୟା ଉତ୍କଟ । ପୁଅ କନ୍ୟାମାନେ ପିତୃ ପରିବାରରୁ ବିଚ୍ଛିନ୍ନ—ଅନ୍ୟତ୍ର ଚାକିରି ବା ବ୍ୟବସାୟ କରୁଛନ୍ତି । ବୁଢ଼ାବୁଢ଼ୀଙ୍କ ହାଲଚାଲ ବୁଝେ କିଏ ? ପାଖକୁ ଯେଉଁଗଲେ ବି ସେମାନେ ସମ୍ଭାଳି ହୋଇ ରହିପାରନ୍ତି ନାହିଁ । ପରିବେଶ ଓ ବନ୍ଧୁବାନ୍ଧବଙ୍କଠାରୁ ବିଚ୍ଛିନ୍ନ । ମୂଳହୁଁ ବୃକ୍ଷ କେତେ କାଳ ରହିପାରିବେ ? ନୂଆ ବନ୍ଧୁତା ଅର୍ଜିବାର ବୟସ ଏ ନୁହେଁ । ବୁଢ଼ାବୁଢ଼ୀଙ୍କ ସଙ୍ଗେ ଗପିବାକୁ କାହାକୁ ସୁଖ ଲାଗେ ? ବିନା ସ୍ୱାର୍ଥରେ କେତେ ଜଣ ଆସନ୍ତି ? ଭଲ ଖାଇଲେ ବା ଭଲ ଚିକିତ୍ସା ପାଇଲେ ଏ ସମସ୍ୟାର ସମାଧାନ ହୋଇଯାଏ ନାହିଁ ।

ବୁଢ଼ା ହେବା କଣ ଲାଜର କଥା ? ବୟସକୁ ଲୁଚାଇବାରେ ଏତେ ଅପଚେଷ୍ଟା କାହିଁକି ?

ବୁଢ଼ାହେବା ଏକ ସ୍ୱାଭାବିକ ଘଟଣା । କେତେ କାଳ ତାକୁ ଲୁଚାଯାଇ ପାରେ ? ଅଙ୍ଗ କ୍ଷୀଣ, ଗତି ମନ୍ଥର, ମତି ବିଚଳିତ, ସ୍ୱର କମ୍ପିତ; ଅବକ୍ଷୟକୁ କେତେ କାଳ ରୋକାଯାଏ ?

ଆଲୋକ ମିଣ୍ଟି ମିଣ୍ଟି; ତଥାପି କଣ ଦୀପ କିଛି ଅନ୍ଧାର ଦୂର କରି ପାରିବ ନାହିଁ ? ଶେଷ ଜୀବନ ବିନ୍ଦୁ କିଛି ସତ୍ କାର୍ଯ୍ୟରେ ଲଗାଇ ହେବ ନାହିଁ ? ତା ନ ହେଲେ ମୃତ୍ୟୁ ଭୟ ମନରୁ କିପରି ଦୂର ହେବ ? ସାହସ ସହିତ କିପରି ବା ମୃତ୍ୟୁର ସମ୍ମୁଖୀନ ହୋଇପାରିବ ।

ନିଜେ ଘର ତିଆରି କରିଛ, ସଂସାର ଗଢ଼ିଚ, ବ୍ୟବସାୟ ଯୋଡ଼ିଚ । ସବୁ କରି ଯଦି ତୁମେ କହୁଛ ବୃଦ୍ଧ, ଗୋବରଗଣେଶ, ବସିବସି ଅନ୍ନ ଧ୍ୱଂସ କରୁଚ ବୋଲି ଉତ୍ତରାଧିକାରୀ କହେ, ସହିହେବ ନାହିଁ । କହିଲେ ବି ଯେ ଘରେ ରହିହେବ ନାହିଁ । ମୁହଁ ବୁଜି ବୁଢ଼ା ଦୁଶ୍ଚିନ୍ତାରେ ସଢ଼େ । ନିଜକୁ କୋରିକୋରି କଙ୍କାଳ କରେ ।

ଶାରୀରିକ ଦୁର୍ଭୋଗ, ମାନସିକ ଦୁଶ୍ଚିନ୍ତାର ବଡ଼ ଔଷଧ କଣ ? ଆଧ୍ୟାତ୍ମିକ ଭାବ । ଈଶ୍ୱରଙ୍କ ସହ ସଖ୍ୟ ପ୍ରତିଷ୍ଠା, ବିନମ୍ର, ବୈରାଗ୍ୟ । ଧାରଣା, ସତ୍‌ଚିନ୍ତା, ସତ୍‌ କାର୍ଯ୍ୟ ଯୋଗୁଁ ବୟସ୍କ ନମସ୍ୟ ହୋଇଉଠେ ।

ପ୍ରକୃତି ଅନ୍ୟ ଏକ ଆନନ୍ଦର ଉତ୍ସ । ଉଷା, ସନ୍ଧ୍ୟା, ଚନ୍ଦ୍ରିକା, ତାମିଚରୁ, ସବୁଜରୁ ବୟସ୍କ ଅପୂର୍ବ ଆନନ୍ଦ ଓ ଶାନ୍ତି ଲଭ କରେ । ଏକୁଟିଆର ପ୍ରାଣସଙ୍ଗିନୀ ପ୍ରକୃତି । ପ୍ରକୃତି ନିଃସଙ୍ଗକୁ ସଙ୍ଗ ଦିଏ, ପ୍ରସନ୍ନ, ପ୍ରଫୁଲ୍ଲ ରଖେ ।

ବାର୍ଦ୍ଧକ୍ୟ ସୁନ୍ଦରତମ ଶରତ୍‌ ଗୋଧୂଳି, ଚାହିଁଲେ ଏହା ସମସ୍ତ ସଂସାରକୁ ରଙ୍ଗୀନ୍‌ ରଖିପାରେ ।

ମନକୁ ଅସ୍ଥିର, ଚଞ୍ଚଳ କରନାହିଁ, ତୃଷ୍ଣାରୁ ଦୂରରେ ରହ । ସ୍ଥିତଧୀ ହୁଅ, ମଇଳା ପାଣି ସ୍ଥିର ରହିଲେ ନିର୍ମଳ ହୁଏ । ସେହିପରି ଜଞ୍ଜାଳଗ୍ରସ୍ତ ମନ ।

ନୀରବ ରହ, ଅନ୍ତର ଭିତରୁ ଗୁରୁ ଗମ୍ଭୀର ବିବେକର ବାଣୀ ଶୁଣ, ନିଜ ଭିତରେ ହିଁ ଭଗବାନ୍‌ । ପରିଚ୍ଛନ୍ନ, ପ୍ରସନ୍ନ ଅନ୍ତରରେ ସେ ପରିସ୍ଫୁଟ ହୁଅନ୍ତି ।

ବିଜ୍ଞତା ଅଭାବରୁ ଆମେ ହାତପାଆନ୍ତା ସ୍ୱର୍ଗଲୋକକୁ ନରକକୁଣ୍ଡରେ ପରିଣତ କରୁ । ଯାହା ଆନନ୍ଦର ରଶ୍ମିରେ ଭାସ୍ୱର, ତାକୁ କାଳିମାମୟ କରୁ । ସମୟର ଉପଯୁକ୍ତ ଉପଯୋଗ ନ କଲେ ସେ ପାହାଡ଼ ପରି ମୁଣ୍ଡ ଉପରେ ନଦି ହୁଏ, ମଣିଷକୁ ତଳକୁ ତଳକୁ ଚାପି ନିଃଶେଷ କରିଦିଏ ।

## ମଣିଷ ବୁଲିଲେ ମରେ ?

କଥା ଅଛି—ବାଉଁଶ ଫୁଲିଲେ ମରେ
ମଣିଷ ବୁଲିଲେ ମରେ

ଦ୍ୱିତୀୟଟି ସତ୍ୟ ███ ନୁହେ । ୮୬ ବର୍ଷ ବୟସରେ ଯାଯାବରୀ ଆମେରିକାୟ ଡକ୍ଟର ଲିଣ୍ଡେଲ୍‌ ଭ୍ରମଣରେ ବାହାରିଛନ୍ତି । ଭ୍ରମଣ ତାଙ୍କ ସ୍ୱାସ୍ଥ୍ୟ

ଦିଏ, ବକ୍ସିବାର ଦମ୍ ଦିଏ । ନିଜକୁ ଗଡ଼ିଗଲେ ବି ସେ ସଚଳ, ସତେଜ ଓ କର୍ମକ୍ଷମ ରହିଛନ୍ତି । ସେ ମୋ ବାରବୁଲା ଜୀବନର ଗୁରୁ । ଏତିକି ତଫାତ୍ ସେ ତାଙ୍କ ପତ୍ନୀ ଭ୍ରମଣସଙ୍ଗିନୀ, ମୋର ନୁହେଁ । କାରଣ ପତ୍ନୀ ମେଳିବାକୁ ତାଙ୍କର ଫୁରସତ ନାହିଁ ।

ସେ ଆଫ୍ରିକାର ଅର୍ଦ୍ଧାଂଶ, ଗୋଟା ଦକ୍ଷିଣ ଆମେରିକା, ଅଷ୍ଟ୍ରେଲିଆ, ଏସିଆ, ଇଉରୋପ, ଆମେରିକା, କାନେଡ଼ା, ମେକ୍ସିକୋ ଦେଖିଛନ୍ତି; ନିଜ ୫୦ ବର୍ଷର ଭ୍ରମଣ ଡାଇରୀ ବି ଲେଖିଛନ୍ତି । ହେଲେ ଗୋଟିଏ ବି ଛପାଇବାକୁ ସାହସ କରିନାହାନ୍ତି । ସେ ପ୍ରାକୃତିକ ଶ୍ରୀ ଉପଭୋଗ କରନ୍ତି, କିନ୍ତୁ ତାକୁ କଳାତ୍ମକ ରୂପ ଦେଇ ପାରନ୍ତି ନାହିଁ । ସାହିତ୍ୟିକ ଶକ୍ତିର ଶୋଚନୀୟ ଅଭାବ ।

ଭାରତ ଭ୍ରମଣରେ ଆସି ସେ କେବଳ କଦଳୀ ଖାଇ ଜୀବନ ଧାରଣ କରିଥିଲେ । ହୋଟେଲ ଖାଦ୍ୟ ଉପରେ ତାଙ୍କର ବିଶ୍ୱାସ ନାହିଁ । ଘରେ ବ୍ୟବହୃତ ଅଟା ସେ ନିଜେ ପ୍ରସ୍ତୁତ କରନ୍ତି, ବାଡ଼ିରେ ଯାବତୀୟ ପରିବା ଉତ୍ପାଦନ କରନ୍ତି ।

କାଶ୍ମୀରର ଅପରୂପ ଭଣ୍ଡାର ସେ । ସେପଟେ କହିଲେ ସରେନାହିଁ । ପ୍ରାକୃତିକ ଦୃଶ୍ୟର ପେଣ୍ଟିଂ କରନ୍ତି । କିନ୍ତୁ ସୌନ୍ଦର୍ଯ୍ୟ ଅନୁଭବକୁ ସେ ଅକ୍ଷରରେ ରସାଳ ରୂପ ଦେଇ ପାରନ୍ତି ନାହିଁ ।

ସେ ଉଦାର ଧର୍ମବାଦୀ, ନିଜ ଘରେ ଉଦଇସ୍ତଙ୍କର ବିଶ୍ରାମଘର କରେଇଛନ୍ତି । ସେ ଆମ ଜଳ ଲୋକ । ଆମକୁ ଦେଖି ଆସିଛନ୍ତି । ତାଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା ।

କଥା କହିଲା ବେଳେ ସେ କେତେ ଶବ୍ଦ ଗିଳି ପକାନ୍ତି ନାହିଁ, ହାଓ୍ୱାରେ ଉଡ଼ାଇ ଦିଅନ୍ତି ନାହିଁ । ତରତର କରି କହନ୍ତି ନାହିଁ । ତାଙ୍କ ପକ୍ଷରେ କୌଣସି ଶବ୍ଦଟି ଅବହେଳାର ବା ଅବଜ୍ଞାର ନୁହେଁ, ତାଙ୍କ କଥା ମୁଁ ସବୁ ବୁଝିପାରେ । ତାଙ୍କ ଚରିତ୍ର, ଚଳଣି ମଧ୍ୟ ମୋ ପକ୍ଷେ ଏକ ସରଳ ରେଖା ପରି ସୁବୋଧ, ତାଙ୍କ ମତ, ଆଦର୍ଶ ଓ କର୍ମକୁ ମୁଁ ସମ୍ମାନ କରେ । ମୋ ଚିହ୍ନା ଆମେରିକାନ୍ମାନଙ୍କ ମଧ୍ୟରେ ତାଙ୍କୁ ସବୁଠାରୁ ଭଲ ପାଏ ।

ଡକ୍ଟର ଲିଣ୍ଡେଲ୍ ଜଣେ ଜ୍ଞାନୀ, ତାଙ୍କ ଅନୁସନ୍ଧାନ ଓ ଗବେଷଣାର ଅନ୍ତ ନାହିଁ । ପୃଥିବୀର କୌଣସି ବିଷୟରେ ସେ ଭାବି ନାହାନ୍ତି ? ଇତିହାସ, ଭୂଗୋଳ, ଭୂତତ୍ତ୍ୱ, ଭାଷାତତ୍ତ୍ୱ, ନୃତତ୍ତ୍ୱ, କୀଟତତ୍ତ୍ୱ, ଆବିଷ୍କାର, ଉଦ୍‌ଭାବନ—ସେ କୌଣସି ବିଷୟରେ ଗବେଷଣା କରିଥିଲା ପରି ସେ କଥା କୁହନ୍ତି । କିଛି ପ୍ରଶ୍ନ ନିରୁତ୍ତରରେ ଫେରେ ନାହିଁ ।

କଳା ଲୋକଙ୍କୁ ନିଜ ପରିବାରର ଲୋକ ପରି ସେ ଶ୍ରଦ୍ଧା କରନ୍ତି, ପାଠ ପଢ଼ାଇ ଉଚ୍ଚାଙ୍ଗ ମଣିଷ ଭାବେ ସେମାନଙ୍କୁ ଗଢ଼ିବାରେ ତାଙ୍କ ଚେଷ୍ଟାର ଅନ୍ତ ନାହିଁ ।

ଦିନେ ତାଙ୍କ ଗୋଚ୍ଛ ଗୋଚ୍ଛ ଡାଇରି ଦେଖିଲି; ମନରେ କାରୁଣ୍ୟ, ଏତେ ଶ୍ରମରେ ଲିଖିତ ଏ ସବୁର ଦଶା କଣ ହେବ ? ପଚାରିଲି—ଆପଣଙ୍କ ବାରବୁଲା ଜୀବନର ରଙ୍ଗିଣି ରଙ୍ଗିଣି କାହାଣୀ ପଢ଼ିବାର ସୁଯୋଗ ଦେଉନାହାନ୍ତି କାହିଁକି ?

ଡଜନର ପାଣ୍ଟି ଖୋଲିବା ଆଗରୁ ମିସେସ୍ ଉତ୍ତର ଦେଲେ—ଏ ତ ଆମ ଯିବା ଆସିବାର ବିବରଣୀ; ରସର ସ୍ରାବ ନ ଥିଲେ ପଢ଼ିବ କିଏ କାହିଁକି ?

"ଆପଣଙ୍କ ଡାଇରି ମହାଭାରତ ପରି ବିରାଟ, କୋଉଠି କିପରି ସୁଖ-ପାଠ୍ୟ ଅଂଶ ଅବଶ୍ୟ ଥିବ । ବାଛି ବାଛି ଛାପିଲେ କିପରି ହୁଅନ୍ତା ?"

"ବହୁତ ପରିଶ୍ରମ ପଡ଼ିବ; ତା ଅପେକ୍ଷା ମକ୍‌କା ଗୃପ କରିବା ଭଲ । ଆପଣ ସାହିତ୍ୟ ଲେଖି କଣ ପାନ୍ତି ?"

"କିଛି ପଇସା ପାଏ । ଅବଶ୍ୟ ସେତିକି ସମୟରେ ଅନ୍ୟ କାମ କଲେ ବହୁତ ମିଳନ୍ତା ।

କିଛି ଯଶ ପ୍ରତିଷ୍ଠା ବି ମିଳେ । ସବୁଠାରୁ ବଡ଼ ଲାଭ ଲେଖିଲା ବେଳର ଆନନ୍ଦ । ମନକୁ ଉତ୍ଫୁଲ୍ଲ ରଖିବାର ବଡ଼ ଭିଟାମିନ୍ ।"

"ଦେଖିବାରେ ମୋର ଯାହା କିଛି ଆନନ୍ଦ । ଲେଖି ବସିଲେ ସେ ଆନନ୍ଦ ନିଃସ୍ୟନ୍ଦନୀ ଶୁଷ୍କ ହୋଇଯାଏ ।"

"ଏବେ କି ଆପଣ ଭ୍ରମଣ କଳ୍ପନା କରୁଛନ୍ତି ?"

"ଭ୍ରମଣ ମୋ ଜୀବନ । ଯେବେ ଭ୍ରମଣରେ ଯିବାକୁ ଅସମର୍ଥ ହେବି, ମୋର ଜୀବନଲୀଳା ଶେଷ ହୋଇ ଆସିଲା, ଜାଣିବ ।"

"ଏଥର କୋଉଠିକି ଯିବା କଳ୍ପନା କରୁଛନ୍ତି ?"

"ସେ କଥା ଆଗରୁ ଭାବି ବସେ ନାହିଁ । ଦିନେ ହଠାତ୍ ଦୂରର ଡାକ ଆସେ—ଆଇସ୍‌ଲଣ୍ଡ୍, ସେଣ୍ଟ୍‌ହେଲେନା, ମାଡ଼ାଗାସ୍କାର, ମଙ୍ଗୋଲିଆ ବା ଆଲେସ୍କା ହୋଇପାରେ ।"

"ଏ ବୟସରେ ଆପଣଙ୍କ ସ୍ୱାସ୍ଥ୍ୟ କିପରି ଏତେ ଭଲ ଅଛି ?"

"ନିଜ ହାତରେ ପ୍ରସ୍ତୁତ କୋଡ଼ିଏଟି ଭିଟାମିନ୍ ଦୈନିକ ଖାଏ । କୁସ୍ତି-କସରତ କରେ । ଯୋଉ ବହି ଡାକ୍ତର ନିଜେ ପଢ଼ି ନ ଥିବେ, ସେ ସବୁ ପଢ଼ି ଭିଟାମିନ୍ ପ୍ରସ୍ତୁତ କରେ । ସଦା ଅର୍ଥୋପାର୍ଜନରେ ବ୍ୟସ୍ତ, ବହି ପଢ଼ିବାକୁ ଡାକ୍ତରଙ୍କର ସମୟ କାହିଁ ?"

"ମିସେସ୍ ଲିଣ୍ଡେଲ୍‌ଙ୍କ ବୟସରେ ତ କିଛି ଜାଣିଲି ନାହିଁ ?"

"ସେ ଭଲ ଘରଣୀ, ମୋ ମନ ଜାଣି ରାନ୍ଧି ଖୁଆନ୍ତି, ଭିଟାମିନ୍ ପ୍ରସ୍ତୁତିରେ, ଫୁଲ ଫଳ ଗଛ ଲାଳନାରେ ସାହାଯ୍ୟ କରନ୍ତି ।"

"ମୋର ଚିର ସହ-ଯାତ୍ରିଣୀ; ପରସ୍ପର ମୁହଁକୁ ଚାହିଁ ଆମେ ଜୀବନ ବିତାଉ । ତାହା ହିଁ ଆମକୁ ସ୍ୱାସ୍ଥ୍ୟ, ଶାନ୍ତି ଓ ତୃପ୍ତି ଦିଏ ।"

ତା ପରେ ମିସେସ୍ ଲିଣ୍ଡେଲ୍ କହିଲେ—ମୁଁ ଏମ୍. ଏ. ପାସ୍ କରିଛି । ସ୍ୱାମୀ ଚାକିରି କରୁଥିଲେ ସ୍ତ୍ରୀକୁ ଚାକିରି ଦିଆଯିବ ନାହିଁ ବୋଲି ପ୍ରଥମ ମହାଯୁଦ୍ଧ କାଳରେ ଆମେରିକାରେ ଆଇନ୍ ହେଲା । ବହୁ ଚେଷ୍ଟାରେ ଦ୍ୱିତୀୟ ମହାଯୁଦ୍ଧ-କାଳରେ ଚାକିରି ମିଳିଲା । କିନ୍ତୁ କିଛି କାମ ନାହିଁ । କାମ ନ କରି ବେତନ ଭୋଗିବା ଅନ୍ୟାୟ ବିଚାରି ସେ ଚାକିରି ଛାଡ଼ିଦେଲି ।

ତା ପରେ ଶିକ୍ଷୟିତ୍ରୀ ହେଲି । ଘରେ, ବାହାରେ କଠୋର ଶ୍ରମ—ସ୍ୱାସ୍ଥ୍ୟ-ହାନି । ସେହି ଦିନୁଁ ଚାକିରି ଛାଡ଼ି କେବଳ ଘରଣୀ ହୋଇଛି ।"

"ଘରକୁ ଶ୍ରୀ ଓ ଶାନ୍ତିର ମନ୍ଦିର କରି ଗଢ଼ିବାରେ ତାଙ୍କର ସମସ୍ତ ସମୟ ଯାଏ । ସେ ବହୁ ସନ୍ତାନବତୀ । କିନ୍ତୁ କୁଳ ଉଜ୍ଜ୍ୱଳ କରିବାକୁ ଗୋଟିଏ ହେଲେ ବଞ୍ଚିଲି ନାହିଁ ।

ତାଙ୍କ ମନରେ ଦୁଃଖ ବେଦନା ଥିବ, କିନ୍ତୁ କେବେ ପ୍ରକାଶ ପାଏ ନାହିଁ ।

ପଚାରିଲି—'ଆମେରିକାରେ ନାରୀ, ପୁରୁଷ ସମାନ ଅଧିକାର ଭୋଗ କରନ୍ତି ?'

'ହଁ ।'

'ଆପଣ ଆମେରିକାର ସଭାପତି ଆସନ ମଣ୍ଡନ କରିପାରିବେ ?'

"ନିଶ୍ଚୟ ! ଆଇନ୍‌ଗତ ଅନ୍ତରାୟ ନାହିଁ । ଜଣେ ନାରୀ ସେ ପଦର ଭାର ନେବେ ନାହିଁ, ଦକ୍ଷତା ସହ ଶାସନ ଚଳାଇ ପାରିବ, ମୋର ବିଶ୍ୱାସ । କିନ୍ତୁ ସୁଯୋଗ ନ ପାଇଲେ କିଏ କିପରି ଜାଣିବ ? ଇନ୍ଦିରା ଗାନ୍ଧୀଙ୍କୁ ତ ଭାରତ ସବୁ ସୁଯୋଗ ଦେଇଥିଲା । ତା ପରେ ତାଙ୍କ ଦକ୍ଷତାର ପରିଚୟ ମିଳିଲା । ମଣିଷର ସାଧନା ବା କୃତିତ୍ୱର ସୀମା କିଏ ଦେଖି ହୁଏ ?"

ଲୋଏସ୍ ( ମିସେସ୍ ଲିଣ୍ଡେଲ୍‌ଙ୍କ ନାମ ) ଲତାକୁ ଗୋଟିଏ ଡଲାର୍‌ହାର ଉପହାର ଦେଲେ । ନିଜେ ବେକରେ ଚୀନା ସ୍ୱେନ୍‌ର ମାଳାଟିଏ ପିନ୍ଧିଥିଲେ ।

ଆଉ ଦିନେ ଡିନର୍ ଖାଇଲା ପରେ ଡକ୍ଟର ଲିଣ୍ଡେଲ୍‌ଙ୍କୁ ପଚାରିଲି— କାଥୋଲିକ୍‌ମାନେ ମାଳି ଗଡ଼ାନ୍ତି ? ମୋ ପ୍ରଶ୍ନର ଉତ୍ତର ଦେବା ଲାଗି ସେ ତଳୁ ଗୋଟିଏ କାଠ ବାକ୍ସ କାଢ଼ିଲେ । ତା ଭିତରେ ଅନେକ ମାଳି; କୌତୂହଳରେ ପଚାରିଲି- ଆପଣ ନିଜେ ମାଳି ଗଡ଼ାନ୍ତି ନା କ'ଣ ? ଲିଣ୍ଡେଲ୍ ଗୋଟାଏ ଛୋଟିଆ ହସ ହସି କହିଲେ—ଆନୁଷ୍ଠାନିକ ଧର୍ମଙ୍କଥ ମୋଟେ ଜଣା ନାହିଁ । ମୁଁ ଚର୍ଚ୍ଚକୁ ଯାଏ କ୍ୱଚିତ୍ । ମଣିଷପଣ ଯେ ହାସଲ କରିପାରେ, ମୋ ମତରେ ସେ ଠିକ୍ ଧାର୍ମିକ ।

ହେଲେ ଏଇ ଧାର୍ମିକ ଜାତି ବିଷୟରେ ଜାଣିବା ଲାଗି ମୋର ପ୍ରଚଣ୍ଡ ଆଗ୍ରହ । ପୁଣ୍ୟ କରିବା ଲକ୍ଷ୍ୟ । କିନ୍ତୁ ଏମାନେ କେଉଁ ପାପ ନ କରନ୍ତି ?

ଧର୍ମ ଧର୍ମ ମଝରେ ବିଭେଦ କେଉଁଠି ? ବୁଝି ବୁଝି ମୁଁ ଏ ମାଳା ଜପିବା ସାମ୍ୟ ଆବିଷ୍କାର କଲି । ସ୍ୱା କହୁଁ କହୁଁ ସେ ଗୋଟିଏ ମାଳା କାଢ଼ି ଦେଖାଇଲେ —ଏ କାଥୋଲିକ୍ ମାଳି ! ଚର୍ଚ୍ଚର ପ୍ରାର୍ଥନା ମନ୍ଦିରରେ ବସି ବିସପ୍ ଓ ନନ୍- ମାନେ ଜପନ୍ତି । ହେଇ ଏଇଟି ମୁସଲମାନ ମାଳି, ଇରାନରୁ ସଂଗୃହୀତ, ପୀର୍ ବା ଫକୀରମାନେ ଜପନ୍ତି—ସଂଖ୍ୟା ଅନେଶ୍ୱତ । ଏଇଟି ହିନ୍ଦୁ ମାଳି—ସଂଖ୍ୟାରେ ୧୦୮; ବାବାଜୀ ବା ମାତାଜୀମାନେ ଜପନ୍ତି ।

ଘଣ୍ଟାରେ ଲିଣ୍ଡେଲ୍‌ଙ୍କ ଭାରି ସଉକ୍ । ଘଣ୍ଟା କଣ୍ଟା ଉପରେ ଭାରତୀୟ ଟଙ୍କା, ଅଧୁଲି, ସୁକି, ଦଶ ପଇସା ଆଦି ଖଞ୍ଜି ଘଣ୍ଟାଟିଏ ଉଦକୁ ଉପହାର ଦେଇଛନ୍ତି । ନିଜେ ବି ଡଲାର୍, ଡାଇମ୍, କ୍ୱାର୍ଟର୍ ଖଞ୍ଜି ଘଣ୍ଟାଟିଏ ଝୁଲାଇଛନ୍ତି । ନିଜ ବଡ଼ା ଘରେ ଝୁଲାଇଛନ୍ତି ବିବିଧ ଆକାର, ପ୍ରକାରର ବହୁ ଦେଶୀ, ବିଦେଶୀ ଘଣ୍ଟା । ଏତେ ଘଣ୍ଟା ଥିଲେ ବି ଆଳାପ ଆଲୋଚନା ବେଳେ ସେ କେବେ ଘଣ୍ଟାକୁ ଚାହାନ୍ତି ନାହିଁ । ଏତେ ଘଣ୍ଟା ପୋଷିଥିଲେ ବି କେହି ତାଙ୍କର

ପୋଷା ମାନ ନାହିଁ । ସେ କେବେ ଘଣ୍ଟା ଦେଖନ୍ତି ନାହିଁ । ଲେଏସ୍ ତାଙ୍କ ଘଣ୍ଟା । ସେ ଇଙ୍ଗିତ ଦେଲେ କର୍ଣ୍ଣେଲ୍ ବୁଝନ୍ତି—ଲଞ୍ଚ୍ ବା ଡିନର୍ ବେଳ ହେଲା, କମ୍ପାନି ପାର୍ଟିକୁ ଯିବା କମ୍ପା କାହାକୁ ସାକ୍ଷାତ୍ ଦେବା ବା କରିବାର ବେଳ ହେଲା । ସେ ଏଇ ବିଶ୍ୱସ୍ତତମ ସତର୍କ ଘଣ୍ଟିକି କେବେ ଉପେକ୍ଷା କରନ୍ତି ନାହିଁ ।

ଆମେରିକାର ବୈଜ୍ଞାନିକ ଗୌରବଗାନରେ ମୁଖର, ଋଷିଆର କୃତିତ୍ୱକୁ ସେ କାହିଁକି ନ୍ୟୂନତର ମନେ କଲେ କେଜାଣି ? ମୋତେ ପଚାରିଲେ—ଇଗଲ ତ ଚନ୍ଦ୍ରରେ ପାଦ ପକାଇଲା, ଶ୍ୱେତ ଭଲ୍ଲୁକର ଖବର କ'ଣ ?

"ଶ୍ୱେତ ଭଲ୍ଲୁକ କଣ ପାଖରେ ଅଛି ଯେ ଜବାବ୍ ଦେବ ? ମୁଁ ତା ପକ୍ଷରୁ ଦେଉଛି—ଭଲ୍ଲୁକ ପାଦ ଦେବା ମାତ୍ରେ ଇଗଲ ଭୟରେ ଉଡ଼ି ପଳାଇବ ! ଏ ମେଣ୍ଢା ଛୁଆ କି ରବିଟ୍ ନୁହେଁ କି ମୂଷା ନୁହେଁ, ଝୁମ୍ପି ଦେବ ବା ଝାମ୍ପି ନେବ ! ସେ ଗୁନ୍ଦ୍ରା ବା ସିଲ୍ ମାଛ ଖାଇ ଯୋଉ ଶକ୍ତି କମେଇଛି, ତା ଇଗଲର ଅଛି କି ?"

"ବଳ ଅଛି ତ ଚନ୍ଦ୍ରରେ ଓହ୍ଲାଉ ନାହିଁ କାହିଁକି ?"

ଶୁଖିଲା ଚନ୍ଦ୍ର ପାହାଡ଼ଭରା ପାଣ୍ଡୁର ମରୁଭୂମିଟାଏ ମାତ୍ର । ଭଲ୍ଲୁକ ଏ ଦିଗରେ ଆଗେଇବାକୁ ବୃଥା ଅର୍ଥବ୍ୟୟ ବା ସମୟବିନଷ୍ଟି ମନେ କରେ ।

ଏ ଦିଗରେ ପ୍ରତିଯୋଗିତା ବୃଥା, ବରଂ ସହଯୋଗିତାରେ ଗ୍ରହରାଜ୍ୟ ବିଜୟ ମଣିଷଜାତିର ଏକ ବିପୁଳ କୃତିତ୍ୱ ରୂପେ ଗଣ୍ୟ ହୁଅନ୍ତା ।"

ଏତିକି ବେଳେ ଛିଦ କହିଲା—ଭାଇନା ଦଶଟା ବେଳେ ଶୁଅନ୍ତି··· । ଅପୂର୍ଣ୍ଣ ଆଲୋଚନାରେ ଅତୃପ୍ତି, ବିଦାୟ ଜନୋଚିତ; କର୍ଣ୍ଣେଲ୍ ଲମ୍ବାଇ ଦେଲେ ମୋ ବେକରେ ଏକ ଇଗଲ୍ ଗ୍ରୁପ୍‌ମରା ଡଲାର୍ ମାଳା ।

ବିଦାୟ ଘେନି ପଦାକୁ ଆସିଲି । ଟପ୍ ଟପ୍ ବର୍ଷା, ଅନ୍ତରରେ ଜାଗି ଉଠିଲା ପଲ୍ଲୀ ଗାଆଁର ବର୍ଷାସ୍ମୃତି, ଯେତେ ସୁନ୍ଦର, ତତୋଧିକ ଦୁଃଖର ।

# ଗ୍ୱର

## ଏ ଦେହ ଥିଲେ ସର୍ବ ପାଇ

ମଣଥିଲେ ବର୍ଷିକଆ ହୁଅନ୍ତାଣି । ହୁଏତ କେହି ଜୟନ୍ତୀ ବା ଶ୍ରାଦ୍ଧ ପାଳି-ଥାନ୍ତା । କେତେ ଜଣ ଅନ୍ତରଙ୍ଗଙ୍କ ଛଡ଼ା ଅନ୍ୟମାନେ ପାସୋର ପକାନ୍ତେଣି । ଦଇବେ—ବହିଟାଏ ହାତରେ ପଡ଼ିଲେ ଏ ଲେଖକର ଗ୍ଳଇଟା ହୁଏତ ମନରେ ଗ୍ଲଯାନ୍ତା—କହନ୍ତେ—ବହୁତ କଥା ଅକୁହା ରହିଗଲା, ଏ ଲେଖକଟା କ୍ୱଚିତ୍ ନିଜ କଥା ଭବୁଥିଲ । ଗାଆଁ ଲୋକ ଭିଡ଼ ଜମେଇଥିଲେ ତାର ମନରେ । କି କଥା ? ଗାଉଁଲି କଥା । କି ଗୀତ ? ଲୋକଗୀତ । ଏଇ ତାର ମୂଳ ପ୍ରଶ୍ନ, ଶେଷ ଉତ୍ତର ।

ଅଡ଼ାରେ ପାଦ ଖସୁ ଖସୁ ଅଟକିଗଲା, ଯେ ଅଟକାଇଲା, ସେ ଜାଣେ—କୋଉ ସୃଷ୍ଟିରହସ୍ୟ ମୋ କଲମବାଟେ ପ୍ରକାଶ କରିବ । ମୋ ହିସାବ ତା ପାଖେ; ମୋ ଜୀବନନାଟିକା ବି ତା ପାଖେ ।

କାହା ସେବାପୂଜାରେ ଯଦି ନ ଲାଗିଲା, ରୋଗିଣା ଦେହଟା ବହି କି ଲାଭ ? ଦେହ ପରଖିବା ବିଦେଶଯାତ୍ରାର ଥିଲା ମୁଖ୍ୟ ଉଦ୍ଦେଶ୍ୟ—ଆଲ୍ଲବିକା ସଙ୍ଗେ ମହାଦେବ ଦେଖା ପରି ପ୍ରାକୃତିକ ଦୃଶ୍ୟ ଦର୍ଶନ ବା ଜନ ଚରିତ୍ର ଅଧ୍ୟୟନ । କେଉଁଟି ମୁଖ୍ୟ, କେଉଁଟି ଗୌଣ, ଜାଣେ ନାହିଁ । ଉଭୟ ମୋର କାମ୍ୟ ।

ସ୍ଥିରଜଳ ହ୍ରଦ ପରି ସୀମା ଚଉହଦ୍ଦିରେ ଅଟକିଯିବାର ବୟସ । ଯେ ଜୀବନସାରା ବୋହି ଚାଲିଛି, ସେ ଅଟକି ରହି ପାରିବ ? ନଦୀର ବୟସ କିଣ ଗଣାଯାଏ ? ବୋହିବା ଯାର ପ୍ରକୃତି, ସେ ବୋହିବ ହିଁ ବୋହିବ ।

ଆମେରିକାବାସୀ ଲବିସ୍ତାର ଡାକ୍ତର ଖାସ୍‌କୁଲର୍ ସର୍ଜନ୍ ଆଲ୍ଲୀଗ୍ରଫା, ପରିସ୍ରାବିଦ୍ୟାବିଶାରଦ ଖିରୋଦ୍ର ମୋହନ ଗୁରୁ ଯାହାଙ୍କ, ଏକ୍‌ସରେ ବିଶେଷଜ୍ଞା ଆମେରିକୀୟ ଡାକ୍ତରାଣୀ ଗିନ୍ଥାଲ୍ ମୋ ଦେହ ପରୀକ୍ଷା କଲେ । ଡାକ୍ତର ଗ୍ରଫା ମୋ ବେକ ଦି ପାଖରେ, କୋଲଗାତରେ, ପାଦ ଗଣ୍ଠିମାନଙ୍କରେ ଯନ୍ତ୍ର ଲଗାଇଲେ । ଦେହର ରକ୍ତସ୍ରୋତର ଶବ୍ଦ ପ୍ରଥମ ଥର ଲାଗି ଶୁଣିଲି—ଓ ହ୍ୱା, ଓ ହ୍ୱା, ଓ ହ୍ୱା । ତା ପରେ କମ୍ପ୍ୟୁଟର ଯନ୍ତ୍ରରେ ପରଖିଲା ପରେ ମୋ ରକ୍ତସ୍ରୋତର ସ୍ୱରୂପ ମୋତେ ଟେଲିଭିଜନ୍‌ରେ ଦେଖାଇଲେ ଓ ତାର ଅପୂର୍ବ ସ୍ୱର ଝଙ୍କାର ଶୁଣାଇ କହିଲେ—

ବୟସ ଏକସ୍ତ୍ରିଶ ଧାପ ଦେଲେ ବି ରକ୍ତଧାରା ୩୫ ବର୍ଷୀୟ ଯୁବକର ରକ୍ତସ୍ରୋତ ପରି ଚାଲିଛି । ଦେହର ଝରଣାମାନଙ୍କ ଗତି ଅବାରିତ; କେଉଁଠି କିଛି ଅନ୍ତରାୟ ନାହିଁ । ଶିରାପ୍ରଶିରା ନିର୍ମଳ ।

ଡାକ୍ତର ଗିଲ୍ଲାଲ୍ ସୁନ୍ଦରୀ ଯୁବତୀ; ସେ ହସି ହସି କହିଲେ—ମୋ ଯନ୍ତ୍ରରେ ମୁଣ୍ଡ ପୁରାଇଲେ ମହାବଳ ବାଘର ପାଟିରେ ମୁଣ୍ଡ ପୁରାଇଲା ପରି ଲାଗିବ । ବାଘର ହେଣ୍ଟାଳ ପରି ଯନ୍ତ୍ରର ଶବ୍ଦ ବି ଶୁଣାଯିବ । ଉପର ଆଉ ତଳର ଦାନ୍ତର ଭୀଷଣ ପାଟି ଚପି ଧରିବ, କିନ୍ତୁ ମୁଣ୍ଡକୁ ଚୁପିଦେବ ନାହିଁ । ମୋଟେ କାଟିବ ନାହିଁ । ଅଧ ଘଣ୍ଟାକେ କାମ ସରିଯିବ ।

ପରୀକ୍ଷା ପରେ ଗିଲ୍ଲାଲ୍ ମୋତେ ମୁଣ୍ଡର ଫଟୋ ଦେଖାଇଲେ । ରକ୍ତ-ସ୍ରୋତରେ କିଛି ବିକୃତି ନାହିଁ । ଶିରାପ୍ରଶିରା ପଥ ସଫା ଅଛି । ରକ୍ତ କେଉଁଠି ଜମାଟ ବାନ୍ଧୁନାହିଁ ବା ଅଟକୁ ନାହିଁ ।

ଯନ୍ତ୍ର ବ୍ୟବହାର ଲାଗି ତିନିଶ ଡଲାର୍, ପରୀକ୍ଷା ଫି ଶହେ ଡଲାର୍—ଏଇ ଖାତିରେ ମୋତେ ୧୨୦୦ ଡଲାର୍ ଦେବାକୁ ପଡ଼ିଥାନ୍ତା । ହେଲେ, ଇମ୍ବା ଡାକ୍ତର-ମାନଙ୍କ ରୋଗୀଙ୍କୁ ମାଗଣା ଦେଖିଛନ୍ତି । ସେମାନେ ସେହିପରି ମୋତେ ଓ ଲତାକୁ ବିନା ଫିରେ ଦେଖିଲେ, ସାରା ପୃଥିବୀରେ ଡାକ୍ତରମାନଙ୍କ ମଧ୍ୟରେ ଏ ସୌଜନ୍ୟ-ମୂଳକ କାରବାର ଚଳେ ।

ଏଠା ଚିକିତ୍ସା ଏକାନ୍ତ ବ୍ୟୟବହୁଳ । କେତେ ଲୋକଙ୍କର ଶକ୍ତି ଅଛି, ଏଠାକୁ ଆସି ଦୁଃସାଧ୍ୟ ରୋଗର ଚିକିତ୍ସା କରାଇନେଇ ପାରିବେ ?

କି ଘର ! କେତେ ବିଶେଷଜ୍ଞ ଡାକ୍ତର ! କି ଅପୂର୍ବ ଯନ୍ତ୍ରପାତି !

ଲିରା—ଘନଶ୍ୟାମଆରୋଗ୍ୟନିକେତନରେ ଏପରି ବ୍ୟବସ୍ଥା ହୋଇ ପାରିବ ?

ମୁଁ କହିଲି—ଯୁଗ ଲାଗିଯିବ । କଟକ ବଡ଼ ଡାକ୍ତରଖାନାରେ ତ ନାହିଁ । ଅନ୍ୟତ୍ର ହେବା ପ୍ରଶ୍ନ ଉଠୁଚି କାହିଁକି ? ସ୍ୱାଧୀନ ଭାରତର ଅବସ୍ଥାପନ୍ନ, ସାଙ୍ଘାତିକ ରୋଗୀ ଇଉରୋପ ବା ଆମେରିକାର ଶରଣାପନ୍ନ ହେବା ଗୌରବର କଥା ନୁହେଁ ।

ଗୋଟିଏ ଘରୋଇ ଡାକ୍ତରଖାନାରେ ତ ଏତେ ଉଚ୍ଚକୋଟୀର ବ୍ୟବସ୍ଥା, ଅନ୍ୟତ୍ର କଣ ନ ହୋଇଥିବ !

ଏ କାହାର ଘର ?

ଉଦ—ଜଣେ ପାକିସ୍ଥାନୀ ଡାକ୍ତରର, କୋଟିଏ ଡଲାରରୁ ଅଧିକ ଖର୍ଚ୍ଚ କରି ଘର କରିଛି । ଡାକ୍ତରମାନେ ଭଡ଼ା ନେଇ ଘରୋଇ ଚିକିତ୍ସା କରନ୍ତି, ଏ ଘରର ମାସିକ ଭଡା ୩୦ ହଜାର ଡଲାର ।

ମୁଁ ତାଙ୍କୁ ପଚାରିଲେ ଆମେରିକା ଅଣାଇଥିଲି, ଜଣେ ପାକିସ୍ଥାନୀ ଡାକ୍ତରଣୀ ଯୁବତୀର ପ୍ରରୋଚନାରେ ପଡ଼ି । ଦୁଇ ଜଣଙ୍କ ମଧ୍ୟରେ ପାତ୍ରିକ ପ୍ରେମ ଥିଲା, ଯାହା ବାସ୍ତବ ଦେଖାଗୁହାଁରେ, ଆଲାପ ଆଲୋଚନାରେ ପାଣି ଫାଟିଗଲା ।

ସେ ଡାକ୍ତର ଜଣେ ସ୍ଥାନୀୟ ଯୁବତୀକ ବିଭା ହେଲେ । ସେ ଡାକ୍ତରଣୀ ଲଜ୍ଜା ଓ ସଙ୍କୋଚରେ ଆମେରିକା ଛାଡ଼ି ପାକିସ୍ଥାନ ପଳାଇଗଲା, ଭାରତ ପାକିସ୍ଥାନ ଯୁଦ୍ଧ ପରେ ଏ କୃତଘ୍ନ ଡାକ୍ତର ମୋ ସଙ୍ଗେ ଆଉ କଥାଭାଷା କଲାନାହିଁ । ଦୁହେଁ-ଯାକ ସ୍ଥାୟୀ ଆମେରିକା ବାସିନ୍ଦା ହେଲେ ବି ।

ସ୍ୱାସ୍ଥ୍ୟ ପରୀକ୍ଷା ସମୟରେ ମୁଁ କେତୋଟି ଯାତ୍ରା ଓ ଟେଲିଭିଜନ୍‌ରେ ଓଲିମ୍ପିକ୍ ଖେଳ ଦେଖିଥିଲି । ସେସବୁ ଏହିପରି ।

## ଓକଲ୍ ହୋମା

ଘରେ ଟେଲିଭିଜନ୍, ବାହାରେ ସିନେମା । ତା ମଧ୍ୟରେ ଗ୍ରାମ୍ୟ ଯାତ୍ରା । ତାର ସତ୍ତା ହରାଇନାହିଁ ? ଯାତ୍ରାରୁ ଯୋଉ ସ୍ୱାଦ ମିଳେ, ତାହା କଣ ଥିଏଟର୍ ବା ସିନେମା ସୃଷ୍ଟି କରି ପାରୁନାହିଁ ? ଆଧୁନିକ ଲୋକଙ୍କ ଉପଭୋଗ ଲାଗି ଏଥିରେ ଏବେ ବି ଉପାଦାନ ପୂରି ରହିଛି ?

ସେଣ୍ଟ୍ ଲୁଇସ୍ ମ୍ୟୁନିସ୍ ପାଲିଟି ଫରେଷ୍ଟ୍ ପାର୍କରେ ଘ୍ୟୂରନ୍ତ ରଙ୍ଗମଞ୍ଚଟିଏ ନିର୍ମାଣ କରିଦେଇଛି । ଦର୍ଶକଙ୍କ ଲାଗି ଏଥିରେ ଅଛି ଏଗାର ହଜାର ପାଞ୍ଚଶ ସିଟ୍ । ଗତ ପଚାଶ ବର୍ଷ ଧରି 'ମୁନି' ନାମକ ଅପେରା ଅନୁଷ୍ଠାନ ଚାଲିଛି ଏଇଠି । ମନ ହକ୍କ ହକ୍କ । ଯାତ୍ରା ଦେଖିଗଲି ।

ଖରାଦିନ । ଖୋଲାମେଲାରେ ଧାଡ଼ି ଧାଡ଼ି ଚୌକି ପଡ଼ିଛି । ଦର୍ଶକ ଭିଡ଼ । ଆଗରୁ ବ୍ୟବସ୍ଥା ନ କଲେ ଟିକେଟ୍ ମିଳେନାହିଁ । ଗ୍ରୀଷ୍ମ ଛଡ଼ା ଅନ୍ୟ ଋତୁରେ ଥିଏଟର୍ ରଙ୍ଗମଞ୍ଚମାନଙ୍କରେ ଯାତ୍ରା ଅଭିନୀତ ହୋଇପାରେ । କିନ୍ତୁ ସିଟ୍ ସଂଖ୍ୟା ଅତ୍ୟନ୍ତ ସୀମିତ । ଜନମନୋରଞ୍ଜନ ଲାଗି ଭାରତରେ କେଉଁ କର୍ପୋରେସନ୍ ବା

ମ୍ୟୁନିସ୍‌ପାଲିଟି ଯାତ୍ରା ବ୍ୟବସ୍ଥା କରିଥିବା କଥା ଶୁଣିନାହିଁ । ସହରରେ ଯାତ୍ରା ହେଲେ ଭିଡ଼ ମଧ୍ୟରେ ଦେଖିବା ସୁବିଧା ହୁଏନାହିଁ ।

ଓକଲ୍‌ହୋମା ନାୟିକା । ଏହି ସୁନ୍ଦରୀ ନାୟିକା ଲାଗି ଦୁଇ ଜଣ ତରୁଣ ପ୍ରତିଯୋଗୀ । ପ୍ରଥମ ନାୟକ ଜଣେ ଗୋବାଳକ । ନିଜର ସର୍ବସ୍ୱ ବିକ୍ରୟ କରି ମାତ୍ର ୫୦ ଡଲାର୍ ବିବାହ ଉତ୍ସବ ଲାଗି ସଂଗ୍ରହ କରିଛି । ଦ୍ୱିତୀୟ ନାୟକ ଖଳ ପ୍ରକୃତିର; କୁତ୍ସିତ ତାର ଶ୍ରୀ, କୁତ୍ସିତତର ପ୍ରକୃତି । ଧନୀ, ମଦ୍ୟପ, କୁଚକ୍ରୀ । ଦରିଦ୍ର, ଦୁର୍ବଳ ପ୍ରତିଯୋଗୀକୁ ନାନା ଭାବେ ବିପନ୍ନ କରିବା ଚେଷ୍ଟା କରିଛି, ତାକୁ ନିଧନ କରିବାକୁ ଯାଇ ଶେଷରେ ନିଜେ ନିହତ ହୋଇଛି ।

୫୦ ବର୍ଷ ତଳେ ଲିଖିତ ଓକଲ୍‌ହୋମା ବୈଷ୍ଣବ ପାଣିଙ୍କ ଗୀତାଭିନୟ ପରି ଏବେ ବି ଲୋକପ୍ରିୟ । ଏହାର ଗ୍ରାମ୍ୟ ହାସ୍ୟ ଓ ବ୍ୟଙ୍ଗ ଏକାନ୍ତ ଉପଭୋଗ୍ୟ । ଲୋକେ ହସର ତୋଫାନ ଉଠାଉଥିବାବେଳେ ମୁଁ କିନ୍ତୁ ନୀରବରେ ବସିରହେ ।

ଏଠା ସାମାଜିକ ଗତିଗତି ଭିନ୍ନ । ତାକୁ ଭିତ୍ତିକରି ହାସ୍ୟ ଓ ବ୍ୟଙ୍ଗ ଗଢ଼ା । ଗ୍ରାମ୍ୟ ଯାତ୍ରାରେ ସେ ସବୁର ମୂଳ ସୂତ୍ର ନିହିତ, ଯାତ୍ରାର ବିଷୟବସ୍ତୁ ବୁଝିଲେ ବି ହାସ୍ୟରସ ବା ବ୍ୟଙ୍ଗ ବୁଝିପାରୁ ନ ଥାଏ । ତଥାପି ଗ୍ରାମ୍ୟ ସଂସ୍କୃତି ମୋତେ ଟାଣିନିଏ 'ସୁଗାର୍ ବେବି' ନାମକ ଅନ୍ୟ ଏକ ଯାତ୍ରା ଦେଖିବାକୁ, ଦ୍ୱିତୀୟଟି ଗୀତିନାଟ୍ୟ—ଆମୂଳଚୂଳ ଗୀତ ଓ ନୃତ୍ୟ ଭରା, ଗଭୀର ମାନସିକ ସ୍ତରରେ ମୁଁ ଏହାର ସ୍ୱରଝଙ୍କାର ଉପଭୋଗ କରୁଥାଏ, ଅର୍ଥ ନ ବୁଝିଲେ ବି ।

## ଓଲିମ୍ପିକ୍ ଖେଳ

ଏ ଯୁଗରେ ଦୁଇଟି ମୁଖ୍ୟ ବିନୋଦନ—ଖେଳ, ସିନେମା । ସିନେମା-ନକ୍ଷତ୍ର ଓ ଖେଳାଳିଙ୍କ ନାମ ଲୋକଙ୍କ ମୁହେଁ ମୁହେଁ । ଉଭୟ ମଧ୍ୟରେ ଖେଳର ନିଶା ପ୍ରବଳତର । ଖେଳ ଦେଖିବା ଲାଗି ଲୋକେ ବହୁ ଅର୍ଥ ବ୍ୟୟ କରି ବିଦେଶ-ଯାତ୍ରା କରୁଛନ୍ତି । ମୋ ଜେଟ୍‌ରେ କେତେ ଓଲିମ୍ପିକ୍ ଖେଳଦେଖାଳୀ ଓତ୍ତଅଙ୍କ ସାକ୍ଷାତ ହୋଇଥିଲା । ମୁଁ ଜଣେ ଅଧମ; ଖେଳେ ନାହିଁ, କି ଖେଳ ଦେଖେ ନାହିଁ । ଖେଳପ୍ରିୟ ହୋଇଥିଲେ ମୁଁ ଟିକେଟଟିଏ ଯୋଗାଡ଼ କରିପାରିଥାନ୍ତି ।

ଓଲିମ୍ପିକ୍ ଖେଳ ଗୋଟିଏ ବିଶ୍ୱଜନ ମେଳ । ଖେଳରୁ ନ ହେଲେ ମେଳରୁ ମୁଁ କିଛି କବିତାର ଉପାଦାନ ଆହରଣ କରିପାରିଥାନ୍ତି ।

ପ୍ରବଳ ଜନ ଓ ଯାନ ଗହଳି, ହୋଟେଲ୍ ମୋଟେଲ୍‌ରେ ଭୟଙ୍କର ଭିଡ଼ । ଏ ଭଳି ଏକ ତୀବ୍ର ସଂଗ୍ରାମରେ ଝାସ ଦେବା ଲାଗି ଶରୀର ବା ମନର ବଳ ମୋର ନ ଥିଲା । ତଥାପି ଭାବୁଥିଲି—ଏତେ ଲୋକ ଖେଳ ଲାଗି ପାଗଳ; ସ୍ୱଦେଶର ପ୍ରତି-ଯୋଗୀର ବିଜୟରେ ଆନନ୍ଦରେ ନାଚୁଛନ୍ତି ବା ପରାଜୟରେ ମନ ମାରି ବସୁଛନ୍ତି । ମୁଁ ଗୋଟାଏ କେମିତି ? ମୋର ସପକ୍ଷ ବା ବିପକ୍ଷ ଖେଳାଳି କେହି ନାହାନ୍ତି । କାହାରି ବିଜୟରେ ସୁଖୀ ବା ପରାଜୟରେ ଦୁଃଖୀ ହୋଇ ପାରୁନାହିଁ । ତଥାପି ମନକଷ୍ଟ କାହିଁକି ? କେଜାଣି କାହିଁକି ?

ମୁଁ ପହଞ୍ଚିଲି । ଏଣେ ଆମେରିକାର ଦ୍ୱିତୀୟ ବୃହତ୍ତମ ନଗର ଲସ୍‌ଆଞ୍ଜେ-ଲସ୍‌ରେ ଓଲିମ୍ପିକ୍ ଟ୍ରମ୍ପେଟ୍ ବାଜି ଉଠିଲା; ସ୍ୱତନ୍ତ୍ର ଓଲିମ୍ପିକ୍ ପତାକା ଉତ୍ତୋଳିତ ହେଲା । ଶାନ୍ତିକପୋତଦଳଙ୍କୁ ଆକାଶକୁ ଉଡ଼େଇ ଦିଆହେଲା । ବିଶ୍ୱମୈତ୍ରୀ, ବିଶ୍ୱ-ନୀଡ଼ାର ପ୍ରତୀକ ଓଲିମ୍ପିକ୍ ଜ୍ୟୋତିକୁ ଗର୍ଜିତ କମାଣ ସାଲ୍ୟୁଟ୍ ଜଣାଇଲା । ପବିତ୍ର ବହ୍ନିଶିଖା ଜଳି ଉଠିଲା । ତାପରେ ଆଶୀର୍ବାଣୀ ଓ ଓଲିମ୍ପିକ୍ ସଙ୍ଗୀତ ଝଙ୍କୃତ ହେଲା । ପ୍ରତି ଖେଳାଳି ଶପଥ ନେଲା—

> "ପ୍ରକୃତ ଖେଳାଳିର ଉଦାର ମନୋଭାବ ଅନ୍ତରାତ୍ମାରେ ବହନ କରି ମୁଁ ଶପଥ କରୁଛି—ଓଲିମ୍ପିକ୍‌ର ସମସ୍ତ ନିୟମ ମାନି ଚଳିବି । ସବୁମନ୍ତେ ମୋ ଦଳର, ଦେଶର ଓ ଏ ମହାନ ଖେଳର ଗୁରୁତ୍ୱ, ଗୌରବ ରକ୍ଷା କରିବି ।"

ଚର୍ଚ୍ଚେଇତି ଦେଶର ସଭାପତି, ରାଜା ବା ରାଷ୍ଟ୍ରପତି ଏ କ୍ରୀଡ଼ା ଉଦ୍-ଘାଟନର ଗୌରବମୟ ଆସନ ଲାଭ କରନ୍ତି । ଆନ୍ତର୍ଜାତିକ ଓଲିମ୍ପିକ୍ ସଭାପତି ଅଭ୍ୟର୍ଥନା ଜଣାଇଲା ପରେ ଖେଳାଳିମାନେ ନିଜ ନିଜ ଦେଶର ପତାକା ଟେକି ପଟୁଆରରେ ଗଲେ । ଅକ୍ଷର ନିୟମ ଅନୁସାରେ ବିଭିନ୍ନ ଖେଳାଳିମାନେ ତା ପଛକୁ ତା ପଛ ସଜ୍ଜିତ ଥିଲେ ଓ ଗ୍ରୀସ୍ ଦେଶ ପଟୁଆର ଚଳାଇବାର ଗୌରବ ଲାଭ କରି ଥିଲା । ପଟୁଆରର ସବା ପଛରେ ଚର୍ଚ୍ଚେଇତି ଦେଶର ଖେଳାଳି ଥିଲେ । ଖେଳାଳିମାନେ ପଟୁଆରରେ ଓଲିମ୍ପିକ୍ ଲାଗି ସ୍ୱତନ୍ତ୍ରଭାବେ ନିର୍ମିତ ଏକ ଷ୍ଟାଡ଼ିୟମ୍‌ରେ ପ୍ରବେଶ କଲେ । ଅମେରିକା ରାଷ୍ଟ୍ରପତି ରୋନାଲ୍ ରିଆଗାନ୍ ଆନୁଷ୍ଠାନିକଭାବେ ଓଲିମ୍ପିକ୍ ଉଦ୍‌ଘାଟନ କଲେ ।

ଏହି କ୍ରୀଡ଼ାର ଅତୀତ ସହିତ ପ୍ରାଣର ଯୋଗ । ଖ୍ରୀଷ୍ଟପୂର୍ବ ୭୭୬ରେ ଗ୍ରୀସ୍ ଦେଶରେ ଏହାର ଅଭ୍ୟାରମ୍ଭ । ସେ କାଳର ନିୟମାନୁଯାୟୀ ଏ କ୍ରୀଡ଼ା ପ୍ରତି ଚାରି ବର୍ଷରେ ଥରେ ଅନୁଷ୍ଠିତ ହୁଏ । ଓଲିମ୍ପିକ୍ ଜ୍ୟୋତି ଗ୍ରୀସ୍ ଦେଶର

ଓଲମ୍ପିଆରୁ ଯାତ୍ରା ଅନୁକୂଳ କରି ଖେଳ ହେଉଥିବା ଦେଶକୁ ଯାଏ, ଖେଳ ହେଉଥିବା ଯାକେ ଏହି ସର୍ବ ସମ୍ମାନିତ ଶିଖାକୁ ପ୍ରଜ୍ଜ୍ୱଳିତ ରଖାଯାଏ, ଶେଷ ଖେଳ ସଙ୍ଗୀତ ବୋଲି ହେବା ପରେ ନିର୍ବାପିତ କରାଯାଏ ।

ଗ୍ରୀସ୍‌ଦେଶର ଓଲମ୍ପିକ୍‌ରେ ରାଜାପ୍ରଜା, ଧନୀଦରିଦ୍ର, କଳାଗୋରା, ଧର୍ମୀ ବିଧର୍ମୀ ଭେଦ ନ ଥିଲା; ଏବେ ନାହିଁ । ଏହି ଖେଳରେ ବିଜୟୀ ମହାବୀରର ଗୌରବ ଲଭ କରୁଥିଲା ଓ ତାଙ୍କୁ ଘେନି କାବ୍ୟନାଟକାଦି ରଚିତ ହେଉଥିଲା ।

ଓଲମ୍ପିକ୍ ଏକ ବିଶ୍ୱକ୍ରୀଡ଼ା ଅନୁଷ୍ଠାନ । ପୃଥିବୀର ସମସ୍ତ ଦେଶର ନାମ୍‌-ଜାଦା ଖେଳାଳି ଏଥିରେ ଅଂଶ ଗ୍ରହଣ କରନ୍ତି । ଖେଳ ଶେଷରେ ପରବର୍ତ୍ତୀ ଖେଳ ଲାଗି କୌଣସି ଦେଶ ପକ୍ଷରୁ ନିମନ୍ତ୍ରଣ କରାଯାଏ । ତାପରେ ରାଜା ବା ସଭାପତି ଶେଷ ଭାଷଣ ଦିଅନ୍ତି—ମାନବ ଜାତିର କଲ୍ୟାଣ ଲାଗି ଏ ଖେଳ ଚିରଦିନ ଚାଲୁରହୁ, ବିଶ୍ୱଭ୍ରାତୃତ୍ୱ ଓ ଶାନ୍ତି ସଂସାରରେ ବିରାଜମାନ କରୁ । ସବା ଶେଷରେ ପାଞ୍ଚ ଗୋଟି ତୋପ ଘୋର ଗର୍ଜନରେ ଓଲମ୍ପିକ୍ ଜ୍ୟୋତିକୁ ସାଲ୍ୟୁଟ୍ ଜଣାଇଥିଲା ।

ମୁଁ ଖେଳ ସୀମା ମାଡ଼ିଲି ନାହିଁ, ସେଣ୍ଟ୍‌ଲୁଇସ୍‌ରେ ବସି ଟେଲିଭିଜନ୍‌ରେ ଦେଖିଥିଲି । ଜୁଲାଇ ୨୯ ତାରିଖରେ ଏହାର ଆରମ୍ଭ, ଅଗଷ୍ଟ ୧୨ ତାରିଖରେ ଶେଷ ହୋଇଥିଲା ।

ଖେଳରେ ରାଜନୀତିର ଧସେଇ ପଶିବା ପ୍ରବୃତ୍ତିକୁ କ୍ରୀଡ଼ାବିତ୍‌ମାନେ ଧିକ୍ ଧିକ୍ କରିଥିଲେ, ନାନା ସଂଶୟ ସୃଷ୍ଟି ଫଳରେ ରୁଷିୟା ଓ ତାର ସହଚର ସତରଟି ଦେଶ ଏହି କ୍ରୀଡ଼ା ଅନୁଷ୍ଠାନକୁ ବୟକଟ୍ କରିଥିଲେ ।

ସବୁକ୍ଷେତ୍ରରେ ରୁଷିୟା ଆମେରିକାର ପ୍ରତିଯୋଗୀ । ପ୍ରଧାନ ପ୍ରତିଯୋଗୀ ଯୋଗ ନ ଦେବା ଫଳରେ ଖେଳର ଗୁରୁତ୍ୱ ବହୁଲାଂଶେ ଊଣା ହୋଇ ଯାଇଥିଲା, ଆମେରିକାର ଏକପାଖିଆ ବିଜୟ ଗୌରବ ବି ମଳିନ ହୋଇ ଯାଇଥିଲା । ସୁଇଜରଲେଣ୍ଡ୍, ଗ୍ରୀସ୍ ପ୍ରଭୃତି ନିରପେକ୍ଷ ଦେଶରେ ନ ହୋଇ ଏକ ଶକ୍ତିଗୋଷ୍ଠୀର ନେତାଙ୍କ ଦେଶରେ ଅନୁଷ୍ଠିତ ହେବାରୁ ବିଶ୍ୱତ୍ୱରେ ଆଞ୍ଚ୍ ଆସିଲା ବୋଲି ସମା-ଲୋଚନା ହୋଇଥିଲା ।

ଏହି ଓଲିମ୍ପିକ୍‌ରେ ଯୋଗ ଦେଇଥିବା ଖେଳାଳୀଙ୍କ ମୋଟ ସଂଖ୍ୟା ୭୮୦୦; ପୃଥିବୀର ୧୪୦ଟି ଦେଶରୁ ସେମାନେ ଆସିଥିଲେ । ମୋଟ ମେଡ଼ାଲରୁ ଆମେରିକା ୮୩ଟି ସୁନା, ୬୧ଟି ରୁପା, ୭୦ଟି ବ୍ରୋଞ୍ଜ୍, ଦ୍ୱିତୀୟ ସ୍ଥାନ ଅଧିକାରୀ ପଶ୍ଚିମ ଜର୍ମାନୀ ୧୭ଟି ସୁନା, ୧୯ଟି ରୁପା, ୨୩ଟି ବ୍ରୋଞ୍ଜ୍, ତୃତୀୟସ୍ଥାନ ଅଧିକାରୀ

ରୁମାନିଆ ୨୦ଟି ସୁନା, ୧୬ଟି ରୁପା ଓ ୧୭ଟି ବ୍ରଞ୍ଜ୍ ମେଡ଼ାଲ ହାସଲ କରିଥିଲେ। ଏହି ଦ୍ୱିତ୍ରୋବିଂଶତି ଓଲିମ୍ପିକ୍‌ରେ ଆମେରିକାର ଜୟ ଜୟକାର ସର୍ବତ୍ର। କୁସ୍ତି-କସରତ, ମୁଷ୍ଟିଯୁଦ୍ଧ, ସନ୍ତରଣ, ଲକ୍ଷ୍ୟଭେଦରେ ଆମେରିକା ବିଶେଷ କୃତିତ୍ୱ ଅର୍ଜନ କରିଥିଲା। କ୍ରୀଡ଼ାରେ ସ୍ତ୍ରୀଲୋକମାନେ ୨୭ଟି ସ୍ୱର୍ଣ୍ଣପଦକ ଲାଭ କରିଥିଲେ।

ହକି, ▬▬▬ ଭଲିବଲ, ଘୋଡ଼ାଦୌଡ଼, ଓ୍ୱାଟରପୋଲୋ ମ୍ୟାଚ୍, ସନ୍ତରଣ ପ୍ରତିଯୋଗିତା, ମୁଷ୍ଟିଯୁଦ୍ଧ, ଶୂନ୍ୟମଞ୍ଚ ପ୍ରଭୃତି କ୍ରୀଡ଼ା ପ୍ରତିଯୋଗିତାକୁ ଓଲିମ୍ପିଆଡ଼୍ କୁହାଯାଉଥିଲା।

ବିପୁଲ ବ୍ୟୟରେ ଓଲିମ୍ପିକ୍ ଭିଲେଜ୍ ଓ ବିରାଟ ସଭାମଞ୍ଚ ନିର୍ମିତ ହୋଇଥିଲା। ସେପରି ଧନୀ ଦେଶ ନ ହେଲେ କ୍ରୀଡ଼ାର ବ୍ୟୟଭାର ବହନ କରିବା କଷ୍ଟସାଧ୍ୟ।

ପ୍ରାୟ ୭୦ କୋଟି ଭାରତୀୟ; ଏମାନଙ୍କ ମଧ୍ୟରୁ ଉତ୍କୃଷ୍ଟ ଖେଳାଳି ବାହାରୁ ନାହାନ୍ତି କାହିଁକି? କର୍ତ୍ତୃପକ୍ଷ ପ୍ରକୃତ ପ୍ରତିଭାକୁ ବିକାଶର ସୁଯୋଗ ଦେଉନାହିଁ? ବିଶ୍ୱ କ୍ରୀଡ଼ା କ୍ଷେତ୍ରରେ ଭାରତୀୟର ସ୍ଥାନ ଏତେ ନଗଣ୍ୟ କାହିଁକି? ମୋ ପରି ଅଦେଖାଳି, ଅଖେଳାଳିର ମୁଣ୍ଡ ଲଜ୍ଜାରେ ନଇଁଗଲା ଓ ବହୁ ସ୍ୱଦେଶ-ପ୍ରେମିକ ବିଦେଶୀ ଭାରତୀୟଙ୍କ ମୁଣ୍ଡ ନଇଁଥିବ।

## ଇସ୍ପାତ୍ କୋଣାର୍କ

ସ୍ୱାସ୍ଥ୍ୟ ପରୀକ୍ଷା ପରେ ଗାଡ଼ି ଆମକୁ ବୁଲାଇ ନେଲା। ପହିଲେ ମିସିସିପି ନଦୀ କୂଳକୁ; ଖୁବ୍ ଖରା, ଅଣ୍ଡା ହାଓ୍ୱା ବି। ଅନେକ ପାହାଚ ଉଠି ପହଞ୍ଚିଲୁ ଏକ ପାର୍କରେ—ଲମ୍ବିଚି ଅନେକ ଦୂର, ଆଖି ପାଏନାହିଁ—କେବଳ ଗାଢ଼ ସବୁଜ ଘାସ, ଓକ୍, ସିକାମୋର୍, ପପ୍‌ଲାର୍, ପାଇନ୍ ଗଛ, ଏଠିସେଠି ମନ୍ଦା ମନ୍ଦା ଋତୁ ଉପଯୋଗୀ ଫୁଲ।

ଏହି ପାର୍କରେ ସ୍ୱାଧୀନତା ଆଦ୍ୟକାଳର ରାଷ୍ଟ୍ରପତି ଜେଫର୍‌ସନ୍ ସ୍ମୃତି-ମନ୍ଦିର—ଇସ୍ପାତ କୋଣାର୍କ—ଆମେରିକୀୟ ଇଞ୍ଜିନିଅରମାନଙ୍କ ଅଦ୍ଭୁତ କାରିଗରୀ କୌଶଳ। ୬୩୦ ଫୁଟ୍ ଉଚ୍ଚ ଏହି ଚକ୍ ଚକ୍ ଅକଳଙ୍କ ଲୁହାର ଖିଲାଣ ପ୍ୟାରିସ୍ ନଗରର ଆଇଫେଲ୍ ଟାଓ୍ୱାର୍ ପରି ଦିଶେ। ଗୋଟିଏ ସିନ ନଦୀ, ଆରଟି ମିସିସିପି କୂଳରେ; ସ୍ୱଚ୍ଛ ଜଳଧାରରେ ନାଚୁଥାଏ ଉଭୟର ଛାୟା।

ଏତେ ଉଚ୍ଚକୁ, ଅତି ଆଶ୍ଚର୍ଯ୍ୟ କଥା, ରେଲ୍‌ଗାଡ଼ି ଉଠେ, ଝିଲ୍ଲଣ ଝରକାରେ ପୂରା ସେଣ୍ଟ୍‌ଲୁଇସ୍ ସହର ଦେଖି ହୁଏ—ଆକାଶଛୁଆଁ କୋଠାବାଡ଼ି, ରାସ୍ତାରେ ଜନ୍ଦାପିମ୍ପୁଡ଼ି ପରି ଗାଡ଼ି, ମିସିସିପିରେ ପାଡ୍ଲ୍‌ବୋଟ୍, ଝିଲ୍ଲଣକୁ ଛୁଇଁ ଛୁଇଁ ଉଡ଼ିଯାନ୍ତି ହେଲିକୋପ୍‌ଟର୍ । ଦଶ ମିନିଟ୍ ମାତ୍ର ଚାରିଆଡ଼େ ଆଖି ପକାଇବାର ଅବସର । ଆମେ ତଳକୁ ଖସିଲୁ ।

ଝିଲ୍ଲଣର ଭୂତଳ ଗହ୍ୱରରେ ଏକ ରଙ୍ଗମଞ୍ଚ—ଝିଲ୍ଲଣର ନିର୍ମାଣ କାହାଣୀ ଫିଲ୍ମ୍ ହୋଇଛି, ଦେଖାହୁଏ, ଥରକୁ ଥର, ହାରି ଦାଜ ।

ଏହି ସ୍ମୃତିମନ୍ଦିର ସେଣ୍ଟ୍‌ଲୁଇସ୍ ନଗରର ସର୍ବଶ୍ରେଷ୍ଠ କୀର୍ତ୍ତି, ସମଗ୍ର ଆମେରିକାର ମଧ୍ୟ ଆଶ୍ଚର୍ଯ୍ୟଜନକ, ଆକର୍ଷଣୀୟ ଦୃଶ୍ୟ, ଭ୍ରମଣକାରୀର ଅବଶ୍ୟ ଦ୍ରଷ୍ଟବ୍ୟ ।

ସଭାପତି ଜେଫରସନ୍‌ଙ୍କ ସ୍ମୃତି ସେଣ୍ଟ୍‌ଲୁଇସ୍‌ରେ ରଖା ହୋଇଛି କାହିଁକି ? କାରଣ ସେ ମିସିସିପି ପଶ୍ଚିମ ତୀରବର୍ତ୍ତୀ ସମସ୍ତ ସ୍ଥାନ ଓ ଲୁଇସିଆନା ପ୍ରଦେଶ ଫ୍ରାନ୍‌ସଠାରୁ କ୍ରୟ କରି ଆମେରିକାର ସୀମା ବୃଦ୍ଧି କରିଥିଲେ । ପଶ୍ଚିମତୀର ଆବିଷ୍କାରର ସୁବ୍ୟବସ୍ଥା ମଧ୍ୟ କରିଥିଲେ । ଲିଉଇସ୍ ଆଉ କ୍ଲାର୍କ ଦୁଇଜଣ ଆମେରିକାର ଶ୍ରେଷ୍ଠ ଆବିଷ୍କାରକ । ସେମାନେ କାଲିଫର୍ଣ୍ଣିଆ ଆଉ ପ୍ରଶାନ୍ତ ମହାସାଗରର ଆବିଷ୍କର୍ତ୍ତା । ଶହେ ଜଣ ଯୁବକ ସହଯାତ୍ରୀ । ଆବିଷ୍କାର ଲାଗି ଦୁଇ ବର୍ଷରୁ ବେଶୀ ସମୟ ଲାଗିଥିଲା । ଏହି ଦୁଇ ମହାନ୍ ଆବିଷ୍କାରକଙ୍କ କାହାଣୀ ନ ଜାଣିଲେ ଆମେରିକାର ଇତିହାସ ବୁଝିହୁଏ ନାହିଁ ।

ସେମାନଙ୍କ ବୀରତ୍ୱପୂର୍ଣ୍ଣ ଅଭିଯାନର ଦୁଃସାହସିକ କାହାଣୀ ଭୂତଳ ମ୍ୟୁଜିଅମ୍ ଭିତ୍ତିରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଅଛି । ଏହି ଅଭିଯାନକାରୀ ଦଳରେ କଳାକାର ଥିଲେ । ସେମାନେ ନଦୀ, ପର୍ବତ, ହ୍ରଦ, ଆଦିବାସୀ ରେଡ଼ଇଣ୍ଡିଆନ୍ସ, ଜୀବଜନ୍ତୁ, ବର୍ଷା, ତୁଷାରପାତ, ଦୁଃଖକଷ୍ଟର ଜୀବନ୍ତ ଚିତ୍ର ଅଙ୍କନ କରିଥିଲେ । ତାହା ମଧ୍ୟ ମ୍ୟୁଜିଅମ୍‌ରେ ପ୍ରଦର୍ଶିତ ହୋଇଅଛି, ଲିପିବଦ୍ଧ ରୋମାଞ୍ଚକର ଗାଥା ସହିତ ।

## ଦୁଇଜଣ ମହାନ୍ ଆବିଷ୍କାରକ

ଯୁଦ୍ଧରେ ଅପରିମିତ ବ୍ୟୟ । ମହାବୀର ନେପୋଲିୟନ୍ ବୋନାପାର୍ଟଙ୍କର ଘୋର ଅର୍ଥାଭାବ । ସେ ବାଧ୍ୟ ହୋଇ ଫରାସୀ ଉପନିବେଶସବୁ ଆମେରିକାକୁ ବିକ୍ରୀ କରିଦେଇଥିଲେ । ତେରୋଟି ପ୍ରଦେଶ ମାତ୍ର ଘେନି ସ୍ୱାଧୀନ ଆମେରିକା ରାଜ୍ୟ

ସଗଠିତ ହୋଇଥିଲା । ସଭାପତି ଜେଫର୍‌ସନ୍‌ଙ୍କ ଅର୍ଥାନୁକୂଲ୍ୟରେ ଅଭିଯାତ୍ରୀ ଦଳର ନେତୃତ୍ୱ ନେଇଥିଲେ ଦୁଇଜଣ ବୀର—ଲୁଇସ୍ ଓ କ୍ଲାର୍କ । ପଶ୍ଚିମ ସୀମାବୃଦ୍ଧି ଲକ୍ଷ୍ୟ ।

ମୋ ଅନୁରୋଧରେ ଇସ୍ତ ଆମକୁ ନେଇଗଲା ଜେଫର୍‌ସନ୍‌ଙ୍କ ସ୍ମୃତି ମନ୍ଦିରର କିଛିଟା ଦୂରବର୍ତ୍ତୀ ମିସିସିପି ମିସୋରୀ ସଙ୍ଗମ ସ୍ଥଳକୁ । ଏହିଠାରୁ ଦୁଇ ବୀରଙ୍କର ଯାତ୍ରା ଅନୁକୂଳ, ଗୋଟିଏ ସ୍ମୃତି ସ୍ତମ୍ଭରେ ସେମାନଙ୍କ ବୀରତ୍ୱର ସଂକ୍ଷିପ୍ତ ସାର ଲିପିବଦ୍ଧ । ୧୮୦୪ ଖ୍ରୀଷ୍ଟାବ୍ଦ; ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବାହିନୀର ଓଡ଼ିଶା ବିଜୟ କାଳ । ଲୁଇସ୍ ଓ କ୍ଲାର୍କ ସେହି ବର୍ଷ ମିସୋରୀ ନଦୀରେ ପଶ୍ଚିମ ପଥରେ ଅଗ୍ରସର ହୋଇଥିଲେ । ଏବେ ବି ସେ ସ୍ଥାନ ଜଙ୍ଗଲୀ; ପାର୍କଟିଏ, କିନ୍ତୁ ଖାଁ ଖାଁ ଲାଗେ, ସର୍ପଭୟ, ତା ଭିତରେ ପକ୍ଷୀଟିଏ ନାହିଁ । ଦୁଇ ନଦୀର ମହା ସଙ୍ଗମ । କଲ୍ଲୋଳ-କୋଳାହଳ ତପୋବନର ଶାନ୍ତି ମନରେ ଭରିଦିଏ ।

ଏଇ ଓକ୍, ପାଇନ୍, ୱିଲୋ, କ୍ରିସ୍‌ମାସ୍ ଗଛ ଗହଳରେ ଦେଖିଲୁ ମିସିସିପି ମିସୋରୀର ଆଲିଙ୍ଗିତ ମାନବ ରୂପ—ପ୍ରେମିକ ପ୍ରେମିକା—ପ୍ରେମିକର କେଶ କୃଷ୍ଣ, ପ୍ରେମିକାର ଶୁକ୍ଳ, ଆଲିଙ୍ଗିତ ଅବସ୍ଥାର ରୋମାଞ୍ଚକର ଫଟୋ ଚିତ୍ରଟିଏ ନେଇ ନ ପାରି ସେମାନେ ତୃଷ୍ଣାତୁର ଦୃଷ୍ଟିରେ ଆମକୁ ଅନାଇଲେ । ଇସ୍ତ ମନର କାରୁଣ୍ୟ ବୁଝିଲା ଓ ସେମାନଙ୍କ କାମେରାରେ ଫଟୋଟିଏ ନେଲା ।

୧୯୦୪, ୧୪ ତାରିଖ ମଇ; ବର୍ଷାସିକ୍ତ ଅପରାହ୍ଣ । ଦୁଇ ବୀରଙ୍କ ସହଚର ୧୪ ଜଣ ବଛା ବଛା ସୈନିକ, ୯ ଜଣ ପାହାଡ଼ଚଢ଼ାଳି, କେତେକ ନୌଚାଳକ, କୁରାଢ଼ିଆ, ଶିକାରୀ, କ୍ଲାର୍କଙ୍କ ନିଗ୍ରୋ ଚାକର, ନିଉଫାଉଣ୍ଡ୍‌ଲାଣ୍ଡ୍ କୁକୁର ସ୍କାନର୍ ଓ ଦୁଇଟି ଘୋଡ଼ା । ସଙ୍ଗରେ ବହୁ ଖାଦ୍ୟଦ୍ରବ୍ୟ, ଗୋଳାବାରୁଦ, ଔଷଧ, ବାଟ ଖର୍ଚ୍ଚ ଲାଗି ଦୁଇ ହଜାର ପାଞ୍ଚଶ ଡଲାର । ସ୍ରୋତ ପ୍ରତିକୂଳ, କିନ୍ତୁ ପବନ ଅନୁକୂଳ, ଶୁଭ ଲକ୍ଷଣ ।

ଲୁଇସ୍ ବିଜନବିଳାସୀ, ଭାବୁକ, ଖିଆଲୀ, ଆଦର୍ଶବାଦୀ, ଶଙ୍କାଶୀଳ । କ୍ଲାର୍କ ଠିକ୍ ବିପରୀତ ଚରିତ୍ରର ଲୋକ—ସଦା ପ୍ରଫୁଲ୍ଲ; ପରିବେଶ ଯେତେ ପ୍ରତିକୂଳ ହେଲେ ବି ସେ ଅଧୈର୍ଯ୍ୟ ହୁଅନ୍ତି ନାହିଁ ।

ସେମାନେ ମିସୋରୀ ନଦୀର ୧୬ ମାଇଲ୍ ଉପର ମୁଣ୍ଡକୁ ଗଲା ପରେ ମଣ୍ଡନ କ୍ୟାମ୍ପ୍‌ରୁ, ଅଧିକାଂଶ ଲୋକଙ୍କୁ ବିଦାୟ କରି ଦେଇଥିଲେ ।

ରକି ଲୁଣ ପଥରର ପାହାଡ଼ମାଳା, ହିଂସ୍ର ଜୀବଜନ୍ତୁ ଓ ହିଂସ୍ରତର ଲୋହିତଭାରତୀୟଙ୍କ ବାସସ୍ଥଳୀ । ଦେଖିବା ମାତ୍ରେ ସେମାନେ କୁଆଡ଼େ ହତ୍ୟା

କରନ୍ତି । ଏହି ଜାତୀୟ ବହୁ ଅଳୀକ ଭୟ ଲୋକ ମନରେ ସ୍ଥାନ ପାଇଥିଲା । କଥା ଅଛି—ନ ଦେଖିଲା ଓଉ ଛପଡ଼ା ।

ଏହି ବୀରଦ୍ୱୟ ପ୍ରଥମ ଥର ଲାଗି ପଶ୍ଚିମ ଯାତାୟତ ଉପଯୋଗୀ ଜଳପଥ ଆବିଷ୍କାର କଲେ, ପାହାଡ଼, ପର୍ବତ, ହ୍ରଦ, ପ୍ରପାତ, ବିବିଧ ବୃକ୍ଷଲତା, ନୂତନ ଜୀବଜନ୍ତୁଙ୍କ ଆକାର ପ୍ରକାର, ବ୍ୟବହାର, ବିଭିନ୍ନ ଫୁଲ, ଫଳ, ପଥର, ଖଣିଜ, ମୃତ୍ତିକା, ଲୋହିତଭାରତୀୟଙ୍କ ବାସସ୍ଥାନମାନ ଉଲ୍ଲେଖ କରି ଏକ ମାନଚିତ୍ର ଅଙ୍କନ କଲେ, ଏକ ବିବରଣୀ ଲେଖିଲେ, ସୁନ୍ଦର ଓ ପ୍ରଚଣ୍ଡ ଦୃଶ୍ୟର ଛବି ଅଙ୍କାଇଲେ । କେଉଁ ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟ ପକ୍ଷେ ଉପଯୋଗୀ, କେଉଁ ମୃତ୍ତିକା କି ଫସଲ ଲାଗି ଅନୁକୂଳ, ତାହା ମଧ୍ୟ ଉଲ୍ଲେଖ କଲେ । ଲୋହିତଭାରତୀୟଙ୍କ ସହିତ ସୌଖ୍ୟ ଓ ବ୍ୟବସାୟ ବାଣିଜ୍ୟ ସମ୍ପର୍କ ସ୍ଥାପନ କଲେ ।

ଦିନକୁ ନ' ମାଇଲ୍‌ରୁ ଅଧିକ ଅଗ୍ରଗତି ସମ୍ଭବ ହେଉ ନ ଥିଲା । ଲୋହିତ-ଭାରତୀୟହିଁ ଥିଲେ ଅନ୍ତରାୟ । ମଣ୍ଡନ ଗ୍ରାମରେ କ୍ୟାମ୍ପ୍ ପକାଇବା ଆଗରୁ ସେମାନେ ଗତିରୋଧ କରିଥିଲେ, ସଶସ୍ତ୍ର । ଲୁଇସ୍ ସହଚରମାନଙ୍କ ସହିତ ଯୁଦ୍ଧ ଲାଗି ପ୍ରସ୍ତୁତ ହୋଇଗଲେ, କିନ୍ତୁ ସ୍ଥିରବୁଦ୍ଧି କ୍ଲାର୍କ ଯୁଦ୍ଧ କରିବା ଅପେକ୍ଷା ଏଡ଼ାଇବା ଅଧିକ ବୁଦ୍ଧିମତାର କାର୍ଯ୍ୟ, ବିବେଚନା କଲେ । ସେ ବହୁ ମୂଲ୍ୟବାନ ଉପହାର ଦେଇ ସର୍ଦ୍ଦାରମାନଙ୍କୁ ବଶ କଲେ । କ୍ୟାମ୍ପ୍‌କୁ ଡାକି ସେମାନଙ୍କୁ ଶକ୍ତିଶାଳୀ ଅସ୍ତ୍ରସବୁ ଦେଖାଇଲେ, ଯୁଦ୍ଧ କଲେ କି କ୍ଷୟକ୍ଷତି ଘଟିବ, ତାହା ବୁଝାଇଲେ । ଭୟ ପ୍ରଦର୍ଶନ ଫଳପ୍ରଦ ହେଲା, ଲୋହିତଭାରତୀୟମାନେ ଆଉ ଆକ୍ରମଣ କରିବାକୁ ସାହସ କଲେ ନାହିଁ ।

ତାପରେ ସେମାନେ ନିର୍ବାଧ ଜଳଯାତ୍ରା କରି ମିସୋରି ଓ ନାଇଫ୍ ନଦୀ ସଙ୍ଗମରେ ପହଞ୍ଚିଲେ । ଏଠି ପାଞ୍ଚଗୋଟି ଲୋହିତଭାରତୀୟ ଗ୍ରାମ; କାଠ ଗଡ଼ ଉପରେ କାଠ ଗଡ଼ ନିଦ ଘର କରିଛନ୍ତି । ଗ୍ରାମ ଚାରିପଟେ ବଡ଼ ବଡ଼ କାନ୍ଥ, ଗଡ଼ଖାଇ, ଆତ୍ମରକ୍ଷା ଲାଗି ନିର୍ମିତ । ସେମାନଙ୍କ ସହ କୌଶଳକ୍ରମେ ବନ୍ଧୁତା ଜମାଇଲେ । ସେତେବେଳକୁ ପ୍ରଚଣ୍ଡ ଶୀତ । ବରଫପାତ । ବାହାରକୁ ବାହାରିବା ସମ୍ଭବ ହେଲା ନାହିଁ । ସେମାନେ ବସି ବସି ନୌକା ଗଢ଼ିଲେ । ଛିଣ୍ଡା ଲୁଗା ଫିଙ୍ଗି ଦେଇ ଚମ ପିନ୍ଧିଲେ, ଶୁଖାଇ ରଖିଥିବା ମୃଗ ଓ ବନ୍ୟ ମହିଷ ମାଂସ ଖାଇ ଜୀବନ ଧାରଣ କଲେ ।

ବସନ୍ତ କାଳ । ବରଫ ତରଳିଲା । ବନ୍ୟ ହଂସଦଳ ପଶ୍ଚିମ ପର୍ବତ ମୁଖେ ଉଡ଼ିଗଲେ । ବିଭିନ୍ନ ସ୍ଥାନର ନମୁନା ଦ୍ରବ୍ୟ ସଂଗ୍ରହ କରା ହେଲା । ତାପରେ ଛ'ଟି କାନୋରେ ୩୧ ଜଣ ଯାତ୍ରୀ ରକି ପର୍ବତ ମୁଖେ ମିସୋରିରେ ଯାତ୍ରା କଲେ ।

ପାହାଡ଼ ଉପରେ ପାହାଡ଼, ନଦୀ ପରେ ନଦୀ, ଅରଣ୍ୟ ପରେ ଅରଣ୍ୟ, ପ୍ରପାତ ପରେ ପ୍ରପାତ । ଗମ୍ଭୀର ଗର୍ଜ୍ଜି; ପାହାଡ଼ର ପ୍ରଖରତମ ସ୍ରୋତ ତା ଉପରେ ଅଜାଡ଼ି ହୋଇ ପଡୁଛି, ଝଞ୍ଜାର ଝଙ୍କାରରେ, ତାପରେ ଗମ୍ଭୀର ପାହାଡ଼ ବିବରରେ ନଦୀ ଧାଇଁ କେଉଁଆଡ଼େ ହଜି ଯାଉଛି, ଦିଶୁନାହିଁ ।

ବହୁ କଷ୍ଟରେ ନୌକା ଚଳାଇ ସେମାନେ ଏଲୋଷ୍ଟୋନ୍ ନଦୀ ମଧ୍ୟରେ ପ୍ରବେଶ କଲେ । ଆଗ୍ନେୟ ଗିରି ଅଞ୍ଚଳ । ଏଠି ସେଠି ଧୂଆଁ ବାହାରେ, ଜଳ-ଉତ୍ସ ଉପରକୁ ଉଠେ ।

ନିଉଫାଉଣ୍ଡଲାଣ୍ଡ୍ କୁକୁର ସିଏ ଶିକାରୀ, ଗୋଟା ଗୋଟା ହରିଣ ମାରି ଆଣି ଶୁଆଇ ଦେଉଥାଏ । ବିଭର୍ ଓଧ ଜାତୀୟ ଏକ ପ୍ରାଣୀ; ଉଭୟଚର । ତାର ଦନ୍ତ ତୀକ୍ଷ୍ଣ । ବଡ଼ ବଡ଼ ଗଛର ମୂଳ କାଟି ତଳେ ଶୁଆଇ ଦିଏ । ଦିନେ ବିଭର୍ କୁକୁରର ଗୋଡ଼ କାମୁଡ଼ି ଶିରା ଛିଣ୍ଡାଇ ଦେଲା । ବହୁ ଚିକିତ୍ସା ପରେ ସେ ଭଲ ହେଲା ।

ଅଦୂରରେ ଏକ ବିରାଟ ଜଳପ୍ରପାତ । ଗମ୍ଭୀର ଗର୍ଜ୍ଜି । ପ୍ରଚଣ୍ଡ ଶବ୍ଦ । ଚିଡ଼ ବିଚିଡ଼ ପ୍ରସ୍ତର । ଜଳବିନ୍ଦୁର ଧୂମ ରୌଦ୍ରରେ ଇନ୍ଦ୍ରଧନୁମୟ ହୋଇ ଉଠିଛି । ଅପୂର୍ବ ପ୍ରାକୃତିକ ଶୋଭା ଦେଖି ମୁଗ୍ଧ ଲିଉଇସ୍ ଲେଖିଥିଲେ—ହେ ଭଗବାନ୍, ମୋତେ କବି କାହିଁକି କଲ ନାହିଁ ? ଯଦି ନ କଲ, ଏ ଚମତ୍କାର ଦୃଶ୍ୟସବୁ ଦେଖାଇଲ କାହିଁକି ? ଆହା, ମୋ ଭାଷା କି ଦୁର୍ବଳ ! କେତେ କଥା ମନରେ ଭାବୁଛି, କିଛି ଫୁଟାଇ ପାରୁନାହିଁ ।

ପାହାଡ଼ ଉପରେ ଉଠୁ ଉଠୁ ଦିନେ ସେ ଗୋଟିଏ ବନ୍ୟ ଭଲ୍ଲୁକ ହାତୁଡ଼ରେ ପଡ଼ିଲେ । ବର୍ଚ୍ଛାଟିଏ ଧରି ତଡ଼ି ତଡ଼ି ସେ ତାକୁ ନୌକା ପର୍ଯ୍ୟନ୍ତ ଘେନି ଆସିଲେ । କୌଣସିମତେ ଆତ୍ମରକ୍ଷା କଲାପରେ ସେ ଲେଖିଲେ—ଦୁଇଜଣ ଲୋହିତଭାରତୀୟଙ୍କ ସହିତ ଲଢ଼ିବାକୁ ପ୍ରସ୍ତୁତ, କିନ୍ତୁ ଗୋଟାଏ ଦୁର୍ଦ୍ଧର୍ଷ ବନ୍ୟ ଭଲ୍ଲୁକ ସହିତ ନୁହେଁ ।

ପ୍ରଖର ସ୍ରୋତ; ନୌକା ଯାତ୍ରା ଆଉ ସମ୍ଭବ ହେଲା ନାହିଁ । ସେମାନେ କଟନ୍ କାଠରେ କେତୋଟି ଶକଟ ନିର୍ମାଣ କରି ସ୍ଥଳ ଭାଗରେ ଯାତ୍ରା କଲେ । କିନ୍ତୁ ଦୁର୍ବଳ ଅକ୍ଷ ବାରମ୍ବାର ଛିଡ଼ିବାକୁ ଲାଗିଲା । ସେମାନେ ନୌକାରୁ କେତେ ଖଣ୍ଡ ଶକ୍ତ କାଠ କାଢ଼ି ଶକଟର ଅକ୍ଷ କଲେ ।

ଘୋର ବରଫ, ଘୋରତର ବର୍ଷା । ପ୍ରଚଣ୍ଡ ଶୀତଳ ଝଡ଼ । କିଛି ନ କରି ପାରି ସେମାନେ ନିରାଶରେ ବଂଶୀ ବଜାଇ ନାଚି ଉଠିଲେ ।

ଏଠି ମିସୋରି ନଦୀର ତିନୋଟି ଶାଖା; ବହୁ ବିବେଚନା ପରେ ସେମାନେ ଗୋଟିକରେ ଯାତ୍ରା କଲେ । ସଭାପତିଙ୍କ ନାମାନୁସାରେ ସେ ନଦୀର ନାମ ଦେଲେ ଜେଫର୍‌ସନ୍ ।

କେତେକ ସଶସ୍ତ୍ର 'କାନେଡ଼ୀୟ' ଲୋହିତଭାରତୀୟ ଯୁବତୀଙ୍କୁ ଜବରଦସ୍ତ ଘେନି ଯାଇଥିଲେ । ସେମାନଙ୍କ ମଧ୍ୟରେ ଜଣେ ଗର୍ଭବତୀ ଥିଲା, ନାମ ସାକାଗାଓ୍ୱିଆ । ତାକୁ ଅବହେଳିତ ଭାବେ ଫିଙ୍ଗି ଦେଇ ଯାଇଥିଲେ । ସେ ଅଭିଯାତ୍ରୀ ଦଳର ଶରଣ ନେଲା ଓ ପଥପ୍ରଦର୍ଶିକା ହେଲା । ମିସୋରି ଶାଖାରେ ଜଳଯାତ୍ରାବେଳେ ସେ ପାଟିକରି ଉଠିଲା—ଏ ଜାଗାସବୁ ମୋର ଚିହ୍ନାଜଣା । ସେ ମହିଳା ସୁସୋନ୍ ଲୋହିତଭାରତୀୟା ।

ଅଭିଯାତ୍ରୀମାନେ ସମସ୍ତେ ଦାଢ଼ିଆ । ଦାଢ଼ିଆ ନୃଶଂସ କାନେଡ଼ୀୟମାନେ ବହୁ ଭାରତୀୟଙ୍କୁ ହତ୍ୟା କରି ପତ୍ନୀ କନ୍ୟାମାନଙ୍କୁ ହରଣଚାଲ୍ କରି ନେଇଥିଲେ । ତେଣୁ ସେଇ ଜାତୀୟ ଲୋକ ଆଖିରେ ପଡ଼ିବାମାତ୍ରେ ଲୋକୁଆ ଭୟ ଜାତ ହେଲା । ପଳାଇ ଯାଇ କଏ କୁଆଡ଼େ ଲୁଚିଲେ । ତେଣୁ ଲୁଇସ୍ ଓ କ୍ଲାର୍କ ଘୋଡ଼ାରେ ବସି ସୁସୋନ୍ ଭାରତୀୟଙ୍କୁ ଖୋଜି ଲାଗିଲେ ଓ କେତେଜଣ ସ୍ତ୍ରୀ ଲୋକଙ୍କୁ ନୌକା ନିକଟକୁ ଘେନି ଆସିଲେ । ସେମାନେ ଆତଙ୍କରେ ଚିତ୍କାର କରୁଥିଲେ । ସେମାନଙ୍କୁ ଦେଖି ସାକାଗାଓ୍ୱିଆ କହିଲା—ଡର ନାହିଁ । ଏମାନେ ଶତ୍ରୁ ନୁହନ୍ତି, ବନ୍ଧୁ ।

ସ୍ତ୍ରୀଲୋକମାନଙ୍କ ଉଦ୍ଧାର କରିବା ଲାଗି ସହସ୍ର ସଂଖ୍ୟାରେ ସଶସ୍ତ୍ର ସୁସୋନ୍ ଭାରତୀୟ ଆସି ପହଞ୍ଚିଲେ । 'ଏଥର ନିଶ୍ଚିତ ମୃତ୍ୟୁ'—ମନେ ମନେ ଶଙ୍କିତ କ୍ଲାର୍କ ବନ୍ଧୁକ ତଳକୁ ନୁଆଇଁ ଦେଲେ । ପତାକାଟିଏ ଟେକି ଶାନ୍ତି ଆଶାରେ ଆଗେଇଲେ । ସାକାଗାଓ୍ୱିଆ ସୁସୋନ୍ ଭାଷାରେ ଅଭିଯାତ୍ରୀଦଳର ମନୋଭାବ ବୁଝାଇ ଦେଲା—ଏମାନେ ବୈରୀ ବା ଡାକୁ ନୁହନ୍ତି । ସ୍ତ୍ରୀଲୋକ ହରଣ୍‌ଚାଲ୍ କରି ନେବା ଉଦ୍ଦେଶ୍ୟରେ ଆସି ନାହାନ୍ତି । ସେମାନେ ବ୍ୟବସାୟୀ ଗୃହାନ୍ତି, ବନ୍ଧୁ । ଏଠି ଜଣେ ହେଲେ ପୁରୁଷ ଦେଖିଲେ ନାହିଁ । କାହା ସଙ୍ଗେ କଥାଭାଷା କରିବେ ? ସ୍ତ୍ରୀଲୋକଙ୍କୁ ନେଇ ଆସିଲେ ପୁରୁଷମାନେ ଅବଶ୍ୟ ବାହାରିବେ । ଏହା ସେମାନଙ୍କର ଏକ କୌଶଳ । ଲୁଇସ୍ ସୁସୋନ୍ ସର୍ଦ୍ଦାରଙ୍କୁ ଗୋଟିଏ କୋଟ୍, ଦହଲ ମୋଜା, କେତେକ ରୁମାଲ୍, କିଛି ଧୂଆଁପତ୍ର ଆଉ ମଦ ଦେଲେ । ସେମାନଙ୍କଠାରୁ ଚାରିଗୋଟି ଅଶ୍ୱ ଉପହାର ପାଇଲେ ।

ଜଣେ ବୃଦ୍ଧ ସୁସୋନ୍ କହିଲେ—ରକି ପର୍ବତମାଳା ପାର ହେବା ମନୁଷ୍ୟ ପକ୍ଷେ ଦୁଷ୍କର । ନଦୀର ସ୍ରୋତ ପ୍ରଖର । ତା ଭିତରର ବୃହତ୍ ଶିଳାଖଣ୍ଡ ନୌକା-

ସ୍ଖଳନର ପ୍ରଧାନ ଅନ୍ତରାୟ । ତାଛଡ଼ା ରକିର ବହୁତ ଅଂଶ ଲମ୍ବା । ଶିକାର ମିଳେ ନାହିଁ ।

ରକି ପାର କରାଇ ଦେବାକୁ ଛ'ଜଣ ସୁସୋନ୍ ଯୁବକ ବାହାରିଲେ । ରକି ପାର ହେବାବେଳେ ସେମାନଙ୍କ ଖାଦ୍ୟଶସ୍ୟ ଶେଷ ହୋଇଗଲା । ଗୋଟିଏ ଭଲ୍ଲୁକ ମାଂସ ଭକ୍ଷଣ କରି ସେମାନେ ଜୀବନ ରକ୍ଷା କଲେ; ବରଫ ତରଳାଇ ତୃଷା ନିବାରଣ କଲେ । ସ୍ଥାନୀୟ ସୁସୋନ୍ ଭାରତୀୟମାନେ ସେମାନଙ୍କୁ କିଛି ସାମନ୍ ମାଛ ଶୁଖୁଆ, କିଛି ଗୁଳ୍ମମୂଳ ଚୂର୍ଣ୍ଣ ଅଟା ଦେଲେ । ପାହାଡ଼ ଉପରେ କ୍ଲାର୍କ ଘୋଡ଼ାରୁ ପଡ଼ି ଆହତ ହେଲେ । ଅଖାଦ୍ୟ ଖାଇବା ଫଳରେ ଜ୍ୱରରକ୍ତ ଝାଡ଼ା ରୋଗରେ କେତେକ ଯାତ୍ରୀ ପ୍ରାଣତ୍ୟାଗ କଲେ । ଲିଉଇସ୍‌ଙ୍କୁ ଚିକିତ୍ସା ଜଣା । ସେ ସମସ୍ତ ଯାତ୍ରୀଙ୍କୁ କିଛି କିଛି ଔଷଧ ଖାଇବାକୁ ଦେଲେ ।

ଅଶ୍ୱମାନଙ୍କୁ କ'ଣ ଖାଇବାକୁ ଦିଆଯିବ ? କିଛି ଉପାୟ ନ ପାଇ ସୁସୋନ୍ ଭାରତୀୟଙ୍କୁ ଦେଇଦେଲେ—ରଖ, ଫେରିଲେ ଆମ ଘୋଡ଼ା ଆମକୁ ଫେରାଇ ଦେବ ।

ତାପରେ କେତୋଟି ପାଇନ୍ ଗଛ ଗଣ୍ଡିର ମଧ୍ୟାଂଶ ପୋଡ଼ି ସେମାନେ କାନୋ ପ୍ରସ୍ତୁତ କଲେ; କ୍ଲିଅର୍‌ୱାଟର୍ ଓ ସ୍ନେକ୍ ନଦୀରେ ନୌକା ବାହି କିଛି ଦୂର ଅଗ୍ରସର ହେଲେ, ପହଞ୍ଚିଲେ ସୁପ୍ରସାରିତ କଲମ୍ବିଆ ନଦୀ ତଟରେ । କଲମ୍ବିଆ ମତ୍ସ୍ୟଭରା, କିନ୍ତୁ ଅଲଣା ମତ୍ସ୍ୟ ଅରୁଚିକର ହେଲା । କେତେକ କୁକୁର ମାରି ମାଂସ ଭକ୍ଷଣ କଲେ, ଅଶ୍ୱ ମାଂସ ଅପେକ୍ଷା ଏହା ସ୍ୱାଦୁତର ବୋଲି ମତ ପ୍ରକାଶ କଲେ । କିନ୍ତୁ ଜୀବନରକ୍ଷାକାରୀ ସ୍କାନ୍‌କୁ ହତ୍ୟା କରିବାକୁ ସେମାନଙ୍କ ହାତ ଗଲା ନାହିଁ ।

କଲମ୍ବିଆରେ କ୍ଲାର୍କ ସମୁଦ୍ର ଓଧ ଦେଖିଲେ, ଲୋହିତଭାରତୀୟ ଯୁବତୀମାନେ ସମୁଦ୍ର ଗେଣ୍ଡା ଓ ଶାମୁକା ଅଳଙ୍କାର କରି ପିନ୍ଧିବାର ଲକ୍ଷ୍ୟ କଲେ । ତାଙ୍କର ଧାରଣା ହେଲା—ସମୁଦ୍ର ଆଉ ଦୂରବର୍ତ୍ତୀ ନୁହେଁ ।

କୁହୁଡ଼ିଆ ପାଗ । ଜଣେ ନୌବାହୀ ନୀଳ ଦିଗ୍‌ବଳୟକୁ ଲକ୍ଷ୍ୟ କରି ଆନନ୍ଦରେ ଚିତ୍କାର କଲା—ସମୁଦ୍ର ହୋ । ଅନ୍ୟ ନାବିକମାନେ ତୋଫା ଖରାରେ ଫେନିଳ ନୀଳ ତରଙ୍ଗର ନୃତ୍ୟ ଦେଖି ଉନ୍ମତ୍ତଭାବେ ନୃତ୍ୟ କରିବାକୁ ଲାଗିଲେ ।

ମିସିସିପି ମିସୋରୀ ସଙ୍ଗମ ସ୍ଥଳ ସେଣ୍ଟ୍‌ଲୁଇସ୍ ଗ୍ରାମ । ସେତେବେଳର ଲୋକସଂଖ୍ୟା ମାତ୍ର ଏକ ହଜାର । ସେଣ୍ଟ୍‌ଲୁଇସ୍ ଗ୍ରାମ ଛାଡ଼ିବାର ଦୁଇ ବର୍ଷ ପୂରିଲା—ଆଜି ଦ୍ୱିତୀୟ କିସ୍‌ମାସ୍ ଉତ୍ସବ । ବନ୍ଧୁକ ଗର୍ଜି ଉଠିଲା ।

ଲୁଇସ୍ ଓ କ୍ଲାର୍କଙ୍କ ନାମରେ ନାମିତ ଏକ କ୍ଷୁଦ୍ର ନଦୀ । ତା କୂଳରେ ଅଭିଯାତ୍ରୀଦଳ ଡେରା ପକାଇଲେ, ପ୍ରଶାନ୍ତ ସାଗର—ତାର ଶାନ୍ତ ଢେଉ ସେମାନଙ୍କ ମନରେ ପରମ ଶାନ୍ତି ଭରି ଦେଲା ।

ତା କୂଳରେ ନେତ୍ବହତଧାରୀ ସ୍ଥାନୀୟ ଯୁବତୀ ସିପ ସଂଗ୍ରହ କରୁଥିଲେ—ବିଦେଶୀ ନାବିକମାନଙ୍କ ସଂସର୍ଗରେ ଆସି ସମସ୍ତେ ପ୍ରାୟ ରୋଗାକ୍ରାନ୍ତ । ସେମାନଙ୍କ ସଂସ୍ପର୍ଶ ବିପଜ୍ଜନକ, ମାରାତ୍ମକ—ଲୁଇସ୍ ସହଚରମାନଙ୍କୁ ଚେତାଇ ଦେଲେ । ରୋଗାକ୍ରାନ୍ତମାନଙ୍କୁ ସେ ପାରଦ ଖୁଆଇଲେ । ଯୌନବ୍ୟାଧି ଆରୋଗ୍ୟ କରିବା ଲାଗି ସେତେବେଳେ ଏଇ ଔଷଧ ଦିଆ ହେଉଥିଲା ।

ମାର୍ଚ୍ଚ ୨୩ ତାରିଖ, ବର୍ଷା । ସେମାନେ ମିସିସିପି ମିସୌରୀ ସଙ୍ଗମ ସ୍ଥଳକୁ ଫେରି ଆସିଲେ । ସେତେବେଳକୁ ସେମାନେ ସ୍ୱଦେଶରେ ବିଖ୍ୟାତ । ଏହି ସାହସୀ ବୀରଦ୍ୱୟ ନୌକାରୁ ଓହ୍ଲାଇବା ମାତ୍ରେ ସେମାନଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା । ଏମାନଙ୍କ ଯାତ୍ରାକାଳ ଦୁଇ ବର୍ଷ, ଚାରିମାସ, ନ' ଦିନ । ରାଷ୍ଟ୍ରପତି ଥୋମାସ୍ ଜେଫରସନ୍ ବୀରପୂଜାର ଉପଯୁକ୍ତ ବ୍ୟବସ୍ଥା କରିଥିଲେ । ସେ ଲୁଇସଙ୍କୁ ନୂତନ ପ୍ରଦେଶ ଲୁଇସିଆନାର ଗଭର୍ଣ୍ଣର୍ ଓ କ୍ଲାର୍କଙ୍କୁ ସେଣ୍ଟଲୁଇସର ଗଭର୍ଣ୍ଣର୍ ରୂପେ ନିଯୁକ୍ତ କଲେ ।

ଏହି ବୀରଦ୍ୱୟଙ୍କ ତ୍ୟାଗପୂତ କାହାଣୀ ଆମେରିକାବାସୀର ମୁଖେ ମୁଖେ । ସେମାନଙ୍କ ନାମ ବହୁ ସାଂସ୍କୃତିକ ଓ ସାମାଜିକ ଅନୁଷ୍ଠାନ ସହିତ ସଂଯୁକ୍ତ । କେତେ ହାଇୱେ ସେମାନଙ୍କ ନାମରେ ନାମିତ । ଆମେରିକାର ଇତିହାସରେ ସେମାନଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।

ଆବିଷ୍କାର ଓ ଉଦ୍ଭାବନ କାହାଣୀ ମାନବଜାତିର ଅଗ୍ରଗତିର କାହାଣୀ । ଲୁଇସ୍ ଓ କ୍ଲାର୍କଙ୍କ ଦୁଃସାହସିକ କାର୍ଯ୍ୟସାଧନ ଗାଥା ସୃଷ୍ଟିଶୀଳ, ଅଗ୍ରଯାୟୀ କେଉଁ ବ୍ୟକ୍ତିକୁ ଆଜି ଉଦ୍‌ବୁଦ୍ଧ ନ କରେ ?

# ପାଞ୍ଚ

## ଅଧେ ଆପଣା ଅଧେ ପର

କଥା ଅଛି—"ସାଇ ପଡ଼ିଶାରେ କରିବ ଘର
ଅଧେ ଆପଣା ଅଧେ ପର ।"

ସାଇପଡ଼ିଶାଙ୍କ ଗୁଣଦୁର୍ଗୁଣ, ଦୋଷଦୁର୍ବଳତା ସବୁ ଆଖିରେ ପଡ଼େ; ସେମାନଙ୍କୁ ଭଲ ପାଇବା କିଛି ସହଜ କଥା ନୁହେଁ । ସେମାନଙ୍କ ମୁହଁରୁ ହିଁ ବ୍ୟକ୍ତିର ପ୍ରକୃତ ମନୋଭାବ ବୁଝାଯାଏ ।

ସାଇପଡ଼ିଶାରେ ଘର କରି କେହି ଆପଣାସୁଖୀ ହେଲେ ଚଳେ ନାହିଁ । ସାଇର ହାନିଲାଭ, ଆପଦ ବିପଦରେ ଛିଡ଼ା ହେଲେ ମହତପଣ ଫୁଟେ, ପଡ଼ୋଶୀ ବି ଦୁଃଖ ଦୁର୍ବିପାକରେ ଆସି ଛିଡ଼ା ହୁଅନ୍ତି ।

ସେଣ୍ଟଲୁଇସ୍ ନଗରର 'ବଙ୍କା ବଙ୍କା ନଦୀ' ଗଳିରେ ପନ୍ଦରଟି ପରିବାର ରହନ୍ତି, ଗୋଟିଏ ପରିବାର ପରି ଚଳନ୍ତି । ପରସ୍ପରଠାରୁ ଛଡ଼ା ଛଡ଼ା, ଲମ୍ବା ଚୌଡ଼ା ଘର, ଗଛବୃଚ୍ଛଭରା ବାଡ଼ି; ଜଙ୍ଗଲ ଭିତରେ ଯେପରିକି ଲୋକ ରହନ୍ତି । କିନ୍ତୁ କୌଣସି ସ୍ଥାନ ଜଙ୍ଗଲୀ ନୁହେଁ । ଏଇ ପଡ଼ୋଶୀଙ୍କ ଭିତରେ ଅମେଳ, ଅପଡ଼, କି ମୁହଁ ଫୁଲଫୁଲି ନାହିଁ, କାରଣ ସ୍ୱାର୍ଥର ସଂଘର୍ଷ ନାହିଁ । କଳିତକରାଳ ପ୍ରଶ୍ନ ଉଠେନାହିଁ ।

ସହରର ଏ ଘରଲୋକ ସେ ଘରେ କିଏ ଅଛି ଜାଣେ ନାହିଁ । ଏଠି କିନ୍ତୁ ସହରର ଭିଡ଼ ନାହିଁ, ସମସ୍ତେ ଜଣାଜଣି, ଚିହ୍ନାଚିହ୍ନି । ମୁଖ୍ୟତଃ ଗୃହଭୋଜ ବା ଡିନର୍ ଫଳରେ ଏହା ସମ୍ଭବ ହୁଏ ।

ଉଦ, ଇଭ ସ୍ଥାୟୀ ବାସିନ୍ଦା ଟିକେଟ୍ ପାଇଥିଲେ ବି ମନ ଶଙ୍କାମୁକ୍ତ ନୁହେଁ । ଭାରତୀୟତାର ଗନ୍ଧ ସେମାନଙ୍କ ରୂପ ବା ରଙ୍ଗରୁ ଲୁଚି ନାହିଁ । ସ୍ଥାନୀୟ ଲୋକଙ୍କ ସହିତ ମିଳିମିଶି ଚଳିବାର ଆବଶ୍ୟକତା ସେମାନେ ବୁଝନ୍ତି, ସେ ଦିଗରେ ସଦା ସତର୍କ ରହନ୍ତି । ସଦା ନମ୍ର, ସାହାଯ୍ୟକାଂକ୍ଷୀ ମନୋଭାବ । ମଧ୍ୟେ ମଧ୍ୟେ

ଯାଇପଡ଼ିଶା ଗ୍ରୀସ୍ କିମ୍ବା ଭାରତରୁ ଆସିଥିବା ବନ୍ଧୁ ବା ଡ଼ିନାର୍‌ରେ ମିଳିତ ହୁଅନ୍ତି, ସଖ୍ୟ ବିନିମୟ ଘଟେ । ସେମାନଙ୍କ ମଧ୍ୟରୁ କେତେକ ମନର ପାଖାପାଖି, ଅକାଳେ ଅବେଳେ ଭରସାର ସ୍ଥଳ ।

ମୋତେ ପୂର୍ବରୁ ଜାଣିଛନ୍ତି, ମୋ ଆସିବା କଥା ଶୁଣିଛନ୍ତି । ଏ ମଧ୍ୟରେ କେତେ ଯୋଗ ବିୟୋଗ ଘଟିଛି, କେତେ ଗଛ ବହୁତ ବଢ଼ି ଯାଇଛନ୍ତି, କେତେ ବା ଝଡ଼ରେ ନିଃଶେଷ ହୋଇ ଯାଇଛନ୍ତି; କେତେ ନବରୋପିତ ବୃକ୍ଷ, ଗୁଳ୍ମ । କେତେ ବନ୍ଧୁତା ଜମାଇଥିଲି । ଏବେ ଅଚିହ୍ନା ଲାଗେ, ବାଳକ ବା କିଶୋରକୁ ଯୌବନ ବା ବାର୍ଦ୍ଧକ୍ୟରେ ଦେଖିଲେ ଯେପରି, ନୂଆ ପରିଚୟ ଦେବାକୁ ବା ନେବାକୁ ହେଉଛି ।

ଯାଇର ମଣିଷମାନେ ବି ଚିହ୍ନା ଚିହ୍ନା ଲାଗନ୍ତି । ଠିକ୍ କିଏ ବୋଲି କହି ହେଉ ନାହିଁ । ସମୟ କ'ଣ କାହା ଉପରେ ପ୍ରଭାବ ବିସ୍ତାର ନ କରି ଛାଡ଼ିଛି ? ମୁଁ ଯେପରି ବୁଢ଼ା ହୋଇ ଲାଗିଛି, ଅନ୍ୟମାନେ ସେହିପରି ହୋଇଛନ୍ତି, ମୁଁ ବା କେତେ ପ୍ରଭାବ ପକାଇଥିଲି ? ତେଣୁ ଭୁଲିଯିବା ହିଁ ସ୍ୱାଭାବିକ ।

ଆମେ ଉଦିଇଙ୍କର ସମ୍ପର୍କୀୟ; ଏବେ ଜାଣିବା ପରେ ଆମ ସଙ୍ଗେ ଭାବ ଜମେଇବା ଲାଗି ଖୋଜି କରି ଡାକୁଛନ୍ତି । ସେମାନଙ୍କ ଗତିବିଧିର ମୋଟାମୋଟି ପରିଚୟ ନ ଦେଲେ ମୋ କାହାଣୀରୁ ପ୍ରାୟ ଅଜୁହା ରହିଯିବ ।

## ଅରହାନ୍ ଓ ବେଟ୍ଟୀ

ଅର୍‌ହାନ୍ ଏକ୍‌ସରେ ଡାକ୍ତର, ତୁର୍କୀ ମୁସଲ୍‌ମାନ୍, ବିଭା ହୋଇଛନ୍ତି ଆମେରିକାସ୍ଥ ଖ୍ରୀଷ୍ଟିଆନ୍ ଝିଅ ବେଟ୍ଟୀକୁ । ଗୋଟିଏ ଝିଅ, ପୁଅଟିଏ ।

ସାତ ଜଣ ଦେଶୀବିଦେଶୀ ଡାକ୍ତର ମିଶି କମ୍ପାନୀଟିଏ ଗଢ଼ିଛନ୍ତି । ବର୍ଷକେ ଚାରି ସପ୍ତାହ ଛୁଟି । ଅରହାନ୍ ସ୍ୱଭାବତଃ ସ୍ନେହୀ । ସ୍ୱଦେଶର ବନ୍ଧୁ-ବାନ୍ଧବଙ୍କ ସହିତ ସମ୍ବନ୍ଧ ତୁଟାଇପାରି ନାହାନ୍ତି । ବର୍ଷକୁ ଥରେ ଘରକୁ ଯାନ୍ତି । ଏବେ ସାନ ଭଉଣୀ ଲାଗି ୨୦ ହଜାର ଡଲାର ରେ ଘରଟିଏ କିଣି ଦେଇଛନ୍ତି । ଗରିବ ଭାଇମାନଙ୍କ ପଢ଼ା ପ୍ରତି ନଜର । ଯଥାମତ ସାହାଯ୍ୟ ପଠାନ୍ତି । ଖୋଲା ହାତ, ସ୍ନେହାଦର ଭାବ; ତେଣୁ ତାଙ୍କ ଆଗମନକୁ ବନ୍ଧୁକୁଟୁମ୍ବ ଚାତକ ପରି ଚାହିଁଥାନ୍ତି ।

ତାଙ୍କ ପରାର୍ଥପର ଭାବ ଓ ଦାମ୍ପତ୍ୟ ଗୃହସ୍ୱାର୍ଥରେ ବ୍ୟାଘାତ ଘଟାଏ । ତାଙ୍କ ଗତିବିଧି ଅସଂଯତ, ମଦ୍ୟପାନ ସୀମାତିରିକ୍ତ । ବାଚାଳତା ପ୍ରଚଣ୍ଡ । ଏ ସବୁ

ପ୍ରତ୍ୟେକ ମା ସ୍ତ୍ରୀ ବେଙ୍ଗୀ, ବଡ ବଡ଼ ଝିଅ ପୁଅ କେହି ଦ ଆଖିରେ ଦେଖି ପାରନ୍ତି ନାହିଁ । ଆୟର ଅଧାଅଧି ଆୟକର ବଗ୍ରଗ ନଏ, ବାକି ଅଧାର ଅଧା ମଦପିଆରେ, ତଉଠର ଅଧା ଦାନ ଧର୍ମରେ; ବାକି ଅର୍ଥରେ ସଂସାର ଚଳେ ନ ଚଳେ । ଏହା ହିଁ, ଘରେ ଅପ୍ରୀତି ଓ ଅଶାନ୍ତିର ମୁଖ୍ୟ କାରଣ ।

ବେଙ୍ଗୀ ସୁନ୍ଦରୀ, ସ୍ନେହଶୀଳା, ହାସ୍ୟମୁଖୀ, ଗୃହକର୍ମନିପୁଣା । ଜନେ ଗୃହିଣୀ କରୁଥିଲେ ହୁଏତ ଘରର କିଛି ଦୁଃଖ ଲାଘବ କରିପାରନ୍ତା । କିନ୍ତୁ ଅବହେଳିତ ସଂସାର ଅସମ୍ଭାଳ ହୋଇ ଉଠିଥାନ୍ତା, ତେଣୁ ତଳେ ପକ୍ଷିଣୀ ଶାବକମାନଙ୍କୁ ପାଳିଲା ପରି ସେ ପିଲାମାନଙ୍କୁ ପାଳି ମଣିଷ କରୁଛି । ପିଲାମାନେ ବାପର ପାଖ ମାଡ଼ନ୍ତି ନାହିଁ । ଅରହାନ୍‌ର ଗୃହସଙ୍ଗୀ ଗୋଟିଏ ବିଶାଳ କୁକୁର ମାତ୍ର ।

ବେଙ୍ଗୀର ବୟସ ୪୦ ବର୍ଷ । ସାଧ୍ୟମତେ ଚେଷ୍ଟା କରୁଛି । ମଦ ଛଡ଼ାଇ ପାରୁନାହିଁ । ଅରହାନ୍ ଦୃଢ଼ ସଂକଳ୍ପ କରୁଛନ୍ତି, କିନ୍ତୁ ପାଣି ଫାଟିଯାଉଛି । ମଦର ପୂର୍ଣ୍ଣ ଗ୍ରାସରେ ପଡ଼ି କେତେ ଜଣ ଖସି ପାରୁଛନ୍ତି ?

ହୃଦ୍‌ରୋଗର ପ୍ରଥମ ଆକ୍ରମଣ; ଡାକ୍ତର ତାଗିଦ୍ ଦେଇଛନ୍ତି । ଅରହାନ୍ ଭ୍ରୂକ୍ଷେପ କରି ନାହାନ୍ତି ।

ଉଦୟର ନିଜର ସ୍ୱିମିଂ ପୁଲ ନାହିଁ । ସେ ପଡୋଶୀର ପୁଲ୍‌ରେ ପହଁରିଲା । ରବର ଶେଯଟିଏ; ତା ଉପରେ ଶୋଇ ଆହୁଲା ମାରି ବୁଲିଲା ।

ପୁଲ୍ କୂଳରେ ତରୁଣ ଓକ୍, ପକ୍ୱ ଲାଲ୍ ଫଳଭରା ପ୍ଲମ୍ । ଗଛବୃଛ, ଫୁଲଫଳ ଓ ଘାସ ଉପରେ ଅର୍‌ହାନ୍‌ଙ୍କର ଯେତେ ଦୃଷ୍ଟି, ପିଲାଙ୍କ ଉପରେ ସେତେ ନାହିଁ । ପ୍ଲମ୍ ପ୍ରତି ଆମର ଆଗ୍ରହ ଦେଖି ସେ ଦୁଇଟି ଡାଳ ଭାଙ୍ଗି ଆଣିଦେଲେ । ଆମେ ଗୋଟିଏ ଗୋଟିଏ ପାଚିଲା ପ୍ଲମ୍ ପାଟିରେ ପକାଇଲୁ ।

ବାଘ ପରି କୁକୁରଟା ଆମ ଉପରକୁ ମାଡ଼ି ଆସୁଥାଏ । ଆଜ୍ଞା ଅବଜ୍ଞା କଲାରୁ ଅରହାନ୍ ତା ବେକ ଚମଡ଼ାକୁ ଧରି ଦି ଜାବଡ଼ା ଦେଲା । କାଟିଥିବ, ଏମନ୍ତ ନୁହେ । କିନ୍ତୁ କୁକୁର ବୁଝିଲା—ଏ ମାଲିକର ମାଡ଼; ଅଧିକ ଅମାନ୍ୟ ହେଲେ ଶାସ୍ତି ଗୁରୁତର ହୋଇପାରେ ।

ଅରହାନ୍ ଲତାକୁ ଡାକୁଥାନ୍ତି 'ହନି' ବୋଲି । ମୁଁ ପଚାରିଲି—ଏ ଦେଶରେ ହନି ଅପେକ୍ଷା ମନି ବଡ଼ । ପ୍ରାୟ ପୃଥିବୀରେ ସର୍ବତ୍ର ସେଇଆ । ଏହା ଶୁଆଡ଼େ ସୂର୍ଯ୍ୟରଶ୍ମି ଅପେକ୍ଷା ଉଜ୍ଜ୍ୱଳତର, ମଧୁ ଅପେକ୍ଷା ମଧୁରତର । ଆପଣ ହନି ଡାକିବା ଅପେକ୍ଷା ମନି ଡାକୁନାହାନ୍ତି କାହିଁକି ?

କିନ୍ତୁ ଅରବିନ୍ଦ ମୋ ଶ୍ଳେଷ ବୁଝିପାରିଲେ ନାହିଁ । ଆକାଶକୁ ହାତ ଟେକି ଉଚ୍ଚତର ଶକ୍ତିକୁ ନମସ୍କାର କଲେ । କିନ୍ତୁ ଉଚ୍ଚ ଶକ୍ତି ଉପରେ ନ ଥିଲା, ଥିଲା ଜଳ ଭିତରେ; ଘଣ୍ଟାକ ଘଣ୍ଟା ଟୋପିଏ ଟୋପିଏ ଅର୍ଘ୍ୟ ତାକୁ ଦେଉଥିଲେ । ସେ ତାଙ୍କୁ ଗ୍ରାସ କରି ଆସୁଥିଲା; ଚକ୍ଷୁ ପ୍ଳୁମ୍ ଫଳ ପରି ରକ୍ତାକ୍ତ, ଘୂର୍ଣ୍ଣନ୍ତ । ବଚନ ବାଗ୍ରୁଳ ।

ବେଟ୍ଟୀ ଘରେ ବ୍ରିଜ୍ ଭୋଜି । ଲିଡା ସ୍ନେହରେ ତା ହାତରେ କଟକୀ ତାରକସୀ ମୁଦିଟିଏ ଉପହାର ଦେଲା । ବେଟ୍ଟୀ କାଣିଆଙ୍ଗୁଠିରେ ପିନ୍ଧିଲା; ହୁଗୁଳା । ବଣି ଆଙ୍ଗୁଠିରେ ପିନ୍ଧିଲା । ମୁଁ କହିଲି—ସେଇଟି ବିଷ ଆଙ୍ଗୁଠି; ସେଥିରେ କେହି ମୁଦି ପିନ୍ଧନ୍ତି ନାହିଁ । ପଣ୍ଡ ଆଙ୍ଗୁଠିରେ ବିବାହ ମୁଦି । ବେଟ୍ଟୀ ମଝି ଆଙ୍ଗୁଠିରେ ପିନ୍ଧିଲା ।

ବେଟ୍ଟୀ ମଦ୍ଦରେ ପ୍ରସ୍ତୁତ କରିଛି ବାକାଲ୍‌ବା; ସୂନ୍‌ପାପ୍‌ଡ୍ରି, ବାର୍‌କ, ଟର୍କୀ ହାଲୁଆ, କଫିକେକ୍ । ପହିଲେ ଲେମ୍ବୁରସଦିଆ ଟ୍ରି' ଆଉ ଆଲ୍‌ମଣ୍ଡ୍‌ରେ ବ୍ରିଜ୍ ଭୋଜି ଆରମ୍ଭ ହୋଇଥିଲା ।

ବିଭାଘର ହୋଇପାରେ, ନପାରେ । ଏବେ ଦେଖାଗୁହାଁ, ହୃଦ ପରଖା-ପରଖି ପର୍ବ; ସପ୍ତାହ ଶେଷ ଦୁଇଦିନ କୌଣସି ସୁଦୂରସ୍ଥ ସ୍ଥାନରେ ଭାବୀ ଜାମାତା ସହିତ କଟାଉଛି । ବେଟ୍ଟୀର ଝିଅ ଘରେ ଥିଲେ କଥା ଜମାନ୍ତା । ଅରବିନ୍ଦ ଟଳ-ମଟଳ । କାଲେ ପ୍ରଶସ୍ତିନା ପହଞ୍ଚିଯିବ, ଏଇ ଆଶାରେ ଭାବୀ ଜାମାତା ଶ୍ୱଶୁର ସହିତ ଆଳାପରେ ସମୟ ବିତାଉଛି । ଆମେ ବିଦାୟ ନେଲୁ ।

## ଡିଉକ୍ ପରିବାର

ସକାଳୁ ଉଠିଲେ ମୁହାଁ ଚୁହାଁଚୁହିଁ—ଲଗାଲଗି ପଡ଼ୋଶୀ—ଡିଉକ୍ ପରିବାର; ବୁଢ଼ାବୁଢ଼ୀ, ଅଖଣ୍ଡ ପ୍ରୀତି, ଦି ମୁହାଁ ଦିହିଙ୍କର ଦର୍ପଣ । ସେଥିରେ ପରମ ଆନନ୍ଦ, ଚରମ ସୁଖ ।

ଏଡ଼େବଡ଼ ଘରେ ମାମୁଁ ମାଈଁ ଦି ପ୍ରାଣୀ । ଜିନିଷପତ୍ର ସଜାସଜି, ଦୋକାନରେ ଯେପରି । ଫିଙ୍ଗାଫୋପଡ଼ା ବା ଏପଟ ସେପଟ କରିବାକୁ ପିଲା ନାହାନ୍ତି ।

ନିଜର ସଂସାର ବୋଇଲେ ପୁଅଟିଏ, ଝିଅଟିଏ, ସ୍ୱାଧୀନ ସଂସାର କଲେଣି । ବେଳେ ବେଳେ ବାପମାଆଙ୍କୁ ଦେଖି ଆସନ୍ତି । ଛୁଆଙ୍କ ଉପଦ୍ରବରେ ଘର

ପଡ଼େ ଉଠେ । କିନ୍ତୁ ଜନକପଦରେ କେହି ହାତ ଲଗାନ୍ତି ନାହିଁ; ବାଳଖିଲ୍ୟ-ମାନଙ୍କର ଖିଆଲି ଲୀଳାରେ କିଛି ଭଙ୍ଗିରୁଜି ଯିବା ଭିନ୍ନ କଥା ।

ବୁଢ଼ାବୁଢ଼ୀ ବସିଥାନ୍ତି, ଘାସ ପଡ଼ିଆରେ, ଗଛମୂଳେ, ମୁହଁ ଚୁହାଁଚୁହିଁ ହୋଇ । ରାବିଟ୍ ଖରାରେ ଡେଇଁ ଡେଇଁ ଆସି ସାମ୍ନାସାମ୍ନି ଛିଡ଼ା ହୁଏ—ଯେପରିକି କହେ—ଏ ସଂସାର କେତେ ଭଲ, କେଡ଼େ ଭଲ ! ବସ୍ତୁତ ଭଙ୍ଗାରୁଜା ଭିତରେ ଏଇଠି ଛିଡ଼ା ହେଲେ ଟିକିଏ ଶାନ୍ତି ମିଳେ ।

## ଥିଲେ କେତେ ନ ଥିଲେ କେତେ

ସମ୍ପର୍କ ନାହିଁ, ଆମ ସହିତ ତାଙ୍କର, ତାଙ୍କ ସହିତ ଆମର । ଏ ଦୁଆରୁ ସେ ଦୁଆର; କିନ୍ତୁ କେବେ ଆଖିରେ ପଡ଼ନ୍ତି ନାହିଁ ଲେସ୍ଲିନ୍‌ଭିଚ୍ ବା ତାଙ୍କ ସ୍ତ୍ରୀ । କେତେବେଳେ ଘରେ ପଶନ୍ତି, କେତେବେଳେ ବା ବାହାରିଯାନ୍ତି । ପିଲାମାନଙ୍କ ଚହଳବର୍ଣ୍ଣ ନାହିଁ ବା କିଛି ପୋରଣବଦ ନାହିଁ । ବୋଧେ ଦୂର ଜାଗାରେ ଚାକିରି ବା ବ୍ୟବସାୟ କରନ୍ତି । ଏହି ପରିବାର ସଙ୍ଗେ କିଛି ଅପଡ଼ ନାହିଁ, କେବେ ମିଳା-ମିଶା ବି ହୁଏନାହିଁ । କାହିଁକି ସେମାନେ ଉଦାସୀନ ? ସେଥିରେ ଯଦି ସେମାନେ ସୁଖୀ, ଭଲ କଥା ।

## ରମ୍ ବର୍ଗ, ଏବ୍‌ଲେନ୍

ଜର୍ମାନ୍ ସ୍ୱାମୀ ସ୍ତ୍ରୀ, ଚାଷୀ ଚାଷୁଣୀ । ସତୁରି ଏକର ଭୂଖଣ୍ଡରେ ପାହାଡ଼, ଜଙ୍ଗଲ, କିଛି ଉର୍ବର ଜମି ଅଛି । ମକ୍‌କା, ବାଜରା, କୋବି, ଟମାଟୋ, ମଟର ଆଦି ଉତ୍ପାଦିତ ।

ଚରା ଭୂଇଁ ପ୍ରଚୁର । ଗାଈ ପୋଷିଛନ୍ତି, ଦୁଧ ଲାଗି ନୁହେଁ, ମାଂସ ଲାଗି । ଉପଯୋଗୀ ଖାଦ୍ୟ ଖୋଇ ସେମାନଙ୍କୁ ମୋଟାସୋଟା କରି ବଢ଼େଇଛନ୍ତି । ତଥାପି ବନ୍ଧୁ ସହସ୍ର ଗୋଷ୍ଠ ଘାସ ବଣ୍ଟୀ କରେ ରମ୍‌ବର୍ଗ ।

ହତାରେ କେତୋଟି ପୋଖରୀ ଅଛି । ରମ୍ ସେଥିରେ ମାଛ ଜାଆଁଳ ଛାଡ଼େ ନାହିଁ । ବ୍ରାହ୍ମଣିଆଁ ବେଙ୍ଗ ପୋଷେ । ବେଙ୍ଗ ଗୋଡ଼ ସେମାନଙ୍କ ପ୍ରିୟ ଖାଦ୍ୟ ।

ଜଙ୍ଗଲରେ ବହୁତ ବିଷାକ୍ତ କପର୍‌ହେଡ୍ ସାପ ଅଛନ୍ତି, ଗଧିଆ ବି ଅଛନ୍ତି । ହରିଣ ରାବିଟ୍ ଫସଲ ନଷ୍ଟ କଲେ ବି ସେ କୁକୁରକୁ ଛାଡ଼େ ନାହିଁ— ଗଧିଆ ମାରିପକାଇବ, ଏଇ ଶଙ୍କାରେ ।

ରିମ୍‌ବର୍ଗ ଏବେ ବଡ଼ ବ୍ୟବସାୟୀ । ଯାବତୀୟ ଗୃହନିର୍ମାଣ ଉପକରଣ ବିକ୍ରୀ କରି କୋଟିପତି । କିନ୍ତୁ କୁଟୁମ୍ବପୋଷଣ ଲାଗି ନୁହେଁ, ଆତ୍ମତୋଷଣ ଲାଗି ସେ କୃଷି କରେ । କୃଷିବିଦ୍ୟାରେ ପାରଙ୍ଗମ, ଏହା ତାର ଅବସର କାଳର ବିନୋଦନ ।

ସେ କୃଷିରେ ଆଖି ବୁଜି ଖର୍ଚ୍ଚ କରେ, କିନ୍ତୁ ଫସଲ ବିକି ତାହା ଭରଣା କରେ ନାହିଁ । ବିକେ କେବଳ ଘାସ । ସବୁ ପନିପରିବା ବନ୍ଧୁବାନ୍ଧବଙ୍କ ଉପହାରରେ ଯାଏ ।

ଉଦରିମ୍‌ର ଡାକ୍ତର, ପୁଣି ମାଛଧରା ଯାଙ୍ଗ । ପରିବା ତୋଳି ରଖି ଏବ୍‌ଲେନ୍ ଇରାକୁ ଫୋନ୍ କରେ । ୪୦ ମାଇଲ୍ ଦୂର । ସମସ୍ତ ଅଭାବ । ଆସିବାକୁ ବ୍ୟସ୍ତ ବଳି ପଡ଼େ । ତଥାପି ଇରା ଯାଇ ତଟକା ପରିବା ଆଣେ ।

ଅନୁରୋଧକୁ ଏଡ଼ି ନ ଦେବାର ଅନ୍ୟ ଏକ କାରଣ ସ୍ଥାନୀୟ ଅଧିବାସୀଙ୍କ ସହିତ ନିବିଡ଼ ଯୋଗାଯୋଗ ରଖିବା । ତା ନ ହେଲେ ଅସୁବିଧାରେ ପଡ଼ିଲେ କେହି ଆଡ଼ ଆଖିରେ ଚାହିଁବେ ନାହିଁ । ସ୍ଥାୟୀବାସିନ୍ଦା ସାର୍ଟିଫିକେଟ୍ ଯଥେଷ୍ଟ ନୁହେଁ, ଦିଆନିଆ, ଯିବାଆସିବା, ପାର୍ଟିରେ ବିଦେଶୀମାନଙ୍କ ସହିତ ହାର୍ଦ୍ଦିକ ମିଳାମିଶା କରିବା ଗାଡ଼ି ଉଦରିା ବଜାୟ ରଖିଥାନ୍ତି ।

ଡେଭେଷ୍ଟି ଖାଇଭାଇଣୀ, ବଡ଼ ଗରିବ ଅବସ୍ଥାରୁ ରିମ୍‌ବର୍ଗ ଉଠିଛି । କ୍ରିସ୍‌ମାସ୍ ଉତ୍ସବରେ କ୍ରିସ୍‌ମାସ୍ ଗଛଟିଏ କିଣିବା ଲାଗି ଦିନେ ତା ପାଖେ ଅଧ ଡଲାରେ ବି ନ ଥିଲା । ଏବେ ସେ ଶତ ଶତ କ୍ରିସ୍‌ମାସ୍ ଗଛ କିଣି ବିତରଣ କରେ ।

ରିମ୍ ପିଲାହେଲେ ଦୁହାଁଳିଆ ଗାଈଟିଏ କିଣି ଦୁଧ ବିକ୍ରିଲା । ଲାଭ ହେଲା । ଗାଈ ସଂଖ୍ୟା ବଢ଼ିଲା, ତା ଦୁଧ ବ୍ୟବସାୟ ଚେଳିଲା । ତାପରେ ଅନ୍ୟ ଦିଗକୁ ଶାଖା ମେଲିଲା ତାର ବ୍ୟବସାୟ ।

ଗୋଟିଏ ମାତ୍ର ପୁଅ; ମନ ଅସ୍ଥିର, ଚଞ୍ଚଳ । ଦୁଇଟି ଗ୍ରାଡ଼ପତ୍ର ଦେଲାଣି । ବାପା ମାଆଙ୍କଠୁଁ ଅଲଗା ରହୁଛି । ରିମ୍ ତାକୁ କୃଷି ଲାଗି କେତେକ ଜମିବାଡ଼ି ଦେଇ ଦେଇଛି ।

ଏବ୍‌ଲେନ୍ ସିଲାଇପ୍ରବୀଣା, ଯୌବନରେ ସୁନ୍ଦରୀ ଥିଲା । ଏବେ ସ୍ଥୂଳତା ସୌନ୍ଦର୍ଯ୍ୟ ହାନି ଘଟାଇଛି । ଚାଲିଲେ ସଁ ସଁ ହୁଏ । ତଥାପି ତା ମଧ୍ୟରେ ଘର ସଫାସଫିଠାରୁ ସଜାସଜି, ରନ୍ଧାବଢ଼ା, ଚାଷକାମ, କୁକୁରଙ୍କୁ ଗାଧୋଇବା, ଖୋଇବା ଆଦି ସବୁ ଘରପାଇଟି କରେ ।

ନାନା ମୂଲ୍ୟବାନ୍ ଦ୍ରବ୍ୟଭରା, ସୁସଜ୍ଜିତ କୋଣଟିଏ କୋଠରୀର ରାଣୀ ସେ । ତାର ପଡ଼ୋଶୀ ଦୂରବର୍ତ୍ତୀ । ଏକା ଏକା ଜୀବନ; ଏଠା ଘରଣୀଙ୍କର ଅଭ୍ୟାସରେ ପଡ଼ିଗଲାଣି । କର୍ମକ୍ଳାନ୍ତ ଦୂର କରିବା ଲାଗି ବସି ଟେଲିଭିଜନ୍ ଦେଖନ୍ତି ବା ମାଗାଜିନ୍ ପୃଷ୍ଠା ଓଲଟାନ୍ତି ।

ଏବ୍‌ଲେନ୍ ଆମକୁ କାଜୁବାଦାମ ଭରା, ସ୍ୱହସ୍ତପ୍ରସ୍ତୁତ ବିସ୍କୁଟ୍ ଖାଇବାକୁ ଦେଲା । ଜଣକ ପରେ ଜଣେ ସ୍ତ୍ରୀ ଲୋକ ଆସିଲେ । ମାଇପୀମେଳା ଜମିଲା । ଲତା କରୁଣାର ଜୀବଟିଏ ହୋଇ ବସିଥାଏ । ପ୍ରଶ୍ନ ପରେ ପ୍ରଶ୍ନ । ଲତା ଏସ୍, ନୋ କହୁଥାଏ । ଏସ୍ ଜାଗାରେ ନୋ ବା ଓଲଟା ହୋଇ ଯାଉଥିବ । ହଁ, ସେଥିରେ କୋଉ ମହାଭାରତ ଅଶୁଦ୍ଧ ହୋଇଯାଉଛି କି ?

ମୁଁ ଏ ଅବସ୍ଥା କିଛି କାଳ ସମ୍ଭାଳି ତାପରେ ବାହାରକୁ ଖସି ଚାଲିଗଲି । ଆମ ଆଗମନ ଉପଲକ୍ଷ୍ୟେ ରମ୍ ଡିନର ଦେଉଛି । ବିରାଟ ଗ୍ୟାସଚୁଲୀ ଜଳୁଛି । କଡ଼ାଇରେ ୨୦ ପାଉଣ୍ଡ୍ ମକ୍‌କା ତେଲ କଡ଼୍ କଡ଼୍ ଫୁଟୁଛି । ଜାଲିଚାଟୁରେ ଗ୍ରିଲ୍ ହେଉଛନ୍ତି ଉଦା ଓ ରମ୍‌ର ମାଛୁଆ ସାଙ୍ଗ କ୍ରିମେସ୍ୱାର୍ ଓ ଆଉସବୁ କଏ—ଚିକେନ, ଆଳୁ, ଫୁଲକୋବି, ଲମ୍ବା ଲମ୍ବା ବରଫଦିଆ ସାମନ୍ ମାଛ, ସ୍ନାଡ୍‌ଟେ ଭଜା, ସିଆଡ୍‌ଟେ ପାଚି ବି ଚାଲିଛି । ଦରବୁଢ଼ାଗୁଡ଼ାକ ପରସ୍ପରକୁ କୁତୁକୁତୁ କରୁଛନ୍ତି, ହସଖୁସିରେ ଦୌଡ଼ାଦୌଡ଼ି ବି ହେଉଛନ୍ତି, ନଇଲେ ପର୍ବ କେମିତି ?

ବୃଦ୍ଧମାନଙ୍କ ବାଲଲୀଳା କିଛିଟା ଉପଭୋଗ କଲା ପରେ ମୁଁ ସ୍ୱିମିଂପୁଲ୍ ଆଡ଼କୁ ଗଲି; ଚକ୍‌ଚକ୍ ବାଲିଗେରେଡ଼ା ଘେରା ଫୁଲ ମନ୍ଦାଟିଏ । ପ୍ରଜାପତିଟି ଏ ଫୁଲୁ ସେ ଫୁଲେ ବସୁଛି, ଉପରକୁ ଉଡ଼ିଯାଉଛି, ଘାସଆଡ଼େ ଘେର ମାରି ପୁଣି ବସୁଛି, କିନ୍ତୁ ଝାମ ପଦ୍ମଝିଲ ସ୍ତରକୁ ଖସୁ ନାହିଁ । ସୁବିଧା ପଡୁନାହିଁ । ବୋଲେଇ ଏକାଲୟରେ ରହିଛି ରହିଛି ।

ସୂର୍ଯ୍ୟବୁଡ଼ା ବେଳ । ପାଖରୁ ଦୂର ସୁନେଲୀ ପଡ଼ିଆ ଡାକୁଚି ଦୋହଲି ଧୀରେ ଧୀରେ—ଚାଲ ମନ ଇଚ୍ଛା, ଯେତେ ଚାଲିଲେ ବି ସରିବ ନାହିଁ ।

ମଞ୍ଜିଅରା ଶୀତ; ହେଲେ ଶୀତଦିନ ଏ ନୁହେଁ, ମାଘ ଶୀତ ବି ନୁହେଁ; ଏ ମେଘେ ଶୀତ । ବର୍ଷା ପରେ ଘୋର କାନେଡ଼ୀୟ ବରଫ ପବନ ବୋହି ଆସୁଛି । ସାଇବେରିଆ ବା ମଙ୍ଗୋଲିଆର ପବନ ରୋକିବାକୁ ଭାରତରେ ହିମାଳୟ ପର୍ବତ ପରି ଆମେରିକାରେ ପୂର୍ବ-ପଶ୍ଚିମ ଲମ୍ବି ପର୍ବତମାଳା ନାହିଁ ।

ଦେହକୁ ଗରମ ରଖିବା ଲାଗି ମୁଁ ଦ୍ରୁତ ଗତିରେ ଚାଲିଲି । ମୋର ଦୌଡ଼ ଗତି ବାଘୁଆ କୁକୁର ଦିଟାଙ୍କୁ କେମିତି କେମିତି ଲାଗିଲା । ଚମକିଲେ ମୋ ଆଡ଼େ । କଣ କହନ୍ତି ନା, ଭଗାରି ନ ଥିଲେ ଯାହାକାଳି ଭଗାରି—ଏ ସେମିତି । କୁଆଡ଼େ କେହି ନାହିଁ; ଖାଲି ହାତ, ଗୋଡ଼ଉଇ ଗୁଡ଼େଇ କାମୁଡ଼ିଲେ କ'ଣ କରିବି ? ଆତଙ୍କରେ କାକୁସ୍ଥ ହୋଇ ପଚାରିଲି—ମୁଁ ତୁମ ଖାନ୍ଦାନଙ୍କର ଫୁଲ ନା ଫଳ ଛୁଇଁଦେଇଛି ? ତୁମ ସୁଖପଥରେ କପରି ବା କଣ୍ଟକ ହେଲି ? ତୁମ ବାପ ଅଜାଙ୍କର କେଉଁକାଳେ ବା କ'ଣ ଖାଇଥିଲି ? ମାଲିକ ତୁମକୁ ତାଳ ବେତାଳ ପରି ବଢ଼େଇଛି, କ'ଣ ତାର କୁଣିଆମାନଙ୍କ ଉପରେ ଝଡ଼େଇ ହେବା ପାଇଁ ?

ମୁଁ ବିଦେଶୀ, କୁକୁରଙ୍କ ପ୍ରତି ମୋ ବ୍ୟବହୃତ ଭାଷା ନ୍ୟାରା । 'ଛି-ଛି, ଥୁ-ଥୁ' କହିଲେ ସେମାନେ ମାନିବେ କାହିଁକି ?

କ'ଣ କରିବି ? ପଳାଇଲେ ତ ଦାନ୍ତ ଲଗାଇଦେବେ, ମନକୁ ଟାଣ କରି କିଛି ନ ଘଟିଥିଲା ପରି ସେଇମାନଙ୍କ ଆଡ଼କୁ ହିଁ ଆସିଲି, ଏଣେ ଉଦଙ୍କୁ ଇସାରା ଦେଲି । ରମ୍ ମୋ ହାଲପଟା ବୁଝିପାରି କି ଇସାରା ଦେଲା—ବାଘ ପରି କୁକୁର ଦିଟା ଲାଙ୍ଗୁଡ଼ିକା ବିଲୁଆ ପରି ଲୁଙ୍ଗୁପୁଙ୍ଗୁ ହେଲେ । ପସ୍ତାଇ ହୋଇ ସାଆନ୍ତଙ୍କୁ ଯେପରି କି ଇଙ୍ଗିତ ଦେଲେ—ସେ କଥା ଗୁଡ଼ । ଭୁଲ ହୋଇଗଲା । ଏ ଅତିଥି, ଠଉରେଇ ପାରିଲୁ ନାହିଁ ।

ରମ୍ ଘରେ ଆଳୁ ସାଲଡ଼୍, ଜୁକିନି, ସାମନ୍ ମାଛ ଭଜା, ପାଚିଲା କଦଳୀରେ ପ୍ରସ୍ତୁତ 'ବାଡ଼କେକ୍' ଖାଇଲୁ । ଯେତିକି ଖାଇଲୁ ତା ଅପେକ୍ଷା ବେଶୀ ବଳିକା ରହିଗଲା, ପଦାରେ ଫିଙ୍ଗି ଦେଲେ ଗୁଲି କୁକୁର ନାହାନ୍ତି, କାମୁଡ଼ାକାମୁଡ଼ି ହୋଇ ଖାଇଯିବେ; ଏତେ ପକ୍ଷୀ ନାହାନ୍ତି, ଆହାର ଖୁଣ୍ଟି ଖାଇବେ । ରୋଗୀ, ବିକଳାଙ୍ଗ, କାଙ୍ଗାଳ ନାହାନ୍ତି ଯେ ବିତରଣ କରିଦେଲେ ଅମୃତସ୍ରୋତ ଆସିବ—ଧର୍ମ କଲି !

କେହି ଏ ଖାଦ୍ୟର ସଦୁପଯୋଗ ନ କଲେ ତୁଚ୍ଛାକୁ ପରିବେଶ ଅପରିଚ୍ଛନ୍ନ କରା ହେବ କାହିଁକି ? ତେଣୁ ସମସ୍ତ ଖାଦ୍ୟ ପୋତି ଦିଆଗଲା ।

ହେଉଡ଼ି ଉପରେ ହେଉଡ଼ି ମାରୁଛନ୍ତି ଏମାନେ, ପାଲିଙ୍କି ଉପରେ ପାଟ-ଛତା ଉଡ଼େଇ ଚାଲିଛନ୍ତି । ଏ ସାମାନ୍ୟ ଖାଦ୍ୟ ଲାଗି ପଚ୍ଛେଇ ହେବେ କାହିଁକି ! ଦାନା ଫୋପାଡ଼ିଲେ କୁଆଡ଼େ ଲକ୍ଷ୍ମୀ ଗୁଡ଼ିଯାନ୍ତି ! ଏଠି ବ୍ୟତିକ୍ରମ । ସେହି ଭାଗ୍ୟଦେବୀ ବିଷ୍ଣୁ ଘରଣୀ ଏଠି ପେଚକଟାକୁ ଉଡ଼ାଇ ଦେଇ ଇଗଲ୍ ପିଠିରେ ଉଡ଼ି ବୁଲୁଛନ୍ତି !

## ଯାହା ମନ ଯହିଁକି ରହେ

ଟୁଆଁ ଟୁଇଁ—ଆଲେକ୍‌ଜାଣ୍ଡାର୍‌, ମୁର୍‌ଷ୍ଟ । ଜଣକୁ ଜଣେ କାହିଁକି ଏମିତି ବାଛିଲା, କେମିତି ମନ ଗୁନ୍ଥି ହୋଇଗଲା, କିଏ କହି ପାରିବ ?

କେତେ ଛିଡ଼ିଲାକୁ ଗଇଁଠେଇଁ ହୁଏ ନାହିଁ, କେତେ ଚିରିଲାକୁ ସିଲେଇ କରି ହୁଏ ନାହିଁ, କୋଉଠି ଠକ୍‌ଠାକ୍‌ ଛିଡ଼ିଯାଏ, କୋଉଠି ବା ଯୋଡ଼ାଯୋଡ଼ି ରହିଥାଏ ଜୀବନସାରା—ଏମିତି ଆମେରିକାର ସଂସାର । ତା ଭିତରେ ଏମିତି କେତୋଟା ଯୋଡ଼ି ବାକି ହୋଇଯାଏ—ପ୍ରକୃତ ଦାମ୍ପତ୍ୟ ସୁଖ ଭୋଗ କରନ୍ତି ସେମାନେ ।

ବୁଲିଗଲେ ହାବୁଡ଼େ—'ହାଏ' ବୋଲି ହାତ ହଲାଏ । 'ବଙ୍କା ବଙ୍କା ନଦୀ ପଥ'ରେ ବେଳେବେଳେ ଗାଡ଼ିଟା ଟିକିଏ ଅଟକି ଯାଏ, ଦୀର୍ଘତର ଆଳାପ ଲାଗି ।

ମାଇକ୍‌ (ଉଦୟ)ର ବଡ଼ଭାଇ ଘରେ ମୋ ପ୍ରତି ସ୍ନେହାଦର—ବନ୍ଧୁ ମିଳନ, ବୃହଭୋଜି ।

ଆଲେକ୍‌ସ୍‌ ମାନସିକ ରୋଗ ଡାକ୍ତର, ମୁର୍‌ଷ୍ଟ ଦେହର ସାଧାରଣ ରୋଗର ଚିକିତ୍ସା କରେ । ସ୍ୱାମୀ ସ୍ତ୍ରୀ ମଧ୍ୟରେ ମତ ମିଳିଲେ ପରିବାରର ଅନେକ ଅଛିଣ୍ଡା ଅଙ୍କ ଛିଣ୍ଡିଯାଏ । ଏ ପରିବାର ଏକ ସୁଖୀ ପରିବାର; ଅଥଚ ପଡ଼ୋଶୀ ପରି-ବାରରେ ବହୁତ ମୁହଁ ଫୁଲାଫୁଲି, ମନ ଫଟାଫଟି, ତିନୋଟି ସ୍ତ୍ରୀକି ଛାଡ଼ପତ୍ର ଦେଇ ଚତୁର୍ଥ ବିବାହ କରିଛି ।

ଆଲେକ୍‌ସଙ୍କ ଜନ୍ମ ଇଂଲଣ୍ଡରେ । ମାତ୍ର ୩୨ ବର୍ଷ ବୟସରେ ମାଆ ସଂସାର ଛାଡ଼ିଲେ । ଆଲେକ୍‌ସ ଓ ତାଙ୍କ ଭାଇ ଭଉଣୀ ସମସ୍ତେ ପିଲା । ଯାହା କହନ୍ତି—ଚୁଙ୍ଗୁଡ଼ି ବାଳୁଙ୍ଗା ଦଳ । ସଭିଙ୍କୁ ସମ୍ଭାଳି ରଖିବ କିଏ ?

ହତାଶ ଅବସ୍ଥାରେ ବାପା ଘର ଗୃହକର୍ମୀକି ଘରଣୀ କଲେ । ତା ଆଉ ପିଲା ହୋଇ ନଥିଲା । ସେ ଦିନର ସାଆନ୍ତାଣୀ, ଆଖି ବୁଜିଲା ପରେ ସଉତୁଣୀର ପିଲାଙ୍କୁ ସେ ଜନମ କଲା ମାଆ ପରି ସ୍ନେହରେ ପାଳିବାକୁ ଲାଗିଲା ।

ଆଲେକ୍‌ସ କୌଣସି ସୁଯୋଗରେ ଆମେରିକା ପଳାଇ ଆସି ସେଣ୍ଟ୍‌ଲୁଇସ୍‌ ମେଡ଼ିକାଲ୍‌ରେ ଡାକ୍ତରୀ ପଢ଼ିଲେ । ସେତେବେଳେ ସମଗ୍ର ନଗରରେ ସେ ଏକମାତ୍ର ଡାକ୍ତର । ତେଣୁ ତାଙ୍କର ଖୁବ୍‌ ଆଦର ଓ ପ୍ରଚୁର ଆୟ ହେଲା । ସେଥିରେ ସେ ଭାଇମାନଙ୍କୁ ପଢ଼ାଇଲେ, ସେମାନେ ଜଣକୁ ବଳି ଜଣେ ଯୋଗ୍ୟ ହୋଇ ବାହାରିଲେ । ଏବେ ସମସ୍ତେ ଆମେରିକାବାସୀ କୋଟିପତି ।

ଆଲେକ୍‌ସ ଜଣେ ବିଶ୍ୱ ପର୍ଯ୍ୟଟକ । ପ୍ରକୃତି ଶ୍ରୀ ବା ଜନଚରିତ୍ର ଅଧ୍ୟୟନ ତାଙ୍କର ଲକ୍ଷ୍ୟ ନୁହେଁ । ସେ ସାଧାରଣ ପର୍ଯ୍ୟଟକ ବା ପରିବ୍ରାଜକ ନୁହନ୍ତି, ଜଣେ ପର୍ଯ୍ୟବେକ୍ଷକ, ବିଭିନ୍ନ ଦେଶର ମାନସିକ ଅବସ୍ଥାର ।

ପଚାରିଲି—ଆମେରିକାର ପାରିବାରିକ ଜୀବନ ଝଞ୍ଜାମୟ; ତା ଭିତରେ ଆପଣଙ୍କ ପରିବାର କିନ୍ତୁ ଏକ ବ୍ୟତିକ୍ରମ ପରିବାର ପରି । କେଡ଼େ ଶାନ୍ତ, ସ୍ଥିର ଦିଶନ୍ତି ଆପଣ ଦିଜଣ ! ସତେ ଯେପରି କିଛି ଉଦ୍‌ବେଗ, ଆଲୋଡ଼ନ ବା ଦୁଃଖ-କଙ୍କାଳ ନାହିଁ ! ଏ ଘରଦ୍ୱାର, ଏ ବାଡ଼ିବଗିଚା ଶାନ୍ତିର ଏକ କାରୁକାର୍ଯ୍ୟଭରା ମନ୍ଦିର ପରି ଦିଶୁଛି । ମନେହୁଏ, ସ୍ୱାତଲେ କିଛି ସାଧନା .....

ଆଲେକ୍‌ସ କହିଲେ—ସାଧନା ଆଉ କ'ଣ ? ଆମେ ଦିଜଣ ଠିକ୍ ବାଟରେ ଚାଲିଛୁ । ଫଳରେ ଆଉ ସବୁ ଠିକ୍ ବାଟରେ ପଡ଼ିଯାଇଛି । ଅଧିକା କିଛି ନାହିଁ ।

ଆମେ ଦିଜଣ ପରୀକ୍ଷାପରୀକ୍ଷି ବା ତରକାତରକି ହୋଇନାହୁଁ । ସପ୍ତାହ ଶେଷ ରୋମାଞ୍ଚରେ କାଳ ବିତାଇ ନାହୁଁ । ମୁହାଁମୁହିଁ, ଚହାଁଚହିଁ ହୋଇଗଲୁ ତ ସେଇ ଢେର୍ । ସେତିକରେ ହୃଦୟ ପଢ଼ି ନେଲୁ, ତାଳ ଦେଲୁ । ବେଶ୍ ।

ସେ ଏକ ବ୍ଲୁ ହୋଜରେ । ମୁର୍‌ଶି ସେଠିକି ନେଇଥିଲା ତାର ବୟଫ୍ରେଣ୍ଡ୍‌କୁ, ମୁଁ ମୋର ଗାର୍ଲଫ୍ରେଣ୍ଡ୍‌କୁ । ମୁର୍‌ଶି ମୋତେ କାହିଁକି ହଠାତ୍ ଭଲ ଲାଗିଲା । ହାସ୍ୟ ଖୁସିଭରା କଣ୍ଠରେ ପଚାରିଲି—ମୋତେ ବାହାହେବୁ ? ମୋର ସ୍ୱର ଛଡ଼ାଇ ନେଇ ମୁର୍‌ଶି କହିଲା—ହଁ ।

ଏମିତି ଠପକରେ କଥା ହେଉଁ ହେଉଁ ସତକୁ ସତ ବାହାଘରଟା ହୋଇଗଲା ।

ସ୍ୱାମୀ ସ୍ତ୍ରୀ ଉଭୟେ ଘରେଇ ପ୍ରାକ୍‌ଟିସ୍ କରନ୍ତି । ଅବସର ବେଳେ ଗଲ୍‌ଫ୍ ଖେଳନ୍ତି, ଘର ସଜାଡ଼ନ୍ତି, ବଗିଚା କାମ କରନ୍ତି, ନଇଲେ ପଢ଼ନ୍ତି ।

ବେଶ୍ ବଡ଼ ପାଠାଗାରଟିଏ । ଉଭୟେ ବିଦ୍ୱାନ୍ ବିଦୁଷୀ । ଦର୍ଶନ, ବିଜ୍ଞାନ, ସାହିତ୍ୟ, କଳା, ବ୍ୟବସାୟ ଆଦି ନାନା ବିଷୟରେ ପଢ଼ନ୍ତି; ତାଛଡ଼ା ନିଜର ବୃତ୍ତିଗତ ବିଷୟ ତ ଅଛି ।

ବୟସ ଯେତେ ତା ଅପେକ୍ଷା ଦଶବର୍ଷ କମ୍ ଦିଶନ୍ତି । ଏ ସୁନ୍ଦର ସ୍ୱାସ୍ଥ୍ୟର ରହସ୍ୟ କଣ ? ସେମାନଙ୍କ ଅଭ୍ୟାସ, ଚଳଣି ଓ ଚିନ୍ତା ।

ପୁଅ ଝିଅ ଗୃହ; ନିଜ ଧନ୍ଦାରେ ବ୍ୟସ୍ତ । ବେଳେବେଳେ ସଦଳବଳେ ପହଞ୍ଚିଯାନ୍ତି ।

ଘର ଦୁଆର ବୁଲାଇ ଦେଖାଇଲାବେଳେ ଚମକି ଠିଆ ହୋଇଗଲି—ପ୍ରଭୁ ଗଣେନାଥ, ଗଜାନନ, ତୁମେ ଏଠି ? ଆଲେକ୍ସ କହିଲେ--ହାତୀ ମୁଣ୍ଡ, ମଣିଷ ଦେହ, ବଡ଼କଉତୁକିଆ ହୋଇଛି; ନାହିଁ ? ଇଣ୍ଡିଆରୁ କିଣି ଆଣିଥିଲି ।

କହିଲି—ଶିବ ପାର୍ବତୀଙ୍କ ଅଲ୍ୟାଳ କୁମର, ବାଧାବିଘ୍ନ ଖଣ୍ଡନକାରୀ, ସିଦ୍ଧି-ଦାତା, ଅଗ୍ରେପୂଜ୍ୟ ଗଣାଧିପ, ବିଦ୍ୟାର ଦେବତା ଏ । କୁସ୍ତି କସରତ ଅଭାବରୁ ଉଦର ବୃଦ୍ଧି ହୋଇ ନାହିଁ, ଯାହା ସାଧାରଣତଃ ବ୍ୟାୟାମବିମୁଖ ପାଠୁଆଙ୍କର ହୋଇଥାଏ । ତାଙ୍କ ପେଟରେ ପେଟେ ପାଠ, ମୁଣ୍ଡଟା ମୂର୍ଖ ଗଜର ହେଲେ ବି ସେ ଭାରି ଖେଳଓ୍ୱାଡ଼, ଭାରି ଯୋଦ୍ଧା । ଭାରତର ଗ୍ରାମଗ୍ରାମୀମାନେ ବର୍ଷକେ ଥରେ ଖୁବ୍ ଆଡ଼ମ୍ବରରେ ପୂଜା କରନ୍ତି ।

ତାପରେ ଆଲେକ୍ସ ବୈଠକ ଘରେ ଶ୍ୟାମରୁ ସଂଗୃହୀତ ଗୋଟିଏ ମୂର୍ତ୍ତି ଦେଖାଇଲେ—ହାତରେ ଲଙ୍ଗଳ ।

ମୁଁ କହିଲି—ଯେଉଁଠୁ ସଂଗ୍ରହ କର ପଛେ, ଏ ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠଭ୍ରାତା ବଳରାମ, ଦଶାବତାରର ଅନ୍ୟତମ । କାଦମ୍ବରୀ ପାନ ତାଙ୍କର ଏକ ଦୁର୍ବଳତା । ସେଥିରେ ବୁଡ଼ି ରହି ସେ ବେଳେବେଳେ କର୍ତ୍ତବ୍ୟ କର୍ମ ଭୁଲିଯାନ୍ତି । ଚେତା ହେଲା ବେଳକୁ ମାହାଲ ହଲମରେ, ସୁଭଦ୍ରାଙ୍କୁ ଅର୍ଜ୍ଜୁନ ହରଣ କରି ନେଇଛି, ସଖା ଦୁର୍ଯୋଧନ ଜାନୁଭଗ୍ନ ହୋଇ ପଡ଼ିଛନ୍ତି ।

କ୍ରୋଧ ଉପୁଜିଲେ ସେ ଗୋଟା ପୃଥିବୀକି ଲଙ୍ଗଳ ମୂନରେ ଟାଣି ଫୋପାଡ଼ି ଦେଇ ପାରନ୍ତି । କିନ୍ତୁ ଅତ୍ୟନ୍ତ ସରଳ ସେ । କୂଟନୀତିକ କୃଷ୍ଣଙ୍କ ଚାଲ୍‌ରେ କାବୁ ହୋଇଯାନ୍ତି ।

ଏହି ମୂର୍ତ୍ତିକୁ ଆପଣ ଶ୍ୟାମରୁ ପାଇଲେ ଅର୍ଥ ଭାରତୀୟ ସଂସ୍କୃତିର ପ୍ରଭାବ ଶ୍ୟାମ, କାମ୍ବୋଡ଼ିଆ, ବର୍ମା, ମାଲୟେସିଆ, ଜାଭା, ସୁମାତ୍ରା ପ୍ରଭୃତି ଦ୍ୱୀପପୁଞ୍ଜରେ ପ୍ରବଳ ।

ବେଶ୍ ବଳନ୍ତୁ । ବିଦାୟ ଆଗରୁ ଶେଷ ପ୍ରଶ୍ନଟି ପଚାରିଥିଲି—ପାଗଳଙ୍କ ସଂଖ୍ୟା ଦିନୁଦିନ ବଢ଼ୁଛି, ପାଗଳାମିର କାରଣ କ'ଣ ?

ଆଲେକ୍‌ସ—ଜନସଂଖ୍ୟା ଦ୍ରୁତ ଗତିରେ ବଢ଼ୁଛି, ତଦନୁସାରେ ପାଗଳଙ୍କ ସଂଖ୍ୟା, ଆଶ୍ଚର୍ଯ୍ୟ କିଛି ନାହିଁ, ତେବେ ଏହା ଏକ ବଂଶଗତ ରୋଗ, କେତେକାଂଶରେ ସ୍ୱୀକୃତ ବି; ଏହା ପ୍ରାଚୀନ ଦୁଃଖାତ୍ମକ ନାଟକର ଶେଷ ପରିଣାମ ।

ଏ ଯୁଗରେ ମଦ, ହାସିସ୍, ଗଞ୍ଜେଇ, ହେରୋଇନ୍, ଆଲ୍‌କୋହଲ୍ ଖୋର୍ ବେଶୀ । ସୀମା ଅତିକ୍ରମ କଲେ କେତେକ ପାଗଳ ହୁଅନ୍ତି—ପରିବାରର ଏକ ବୋଝ । ସଂସାରର ଏକ ଭାର ।

**କାଣି ଅକଣା**

ଚହ୍ଲି ଅଚହ୍ଲା, ଜାଣି ଅଜଣା ଆମ ଜଣେ ପଡ଼ୋଶୀ—ପାଲ୍ ମୋଟରସ୍ । ଏ ମଧ୍ୟରେ ଅଠରଟି ବର୍ଷ ବିତି ଯାଇଛି, ବହୁତ ବଦଳି ବଦଳି; ଆମେ ବଢ଼ିଛୁ ନା ଛୋଟ ହୋଇଛୁ ? ଯାହା ହୋଇଥାଉ, ଏ ଚେହେରାରେ ଆଗର କିଛି ସାମଞ୍ଜସ୍ୟ ନାହିଁ, ସବୁ ବଦଳି ଯାଇଛି, ଆମେ ଅଲଗା ମଣିଷ, ପୁରୁଖା, ପୋଖତ ।

କିଛି ସ୍ମୃତିଚାରଣ ପରେ ମୋଟରସ୍ ପଚାରିଲେ—ହିନ୍ଦୁ ଧର୍ମର ସ୍ଥାପୟିତା କିଏ ?

କହିଲି—ଜୈନ, ବୌଦ୍ଧ, ଖ୍ରୀଷ୍ଟିୟାନ୍ ପ୍ରଭୃତି ସବୁ ଧର୍ମର ଜଣେ ଜଣେ ସ୍ଥାପୟିତା ଅଛନ୍ତି, ହିନ୍ଦୁ ଧର୍ମର ନାହାନ୍ତି । କେବେ ଆରମ୍ଭ ହୋଇଥିଲା କେହି କହି ପାରିବ ନାହିଁ । ତେଣୁ ଏହା ଯୁଗ ଯୁଗବ୍ୟାପୀ ଧର୍ମ—ସନାତନ ଧର୍ମ ।

ତାପରେ ପଚାରିଲେ—ଭାରତ ଖବର କ'ଣ ? ଆମେରିକାର ଖବର କାଗଜରେ କିଛି ବାହାରେ ନାହିଁ ବୋଲି ପଚାରୁଛ ?

ମୁଁ ତାଙ୍କୁ ପଚାରିଲି—ଆଉ କୋଉ ଦେଶ ବିଷୟରେ କଣ ବାହାରେ କି ? ଏଠା ସମ୍ବାଦପତ୍ର ପଢ଼ିଲେ ମନେ ହେବ—ଆମେରିକା ବ୍ୟତୀତ ପୃଥିବୀରେ ଅନ୍ୟ ଦେଶ ନାହିଁ ।

ଉଦ—ଭାରତ ବିଷୟରେ ମନ୍ଦ ଖବର ବାହାରେ, କଥା ସତ । କିନ୍ତୁ ଖୋଦ୍ ଆମେରିକା ବିଷୟରେ କ'ଣ ବାହାରେ ? ରେପ୍, ଡକାୟତି, ହରଣଚାଲ୍, ଆମେରିକାରେ କଣ କିଛି ସତ୍‌କର୍ମ ହୁଏ ନାହିଁ ? ସମ୍ବାଦପତ୍ରରେ କେତେ ସ୍ଥାନ ପାଏ ?

ତାପରେ ମୋଟରସ୍ କହିଲେ—ଗାନ୍ଧୀ ଫିଲ୍‌ମ୍ ଦେଖିଲ, ସତ୍ୟ ନା ସ୍ୱପ୍ନ ?

କହିଲ—ମହାତ୍ମାଜୀଙ୍କ ଅବିକଳ ଜୀବନ ଚିତ୍ରଣ ଯଥାସମ୍ଭବ ଏଥିରେ ହୋଇଛି । ସତ୍ୟ ପ୍ରେମାଶ୍ରିତ କାଳ୍ପନିକ ଉପନ୍ୟାସଠାରୁ ଅଧିକ ବିସ୍ମୟକର ବୋଧ ହୋଇପାରେ ।

ମାତୃଭାଷାରେ ମୁଁ ଲେଖେ ଓ ସ୍ୱପ୍ରଦେଶରେ ଗୋଟିଏ ଏରଣ୍ଡ; ନାମକୁ ଦ୍ରୁମ; ତାଙ୍କୁ ଜଣା । ସେ ପଚାରିଲେ—ଇଂରାଜୀରେ କିଛି ଅନୁବାଦ କରିଛ କି ?

'ପ୍ରକାଶକର ସମ୍ମତି ମିଳିଲେ ଅନୁବାଦ ଲାଗି ପ୍ରବୃତ୍ତି ହେବ ।'

'ଏ ଦେଶରେ ଏବେ କବିତାର ଖୁବ୍ ଆଦର । ଏକେ ତ ଆକାରରେ ଶ୍ରେଷ୍ଠ, ଭାବ ସମ୍ବନ୍ଧ; ଅଳ୍ପ ସମୟରେ ପଢ଼ି କିଛି ଭାବଧାରଣା ସଂଗ୍ରହ କରିଯାଇ ପାରେ ।'

'ଆପଣ କିଛି କବିତା ଅନୁବାଦ କରି ପଠାନ୍ତୁ । ଛପାଇବା ଦାୟିତ୍ୱ ଆମର ।'

'ଆଗେ କେତୋଟି ଓଡ଼ିଆ ଲୋକଗଳ୍ପର ଇଂରାଜୀ ଅନୁବାଦ ଛପନ୍ତୁ—ଆଦୃତ ହେଲେ ଅନ୍ୟଆଡ଼କୁ ଦୃଷ୍ଟି ପକାଇବେ ।'

ଶ୍ରୀମତୀ ମୋଟର୍‌ସ୍ ଗୋଟିଏ ମହାବଳର ମୁହଁ ସିଲେଇ କରୁଥାନ୍ତି, ଆମ ହାତକୁ କିଛି କିଛି ବିସ୍‌କୁଟ ବଢ଼ାଇ ଦେଉଥାନ୍ତି । ଏଣେ କାନ ଡେରିଥାନ୍ତି, ସତର୍କ ଗୃହିଣୀ ପରି—କାଳେ କିଏ କୁଆଡ଼େ ଡାକିବ !

ଏଇ ଗୃହଟିର ଏତେ ବଡ଼ ହତା, ଗାଢ଼ ସବୁଜ ବୃକ୍ଷ, ତୃଣ ପ୍ରାନ୍ତର । କିନ୍ତୁ କେଉଁଠି ଗୋଟିଏ ହେଲେ ଫୁଲ ଫୁଟି ନାହିଁ । ଶ୍ରୀମତୀ ଫୁଲସବୁ ଫୁଟାଉ-ଛନ୍ତି, କନାରେ, ରୁଚିର ଡିଜାଇନ୍‌ରେ ।

## ଛଅ

### ସବନ୍ତୁ ନିକଟ ସେ ଅସବନ୍ତୁ ଦୂର

ବନ୍ଧୁ—ଭାବକୁ ପାଖ, ଭାବ ନ ଥିଲେ ଦୂର । ବନ୍ଧୁତା ଜମେଇବା, ଭାବ ଜମେଇବା ଲାଗି ବିଦେଶରେ ଗ୍ରୁ ଭୋଜ ହୁଏ, ଥରକୁଥର ହେଉଥାଏ । ଯେ ଖାଏ, ସେ ବିଏ, ବନ୍ଧନମୟ ସମ୍ବନ୍ଧ । ଦୂରକୁ ନିକଟ, ପରକୁ ଆପଣାର କରିବାର ଭାବ ଗ୍ରୁ ଭୋଜରେ ସୁପ୍ରକଟ । ବ୍ୟବସାୟର ଗତାନୁଗତିକତା, କାର୍ଯ୍ୟ ପୁନରୁକ୍ତିର ବିରକ୍ତି ଓ ନିଃସଙ୍ଗତାରୁ ଏହା ରକ୍ଷା କରେ । ସାମାଜିକ ମିଳନ ବିରଳ ଥିବାବେଳେ ଗ୍ରୁ ଭୋଜ ଏକ ପ୍ରୟୋଜନ । ସେଣ୍ଟ୍‌ଲୁଇସ୍‌ ରହିଣି କାଳରେ ଏଇ କେତୋଟି ଭୋଜହୋଇ ଥିଲା ।

### ହାହାମୟୀ ମୈତ୍ରେୟୀ

ନିକ୍ଷେତ୍ରନ ବିଦ୍ୟା ବିଶାରଦ ଡାକ୍ତର—ଭୋଜରେ ଦେଶୀ ବିଦେଶୀ କେତେ କିଛି ଖୋଇଥିଲା । କିନ୍ତୁ ଖାଇବାରେ ମୋର ମନ ନ ଥିଲା । ମୁଁ ତାକୁ ଦେଖୁଥିଲି ଓ ତା'ର କଥା ଶୁଣୁଥିଲି ।

'କରୁଣସ୍ୟ ମୂର୍ତ୍ତି ବା ଶରୀରିଣୀ' । ଅଧର ଅଦ୍ୟାପି ବେଦନାପ୍ଳୁତ । ଆଖି କାନ୍ଦ କାନ୍ଦ । କଣ୍ଠରେ କାନ୍ଦଣାର ସ୍ୱର, ଯାହା ହଜିଗଲା, ମିଳିବାର ନୁହେଁ ।

ସ୍ୱାମୀ ଡାକ୍ତର ସୁରେନ୍ଦ୍ର ଚକ୍ରବର୍ତ୍ତୀ, କର୍କଟ ବିଶେଷଜ୍ଞ, କୋଳରେ ଦୁଇଟି ଝିଅ—ମଞ୍ଜରୀ ଓ ମାଳାକୁ ଦେଇ ବିଦାୟ ନେଇଛନ୍ତି ।

ସେ ସ୍ତ୍ରୀ ଆଉ ଦୁଇ ଝିଅଙ୍କୁ ନେଇ ହାୱାଇ ଦ୍ୱୀପ ଭ୍ରମଣରେ ଯାଇଥିଲେ । ସମୁଦ୍ର ସ୍ନାନ । ଝିଅ ଦୁଇଟି ସମୁଦ୍ରତଳ ସ୍ରୋତର ତୋଡ଼ରେ ଭାସିଗଲେ । ପିଲା ଦୁଇଟିଙ୍କୁ ରକ୍ଷା କରିବା ଲାଗି ସୁରେନ୍ଦ୍ର ଆଗେଇଲେ, ବିପଜ୍ଜନକ ସ୍ରୋତକୁ ଚାଲିଗଲେ । ବହୁ ଚେଷ୍ଟା କରି ଖସି ଆସି ପାରିଲେ ନାହିଁ । ପିଲା ଦୁଇଟି ରକ୍ଷା ପାଇଲେ । କିନ୍ତୁ ସେ ନିଜେ ବୁଡ଼ିଗଲେ । ବହୁ ଖୋଜାଖୋଜି ପରେ ବି ଶବର ପତ୍ତା ମିଳିଲାନାହିଁ । ଦୁର୍ଭାଗ୍ୟ ତରଙ୍ଗ ଝଡ଼ର ଭାବେ ନୃତ୍ୟ କରିବାକୁ ଲାଗିଲେ ।

ଗୁରୁଜଣ ଯାଇଥିଲେ, ତିନିଜଣ ଫେରି ଆସିଲେ କାନ୍ଦି କାନ୍ଦି, ଲୁହ ସିନା ଶେଷ ହେଲା, କାନ୍ଦର ଶେଷ ହେଲା କାହିଁ ?

କଲିକତାରେ ପଦସ୍ଥ, ଧନୁର୍ଦ୍ଧର ଦୁଇଭାଇ । ବିପନ୍ନ ଏଇ ପରିବାରର ଦୁଃଖ ଭାର ବୋହିବାକୁ କେହି ରାଜି ହେଲେ ନାହିଁ । କନ୍ୟା ଦୁଇଟି ଦେଖି ଶଙ୍କି ପଛେଇ ରହିଗଲେ । ମୁଖରେ ମଧୁର ବାକ୍ ଓ ତଥାକଥିତ ବେଦନାବୋଧର ଅଭାବ ନ ଥିଲା ।

ସେଣ୍ଟ୍ ଲୁଇସ୍‌ରେ ନିଜସ୍ୱ ଘର, ବାଡ଼ି । ସ୍ୱାମୀଙ୍କର ଇନ୍‌ସୁରେନ୍‌ସ୍ ଥିଲା । ଅକାଳ ବିୟୋଗ ଯୋଗୁଁ ପ୍ରଚୁର ଟଙ୍କା ମିଳିଲା । ନିଜର ରକ୍ତସମ୍ପର୍କୀୟ ସିନା ଦୂରେଇ ଗଲେ, ଚକ୍ରବର୍ତ୍ତୀଙ୍କ ଦୂର ସମ୍ପର୍କୀୟମାନେ ପାଖେଇ ଆସିଲେ । ସେମାନେ ସାମାଜିକ ସାଂସ୍କୃତିକ କର୍ମରେ ଅଗ୍ରଣୀ ସୁରେନ୍ଦ୍ରଙ୍କ ସ୍ମୃତି ରକ୍ଷା କଲେ, ମୈତ୍ରେୟୀକି ଗ୍ରହଣ କରେଇ ଦେଲେ, ଦମ୍ ଦେଲେ, ସବୁଭାବେ ସାହାଭରସା ହୋଇ ରହିଲେ । ସେଇମାନେ ଆଜି ଗୃହଭୋଜିକ ନିମନ୍ତ୍ରିତ ।

ବ୍ରାହ୍ମଣକନ୍ୟା ମୈତ୍ରେୟୀ ଏବେ ରକ୍ଷଣଶୀଳ ବ୍ରାହ୍ମଣ ସମାଜମୁକ୍ତ । କିନ୍ତୁ ବଙ୍ଗ ଭାଷା ତା ତୁଣ୍ଡରେ ଅକ୍ଷୁଣ୍ଣ ହୋଇ ରହିଛି । ସେ ବଙ୍ଗଳା ଉପନ୍ୟାସ ପଢ଼େ, କିନ୍ତୁ ବୈଧବ୍ୟ ବ୍ରତ ପାଳେ ନାହିଁ, ଆମିଷ ଖାଏ, ବିଧିନିଷେଧ ନାହିଁର କରିବ କିଏ ? ଏ ଦେଶର ସ୍ଥାୟୀ ବାସିନ୍ଦା ଜଣେ, ସେ କଟକଣା ପାଳିବାକୁ ବାଧ୍ୟ ହେବ କାହିଁକି ?

ଦୃଢ଼ ଆତ୍ମବଳରେ ମୈତ୍ରେୟୀ ନିଜକୁ ପ୍ରତିଷ୍ଠିତ କରିପାରିଛି । ନମ୍ର ମଧୁର କଥା । ଆମେରିକାର ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଆମୋଦ ପ୍ରମୋଦ ତାର ହୃଦୟଟିକୁ ଏବେ ବି ରଖିଛି ଫାଙ୍କା ।

ସ୍ୱାମୀର ମନ ସଂସାରରୁ ଛାଡ଼ି ନ ଥିଲା । କାଳେ ତାର ଅତୃପ୍ତ ଆତ୍ମା ଆସି ଘୂରି ଯାଉଥିବ, ଏଥିଲାଗି ସେ ବାସକସଜ୍ଜା ଘରକୁ ସଜାଇ ରଖେ, ନିଜକୁ ସଜାଏ ।

ସ୍ୱିମିଂପୁଲ୍‌କୁ ମୈତ୍ରେୟୀ ଗ୍ରହିପାରେ ନାହିଁ, ବିପଦ ମନେ ପଡ଼ିଯାଏ— ଯାହା ସେହି ସମୁଦ୍ର ପରି ବିରାଟ । ଗୋଟିଏ ଜୀବନକୁ ନେଇଗଲା, ଆଉ ଗୋଟିକୁ ନିତି ନିତି ଅଶ୍ରୁଜଳରେ ସ୍ନାନ କରାଉ ଅଛି ।

## ନିରଞ୍ଜନା ଅଞ୍ଜନା

ଏ ଦେଶରେ ରୂପଶ୍ରୀକୁ ପ୍ରଶଂସା କଲେ କେହି ଅବଗୁଣ ବିଚାରନ୍ତି ନାହିଁ ବା ସ୍ୱାମୀ ଭିତରୁ କଦର୍ଥ ବାହାର କରନ୍ତି ନାହିଁ, ଆଗ ଟି ପାର୍ଟିମାନଙ୍କରୁ ପରିଚିତା ଅଞ୍ଜନା ଶାଢ଼ୀ ପିନ୍ଧିଚି, ଚକା ଚୂପା ଥାଳି ପଟ ପରି ଗାଢ଼ ଗୌର ନିଷ୍କଳଙ୍କ ମୁଖ । ତେଣୁ ପଦଟିଏ କହିବାକୁ ସାହସ କଲି—ନାମ ଅଞ୍ଜନା, କିନ୍ତୁ ପ୍ରକୃତରେ ନିରଞ୍ଜନା; ନିରଞ୍ଜନା ନଦୀର ଶରତ୍ ସଲିଳ ପରି ନିର୍ମଳ, ନିଷ୍କଳଙ୍କ ଦର୍ଶନ । ମୁଁ ଚିହ୍ନିପାରୁ ନାହିଁ । ଅଞ୍ଜନା ମଧୁର ହସଟିଏ ହସିବାକୁ ଚେଷ୍ଟା କଲା, କିନ୍ତୁ ଅନ୍ତରର କାରୁଣ୍ୟ ତାହା କରାଇ ଦେଲା ନାହିଁ ।

ଉଦ ମୋତେ ଟିକେ ଦୂରକୁ ଡାକନେଇ କହିଲା— ସେ ବିଧବା ! ତୁମେ ତାର ରୂପକୁ ପ୍ରଶଂସା କଲାବେଳେ ସେ ହୁଏତ ଭାବୁଥିବ—ରୂପ ନା ଚୂଲି, ନୀ ରଡ଼ ପାଉଁଶ ! ! କିଏ ତାର ମୂଲ୍ୟ ?

ମନଟା ଅପ୍ରୀତିକର ହୋଇଗଲା । ପ୍ରଶଂସାର ଅପବ୍ୟବହାର । କଥାଟିକୁ ଫେରାଇ ଆଣି ପାରନ୍ତି କି ! ବୋହିଗଲା ନଦୀ, ତୁଣ୍ଡରୁ ବାହାରିଗଲା କଥା ଏକା; ଆଉ ଲେଉଟି ଆସେ ନାହିଁ ।

ଯାହା ତ ହୋଇଛି ହୋଇଛି, ଏଥିଲାଗି ଦୁଃଖ ପ୍ରକାଶ କଲେ ପରିସ୍ଥିତି କରୁଣତର ହୋଇପାରେ ।

ପଚାରିଲି—ତା ସ୍ୱାମୀର ବିୟୋଗ ଘଟିଲା କିପରି ? ଉଦ କହିଲା— ଆମେରିକାପ୍ରି ଭୂତକୁ ଡରେ ନାହିଁ; ସଇତାନ ବା ଭଗବାନ୍‌ଙ୍କୁ ଡରେନାହିଁ, ଡରେ ତିନୋଟି ବିପ୍ରାଟକୁ—ଆକ୍‌ସିଡେଣ୍ଟ୍ , କର୍କଟ ରୋଗ, ହୃତ୍ ରୋଗ—ସାକ୍ଷାତ ଯମଦୂତ ଏମାନେ । ସେମାନଙ୍କ କବଳରୁ ରକ୍ଷା ନାହିଁ ।

ଅଞ୍ଜନାର ସ୍ୱାମୀ ହୃଦ୍‌ରୋଗ ଡାକ୍ତର । ସେହି ହୃଦ୍‌ରୋଗରେ ହିଁ ଦିନେ ହଠାତ୍ ତାଙ୍କ ଜୀବନ ଗଲା, ଅକାଳରେ । 'ହାବୋଡ଼ି ଯାଏ ସେ ଆଚମ୍ବିତେ ଆସି' ବୋଲି ମୃତ୍ୟୁକୁ ଯାହା କୁହାଯାଏ, ତାହା ଏଇ ହୃଦ୍‌ରୋଗ ବା ଆକ୍‌ସିଡେଣ୍ଟ୍‌କୁ ଉପଲକ୍ଷ୍ୟ କରି । ଜୀବନଯାକ ସାପ ଖେଳାଇ ଖେଳାଇ କେଳା ଯେପରି ସର୍ପ କବଳରେ ପଡ଼ି ବେଳେ ବେଳେ ମୃତ୍ୟୁ ବରଣ କରେ, ଏହା ସେହିପରି ହେଲା ।

'ପିଲା ଛିଲା ?'

'ପୁଅଟିଏ, ଝିଅଟିଏ । ମୈତ୍ରେୟୀ ପରି ଜମା ଟଙ୍କା ନାହିଁ । ସମ୍ପତ୍ତି ବୋଇଲେ ଏଇ ଘରଖଣ୍ଡି । କିଛି ଅଂଶ ଭଡ଼ା ଦେଇ ଚଳିଯାନ୍ତା । କିନ୍ତୁ ବେଆଇନ୍; ବସବାସ ଅଞ୍ଚଳରେ ଭଡ଼ାଟିଆଙ୍କ ସ୍ଥାନ ନାହିଁ ।

ବି. ଏ. ପାସ୍; ରୂପସୀ । ରୂପ ଯୋଗୁଁ ସୁଯୋଗ୍ୟ ବର ପାଇଥିଲା । କିନ୍ତୁ ଭୋଗ ହେଲା ନାହିଁ ।

ବହୁ ଚେଷ୍ଟା କରି ଚାକିରୀଖଣ୍ଡିଏ ପାଇଥିଲା—ସ୍କୁଲ୍ ମାଷ୍ଟରୀ । ମନରେ ସ୍ୱାଧୀନ ଭାବ । ଭଲ ଲାଗିଲା ନାହିଁ । ତାକୁ ଛାଡ଼ିଦେଇ ସେ ନିଜର ସ୍କୁଲଟିଏ କଲା, ପିଲାଙ୍କୁ ନିଜ ଦୃଷ୍ଟିରେ ରଖି ମଣିଷ କରିବ, ଏଇ ଆଶାରେ ।

ହାତରେ ପଇସାଟିଏ ନାହିଁ । ଦୁର୍ଦ୍ଦିନ, କ୍ରମବର୍ଦ୍ଧିତ ଦୁର୍ଦ୍ଦଶା, ହତାଶାରେ ଅଞ୍ଜନା ଭାଙ୍ଗିପଡ଼ିଲା ନାହିଁ । ସେ ଖୋଲିଲା ଶିଶୁ ଶ୍ରେଣୀଟିଏ ।

ଖୋଉଛି, ବହୁତ ଘରେ ଚାଭୋଜି ଖାଇଛି ବୋଲି । କରୁଣାର ପାତ୍ର ହେବାକୁ କିଏ ଚାହେଁ ? ଆତ୍ମସମ୍ମାନଜ୍ଞାନ ମର୍ମସ୍ଥଳକୁ ଦଂଶନ କରିବ ନାହିଁ ? ପାର୍ଟିକୁ ନ ଯାଇ ପାରନ୍ତା । କିନ୍ତୁ ସାମାଜିକତା ବିନା ବଞ୍ଚିବ କିପରି ?

ମୋଟରେ କୋଡ଼ିଏ ଜଣ ବନ୍ଧୁ ନିମନ୍ତ୍ରିତ—ଅଧିକାଂଶ ହୃଦ୍‌ରୋଗ ଡାକ୍ତର, ସ୍ୱାମୀଙ୍କର ବନ୍ଧୁ ଥିଲେ । ଅଞ୍ଜନାର ଆପଦରେ ସହାୟକ । ଆମେ ଚାରିଜଣ ଓଡ଼ିଆ—ଜଣେ ସିଂହଳୀ । ସମସ୍ତଙ୍କ ହାତରେ କିଛି କିଛି ଉପହାର । ଇରା ଲତାକୁ କାଣ୍ଡି କିଣି ଦେଇଥିଲା, ଲତା ଅଞ୍ଜନାକୁ ଉପହାର ଦେଇ ଧନ୍ୟବାଦଟିଏ ପାଇଲା, ଯାହା ଇରାର ପ୍ରାପ୍ୟ ।

ସିଂହଳୀ ଡାକ୍ତର ମୁଁ ସିଂହଳ ଭ୍ରମଣ କାହାଣୀ ଲେଖିଥିବା କଥା ଶୁଣିଲେ ଓ ସିଂହଳ ସହିତ କଳିଙ୍ଗର ଦୀର୍ଘ ରାଜନୀତିକ, ବାଣିଜ୍ୟିକ ସମ୍ପର୍କ ଥିବା କଥା କହିଲେ । କିନ୍ତୁ କ୍ଷୁଦ୍ର ଶ୍ରୀଲଙ୍କାକୁ ଜାଫ୍‌ନାର ତାମିଲ ଭାଗ ଭାଗ କରିବା ଚେଷ୍ଟା ଏକ ଅପଚେଷ୍ଟା ଓ ସେ ଦିଗରେ ଭାରତର ତାମିଲ୍‌ମାନେ ଉସୁକଉଥିବା ଦୁଃଖର କଥା ।

ମୁଁ କହିଲି—ତାମିଲ୍‌ମାନେ ସିଂହଳୀଙ୍କ ପରି ଜାଫ୍‌ନାର ସ୍ଥାୟୀ ବାସିନ୍ଦା । ସେମାନଙ୍କ ମୂଳ ଉପାଡ଼ିବା ଚେଷ୍ଟା କଲେ ବିଭ୍ରାଟ ଘଟିବ ହିଁ ଘଟିବ ।'

ଆଲୋଚନା ବାଧାପ୍ରାପ୍ତ ହେଲା, ଯେତେବେଳେ ଇରା ମୈତ୍ରେୟୀଙ୍କୁ ପ୍ରଶଂସା କରି କହିଲା—ପୁରୁଷ ବା ସ୍ତ୍ରୀ ବେଶ ଯାହା ପିନ୍ଧିଲେ ବି ତାକୁ ସୁନ୍ଦର ଦିଶେ ।

ଏତିକିବେଳେ ମୁଁ ଇରି କାନରେ ଚୁପ୍ କରି କହିଲି—ପୁରୁଷବେଶରେ ମର୍ଗ୍ରେଣ୍ଟ ଅଫ୍ ଭେନିସ୍‌ର ପୋର୍‌ସିଆ ପରି ଦିଶୁଛି !

ତାପରେ ଇରି ଯାପାନରୁ ସଦ୍ୟ ଫେରିଥିବା ସିଂହଳୀ ଡାକ୍ତରଙ୍କ ସ୍ତ୍ରୀଙ୍କୁ ସୌଜନ୍ୟମୂଳକ ଏକ ପ୍ରଶ୍ନ ପଚାରିଲି—ଯାପାନ ଖବର କଣ ?

ଏହାର ଉତ୍ତର କେତେ କିଛି ହୋଇପାରେ । କିନ୍ତୁ ଉତ୍ତର ମିଳିଲା—ସାଧାରଣ ଜୀବନର ଚଳାଚଳ ଅବସ୍ଥାକୁ ଘେନି ।—ଇଲେକ୍‌ଟ୍ରୋନିକ୍ ଜିନିଷ ସେଠି ଖୁବ୍ ଶସ୍ତା । ଖାଦ୍ୟପେୟ ମହଙ୍ଗା, ଗୋଟେ କାଣ୍ଟେଲୁପ୍ (ତରଭୁଜ ଜାତୀୟ ଦ୍ରବ୍ୟ) ୧୭ ଡଲାର—(ଦୁଇଶ ଟଙ୍କାରୁ ଊର୍ଦ୍ଧ୍ୱ) । ହୋଟେଲ ଖର୍ଚ୍ଚ ଆମେରିକା ଅପେକ୍ଷା ଢେର୍ ବେଶୀ ।

ଅଞ୍ଜନା ବାସ୍ନା ସବୁ ଗୃହିଣୀର ଭାତ, ପୁରି, ବାଇଗଣ ଭଜା, ଫୁଲକୋବି ତରକାରି, ମାଛ, ଚିକେନ୍ ଭଜା, ଛେନାପାଏସ , ଆଇସ୍‌କ୍ରିମ୍ ଆଦି ବହୁ ଦ୍ରବ୍ୟ ଖୁଆଇଲା ।

ଭୋଜିଟା କେବଳ ଚର୍ବ୍ବଣର କଙ୍କାଳ ନୁହେ । ସ୍ୱଭାବତଃ ସମାଜ-ସେବିକା କେତେ ଜଣ ବଡ଼ାବଡ଼ି, ଅଇଁଠା ପୋଛା ପୋଛି ଆଦି ଯାବତୀୟ କାର୍ଯ୍ୟ କରିଦେଇ ଥିଲେ । ଘରଟାକୁ ଅସଣା ପକାଇ ଯାଆନ୍ତେ କିପରି ?

ଶେଷକୁ ଇରି, ମୈତ୍ରେୟୀ ବସି ଅଞ୍ଜନାକୁ ଲଗାଇ ଲଗାଇ ଖୁଆଇଲେ ।

ଭୋଜିରେ ହାର୍ଦ୍ଦିକ ସହଯୋଗ ଓ ସ୍ନେହ ସଦିଚ୍ଛାର ସଙ୍କେତ ବଡ଼ ଭଲ ଲାଗିଲା ।

## ଅଞ୍ଜନାର ସ୍କୁଲ୍

ବିଦେଶ ଭୂମି । ବଙ୍ଗାଳୀ ଝିଅଟିଏ ନିଜ ଗୋଡ଼ରେ ଛିଡ଼ା ହୋଇଛି । ତା ଦମ୍ଭ ଓ ସାହସିକତାକୁ ସାଧୁବାଦ ନ ଦେଇ ରହିପାରିଲି ନାହିଁ ।

କେମିତି ସ୍କୁଲ୍ କରିଚି, ଦେଖିବାକୁ ଇଚ୍ଛା ହେଲା । ପଡ଼ୋଶିନୀ ଟୁନି ଆମକୁ ନେଇଗଲା । ବହୁତ ବୁଲିଲୁ । ସାଇନ୍ ବୋର୍ଡ଼ ନାହିଁ । ପଚାରି ଉଚାରି କରି ଏକ ପ୍ରେସ୍‌ବାଇଟରିଆନ୍ ଚର୍ଚ୍ଚ ପଛ ଆଡ଼େ ପହଞ୍ଚିଲୁ । ଉପର ମହଲାରେ ସ୍କୁଲ୍ । ଅଞ୍ଜନା ମାସକୁ ଭଡ଼ା ଦେଉଛି ଦୁଇ ହଜାର ଡଲାର୍ ।

ସ୍କୁଲରେ ମାତ୍ର ଗ୍ୟାରିଶଟି ପିଲା, ତେର ଜଣ ଶିକ୍ଷୟିତ୍ରୀ । ସବା ତଳ ଶ୍ରେଣୀ ଛାତ୍ରଙ୍କ ବୟସ ସାଢ଼େ ଦୁଇ ବର୍ଷରୁ ସାଢ଼େ ପାଞ୍ଚବର୍ଷ । ପ୍ରାଥମିକ ଶ୍ରେଣୀ ଛାତ୍ରଙ୍କ ବୟସ ଛ'ବର୍ଷରୁ ଏଗାର ବର୍ଷ । ସପ୍ତାହକେ ଚାରିଦିନ ମାତ୍ର ସ୍କୁଲ—ବସେ —ସାଢ଼େ ଆଠଟାରୁ ସାଢ଼େ ଏଗାରଟା ।

ପ୍ରତି ପିଲାର ବାର୍ଷିକ ଦେୟ ଦୁଇ ହଜାର ଚାରିଶ ଡଲାର । ସ୍କୁଲର ଦୀର୍ଘତମ ଛୁଟି ଗ୍ରୀଷ୍ମଛୁଟି, ଜୁନ୍ ମାସରେ, ତାପରେ ଆମ ପୂଜା ଛୁଟି ପରି ତାଙ୍କ ଏକ୍‌ସମସ୍ ଛୁଟି । ବର୍ଷକୁ ଛୁଟି ମୋଟ ଚାରିମାସ ।

ପିଲାଙ୍କୁ ଲଞ୍ଚ୍ ଓ ସ୍ନାକ୍‌ସ ଏଇ ପ୍ରକାରେ ଦିଆଯାଏ—ହାମ୍ ପାଇ, ପିଅର୍, କେକ୍ କିମ୍ବା ସ୍ପାଘେଟି, ମିନ୍ସ୍‌ସସ୍, କାକୁଡ଼ିସାଲାଡ୍ କିମ୍ବା ଟୁନା ମାଛର ନୁଡ଼ଲ୍, ଦି-କାରଟ୍, କେକ୍ କିମ୍ବା ଭେଜିଟେବୁଲ୍ ସୁପ୍, ଫ୍ରୁଟ୍ କକ୍‌ଟେଲ୍ କିମ୍ବା ଫ୍ରାଏଡ୍ ଚିକେନ୍, ଚିଜ୍‌କେକ୍ କିମ୍ବା ଫିସ୍‌କେକ, ପି-ଜେଲି, କଟେଜ୍ ଚିଜ୍ ଇତ୍ୟାଦି ।

କେହି କେହି ଘରୁ ଖାଦ୍ୟ ଆଣନ୍ତି । ତଦନୁସାରେ ସେମାନଙ୍କ ବାର୍ଷିକ ଦେୟ ଊଣା ହୁଏ ।

ଗୋଟିଏ ମାତ୍ର ବାଥ୍‌ରୁମ୍ । ଲଘୁଶଙ୍କା ବା ଗୁରୁଶଙ୍କା ଗଲେ ଘଣ୍ଟିଟିଏ କାନ୍ଥରେ ପକାଇ ଯିବାକୁ ହୁଏ । ସେଟି ଦୁଆରେ ଝୁଲୁଥିବା ଦେଖିଲେ ଆଉ କେହି ଭିତରେ ପଶନ୍ତି ନାହିଁ ।

ଅଞ୍ଜନା ସ୍କୁଲ୍‌ଟି ବୁଲାଇ ଦେଖାଇଲା—ଜଣେ ବାଘଟିଏ ଆଙ୍କୁଚି; ଜଣେ ବିଭିନ୍ନ ଉପାଦାନରେ ଦୁର୍ଗଟିଏ ତିଆରି କରୁଚି; ଗୃହ ଯୁଦ୍ଧ କାଳର ଉତ୍ତର ପକ୍ଷର ଜଣେ ସେନାପତି ବୋଲି ନିଜକୁ ଭାବି ନେଇଛି ।

ଦୁଇଜଣ ଛାତ୍ର ପ୍ରାୟ ସମବୟସ୍କ । ଜଣେ ଆର ଜଣକୁ କହୁଚି—ମାଡ଼ାମ୍ କହିଛନ୍ତି—ବୟସ୍କଙ୍କୁ ସମ୍ମାନ ଦେଖାଇବାକୁ ହେବ । ତୁ ମୋତେ ସମ୍ମାନ ଦେଖାଉ ନାହୁଁ କାହିଁକି ?

'ତୋ ମୋ ବୟସ ଯେ ସମାନ ! !

'ମୋତେ ସାତ ବର୍ଷ ପୂରିଲା । ତୁ ମୋଠାରୁ ପାଞ୍ଚଦିନ ସାନ ! !'

ପିଲାଙ୍କ ମଧ୍ୟରୁ ତିନୋଟି ଭାରତୀୟ ଅନାଥାଶ୍ରମରୁ ସଂଗୃହୀତ । ପୋଷ୍ୟା କନ୍ୟା । ସନ୍ତାନସନ୍ତତି ଥାଆନ୍ତୁ ବା ନ ଥାଆନ୍ତୁ, ଏ ଦେଶର କେତେ ପିତାମାତା ପୋଷ୍ୟ ଗ୍ରହଣ କରନ୍ତି, ସେମାନଙ୍କ ପୋଷଣ, ପାଳନ, ଶିକ୍ଷାଦାନର ପୂରା ଦାୟିତ୍ୱ

ଗ୍ରହଣ କରନ୍ତି । ଏ ଗୋଟିଏ ସଉଖ । କେତେକ ମଣିଷ କୁଆ ନ ପୋଷି ଜୀବଜନ୍ତୁ ପୋଷନ୍ତି । ଚିଡ଼ିଆଖାନାର ବ୍ୟାଘ୍ର, ସିଂହ, ହିପୋପୋଟାମସ୍, ଗରିଲା ବା ଓଟ-ପକ୍ଷୀ ସେମାନଙ୍କ ପୋଷ୍ୟ । ପ୍ରାଣୀର ଖାଦ୍ୟ ଓ ଲାଳନାପାଳନ ନିମନ୍ତେ ବ୍ୟୟ ଚିଡ଼ିଆଖାନା ପରିଚାଳକଙ୍କୁ ପୋଷଣାକାରୀ ଦିଏ ।

ଅଞ୍ଜନାର ମାତୃତ୍ୱ ଏବେ ବ୍ୟାପକତର ରୂପ ପାଇଛି । ସେ ଯେପରି କି ବହୁ ସନ୍ତାନବତୀ ! କାହାକୁ କାଖେଉଚି, କାହାକୁ ଗେଲ କରୁଚି, କାହାକୁ ଆଦରରେ ଚୁମାଟିଏ ଦେଉଚି । ଗୃହିଣୀଙ୍କ ଶକ୍ତିର ସ୍ୱାଭାବିକ ବିକାଶ ଏଠି ଘଟୁଚି । ସ୍କୁଲ୍ ହୋଇଚି ସେମାନଙ୍କ ଦ୍ୱିତୀୟ ଘର, ଅଞ୍ଜନା ଦ୍ୱିତୀୟା ମାଆ । ଅଞ୍ଜନାର ଚମକପ୍ରଦ ବ୍ୟକ୍ତିତ୍ୱ ସ୍କୁଲ୍‌କୁ ଜୀବନ୍ୟାସ ଦେଇଛି, ଅଭିଭାବକମାନେ ପିଲାଙ୍କୁ ଅଞ୍ଜନା ହାତରେ ଦେଇ ନିଶ୍ଚିନ୍ତ ରହୁଛନ୍ତି ।

## ସୁଧାର ବସୁଧା

ଘର ଗୋଟିଏ ରାଜବାଟୀ, ବାଡ଼ିରେ ଯେତକ ଜାଗା, ଗୋଟିଏ ସାହି ବା ବଜାର ବସିପାରିବ । ଆମଆଡ଼େ କି ଖୁନ୍ଦାଖୁନ୍ଦି, ଏଠି କି ଖୋଲାମେଲାରେ ଲୋକେ ଚଳନ୍ତି !

ତେଣୁ ସୁଧା ସାହାର ବସୁଧା କହିଲେ କିଛି ଅତ୍ୟୁକ୍ତି ନୁହେଁ । ନିତାଇ, ସୁଧା ଡାକ୍ତର, ଡାକ୍ତରାଣୀ । ପ୍ରଚୁର ରୋଜଗାର କରନ୍ତି; ବିରାଟ ଘର, ବିସ୍ତୃତ ବାଡ଼ିବଗିଚା । ଲାଉ ଲଗାଇଛି, ଶିମ୍ବ, ଟମାଟୋ, ଲଙ୍କା ପ୍ରଚୁର ଫଳିଛି । ସୁଧା ବଜାରରୁ ବାଛି ବାଛି କିଣି ଆଣିଛି ଇଲିଶି, ହଡ଼୍‌ସନ୍ ନଦୀର ଇଲିଶି ମାଛ । ବହୁତ କଣ୍ଟା । ଏଠି ଏ ମାଛ ଲୋକପ୍ରିୟ ନୁହେଁ । ସୁଧା ଗୋଟା କଞ୍ଚା ଲଙ୍କା ଦେଇ ଇଲିଶି ଝୋଲ୍ କରିଚି, ମୁଣ୍ଡ ପକାଇ କରିଚି ଲାଉ । ତେବେ ଗଙ୍ଗା, ପଦ୍ମା, ମହାନଦୀ ଇଲିଶି ପରି ହଡ଼ସନ୍ ଇଲିଶି ସେତେ ସ୍ୱାଦୁ ନୁହେଁ ।

ସୁଧା ପ୍ରଚୁର ମାଛ ମଞ୍ଜି ବରା, ସ୍ୱଗୃହେ ପ୍ରସ୍ତୁତ ରସଗୋଲା ଓ ଦହି, ଶେଷକୁ ଫଳ ସାଲାଡ୍ ଖୁଆଇଲା ।

ପୂର୍ବ ବଙ୍ଗର ଝିଅ—ପ୍ରତ୍ୟେକ ଶବ୍ଦ ଉପରେ ଜୋର୍ ଦେଇ ସେ ବଡ଼ ପାଟିରେ କଥା କହେ; କାନକୁ କର୍କଶ ଲାଗିଲେ ବି ମନକୁ କୋମଳ ଲାଗେ, କଥାରେ କୋମଳତା ନ ଥିଲେ ବି ସମଗ୍ର ଗୃହରେ କଲ୍ୟାଣ ଫୁଟାଇଛି । ହୃଦୟ କୋମଳ, ଉଦାର ।

ବାପା ମାଆଙ୍କୁ ଆଣି ପାଖରେ ରଖି ସେବା କରେ, ବାର୍ଦ୍ଧକ୍ୟ ଦୁଶ୍ଚିନ୍ତା ଦୂର କରିବା ଲାଗି ଯଥାସମ୍ଭବ ଚେଷ୍ଟା କରେ । ଛ'ଟି ଭଉଣୀଙ୍କ ଆଣି ପାଖରେ ରଖି ପାଠ ପଢ଼ାଇ ଷ୍ଟ୍ରାମୀସ୍ଥ ପଦସ୍ଥ ଭାରତୀୟଙ୍କୁ ବିଭା ଦେଇଛି । ଏ କୃତଜ୍ଞର ତୁଳନା ନାହିଁ । ପିତାମାତାଙ୍କୁ ଆଉ କେଉଁ ପୁଅ ଝିଅ ଅଧିକ ସାହାଯ୍ୟ କରିପାରେ ?

ସ୍ୱାମୀ ଡାକ୍ତର ନିତାଇଙ୍କ ଘର କଲିକତା ବାଲିଗଞ୍ଜରେ । ସେ ବାକ୍-କୃପଣ । କଥାରୁ କିଛି ବାରି ହୁଏ ନାହିଁ, ଭଲ ମଣିଷ ବୋଲି ଯେ ହେଲେ ଧରି-ନିଏ; ଜୀବନକ୍ଷେତ୍ରରେ ଅପରିହାର୍ଯ୍ୟ, ସୁମନୁଷ୍ୟ ଭାବେ ପରିଚିତ, ପ୍ରିୟ, ସାହିତ୍ୟ-କ୍ଷେତ୍ରରେ ଅନୁପଯୋଗୀ ଚରିତ୍ରଟିଏ ହେଲେ ବି ।

ଖାଦ୍ୟ ପରିବେଷଣ ବେଳେ ସୁଧା ମୋ ଆଡ଼କୁ ଚାହିଁ ଏଡେ ପାଟିରେ କହି ଉଠିଲି—ଡକ୍ଟର ଦାସ, ନୀରବ କାହିଁକି ? ମୁଁ କହିଲି—ଭାବୁଚି—ଆମେରିକା-ବାସୀ ଭାରତୀୟମାନେ ନିଜ କୁଟୁମ୍ବ ପୋଷଣ ବ୍ୟତୀତ ଅନ୍ୟ କିଛି କରୁଛନ୍ତି କି ନାହିଁ, ନିଜକୁ ପ୍ରଶ୍ନ କରିବା ଉଚିତ । ଶତକଡ଼ା ଅଶୀଭାଗ ଭାରତୀୟ ଦାରିଦ୍ର୍ୟର ସୀମାରେଖା ତଳେ । ସେହି ହତଭାଗ୍ୟ ଭାଇମାନଙ୍କ ପ୍ରତି ଏହି ସୁଖୀ ଭାରତୀୟ-ମାନଙ୍କର କଣ କିଛି କର୍ତ୍ତବ୍ୟ ନାହିଁ ?

ମୋ ପ୍ରଶ୍ନର ଉତ୍ତର ଦେଇ ଜଣେ କହିଲି—ସେମାନେ ଆତ୍ମ ନିର୍ଭରତା ଶିକ୍ଷା କରିବା ଉଚିତ । ଆମେ ସାହାଯ୍ୟ ଦେଲେ ସେମାନେ ଆମ ଉପରକୁ ଆଉଜି ଯିବେ, ନିଜେ କିଛି କରିବେ ନାହିଁ । ଆମେ ସେମାନଙ୍କ ଆଳସ୍ୟ ବଢ଼ାଇବାକୁ ଚାହୁଁ ନାହିଁ ।

ଆଉ ଜଣେ କହିଲି—କାହା ଉପରେ ନିର୍ଭର ନକରି ଆମେ ଯେ ନିଜ କୁଟୁମ୍ବ ଚଳାଉଛୁ, ଏ କ'ଣ ଯଥେଷ୍ଟ ନୁହେଁ ?

ଯେ ଗୃହାଳୀକ ପୂଜା ନେଇନାହିଁ, ସେ ବି ତା କରିପାରେ । ଶିକ୍ଷିତ, ସଭ୍ୟ ହୋଇ ଯଦି କେବଳ ସେଇଆ କଲ, ତାହେଲେ ଅଧିକା କ'ଣ କଲ ? କାହାକୁ ତିଳାର୍ଦ୍ଧ ଆଘାତ କରିବା ଭାବ ମୋର ନାହିଁ । ଯାହା ଚିନ୍ତା କରୁଛି, ବ୍ୟକ୍ତ କରୁଛି ମାତ୍ର ।

ଅଧିକାଂଶ ମନୁଷ୍ୟ ପଶୁ ପରି ସ୍ୱାର୍ଥପର । ସେହି ସୀମା ଯଥାସମ୍ଭବ ଅତିକ୍ରମ କରିଥିବା ବଡ଼କଥା; ବ୍ୟକ୍ତି ପକ୍ଷରେ ଯେପରି, ଦେଶ ପକ୍ଷରେ ସେହିପରି । ଆଜି ଧର୍ମ ଓ ଦେଶପ୍ରେମ ନାମରେ ଏ ସ୍ୱାର୍ଥ ବିକଟତମ ରୂପ ଧାରଣ କରିଛି, ଆମେରିକା, ରୁଷିଆ, କାନେଡା, ଅଷ୍ଟ୍ରେଲିଆ ପ୍ରଭୃତି ବଡ଼ ବଡ଼ ଜନବିରଳ ଦେଶ ଚୀନ,

ଭାରତ, ଯାପାନ ପ୍ରଭୃତି ଜନବହୁଳ ଦେଶରୁ ଜନ ଆମଦାନି କରି ପୃଥିବୀର ସାମ୍ୟ ଓ ସାମଞ୍ଜସ୍ୟ ରକ୍ଷା କରିବା ଉଚିତ । ନଇଲେ ଗୋଟିଏ ଦେଶ ଆକାଶରେ ଉଡ଼ୁଥିବାବେଳେ ଆଉ ଗୋଟିଏ ପାତାଳରେ ପଡ଼ୁଥିବ । ଏଇ ବୈଷମ୍ୟ ହିଁ ଯାବତୀୟ ବିଭ୍ରାଟ ଓ ଅଶାନ୍ତିର କାରଣ ।

## ଟୁନୀର ଟୁନୀ ସଂସାର

ତିନୋଟି ପିଲାର ମାଆ, ତଥାପି ପିଲାଳିଆ ଚେହେରା, ବୟସ ଛପିଯାଏ ସେ ଚେହେରା ଭିତରେ । ଗେଡ଼ି ବାଙ୍ଗରା, ପୁଣି ଡ଼ମ୍ଫାଚାଳ ପ୍ରକୃତିର । କବିରାଜ ଲକ୍ଷ୍ମୀନାରାୟଣ ଆଗ୍ରୱାଲଙ୍କ ଝିଅ । ଚାକିରୀ କରେ ନାହିଁ—ପୁରାପୁରି ଗୃହିଣୀ । ଘରର ଯାବତୀୟ ଅ-ଡ଼ଉପଡର କରେ । ପାର୍ଟିରେ ଯୋଗ ଦେଲେ ରନ୍ଧାବଢ଼ା କାର୍ଯ୍ୟରେ ସାହାଯ୍ୟ କରେ । ଇଏ ସହିତ ହାର୍ଦ୍ଦିକ ସଖ୍ୟ, ପରସ୍ପର ପ୍ରତି ସାହାଯ୍ୟ ମନୋଭାବ । ତରକାରି ଦିଆନିଆ ବି ଚଳେ । ଅତି ଆପଣାର ଜଣେ ପରି ସେ ଗାଡ଼ିରେ ନେଇ ଆମକୁ ବହୁ ସୁଦୃଶ୍ୟ ଦେଖାଇଛି ।

ତାର ସ୍ୱାମୀ ପ୍ରଭାତ ମିଶ୍ର । ବୁର୍ଲା ଇଞ୍ଜିନିୟରିଂ କଲେଜରୁ ପାସ୍ କଲାପରେ ଦୀର୍ଘକାଳ ହେଲା ଆମେରିକାରେ ଚାକିରୀ କରିଛନ୍ତି । ୪୬ ହଜାର୍ ଡଲାର ଦେଇ ଘରଟିଏ କିଣିଛନ୍ତି ।

ପଶୁପକ୍ଷୀ ଖାଦ୍ୟ ଯୋଗାଣ ସଂସ୍ଥାରେ ଏବେ ସେ କାର୍ଯ୍ୟ କରନ୍ତି । ପୃଥିବୀରେ ମୁଖ୍ୟତଃ ତିନି ଜାତୀୟ ପ୍ରାଣୀ ଦେଖାଯାନ୍ତି—ବୁଲାମାନେ ନିଜ ଆହାର ନିଜେ ଖୋଜନ୍ତି । ମିଳିଲେ ପେଟ ଭରି ଖାନ୍ତି, ନଇଲେ ଉପାସେ ଶୁଅନ୍ତି, ରୋଗ ହେଲେ ମରନ୍ତି ।

ଦ୍ୱିତୀୟ ଶ୍ରେଣୀର ପ୍ରାଣୀ ପୋଷିତ, ପାଳିତ—ରାବିଟ୍, ପାହାଡ଼ୀ ମୂଷା, ନେଉଳ, ବିରାଡ଼ି, କୁକୁର, ମୟୂର, କାକତୁଆ, ଶୁଆ, ସାରି, ବଣି ।

ତୃତୀୟ ଶ୍ରେଣୀର ପ୍ରାଣୀ ସଂରକ୍ଷିତ—ରିଜର୍ଭ ଜଙ୍ଗଲରେ, ହ୍ରଦରେ କମ୍ବା ଚିଡ଼ିଆଖାନାରେ—ବାଘ, ସିଂହ, ଗଣ୍ଡା, ହେଟା, ଓଟପକ୍ଷୀ, ହାତୀ ଓ ବିଭିନ୍ନ ପକ୍ଷୀ । ସଂରକ୍ଷିତ ଜଙ୍ଗଲ ଓ ହ୍ରଦର ପଶୁପକ୍ଷୀମାନଙ୍କୁ ଖାଦ୍ୟ ଯୋଗାଇ ଦିଆ ହୁଏ ନାହିଁ । ଚିଡ଼ିଆଖାନାର ସମସ୍ତ ପ୍ରାଣୀ ଓ ସଂରକ୍ଷିତ ଅରଣ୍ୟର ମୃଗ ଆଂଶିକଭାବେ ମଣିଷ ଯୋଗାଉଥିବା ଖାଦ୍ୟ ଉପରେ ନିର୍ଭରଶୀଳ । ଏଇ ମଣିଷନିର୍ଭର ପ୍ରାଣୀମାନଙ୍କୁ ବୈଜ୍ଞାନିକ ପ୍ରସ୍ତୁତ ରୀତିରେ ଖାଦ୍ୟ ଯୋଗାଇବା ପ୍ରଭାତଙ୍କର କାର୍ଯ୍ୟ । କର୍ମନିଷ୍ଠ ଅଫିସର ଭାବରେ ପ୍ରଭାତଙ୍କର ସୁନାମ ଓ ପଦୋନ୍ନତି ଘଟି ଚାଲିଛି ।

ପ୍ରଭାତଙ୍କ ଟେବୁଲ ଉପରେ ବୃହତ୍ ପିତ୍ତଳ କଙ୍କଡ଼ାଟିଏ—ତାଙ୍କ ଜୀବନର ପ୍ରତୀକ । ଦଶପଦ କର୍କଟର ବ୍ୟଙ୍ଗାତ୍ମକ ଗ୍ରାମ୍ୟ ନାମ ଦଶରଥ—ଆଗକୁ ପଛକୁ ସ୍ୱେଚ୍ଛାରେ ତାର ଗତି—ଦଶରଥ ମହାରାଜଙ୍କ ରଥର ଗତି ଦଶଦିଗକୁ । ସେହିପରି ପ୍ରଭାତ ପୃଥିବୀର ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ବ୍ୟୋମଯାନରେ ବୁଲୁଥାନ୍ତି । ଆକାଶରେ ଅଧିକ କାଳ କଟେ—ପଶୁପକ୍ଷୀ ଖାଦ୍ୟଯୋଗାଣ ବ୍ୟବସାୟ ବଢ଼ୁଥିବା ବେଳେ ତାଙ୍କ ଗତିପଥ ବଦଳୁଥାଏ—ଏ ଦେଶରୁ ସେ ଦେଶ ଓ ସବୁ ଦେଶ । କେଉଁ ଦେଶରେ ଚିଡ଼ିଆଖାନା ନାହିଁ, ଲକ୍ଷ ଲକ୍ଷ ସଂଖ୍ୟାରେ ପୋଷିତ, ପାଳିତ ପ୍ରାଣୀ ନାହାନ୍ତି ? କେତୋଟି ଅନୁଷ୍ଠାନ ଜରିଆରେ, ସ୍ୱାସ୍ଥ୍ୟକର ଖାଦ୍ୟ ବା ପାଇ ପାରୁଛନ୍ତି ?

ଅନଭ୍ୟାସ । ପ୍ରଭାତ ଭଙ୍ଗା ଭଙ୍ଗା ଓଡ଼ିଆ କହୁଛନ୍ତି । ପିଲାଙ୍କ ଭାଷା ବି ତଦ୍ରୂପ ।

ଟୁନା ଭୋଜରେ ଓଡ଼ିଆ ଖାଦ୍ୟ ପରିବେଷଣ କଲା । କିନ୍ତୁ ତା ପିଲାଙ୍କୁ ଏ ଖାଦ୍ୟ ରୁଚିଲା ନାହିଁ, ସ୍ଥାନୀୟ ଖାଦ୍ୟ ପ୍ରତି ବଳିଷ୍ଠ ଝୁଙ୍କ୍ ।

## ଦେଖିବ ଆସ ହୋ ଖୁଡ଼ୀ

ଇଭା ଘରେ ଡ଼ିନାର୍; ସାମନ୍ ମାଛଟି ପାଞ୍ଚ ସେର ଓଜନର, ଫ୍ଲୋରିଡ଼ା ସମୁଦ୍ରରୁ ଉଦୟ ବଜାରରେ ଧରିତ । ମଟର ଗାଡ଼ିର ପେଟ୍ରୋଲ ଖର୍ଚ୍ଚ ୫୦ ଡ଼ଲାର, ନୌକାଭଡ଼ା ଦଶ ଡ଼ଲାର । କେତେ ସମସ୍ତ ଖର୍ଚ୍ଚ ! ଲାଭ କ'ଣ ହେଲା ? ବିନୋଦନ ! ବିନୋଦନରେ କେହି ଆୟବ୍ୟୟ ହିସାବ କରେ ? କଲେ ବିନୋଦନ ହିଁ ନଷ୍ଟ ହୋଇଯାଏ ।

ଲତା, ଇଭା ମିଶି ଟେବେଲରେ ଲାଗିଛନ୍ତି—ପଲାଉ, ମାଛ ବେଶର, ଚିକେନ୍ ତରକାରୀ, ଟମାଟୋ ଖଟା, ରସ ମଲାଇ ।

ଏଣେ ଦାଣ୍ଡବାଡ଼ି ଓଳାପୋଛା କରୁଛନ୍ତି । ଫୁଲଗଛରେ ପାଣି ଦେଇ ସଜ ସତେଜ ରଖୁଛନ୍ତି, ରଙ୍ଗୀନ୍ ପିଲିଲ ଛତିଟାକୁ ଟାଣୁଛନ୍ତି, ଟେବୁଲ ସଜାଡ଼ୁଛନ୍ତି । ଏମାନଙ୍କ ଗତିପଥର ଅନ୍ତରାୟ ନ ହୋଇ କରଛଡ଼ା ଦେଇ, ଲକ୍ଷ୍ୟହୀନଭାବେ ବୁଲୁଛି । ଏମାନେ କାମରେ ଝାଳନାଳ ହେବାବେଳେ ମୁଁ ଏପରି ବୁଲିବାଟା

ଟୋକାଟାଏ ଅପରାଧ ପରି ବୋଧ ହେଲା । ବଳେ ବଳେ ଯାଇ ଇରାକୁ ପଚାରିଲି—ମୋ ଲାଗି କ'ଣ କିଛି କାମ ନାହିଁ ? ଇରା କହିଲା—ଗ୍ରାଇନା, ଏଇ ମକ୍‌କାଗୁଡ଼ିକ ଛଡ଼ାଇ ଧୋଇ ରଖ । ମୁଁ ମକ୍‌କା ଛଡ଼ାଇବାବେଳେ ହସି ପକାଇଲି । ଲତା ପଚାରିଲା—ହସିଲ କାହିଁକି ?

ଛଗଟାଏ ମନେ ପଡ଼ିଗଲା ! ଶୁକୁଟାମୁହାଁ ଲୋକଗୁଡ଼ାକ ଟିକିଟିକି କଥାରେ କେତେ ହସ ଫାନ୍ଦି ପାରନ୍ତି !

'ଝିଅଟି ହେଲାଣି ବାର ବରଷ
ମାଆ ଯେ ହେଲାଣି ବୁଢ଼ୀ
ନାତୁଣୀ ମୁଣ୍ଡରେ ବାଳ ପାଚିଲାଣି
ଦେଖିବ ଆସ ହୋ ଖୁଡ଼ୀ ।'

ମକ୍‌କାକୁ ଘେନି ଆଉ ଗୋଟିଏ ଛଟା ବି ଚଳେ—

'ମକ୍‌କା,
ଦାନ୍ତ ଗଲେ ମକ୍‌କା ତଳକୁ ପକା ।'

ତଳକୁ ପକେଇବା ଜିନିଷକୁ ଛଡ଼ାଇ ରଖିବାକୁ ମୋତେ କାହିଁକି ଦିଆ ହୋଇଛି ?

ଲତା କହିଲା—କଞ୍ଚି ମକ୍‌କା; ସାମାନ୍ୟ ଶିଝେଇ ଛୁରୀରେ ଘୁଞ୍ଚି ଖାଇବାକୁ ହୁଏ । ଏତେ କୋମଳ ଯେ ଦାନ୍ତ ନ ଥିଲେ ବି ମାଢ଼ିରେ ପାକୁଳି କରି ଗିଳି ହେବ ।

ଏ କାମଟି ସରିଲା ପରେ ଇରା ଗୋଟିଏ ବଡ଼ ପିତ୍ତଳ ଥାଳୀରେ କାଜୁ କିସ୍‌ମିସ୍‌ ଦିଆ ଛେନାର ରସମଲାଇ କାଟିଲା । 'ଗୋଟି ଗୋଟି ଭାଙ୍ଗି ଅନ୍ୟ ପାତ୍ରରେ ରଖ । ଗୋଟିଏ ଯେପରି ନ ଭାଙ୍ଗେ, ଦେଖିବ,' ଇରା କହିଲା ।

ଛଣା ହେଲା ପରେ ଗରମ କାକରା ପିଠା ସ୍ବା ଦହକୁ ତା ଦହ ଲାଗିଯାଏ । ନମିତ୍ୟାରେ ଲଗାଇବା ଆଗରୁ ତାକୁ ଗୋଟି ଗୋଟି କାଢ଼ି ଅନ୍ୟ ଏକ ତେଲୁଣିରେ

ରଖିବାକୁ ହେବ । ମଫସଲରେ ବ୍ରତ ବିବାହରେ ପ୍ରତ୍ୟକ୍ଷ ଘଟଣା । ମୋତେ ସେହିପରି ଦାୟିତ୍ୱ ଦିଆ ହେଲା ପରି ଲାଗିଲା ।

ଲତାକୁ କହିଲି—ଦୁଇଟି କାମ ସୁରୁଖୁରୁରେ ତୁଲାଇଲି । ମୋତେ ଏବେ ତୃତୀୟ ଦାୟିତ୍ୱଟି ଦିଅ—

'କ'ଣ' ?

'ଚଖାଚଖି ।' ଯେଉଁ ଦାୟିତ୍ୱ 'ଗାନ୍ଧୀ ପୁଣ୍ୟାହ'ରେ ଶାନ୍ତିନିକେତନରେ ମୋତେ ଦିଆଯାଇଥିଲା, ଖୁଣ୍ଟି ଖୁଣ୍ଟି ପେଟ ପୂରୁଥିଲା ।

ଲତା ହସି ହସି ଧାଇଁଯାଇ ଇରା କାନରେ ଫୁସ୍ ଫୁସ୍ କଲାବେଳକୁ ମୁଁ ଚୁପ୍ ଚାପ୍ ଖସିଗଲି ବୃଷ୍ଟି ଅନ୍ତରାଳକୁ ।

# ସାତ

## ପ୍ରିୟା ନା ପ୍ରକୃତି

ପ୍ରିୟାର ରୂପ ଯେତେ ଦେଖିଲେ ବି ଆହୁରି ଦେଖିବାକୁ ମନ ହୁଏ; ସେହିପରି ପ୍ରକୃତିର ଶ୍ରୀ ଥରକୁ ଥର ଦେଖିଲେ ବି ଆହୁରି ଦେଖିବାକୁ ଥାଏ । ସୌନ୍ଦର୍ଯ୍ୟରେ ପୁରୁଣା, ନୂଆ, ଅତୀତ ବର୍ତ୍ତମାନ କିଛି ନାହିଁ । ସେଇ ଉଷା, ସେଇ ସନ୍ଧ୍ୟା, ସେଇ ଚନ୍ଦ୍ରାଲୋକିତ ରଜନୀ, ଯେତେ ଦେଖିଲେ ବିରକ୍ତି ଆସେ ନାହିଁ । ପାଖକୁ ଟାଣି ନେବା, ନିବିଡ଼ ଭାବରେ ବୁଡ଼ାଇ ରଖିବା ସୁନ୍ଦରପଣର ଗୁଣ ।

ମେରାମେକ୍ ଗୁମ୍ଫା ଥରେ ଦେଖିଥିଲି; ତା ବିଷୟରେ ଲେଖିଥିଲି । ଏଥର ଦେଖୁଛି, ଦେଖାଉଛି, ଏ ଏକ ସ୍ଵତନ୍ତ୍ର ତୃପ୍ତି । ରାମଚନ୍ଦ୍ର ଭାରତ ଶ୍ରୀଲଙ୍କା ବିଚ୍ଛେଦକାରୀ ସମୁଦ୍ର ଓ ଦକ୍ଷିଣଭାରତର ଶ୍ରୀ ସୀତାଙ୍କୁ ଦେଖାଇ ଯେପରି ତୃପ୍ତି ଲାଭ କରିଥିଲେ ।

ଆଗେ ଆଗେ ଧାଇଁ ଦେଖାଇବି ବୋଲି ଭାବୁଥିଲି ସିନା, ପାରିଲି କୋଉଠି ? ପାହାଡ଼ ଅତଡ଼ାରେ ନିଜକୁ ସମ୍ଭାଳି ସମ୍ଭାଳି ଆଗାନ୍ତ । ପୁଣି ଅନ୍ଧାର । ଉଠାଣି, ଗଡ଼ାଣି; ପିଚ୍ଛିଳ ପଥ ପରି ପ୍ରକୃତିର ଏ ପଥ ବି ଖସଡ଼ା । ଉଭୟ କଚଡ଼ା ଏ ବୟସରେ ମାରାତ୍ମକ ।

ପାଦ ଟଳମଳ । ଧୁମ୍ ଧାମ୍ ଭୁସ୍ ଭାସ୍ ମାଡ଼ିଯିବାକୁ ଦମ୍ ପାଉନାହିଁ । ପଦେ ପଦେ ଶଙ୍କା ।

ଗାଇଡ୍ ବୁଝାଇ ଚାଲିଛି, କର୍ଣ୍ଣରେ ବାଟୁଲି ବାଜୁ ନାହିଁ । ମୋ ପକ୍ଷେ ଦୁରବୁଝା, ଲତା ପକ୍ଷେ ଅବୁଝା ।

ଅଜନ୍ତା ଆଉ ମେରାମେକ୍ ଉଭୟର ପରିବେଶ ଭିନ୍ନ । ଗୋଟିକରେ ଛ' ଋତୁ; ଏକ ପରେ ଅନ୍ୟଟିର ରାଜତ୍ଵ । ଅନ୍ୟଟିରେ ଗୋଟିଏ ମାତ୍ର ଋତୁ । କନ୍ଦର-ଭରା ତୁଷାର । ଗୋଟିକରେ ମଣିଷର କାରିଗରି, ଆଉ ଗୋଟିକରେ ପ୍ରକୃତିର କାରୁକାର୍ଯ୍ୟ । ପ୍ରକୃତି ନିଜର କାରିଗର ନିଜେ । ଯିଏ ଆଜି ଖୁସିରେ ସେ

ଗଢ଼େ, ଭାଙ୍ଗେ । କେତେବେଳେ ତାର ତାଣ୍ଡବ—ପୃଥିବୀର ହୃତ୍‌କମ୍ପ; କେତେବେଳେ ପ୍ରଚଣ୍ଡ କ୍ରୋଧ—ଅଗ୍ନିର ଉତ୍ପାତ ।

ଏଠି ପ୍ରକୃତି ପାହାଡ଼ ଶୃଙ୍ଗ ଗର୍ଭ କନ୍ଦରର ମଧ୍ୟକୁ ନାନା ଖଣିଜ ମୃଦୁ ଭାବେ ଝରାଉଛି ଓ ଫୁଟାଉଛି ତାର କଳାକୌଶଳ । ଓଜାର୍କ ପର୍ବତମାଳାରୁ ନିର୍ଗତ ମେରାମେକ୍ ନଦୀ । ପାହାଡ଼ ଉପରେ ତାର ଗତି, ନିମ୍ନତର ଶୃଙ୍ଗ ଉପରେ ତାର ପ୍ରପାତ; ସେଇ ଆଘାତରେ କ୍ଷୁଦ୍ର କ୍ଷୁଦ୍ର ରନ୍ଧ୍ର ପଥରେ ମୃଦୁ ଝରଣ ଓ ବନ୍ଧୁ କାରୁକାର୍ଯ୍ୟ ନିର୍ମାଣ । କଳାପ୍ରେମୀ ମନୁଷ୍ୟ ତାର ସାହାଯ୍ୟକାରୀ । ସମ୍ପଦ ଦାର ସେ; ତାର ମହତ୍ତ୍ୱ ବୁଝିଛି । ରୂପପିଆସୀଙ୍କ ରୂପପିପାସା ଚରିତାର୍ଥ କରିବା ଲାଗି ସେଇ ପସରାଟି ମେଲିଦେଇଛି ବିଶ୍ୱ ସମ୍ମୁଖରେ ।

ଗାଇଡ୍ ବୁଝାଏ ସୌନ୍ଦର୍ଯ୍ୟ କଣ । ଦେଖି ଯେ ଅନୁଭବ କରି ନ ପାରେ, ବୁଝାଇଲେ କଣ ସେ ବୁଝିପାରିବ ? ଯେପରି ପ୍ରେମ, ସେହିପରି ସୌନ୍ଦର୍ଯ୍ୟ—ଯେତିକି ସରଳ, ସେତିକି ଜଟିଳ । ଦେଖି ଯେ ବୁଝିନାହିଁ, ସେ ବୁଝେନାହିଁ ତାର ମାନେ—ଜୀବନ ବିତିଗଲେ ବି ।

ଗୁମ୍ଫାର ଉଠାଣି, ଗଡ଼ାଣି, ବୁଲଣି ରାସ୍ତାରେ ବୁଲି ବୁଲି ପଲକ କେତୋଟି ପକାଇଲି, ପ୍ରାଣରେ ଅପୂର୍ବ ପୁଲକ, ଆଲୋକର ଝରଣ—ଜୀବନକୁ ସୌନ୍ଦର୍ଯ୍ୟର ଦାନ ଏ । ଜୀବନ ସେ ଦାନ ଶୁଝିଦିଏ ପ୍ରତିଦାନରେ—ସେ କବିତା, କଳା ବା ଭାସ୍କର୍ଯ୍ୟ, ଯାହା ହେଉ ।

ଏକ ଘଣ୍ଟା କୋଡ଼ିଏ ମିନିଟର ପର୍ବତ ଭ୍ରମଣ । ପଦବ୍ୟଥା । ଦରିଦ୍ର ମନ ବୁଝୁ ନ ଥିଲା । ଆନନ୍ଦର ଅପୂର୍ବ ପୂର୍ଣ୍ଣିମା ତା ଭିତରେ ।

ଉଦ ଠିକ୍ କହିଥିଲା—ଭାଇନା, ୭° ବର୍ଷ ବୟସରେ ତୁମ ମନ ପୂର୍ବ ପରି ଯାଯାବର । କିନ୍ତୁ ଦେହ କଣ ତା ସହିତ ପାଦ ମିଳାଇ ଚାଲିପାରେ ?

ମିସୋରୀ ପ୍ରଦେଶ ଗୁମ୍ଫାରାଜ୍ୟ ନାମରେ ପରିଚିତ । ଏ ରାଜ୍ୟରେ ୪୮°°ଟି ଗୁମ୍ଫା ଅଛି । କିନ୍ତୁ ମେରାମେକ୍‌ର ଯୋଡ଼ି ନାହିଁ, ସମଗ୍ର ଆମେରିକାରେ ବା ପୃଥିବୀରେ ଅନ୍ୟ କେଉଁଠି ।

ସମଗ୍ର ଆମେରିକାରେ ତୃତୀୟ ଶ୍ରେଷ୍ଠ ପ୍ରାକୃତିକ ଦୃଶ୍ୟ ମେରାମେକ୍ । ୧୭୨° ଖ୍ରୀଷ୍ଟାବ୍ଦରେ ଜଣେ ଫରାସୀ ଯାଯାବର ଏହି ଗୁମ୍ଫା ପ୍ରଥମେ ଆବିଷ୍କାର କରିଥିଲେ । ଲୋହିତଭାରତୀୟଙ୍କ "ଊକାପାଗୋ"ଙ୍କ ମନ୍ଦିର ବୋଲି ତାଙ୍କ ମନରେ ଧାରଣା ଜନ୍ମିଥିଲା ।

ଡାକୁ ସର୍ଦ୍ଦାର ଜେସି ଜେମ୍‌ସ୍ ଯୋଗୁଁ ଏହା ଏକ କୁଖ୍ୟାତ ଅଞ୍ଚଳରେ ପରିଣତ ହୋଇଥିଲା । ପର୍ବତରେ ବହୁ ସୁଡ଼ଙ୍ଗ ପଥ । ବ୍ୟାଙ୍କ୍ ଲୁଣ୍ଠନ ପରେ ସେ ଏହି ଦୁର୍ଗମ ଗିରିବନରେ ଲୁକ୍‌କାୟିତ ରହୁଥିଲା । ଅଜନ୍ତାର ମଧ୍ୟ ସେହି ଦୁର୍ଦ୍ଦଶା ଘଟିଥିଲା । ଅଜନ୍ତାର ଭିତ୍ତିଚିତ୍ର, ମେରାମେକ୍‌ର ଭିତ୍ତିସ୍ୱର୍ଣ୍ଣ—ଉଭୟ ବଞ୍ଚିବାକୁ ଭାଗ୍ୟ ଦୁର୍ବଳ ।

ମେରାମେକ୍ ପୃଥିବୀର ଦୀର୍ଘତମ କନ୍ଦର, କୋଡ଼ିଏ ମାଇଲବ୍ୟାପୀ । ଏବେ ମାତ୍ର ପାଞ୍ଚ ମାଇଲ୍ ଲୋକଲୋଚନ ଗୋଚରକୁ ଆସିଛି ।

ଗୁମ୍ଫା ଭିତର ଭାସ୍ୱ ପ୍ରତିଫଳିତ ସ୍ୱଳ୍ପ ଗଭୀର ଝରଣା ଅତି ଗଭୀର ପରି ବୋଧ ହୁଏ । ପ୍ରକୃତ ପକ୍ଷେ ଗଭୀରତା ମାତ୍ର ୧୮ ଇଞ୍ଚ୍, ୧୮ ହାତରୁ ଅଧିକ ଗଭୀର ଥିବା ପରି ଜଣାପଡ଼େ ।

ଏହାର ସ୍ଥାୟୀ ବାସିନ୍ଦା ବାଦୁଡ଼ି; ମନ୍ଦିର ମସ୍‌ଜିଦ୍‌ରେ ଯେପରି, ଗୁମ୍ଫାରେ ସେହିପରି ଏହି ପ୍ରାଣୀ ବହୁ ସଂଖ୍ୟାରେ ବାସ କରନ୍ତି । ଅନ୍ୟାନ୍ୟ ପକ୍ଷୀ ପାହାଡ଼ ଉପରି ଅରଣ୍ୟରେ ।

ମେରାମେକ୍ ଏକ ଘରୋଇ ସମ୍ପତ୍ତି । ଲେଷ୍ଟର୍ ଡିଲ୍ ଏହାର ମାଲିକ । ବହୁ ଅର୍ଥ ଓ ଇଞ୍ଜିନିଅରିଂ କୌଶଳ ପ୍ରୟୋଗରେ ସମଗ୍ର ଜଗତର ଏକ ଅତ୍ୟାଶ୍ଚର୍ଯ୍ୟ ଦୃଶ୍ୟରେ ଏହା ପରିଣତ ହୋଇଥିଲା ।

ବହୁ ପୁଷ୍ପିତ ଫୁଲ ଉଦ୍ୟାନ, କମ୍ବା ସ୍ୱପ୍ନର ଏକ ବିଚିତ୍ର ରଙ୍ଗୀନ୍ ରାଜ୍ୟ କମ୍ବା ଏକ ଜମାଟବନ୍ଧା ଗ୍ରାଣ୍ଡ୍ କ୍ୟାନିୟନ୍ ପରି ଦିଶେ ।

ପର୍ବତ ତଳେ ନାନାବିଧ ପ୍ରସ୍ତରର ଏକ ବିଚିତ୍ର ଖଣିଶାଳା—ଭୂତତ୍ତ୍ୱ ଛାତ୍ରଙ୍କ ଲାଗି ଉତ୍କୃଷ୍ଟ ବହୁ ସଙ୍କେତ । ପାହାଡ଼ ଉପରେ ନଦୀର ନାମ 'ମିରର୍', ତଳକୁ ଗଡ଼ିଆସିଲା ପରେ ମେରାମେକ୍ ।

ସେଣ୍ଟ୍‌ଲୁଇସ୍ ସହର ଗୁମ୍ଫାରୁ ୭୫ ମାଇଲ୍ ଦୂର, କାର୍‌ରେ ଏକ ଘଣ୍ଟା ମାତ୍ର ଲାଗେ ।

### ଡାଇମଣ୍ଡ୍-ହେଡ୍ ଇନ୍

ଗୋଟିଏ ଚୀନା ହୋଟେଲ, ଆମ କଟକରେ ଅଛି, ପୃଥିବୀର ପ୍ରାୟ ସବୁ ସହରରେ ଅଛି । ଝିଟିପିଟି, ଏଣ୍ଡୁଅ, ଗୋଧି, ଅଜଗର ସାପ, ଅସରପା ତରକାରି ଏଠି ହୁଏ—ଗୁଜବ୍ । ଏଇ ଗୁଜବ୍ ଯୋଗୁଁ କମ୍ବା ହୋଟେଲ୍ ଖାଦ୍ୟ ପ୍ରତି

ସାଧାରଣ ବିତୃଷ୍ଣା ଯୋଗୁଁ ମୁଁ ଏ ଯାକେ ଚୀନା ହୋଟେଲ୍‌ରେ ଖାଇ ନ ଥିଲି । ଘରୋଇ ଖାଦ୍ୟର ଗତାନୁଗତିକତାରୁ ରକ୍ଷା ଲାଗି କିମ୍ବା ନୂତନ ଚୀନା ସ୍ୱାଦ ଚଖାଇବା ଲାଗି ଇରା ଆମଙ୍କୁ ଡାଇମଣ୍ଡ୍‌କୁ ନେଇଗଲା ।

ଚୌକି ଟେବୁଲ ସଜାସଜିରେ ଭିନ୍ନ ରୁଚି ଦୃଷ୍ଟି ଆକର୍ଷଣକାରୀ । ପହିଲେ ମେନୁ ନୁହେଁ, ଖଣ୍ଡେ ପାମ୍ଫ୍‌ଲେଟ୍ ଧରାଇ ଦିଆଗଲା । ଏ କଣ ଚୀନା ଭାଷା ଶିକ୍ଷା ଲାଗି ପ୍ରବର୍ତ୍ତନା ? ନା, ଅନ୍ୟ କିଛି ବ୍ୟବସାୟମୂଳକ ଲକ୍ଷ୍ୟ ସ୍ଥା ଭିତରେ ଅଛି । କିଛି ଚୀନା ଭାଷା ଜାଣିଲେ ହୁଏତ ଜଣେ ମୌଳିକ ଚୀନା ଖାଦ୍ୟ ମେନୁଟି ପଢ଼ି ଖାଦ୍ୟ ଲୋଡ଼ିପାରିବ ।

ବରାଦ୍ ମୁତାବକ ଖାଦ୍ୟ ପହଞ୍ଚିବା ଆଗରୁ ପାମ୍ଫ୍‌ଲେଟ୍‌ଟି ପଢ଼ିଲି— ଚୀନା ଅକ୍ଷରକୁ ଚିତ୍ରଲିପି କହନ୍ତି । ଏହା କେତେକ ପୂରା ଶବ୍ଦର ସଙ୍କେତ । ଏହି ସାଙ୍କେତିକ ଶବ୍ଦମାଳା ଚୀନା ଭାଷାରୁ ଅନ୍ୟ ଭାଷାକୁ ଭିନ୍ନତର କରି ରଖିଛି ।

ଖ୍ରୀଷ୍ଟଜନ୍ମର ହଜାରେ ବର୍ଷ ପୂର୍ବରୁ ଅଦ୍ୟାବଧି ଚୀନାଭାଷା ଚାଲି ଆସିଛି । ଏହାର ମୋଟ ସାଙ୍କେତିକ ଶବ୍ଦସଂଖ୍ୟା ୫୦ ହଜାର । ଶିକ୍ଷିତ ଚୀନା ଦୈନନ୍ଦିନ ପ୍ରାୟ ତିନି ହଜାର ଶବ୍ଦ ପ୍ରୟୋଗ କରିଥାଏ । ପ୍ରତି ଚୀନା ଶବ୍ଦରୁ ଏକାଧିକ ଅର୍ଥ ବାହାରେ । ସ୍ଥାନ କାଳ ବିଶେଷରୁ ପ୍ରକୃତ ଅର୍ଥ ଠାଉରେଇ ନେବାକୁ ହୁଏ ।

ବିରାଟ ଚୀନା ଦେଶରେ ବହୁ କଥିତ ଭାଷା ପ୍ରଚଳିତ ଥିଲେ ହେଁ ରାଷ୍ଟ୍ର-ଭାଷା ସମସ୍ତେ ବୁଝିପାରନ୍ତି । ପ୍ରାଚୀନ ଲିପି କିମ୍ବା ଶିଳାଲେଖ ପଢ଼ିବାରେ କିଛି ଅସୁବିଧା ହୁଏନାହିଁ । ସାଙ୍କେତିକ ଶବ୍ଦଲିପି ହିଁ ଚୀନାର ଲିଖିତ ଭାଷା ।

ଭାଷା ବିଷୟରେ ଧାରଣା ଦେବା ପରେ ଖାଇବା ଲାଗି 'ଚପ୍‌ଷ୍ଟିକ୍' କାଠି କିପରି ବ୍ୟବହାର କରିବାକୁ ହେବ, ଚିତ୍ର ସାହାଯ୍ୟରେ ବୁଝାଇ ଦିଆ ହୋଇ-ଅଛି । କାଳେ କିଛି ଅସୁବିଧା ଘଟିବ, ଏଥିଲାଗି କଣ୍ଟା ଚାମୁଚ ମଧ୍ୟ ଯୋଗାଇ ଦିଆ ଯାଇଛି ।

ଉଭୟ ରୋମାନ୍ ଓ ଚିତ୍ରଲିପିରେ ମେନୁ ଛପା ଯାଇଛି—ଚାଓମିନ୍, ଓନ୍‌ଟନ୍, ଗ୍ରିନ୍‌ପିପର୍, ସ୍ରିମ୍ପ୍, ହନି, ଫ୍ରାଏଡ୍ ରାଇସ୍ ।

ଏ ବହ୍ୱାରମ୍ଭ—ମୋଟାରେ ଏହାର କ୍ରିୟା ଲଘୁ । ଏଠି ଗୋରୁ, ଘୁଷୁରି ମାଂସ ପ୍ରଧାନ । ମୁଁ କଣ ଖାଇବି ? ଦରଫୁଟା ମାଟିଆ ରଙ୍ଗର ଭାତ, ଲେଟୁସ୍ ପତ୍ର, ଚୂନା ଚୂନା କୁକୁଡ଼ା ମାଂସ ନାମକୁ ମାତ୍ର । ଏଥିଲାଗି ଦଶ ଡଲାର୍ ଗଣିଲି, ତା ସହିତ ଦେଢ଼ ଡଲାର୍ ବକ୍‌ସିସ୍ । କାନମୁଣ୍ଡା ଆଉଁସି ଫେରିଲି ।

ବେରସିକ ପାଖେ ରସନିବେଦନ ପରି ଏ ହେଲା—ନାମ୍ ବଡ଼ା, ଦରଶନ ଥୋଡ଼ା । କିନ୍ତୁ ଅନ୍ୟମାନେ ଏକମନ, ଏକପ୍ରାଣ ହୋଇ ଚାଲିଗଲିଥିବାର ଦେଖିଲି —'ଭିନ୍ନରୁଚିର୍ହି ଲୋକାଃ ।' ପାରିପାର୍ଶ୍ୱିକ ଶୁଭ୍ରତା ମୋ ରୁଚିକୁ ନିମନ୍ତ୍ରଣ କରୁଥାଏ ।

## କୃଷ୍ଣଚେତନା

ମିସିସିପି କୂଳର ଗାଢ଼ ସବୁଜ ପାର୍କରେ ଗଡ଼ି ଯିବାକୁ ମନ ହୁଏ, ଦୌଡ଼ିବାର ପ୍ରେରଣା ଆସେ, ବସି ବସି କାବ୍ୟ କଳ୍ପନା କରିବାର ସ୍ଥାନ ଏ । ପତ୍ରବହୁଳ ବୃକ୍ଷ—କ୍ଳାନ୍ତ ଚକ୍ଷୁପଥେ ସବୁଜ ଟନିକ୍ ପିଇ ମନର ବଳ ବଢ଼ିଗଲା ପରି ଲାଗେ ।

ଅଦୂରରେ ସେଣ୍ଟ୍‌ଲୁଇସ୍ ସହରର ଡାଉନ୍‌ଟାଉନ୍ ବ୍ୟବସାୟୀ ଅଞ୍ଚଳ, ବଡ଼ ବଡ଼ ସୌଧଭରି । ତା ମଧ୍ୟରେ କୃଷ୍ଣଚେତନା ମନ୍ଦିରରେ ଅଖଣ୍ଡ ନାମ ସଂକୀର୍ତ୍ତନ, ଘନ ଘୋର ହାଟ ମଧ୍ୟରେ ଗମ୍ଭୀର ବ୍ରହ୍ମଜ୍ଞାନ ଚର୍ଚ୍ଚା ।

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା—ଟେଲିଭିଜନ୍‌ରେ ରାମାୟଣ ଅପେକ୍ଷା ଚାଲିଛି । ଏଣେ ଚାଲିଛି ପଙ୍ଗତ, ନିରାମିଷ ସାତ୍ତ୍ୱିକ ଆହାର—ଭାତ, ଡାଲି, ତରକାରି, ହାଲୁଆ; ମାତ୍ର ଦେଢ଼ ଡଲାର ଦେୟ । ଅପୂର୍ବ ତୃପ୍ତିଲାଭ ।

## ମହାତ୍ମା ଗାନ୍ଧୀ ବିଶ୍ୱବିଦ୍ୟାଳୟ

କୃଷ୍ଣ ଚେତନାରେ ମଗ୍ନ; ଏତିକିବେଳେ ଆମ ପାଖରେ ଛିଡ଼ା ହେଲେ ଜଣେ । ଇଏ ପରିଚିତ କରାଇଦେଲା—ଏ ଯୋଗେଶ ଗାନ୍ଧୀ—ମହାତ୍ମା ଗାନ୍ଧୀଙ୍କ ଭାଇଙ୍କ ଅଣନାତି । ତାଙ୍କ ଲକ୍ଷ୍ୟ ଆମେରିକା, ଇଉରୋପ ଓ ପୃଥିବୀର ବିଭିନ୍ନ ଦେଶରେ ଗାନ୍ଧୀ ଚେତନା ବିସ୍ତାର ।

ଗାନ୍ଧୀ ଫିଲ୍‌ମ୍ ଦେଖି ବହୁ ଆମେରିକୀୟ ଗାନ୍ଧୀ ଭାବପ୍ରବଣ ହୋଇ ଉଠିଛନ୍ତି । ସେହି ପ୍ରବଣତାର ଉପଯୁକ୍ତ ଉପଯୋଗ ଯୋଗେଶ ଚାହାନ୍ତି । ତାଙ୍କ ଉଦ୍ଦେଶ୍ୟ ପୃଥିବୀରେ ଶାନ୍ତ, ସୁସ୍ଥ ବାତାବରଣ ସୃଷ୍ଟି ।

ଲୁଣମରି ଦାଣ୍ଡି ଯାତ୍ରା ପରି ତାଙ୍କ ପଦୁଆର ଯାତ୍ରା ଲସ୍ ଆଞ୍ଜେଲ୍‌ସ୍‌ରୁ ବଷ୍ଟନ୍—ଓ୍ୱାସିଂଟନ୍—ପ୍ରାୟ ଚାରି ହଜାର ମାଇଲ୍ ବାଟ; ଗାନ୍ଧୀଜୀଙ୍କ ଏକଶତ ପଞ୍ଚଦଶ ଜନ୍ମତିଥି ଅକ୍ଟୋବର ଦୁଇ ତାରିଖ, ୧୯୮୪—ଜୁନ୍ ୧୧ ତାରିଖରୁ ଆରବ୍ଧ ଯାତ୍ରା ଜୟନ୍ତୀ ଦିନ ଶେଷ ହେବ । ସେଥିଲାଗି ଲସ୍ ଆଞ୍ଜେଲ୍‌ସ୍‌ରେ

ଆନ୍ତର୍ଜାତିକ ସଂସ୍ଥା ଗଠିତ । ଓରେଗଁ ଅରଣ୍ୟରାଜ୍ୟ, ସମୁଦ୍ର ତୀରବର୍ତ୍ତୀ ଶାନ୍ତି-ପୂର୍ଣ୍ଣ ଅଞ୍ଚଳ । ସେଠି ମହାତ୍ମାଗାନ୍ଧୀ ବିଶ୍ୱବିଦ୍ୟାଳୟ ଅବସ୍ଥାପିତ ହେବ; ଗାନ୍ଧୀ ଜୀବନ ଦର୍ଶନ, ସାହିତ୍ୟ ଚର୍ଚ୍ଚା ଓ ଗବେଷଣା, ଅହିଂସା, ସ୍ତ୍ରୀ ବାଣୀ ପ୍ରଚାର ଓ ଶାନ୍ତିରେ ସ୍ୱର୍ଗ ରାଜ୍ୟ ଗଠନ ଏହାର ଆଭିମୁଖ୍ୟ ।

ସବୁକାଳେ କଣ ଲୋକେ ପରସ୍ପରକୁ ହିଂସ୍ର ଦୃଷ୍ଟିରେ ଦେଖୁଥିବେ ? ଜାତି, ବର୍ଣ୍ଣ ଓ ଧର୍ମ ଭେଦର ବିଲୋପ କଣ ହେବ ନାହିଁ ? ଏ ପୃଥିବୀରେ କଣ ସବୁକାଳେ ଦାରିଦ୍ର୍ୟ, ଦୁଃଖ, ରୋଗବ୍ୟାଧି ପରିପୂର୍ଣ୍ଣ ହୋଇ ରହିଥିବ ? ଦଳେ ବିଳାସବ୍ୟସନରେ ବୁଡ଼ିଥିବା ବେଳେ ଆଉ ଦଳେ ଭୋକ ଓପାସରେ ମରୁଥିବେ ? କେତେ ଧନୀ ଦେଶ ମାରାତ୍ମକ ଅସ୍ତ୍ରଶସ୍ତ୍ର ନିର୍ମାଣରେ ଅକାତରେ ଅର୍ଥ ଶ୍ରାଦ୍ଧ କରୁଥିଲା ବେଳେ ଆଉ କେତେ ଦରିଦ୍ର ଦେଶ ଦୁର୍ଭିକ୍ଷର ଜ୍ୱାଳାରେ ପୋକ ମାଛି ପରି ମରୁଥିବେ ? ପୃଥିବୀ କଣ ଅହିଂସବିହୀନ ମନୁଷ୍ୟରେ ଭରି ହୋଇ ରହିଥିବ ? ଏହାର ପ୍ରକୃତ ଆଧ୍ୟାତ୍ମିକ ବିକାଶ ଘଟିବ ନାହିଁ ?

ମନ ବଦଳିବା ଦରକାର; କିପରି ବଦଳିବ ? ଯୁଦ୍ଧ ବା ବିପ୍ଳବରେ ବହୁ ରକ୍ତପାତ; ସେଥିରେ ଏହା ବଦଳି ନାହିଁ, ବଦଳିବ ନାହିଁ । ଲୋକଙ୍କୁ ଏହିଭଳି ଭାବିତ କରି କହୁଛି ନୂତନ ପନ୍ଥା ବାହାର କରିବା ଆବଶ୍ୟକ । ଅସମ୍ଭବ ଲାଗିଲେ ବି ଏହା ସାଧ୍ୟ । ବ୍ୟକ୍ତି ଜୀବନରେ ଅଗ୍ରମାରମ୍ଭ, ବିଶ୍ୱଜୀବନରେ ଶେଷ ।

ବ୍ୟକ୍ତି ସମାଜର ମୁଖ୍ୟ ମୂଳଦୁଆ, ଉପାଦାନ ବା ପୁଞ୍ଜି । ବ୍ୟକ୍ତି ଜୀବନରେ ଯାହା ସମ୍ଭବ, ସମାଜ ଜୀବନରେ ତାହା ସତ୍ୟ ହେବ ।

ବ୍ୟକ୍ତି ଲାଗି ସମାଜ । ବ୍ୟକ୍ତି ଜୀବନର ବୈଫଲ୍ୟ ସମାଜ ଜୀବନକୁ ବିଫଳ କରେ, ସଂସ୍କୃତି ଓ ସଭ୍ୟତାକୁ ବିନଷ୍ଟ କରେ । ତେଣୁ ଯେ କୌଣସି ବୃହତ୍ତର ପରି-ବର୍ତ୍ତନ ବ୍ୟକ୍ତି ଜୀବନ ଉପରେ ନିର୍ଭରଶୀଳ । ମହାତ୍ମା ଗାନ୍ଧୀଙ୍କର ଏହା ହିଁ ଅନୁଭୂତି । ଯାହା କହୁଛି ସତ୍ୟ, ସେ ନିଜ ଜୀବନରେ ପହିଲେ ପ୍ରୟୋଗ କରୁଥିଲେ; କଠୋର ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ସେ ସମାଜ ଜୀବନରେ ଏହା ପରୀକ୍ଷା କରୁଥିଲେ ।

ଯୋଗେଶ ୧୧୪ ଦିନ ମଧ୍ୟରେ ୨୫୨ଟି ସହର ଅତିକ୍ରମ କରିବେ; ନେତା, ଲେଖକ, ଶାସକ, ମେୟର୍, ବିଧାୟକମାନଙ୍କୁ ଭେଟି ମାନବ ଜୀବନର ଜଟିଳ ସମସ୍ୟା ସମ୍ପର୍କରେ ଆଲୋଚନା କରିବେ ।

ଇରି ଯୋଗେଶଙ୍କୁ ଶହେ ଡଲାର ଚାନ୍ଦା ଦେଲା । ଏହା ହିଁ ଚାନ୍ଦାର ସର୍ବନିମ୍ନ ପରିମାଣ । ବଡ଼ ଦେଶରେ ବଡ଼ କଥା । ଯେ ଦେଶେ ଯାଇ ସେ ଫଳ

ଖାଇ । ନଇଲେ କେତେ କାକର ଟୋପାରେ ଘଡ଼ା ପୂରିବ ? ଏ ଦେଶରେ ଦେବାର ପ୍ରଚଣ୍ଡ ସାମର୍ଥ୍ୟ ଥିବାବେଳେ ମାନସିକ ଦାରିଦ୍ର୍ୟ କାହିଁକି ?

ଯୋଗେଶଙ୍କୁ ମୋର ଶେଷ ପ୍ରଶ୍ନ—ଆପଣ ଗାନ୍ଧିଜୀଙ୍କର କି ଚେଲା ? ଖଦଡ଼ ପିନ୍ଧି ନାହାନ୍ତି; ଅରଟରେ ସୂତା କାଟୁ ନାହାନ୍ତି !

ଯୋଗେଶ ଉତ୍ତର ଦେଲେ; ସେ କାଳେ ତାହା ଆବଶ୍ୟକ ଥିଲା । ଏବେ ଆମେ ଯୁଗ ସହିତ ପାଦ ମିଳାଇ ଚାଲିଛୁ । ଗାନ୍ଧିଜୀଙ୍କ ଦୃଷ୍ଟିକୋଣରେ ସମୟୋପଯୋଗୀ ପ୍ରୟୋଗ କରୁଛୁ । ଲୋଡ଼ା ପଡ଼ିଲେ ଆମେ ବଦଳିବୁ ଓ ବଦଳାଇବୁ । ବଦଳିବା ହିଁ ଜୀବନଶକ୍ତିର ଲକ୍ଷଣ ।

## ଧୀର କରି ନାଆ ବୁହାରେ ନାଉରୀ

ଚିଲିକାର ଅଥଳ ଜଳ । ଟେଲିବିସଣ୍ଟି ଟିଅ କାଳିଜାଈ; ଆସ୍ତେ ନାଆ ବୋହିନେବା ଲାଗି ଚେଷ୍ଟା ନାଉରୀଙ୍କ ଦରକାର । ସେହିପରି ଆମର ଦରକାର ନିକ୍କୁ । କାରଲାଇଲ୍ ହ୍ରଦର ସାତତାଳ ପାଣି ।

ନିକ୍କ ତରୁଣ, ବଳିଷ୍ଠ । ପାୱାର୍ ବୋଟ୍, ମଟରଗାଡ଼ି, ବ୍ୟୋମଯାନ ଚାଳନା—ତିନି ବିଦ୍ୟାରେ ଧୁରନ୍ଧର । ଏ ବୟସରେ ଯେପରି ବେଖାତିରିଆ ହୋଇଥାନ୍ତି, ସେମିତି ସେ । ମନକୁ ଠିକେ ହେଲେ ଭୟ ଛୁଇଁନାହିଁ । ନିକଟରେ ଗୋଟିଏ ଆକ୍‌ସିଡେଣ୍ଟ୍ ଘଟାଇଥିଲା ସେ, ଏକ ଅପନ୍ତରାରେ । ନିକଟରେ ଟେଲି-ଫୋନ୍ ନାହିଁ । ରାତି ଅନେଟା । ଶୀତ ଅଖାବର । ସେଇ ଅବସ୍ଥାରେ ତିନି ମାଇଲ୍ ଚାଲିଚାଲି ଟେଲିଫୋନ୍ କଲା । ଇସ୍, ଉଦସ୍ଥ ଯାଇ ତାକୁ ଉଦ୍ଧାରକରି ଆଣିଲେ ।

ଗୋଟିଏ ବୋଲି ପୁଅ; ବାପମାଆଙ୍କ ମନ ଧୁକୁ ଧୁକୁ । କୋଉଠି କାଳେ କଣ ଘଟିଯିବ । କିନ୍ତୁ ଆମେରିକାର ତରୁଣ ସେ । କଳ୍ପନା ତାର ଦୁର୍ଦ୍ଧର୍ଷ; ଗତି ପ୍ରଚଣ୍ଡ । ସୀମା ମାନିବାକୁ ପଶ୍ଚାତ୍ପଦ ।

ପଢ଼ୁଛୁ ତ ପଢ଼ୁଛୁ । ଭୋକଶୋଷ ଭୁଲିଯାଉଛୁ । ତାକୁ ତପସ୍ୟାଭ୍ରଷ୍ଟ କରିବାକୁ କୁଟେନ୍ତି ଯେତେ ମନ । ସବୁଠି ଏଇ ଦଶା । ପୁଅ ବିପଥଗାମୀ ହେବା ପରେ ପିତାମାତାଙ୍କ ଚେତା ପଶେ । କିନ୍ତୁ ନେଡ଼ିଗୁଡ଼ କହୁଣିକି ବୋହି ଯାଇଥାଏ । ନିକର ଆକ୍‌ସିଡେଣ୍ଟ୍ ଘଟିଥିଲା ଜଣେ ଦୁର୍ବନ୍ଧୁ ପ୍ରଭାବରୁ । ପିତାମାତା ତାକୁ ସେଥିଲାଗି ଦୁଇ ସପ୍ତାହ ଗୃହବନ୍ଦୀ ହେବା ଶାସ୍ତି ଦେଇଥିଲେ । ନିକ ବାଧ୍ୟ । ମଥା ପାତି ସେ ଶାସ୍ତି ଗ୍ରହଣ କରିଥିଲା ।

ଜକ ଆଜ ଜର୍ମିନ (ଗୀତା, ମୀରା, ଜକ ଡନ ନାମର ଆଦ୍ୟ ଅକ୍ଷରରେ ଗଠିତ ନାମ) ପାଣ୍ଡ୍ୱାର ବୋଟ୍‌ର ଚାଳକ । ଏହି ବୋଟ୍ ମାର୍କ ଟ୍ୱେନ୍ କାର-ଖାନାରେ ପ୍ରସ୍ତୁତ, ୯ ହଜାର ଡଲାରରେ କଣା ।

ପିଲାମାନେ ପ୍ରବାସୀ; ବୁଢ଼ାବୁଢ଼ୀ ଘରେ ଏକା ଏକା । ନୌକା ଚଳାଇ-ବାର ସକ୍ ନାହିଁ; ପଞ୍ଚ ପଞ୍ଚ ଖରାପ ହୋଇଯାଏ । ତେଣୁ ବିକିବା ପାଇଁ ଦର ମୂଲାମୂଲି ଚାଲିଛି । କିନ୍ତୁ ଅନ୍ଲାଇ ପୂନମଣି ଅରାଜି । ବାଡ଼ପଟେ କମ୍ବଳ ଘୋଡ଼ି ହୋଇ ପଡ଼ିଛି, ଯେପରି କୁମ୍ଭକର୍ଣ୍ଣ । ତା ପ୍ରତି ପ୍ରଯୁଜ୍ୟ—

ବଚ୍ଛରକେ ଥରେ ଖାଏ
ମୁହଁ ମାଡ଼ି ପଡ଼ିଥାଏ ।

ବର୍ଷକ ପରେ ଆଜି ସେ ବାହାରିଛି ଇଲିନଏସ୍ ରାଜ୍ୟର କାରଲାଇଲ୍ ହ୍ରଦ ପରିକ୍ରମା କରି । ଜଣେ ବିଶେଷଜ୍ଞ ତାକୁ ଯନ୍ତ୍ରପାତି ପରୀକ୍ଷା କଲା, ସଫାସଫି କରି ବୃହତ୍ତମ କାର୍‌ର ଲାଙ୍ଗୁଡ଼ରେ ବାନ୍ଧିଲା ।

ଲିତା, ଇରା, ଉଦ, ମୁଁ, ଜକ ଚାଳକ । ଆମକୁ ମିସିସିପି ପୋଲ ପାରି କରାଇ ଆବ୍ରାହମ୍ ଲିଙ୍କନ୍‌ଙ୍କ ସମତଳ ରାଜ୍ୟ ଇଲିନଏସ୍‌ର କାସ୍‌କାସିଆ ନଦୀ କୂଳେ କୂଳେ ନେଲା । ଏଇ ନଈରେ ବନ୍ଧ ବନ୍ଧା ହୋଇ ସୃଷ୍ଟି ହୋଇଛି କାର୍‌ଲାଇଲ୍ ହ୍ରଦ । ଜକ ହ୍ରଦ ଆଡ଼କୁ ଗାଡ଼ିକି ପଛେଇ ନୌକାଟି ଖୋଲି ଆସ୍ତେ ଖସାଇ ଦେଲା । ଜେଟି ଉପରକୁ ଉଠି ଆମେ ନୌକାରେ ବସିଲୁ । ହଳଦିଆ ରଙ୍ଗର ଲାଇଫ୍ ଜାକେଟ୍‌ଟି ପିନ୍ଧି ସେ ସ୍କିମିଂ ପଟାର ରବର ଭିତରେ ପାଦ ଭର୍ତ୍ତି କଲା । ଇରା ବୋଟ୍ ଚଳାଇଲା । ବୋଟ୍ ପଛରେ ଦ୍ରୁତ ଗତିରେ ଜକ ସ୍କି ପଟାରେ ଦୌଡ଼ୁ ଦୌଡ଼ୁ ହାତ ମୁଠାଇ ତଳକୁ କରେ—ତା ମାନେ ଆସ୍ତେ ଚାଲ । ଉପରକୁ ମୁଠା ଟେକିଲେ ଜୋର୍‌ରେ । ଜଳୋଚ୍ଛ୍ୱାସର ଗର୍ଜନରେ କଥା ନ ଶୁଭିବାରୁ ଏ ସାଙ୍କେତିକ ଭାଷାର ପ୍ରୟୋଗ ।

ନୌକାର ପଛପଟେ ପାଣିର ଫୁଆରା ଚମ୍ପାବାଣ, ଇନ୍ଦ୍ରଧନୁ ଆମ ହାତପାଆନ୍ତାରେ । ଇନ୍ଦ୍ରଧନୁ ମଝିରେ ଜକ ଧନୁର୍ଦ୍ଧର ରାଜପୁତ୍ର ଯେପରି ।

ସେ କେତେବେଳେ ସିଧା, କେତେବେଳେ ଡାହାଣକୁ ବା ବାଆଁକୁ ବଙ୍କେଇ ହୋଇ ସ୍କି ପଟା ଉପରେ ଛିଡ଼ା ହୋଇଛି । ଦୌଡ଼ିଲୁ ହାତ ଛାଡ଼ି ଦେଇ କେତେ ପ୍ରକାର କୌଶଳ ଦେଖାଉଛି । ପାଣିରେ ବା ଅଜାଡ଼ି ହୋଇ ପଡ଼ୁଛି । ଜାକେଟ୍ ଯୋଗୁ ବୁଡ଼ିଯାଉ ନାହିଁ; ଆମେ ତାକୁ ଉଦ୍ଧାର କରୁଛୁ ।

ନିଜ ଏବେ କ୍ଳାନ୍ତ । ହୃଦୟର ମନ ଉତ୍କଣ୍ଠିତ, ସ୍କି ଖେଳ ଖେଳିବ, ପହଁରିବ । ୭୧ ବର୍ଷ ବୟସ । ଭଙ୍ଗା ପଞ୍ଜରା କାଠି । ଦୁର୍ବଳ ମେରୁଦଣ୍ଡ ଘେନି ସେ ବେଶୀ କାଳ ଜଳୋଚ୍ଛ୍ୱାସ ସହିତ ସଂଗ୍ରାମ କରିପାରିଲା ନାହିଁ । ଆମେ ତାକୁ ବି ଉଦ୍ଧାର କଲୁ । ଖୋଲା ବୋଟ୍ ।

ଗ୍ରୀଷ୍ମ କାଳ; ଜଳ ତରଙ୍ଗ ମଧ୍ୟରେ ବି ଟାଇଁଟାଇଁଆ ଖରା ଟାଙ୍ଗରା ମୁଣ୍ଡରେ ପଶି ଯାଉଥାଏ । ଟୋପି ଲଗାଇଲୁ । ଏ ପାଖେ ଧଳା ପାଲ, ସେ ପାଖେ ବି । ଦୂର ଦିଗ୍‌ବଳୟରେ ବି; ଚାଲୁଥାଏ ଆହ୍ଲାଦମୟ ବୋଟ୍ ସଙ୍ଗୀତ ତାଳେ ତାଳେ । ନାଚୁଥାଏ ପାଲର ଛାଇ, ତରଙ୍ଗରେ ଚୂନା ଚୂନା ହୋଇ । ମାଛସବୁ କୌତୁକରେ ଲମ୍ଫ ଦେଉଥାନ୍ତି ।

ଆମ ପେଟ ରଡ଼ିଲା, ବସିଲା ଲୋକଙ୍କୁ ବେଶୀ ଭୋକ । ସମୟର ଡାକ ଏ । ସମୟର ଦାସ ହେଲେ ଏଇ ଅସୁବିଧା ।

ଇୟ ନୌକା କୂଳକୁ ନେଇ ନଙ୍ଗର ପକାଇଲା । କାଗଜ ପ୍ଲେଟ୍‌ରେ ଆମକୁ ବାଢ଼ି ଦେଲା—ପଲଉ, ସମ୍ବର; ମାଛ, କଟେଜ୍ ଚିଜ୍ । ନୌକା ଝୁଲୁଥାଏ । ଆମ ପାଟି ଚାଲୁଥାଏ ।

ଏତେ ବଡ଼ ହ୍ରଦ । ତରଙ୍ଗଦୋଳାରେ ଦଳକୁ ଦଳ ପକ୍ଷୀ ପହଁରୁ ନାହାନ୍ତି କାହିଁକି ? ଆକାଶରେ ଦଳ ବାନ୍ଧି ଉଡ଼ି ଆମ ଉପରେ ଛାଇର ଛଟା ବା ପକାଉ ନାହାନ୍ତି କାହିଁକି, ଚିଲିକାରେ ଯେପରି । କାହାନ୍ତି ବଗ, ଚିଲ ? କେବଳ ସି-ଗଲ୍ ।

ଆଜି ରବିବାର । ମନର ପେଟକୁ ହୁଗୁଳା କରି ହାଲୁକା ଭାବେ ଛାଡ଼ି ଦେବା ଦିନ । ତେଣୁ ହ୍ରଦରେ, ହ୍ରଦକୂଳ ରେଷ୍ଟୁରାଣ୍ଟ୍‌ରେ ଭିଡ଼ । ସେ ଭିଡ଼ରେ ନୌକା ଚଳାଇଲା ବେଳେ ଉଦି କହିଲା—ଆମେ ତ ଭାଇନା ଭାଉଜଙ୍କୁ ପାଣିରେ ଦୌଡ଼ାଇଲୁ । ଏବେ ଆମର ବିଶ୍ରାମ । ସେମାନେ ଚଳାନ୍ତୁ ।

ଆମ ଚଳାଇବାରେ ଏକମୁହାଁ । ଧକ୍କା ଦେବାକୁ ନୌକା କୂଳକୁ ଧାଇଁଲା । ବଙ୍କା ଢଙ୍କା ହୋଇ ଚାଲିଲା, ମୋ ପିଲାଦିନର ରୁଲ୍ ଗାର ଯେପରି ।

ଫେରିଲା ବାଟରେ ହ୍ରଦ କୂଳ ଦୋକାନରୁ ମାଛ କିଣା ହେଲା । ବଡ଼ ବଡ଼ ବରଫ ବାକ୍ସରୁ କାଢ଼ି ଦୋକାନୀ ଦେଖାଇଲା—ବଫାଲୋ, କ୍ୟାଟ୍‌ଫିସ୍... ସବୁ ମାଛର ମୁଣ୍ଡକଟା । ଏଠି କେହି ମାଛ ମୁଣ୍ଡ ଖାଆନ୍ତି ନାହିଁ । ଉଦି ୯ ଡଲାର୍ ଦେଇ ୯ ପାଉଣ୍ଡ୍ ମାଛ କିଣିଲା । ସେଣ୍ଟଲୁଇସ୍ ଅପେକ୍ଷା ଅଧିକ ତଟକା, ଶସ୍ତା ।

# ଆଠ

## ବାଗବଗିଚା ନା କବିତା ବହି ?

ଯେ କବିତା ଲେଖନ୍ତି--କବି । ଯେ ନ ଲେଖନ୍ତି ସେ ଆହୁରି ବଡ଼ କବି । ତା କବିତା ଲିଖିତ ନୁହେଁ, ରୋପିତ । ତା କଳ୍ପନା ପ୍ରମୋଦ ଉଦ୍ୟାନରେ ଉଦ୍ଦୀପିତ ।

ଯେ ପ୍ରକୃତିକି ଗଢ଼ିଛି ସେ କବି; ଯେ ପାର୍କ ବା ଉଦ୍ୟାନକୁ ଗଢ଼ିଛି ସେ କବି । ଜଣେ ମହାକାବ୍ୟର କବି ହେଲେ ଆଉ ଜଣେ ଖଣ୍ଡ କବିତାର କବି; ଦୁ ଜଣ ପାଖାପାଖି ବସିବା ଭଲ କବି ।

ଆମେରିକା କେବଳ କାବ୍ୟକବିଙ୍କ ଲାଗି ବଡ଼ ନୁହେଁ ସେ । ବଡ଼ ତାର ପ୍ରକୃତିପ୍ରେମୀ, ଯୋଜନାକାରୀ, କଳ୍ପନାପ୍ରବଣ ନିର୍ମାତାଙ୍କ ଲାଗି—ସେମାନେ କଳାତ୍ମକ ଖିଆଲରେ ଯୋଉଠି ଇଚ୍ଛା ସେଠି ଛବି, କବିତା ବୁଣି ଦେଇଛନ୍ତି; ଗୋଟିଏ ହେଲେ ଦାୟିତ୍ୱହୀନ ହାତ କୋଉଠି ବାକି ନାହିଁ । ଗୋଟାଏ ହେଲେ ବିଶୃଙ୍ଖଳ ମସ୍ତିଷ୍କ କିଛି ବିଭ୍ରାଟ ଘଟାଇ ଦେଇ ନାହିଁ । ଭଗବାନ୍‌ଙ୍କ ସହାୟକ କଳାକାର ସେ; ସୁନ୍ଦରରୂପୀ ସେ ତାର ପ୍ରେରଣାଦାତା ।

ଆମେରିକା ଏକ ପାର୍କ ରାଜ୍ୟ । ଆମେରିକାରେ ଯେତେ ପାର୍କ ଅଛି, ସବୁ ମିଶାଇଲେ ଭାରତର କେତୋଟି ରାଜ୍ୟ ଆକୃତିର ହେବ, ପାହାଡ଼, ଅରଣ୍ୟ, ହ୍ରଦ ଛାଡ଼ି ଦେଲେ ବି ।

ଆମେରିକାର ଏସବୁ ପାର୍କ ଭବିଷ୍ୟ ଲାଗି ଜମି ସଞ୍ଚୟ । ଜନସଂଖ୍ୟା ଯେପରି ଦ୍ରୁତ ଗତିରେ ବଢ଼ି ଚାଲିଛି, ସମଗ୍ର ଦେଶ ଜନବସତି ଗହଳ ହୋଇ ଉଠିବ । ସାଧାରଣ ଅନୁଷ୍ଠାନ ଲାଗି ଆଉ କ୍ଷେତ୍ର ରହିବ ନାହିଁ ।

ଆମେରିକୀୟମାନେ ସପ୍ତାହ ଶେଷ ଭାଗରେ ଏସବୁ ପାର୍କର ଉପଯୁକ୍ତ ଉପଯୋଗ କରନ୍ତି—ଏସବୁ ପାର୍କ ଅରଣ୍ୟ ପ୍ରକୃତି କୋଳ ସେମାନଙ୍କ ଆଶ୍ରୟ ।

ଆମେରିକା ଭ୍ରମଣ ଆଂଶିକ ଭାବେ ପାର୍କ ଭ୍ରମଣ । ସେଣ୍ଟ୍ ଲୁଇସ୍ ରହଣି କାଳରେ ଏଇ କେତୋଟି ପାର୍କରେ ଭ୍ରମଣ କରିଛି—

## ଉଦ୍‌ଭିଦ ଉଦ୍ୟାନ

ଫାନ୍ଦଦିଆ ବଡ଼ ବଡ଼ ପିତ୍ତଳ ଥାଳୀ ପଟି ପରି କେଡ଼େ କେଡ଼େ କଇଁପତ୍ର । ଗାଢ଼ ନେଳୀ, ଫିକା ଲାଲ, କେଡ଼େ କେଡ଼େ କଇଁଫୁଲ ; ଆକାରରେ ଆମ କଇଁର ତିନି ଚାରିଗୁଣ ବଡ଼ ହେବ ।

କି ସୁନ୍ଦର ଲତାକୁଞ୍ଜ; ତୃଣପ୍ରାନ୍ତର, ନାନା ରଙ୍ଗର କି ଅପୂର୍ବ ଗୋଲାପ, ମାଣିକଗୁଚ୍ଛ ଗେଣ୍ଡୁ, ବାଡ଼ମାନଙ୍କରେ କି ଗୁଣ୍ଡ ଗୁଣ୍ଡ ନାଲି, ହଳଦିଆ ଫୁଲ ।

ଉଷ୍ଣ ପ୍ଲାଷ୍ଟିକ୍ ଗୃହରେ କେତେ ପ୍ରକାରର ଅର୍କିଡ୍, ତାର ବିଚିତ୍ର ରଙ୍ଗର ଫୁଲ, ପତ୍ର, କେତେ ଫୁଆରା, କେତେ ପ୍ରପାତ ! ଏ ଆନନ୍ଦ ଭୂମିରେ ଥରଟିଏ ଆଖି ବୁଲାଇ ଦେଇ ପାର୍କ ବସ୍‌ରେ ବସିଲୁ ; ଦୁଇଟି ଡବାର ଗାଡ଼ି; ମୁଣ୍ଡପିଛା ଟିକେଟ ଅଧ ଡଲାର୍ । ୬୫ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ଦେଶର ସମ୍ମାନିତ ନାଗରିକ—ଟିକେଟ କିଣିବାକୁ ପଡ଼େ ନାହିଁ ।

ଏଠା ପ୍ରସ୍ତୁତ ସପୁରୀ, ଆପଲ୍, ପିଚ୍, ପିସ୍ଥର୍ ରସର ବିଜ୍ଞାପନ ନମୁନା ଉଦ୍ୟାନ ଦର୍ଶନାର୍ଥୀମାନଙ୍କୁ ଚାଖିବାକୁ ଦିଆଯାଏ । ପାଖରେ ପୁଷ୍ପ, ଫଳ, ଉଦ୍ଭିଦ, ପକ୍ଷୀମାନଙ୍କର ଏକ ଯାଦୁଘର—ଉଦ୍ଭିଦ ଓ ପ୍ରାଣୀବିଜ୍ଞାନମାନଙ୍କର ଏକ ଗବେଷଣା ମନ୍ଦିର ।

ଏଇ ଉଦ୍ୟାନ ଫୁଲରଙ୍ଗର ଦହକ ଓ ମହକ ବଢ଼ାଇ ଦେଇଛି, ଯାହା ତଳେ ନିହିତ ଜଣେ ମହାନ୍ ବ୍ୟକ୍ତିଙ୍କ ତ୍ୟାଗ । ତାଙ୍କ ନାମ ହେନେରି ସ । ସେ ମୃତ୍ୟୁ ପୂର୍ବରୁ ନିଜର ବାସଭବନ ଓ ସମସ୍ତ ଭୂସମ୍ପତ୍ତି—୭୯ ଏକର ସେଣ୍ଟଲୁଇସ୍ ମ୍ୟୁନିସିପାଲିଟିକୁ ଦାନ କରି ଯାଇଥିଲେ । ମ୍ୟୁନିସିପାଲିଟି ସେହି ସ୍ଥାନରେ ଆନନ୍ଦର ଏଇ ଲୀଳାଭୂମି ନିର୍ମାଣ କରିଛି । ସ'ଙ୍କ ବାସଗୃହ ଏକ ଯାଦୁଗୃହରେ ପରିଣତ ହୋଇଛି ।

ଫୁଲ ବନେ ବନେ ବୁଲୁଛି ଏ ରୂପସୀଟି କିଏ ? ତା ରୂପ ଉପରୁ ଆଖି ଓଟାରି ନେଇପାରେ କେଉଁ ରୂପପାୟୀ ? ଅନ୍ଧ କନ୍ଦି ସନ୍ଧିରେ ସେ ଖୋଜି ବୁଲୁଛି କ'ଣ ? ଫୁଲ ନା ପକ୍ଷୀ ? କି ପକ୍ଷୀ ? ଗାୟକ ପକ୍ଷୀ ? କୋଇଲି ? ବୁଲ୍‌ବୁଲ୍ ? କାର୍ଡିନେଲ ? ହମିଂବାର୍ଡ଼ ? ନା । ତାହେଲେ କି ପକ୍ଷୀ ? 'ଜାଣେନାହିଁ, କିନ୍ତୁ ତା ସ୍ୱର ମୋତେ ମୁଗ୍‌ଧ କରେ ।

ଅଜଣା ପାହାଡ଼, ଅଜଣା ପ୍ରପାତ, ଅଜଣା ଫୁଲ, ଅଜଣା ପକ୍ଷୀ । ନାମରୁ ବା କି ପରିଚୟ ମିଳେ ? ଅସଲ ପରିଚୟ ତ ସୌନ୍ଦର୍ଯ୍ୟରେ, ମାଧୁର୍ଯ୍ୟରେ,

ସୁରଭରେ, ସୁସ୍ୱରରେ । ତା କଣ୍ଠସ୍ୱର ଶୁଣି ମୋତେ କାହିଁକି ଲାଗିଲା—ପକ୍ଷୀର ବସା ଗଛରେ ନାହିଁ, ତା'ର କଣ୍ଠରେ । ନିଜ କଥା, ନିଜ ଗୀତ ନିଜେ ଶୁଣନ୍ତି । ପକ୍ଷୀ ସ୍ୱରରେ ଆଉ କି ଅଧିକ ମାଧୁର୍ଯ୍ୟ ଅଛି ?

ମନେ ମନେ କହିଲି—କସ୍ତୁରୀ ମୃଗ ପରି ମଣିଷ କାହିଁକି ବନେ ବନେ ଖୋଜିବୁଲୁଛି ସୁନ୍ଦରୀ ?

ଆରେ ଏ କଣ ? କଳା କୁକୁରଟାଏ ତା ଉପରକୁ କାହିଁକି ଚଢ଼ିଗଲା ? ଓ କୁକୁର ନୁହେଁ, ବିରାଡ଼ିଟାଏ ! ଫୁଲେଇଟା କାନ୍ଧରେ ଯାଇ ବସିଲା । ବିଚିତ୍ର ଦିଶୁଥିଲା ସେ । କଳରା ଫୁଲ ପରି ଦି ଜଣଙ୍କର ଆଖି । ମୋତେ ଛିଡ଼ା ହେବାର ଦେଖି ପଚାରିଲା—କିଛି ସାହାଯ୍ୟ କରିପାରେ କି ? କହିଲି—ନା, ଧନ୍ୟବାଦ । ଆପଣ ରାସ୍ତାରେ ନ ଯାଇ କାହିଁକି ଅରମାରେ ପଶିଛନ୍ତି ?

ଏ ମୋର ବିନୋଦନ । ଏ ଡେଣାଲଗା ପ୍ରାଣୀଟିକି ମୁଁ ଭଲପାଏ । ତା ବିଷୟରେ ପଢ଼େ, ଲେଖେ, ଗବେଷଣା କରେ ।

ଆଶ୍ଚର୍ଯ୍ୟ, ଏ ଜଞ୍ଜାଳ, କୋଳାହଳ ମଧ୍ୟରେ କେତେ ଆତ୍ମନିଷ୍ଠ, ଆତ୍ମମଗ୍ନ, ଆତ୍ମଲୀନ ବ୍ୟକ୍ତି ରହିଛନ୍ତି । ସେହିମାନଙ୍କ ଲାଗି ହିଁ ଗତି, ପ୍ରଗତି ।

କୋଚ୍‌ର ଡ୍ରାଇଭର୍ ଜଣେ ବିଜ୍ଞ ବ୍ୟକ୍ତି । ସେ ଗାଡ଼ି ଚଳାଉଥାନ୍ତି, ଏଣେ ମାଇକ୍‌ରେ ବୁଝାଉଥାନ୍ତି—୧୯୬୮ ମସିହାରେ କିପରି ଏହି ଉଦ୍ୟାନର ଶୁଭାରମ୍ଭ ହେଲା, କିପରି ଶୀତଳ, ସମଶୀତୋଷ୍ଣ ଜଳବାୟୁରେ ବିଭିନ୍ନ ଜଳବାୟୁର ଉଦ୍ଭିଦ ଲାଳନା କରାଯାଏ; ଉଦ୍ୟାନର ହ୍ରଦ, ଦ୍ୱୀପ, ପ୍ରପାତ, ଫୁଆରା, ପ୍ରାନ୍ତର, ବୃକ୍ଷଲତା, ପୁଷ୍ପଫଳ କାହାଣୀ ତାଙ୍କ ଜିହ୍ୱାଗ୍ରରେ, ଗଛଲତା ପ୍ରତି ପ୍ରୀତି ନଥିଲେ ଏତେ ମଞ୍ଜୁଳ ଓ ପ୍ରାଞ୍ଜଳ ଭାବରେ କେହି ବୁଝାଇ ନ ପାରେ ।

ଯାପାନୀ ଉଦ୍ୟାନ; ଏଠି କୋଚ୍‌ରୁ ଓହ୍ଲାଇ ସ୍ୱତନ୍ତ୍ର ଟିକେଟ୍ କରିବାକୁ ହେଲା । ଉଦ୍ୟାନର ସର୍ବୋତ୍କୃଷ୍ଟ ଅଂଶ ଏ, ଉଦ୍ୟାନନିର୍ମାତା ଓ ପୁଷ୍ପପ୍ରେମୀ ଭାବରେ ପୃଥିବୀରେ ସର୍ବପ୍ରଥମେ ଯାପାନର ନାମ ଆସେ । ଆମେରିକା ଏ ଦିଗରେ ତା'ର ଅନୁଗାମୀ, ଯେପରି ସେ ଦେଶ ଅନୁଗାମୀ କେତେ ଦିଗରେ ଆମେରିକାର । ଯାପାନୀ ଇଞ୍ଜିନିୟର୍, ଶିଳ୍ପୀଙ୍କ ତତ୍ତ୍ୱାବଧାନରେ ଉଦ୍ୟାନର ଏ ଅଂଶଟିକି ନିର୍ମିତ ହୋଇଅଛି । ଏଥିରେ ଯାପାନୀ ଗୁଳ୍ମ ସଂଖ୍ୟା ଅଧିକ, ଯାପାନୀ ଉଦ୍ୟାନର ରୂପରେଖ ଓ ଠାଣି ଉପସ୍ଥିତ ।

ସମତଳ କ୍ଷେତକୁ ବୁଲ୍‌ଡୋଜର୍‌ରେ ପାହାଡ଼ ପରି ଢେଉଢେଉକା, ଘାସ ପତ୍ରଆକୁ ଗଡ଼ାଣିଆ କରା ହୋଇଛି । ଏଠି ସେଠି ନାନାପ୍ରକାର ବୃକ୍ଷର ଉଦ୍ୟାନ, ହ୍ରଦ ମଧ୍ୟରେ କାଷ୍ଠ କୁଟୀର । ତା ମଧ୍ୟକୁ ବାଙ୍କଗିରିଡ଼ା ରାସ୍ତା ବଙ୍କେଇ ଢଙ୍କେଇ ଯାଇଛି । ଏଠି ଜଣେ ନିର୍ଜନରେ ବସି ଚିନ୍ତା କରିପାରେ, କବିତା ଲେଖିପାରେ ବା ଅସମାହିତ ସମସ୍ୟାର ସମାଧାନ କରିପାରେ ।

ଉଇଲୋ ଗଛର ଓହଳ । ଓହଳା ଡାଳ ଦୋଳି ଖେଳାଳ ପରି ପବନରେ ଆଗକୁ ପଛକୁ ହେଉଛି । ହ୍ରଦରେ ଚମ୍ପାବର୍ଣ୍ଣ ପରି ଫୁଆରା ଉଠୁଚି, ଉଠୁଚି, ପ୍ରପାତ ସଙ୍ଗେ ତାଳ ଦେଇ ପଡ଼ୁଚି, ପଡ଼ୁଚି । ଏଠି ସେଠି ଗାଢ଼ ଏଭରଗ୍ରୀନ୍ ଓ ସବୁଜ ଘାସ ଗହ୍ୱଳରେ କେତେ ଝରଣା ଝରୁଚି, ମେପଲର ସ୍ୱପ୍ନଝଡ଼ । ରଙ୍ଗୀନ ଅରଣ୍ୟ ମଧ୍ୟରେ ବଙ୍କା ଢଙ୍କା ହ୍ରଦ, ପ୍ରପାତ, ଜଳ ସ୍ରୋତ; ସ୍ରୋତର ଶଙ୍ଖ ଉପରେ ବସି ଦେଖିଲୁ ଚନ୍ଦନ ପରି ଧଳା ମାଛ, ଗାଢ଼ ଲାଲ୍ ମାଛ, କଳା ଟିପ୍ ଟିପ୍ ଧଳା ମାଛ—ଖକୁଡ଼, ରେହ୍ଣ, କଳାବଉଁଶି, କାଠିପୋହଳା ଆକୃତିର ମାଛ । ଖାଦ୍ୟଲାଗି ଯାତ୍ରୀଙ୍କ କରୁଣା ଉପରେ ନିର୍ଭର କରି ଏମାନେ ବଞ୍ଚନ୍ତି । ଦିନେ ଅତ୍ୟଧିକ ବରଫପାତ ଯୋଗୁଁ ଯାତ୍ରୀ ସ୍ରୋତ ବନ୍ଦ ହୋଇଗଲେ ଅଠାଠିକ୍ ଅବସ୍ଥା । ସେତେବେଳେ କିଛି କିଛି ଖାଦ୍ୟ ଦେଇ ଉଦ୍ୟାନକର୍ତ୍ତା ଜଳଜୀବମାନଙ୍କୁ ବଞ୍ଚେଇବା ଚେଷ୍ଟା କରନ୍ତି । ପରମୁଖାପେକ୍ଷିତା ହିଁ ଏମାନଙ୍କ ଦୁଃଖକଷ୍ଟର କାରଣ । ଖୋଜି ଖାଇବାରେ ଅନଭ୍ୟସ୍ତ । ନହେଲେ ହ୍ରଦରେ ପ୍ରାକୃତିକ ଖାଦ୍ୟର ଅଭାବ ନାହିଁ ।

ନଦୀ ହ୍ରଦରୁ ସଂଗୃହୀତ ବର୍ତ୍ତୁଳ ଶିଳା ଶାଳଗ୍ରାମ, କଳା ମୁଗୁନି ଓ ମାର୍ବଲର ମିଶ୍ରିତ ଅନୁଚ୍ଚ ପ୍ରାଚୀର ମଧ୍ୟରେ ନାନା ବର୍ଣ୍ଣର ଗୋଲାପ, ପୁଷ୍ପିତ ଲତାନିକୁଞ୍ଜ; ମନ ବିଶ୍ରାମ କରେ, କ୍ଳାନ୍ତି ଓ ଅବସନ୍ନତା ଛାଡ଼ି ଦିଏ । ଆପେ ଆପେ ପ୍ରସନ୍ନ, ପ୍ରଫୁଲ୍ଲ ହୋଇ ଉଠେ ।

ସ୍ୱପ୍ନ ଦେଖିବା ଲାଗି କେତେ ଶୋଭା ସଞ୍ଚୟ କରା ଯାଇଛି । କିନ୍ତୁ ଝନ୍ ଝନ୍, ଖସ୍ ଖସ୍‌ରେ ଆଦୌ ନିଦ୍ରା ନାହିଁ, ସ୍ୱପ୍ନ ଦେଖିବେ କିପରି ? ଏତେ ନିବିଡ଼ ବାସ୍ତବତା ମଧ୍ୟରେ ସ୍ୱପ୍ନ ଉଧେଇବ କିପରି ?

ମଧ୍ୟାହ୍ନ । ପ୍ରଖର ଖରା । ପ୍ରାତଃ ବା ସନ୍ଧ୍ୟାର ଅବିର ଗଛଲତାରେ ଲାଗିଥିଲେ କିମ୍ବା ହ୍ରଦ ଜଳରେ ତାର ପ୍ରୀତି ଦେହକୁଥିଲେ କିମ୍ବା ଚନ୍ଦ୍ରର କୁଆଁରୀ କାଠି ଲାଗିଥିଲେ ଆମ ଉପଭୋଗ ଚୂଡ଼ାନ୍ତ ହୋଇଥାନ୍ତା । ମଧ୍ୟାହ୍ନର ରୌଦ୍ର ପ୍ରକୃତିର ସମସ୍ତ ରୋମାଞ୍ଚକର ରହସ୍ୟ ପଦାରେ ପକାଇଦେଲା !

## ଟାଓ୍ୱାର୍ ଗ୍ରୋଭ୍ ପାର୍କ

ଆକାଶରେ ଅଷ୍ଟମୀ ଚନ୍ଦ୍ର, ଝିର ଝିର ପବନ । ପଲ୍ଲବଗହଳ ବିଶାଳ ବୃକ୍ଷରେ ଝିଙ୍କାରୀ ଗୁଞ୍ଜ ଦେଇଚନ୍ତି ତାର ଅବିରତ ସ୍ୱର ଲହରୀ । ପାର୍କ ହ୍ରଦ କୂଳେ ବୁଲି ବୁଲି ଆମେ ଟାଓ୍ୱାର୍ ନିକଟରେ ପହଞ୍ଚିଲୁ । ବନ କୁଞ୍ଜ ମଧ୍ୟରେ ଟାଓ୍ୱାର ଲଗାଏତ ରଙ୍ଗମଞ୍ଚଟିଏ । ବିବିଧ ବାଦ୍ୟଯନ୍ତ୍ର ଯେନି ବସିଛନ୍ତି ବାଦ୍ୟକଦଳ । ସଙ୍ଗୀତର ତାଳେ ତାଳେ ବ୍ୟାଣ୍ଡ୍ ମାଷ୍ଟରଙ୍କ ହାତ ଓ ବାଜା ଚାଲିଛି । ଏକରୁ ଅନ୍ୟର ତାରତମ୍ୟ ମୋର ଅନଭ୍ୟସ୍ତ କର୍ଣ୍ଣ ବା ତାଳଲୟଜ୍ଞାନହୀନ ମନ ବୁଝିପାରୁନାହିଁ । ବୁଝେ ବା ନ ବୁଝେ ଅନ୍ୟମାନଙ୍କ ସହିତ ତାଳି ମାରେ, ଖେଳରେ ଯେପରି, ଏଥିରେ ସେହିପରି, ଗୋଠଖଣ୍ଡିଆ ବୋଲି ପରିଚିତ ହୋଇଯିବି କାଳେ ।

ସ୍ୱର ବାଜଣାର ମୂଳ ପୁଞ୍ଜି । ଗୀତ ସ୍ୱରକୁ ହିଁ ବାଦ୍ୟଯନ୍ତ୍ରରେ ରୂପ ଦିଆ ଯାଇଥାଏ, ଯେପରି କରନ୍ତି ଆମ ଢୋଲିଆ, ମହୁରିଆମାନେ, ପ୍ରାଚୀନ ବିରହ ବିଚ୍ଛେଦର କରୁଣ ରାଗିଣୀକୁ କରୁଣତର ସ୍ୱର ଦେଇ ।

ଗୀତର ରସ ହୃଦବୋଧ କରିବା ଚେଷ୍ଟା କଲି; ଯାହା ବୁଝିଲି ତାର ମର୍ମ ଏଇ—

ପ୍ରାଣ ଭରି ଭଲପାଏ ଯାରେ
ସେ ଭଲ ନ ପାଏ ଯଦି
ମୋ ଭଲପାଇବାଟି ବହିଯାଉ
ହୋଇ ମନ୍ଦାକିନୀ ।

ପ୍ରେମ କ'ଣ ଲୁହେଁ ତାହା ?
ନିର୍ଝରିଣୀ ଝର୍ଝରେ ନ ଝରି
ହ୍ରଦ ପରି ହୃଦୟ ନିର୍ମଳ
ଫୁଟାଏ କମଳ ।

### କମଠ ଯେହ୍ନେ ବସ୍ତ୍ର ଛାଡ଼ି ପଳାଏ

କଇଁଛର ସଂସାର ଜଞ୍ଜାଳ ନାହିଁ । ପୁତ୍ରକନ୍ୟା ସ୍ନେହ କଣ ସେ ଜାଣେ ନାହିଁ । ଅଣ୍ଡାଦେଇ ବାଲିରେ ଘୋଡ଼େଇ ଦେଇ ଚାଲିଯାଏ । ଛୁଆ ମଲେ କି ଗଲେ ସେ ଦେଖେ ନାହିଁ । ମାଆ ହୋଇ ଏପରି ନିଷ୍ଠୁର ଆଉ ନାହିଁ । ବାପା ମା' ଛେଉଣ୍ଡ ନିଜ ଗୋଡ଼ରେ ଛିଡ଼ା ହୋଇ ଯାହା ହେବାର ହୁଅନ୍ତି ।

କଚ୍ଛପ ବୋଲି କୁଆଡ଼େ ପ୍ରାଣୀ ନାହିଁ, ମଣିଷ କାମ କରି କରି କୂର୍ମ ହୁଅନ୍ତି । ଇନ୍ଦ୍ରଦ୍ୟୁମ୍ନ ପୋଖରୀ କଚ୍ଛପ ଆକାରର ଦୁଇଟି କୂର୍ମ ଦେଖିଲି, ଗ୍ରାଣ୍ଟଙ୍କ ଫାର୍ମରେ, ଉଭୟଚର ପ୍ରାଣୀ ସେ ।—ଲବଣାକ୍ତ ଓ ମଧୁର ଉଭୟ ଜଳରେ ଓ ସ୍ଥଳରେ ବାସ । ନଦୀ, ହ୍ରଦ, ପୁଷ୍କରଣୀ, ସମୁଦ୍ର ସର୍ବତ୍ର ସ୍ୱଚ୍ଛନ୍ଦ ବିହାର ।

ଭଗବାନ୍ କୁଆଡ଼େ ଏଇ ଅବତାରରେ ଟଳମଟଳ ପୃଥିବୀକି ସମ୍ଭାଳି ଥିଲେ, ସମୁଦ୍ର ମନ୍ଥନରୁ ରକ୍ଷା କରିଥିଲେ ? ହେଲେ ହେଇଥିବ । ଏହାଠାରୁ ଆକାର ତାର ବହୁତ ବଡ଼ ହୋଇଥିବ ।

ଓଡ଼ିଶାର ଚିଲିକାର ଏକ ଆଶ୍ଚର୍ଯ୍ୟ ଭୂମି । ଏକାବେଳକେ ଲକ୍ଷ ସଂଖ୍ୟାରେ କଇଁଛ ଏଠିକି ଆସି ଅଣ୍ଡା ଦିଅନ୍ତି । ଅଦ୍ଭୁତ ଏ ଦୃଶ୍ୟ ।

ଏଇ ଫାର୍ମରେ ପ୍ରଭୁଙ୍କର ସେଇ ସମ୍ମାନିତ ଅବତାର ଭିକ୍ଷା କରୁଛନ୍ତି କାହିଁକି ? ଆମେରିକାରେ ପରା ଭିକ୍ଷାବୃତ୍ତି ଚଳେନାହିଁ ! ତାର ମାନସମ୍ମାନ ହାନି କରିବାର ଅଧିକାର ମଣିଷର ଅଛି ? ଏ କ୍ଷେତ୍ରରେ ଜୀବ ଇତର ନା ମଣିଷ ?

ଖାଦ୍ୟାଭିକ୍ଷାଣୀ କଚ୍ଛପକୁ ଦେଖି ଆମେ ଫାର୍ମରେ ପଶିଲୁ । କୃଷିଜମି ନୁହେ, ଗୋପାଳନକ୍ଷେତ୍ର ନୁହେ, ଏକ ବିପୁଳ ତୃଣଭୂମି, ବୃକ୍ଷଭରା । ବହୁତ ଚଢ଼େଇ ଅଛନ୍ତି, କିନ୍ତୁ ଏ ଚଢ଼େଇଖାନା ନୁହେ । ୪୪୦ ଏକରର ଏକ ବୃହତ୍ ପାର୍କ । ଏହାର ପ୍ରତିଷ୍ଠାତା ବୁସ୍ । କିନ୍ତୁ ଆମେରିକା ଗୃହଯୁଦ୍ଧ କାଳରେ ରଣକ୍ଷେତ୍ରରେ କୃତୀ ଦକ୍ଷିଣୀବର୍ଗର ସେନାପତି ଗ୍ରାଣ୍ଟଙ୍କ ଚିରସ୍ମରଣୀୟ କରିବାଲାଗି ତାଙ୍କ ନାମରେ ଏହା ନାମିତ । ଅବଶ୍ୟ ମିସୋରୀ ରାଜ୍ୟ ଉତ୍ତରଦକ୍ଷିଣ ମଧ୍ୟ ସ୍ଥାନରେ ଅବସ୍ଥିତ । କେଉଁ ପକ୍ଷର ଏହା ବିଶ୍ୱାସଭାଜନ ହେବ ? ବାଦୁଡ଼ି ପରି ନୁହେଁ ପଶୁ, ନୁହେ ପକ୍ଷୀ । କେତେବେଳେ ଏ ପାଖେ, କେତେବେଳେ ସେ ପାଖେ ବା କୋଉ ପାଖେ ନ ଥିଲା । କେଉଁ ପକ୍ଷ ଏହା ଉପରେ ଭରସା କରି ପାରୁ ନ ଥିଲେ । ଦକ୍ଷିଣ ପକ୍ଷର ସେନାପତି ଗ୍ରାଣ୍ଟଙ୍କ ସ୍ମୃତିରକ୍ଷାରୁ ବୁଝାଯାଏ—ଏହା ଯେପରିକି ଦକ୍ଷିଣପକ୍ଷରେ ଥିଲା । କିନ୍ତୁ ଗ୍ରାଣ୍ଟ୍ ଜଣେ ସର୍ବସମ୍ମାନିତ ବ୍ୟକ୍ତି । ତାଙ୍କ ସ୍ମୃତିପୂଜା ଆମେରିକାରେ ସର୍ବତ୍ର ।

ବୁସ୍ ଜଣେ ଗରିବ ଜର୍ମାନ୍; ଘୋଡ଼ା ସହିସରୁ ସେ ଘୋଡ଼ାଚଢ଼ା ସମ୍ପତ୍ତି ଲାଭ କରିଥିଲେ କମ୍ବା କୋଟିପତି ହୋଇଥିଲେ । କମ୍ବା କୋଟିପତି କହିଲେ ତାଙ୍କ ସମୃଦ୍ଧିର ଅବମାନନା ହୁଏ ? ବର୍ଷକୁ ବୁସ୍ କୋଟି କୋଟି ଦାନ କରନ୍ତି । କୋଉଠି ପାର୍କ, କୋଉଠି ଷ୍ଟାଡ଼ିୟମ୍, କୋଉଠି ଗୋଲାପ ଉଦ୍ୟାନ । ବୁସ୍ଙ୍କ କୀର୍ତ୍ତି ଆମେରିକାର କୋଉ ସହରରେ ନାହିଁ ?

ଏତେ ସମୃଦ୍ଧିର କି କାରଣ ? 'ଦ୍ୱାରେ ଦ୍ୱାରେ ବୁଲି ବିକାଏ ଗୋରସ, ମଦ ବିକାଯାଏ ବସି ।'—ବୁସ୍ ଗୋଟିଏ ବିଅର୍ କାରଖାନାର ମାଲିକ । ଏଇ ଫାର୍ମରେ ରହନ୍ତି—ବୟସ ୮୬ ବର୍ଷ । ଥରେ ସକାଳେ, ଥରେ ସନ୍ଧ୍ୟାରେ ଘୋଡ଼ା ଗାଡ଼ିରେ ବସି ସେ ଫାର୍ମ ପରିକ୍ରମା କରନ୍ତି । ଶତ ଶତ ମଟରଗାଡ଼ି କିଣିବାର ଶକ୍ତି ଅଛି । କିନ୍ତୁ ଘୋଡ଼ାଗାଡ଼ି ଭୁଲିନ୍ତି ନାହିଁ । 'କଣ ଥିଲି, କଣ ହେଲି'—ତାର ସ୍ମାରକ ସେ ।

ଗ୍ଲେଟ ଝରଣାଟିଏ । ତାର କୂଳରେ କାଚପିଞ୍ଜରା ହନୁଟିଏ—ବେକ ଦଉଡ଼ିଟି ଧରିଛି ଜଣେ ଲେଡ଼ି—ମାଙ୍କଡ଼ ନଚାଏ ସେ—'ହନୁ ମୋର ନାଟ କରିବ, ମେଜେ ପାଦ ଥୋଇ ଚଉକିରେ ବସି ହାକିମ ହେବ ' ଏମିତି ବଚନିକା ତ ନାହିଁ ! କଣ କହୁଚି ସେ ? ହନୁ ଡେଉଁଚି, ନାଚୁଚି, ଗଛ ଡାଳରୁ ଦୋଳି ଖେଳୁଚି ।

ଆରେ ସେଠି ବହୁତ ଲୋକ ଜମିଛନ୍ତି କାହିଁକି ? ଓ, ଶୁଆଙ୍କ ଖେଳ ଦେଖୁଛନ୍ତି ! ବାଃ, କେତେ ରଙ୍ଗର ଶୁଆ ! ଗାଢ଼ ଶାଗୁଆ, ସଫା ଧଳା, ଚିପିଟିପି-କିଆ । ଗୋଟେ ତାର ଉପରେ ଏକଚକିଆ ସାଇକଲ ଚଲାଉଛି, ଗୋଟେ ରିକ୍ସା ଭିଡ଼ୁଛି । ଆଉ ଗୋଟେ ଭେଲ୍‌ଭେଟ୍ ରିକ୍ସାରେ ବସି ହୁକୁମ୍ ଚଲାଉଚି ।

ଭେଡ଼େ ସୁନ୍ଦର ପକ୍ଷୀ; କିନ୍ତୁ କି କର୍କଶ ସ୍ୱର ! ବୋବେଇଲେ କାନ ଅତଡ଼ା ପଡ଼ୁଚି । 'ସୁନ୍ଦର ସଙ୍ଗେ ମଧୁରର ସମନ୍ୱୟ ଭଗବାନ୍ କଲେ ନାହିଁ କାହିଁକି ? ରୂପ ସଙ୍ଗେ ବାଣୀର ଦ୍ୱନ୍ଦ୍ୱ ଘଟିଲି କାହିଁକି ?

କାହିଁକି ଆଦେଶ ଅମାନ୍ୟ କରୁଛନ୍ତି ? କ୍ରୋଧର କାରଣ କଣ ? ସ୍ୱାଧୀନତା ହରଣ ? ବୋଧହୁଏ କହୁଛନ୍ତି—ମାଡ଼ ଭୟରେ ଯାହା କହୁଛି, କରୁଛି । ମନ ନାହିଁ । ସ୍ୱାଧୀନତା ଥିଲେ ପିତା କଷା ଫଳ ମିଠା ଲାଗେ, କାଲୁଆ ଭୂଇଁ ଉଷୁମ ଲାଗେ ।

ଗୁଗଲ ଚିଡ଼ିଆଖାନାର ଏକ ପ୍ରଦର୍ଶିତ ପ୍ରାଣୀ । ହରିଣ ପରି ଏହା ଉନ୍ମୁକ୍ତ ନୁହେ, ସଂରକ୍ଷିତ । କୁକୁର, ବିଲୁଆ, ଗଧିଆ ଏହାକୁ ଅକ୍ଳେଶରେ ବିନାଶ କରିଦିଏ । ହରିଣ ପରି ଧାବନପଟୁ ନୁହେ । ଉଭୟଙ୍କ ମଧ୍ୟରେ ସାମ୍ୟ, ଆକୃତିରେ । ଦୁହିଙ୍କ ଶୃଙ୍ଗ ଆଉ ନ ଥିଲି ପରି । ମାଣିକ ରଜାର ଗୋଜା ଗୋଜା ଶିଙ୍ଘ ଦୁଇଟା ଅଳଙ୍କରଣ ମାତ୍ର ।

ଏଇ ଗେଲବସର କି ବଟାବେଶର ପ୍ରାଣୀଟିକୁ ରଙ୍ଗୀନ୍ ଗୋରା ପିଲାସବୁ ଗେଲ କରୁଛନ୍ତି ବା ଦୁଧବୋତଲ ତା ମୁହଁରେ ଲଗାଇ ଦେଉଛନ୍ତି । ସେ

ତରତର କରି ପିଇ ଘଣ୍ଟାକେ ବୋତଲ ଶେଷ କରିଦେଉଛୁ । ବାର୍ଣ୍ଣି, ବସ୍‌କୁଟ୍,
ପାଉଁରୁଟି ହାତରୁ ଛଡ଼ାଇ ଖ୍ୱାଇ ଯାଉଛୁ, ଅସୁର ସର୍ବଭକ୍ଷ୍ୟ ସେ ।

ଡଟ୍‌ଘୋଡ଼ା, ଧଳାଘୋଡ଼ା, କଳା, କଇଁଆ ବା ଛଇଲା ଘୋଡ଼ା—ବ୍ରୁସ୍
ବହୁତ ପୋଷିଛନ୍ତି; ନାମଜାଦା ଘୋଡ଼ାଦୌଡ଼ ପ୍ରତିଯୋଗୀ ଜଣେ ସେ । ଘୋଡ଼ା-
ଗାଡ଼ି ପ୍ରତିଯୋଗିତାରେ ମଧ୍ୟ ସେ ଯୋଗ ଦିଅନ୍ତି ।

ଆଙ୍ଗୁଠିରେ ଯେତୋଟି ଗଣା, ତା ମଧ୍ୟରେ ବ୍ରୁସ୍‌ଙ୍କ ସ୍ଥାନ ଉଚ୍ଚ, ତାଙ୍କ ନାମ
ସବା ଆଗରେ, ମଝିରେ, କି ପଛରେ ସେ କଥା ନିଉୟର୍କ ୱାଲ୍ ଷ୍ଟ୍ରିଟ୍‌ର ଅର୍ବୁଦ
ବୃନ୍ଦପତିମାନେ କହିପାରିବେ—କିନ୍ତୁ ଦାରିଦ୍ର୍ୟ ଅଶୀତ ଭୁଲିଯିବା ଭଳି ପତନ
କେବେ ତାଙ୍କର ଘଟିନାହିଁ । ସେ ପୂର୍ବ କୁଟୀରର ସୁରକ୍ଷା କରିଛନ୍ତି । ସେ କାଳ
ଭୂଇଁଛୁଆଁ କୁଟୀର, ଏକାଳ ଆକାଶ ଛୁଆଁ କୋଠା—ଆଖି ପକାଇଲେ ଦୁଇଟିର
ତାରତମ୍ୟ ବୁଝିହୁଏ ।

ସମସ୍ତ ପାର୍କଟି ବୁଲି ବୁଲି ଦେଖିବା କଷ୍ଟକର । ବ୍ରୁସ୍‌ଙ୍କ କୋଚ୍‌ରେ ବସି
ତୃଣକ୍ଷେତ୍ର, ପୁଷ୍ପୋଦ୍ୟାନ, କୃଷିଜମି, ବ୍ରୁହ୍ମଲେ, ସ୍ୱାନ୍, ମୟୂର ଆଦି ପ୍ରାଣୀ ଦେଖି
ଫେରିଲୁ ।

ଚାଲବାଧା, ଶୋଷ । କମଳା ବା ଅଙ୍ଗୁର ରସ ନୋହିଲା ନାହିଁ, ଟୋପିଏ
ପାଣି ମିଳନ୍ତା କି ! ମିଳିଲା ହ୍ୱିସ୍କିର ଗ୍ଲାସ୍ । ସଙ୍ଗୀମାନଙ୍କ ମୁହଁର ଚେହେରା
ବଦଳିଲା । କିନ୍ତୁ ଯେପରି ଆମ୍ବ ଖୋଜିଲା ଲୋକକୁ ମିଳିଲା ଆମ୍ବଡ଼ା । ଏତିକି
ଆଶ୍ୱାସନା—ମିଳିଲା ମାଗଣା । ହେଲେ ମାଗଣାକୁ ମହୁରଗ ।

ଏ ଏକ ବିଜ୍ଞାପନ, ସରସ । ବାରବର୍ଷର ତପସ୍ୟା ମୁହୂର୍ତ୍ତିକେ ଶୁଖୁଆ
ପୋଡ଼ାରେ ଯାଏ—କହନ୍ତି—ହ୍ୱିସ୍କି ସେ ପୋଡ଼ା ସେ । ଆଦୌ କ୍ଷତିକାରକ
ନୁହେଁ । କିନ୍ତୁ ଏହା ପ୍ରବେଶପଥ । ନିଶାର ଆରମ୍ଭ ଏହିପରି ଉପଦ୍ରବହୀନ; ନିରୀହ ।
କିନ୍ତୁ ପରେ ଏହା ଟାଙ୍ଗ ଲଙ୍କା ବିସ୍ତାର କରେ, ପରିବାରର ସୁଖଶାନ୍ତି ନଷ୍ଟ ହୁଏ ।
ତାପରେ ସମସ୍ତ ନିଜକୁ ହରାଏ, ଶେଷକୁ ନିଜକୁ ।

ବ୍ରୁସ୍ ଏହି କୁକର୍ମର ଫଳ ଭୋଗୁଛନ୍ତି ହାତେ ହାତେ । ତାଙ୍କର ଦୁଇଟି ପୁତ୍ର
ଘୋର ମଦ୍ୟପ—ନରହତ୍ୟା କରିଛନ୍ତି । କିନ୍ତୁ ଅର୍ଥବଳରେ ଫାଶିଖୁଣ୍ଟରୁ ମୁକୁଳି
ଆସିଛନ୍ତି । ପରର ଯେ କ୍ଷତି ଘଟାଏ, ଯେତେ କଲ୍ୟାଣ କଲେ ବି ତାର ଶୋଧ
ଘଟେ ନାହିଁ ।

## ନାଆଁ ମନେ ନ ପଡ଼ିଲେ······

ନାଆଁ ମନେ ନ ପଡ଼ିଲେ ପାର୍କର ଦୃଶ୍ୟ ବା ଅନୁଭୂତିର ମୂଲ୍ୟ କଣ ଊଣା ହୋଇଯାଏ ? କି ଫଳ ଖାଇଲି ? କି ମିଠା ଚାଖିଲି ? କି ଫୁଲ ଦେଖିଲି ? କେଉଁ କେଉଁ ପତ୍ରର ସୁରଭି ଆଘ୍ରାଣ କଲି ? କେଉଁ ଋତୁର ସକାଳ ବା ସନ୍ଧ୍ୟା ମୋତେ ପୁଲକିତ କଲା ? ନାଆଁ ମନେ ନ ପଡ଼ିଲା ତ କ'ଣ ହେଲା ? ମନର ଆନନ୍ଦକୁ ରୂପାୟିତ କରିବାରେ ଏ କ'ଣ ଗୋଟାଏ ଅସୁବିଧାକୁ ଲେଖା ?

ପବନ ହେଲେ ମେଘ ଉଡ଼ିଯାଏ, କହନ୍ତି । କିନ୍ତୁ ଘୋର ବର୍ଷା ବା ପ୍ରଚଣ୍ଡ ପବନ ୪୦ ଟି ବି ଏକାବେଳେ ହୋଇପାରେ । ଦୁଇଦିନ ହେଲା ଏଇ ଭୟାବହ ଲୀଳା । ଗୃହବନ୍ଦୀ । ତୃତୀୟଦିନ ସକାଳେ ଟିକିଏ ଫର୍ଚ୍ଚା ଜଣାଗଲା । ମେଘ ଫଟାଇ ହଠାତ୍ ଖରାର ତୋଫା ପ୍ରପାତଟିଏ ଆକାଶରୁ ଅଜାଡ଼ି ହୋଇ ପଡ଼ିଲା । ସଜ-ଧୁଆ, ସଫାସୁତୁରା ଗଛବୃଛ ଅଧିକ ସତେଜ ଓ ସବୁଜ ଦେଖାଗଲେ ।

ପହଞ୍ଚିଗଲା ପଡ଼ୋଶିଣୀ ବେଟ୍ଟୀ; ଇଶ୍ୱର ବ୍ୟବସ୍ଥା, ତା ଅନୁପସ୍ଥିତିରେ ବେଟ୍ଟୀ ପାର୍କ ବୁଲେଇ ନେବ ।

ପ୍ରାୟ ୨୫ ମାଇଲ୍ ଦୂର, ହରିଣ, ବାଇସନ୍‌ଭରା ପାର୍କଟିଏ, ପଶୁପକ୍ଷୀଙ୍କ ସ୍ନାନ, ଜଳପାନ, ସୁଖସ୍ୱଚ୍ଛନ୍ଦ ବିହାର ଲାଗି ହ୍ରଦଟିଏ ।

ଅହିଂସାର ପ୍ରଭାବ ପକାଇବା ଲାଗି ମୁନିଋଷି ନାହାନ୍ତି । ତାର ଆବଶ୍ୟ-କତା ବି ନାହିଁ, ଯେହେତୁ ହିଂସ୍ର ଜନ୍ତୁ ନାହାନ୍ତି; ବ୍ୟାଧ ପ୍ରବେଶ ବେଆଇନ୍ । ଆଶ୍ରମରେ ଅଭିଶାପର ଭୟ ଥିଲା, ଏଠା ଆଇନ୍ ଲଂଘନରେ ପ୍ରଚଣ୍ଡ ଶାସ୍ତି ଭୟ । ପଶୁପକ୍ଷୀ ନିର୍ଭୀକ । ଗାଡ଼ି ଶବ୍ଦ ଶୁଣି ଦୂରେଇ ଯିବା ଅଭ୍ୟାସ ନାହିଁ । ବରଂ ପାଖେଇ ଆସୁଛନ୍ତି । ମଣିଷ, ସେମାନଙ୍କ ବନ୍ଧୁ, ସାହାଯ୍ୟକାରୀ । ହାଇଓ୍ୱେ ଧାରରେ ହରିଣ ଶୋଇଛନ୍ତି, ଶଙ୍କାଶୂନ୍ୟ । ଆମେରିକୀୟ ହିଂସ୍ର, ମାଂସାଶୀ, କିନ୍ତୁ ପାର୍କରୁ ହରିଣଟିଏ ଚୋରି କରିନେବା ବିରଳ । ସୌନ୍ଦର୍ଯ୍ୟଚେତନା ଗଭୀର । କାହା ଉଦ୍ୟାନ, ସ୍ୱଦେଶୀୟ ଅରଣ୍ୟକୁ ଉଜାଡ଼ି ଦେବାର ମନୋଭାବ କାହାରି ନାହିଁ ।

କଡ଼ାକଡ଼ି ଆଇନ୍; କଠୋର ଜାତୀୟ ଶୃଙ୍ଖଳା ଓ ଅଭ୍ୟାସ । ତେଣୁ ଏତେ ଅକ୍ଷତ, ୪ତେ ପରିପୂର୍ଣ୍ଣ ଦେଶେ ପାର୍କ ଅରଣ୍ୟ ।

ଏ ନିର୍ଜନତା ଭଙ୍ଗିବାକୁ ଯେଡ଼େ ଗୁଣ୍ଡା ହେଲେ ବି ସାହସ କରେ-ନାହିଁ । ୪ହା ସର୍ବଜନ ରକ୍ଷିତ, ସର୍ବ ସହଯୋଗରେ ଲାଳିତ । ଜଙ୍ଗଲ

ଜପୀଡ଼ିତ ପ୍ରାଣକୁ ଏହା ସରସ, ଶାନ୍ତ କରେ । ଶ୍ରାନ୍ତକ୍ଳାନ୍ତ ହୋଇ ଏହାର କାନ୍ତ କୋଳକୁ ଆଉଜିପଡ଼େ ମଣିଷ । ଏଠା ମଣିଷ ପ୍ରକୃତିଛଡ଼ା ନୁହେଁ, ପ୍ରକୃତିବିଜୟୀ ହେଲେ ବି; ଆଖିରେ ଶୋଷି ନେଇ ମରୁ ପ୍ରାଣରେ ମାଖି ନେଲି ଏହାର ସବୁଜ ଶ୍ରୀ ।

ଦ୍ୱିତୀୟ ପାର୍କଟି ଜଣେ ବ୍ୟକ୍ତିର, ସର୍ବସାଧାରଣଙ୍କ ଲାଗି ଖୋଲା । ପାର୍କ କଲେ ଧନୀ ଲୋକଙ୍କୁ ଟିକସ ଛାଡ଼ ମିଳେ । ସରକାରୀ ପ୍ରେରଣାରେ ବହୁ ଧନୀ ଗଢ଼ିଥାନ୍ତି । ଆମର ଦେଉଳତୋଳା, ପୋଖରୀଖୋଳା ପରି ପାର୍କ ଆଧୁନିକ ଜନମଙ୍ଗଳ ଯୁଗର ବଡ଼ କୀର୍ତ୍ତି । ସ୍ୱାସ୍ଥ୍ୟଦାୟୀ, ଉଚ୍ଚକୋଟୀର ପ୍ରମୋଦୋଦ୍ୟାନ ଲାଗି ଧନ ଧନ୍ୟ, ଧନିକ ଗଣ୍ୟମାନ୍ୟ ।

ଏହି ପାର୍କରେ କେତେକ ବିରଳ ହରିଣ, ବନ୍ୟ ଟର୍କି ପକ୍ଷୀ, ବନ୍ୟ ଗୋରୁ ଅଛନ୍ତି । କେତେକ ଦୁଗ୍ଧବତୀ ଗାଈ ଅଛନ୍ତି, ବିବିଧ ଜାତି, ଆକୃତି ଓ ବର୍ଣ୍ଣର ଘୋଟକ ଅଛନ୍ତି । ମାଂସଲାଗି ଉଦ୍ଦିଷ୍ଟ କେତେକ ଶୃଙ୍ଗହୀନ ଗୋରୁ ବି ଅଛନ୍ତି । ଗୋଶାଳା, ଅଶ୍ୱଶାଳାର ଊର୍ଦ୍ଧ୍ୱଦେଶରେ ଆମ ପୁରୁଣା ଉପାଡ଼ ପରି ଖଣ୍ଡ ଅଛି । ଏଥିରେ ଶୀତଦିନ ଲାଗି ଶୁଖିଲା ଘାସ ସଞ୍ଚିତ ହୋଇ ରହେ । ଆଗ୍ରହରେ ଉଷୁମ ଟାଣିବା ଲାଗି ଗହମ ଭୁଷି ଜନ୍ତୁଙ୍କୁ ଏହି ଖଣ୍ଡରୁ ଯୋଗାଇ ଦିଆଯାଏ ।

ବେଙ୍ଗୀ ଗାଈମାନଙ୍କୁ ଖୁବ୍ ଗେଲ କଲା । ଏମିତି କୋଉ ଆମେରିକୀୟ ମାଆ ପିଲାଙ୍କୁ ଗେଲ କରିବାର ଦେଖିନାହିଁ । କଣ୍ୱ ଆଶ୍ରମର ହରିଣକୁ ଶକୁନ୍ତଳା ଏମିତି ଗେଲ କରୁଥିଲା । ମୁଁ ତାର ମାତୃମୂର୍ତ୍ତିକୁ ମୁଗ୍ଧଭାବେ ଚାହିଁଲାରୁ କହିଲା—ମୋ ବାପାଙ୍କର ଏମିତି ଗୋଟିଏ ବାର୍ନ ଥିଲା । ଆମର ଅନେକ ଟର୍କି, ଗୋରୁଗାଈ ଥିଲେ । ଘର ଚାରିପାଖରେ ୨୦ ଏକରର ବିରାଟ ଭୂଖଣ୍ଡ ଥିଲା । ଆମେ ସେଥିରେ ଡିଆଁଡେଇଁ ଖେଳାଖେଳି କରୁଥିଲୁ । ଜୀବଜନ୍ତୁଙ୍କ ସଙ୍ଗେ କୌତୁକ ଖେଳିବାରେ ମୋର ଆନନ୍ଦ ।

ଗୋଟିଏ ଯାଗାରେ ପଶୁପକ୍ଷୀ ଖାଦ୍ୟ ଜମା ହେବାର ଦେଖି ବାର୍ନର ଜଣେ କର୍ମଚାରୀଙ୍କୁ ପଚାରିଲି—ଏ କ'ଣ ତୁମ ପାଳିତ ଟର୍କି, କୁକୁଡ଼ା, ମେଣ୍ଢା ଛେଳିଙ୍କ ଲାଗି ।

'ନା ।'

'ତେବେ ?'

'ଏସବୁ ବନ୍ୟ ପକ୍ଷୀଙ୍କ ଲାଗି । ଶୀତଦିନେ ସବୁଗଛରୁ ପତ୍ର, ଫୁଲ, ଫଳ ଝଡ଼ିପଡ଼େ । ଘାସଟିଏ ବି କାହିଁ ଦେଖିବାକୁ ମିଳେନାହିଁ । ପକ୍ଷୀ ବଞ୍ଚିବେ କିପରି ? କାହିଁକି, ଆପଣଙ୍କ ଭାରତରେ କଣ ଏପରି ବ୍ୟବସ୍ଥା ନ ଥାଏ ?'

'ବିରଳ । ପ୍ରାୟ ଲୋଡ଼ା ପଡେ ନାହିଁ । ଭାରତର ହିମାଳୟ ଅଞ୍ଚଳରେ ବରଫ ପଡେ । ସେଠି ଧର୍ମପ୍ରାଣ ବ୍ୟକ୍ତିମାନେ ଏ ବ୍ୟବସ୍ଥା କରିଥାନ୍ତି, ମୁଖ୍ୟତଃ ତୀର୍ଥ ସ୍ଥାନମାନଙ୍କରେ । ବରଫ ନ ପଡ଼ୁଥିବା ଜାଗାରେ ବି କେହି କେହି ଧାର୍ମିକ ଲୋକ ପିମ୍ପୁଡ଼ିକି ଚିନି, ମଇଦା ଆଧାର ଦିଅନ୍ତି । କେହି କେହି ହଂସ, କୁଆ, ପାରିକୁ ଚାଉଳ, ମୁଢ଼ି, ଲିଆ ବା ପାଉଁରୁଟି ଖାଇବାକୁ ଦିଅନ୍ତି । ଓପାସୀ ଗୋରୁ, ବୃଷଭଙ୍କୁ ଖୁଆଇବା ତ ସ୍ୱାଭାବିକ ରୀତି ।'

ଶୀତଦିନେ ଧାନ ପାଚେ, ଗହମ ବି ପାଚେ । ଦଳ ଦଳ ଗେଣ୍ଡାଳିଆ, ଧାନଖିଆ ଆସି ଖାନ୍ତି । କେହି ମାରନ୍ତି ନାହିଁ ।

ବେଟ୍ଟୀ କହିଲ—ମୁଁ ଶୀତଦିନେ ବୁଭୁକ୍ଷୁ, ପିପାସୁ ପକ୍ଷୀଙ୍କୁ ପ୍ରତିଦିନ ଖାଦ୍ୟ, ଜଳ ଯୋଗାଏ । ଧର୍ମ ନୁହେଁ, କର୍ତ୍ତବ୍ୟ ଦୃଷ୍ଟିରୁ । କିନ୍ତୁ ପକ୍ଷୀ ପହଞ୍ଚିବା ଆଗରୁ ପହଞ୍ଚି ଯାଆନ୍ତି ଗାତର ମୂଷା, ବୁଦା ଗହଳର ରାବିଟ୍ ଓ ଗଛ ଡାଳର ଗୁଣ୍ଡୁଚି ।

କହିଲି—ସେମାନଙ୍କର ବି ଖାଦ୍ୟାଭାବ ଘଟୁଥିବ ।

"କୋଉ ରାବିଟ୍ ବା ମୂଷା କେବେ ଖାଦ୍ୟାଭାବରୁ ମରିବା ଦୃଶ୍ୟ ଦେଖା ଯାଏ ନାହିଁ । ଯୋଗାଡ଼ କରି ପାରନ୍ତି । କିନ୍ତୁ ଅନ୍ୟର ଖାଦ୍ୟ ମାଡ଼ିବସି ଖାଇବା ପ୍ରକୃତି ।"

"ଏମିତି ମଣିଷରୂପୀ ବହୁ ରାବିଟ୍ ଓଡ଼ିଶାରେ ବନ୍ୟା, ମରୁଡ଼ି, ସାଇକ୍ଲୋନ୍ ବେଳେ ଦେଖାଯାନ୍ତି । ଦାନ ସୂତ୍ରରେ ମିଳୁଥିବା ଖାଦ୍ୟର ବଡ଼ଭାଗ ଏଇ ଦଲାଲ୍-ମାନେ ଖାଇଯାନ୍ତି । ଏମିତି ଦଲାଲ୍ ବେଶୀ ଭାରତବର୍ଷରେ । ବାଟମାରଣା, ଘାଟ ପାରଣା ରୀତି ସେମାନଙ୍କର କାଳେ କାଳେ । ସେବା ନାମରେ ଏମାନେ ଯାନ୍ତି, ରାତିଏ ଗଲେ ହାତିଏ ଆଣନ୍ତି, ଅଳ୍ପ ଦିନରେ ମହଲ ପରେ ମହଲ ଉଠାନ୍ତି । କେତେ, ଶିକ୍ଷିତ, ସଭ୍ୟ ହେଲେ ମଣିଷ ଦୁଃସ୍ଥର ବିପଦରୁ ସମ୍ପଦ ଲୁଣ୍ଠିବାର ପ୍ରବୃତ୍ତି ଛାଡ଼ିବ ?"

## ବିଦେଶୀଙ୍କ ସ୍ୱର୍ଗଭୂମି

ଆମେରିକା ବିଦେଶୀଙ୍କ ସ୍ୱର୍ଗଦେଶ, ଏହାର ନଦୀ ମାନେ ମନ୍ଦାକିନୀ, ପ୍ରତି ବନ ନନ୍ଦନକାନନ । ଆନନ୍ଦ ରାଜ୍ୟ ଏ । ଥରେ ଆସିଲେ ଫେରିଯିବାକୁ କାହାର ମନ ବଳେ ?

ଏହି ଅରଣ୍ୟର ପ୍ରାୟ ସବୁ ବାସିନ୍ଦା ବିଦେଶୀ । ସେମାନଙ୍କୁ ଏ ଭୂମି କିପରି ଲାଗୁଚି, ସ୍ୱଦେଶର ବନ ମନେ ପଡ଼ୁଚି କି ନାହିଁ, କିଏ କହିବ ? ଜୀବଜଗତର କାହାକୁ ଜଣା ? ପଶୁ ପଶୁ, ପକ୍ଷୀ ପକ୍ଷୀ କିମ୍ବା ପଶୁପକ୍ଷୀଙ୍କ ଭିତରେ ବେଳେବେଳେ କଥା ପଡ଼ୁଥିବ । କ'ଣ ସେ ବିଷୟ ବିଷ୍ଣୁଶର୍ମା ଥିଲେ କହିପାରନ୍ତେ ।

ଏ ବନ ପ୍ରମୋଦୋଦ୍ୟାନ, ନା ଚିଡ଼ିଆଖାନା, ନା ଦୁଇଟିର ଏକ ସଂମିଶ୍ରଣ ? ବନ ପରି ବୃକ୍ଷଲତା ଘନଘଞ୍ଚ, ଉଦ୍ୟାନ ପରି ସଯତ୍ନେ ଲାଳିତ, ଚିଡ଼ିଆଖାନା ପରି ଏଠି ଜୀବଜନ୍ତୁଙ୍କ କଟକଣା ନାହିଁ । ହିଂସ୍ର ଜନ୍ତୁଙ୍କ ଛଡ଼ା ଅନ୍ୟମାନେ ଖୋଲାରେ ମେଲାରେ ବୁଲନ୍ତି । କିନ୍ତୁ ନିର୍ଦ୍ଦିଷ୍ଟ ସୀମା ଡେଇଁ ଆସିପାରନ୍ତି ନାହିଁ । ଦଉଡ଼ଧାପଡ଼ କରନ୍ତି, ପରସ୍ପର ସହିତ ଖେଳନ୍ତି । ପ୍ରଚୁର ଭୋଜନ, ଭୟହୀନ ନିଶ୍ଚିନ୍ତ ଶୟନ, ସଂଗ୍ରାମଶୂନ୍ୟ ଜୀବନ—ପ୍ରକୃତ ଅଭୟାରଣ୍ୟ ଏ । ଜୀବଜନ୍ତୁ ବ୍ୟବହାର ସମ୍ପର୍କୀୟ ଜ୍ଞାନ, ମନୋବିଜ୍ଞାନ ଲାଗି ଅପୂର୍ବ ସୁଯୋଗ ଦିଏ ।

ଦୁଇଶ ଏକର ଭୂଖଣ୍ଡ; ଯା ମଧ୍ୟରେ ୯ ମାଇଲ୍ ବଙ୍କା ଟଙ୍କା ଉଠାପକା ପିଚୁ ରାସ୍ତା; ମଝେ ମଝେ ଗିରିଖୋଲ, ଖାଲଖମା, ଟେଲାଢ଼ିମା, ପାହାଡ଼ ଅଡ଼ଡ଼ା, ଗୁମ୍ଫା, ଝରଣା ସ୍ରୋତ, ଏଠି ପ୍ରପାତ, ସେଠି ବି; କେଉଁଠି ପାଣିଚୁଆ, ଚଉତରା, ପୋଖରୀ ବା ହ୍ରଦ । ମାଟିର ତୃଣମୟ ପାହାଡ଼, ଢାଲୁ ଜମି, ଜଳ ଝଙ୍କୃତ ଗଭୀର ଖାଲ, ଦିଗନ୍ତବ୍ୟାପୀ ସମତଳ କ୍ଷେତ୍ର, ଉଚ୍ଚ ତୃଣର ଭୂମି; ତିନି ହଜାର ପ୍ରାଣୀଙ୍କ ଲୀଳାକ୍ଷେତ୍ର ଏ । ଏଇ ଆନନ୍ଦମୟ ନନ୍ଦନ ବାସ ପରେ ସ୍ୱଜନ୍ମଭୂମି ବର୍ଜିତ ହେବା ବିଚିତ୍ର ନୁହେଁ, ଯେପରି ବହୁ ଭାରତୀୟ, ବିଦେଶୀୟ ପ୍ରଚୁର ଅର୍ଜନ, ଉତ୍ତମ ଆହାର, ଚମତ୍କାର ପରିବେଶ, ଉଚ୍ଚାଙ୍ଗ ଜୀବନଯାତ୍ରା ମାୟାଜାଲରେ ପଡ଼ିଯାଇଛନ୍ତି । ଖସି ଯିବାର ଉପାୟ ନାହିଁ ।

ମୁଣ୍ଡପିଛା ପାଞ୍ଚ ଡଲାର୍ ଟିକେଟ କାଟି ପାର୍କରେ ପଶିଥିଲୁ । ଝିପି ଝିପି ବର୍ଷା । ଗାଡ଼ିରୁ ଓହ୍ଲାଇ ବୁଲିବା ହୁକୁମ୍ ନାହିଁ, ମଟର ଝରକା ଖୋଲିବାକୁ ବି ମନା, ଭାଲୁ ରାମ୍ପୁଡ଼ି ଦେଇପାରେ, ଓଟପକ୍ଷୀ ଆଖିକୁ ଖୁମ୍ପି ତାଡ଼ି ନେଇପାରେ ।

ଏହା ଆମେରିକାର ସର୍ବବୃହତ୍, ଖୋଲାମେଲାରେ ଚଳବିଚଳ ଜୀବଜନ୍ତୁଙ୍କ ବାସଭୂମି । ଏଥିରେ ୯୬ ପ୍ରକାର ଜୀବଜନ୍ତୁ ଅଛନ୍ତି । ଅମାନିଆଁ ହୋଇ ଅରଣ୍ୟ ବୁଲିଲେ ବିପଦ ଶଙ୍କା ପଦେ ପଦେ । କେହି ଦାୟୀ ହେବେ ନାହିଁ ବା କ୍ଷତିପୂରଣ ଦେବେ ନାହିଁ ।

ପ୍ରଥମେ ଆଖିରେ ପଡ଼ିଲେ ଦୁଇଟି ବନ୍ୟ ଟର୍କି, ଦୁଇଟି ଛୋଟ ମୟୂର, ବହୁ ଶାଖାଯୁକ୍ତ ଶୃଙ୍ଗ କେତୋଟି ହରିଣ, ତାପରେ ଦୁଇଟି କୁଜ ଥିବା ଓଟ;

ଉଦତର ନୀଳ ଗାଈ, ଆଫ୍ରିକାର ଜେବ୍ରା, ଜିରାଫ୍, ମଣ୍ଟାସ୍କୁକ୍ ଡ଼ିଅର, ଏମୁ, ଧଳା ଲମା; ବଢ଼ିଆ କାଙ୍କ ଓ ଫ୍ଲେମିଙ୍ଗୋଦଳ, ବଡ଼ ବଡ଼ କାର୍ଷ୍ଣର ଛେଳି; ଧଳା ଓଟପକ୍ଷୀ, ବ୍ରହ୍ମଲେ (ମୋଟା ଆଉ ଖୁବ୍ ଲମ୍ବା ଲମ୍ବା ଶିଙ୍ଘ ଥିବା ବଣୁଆ ଗୋରୁ), କଳା କଳା ହଂସ, କାନାଡ଼ାର ପାତି ହଂସ, ଧଳା ପେଲିକାନ୍, ଚୀନ ଦେଶୀୟ ଧଳା ଚିତାବାଘ, ସିସିଲିର ଗଧ, ଯାପାନର ଜାଗୁଆର, କୁଡ଼ୁ, ଦକ୍ଷିଣ ଆମେରିକାର ଶାଗୁଣା, ବୁଢ଼ୀଆଣୀ ମାଙ୍କଡ଼ (Spider Monkey), ଅଷ୍ଟ୍ରେ-ଲିଆର କଙ୍ଗାରୁ, ମୁଲ୍ ହରିଣ, ଟର୍ପନ୍ ଘୋଡ଼ା, ଗ୍ରେଭି ଜେବ୍ରା, ଗ୍ରିଜ୍ଲି ଭାଲୁ, କୁମେରୁର ଧଳା ଭାଲୁ, ଫର୍ମୋଜାର କୋକଶିଆଳି, ଗୁଣ୍ଡୁଚି, ସୁବର୍ଣ୍ଣ ଫେଜାଣ୍ଟ୍ ପକ୍ଷୀ, ଇଉରୋପୀୟ ଲାଲ୍ ହରିଣ, ଚ୍ୟୁଳିଆ ଝିଙ୍କ, ଆଫ୍ରିକାର ଏଲ୍କ, ଅଲ୍ପାକା ଆଡାସ୍କା, ସିଂହ, ଭାରତର ମହାବଳ ବାଘ, ଧୂସର ଭାଲୁ ଓ ଭିନ୍ନ ଭିନ୍ନ ଜନ୍ତୁ ସଙ୍ଗମରେ ଜାତ ବହୁ ଅଦ୍ଭୁତ ବର୍ଣ୍ଣଶଙ୍କର ପ୍ରାଣୀ ଦେଖି ବିସ୍ମିତ ହେଲୁ। ଉଚ୍ଚ ଭୂମି ଉପରେ ଛିଡ଼ା ଆଡ଼ମ୍ବରମୟ ଲୋମଶ ବାଇସନ୍, ବୃକ୍ଷ ଅଗ୍ରଭାଗରେ ବସିଥିବା ଲଣ୍ଡାମୁଣ୍ଡିଆ ଇଗଲ୍ ପକ୍ଷୀ, ଛୁଆକୁ ଦୁଧ ପେଇବାବେଳେ ପଛଗୋଡ଼ରେ କାନ କୁଣ୍ଡାଉଥିବା ମିରିଗ ଓ ଏଡ଼େ ଏଡ଼େ ଆଖିରେ ପ୍ରିୟାର ତରଳ ଆଖିର ମାଧୁର୍ଯ୍ୟ ଘେନି କୌତୁକଭାବେ ଆମ ଆଡକୁ ଚାହୁଁଥିବା ହରିଣୀକୁ ଦେଖୁ ଦେଖୁ ଆମେ ଫେରିଲୁ।

ଉପରେ ଦେଖିଲୁ ପଶୁଙ୍କ ବିରାଟ ଖାଦ୍ୟ ଭଣ୍ଡାର, ପଶୁ ଡାକ୍ତରଖାନା, ମୃତ ଜୀବଜନ୍ତୁଙ୍କ ଶିଙ୍ଘ, ଦାନ୍ତ, ଲୋମ ଓ ଚମଡ଼ାରେ ନିର୍ମିତ ଦ୍ରବ୍ୟର ଗିଫ୍ଟ ସପ୍। ଖେଳଣା ବାଘଟିର ଦାମ୍ ୬° ଡଲାର୍। ଭାରତରେ ଦଶଟଙ୍କାରୁ ବେଶୀ ହେବ ନାହିଁ। ଗୋଟିଏ ଛେଳିର ଛବି ମାଗଣା ମିଳିଲା—ଅଗଷ୍ଟି ଦେଲେ ଦାନ—'କଞ୍ଜା'। ଫେରାଇବା ଅଭଦ୍ରତା। ଶସ୍ତା ଜନସକୁ ଆମେରିକାରେ ସବୁଠାରୁ ଶସ୍ତା ଧନ୍ୟବାଦଟିଏ ଦେଇ ଆମେ ବିଦାୟ ନେଲୁ।

# ନଅ

କେତେ ବଡ଼ଲୋକ ଆସନ୍ତି । ଚନ୍ଦସ୍ତା ପରେ ଫେରଯାନ୍ତି । କେତେ ବ୍ୟବସାୟୀ ଆସନ୍ତି । ବ୍ୟବସାୟ ବୁଝି ବାଟ କାଟନ୍ତି । କେତେ ପାଠ ପଢ଼ି ଆସନ୍ତି, ପାଠ ଶେଷ ହେଲା ପରେ ଗ୍ରୀନକାର୍ଡ ଆବୋର ଲାଗିଯାନ୍ତି । ଖୁଣ୍ଟ ଜବର; ତେଣୁ ଘୋଡ଼ା କୁଦେ, ଏ ସହରରେ, ସେ ସହରରେ କି ଆଉ କୋଉ ସହରରେ । ନିଜ ଦେଶରେ ଗୃହିଁ ଗୃହିଁ ଖରସା ଆଖିରୁ ପାଣି ମରେ । ବାପା ମାଆ ଆଖି ବୁଜନ୍ତି । ନୂଆ ସଂସାର, ନୂଆ କାରବାର ଗ୍ଡଲେ ।

ମୁଁ ଚନ୍ଦସ୍ତା ପରେ ବାଟ କାଟିଥାନ୍ତି । ଆରମ୍ଭରୁ ଭୁବନାନନ୍ଦ ଜଣ ନ ଥାନ୍ତି । ପୁଅ ହେବ କି ଝିଅ ହେବ, କି ମାଆ ଗୋବରେଇ ପକେଇବ, କିଛି ଜଣା ନାହିଁ । ବନମାଳୀପୁର ହାଟରେ ବାପ ଖଡ଼ୁ ଗଢ଼େଇବା ଚେଷ୍ଟା ହାସ୍ୟକର । ପରିଣାମ ନ ଥିଲେ ଦୀର୍ଘ ଉପକ୍ରମ ନିରର୍ଥକ ହୁଅନ୍ତା ।

ଗୋଟେ କାହାଣୀ ଲେଖି କଲମ କାଳ ସାରିଛି । ଆଉ ଗୋଟେ ଲେଖିଲେ ପୁନରୁକ୍ତିର ଭୟ ପଦେ ପଦେ । ଅଡ଼ୁଆ ଭିତରେ ମୁସ୍କିଲ୍ ପଶିବ । ଲେଖକ ପକ୍ଷରେ ଶ୍ରମ ।

ପୁଣି ଏଥର ମୋ ଲାଗି ଆସିନାହିଁ । ଲତାର ଲଥା ହୋଇ ମୁଁ ଆସିଛି— ଜଣେ କଳୁଆଲ । ଆଖି ବୁଜି କେହି ବାଟ କଢ଼ାଇ ନ ପାରେ । ଯାହାକୁ ଦେଖାଏ, ତା ସଙ୍ଗେ ସେ ନିଜେ ଦେଖେ !

ତେଣୁ ଦେଖିଥିବା ସ୍ଥାନ ଦେଖାଇବ କାହିଁକି ? ଯାହା ଦେଖିଲେ ବି ଲତାକୁ ନୂଆ । ଅଦେଖା ସ୍ଥାନ ଦୁହିଙ୍କି ନୂଆ । ତେଣୁ ମୁଁ ବାଛିଲି—ପଶ୍ଚିମ ଆମେରିକା ।

୧୯୬୬ରେ ନେଭେଡ଼ା ମରୁଭୂମିରେ ଶୋଷିଲା ହୋଇ କଲୋରାଡ଼ୋର ପାଣି ପିଇ ଦମ୍ ମାରିଥିଲି । ଆଉ ଗୋଟେ ଉତ୍କଣ୍ଠାରେ କାଲିଫର୍ଣ୍ଣିଆରେ ପହଞ୍ଚି-ଥାନ୍ତି । ପ୍ରଶାନ୍ତ ସାଗର ତୀର୍ଥ ଜଳ ମୁଣ୍ଡରେ ଛିଞ୍ଚିଥାନ୍ତି । ପ୍ରଶାନ୍ତ ଆକାଶରେ ଉଡ଼ି ଉଡ଼ି ଯାଇ ସୂର୍ଯ୍ୟୋଦୟ ଦେଶ ଯାପାନ୍ ଦେଖିଥାନ୍ତି । ସେ ଯୋଜନା ବ୍ୟର୍ଥ ହୋଇଥିଲା ।

ଦୁଇଟି ଯୁଦ୍ଧରେ ପୃଥିବୀକୁ ଅସ୍ଥିର କରିଦେଇଥିବା ଜର୍ମାନୀ, କଳା ଓ କଳାମୂର୍ତ୍ତିଙ୍କ ଦେଶ ଇଟାଲୀ, ନେପୋଲିଅନ୍ ବୋନାପାର୍ଟ, ଆଧୁନିକ ସାହିତ୍ୟର ଓ ମୋନାଲିସାର ହସର ଦେଶ ଫ୍ରାନ୍ସ, ଆମ ଭୂତ ଶାସକ ଓ ସେକ୍ସପିଅରଙ୍କ ଦେଶ ଗ୍ରେଟ୍ ବ୍ରିଟେନ୍ ଦେଖି ନ ଗଲେ ଭ୍ରମଣ ପୂର୍ଣ୍ଣାଙ୍ଗ ହେବ ନାହିଁ । କବି ଅନ୍ନଦାଶଙ୍କରଙ୍କ ପଥେ ମୋ ମନର ମୋଡ଼ ବଦଳାଇ ଥିଲା । କଲୋରାଡ଼ୋ କପରି ମରୁଭୂମିର ଭାଗ୍ୟ ବଦଳାଇ ଫୁଲଫଳଭରା ସବୁଜ ରାଜ୍ୟରେ ପରିଣତ କରିଛି, ଅପନ୍ତରା କାନ୍ତାରର ଏକ କଳାତ୍ମକ ଭୂମିକା ଲେଖିଛି—ନୀଳ ନଦୀ ପରି, ଟାଇଗ୍ରେସ୍ ଇଉଫ୍ରେଟିସ୍ ପରି, ପଞ୍ଚନଦ ସିନ୍ଧୁ ପରି—ସେହି ଭୂମିକାର ଅନୁସରଣ କାହାଣୀର ଏଇ ଶେଷ ପୃଷ୍ଠାକ ।

ଆମେ ଦିଜଣ ଥାଇ ବି ମନେ ହେଲା; ଏକା—ଏକାନ୍ତ ଏକୁଟିଆ । କେମିତି ଯିବୁ ? ବାଟରେ ଯଦି ହଠାତ୍ ରୋଗ ଆକ୍ରମଣ କରେ···; କିଏ ପିଠିରେ ପଡ଼ିବ ? ପୋପରି ଦଦରା ହେଉ ଦେହଟିଏ ଅଛି ବୋଲି ସିନା ଲଢ଼ାର ସାହସ !

ଆମେରିକାର ବିପୁଳ ଜନାକୀର୍ଣ୍ଣ ନଗରରେ ବାଟଘାଟ ବୁଝି ଯିବା ଓ ଚଳିବିଚଳି ହେବାକୁ କେଉଁଠି କେଉଁଠି ଲୋକ ହରେଇ ଯାନ୍ତି । ମୋ ଦେହରେ ନା ଅଛି ବଳ, ମନରେ ନା ଅଛି ସାହସ, ନା ଅଛି ମାନଚିତ୍ର ଦେଖି ଯିବା ଆସିବା କରିବାର ଅଭ୍ୟାସ ।

ପୁଣି ଏସବୁ ଯାତ୍ରା ବ୍ୟୟବହୁଳ । ଅବଶ୍ୟ ବ୍ୟୟଭାର ଉର୍ଦ୍ଧ୍ୱିଲାଙ୍କ ମୁଣ୍ଡରେ । ସେମାନେ ଆମକୁ ଡକାଇ ଆଣିଛନ୍ତି । ହଁ, ଆଣିଛନ୍ତି ବୋଲି କଣ ନଦ ହୋଇ ପଡ଼ିବା ଭଲ ?

କହିଲ—ଗଲଥର ତୁମେ ବୁହେଁ ବୁଲାଇ ଦେଖାଇଥିଲ । ଗୋଟେ ଅଧେ ଜାଗାକୁ ମୁଁ ଏକୁଟିଆ ବି ଯାଇଥିଲି । ଏ ବୟସରେ ଆଉ ସମ୍ଭବ ନୁହେଁ । ବନ୍ଧୁବାନ୍ଧବ ଦେଖି ଫୋନ୍ କର । ସେମାନଙ୍କ ପାଖେ ରହିବୁ । ଯାହା ଦେଖାଇବାର ଦେଖାଇବେ; ଯାହା ନୋହିବ ନାହିଁ । ସେଇ ପ୍ରସ୍ତାବ କାର୍ଯ୍ୟକାରୀ ହେଲା ।

ଆମେରିକାରେ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନସବୁ ଅଛି—ସର୍ବଭାରତୀୟ ଓ ଉତ୍କଳୀୟ । ଗୋଟାକେତେ ଗୋଠଖଣ୍ଡି ଆଙ୍କୁ ବାଦ୍ ଦେଲେ ପ୍ରାୟ ସମସ୍ତଙ୍କ ପାଖେ ଛପା ଠିକଣା ଓ ଫୋନ୍ ନମ୍ବର ଥାଏ । ଅନ୍ତତଃ ବର୍ଷକେ ଥରେ ଅଧିକାଂଶ ଏକାଠି ହୁଅନ୍ତି । ଭାବ ବିନିମୟର ସୁବିଧା ମିଳେ । ଆପଦବିପଦରେ ପରସ୍ପରଙ୍କୁ

ସାହାଯ୍ୟ କରନ୍ତି । ଜେତା ପଣ୍ଡାଲେ ଏ ଟା ଘରେ, ସେ ସ୍ୱା ଘରେ ଅତିଥି ହୁଅନ୍ତି । ଏ ସ୍ୱଭବଟି ଭାରତୀୟତା ଓ ବଙ୍ଗାଳୀତ୍ୱତା ରକ୍ଷା କରିଛି । ବିଦେଶବାସରେ ଦୁଃଖ ଯଦି କିଛି ଥାଏ, ବନ୍ଧୁଭାବ ତାକୁ ଲଘୁତର କରେ ।

ବେଶୀ ଭାଗ ଭାରତୀୟ ଆମେରିକାରେ ସ୍ଥାୟୀ ବାସିନ୍ଦା । ଜୀବନରେ ଅଧେ ଭାରତରେ, ବାକୀତକ ଆମେରିକାରେ । ଭାରତରେ ଜାତ, ପାଳିତ, ପୋଷିତ, ଶିକ୍ଷିତ; ଉଚ୍ଚଶିକ୍ଷା ଲାଗି ସମାଗତ । ଆମେରିକା ଜୀବନର ସ୍ୱାଦୁତା ଏପରି ବାଇ କରିଛି ଯେ, ଭାରତକୁ ଫେରିଯିବାକୁ ନାରାଜ । ମନରେ ଅପରାଧୀ ମନୋଭାବ । ଜନ୍ମଭୂମି ଲାଗି କିଛି କର୍ତ୍ତବ୍ୟ କଲେ ଖୁସି ।

ପଶ୍ଚିମ ଆମେରିକାରେ ସ୍ଥାୟୀ ବାସିନ୍ଦା ଉଦୟପୁର ଶ୍ରେଣୀ ପଢ଼ୁଆସାଙ୍ଗ ଡାକ୍ତର ପ୍ରସନ୍ନକୁମାର ପତି । ଫୋନ୍‌ର ଉତ୍ତର ମିଳିଲା—ତୁ ମୋ ସାଙ୍ଗ, ତୋ ବଡ଼ଭାଇ ମୋ ବଡ଼ଭାଇଙ୍କ ସାଙ୍ଗ । ଆମର ସଂପର୍କ ସ୍ନେହର ସଂପର୍କ, ଅଚ୍ଛେଦ୍ୟ । ଭାଇନା-ଭାଉଜଙ୍କୁ ପଠାଇ ଦେ । ତୋ ଘରେ ଥିଲେ ଯାହା, ଏଠି ସେଇଆ, ଜାଣିବୁ ।

୨୪ । ୮ । ୮୪, ପୋର୍ଟଲାଣ୍ଡ୍ ଯାତ୍ରା । ସେଣ୍ଟ୍‌ଲୁଇସ୍‌ରୁ ଦୁଇହଜାର ମାଇଲ୍, ଚାରିଘଣ୍ଟାର ବାଟ । ଚାରିଆଡ଼େ ମିଛିମିଛିକା କିଛି; ମନରେ ବି ସେଇଆ । ଏତେବେଳ କେମିତି କଟାଇବି ? ଛୋଟ ଛୋଟ କବିତା ଲେଖିଲି—ସାମ୍ନା ଦୃଶ୍ୟର ବର୍ଣ୍ଣନା ବା ଆତ୍ମମାଳିକା ରଚନା ।

ଆମ ଭ୍ରମଣ ଏକ ଦ୍ରୁତ ଭ୍ରମଣ; ଆକାଶପଥରେ ଯାତ୍ରା । ବର୍ତ୍ତୁଳାକାର ଗତିପଥ । ମୋଟ ବାରୋଟି ସହର ଦେଖିବୁ । ଗୋଟିଏ ସହରରେ ଏକାଧିକ ଥର ଓହ୍ଲାଇ ପାରିବୁ ନାହିଁ । ଟି. ଡବ୍ଲ୍ୟୁ. ଏ. ବ୍ୟୋମ କମ୍ପାନୀର ନିୟମ ଏଇଆ । ଆମେରିକା ଭିତରେ ଭ୍ରମଣ ଲାଗି ଦୁଇଟି ଟିକେଟ୍‌କୁ ପଡ଼ିଛି ମୋଟ ବାରହଜାର ଟଙ୍କା । ଆଗରୁ ଏ ଟିକେଟ୍ ଭୁବନେଶ୍ୱରରେ ନ କରିଥିଲେ ଆମକୁ ଚତୁର୍ଗୁଣ ଖର୍ଚ୍ଚ କରିବାକୁ ପଡ଼ିଥାନ୍ତା । ଦୂରଯାତ୍ରୀଙ୍କ ଲାଗି ଏ ଏକ ଶସ୍ତା ଓ ସୁବିଧାଜନକ ବ୍ୟବସ୍ଥା ।

ନିରାମିଷ ଖାଦ୍ୟ ବରାଦ୍ କରିଛୁ । ଆମକୁ ମିଳିଲା ଚାରି ପାଞ୍ଚ ଚାମୁଚ ଭାତ, ବାଇଗଣ ଟମାଟୋ କାକୁ କସ୍‌ମିସ୍ ତରକାରି, କିଛି ଅଙ୍ଗୁର ଆଉ ମୋଜାମ୍ବିକ୍ ।

ମିସିସିପି ନଦୀ କୂଳରେ ଆକାଶକୁ ଉଠିଲୁ, ରକି ପର୍ବତମାଳା ପାରି ହୋଇ କଲମ୍ବିୟା ନଦୀ କୂଳେ ପହଞ୍ଚିଲୁ । ଏଇ ନଦୀ କୂଳେ ବିଶାଳ ପୋର୍ଟଲାଣ୍ଡ୍

ନଗର, ଓରେଗଁ ରାଜ୍ୟର ବୃହତ୍ତମ ନଗର । ଡାକ୍ତର ପ୍ରସନ୍ନ ପତି ୭୧ ନମ୍ବର ଗେଟ୍‌ରେ ଆମ ଅପେକ୍ଷାରେ ଛିଡ଼ା । ଆମକୁ ଅତି ଆଦରରେ ନେଇଗଲେ ତାଙ୍କ ଯାପାନୀ 'ନିଶାନ୍' ଗାଡ଼ିକୁ । ସେ ପୋର୍ଟଲାଣ୍ଡ୍‌ରେ ରହନ୍ତି ନାହିଁ, ରହନ୍ତି ଏଠାରୁ ୫୦ ମାଇଲ୍ ଦୂରବର୍ତ୍ତୀ ଅପେକ୍ଷାକୃତ କ୍ଷୁଦ୍ର ସହର, ଓରେଗଁର ରାଜଧାନୀ ସାଲେମ୍‌ରେ । 'ସାଲେମ୍' ହିବ୍ରୁ 'ସାଲୁମ୍' ଶବ୍ଦରୁ ଅପଭ୍ରଷ୍ଟ । ଏହାର ଅର୍ଥ ଶାନ୍ତି ।

ପତି ସମ୍ବଲପୁରୀ ଓଡ଼ିଆ । ଆମେରିକାର କୌଣସି ବାସିନ୍ଦା ତୁଣ୍ଡରୁ ଏପରି ଖାଣ୍ଟି ଓଡ଼ିଆ ଭାଷା ଶୁଣିଛ ? ସେ ନିଜ ଜାତୀୟ-ସଂସ୍କୃତିକି ଅବିକଳ ରଖିଛନ୍ତି । ସେ ସାପ୍ତାହିକ 'ସମାଜ' ପଢ଼ନ୍ତି, କିଛି କିଛି ଓଡ଼ିଆ ବହି ବି ପଢ଼ନ୍ତି । ଓଡ଼ିଆ ରେକର୍ଡ଼ ଶୁଣନ୍ତି । ଦୃଢ଼ ଜାତୀୟତାବୋଧ ଯୋଗୁଁ ଓଡ଼ିଆ ଭାଷା ବଞ୍ଚିଛି ତାଙ୍କ ତୁଣ୍ଡରେ ।

ଆମେରିକାର ଏକମାତ୍ର ବ୍ରାହ୍ମଣ ସନ୍ତାନ, ଯେ କାନ୍ଧରେ ପଇତା ରଖିଛି । ବ୍ରାହ୍ମଣର ନିତ୍ୟକର୍ମ କିଛି କିଛି ପାଳୁଛି । ପୁରୋହିତୀ ଧର୍ମକର୍ମରେ ସୁନିପୁଣ ।

ପ୍ରସନ୍ନ ସାଲେମ୍‌ର ପ୍ରଥମ ଭାରତୀୟ । ୧୯୬୮ରେ ଆସି ଏଠି ରହିଲେ । ନିମାନ୍ତ୍ରିରେ ଏଇ ଗୋଟିଏ ସ୍ଥାନରେ ୨୫ ବର୍ଷରୁ ଅଧିକ କାଳ କଟାଇ ସାରି-ଲେଣି । ଏବେ ଶତାଧିକ ଭାରତୀୟ ଆସି ଏଇ ସହରରେ ବସବାସ କଲେଣି ।

ପ୍ରସନ୍ନ ସ୍ୱନାମ ସାର୍ଥକ କରିଛନ୍ତି । କଳି ଷଠା ଷାଠିଏ ପୂରିବାକୁ କିଛି ବାକୀ, ମେଜାଜ୍‌କୁ ସ୍ଥିର, ଶାନ୍ତ, ସ୍ନିଗ୍ଧ ରଖି ପାରିଛନ୍ତି । ପାଶ୍ଚାତ୍ୟ ସଂସ୍କୃତି ତାଙ୍କୁ ପ୍ରଭାବିତ କରିଛି, କିନ୍ତୁ କବଳିତ କରି ପାରିନାହିଁ । ତାଙ୍କ ଉପରେ ଏତେ ଝଡ଼ ଝଞ୍ଜା ବୋହିଯାଇଚି, ଚେହେରା ଦେଖିଲେ କେହି ବୁଝି ପାରିବେ ନାହିଁ । ତାଙ୍କ ମନର ବନସ୍ପତିକି ସେ ଅକ୍ଷୁଣ୍ଣ ରଖିଛନ୍ତି, ହୁଏତ ଏହା ଜୋର୍‌ରେ ଦୋହଲି ମାରିଥିବ, ଏଠୁ ସେଠୁ କେଉଁଟା ଫୁଲ, ପତ୍ର ଝଡ଼ି ପଡ଼ିଥିବ, କିନ୍ତୁ ଗଣ୍ଡି ତ ଦୂରର କଥା, ଶାଖା ପ୍ରଶାଖାରେ ବି କିଛି ଆଞ୍ଚୁଡ଼ା ଦାଗ ଥିବାର ଜଣା ଯାଉନାହିଁ ।

ହୁଏତ ଗମ୍ଭୀର ଲୋକ; ମନ ଗମ୍ଭୀରର କଥା ପଦାକୁ ଫୁଟିପଡ଼େ ନାହିଁ; କଳ କୋଉଠି କିଛି ଅସଜ ହୋଇନାହିଁ ; ପାଗ ବିଗିଡ଼ି ଯାଇ ନାହିଁ; ଦେଖିଲେ ବୋଧହୁଏ । ସଂସାରୀ ମାତ୍ରେ ଜଞ୍ଜାଳୀ, କଷ୍ଟୀ, ଦୁଃଖୀ; ସୁଖ ସୌଖୀନ ଭାବରେ କେତେଜଣଙ୍କର ଜୀବନ ବା ଗତି କରେ ?

'ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି ।'

ବାର୍ଦ୍ଧକ୍ୟ କଷ୍ଟକର ହୋଇ ଲାଭ କ'ଣ ? ଅଧିକ ଦେହ ଦରଜ ହେବ ସିନା, ଆଉ କିଛି ଫଳ ନାହିଁ । ଏ ତାଙ୍କ ଅନୁଭୂତି—ଜୀବନ ଦର୍ଶନ । ତାଙ୍କ ପକ୍ଷେ ଆଉ କୋଉ ବାଟ ବା ଖୋଲା ଥିଲା ?

ସୁଖୀ ହେବାକୁ ମଣିଷ ଚେଷ୍ଟା କରେ, ସେ କରିଛନ୍ତି । କିନ୍ତୁ ସେ କଣ କାହା ହାତର କଥା ?

ହୁଏତ ବିବେଚନା ଭୁଲ୍ ହୋଇଯାଏ, ତୃତୀୟ ଶକ୍ତି ହସ୍ତକ୍ଷେପ କରି ସବୁ ଓଲଟ ପାଲଟ କରିଦିଏ, ସେହି କାରସାଦି ସାମ୍ନାରେ ସେ ପର୍ବତ ପରି ଛିଡ଼ା ହୋଇଛନ୍ତି । ଦୁଶ୍ଚିନ୍ତା ତାଙ୍କୁ ଅଥର୍ବ କରି ଦେଇ ନାହିଁ । ବାଧାବିଘ୍ନ ବିପଦକୁ ସେ ବୋରଝାର୍ଡ଼ି ପରି ଆଡ଼େଇ ଦେଇ ଦୁସ୍ତର ଖାଲଖମାମାନ ଅତିକ୍ରମ କରି ଚାଲିଛନ୍ତି । ବୀର ନାୟକ ଜଣେ ସେ, ବୀରତ୍ୱର ସ୍ୱୀକୃତି କେହି ନ ଦେଲେ ବି ।

ତାଙ୍କ ପ୍ରଥମା ସ୍ତ୍ରୀ ଜଣେ ନର୍ସ । ପତିଙ୍କ ହାତରେ ଦୁଇଟି କନ୍ୟା ଉପହାର ଦେଇ ସେ ଅକାଳେ ବିଦାୟ ନେଲେ । ତାଙ୍କ ଦ୍ୱିତୀୟା ସ୍ତ୍ରୀ ମଦ୍ୟପା । ଘର ବୁଡ଼ି ପାଣି ଆଣ୍ଠୁଏ ହେଲା, ସଂସାର ଉବେଇ ଟୁବେଇ ହେଉଥିବା ବେଳେ ପ୍ରସନ୍ନ ତାଙ୍କୁ ଛାଡ଼ପତ୍ର ଦେଲେ । ଫଳରେ ନିଜେ ସମ୍ଭାଳି ପଡ଼ିଗଲେ । ତାଙ୍କ ସମ୍ପର୍କ ସ୍ୱରୂପ ରହିଗଲା ଗୋଟିଏ ପୁଅ; ପ୍ରସନ୍ନଙ୍କ ଦାୟିତ୍ୱରେ ।

ସେ ଛିନ୍ନ ସଂସାରକୁ ଏବେ ଯୋଡ଼ିଛନ୍ତି ତୃତୀୟଥର ପାଇଁ । ତାଙ୍କ ତୃତୀୟ ସ୍ତ୍ରୀଙ୍କ ନାମ ନର୍‌ମା । ପିଲାପିଲି ନାହିଁ । ସଉତୁଣୀର ପିଲାମାନଙ୍କୁ ସେ ନିଜର କରି ପାରିଛନ୍ତି—ତାଙ୍କ ଉଦାରତା ମହନୀୟ ।

ପତିଙ୍କ ଭିନୋଟିଯାକ ସ୍ତ୍ରୀ ଆମେରିକୀୟା । ଆମ ପରି ଗଲା ଅଇଲାଙ୍କୁ ନର୍‌ମା କି ଦୃଷ୍ଟିରେ ଦେଖିବ—ସଙ୍କୋଚ, ଶଙ୍କା । ଗୁରୁ ଗମ୍ଭୀର ହୋଇ ଦୂରେଇ ରହିବ ନାହିଁ ତ ? ଆମକୁ ଆପଣାର କରି ନେବ ତ ? ତା ନ ହେଲେ ଘରଣୀ ବାଁ ଖାଡ଼ିଆ ଦେଇ କୁଆଡ଼େ ବୁଲୁଥିବ, ଆମେ ହରି ଭଜୁଥିବୁ ।

କିନ୍ତୁ ଆମ ଆଶଙ୍କା ପାଣି ଫାଟିଗଲା ନର୍‌ମାର ବ୍ୟବହାର ଦେଖି । ମନ କୋମଳ, ସ୍ନେହଶୀଳ । ଅତିଥିଙ୍କ ସୁବିଧା ଅସୁବିଧା ବୁଝିବାକୁ ସଦା ଆଗଭର ।

ବନ୍ଧୁ ଘରକୁ ଖାଲି ହାତରେ ଯିବାର ନୁହେଁ । ଆଗରୁ ଗାଁଉଁଲି ରୀତି—ବାଇଗଣ ବିଶାଏ, ସଜନା ଛୁଇଁ ବିଡ଼ାଏ, ନଇଲେ ପିଲାଙ୍କ ଲାଗି କୋରାଖଇ, ଚୂଡ଼ାପୁଆ, ଗୁଡ଼ ଖଇ, ମଲି କୋରା, ଗଜା, ଖଜା ବା ଜଲବି । ଏବେ ଖାଲି

ହାତରେ କଲମ ଧରି, ଯାଇ ପହଞ୍ଚି ଯାଉଛନ୍ତି—ଅଳିଆ ଲେଖାରେ ବାଳିଆ ବନ୍ଧୁ। ଆମ୍ଭଙ୍କୁ ଚର୍ଚ୍ଚା କର !

ଆମେରିକାରେ କିନ୍ତୁ ଏ ଦେବା ନେବା ରୀତି ଖୁବ୍ ଚଳେ। "ଦିଆକୁ ଦିଆ, ଅଦିଆକୁ ଦୁଆର ଦିଆ"। ଇଗ୍ନି ନର୍ମାକୁ ଆମ ହାତରେ ଉପହାର ପଠାଇ ଥିଲି—କେତୋଟି ଟେବୁଲ୍ ମ୍ୟାଟ୍; ହାତୀ ମୁଣ୍ଡ, ବୃଷଭ ମୁଣ୍ଡ, ପିଲାଙ୍କ ଲାଗି କିଛି କାଣ୍ଡି, ଖଣ୍ଡିଏ ଚଟି—ସେଥିରେ ମୋ ଖାଦ୍ୟରୁଚି, ଫଳପ୍ରିୟତା, କବି ଯଶ-ପ୍ରତିଷ୍ଠାର ସୂଚନା। ତା ଛଡ଼ା ଏକ ଖାଦ୍ୟପ୍ରସ୍ତୁତି ବିଷୟକ ପୁସ୍ତକ—ନର୍ମା ଏ ପ୍ରକାର ପୁସ୍ତକକୁ ଭଲପାଏ ବୋଲି। ଏସବୁ ବ୍ୟତୀତ ଉଦ ପ୍ରସନ୍ନଙ୍କ ନିକଟକୁ ପଠାଇଥିଲି ମୋ ରଚିତ କେତେକ ବହି। ସେମାନେ ତୁମର ଏତେ କରିବେ; କିଛି ହେଲେ ଶୋଧ କର। ଉଭୟଙ୍କ ମନରେ ଏହି ଭାବ। ଜିନିଷ ଭଲ ଲାଗିଲା, ବୁଝିଲି ଉଭୟଙ୍କ ପ୍ରସନ୍ନତାରୁ। ଅବଶ୍ୟ ସେମାନଙ୍କ ଯୋଗ୍ୟ ଉପହାର ଏ ନୁହେଁ। କିନ୍ତୁ ଜିନିଷ ଅପେକ୍ଷା ଦେବା ମନୋବୃତ୍ତି ହିଁ ବଡ଼।

ନର୍ମାଙ୍କ ସ୍ୱାସ୍ଥ୍ୟ ଦେଖି ମନ କଣ ହୋଇଗଲା। ବହଳିଆ ମାଂସ ବାହାରେ ଥଲ୍ ଥଲ୍। ଚାଲୁଛି ସଁ ସଁ ହୋଇ, ବଡ଼ କଷ୍ଟରେ। ଏ ଦୁରବସ୍ଥା କାହିଁକି ଘଟିଲା ? ଆମେରିକା ତ ଅତି ସ୍ୱାସ୍ଥ୍ୟସଚେତନ !

ନିଶ୍ଚୟ ଅସତର୍କତା, ଅସାବଧାନତା ଏହା ପଛରେ ଅଛି। ଦିନଟିଏ ରହିଲି ପରେ ଲକ୍ଷ୍ୟ କଲି—ଅପରିମିତ ଖାଦ୍ୟ ଲାଳସା !

ଆହାରରେ ଅସଂଯମ, ଶାରୀରିକ ଶ୍ରମର ଅଭାବ ଏ ଦୁର୍ଦ୍ଦଶାରେ ଆଣି ପହଞ୍ଚାଇଛି। ସେ କ'ଣ ପଢ଼ୁନାହିଁ, ଶୁଣୁନାହିଁ ? ନିଜ ଦୁଃଖକଷ୍ଟ ବୁଝି ପାରୁନାହିଁ ? ଅଥବା

'ଚେଇଁ ଶୋଇବ ଯେ

ତାକୁ ଉଠାଇବ କେ ?'

ଏଇ ଅବସ୍ଥାରେ ନର୍ମା କଷ୍ଟ ପଡ଼ି ରାନ୍ଧିବ, ଆମେ ଖାଇବୁ ? ବୁଝିବୁ, ବୁଝିବୁ, ସେ ଗୋଟିଏ ପାଠାଗାର କରିଛି ! କି ବହି ? ରନ୍ଧା ବହି ! ପାଠାଗାର ତମାମ୍ କେବଳ ଖାଦ୍ୟ ପ୍ରସ୍ତୁତ ପ୍ରଣାଳୀ ବିଷୟକ ବହି। ଚେର ମୂଳ ଚାଉଳ କଞ୍ଚା ମାଉଁସ ପୋଡ଼ି ଖାଇବା ଦିନରୁ ଅଦ୍ୟାବଧି ଯେତେ ପ୍ରକାର ଖାଦ୍ୟ ଯୋଉ ଦେଶରେ ରନ୍ଧା ଯାଇଛି, ତାର ପ୍ରସ୍ତୁତ ରୀତି ତାଲିକା ଏଠି ସୁସଂଗୃହୀତ ହୋଇଅଛି। ରନ୍ଧା ନର୍ମାର ଗୋଟିଏ ବିନୋଦନ, ସ୍ୱାଦୁ ଓ ବିଚିତ୍ର ଖାଦ୍ୟ ଗବେଷଣାରେ ତାର କାଳ କଟେ।

ମନରେ ସମବେଦନା । ଲତା ତାଙ୍କୁ ସାହାଯ୍ୟ କରିବା ପାଇଁ ହ୍ୱାଣ୍ଡି-ଶାଳରେ ପଶିଲା । କିନ୍ତୁ ନର୍‌ମା କୁଟିଆକୁ ଖଟାଇବାକୁ ନାରାଜ ।

ପ୍ରସନ୍ନଙ୍କୁ ସେ ପୃଥିବୀର ବହୁ ଦେଶର ଖାଦ୍ୟର ସ୍ୱାଦ ଚଖାଇଛୁ, କିନ୍ତୁ ତା ନିଜ ଦେଶର ଖାଦ୍ୟ ଚଖାଇ ପାରିନାହିଁ । ପ୍ରସନ୍ନ ରନ୍ଧନରେ ଅପାରଗ । ସ୍ୱଦେଶର ରନ୍ଧା ରୀତି ଶିଖାଇ ପାରି ନାହାନ୍ତି । ନର୍‌ମା ଲତାଠାରୁ ଓଳିଗୀ ବେସର, ମହୁର, ଆମ୍ବିଳ, ରାଇତା ଶିଖିଲା ।

**ଷଷ୍ଠି ଜୟନ୍ତୀ**

ଷଷ୍ଠି ଜୟନ୍ତୀ ଘରେ ପଡ଼ୀ ପାଳିଲ; ଭ୍ରମଣରେ ଥିଲେ ହୋଟେଲ୍ ପାଳେ, ସଙ୍ଗୀ ସଙ୍ଗିନୀମାନଙ୍କୁ ସାଧାରଣ ଖାଦ୍ୟ ବ୍ୟତୀତ ଏକ ସ୍ୱତନ୍ତ୍ର ଖାଦ୍ୟ ପ୍ରସ୍ତୁତ କରି ଖୁଆଏ । ଅବଶ୍ୟ ବ୍ୟୟଭାର ଜାତକର ।

ଭାରତରେ ଗରିବ ମାଆ ପିଲାର ଜନ୍ମଦିନ ପାଳି ପାରେ ନାହିଁ । ହାତରେ ଧନ ନ ଥାଇ ସୁଖ ଶିରଧାକୁ ମନ କରିବା ବୃଥା ।

କବି, ନେତା ବା ଧର୍ମ ପ୍ରତିଷ୍ଠାତାଙ୍କ ଜୟନ୍ତୀ ଦେଶ ପାଳେ, ଜନ୍ମଦିନ ମାନେ ଉତ୍ସବର ଦିନ । କିନ୍ତୁ ପାଳିବାର ସଙ୍ଗତି କାହିଁ ? ଅଧିକାଂଶ ଲୋକ ଦୁଃଖୀ । ସାରା ଜୀବନ ଖଡ଼ା ବଡ଼ି ଯୋଡ଼ ।

ନର୍‌ମା ପ୍ରସନ୍ନଙ୍କର ଜନ୍ମଦିନ ପାଳେ । ସେଇ ଉପଲକ୍ଷେ ଆଜ ଭୋଜି । ନିମନ୍ତ୍ରିତ ମାତ୍ର ଦୁଇଟି ପରିବାର, ପ୍ରସନ୍ନଙ୍କ ସହିତ ସ୍ନେହ ସମ୍ପୃକ୍ତ ।

ପ୍ରୀତମ୍ ପଞ୍ଜାବୀ ହିନ୍ଦୁ, ମନୋବିଜ୍ଞାନ ଅଧ୍ୟାପକ । କୁନ୍ଦନ୍ ଗ୍ରେହମ ଗୁଜୁରାଟୀ, ଉଭୟ ବିବାହିତ । ପ୍ରଣୟରୁ ପରିଣୟ ହୋଇଥିଲା । ପ୍ରଣୟ ଭାଙ୍ଗିଲା, ତା ପଛେ ପଛେ ପରିଣୟ । ପ୍ରୀତମ୍‌କୁ ଆମେରିକା ଝିଅ ଗ୍ରୁଡ଼ପତ୍ର ଦେଇଥିଲା । ସେହିପରି କୁନ୍ଦନ୍‌କୁ ତାର ଗୁଜୁରାଟୀ ପତି । ଉଭୟେ ଘୋର ଅସୁବିଧା ମଧ୍ୟରେ ଗତି କରୁଥିଲେ । ଆମେରିକୀୟ ଦୃଷ୍ଟିରୁ ବିବାହ ବୟସ ତାର ନଥିଲା । ଜଣକ ବୟସ ୫୦, ଆଉ ଜଣକର ୪୦, ସ୍ୱାସ୍ଥ୍ୟ ଅତ୍ୟୁତ୍ତମ । ହିନ୍ଦୁ ରୀତିରେ ବିବାହ ହେଲା । ପୁରୋହିତ ପ୍ରସନ୍ନ । ତାଙ୍କ ଅଜା କବି ସ୍ୱପ୍ନେଶ୍ୱର ପୁରୋହିତ ଥିଲେ । ପୁରୋ-ହିତରେ ଲଜ୍ଜା ସଂକୋଚ କଣ ? ସେଥିରେ ଉଚ୍ଚ ଆସନ କ୍ଷୁଣ୍ଣ ହୁଏ ନାହିଁ । ଡାକ୍ତରୀ ବୃତ୍ତିରେ ବ୍ୟାଘାତ ଜନ୍ମେ ନାହିଁ । ବରଂ ଅସମୟରେ ସାହାଯ୍ୟ କରାଗଲା । ହିନ୍ଦୁ ସମାଜର ଉପକାର କରାଗଲା । ବ୍ରାହ୍ମଣ ପୁରୋହିତ ଜଣେ ଆମେରିକାରେ ସହଜରେ ମିଳିବ କାହୁଁ ?

ଏ କଲ୍ୟାଣକର କାର୍ଯ୍ୟ ଫଳରେ ପ୍ରସନ୍ନଙ୍କ ସମ୍ମାନ ବଢ଼ିଛି । ସେ ପଶ୍ଚିମ ଆମେରିକାରେ ଲୋକପ୍ରିୟ ହୋଇ ଉଠିଛନ୍ତି ।

କିନ୍ତୁ 'ବସ୍ତ୍ରାଗ୍ରେ ସ୍ୱର୍ଣଂ ଦଦ୍ୟାତ୍' ଶୈଳୀରେ ଯାହିତାହି କାମ ଚଳେଇବା ଲୋକ ସେ ନୁହନ୍ତି । ବହି ଉଧାରାର ଆସନରେ ବସି ପ୍ରଜାପତି ସମ୍ବନ୍ଧ ସ୍ଥାପନ କାର୍ଯ୍ୟ ଏ ।୦ ଠା ଠି କରି ଗୋଳିଆପୋଳିଆ କରିଦେଲେ ବରକନ୍ୟାଙ୍କର ଅକଲ୍ୟାଣ ଘଟିପାରେ ।

ହାତଗଣ୍ଠି ବୋଇଲେ ଯାହିତାହି ଗଣ୍ଠା ଗଣ୍ଠି ନୁହେଁ ଯେ ଭିଡ଼ିଦେଲେ ଫିଟିଯିବ । ଏ ଏକ ବଜ୍ର ଗଣ୍ଠି । ଛିଣ୍ଡାଇଲେ ଦେବ ଛିଣ୍ଡାଏ ସିନା, ମଣିଷ ନୁହେଁ । ହିନ୍ଦୁ ସମାଜରେ ବିବାହ ଅର୍ଥ ସାରା ଜୀବନ ଲାଗି ଏକ ନିବିଡ଼ ବନ୍ଧନ । ଏହି ଦୃଢ଼ ଗ୍ରନ୍ଥି ଲାଗି ପୂର୍ବପୁରୁଷମାନେ ଯେଉଁସବୁ ମନ୍ତ୍ର ଗୁଡ଼ି ଯାଇଛନ୍ତି, ସେସବୁ ଋଷି ବାକ୍ୟ, ଅଲଙ୍ଘନୀୟ । ନିର୍ଦ୍ଦିଷ୍ଟ ମନ୍ତ୍ର ନ ପଢ଼ିଲେ କିମ୍ବା ଉଚ୍ଚାରଣରେ ଭୁଲ୍-ଇଟକା କଲେ ଦୋଷ ପୁରୋହିତ ମୁଣ୍ଡରେ ଯାଏ । ପ୍ରସନ୍ନ ଆଧୁନିକ ହେଲେ ହେଁ ମନରେ ସେ ଭୟ ନାହିଁ, କୁହାଯାଇ ନ ପାରେ ।

ତେଣୁ ସମ୍ବଲପୁରର ଜଣେ ପୁରୋହିତଙ୍କଠାରୁ ବିବାହ ମନ୍ତ୍ର ମଗା ହେଲା । ପୁରୋହିତେ ସେ ବାବଦକୁ ୫ ଡଲାର୍ ନେଲେ ।

ଲସ୍ ଆଞ୍ଜେଲସ୍‌ରେ ବିବାହବେଦୀରେ ରୀତିମତ ବିବାହମନ୍ତ୍ର ବୋଲା ହେଲା । ଇଂରାଜୀରେ ତାର ଅର୍ଥ ଉପସ୍ଥିତ ଅତିଥିମାନଙ୍କୁ ବୁଝାଇ ଦିଆଗଲା । ବହୁ ବଡ଼ ବଡ଼ କାଣ୍ଡଲ୍ ଏକାଠି କରି ଜଳାଇ ଦିଆହେଲା । ଏ ହେଲା ଅଗ୍ନିଶିଖା, ପରିବେଶରେ ଦେବତା ସାକ୍ଷୀ । କାଠ ଘରେ ହୋମାଗ୍ନି ପ୍ରଳୟକାଣ୍ଡ ଘଟାଇ-ପାରେ । ସେ ଶଙ୍କାରେ 'ଯେ ଦେଶେ ଯାଇ, ସେ ଫଳ ଖାଇ' ରୀତିରେ କାମ ଚଳାଇ ଦିଆଗଲା । ଦିଜଣ ବୟସ୍କ ହିନ୍ଦୁ ଭାରତୀୟ ବର ପିତା ଓ କନ୍ୟାପିତାର ଆସନ ଗ୍ରହଣ କରିଥିଲେ ।

ପରିର ସୁଖଦୁଃଖରେ ସଙ୍ଗିନୀ ହେବ, ପରିବାରର ଅନ୍ୟମାନଙ୍କ ମତ ଘେନି ଚଳିବ—କୁନ୍ଦନ ସଙ୍କଳ୍ପ କଲା । ପ୍ରୀତମ ମଧ୍ୟ କୁନ୍ଦନକୁ ସବୁମତେ ସୁଖୀ କରିବ, ସଙ୍କଳ୍ପ କଲା । ଦି ଜଣଙ୍କ ଆଗ ବିବାହର ପିଲା କୋଠପିଲା ହୋଇ ରହିଲେ । ଦୁଃଖର ଲୋଦରୁ ସୁଖର ସଂସାରଟିଏ ଗଢ଼ା ହେଲା ।

ଦ୍ୱିତୀୟ ପରିବାର । କାନ୍ତା ଶିଖ ଝିଅ, ପ୍ରେମ ହିନ୍ଦୁ ପ୍ରୌଢ଼ । ପ୍ରେମ ଲୁଆ ସ୍ଥାନୀୟ ବିଶ୍ୱବିଦ୍ୟାଳୟରେ ଇଂରାଜୀ ଭାଷା ଓ ସାହିତ୍ୟ ଅଧ୍ୟାପକ । କାନ୍ତା ବହୁ କାଳ

ଯଶ ଗୃହକର୍ତ୍ତା ଅନୁସନ୍ଧାନରେ ଅଛନ୍ତି, ପାଇନାହାନ୍ତି । ଏଠି ବଡ଼ ବ୍ୟସ୍ତ । ଜଣକ ରୋଜ-ଗାରରେ ସବୁ କ୍ଷେତ୍ରରେ ସଂସାର ଚଳାଇ ହୁଏ ନାହିଁ । ଟଣା ଓଟରା ପଡ଼େ । କିଛି ଧନ୍ଦା ନ ପାଇଲେ ସ୍ତ୍ରୀ ଘରେ ଏକୁଟିଆ କାଳ କଟାଇବା ବିରକ୍ତିକର ।

ଏଇ ଦୁଃସହ ପରିସ୍ଥିତିରୁ ରକ୍ଷା ପାଇବା ଲାଗି କାନ୍ତା ଲେଖିଛି ଉପନ୍ୟାସ —ବିଷୟ—ଭାରତର ସ୍ୱାଧୀନତା ସଂଗ୍ରାମ, ବିଦେଶୀ ଶାସନରୁ ମୁକ୍ତି ଓ ଉତ୍ତରାବସ୍ଥା ଦେଶ ବିଭାଜନ । ପ୍ରକାଶକ ମିଳୁନାହାନ୍ତି—କାନ୍ତାର ଦୁଃଖ । ତା ହେଲେ ଆଉ ଲେଖିବ କାହିଁକି ? ନ ଲେଖି ଆଉ କଣ ବା କରିବ ?

ବୋଧ ଦେବା ଲାଗି କହିଲି—ଲେଖକର ଜୀବନ, ପୃଥିବୀରେ ସବୁଠି ଏକାପରି କହିଲେ ଚଳେ । ଏହା ଏକ କଠୋର ସଂଗ୍ରାମ, ଲେଖିବା ଦୁଃଖ, ଉତ୍ତରିବା ଦୁଃଖ, ଛପାଇବା ଦୁଃଖ, ପ୍ରୁଫ୍ ଦେଖିବା ଦୁଃଖ, ବିକ୍ରୀ ନ ହେଲେ ଦୁଃଖ, ପ୍ରକାଶକ ହାତଉଞ୍ଚା ଶ୍ରମର କିଛି ହେଲେ ମୂଲ୍ୟ ନ ଦେଲେ ଦୁଃଖ ।

ଦଶ ମାସ ଗର୍ଭରେ ଧରିବା ଦୁଃଖ । ସନ୍ତାନ ଜନ୍ମ ହେବା ପରେ ମାଆର ଦୁଃଖ ଶେଷ ହୁଏ ନାହିଁ । ପୋଷିବା ପାଳିବା ଦୁଃଖ ପରି ଲେଖକର ବହୁ ଦୁଃଖ । ସୃଷ୍ଟି ଆନନ୍ଦରେ ସେ ସବୁ ଦୁଃଖ ଭୁଲେ । ଆପଣଙ୍କ ପ୍ରୟାସ······

ପ୍ରସନ୍ନଙ୍କ ଓଡ଼ିଆ ରେକର୍ଡ଼ ଗୀତରେ ଆମ ସଂଳାପ ବନ୍ଦ ହୋଇଗଲା । କେତେ ପ୍ରୀତି ଗୀତ, ଭଜନ ଗୀତ ପରେ ଭୋଜନ ପର୍ବ । ଭୋଜନ ପରେ ବିଶ୍ରାମ । ବିଶ୍ରମ୍ଭାଳାପ । ଅଧ୍ୟାପକ ପ୍ରେମ ଲୁଥ୍ରା ମୋତେ ପଚାରିଲେ—ଭାରତୀୟ ସଂସ୍କୃତିକୁ ଓଡ଼ିଶା କି ଦାନ ଦେଇଛି ?

କହିଲି—ଆପଣ ଜଣେ ଅଧ୍ୟାପକ, ଭାରତୀୟ । ଆପଣ ଏ ସମ୍ପର୍କରେ କିଛି ଜାଣନ୍ତି ନାହିଁ, ସେଇ ମୋର ଦୁଃଖ ।

ଓଡ଼ିଶା-ଭାରତୀୟ ଇତିହାସର ମୋଡ଼ ବଦଳାଇ ଦେଇଛି । ବିଶ୍ୱସଂସ୍କୃତିର ଗତି ମଧ୍ୟ । ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇ ବୌଦ୍ଧ ଧର୍ମ ପ୍ରଚାରରେ ନେତୃତ୍ୱ ନେବା ଭାରତୀୟ ଇତିହାସର ଏକ ବୈପ୍ଳବିକ ଘଟଣା, ଏ ଦିଗରେ ଓଡ଼ିଶାର ଦାନ ସର୍ବସ୍ୱୀକୃତ ।

ତାପରେ ଖାରବେଳ, ଅନଙ୍ଗଭୀମ, ନରସିଂହ, କପିଳେନ୍ଦ୍ର ଦିଗ୍‌ବିଜୟୀ ସମ୍ରାଟ । ଚୋଡ଼ଗଙ୍ଗ, ଲଲାଟେନ୍ଦୁ, ନରସିଂହ ପୁରୀ, ଭୁବନେଶ୍ୱର ଓ କୋଣାର୍କ ପ୍ରଭୃତି ବିଶ୍ୱପ୍ରସିଦ୍ଧ ମନ୍ଦିରର ନିର୍ମାତା ।

ତାର ଓଡ଼ିଶୀ ନୃତ୍ୟ, ଛଉ ନୃତ୍ୟ, ପୋଥି ଚିତ୍ର, ଭିତ୍ତିଚିତ୍ର, ସ୍ଥାପତ୍ୟକଳା ମଧ୍ୟ ଜଗତ୍ ପ୍ରସିଦ୍ଧ ।

ତାର ଲୋକସାହିତ୍ୟ ଯେ କୌଣସି ଭାରତୀୟ ଓ ବିଦେଶୀୟ ଲୋକ-ସାହିତ୍ୟ ସହିତ ଟକ୍କର ଦେବାକୁ ସମର୍ଥ ।

ପୃଥିବୀର ସଂସ୍କୃତିକୁ ତାର ସର୍ବଶ୍ରେଷ୍ଠ ଦାନ ଜଗନ୍ନାଥ । ବିଶ୍ୱମୈତ୍ରୀ ଓ ପ୍ରୀତିର ପ୍ରତୀକ ସେ । ସର୍ବଧର୍ମ ସମନ୍ୱୟ ଚେଷ୍ଟା ପୁରୁଷୋତ୍ତମ କ୍ଷେତ୍ରରେ ସର୍ବାଧିକ ଓ ଏବେ ଅବ୍ୟାହତ । ବ୍ରାହ୍ମଣ ଚଣ୍ଡାଳ, କଳାଗୋରା ଭେଦ ଜଗନ୍ନାଥ ସଂସ୍କୃତି ସ୍ୱୀକାର କରେ ନାହିଁ ।

## ଦୂର ସୁନ୍ଦର

ଦୂର ବନ୍ଧୁ ସୁନ୍ଦର, ଦୂର ପର୍ବତ ସୁନ୍ଦର, ସୁଦୂରର କଚ୍ଛ କଚ୍ଛିକା, ମିଚ୍ଛି-ମିଚ୍ଛିକା ସୁନ୍ଦର । ଅରଣ୍ୟ ଦୂରରୁ ସୁନ୍ଦର, ପାଖରୁ ସୁନ୍ଦର । ସେ ଏଇ ଡଉଗ୍‌ଲାସ୍ ପାଇନ୍ ବନ; ଘନଘଞ୍ଚ, କଣ୍ଟା କଣ୍ଟାଝଣ୍ଟା ନାହିଁ, ବାଘଭାଲୁ ନାହାନ୍ତି, ବିଷାକ୍ତ ସାପ ବି । ବିପୁଳ ଗଭୀର ଅରଣ୍ୟ ଉଦ୍ୟାନ ପରି ଭୟଶୂନ୍ୟ, ଉପଭୋଗ୍ୟ । ପ୍ରସନ୍ନ ଆମକୁ ତା ଆରଦନ ବୁଲାଇ ଦେଖାଇଲେ ।

ଓରେଗଁ ଏକ ଅରଣ୍ୟ ରାଜ୍ୟ; ୪ ଭାଗରୁ ୩ ଭାଗ ଜଙ୍ଗଲ । ଡଉଗ୍‌ଲାସ୍ ଜାତୀୟ ପାଇନ୍ ଗଛ ଭରା, ଏଇ ପାଇନ୍ ଦୁଇଶ ଫୁଟ୍‌ରୁ ଅଧିକ ଉଚ୍ଚ ବଢ଼େ, ମୋଟା ଗଣ୍ଡି, ମୂଲ୍ୟବାନ୍ କାଷ୍ଠ । ସତ୍ର ପ୍ରପାତ ଝଙ୍କୃତ । ପ୍ରସ୍ତରିତ ପଥ ଶିଉଳି-ଲାଗି, ଖସଡ଼ା । ତଳେ ଗଭୀର ପାହାଡ଼ ଖୋଲରେ ନଦୀ ପ୍ରବାହିତ । ଜଳପୂର୍ଣ୍ଣ ବିବର; ପତନ ଭୟ ପଦେ ପଦେ । ଯିବାକୁ ସାହସ ପାଇଲି ନାହିଁ । ସିମେଣ୍ଟ ବେଞ୍ଚ୍‌ରେ ବିପୁଳ ବୃକ୍ଷ ଗଣ୍ଡିକୁ ଆଉଜି ବସି ଶାନ୍ତଶୀତଳ ସବୁଜ ଶ୍ରୀ ଉପଭୋଗ କଲୁ । ବନ ମର୍ମର, ଜଳ ଝର୍ଝର; ପୁଷ୍ପ ବା ଫଳଟିଏ କୋଉଠି ନାହିଁ, ପକ୍ଷୀର କାକଳି ବି ନାହିଁ । ଘନ ଛାୟା ମଧ୍ୟରେ ଏଠି ସେଠି ଖରାର ନକ୍ସା ।

## ଗୋଲାପ ଆଳାପ କରେ

କଣ କହିବ କହିବ ହୁଏ, କହିପାରେ ନାହିଁ; ପଦ୍ମଫୁଲ ଆକାରର ଗୋଲାପ, ବୁସ୍ ବଗିଚାର । ଧାଡ଼ି ପରେ ଧାଡ଼ି, କେତେ ବିଚିତ୍ର ରଙ୍ଗର, କଥା କହିବା କଣ ଦରକାର ? ନୀରବ ବାଣୀ ତ ଗଭୀର ଭାବରେ ହୃଦୟ ସ୍ପର୍ଶ କରେ । ଭାଷା ଏ ସଂସାରର କଣ କେତେ ବା ପ୍ରକାଶ କରେ !

କେତେ ଗାଢ଼ ଲାଲ୍, ନୀଳ ରଙ୍ଗର ଝିକ୍‌ମିକ୍ ଫୁଲ ! ପେନ୍ଥାକୁ ପେନ୍ଥା, କେଣ୍ଡାକୁ କେଣ୍ଡା, ଗୋସ୍ତାକୁ ଗୋସ୍ତା । ସବୁ ସରୁ ମହୁମାଛି ଲାଗି ଯାଇଛନ୍ତି । ପେଟ ପୂରିଲା ପରେ ଯାଇ ଉଠୁଛନ୍ତି, ଗୋଟି ଗୋଟି ହୋଇ, ସନ୍ତୋଷର ମୃଦୁ-ଗୁଞ୍ଜନ କାନରେ ଝଙ୍କାରି ବାଜିଲା ପରି ବାଜେ ।

ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ ଏହି ଉଦ୍ୟାନ ବୁସ୍‌ଙ୍କ ତ୍ୟାଗର ଫଳ । ତ୍ୟାଗର ସୁରଭି ଏତେ ମଧୁର !

ନିଃସନ୍ତାନ ବୁସ୍ ସାଲେମ୍ ସହରର ସମସ୍ତ ଘର ଓ ଭୂସମ୍ପତ୍ତି ମ୍ୟୁନିସ୍-ପାଲିଟିକୁ ଦାନ କରିଥିଲେ । ମ୍ୟୁନିସ୍‌ପାଲିଟି ସେହି ତ୍ୟାଗର ଉପଯୁକ୍ତ ମହତ୍ତ୍ୱ ରକ୍ଷା କରିଛନ୍ତି । ଗୋଲାପ, ଗେଣ୍ଡୁ, ମନ୍ଦାର—ନାନା ଫୁଲ ଲତାର ଉଦ୍ୟାନ, ମସଲାମସଲି ଓ ଔଷଧ ଗୁଳ୍ମର ଉଦ୍ୟାନ ତାଙ୍କର କୀର୍ତ୍ତି, ଅପୂର୍ବ ଯତ୍ନ ଓ ପ୍ରୀତିରେ ସୁଲାଳିତ ।

ଉଦ୍ୟାନ ନୁହେଁ, ବାସ୍ତବ କାବ୍ୟଟିଏ । କେତେ ସ୍ୱପ୍ନର, କଳ୍ପନାର ବନ୍ଦ ଦୁଆର ଖୋଲିଯାଏ, ମନରେ ପୁରିଉଠେ ପ୍ରଶାନ୍ତି ।

ଅଦୂରରେ ମାର୍ବଲ ପ୍ରସ୍ତର ନିର୍ମିତ କାପିଟାଲ ବିଲ୍‌ଡିଂ, ସୁନାମଣ୍ଡିଣୀ । ଘାସ ପ୍ରାନ୍ତର, ପୁଷ୍ପୋଦ୍ୟାନ ଓ ଛତ୍ରାକାର ବୃକ୍ଷ ମଧ୍ୟରେ ଓରେଗଁର ସାହସିକ ଆବିଷ୍କାରକଙ୍କ ମୂର୍ତ୍ତି, ଲୋହିତଭାରତୀୟ ବିଜେତା ଓ ଖ୍ରୀଷ୍ଟିଆନ୍ ଧର୍ମବିସ୍ତାରକଙ୍କ ମୂର୍ତ୍ତି ।

## ଉଇଲେମେଟ୍ ନଦୀକୂଳେ

ଏ ଯୁଗର ଯେତେ ଯେତେ ସୌନ୍ଦର୍ଯ୍ୟର ଲୀଳାକ୍ଷେତ୍ର ସର୍ବତ୍ର କଦର୍ଯ୍ୟ, କୁତ୍ସିତ କାହାଣୀ । କବି, ଲେଖକ, ଦାର୍ଶନିକ, ଭ୍ରମଣକାରୀଙ୍କ ପୃଷ୍ଠପଟରେ ଡାକୁ, ଚୋର, ନିଶାଖୋର, ଗଞ୍ଜେଇ, ଡ୍ରଗ୍, କୋକେନ୍, ଆଲ୍‌କୋହଲ୍‌ଖୋର୍ ମାତାଲ୍ ଯେତେ ଏ ଚମତ୍କାର କ୍ଷେତ୍ରକୁ ବିଭୀଷିକାମୟ କରିଛନ୍ତି । ସୌନ୍ଦର୍ଯ୍ୟ ଉପଭୋଗରେ ବ୍ୟାଘାତ ଜନ୍ମେ । କେତେବେଳେ କେଉଁ ବିପଦ ଘଟିବ, କିଏ ଜାଣେ ?

## ମହେନ୍ଦ୍ର ବରୁଆର ଦୋକାନ

ମହେନ୍ଦ୍ର ଅସମୀୟା; ସାଲେମ୍‌ରେ ଶ୍ରେଷ୍ଠ ଦୋକାନଟିଏ କରିଛି । ଆମେରିକାବାସୀ ଭାରତୀୟଙ୍କ ଲାଗି ଅପରିହାର୍ଯ୍ୟ । ଆମେରିକାରେ ଭାରତୀୟତ୍ୱ ରକ୍ଷା

ଲାଗି ଏହାର ଦାନ ନଗଣ୍ୟ ନୁହେଁ । ଭାରତର ବାସ୍ନା ଗୁହଳ, ବିବିଧ ପ୍ରକାର ଡାଲି, ମସଲାମସଲି, ହଳଦିଗୁଣ୍ଡା, ତେଜପତ୍ର, କାଜୁ, କସ୍‌ମିସ୍, ଜାଇଫଳ, ନାନା ପ୍ରକାର ଚଟଣି, ଆଚ୍ଛର ଏଠି ମିଳେ ।

ମହେନ୍ଦ୍ର ମୋ ପରିଚୟ ପାଇ ଓଡ଼ିଶା, ବିଶେଷତଃ ଶ୍ରୀକ୍ଷେତ୍ର ବିଷୟରେ ଜାଣିବାକୁ ଆଗ୍ରହୀ ହେଲା । ଆସାମ ସହିତ ଓଡ଼ିଶାର ଦୀର୍ଘ ସମ୍ପର୍କ ଥିଲା ଓ ଅଛି । ପୁରୀରେ ମହାତ୍ମା ଶଙ୍କର ଦୀର୍ଘକାଳ କଟାଇଥିଲେ । ସେ ସମ୍ପର୍କର ପ୍ରତ୍ୟକ୍ଷ ଫଳ ମୁଁ ଭୋଗ କଲି । ମହେନ୍ଦ୍ର ମୋ ପ୍ରତି ଗଭୀର ଶ୍ରଦ୍ଧା, ସମ୍ମାନ ଦେଖାଇଲା । କିନ୍ତୁ ବଙ୍ଗାଳୀଙ୍କ କଥା ପଡ଼ିବା ମାତ୍ରେ ତାତି ଉଠିଲା । ଆଖି ହିଙ୍ଗୁଳ ହୋଇଗଲା, କହିଲା—ବଙ୍ଗାଳୀ ଆମ ଅକ୍ଷର ଲୋପ କରିଛନ୍ତି, ଆମ ଭାତହାଣ୍ଡି ହରଣ କରିଛନ୍ତି ।······"ଆସାମ ହୋଇଛି ଚରିଭୂଇଁ" ବଙ୍ଗାଳୀ ପଠାଣଙ୍କର । ଶେଷକୁ ଆମକୁ ବାହାର କରିଦେବେ, ଆମ ଭୂଇଁରୁ··· ।"

ମହେନ୍ଦ୍ର କଥା ଗର୍ଜନ ସ୍ୱରକୁ ଆସୁଥିବା ବେଳେ ପଚାରିଲି—ତୁମେ ତ ଆମେରିକାସ୍ଥ, ତୁମର ଏଥିରେ କଣ ଅଛି ? କଥାଟି ମୋଡ଼ି ପଞ୍ଜାବ ଆଡ଼େ ବୁଲାଇ ଦେଲି । କେତେକ ଉଗ୍ରପନ୍ଥୀ ଶିଖ ଦୁବାଇ ଭାରତୀୟ ବିମାନ ହରଣଗୁଳ୍‌ କରିଥାନ୍ତି । ହିନ୍ଦୁଙ୍କ ପ୍ରତି ଶିଖଙ୍କ ବିରୁଦ୍ଧ ଭାବ ମୋତେ ବିଚଳିତ କରିଥାଏ ।

କହିଲି—ଶିଖ ସାହସୀ ଯୋଦ୍ଧା । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ତାର ଦାନ ଅକଳନ୍ତି । ସେ ଘରଖୋର୍‌ ନୁହେଁ; ପୃଥିବୀର ପ୍ରାୟ ସବୁ ମହାଦେଶରେ ଖେଳେଇ ହୋଇ ରହିଛି । ଦେଶ ବିଦେଶରେ ବାଣିଜ୍ୟବିପଣି ମେଲି ସେ ସ୍ୱ ପ୍ରଦେଶର ଆର୍ଥିକ ଅବସ୍ଥା ବଦଳାଇ ଦେଇଛି, କିନ୍ତୁ ଏତିକ ବିକାଶରେ ସେମାନେ ଉଚ୍ଛୁଳୁଛନ୍ତି କାହିଁକି ?

ମହେନ୍ଦ୍ର କହିଲା—ପରବୁଦ୍ଧିରେ ପଡ଼ି । ପର ବୁଦ୍ଧି ପ୍ରଳୟ । ନିଜ ବୁଦ୍ଧିରେ ଘାସ କାଟିବା ବରଂ ଭଲ, ପର ବୁଦ୍ଧିରେ ଘୋଡ଼ା ଚଢ଼ିବା ଭଲ ନୁହେଁ ।

ମୁସଲମାନ ଧର୍ମ ବିରୁଦ୍ଧରେ ହିନେ ଶିଖ ଧର୍ମର ଉଦୟ ହୋଇଥିଲା । ଗୁରୁ ନାନକ ଭାରତୀୟ ହିନ୍ଦୁ ତୀର୍ଥ ଦର୍ଶନ ପରେ ଜଗନ୍ନାଥଙ୍କୁ ଦର୍ଶନ କରିଥିଲେ । ପୁରୀରେ ଶିଖ ମଠ ଅଛି । ଏବେ କ'ଣ ହେଲା କି ହିନ୍ଦୁ ଗନ୍ଧେଇଲା । ତେଲ ସଙ୍ଗେ ତେଲ ମିଶି ଏକା ହୋଇ ପିଣ୍ଡିଆଖଣ୍ଡି ଫିଙ୍ଗି ଦେଲା ପରି ହିନ୍ଦୁଙ୍କଠାରୁ କରିଛଡ଼ା ଦେଉଛନ୍ତି ? କେତେକ ଉଗ୍ରପନ୍ଥୀଙ୍କ କଥାରେ ପଡ଼ି ଶିଖ ଖଲିସ୍ଥାନ ଦାବୀ କରୁଛନ୍ତି ।

"ପବିତ୍ର ସ୍ୱର୍ଣ୍ଣମନ୍ଦିରକୁ ଏକ ଦୁର୍ଗରେ ପରିଣତ କରିଛନ୍ତି । ମନ୍ଦିର ବେଢ଼ା ହୋଇଛି ଏକ ରଣକ୍ଷେତ୍ର, ଶତ୍ରୁ ଚକ୍ରାନ୍ତର ଏକ ଲୀଳାସ୍ଥଳୀ । ବ୍ରେନ୍‌ଗନ୍, ଷ୍ଟେନ୍‌ଗନ୍, ରାଇଫଲ୍ ଉପରେ ହାତ ପକାଇ କଣ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛନ୍ତି ! ଭାଗ୍ୟକୁ ଯଥା ସମୟରେ ଏ ଚକ୍ରାନ୍ତର ମୁକାବିଲା କରାଗଲା । ନଇଲେ ଅବସ୍ଥା କଣ ହୋଇଥାନ୍ତା ?

ସଉଦା ନେବା ଲାଗି କେତେ ଗରାହାକ ଆସି ପହଞ୍ଚି ଗଲେ । ଆମ ଆଲୋଚନା ବନ୍ଦ ହୋଇଗଲା ।

ଫେରିଲାବେଳେ ବିଚାରୁଥିଲି—ନେଡ଼ିଗୁଡ଼ କହୁଣୀକି ବୋହି ଯାଇଥିଲେ କଣ ହୋଇଥାନ୍ତା ? ହୁଏତ ଗୋଟାଏ ପ୍ରଳୟ କାଣ୍ଡ ଘଟାଇଥାନ୍ତେ ।

ଫେର୍ ବିଚାରିଲି—ଗୁଇନ୍ଦା ବିଭାଗ କ'ଣ କରେ ? ଏତେଦୂର ଯାଏ କଥା ଗଲା କାହିଁକି ? ଏମାନେ ଏତେ ବନ୍ଧୁକ, କମାଣ ଆଣି ଗଦେଇଲେ, ସରକାର ଜାଣି ନ ପାରିଲେ କିପରି ? ମୂଳରୁ ମାରିଥିଲେ ତ କଥା ସରିଥାନ୍ତା । ଛୋଟ ଘଟଣା ତାଳ ପରି ବଢ଼ିବାଯାଏ ଗଲା କାହିଁକି ? ଅଜଣା ଗ୍ରହ୍ମଲର ଭାତ ଖାଇ ଏମାନେ କୁମ୍ଭକର୍ଣ୍ଣ ନିଦ ଶୋଇଥାନ୍ତି କାହିଁକି ? ହଠାତ୍ ଚର୍ଚ୍ଚରେଇ ଉଠନ୍ତି କାହିଁକି ?

ଆହୁରି ବିଚାରିଲି—ମୁକାବିଲା ତ ହେଲା, ସାମୟିକଭାବେ ଅବସ୍ଥା ସମ୍ଭାଳା ପଡ଼ିଗଲା; ବୋଧ ହେଲା ଆହୁରି ଯେପରି କିଛି ଘଟିବ ନାହିଁ ।

ଜଳନ୍ତା ନିଆଁ ଦିଶୁଛି, କାଳେଣି ଦିଶୁଛି, କିନ୍ତୁ ଯାକୁ ଯେ ତାହୁଛି ସେ ଦିଶୁନାହିଁ କାହିଁକି ? କାହିଁ ସେ ଭସ୍ମାସୁର ?

ଭାରତର ସ୍ୱାଧୀନ ମନୋଭାବ, ନେତୃତ୍ୱ, ଦ୍ରୁତ ଉନ୍ନତି ଓ ଅମାନିଆପଣ କେତୋଟି ପ୍ରବଳ ଶକ୍ତି ଦ ଆଖିରେ ଦେଖି ପାରୁ ନାହାନ୍ତି । ସେମାନେ ଚାହାନ୍ତି—ଭାରତ ଗୋଡ଼ାଣିଆ ହୋଇ ସେମାନଙ୍କ ଛତ୍ରଛାୟା ତଳେ ରହୁ । ଦୁଆରେ ଅଧା ପଡ଼ି ହାତ ପତଉଥାଉ । ସେ କାହିଁକି ଖାଇବ କୁରୁବଳଙ୍କର, ଗାଇବ ପାଣ୍ଡବଙ୍କର ? ଆମ ଅନୁସରଣରେ ଚାଲିଲେ ତା ଅଗ ଗୋଡ଼ରେ ତ କଣ୍ଟା ବାଜିବ ନାହିଁ ।

ସେମାନଙ୍କ ବୋଲକରା ନ ହେଲା ଷଣି ଉପରେ ଯେତେ ଭଲେଇ ଦେଖେଇ ହେଲେ ବି ଭିତରେ ଗର୍ଜି ଗର୍ଜି ହେଉଛନ୍ତି, ଓଉ ଉଣ୍ଡି ବୁଲୁଛନ୍ତି, ଗୋଦା ଜଗି ବସିଛନ୍ତି, କିଛି ଟିକିଏ ସୁବିଧା ପାଇଲେ ଖାଲକୁ ଠେଲିଦେବେ । ଛିନ୍ନ ଖଣ୍ଡ କରିଛନ୍ତି, ଖଣ୍ଡ ଖଣ୍ଡ କରି ଆମକୁ ଦୁର୍ବଳ କରିଦେବେ । କଟୁରା ବେଣ୍ଟଟି ହାତରେ, ଆମକୁ ପାପଲଉଛନ୍ତି, ଧମକଉଛନ୍ତି, ଧଡ଼କଉଛନ୍ତି । ତାତ ଯେଉଁମାନେ ନିଆଁ ବାଣ

ହୋଇଚନ୍ତି, ସେମାନଙ୍କ ପକେଟରେ ପଇସା ଭରି ଦେଉଛନ୍ତି, ହାତରେ ମାରଣାସ୍ତ୍ର ଧରାଇ ଦେଉଛନ୍ତି ।

କାରଖାନାରେ ବହୁ ଅସ୍ତ୍ରଶସ୍ତ୍ର ଜମା ହେଲଣି; ବିକବେ କପରି ? ତେଣୁ ଜଣକ ଦାହରେ ଭୂତ ହୋଇ ଲାଗୁଛନ୍ତି, ଆଉ ଜଣକୁ ଗୁଣିଆଁ କରି ଛଡ଼ାଉଛନ୍ତି । ଲାଗିଛି ଗୋଟା ସଂସାର, ଏଇ ଲୀଳା ।

ସ୍ୱାଧୀନତା ଲାଭ ଦିନରୁ ଭାରତରେ ଲାଗି ରହିଛି ଏହି ଅଶାନ୍ତି, କେତେବେଳେ ଜାତିଆଣ ଭାବରେ ମତାଇଲେଣି ତ, କେତେବେଳେ ଧର୍ମହାନି ଘଟିଗଲା ବୋଲି ତତାଇଲେଣି ।

ଅକଳ୍ପିତାଖିତ ଘଟଣା । ଇନ୍ଦିରା ଗାନ୍ଧୀଙ୍କ ମଲେ, ମଲେ ବହୁ ଲୋକ । ଏତିକରେ କ'ଣ ଛୁଟିଗଲା ? ନା କାଲି ଏଇ ଆରମ୍ଭ ହେଲା ? ଶିଖ ତ ଭାରି ରାଗୁଆ; ଏତିକରେ କ'ଣ ତା ରାଗ ମରିବ ? ପଛରେ ଯେଉଁମାନେ ଉସୁକାଉଛନ୍ତି, ସେମାନଙ୍କ କାଲି କ'ଣ ଏଇ କେତୋଟି ବଳିରେ ତୁଷ୍ଟ ହେବେ ? ମନରେ ମୋର ଶଙ୍କା— ଇନ୍ଦିରାଙ୍କ ଉପରେ କିଛି ଆଞ୍ଚ ଆସିବ ନାହିଁ ତ ? ଶିଖ ଭାରି ଅବୁଝା, ଏକଜିଦିଆ; କ'ଣ ବୋଲି କ'ଣ କରି ବସିବେ ନାହିଁ ତ ? ଭାରତର ଉନ୍ନତି ଅସହିଷ୍ଣୁ ଶତ୍ରୁଙ୍କର ହାତବାଣସି ହୋଇଛି ସେ । କି ଅଘଟଣା ଘଟାଇବ କିଏ ଜାଣେ ? ଇନ୍ଦିରାଙ୍କ ଉଜ୍ଜ୍ୱଳ ରୂପ ଆଖି ଆଗରେ ଭାସି ଉଠିଲା ମୋର ।

ଆଜି ଏ କାହାଣୀ ଲେଖିଲା ବେଳକୁ କଲମ ଅଟକିଗଲା ଯେ ଗଲା, ମନଟା ଶୂନ୍ୟରେ ଭଉଁରୀ ବୁଲିଲା, ଭାବିପାରିଲି ନାହିଁ—ଏ କ'ଣ ଘଟିଗଲା ! ଭାରତର ମାତୃସମା ଇନ୍ଦିରାଗାନ୍ଧୀଙ୍କୁ ମାରିବାକୁ ତାଙ୍କ ହାତ ଗଲା କେମିତି ? କିମ୍ବା ବିଶ୍ୱାସଘାତର ହିତାହିତ ଜ୍ଞାନ କାହିଁ !

ଚନ୍ଦ୍ରାନ୍ତର ଘେରରେ କପରି ପଡ଼ିଲା ଏ ଚାଣକ୍ୟପୁରୀ ? ଏ ପୁରୀରେ କ'ଣ ଜଣେ ହେଲେ ଚାଣକ୍ୟ ନାହିଁ, କୁଶାଗ୍ର ବୁଦ୍ଧି ପ୍ରଯୁକ୍ତ ହୋଇପାରିଲା ନାହିଁ କାହିଁକି ? କିମ୍ବା ଚାଣକ୍ୟ ବାଣୀର ଅବମାନନାରେ ଏ ଦୁର୍ଦ୍ଦଶା ଘଟିଲା—

ସସର୍ପ ଚ ଗୃହେ ବାସ<br>
ମୃତ୍ୟୁରେବ ନ ସଂଶୟଃ ।

# ଦଶ

ସାଲେମ୍‌ରୁ ପ୍ରଶାନ୍ତ ମହାସାଗର । ବାଟରେ ପ୍ରସଙ୍ଗ ପଡ଼ିଲେ – ଅଧିକାଂଶ ଆବିଷ୍କାର ସହିତ ଜଣେ ଜଣେ ଆବିଷ୍କାରକଙ୍କ ନାମ ଜଡ଼ିତ, ଯେମିତି କଲମ୍ବସଙ୍କ ନାମ ସହିତ କଲମ୍ବିଆ । ଉଦ୍‌ଭାବନ, ଆବିଷ୍କାର ହିଁ ନବ ଯୁଗର ମୂଳଭିତ୍ତି । ଏସବୁ ଚାଲିଥିବାବେଳେ ଭାରତୀୟମାନେ କ'ଣ କରୁଥିଲେ ?

କହିଲି—ମୋଗଲ ରାଜତ୍ୱ ସେତେବେଳେ । ଭାରତୀୟମାନେ ଲାଲ୍‌କିଲ୍ଲା ଗଢ଼ୁଥିଲେ, ଗଢ଼ୁଥିଲେ ତାଜମହଲ ।

ମୋଗଲ ନୌବାହିନୀ ଦୁର୍ବଳ । ବଙ୍ଗୋପସାଗରରେ ଇଂରେଜ, ଫରାସୀ, ସ୍ପେନୀୟ ବା ପର୍ତ୍ତୁଗୀଜ ନୌକା ପହଁରିବା ମାରୁଥିଲେ । ଭାରତ ମହାସାଗର ଜଳଦସ୍ୟୁଙ୍କ କବଳରେ ପଡ଼ିଥିଲା । ନୌଶକ୍ତି ଯୋଗୁଁ ହିଁ ଇଷ୍ଟ୍‌ ଇଣ୍ଡିଆ କମ୍ପାନୀ ଗୋଟା ଭାରତବର୍ଷ ଅଧିକାର କରି ବସିଥିଲା ।

ଆମେ ଉଇଲୋମେଟ୍‌ ନଦୀ କୂଳେ କୂଳେ ଚାଲିଲୁ । ଦି ପାଖରେ ଆପଲ୍‌ ବଗିଚା, ଷ୍ଟ୍ରବେରୀ, ବ୍ଲୁବେରୀ, ରାସ୍‌ବେରୀ, ବ୍ଲାକ୍‌ବେରୀ ବଗିଚା । ଓରେଗନ୍‌ ଜଙ୍ଗଲ ରାଜ୍ୟ । ବନାଗ୍ନି ଭୟ ପ୍ରବଳ । ହେଲିକୋପ୍‌ଟର ବାହିନୀ ଆକାଶରୁ ଜଳବୃଷ୍ଟି କରି ପ୍ରଜ୍ୱଳିତ ଅଗ୍ନିଶିଖାକୁ ନିର୍ବାପିତ କରେ ।

ଏମିତି ଆଲାପ କରୁ କରୁ ଆମେ ପହଞ୍ଚିଲୁ ସମୁଦ୍ର କୂଳର ଏକ ଗ୍ରେଟ ସହରରେ—ନାମ ଲିଙ୍କନ୍‌ ସିଟି । ଯାତ୍ରୀଙ୍କ ଲାଗି ଏଠାରେ ବହୁତ—ବହୁ ହୋଟେଲ୍‌, ମୋଟେଲ୍‌ । ଯାତ୍ରୀ ବୋଇଲେ ଭ୍ରମଣକାରୀ । ପ୍ରଶାନ୍ତ ସମୁଦ୍ରକୂଳ ଏଠାର ବଡ଼ ଆକର୍ଷଣ । ସହରର ସ୍ଥାୟୀ ବାସିନ୍ଦା ପ୍ରାୟ ୭ ହଜାର । ଜଳବାୟୁ ନୁହେ ଶୀତଳ, ନୁହେ ଉଷ୍ଣ; ବିଶେଷ ସ୍ୱାସ୍ଥ୍ୟକର ।

ପ୍ରଶାନ୍ତ ସାଗର କୂଳରେ ଘନ ଜଙ୍ଗଲ । ବହୁ ବଡ଼ ବଡ଼ କାଠ କାହୁଁ ଭାସି ଆସି ଲାଗିଛି, ଫଗୁଣୀତ ହୋଇ ଗଦା ହୋଇଛି । କନକନିଆ ଶୀତ । ଆଙ୍ଗୁଠି କୋ'ଳ ମାରିଯାଉଛି । ଲୋକେ ସେ କାଠ ଜାଳି ନିଆଁ ପୋହୁଁଛନ୍ତି ।

ବୁଦୁବୁଦୁକିଆ ପାହାଡ଼ । ସି-ଗଲ୍‌ଙ୍କ ସଭା ବସିଛି, କୂଳର ଶୋଭା ବଢ଼ିଛି । କୂଳ ପାହାଡ଼ର ଗଦ ଗଦ ଉପରୁ ଝରଣାଟିଏ ବୋହି ଆସି ସମୁଦ୍ରରେ ପଡ଼ୁଛି—ପଚାଶ ହାତରୁ ଅଧିକ ଲମ୍ବ ନୁହେଁ—ପୃଥିବୀର କ୍ଷୁଦ୍ରତମ ନଦୀ ?

ନଦୀ ମୁଖରେ ଅଗଭୀର ଜଳ । ମତ୍ସ୍ୟ ସନ୍ତରଣ କରୁଛନ୍ତି, ସେମାନଙ୍କୁ ଏକ ଦୃଷ୍ଟିରେ ଚାହିଁଛନ୍ତି ସିଗଲ—ଦୃପ୍ତ ଶିକାରୀ । କିନ୍ତୁ ଉଦର ପୂର୍ଣ୍ଣ, ଅଚଳ ।

ସମୁଦ୍ରରେ କୁହୁଡ଼ି; ପାହାଡ଼ରେ କୁହୁଡ଼ି; ମଝିରେ ଖଗ, ତରଳ ରୂପାର ଏକ ଚୋଟା ପ୍ରବାହ ବୋହିଗଲା ପରି ଦିଶୁଛି, ମୁଁ ନିମଗ୍ନ ହୋଇ ଏ ଦୃଶ୍ୟ ଦେଖୁଛି—ଏତିକିବେଳେ ଆମ ଭିତରେ ଧସେଇ ପଶିଲା ଜଣେ ବଳିଷ୍ଠ ଯୁବକ—ମୁଁ ଡ଼. ପି. କୁପର୍, ଆଇରସ୍ । ମନେ ମନେ ଭାବିଲି—କ'ଣ ହେଲା ସେଠୁ ? କିଏ ତମ ନାଆଁ ପଚାରୁଛି ?

ପ୍ରସନ୍ନ ହସି ଉଠିଲେ । ମୁଁ ହସିବାର କିଛି କାରଣ ନ ଦେଖି ନୀରବ ।

ପ୍ରସନ୍ନ ହସର ଜମ ଅବିକଳ ରଖି କହିଲେ—ହଡ଼ବଡ଼େଇବାର କିଛି କାରଣ ନାହିଁ । କୁପର୍ ଜଣେ ଡାକୁ । ସିଆଟଲ୍ ବ୍ୟାଙ୍କ୍‌ରୁ ୨ ଲକ୍ଷ ଡଲାର୍ ଚୋରି କରି ହେଲିକୋପ୍‌ଟରରେ ଚାଲିଗଲା, ଆକାଶଛତା ସାହାଯ୍ୟରେ ଓରେଗଁ ଜଙ୍ଗଲରେ କୁଆଡ଼େ ହଜିଗଲା । ପୁଲିସ୍ ବହୁ ଖୋଜାଖୋଜି କଲେ; ତାର ପତ୍ତା ମିଳିଲା ନାହିଁ । ଆମେରିକାବାସୀ ତାର ଦୁଃସାହସିକ ଅନ୍ତର୍ଧ୍ୟାନକୁ ପ୍ରୀତି ଦୃଷ୍ଟିରେ ଦେଖନ୍ତି । ପ୍ରସନ୍ନ ଅନୁରୋଧ କଲେ—ଏ ଗପଟି ନୋଟ୍ କରିବ । ରୋମାଞ୍ଚକର କାହାଣୀ ସୃଷ୍ଟି କରିବ ଏ ।

ପଚାରିଲି—ଯୁବକ ବିଶିଷ୍ଟ ଆଇରସ୍ କବି ୟେଟ୍‌ସ କିମ୍ବା ମହାନ୍ ନେତା ଡ଼. ଭେଲେରା କିମ୍ବା ଉତ୍ତର ଆଇର୍ଲଣ୍ଡର ମୁକ୍ତି ଲାଗି ଶହୀଦ୍ ହୋଇଥିବା ବିପ୍ଳବୀଙ୍କ ନାମ ଉଚ୍ଚାରଣ ନ କରି ଡାକୁ ନାମ କହିଲା କାହିଁକି ?

'ଯୁବକଟି ହସଖୁସିର ମଣିଷ; ଏତେ ନଟକୂଟରେ ପଶିବ କାହିଁକି ? ବିଦେଶୀଙ୍କ ଆଗେ କିଛି ମଜ୍ଜାକଥା କହି ଦେଇ ଚାଲିଗଲା, ବୋଧେ ଆଉ କୋଉଠି କୌତୁକ ସୃଷ୍ଟି କରିବା ପାଇଁ ।

ଓରେଗଁରୁ ମେକ୍‌ସିକୋ ଦୁଇ ହଜାର ମାଇଲ୍ । ପ୍ରଶାନ୍ତ ସାଗର କୂଳେ ପ୍ରଶସ୍ତ, ପିଚୁ ରାସ୍ତା, ଜଙ୍ଗଲ । ଜଙ୍ଗଲ ମୂଳେ ମୂଳେ ସମୁଦ୍ର ତରଙ୍ଗ ଧକ୍‌କା ଦିଏ, ନ ଦିଏ । ଗତିପଥକୁ ବୈଚିତ୍ର୍ୟପୂର୍ଣ୍ଣ ଓ ପରିବେଶକୁ ପରିଚ୍ଛନ୍ନ କରିବା ଚେଷ୍ଟା ପଦେ ପଦେ ।

## ମରୁ ମରୁ ବଞ୍ଚିଲି ଯେ

ସେ ଜନ୍, ମାନସିକ ରୋଗୀ, ପ୍ରସନ୍ନ ତାର ଡାକ୍ତର । ଦିନେ ବଡ଼ ବ୍ୟବସାୟୀ ଥିଲା । ମହଲା ପରେ ମହଲା ଉଠୁଥିଲା । ବ୍ୟବସାୟ ଶାଖା ମେଲୁଥିଲା,

ଏ ସହରରୁ ସେ ସହରରେ । ଲକ୍ଷ୍ମୀ କାନ୍ଧରେ ବସି ଆଗେଇ ଚାଲିବାକୁ ପ୍ରେରଣା ଦେଉଥିଲେ ।

ଭାଗ୍ୟ ମନ୍ଦ ପଡ଼ିଲା । ବ୍ୟବସାୟର ମୂଳ ବୁଡ଼ିଲା । ଜନ୍ ଦେବାଳିଆ ହେଲା । ବଢ଼ିଲା ଦୁଶ୍ଚିନ୍ତା । 'ଚିନ୍ତା ଖାଏ ଗଣ୍ଡି ।' ଜନ୍‌ର ସ୍ୱାସ୍ଥ୍ୟହାନି ଘଟିଲା, ଘୋଟିଲା ମାନସିକ ବ୍ୟାଧି । ସେ ଭାବିଲା—ଏ ସଂସାରରେ ଧନହୀନ ଜୀବନ ବୃଥା । ଦରିଦ୍ର ବଞ୍ଚିବା ମରିବା ସମାନ । ମରି ପାରିଲେ ବଞ୍ଚି କଷ୍ଟ ପାଇବ କାହିଁକି ? ଜନ୍ ସ୍ଥିର କଲା—ବଂଶର ଗୋଟି ଗୋଟି କରି ସମସ୍ତଙ୍କୁ ମାରିବ, ତାପରେ ଆତ୍ମହତ୍ୟା କରିବ ।

ଏଇ ମାନସିକ ଦୁଃସ୍ଥିତିରେ କେହି ବନ୍ଧୁ ଦୟାପରବଶ ହୋଇ ତାଙ୍କୁ ନେଇ ସାଲେମ୍ ପାଗଳା ଡାକ୍ତରଖାନାରେ ଭର୍ତ୍ତି କରିଦେଲା । ପ୍ରସନ୍ନଙ୍କ ପ୍ରାଣପୂର୍ଣ୍ଣ ଚିକିତ୍ସାରେ ଜନ୍ ପୁଣି ଆରୋଗ୍ୟ ଲାଭ କଲା । ଏବେ ତରଙ୍ଗତାଡ଼ିତ ପାହାଡ଼ ଶିରେ ଶିରେ ତାର ମୋଟେଲ୍ ।

ପ୍ରସନ୍ନଙ୍କ ପ୍ରତି ଚିର କୃତଜ୍ଞ—ବୁଡ଼ିଲା ବଂଶକୁ ଅଗାଧ ଜଳଧିରୁ ଉଦ୍ଧାର କରି ଆଣିଲେ ସେ । କାହିଁରେ ତାର ଶୋଧ ହୋଇପାରେ ? ପ୍ରସନ୍ନ ଡାକ୍ତର ପାଖେ ରୋଗୀର ଏଇ କୃତଜ୍ଞତାକୁ ଅର୍ଥ ଅପେକ୍ଷା ଅଧିକ ମୂଲ୍ୟ ଦିଅନ୍ତି ।

## ଲିଣ୍ଡା ଓ୍ୱେଣ୍ଡୀ

ମାଆ, ଝିଅ । ଲିଣ୍ଡା ନର୍ସ । ଓ୍ୱେଣ୍ଡୀ ରାଜୁଏନ୍ସ୍, କମ୍ପ୍ୟୁଟର୍ ନିର୍ମାଣ କାରଖାନାରେ କାମ କରେ । ସମୁଦ୍ର କୂଳେ କୂଳେ ଏ ମାଆଝିଅ କଣ କରୁଛନ୍ତି ? ବୁଲି ହାଓ୍ୱା ଖାଉଛନ୍ତି ? ନା । ଲହଡ଼ି ଭାଙ୍ଗୁଛନ୍ତି ? ନା । ପ୍ରଶାନ୍ତ ମହାସାଗର ସିନା ସବୁଠାରୁ ବଡ଼, ତା ଢେଉ ଖୁବ୍ ଗ୍ରେଟ । ବେଳାଭୂମିରେ ବାଲୁକ ବାଲୁକୁଆଡ଼େ ମିଳେଇଯାଏ ।

ଝିଅଟି ସୁନ୍ଦରୀ । ବରୁଣକନ୍ୟା ଲକ୍ଷ୍ମୀ ? ନା ସେ ଚଞ୍ଚଳା ନୁହେଁ; ଚଞ୍ଚଳା ନୁହେଁ ।

ସେମାନେ କଣ କରୁଛନ୍ତି ? ଜଣ୍ଟନରେ ଏଇ ଦୁଇ ଯୁବତୀଙ୍କୁ ପଚାରିଲି—ମନକୁ ଟିକିଏ ଖଟ୍‌କା ଲାଗିଲେ ବି । କଣ କରୁଛନ୍ତି ?

'ଆମ ହାତରେ ଯନ୍ତ୍ରଟିଏ ଦେଖୁଛ ? ଏହାକୁ ଏମିତି ଚଲାଇ ଚଲାଇ ନେଲେ ଜଣାପଡ଼ିଯାଏ ତଳେ ଧାତୁଦ୍ରବ୍ୟ ଅଛି କି ନାହିଁ ?

'ବେକାର !' ମନେ ଭାବିଲି । ତଥାପି ପଚାରିଲି—'କେବେ କିଛି ପାଇଛନ୍ତି ?'

'କେବେ ସୁନା ମୁଦ, ସୁନା କଙ୍କଣ, ହାର ବ ମିଳିଯାଏ, କେବେ କଛୁ ନାହିଁ । ଅଧିକାଂଶ ଧନ ନଷ୍ଟ ହେଲ । ତେବେ ବୁଲବୁଲି ହୁଏ ।'

'ଏ ସବୁ କୁଆଡ଼ୁ ଆସେ ?'

'ଜାଣେ ନାହିଁ । ବୋଧେ ହଜିଲା ଧନ ଏ ।'

ତରଙ୍ଗ ମାଡ଼ରେ ପାହାଡ଼ର କଙ୍କାଳଟି ମାତ୍ର ଠିଆ । ତାକୁ ଲଗି ସେମାନେ ଠିଆ ହେଲେ । ପ୍ରସନ୍ନ ଫଟୋ ନେଲେ, ହସି ହସି କହିଲେ—ଏ ବହିରେ ବାହାରିବ । ସ୍ନେହ ଲେଖକ ।'

ଏଡ଼େ ଏଡ଼େ ଆଖିରେ ଦୁହେଁ ମୋ ଆଡ଼କୁ ଚାହିଁଲେ, ବୋଧହୁଏ କହୁଥିଲେ—ଲେଖକ ତା ହେଲେ ଏମିତ ! ଲେଖା ପଢ଼ିଛନ୍ତି । ବୋଧହୁଏ, ଲେଖକ ଏଇ ପ୍ରଥମେ ଦେଖିଲେ । ହାତ ବଢ଼ାଇଲେ ସେକ୍ ହାଣ୍ଡ୍ କରିବା ପାଇଁ । ଦୁଇଟି ସ୍ନେହ ସ୍ୱଚ୍ଛନ୍ଦ ମୃଦୁହାସ୍ୟ ଉପହାର ଦେଲେ ମୋତେ, ଯାହା ମୋନାଲିସାର ହସ ପରି କାଳଜୟୀ ନୋହିପାରେ, କିନ୍ତୁ ମନୋଜୟୀ-ବ୍ୟକ୍ତି ଜୀବନରେ ତାର ମୂଲ୍ୟ ଅକଳନୀ ।

## ମିଛେ ମିଛେ ମାଛ ଧରୁଚ

ସୁନାର ବନଶି କରିଚ, ବୋଲେ ହୁଁ ଟି
ମିଛେ ମିଛେ ମାଛ ଧରୁଚ, ବୋଲେ ହୁଁ ଟି ।

ଏ ଲୋକଟି ଏକ ସ୍ଥାନରେ ବନଶି ନ ପକାଇ ଏଣେ ତେଣେ ଅନିଷା କରୁଚ କାହିଁକି ? ହଟିଆ ରଜାପୁଅ ପରି ତାର ଆଲି ନା ଛଲ ?

ବନଶିଆ ଗ୍ଲେନ୍ସ୍ ଦ ଉଚ୍ଚ ପାହାଡ଼ ମଝିରେ ଏକ ବାଙ୍କରା ପାହାଡ଼ରେ ବସିଚ । ତା ଉପରେ ଢେଉ ଡେଇଁ ଏ ପାଖେ ପଡ଼ୁଚ । ଏମିତ ଖଞ୍ଜରେ ବସିଚ ଯେ ତା ଉପରେ ପାଣି ପଡ଼ୁ ନାହିଁ । କୌତୂହଳ ଦେଖି ଗ୍ଲେନ୍ସ୍ ପଚାରିଲା—ତୁମେ ଭାରତୀୟ ? ହିନ୍ଦୁ ?

ଆମ ପରିଚୟ ପାଇଲା ପରେ କହିଲା—ଏଟା ସିଲ୍ ମାଛ ଅଞ୍ଚଳ । ସିଲ୍ ନୁହେ ମାଛ, ନୁହେ ପକ୍ଷୀ—ଏକ ମଝିମଝିଆ ଜୀବ । କୌତୁକପ୍ରଦ ଚେହେରା ତାର । ତମି ଧରିବା ଏଠି ଆଇନସିଦ୍ଧ, ସିଲ୍ ମାରିବା ବେଆଇନ୍ । ତେଣୁ ସିଲ୍ ଏଇ ସମୁଦ୍ର ପାହାଡ଼ ଅଞ୍ଚଳରେ ଭିଡ଼ କରିଥାନ୍ତି । ସେମାନଙ୍କ ଭୟରେ ଅନ୍ୟ ମାଛ ଆସନ୍ତି ନାହିଁ । ସିଲ୍‌ର ଗତିବିଧି ଲକ୍ଷ୍ୟ କରିବା ମୋର କାମ, ମାଛଧରା

ନୁହେ । ଦ ଘଣ୍ଟାରେ ମାତ୍ର ଦୁଇଟି ଗ୍ରେଟ ଲଲ୍ ମାଛ ଧରିଛୁ । ଏ ରକ୍‌ର ନାମ ସିଲ୍ ରକ୍, ଏହା ଉପରକୁ ସିଲ୍ ଉଠି ଖରା ପୁହାନ୍ତି, ଶୁଅନ୍ତି । ହେଲେ ସେ ଗ୍ରେଟ ପାହାଡ଼ଟି ଦେଖୁଚ ? ତାର ଚୂଡ଼ା ଦିଶେ ନ ଦିଶେ । ସେଥିରେ ବାଜି କେତେ ଯେ ଜାହାଜ ଭାଙ୍ଗିଛି, ଇୟତ୍ତା ନାହିଁ ।

## ସି-ଗଲ୍ ଓ ଭାରତୀୟ ପିଲା

ସି-ଗଲ ମେଳାପୀ ପକ୍ଷୀ । ଅଖାଦ୍ୟ । କେହି ମାରେ ନାହିଁ । ମଣିଷ ପାଖକୁ ଲଗି ଲଗି ଆସି ମେଳାପ ଜମାଇବାରେ ତାର ଲଭ ଛଡ଼ା କ୍ଷତି ନାହିଁ ।

ସି-ଗଲ୍ ମେଳା ବସେଇବା ଲାଗି ଗୋଟିଏ ପାଉଁରୁଟି ଯଥେଷ୍ଟ । ଦୂରରୁ ଦେଖିପାରେ । ପାଉଁରୁଟିଖଣ୍ଡ ଦେଖି କାହୁଁ ବୋଲି କାହୁଁ ଉଡ଼ିଆସେ—ସଫା ଧଳା, ମାଟିଆ ଧଳା, ପାଉଁଶିଆ, କଳା ଧଳା ଛିଟଲା । ସେମାନଙ୍କ ଖଣ୍ଡିଉଡ଼ା, ଖଣ୍ଡିଦଉଡ଼ା, ଧୀରେ ଡେଣା ଭାଙ୍ଗି ତଳେ ବସିବା, ଖୁମ୍ପାଖୁମ୍ପି, କାମୁଡ଼ା କାମୁଡ଼ି ହେବା ଦୃଶ୍ୟ ଦେଖୁ ଦେଖୁ ପ୍ରସନ୍ନ କହିଲେ—ସି ଗଲ୍ ଓ ଭାରତୀୟ ପିଲା ସମାନ । ସି-ଗଲ୍ ଛୁଆକୁ ଶିଖାଏ ମାଛଧରା । ସେମିତି ଭାରତୀୟ ବାପ ପୁଅ-ଝିଅଙ୍କୁ ଶିଖାଏ ପାଠ ପଢ଼ା । ବାପ ଯାହା କହେ, ମାଆ ସେଇଆ—ପାଠ ପଢ଼ । ନ ପଢ଼ିଲେ ଗାଳି, ମାଡ଼ । ହେଲେ ଜୀବନରେ ପାଠ ପଢ଼ାଟି କେତେ ଲୋଡ଼ା ? ଯେତିକ ପାଠ, ତାର ଶତ ଗୁଣେ ଶାଠ ନ ହେଲେ ଏ ଯୁଗରେ କେହି ଚଳି ପାରିବ ନାହିଁ । ଆମେରିକୀୟ ଓ ଇଉରୋପୀୟ ପିଲା ପାଠ ସହିତ ଶାଠରେ ଧୁରନ୍ଧର ହୋଇ ଜଗଜ୍ଜିତା ହେଉଛନ୍ତି ।

## ସାତ ତାଳ ପାଣି ତଳେ

ସମୁଦ୍ରର ସାତ ତାଳ ପାଣି ତଳେ ବିଚିତ୍ର ଏ ଚିଡ଼ିଆଖାନା । ବିଚିତ୍ର ଜଳ-ଜନ୍ତୁରେ ଭରା—ଜୀବନ୍ତ ହାଙ୍ଗର୍, ମଗର, କଚ୍ଛପ, ଷ୍ଟାର୍‌ଫିସ୍, ସୋଡ଼୍‌ଫିସ୍, କେତେ ପ୍ରକାର ଶାମୁକା, ଶଙ୍ଖ, ଗେଣ୍ଡା, ସମୁଦ୍ର ସିଂହ ସିଲ୍, ସମୁଦ୍ର ଅଶ୍ୱ, ସମୁଦ୍ର ସର୍ପ, ତିମି, ଡ଼ଲ୍‌ଫିନ୍—ସାମୁଦ୍ରିକ ପାଞ୍ଚ ହଜାର ଜୀଅନ୍ତା ମାଛର ବିଚିତ୍ର ଏ ପ୍ରଦର୍ଶନୀ—ରଙ୍ଗୀନ୍ ସମୁଦ୍ର ଉଦ୍‌ଭିଦର ଚମତ୍କାର ବୈଚିତ୍ର୍ୟ । ଜଣ ପ୍ରତି ସାଢ଼େ ତିନି ଡଲାର୍ ଟିକେଟ୍, ସମ୍ମାନିତ ନାଗରିକଙ୍କୁ ମାଗଣା ଦେଖିବା ଅନୁମତି ମିଳେ ।

## ବିଜ୍ଞାନ ଯାଦୁଘର

ଓରେଗନ୍ ରାଜ୍ୟର ଯାଦୁଘର ଏ, ଆଂଶିକଭାବେ ଚିଡ଼ିଆଖାନା ବି । କେଉଁଠି ମୃତ, କେଉଁଠି ଜୀବନ୍ତ । ମୃତ ଜୀବନ୍ତର ଏକ ବିଚିତ୍ର ମିଶାମିଶି ।

ଓ୍ୱାଲ୍‌ରସ୍ ଶୀତଳତମ ଜଳବାୟୁର ବୃହତ୍ ଜଳଜୀବ । ହାତୀଦାନ୍ତ ପରି ତାର ଶକ୍ତ, ଲମ୍ବ ଦୁଇଟି ଦାନ୍ତ ପଦାକୁ ବାହାରିଥାଏ, ଗୋଜିଆ ମୁହଁରେ । ଦନ୍ତାବଳୀର ଯୁଦ୍ଧାସ୍ତ୍ର ପରି ଏ ଦୁଇଟି ତାର ଆତ୍ମରକ୍ଷା ଲାଗି ଆବଶ୍ୟକ । ଓ୍ୱାଲ୍-ରସ୍‌ର ଦନ୍ତ ଦେଖିଲା ପରେ ଆମେ ଯାଦୁଘରେ ପଶିଲୁ ।

ଆରେ ପାଣିରେ ଗୋଟିଏ ଓଦାଲୁଗା କାହିଁକି ରଖା ଯାଇଛି ? ଓ, ମନର ଭ୍ରାନ୍ତି ! ଏଟା ଓଦା ଲୁଗା ନୁହେଁ, ଜୀବନ୍ତ ଅକ୍ଟୋପାସ୍‌ଟାଏ । ମଲାପରି ମେଞ୍ଚା-ଟିଏ ହୋଇ ପଡ଼ିଥିଲା । ଦେଖୁ ଦେଖୁ ଟାଙ୍ଗ ଲମ୍ବାଇ ବସ୍ତାରିକରି ପହଁରିଲା ।

ଆରେ, କେତେ ରଙ୍ଗର ତାରକା ମାଛ । କାନକୁଟୁଲି ପୋକର ପାଦ ଦିଶେ ନାହିଁ; ସେ ସୋସ୍ଥାଚନ୍ ଦାନା ପରି ପଡ଼ିଥାଏ । ନିର୍ଜନ ରାତିରେ ସେ ପାଦ କାଢ଼ି ଚାଲେ; ବରଗଛ ଉପରକୁ ଉଠି କୋରଡ଼ରେ ରହେ, କମ୍ପା ଶୋଇଲା ଲୋକର କାନରେ ପଶେ । ସେହିପରି ବିଚିତ୍ର ଏ ଷ୍ଟାର୍‌ଫିସ୍ । ମୁଚୁକୁନ୍ଦ ଫୁଲ ପରି ତାର ଚେହେରା । ତାର ଗୋଟା ଗୋଟା ପାଖୁଡ଼ା ପରି ରାଡ଼ୁ ରାଡ଼ୁଆ ପାଦ । ନିର୍ଜୀବ ଦିଶେ, କିନ୍ତୁ ଜୀବନ୍ତ । ଗତି ମନ୍ଥର, ଅଦୃଶ୍ୟ । ଜଡ଼ କି ପ୍ରାଣବନ୍ତ ବାରି ହୋଇଲେ ବି ସେ ଖାଏ, ଚଳବଚଳ ହୁଏ, ସୋଲ ଫୁଲ୍ ପରି ଧୀରେ ଧୀରେ ଉପରକୁ ଉଠି କାନ୍ଥରେ ଲାଖେ । ଫିକା ହଳଦିଆ, ମାଟିଆ, ଲାଲ୍ ହଳଦିଆ ଏଇ ତାରା ମାଛ କି ବିଚିତ୍ର ସତେ !

ଆରେ, ପାଣି ଭିତରେ କି ସୁନ୍ଦର ଫୁଲ ଫୁଟିଚି ' କିନ୍ତୁ ନା; ଫୁଲ ନୁହେଁ, ସେଇ ରୂପର ମାଛ, ଗଛ ଆକାରର ମାଛ; ପତ୍ର ଆକାରର ମାଛ । ପକ୍ଷୀ ଓ ସାପ ଆକାରର ମାଛ । କୋଉ ଆକାରର ମାଛ ନାହାନ୍ତି ତାହେଲେ ? ରଙ୍ଗୀନ୍ ସାମୁଦ୍ରିକ ଉଦ୍‌ଭିଦ ଓ ମାଛ ମଧ୍ୟରେ କି ତାରତମ୍ୟ ଅଛି ?

ଏ କି ଅପୂର୍ବ ମାଛ ! ଆଁ କରି ଶୋଇଛି; ପାଟି ଭିତରକୁ ଟ୍ରେଟ ମାଛ ଗଲେ ଉପର ପାଟି, ତଳ ପାଟି ସ୍ୱାଭାବିକ ଗତିରେ ପଡ଼ି ଯାଉଚି । ପୁଣି ମେଲା ହୋଇ ଯାଉଛି, ଅଧିକ ଖାଦ୍ୟ ଲୋଡ଼ା ହେଲାରୁ ।

ଖଣ୍ଡାବାଲିଆ ପରି ଏଟା କି ଲମ୍ବା ମାଛ ! ଶୋଇ ଶୋଇ ଗାଲସିରେ ନିଃଶ୍ୱାସ ନେଉଚି । ଗାଲସି ଉଠୁଡ଼ି, ପଡ଼ୁଚି । ନ ହେଲେ ଜୀବନର ଲକ୍ଷଣ ଅନ୍ୟ କେଉଁଠି ଦେଖାଯାଉ ନାହିଁ ।

ଏସବୁ କି ବିଚିତ୍ର ରଙ୍ଗୀନ୍ ଶାମୁକା ! ଲାଲ୍ ପଦ୍ମଫୁଲ ପରି ଦିଶେ; ପାଟି ମେଲାଇ ପଡ଼ିଛି । ମାଛ କି ପୋକ ଗଲେ ଗିଳି ଦେଉଛି ।

ଆରେ, ସମୁଦ୍ରଯାକ ଜଣ ଖାଲି ପାଚି ମେଲି ହୋଇଛି—ପାଚି—ପାଚି । ଭକ୍ଷ୍ୟ ଓ ଭକ୍ଷକଙ୍କ ଲୀଳାକ୍ଷେତ୍ର ଏ, ଆମ ଦେଖା ସୁନ୍ଦର କଖାରୁବଢ଼ି ଏଇ ପୃଥିବୀ ପରି ।

ଭକ୍ଷକ ଅତ୍ୟାଗ୍ରହୀ ନୁହେଁ, ଭକ୍ଷିତ ନିପୀଡ଼ିତ ନୁହେଁ, ଏଇ ସମ୍ପର୍କଟି ବାଧିଲ୍ କଲେ ସଂସାରର ତୁଳାଦଣ୍ଡଟି ଯେପରିକି ଭାଙ୍ଗିଯିବ ! ଗୋଟିଏ ଶ୍ରେଣୀର ଜୀବ ସଂଖ୍ୟାବୃଦ୍ଧି ରେ ସଂସାର ଅସମ୍ଭାଳ ହୋଇ ଲୋପ ପାଇଯିବ ।

## ସୁଅ ମୁହଁରେ କୁଟାଖିଅ

ମୋ ରକ୍ତରେ ସୁଅ—ଓହ୍ଲା, ଓହ୍ଲା ଶବ୍ଦ; ଅହୋରାତ୍ର ତାର ଗତି, ପବନ ସୁଅ ଭିତରେ ବାହାରେ ମୋର; ସେ ସୁଅ ବିନା ମୋର ଅସ୍ତିତ୍ୱର ଧାରଣା କରି ହୁଏ ନାହିଁ । ଏବେ ଦେଖୁଛି ସମୁଦ୍ର ସୁଅ, କେତେ ଦ୍ରୁତ ତାର ଗତି । ସୁଅ ବିପରୀତରେ ମାଛସବୁ ଚିରି ମାରୁଛନ୍ତି, ଲମ୍ଫ ଦେଉଛନ୍ତି । ସେହିପରି ଏ ମଣିଷ । ସୁଅ ତୋଡ଼ରେ ତାର ଜୀବନ ଚଳେ, ସମସ୍ତ ସୁଅରେ କୁଟାଖିଅ ପରି ଭାସିଯାଏ । ଭାବ ସୁଅରେ ଭାସି ଯାଉଁ ଯାଉଁ ପହଞ୍ଚିଲି ଉଚ୍ଛୁଳା ଲହରୀ ସ୍ରୋତରେ ଘନ ଘନ ତାଡ଼ିତ ଏକ ପାହାଡ଼ ମୂଳରେ; ମୁଖ୍ୟ ପାହାଡ଼ମାଳାରୁ ବିଚ୍ଛିନ୍ନ, ବନ୍ଧୁ କୁଟୁମ୍ବହୀନ, ନିରାଶ ଭଗ୍ନ ବ୍ୟକ୍ତିଟିଏ ପରି ଦିଶୁଛି । ତାର ପଞ୍ଜରାକାଠି ଆଉ ଦଦରା କଙ୍କାଳକୁ ଚୂର୍ଣ୍ଣବିଚୂର୍ଣ୍ଣ ନ କରିବା ପର୍ଯ୍ୟନ୍ତ ଯେପରିକି ସମୁଦ୍ର ମନରେ ଶାନ୍ତି ନାହିଁ, କାହିଁକି ଏ ହୀନ ପ୍ରତିହିଂସା ? ବୁଡ଼ିଲାକୁ ପୁଣି ବୁଡ଼ାଇବାରେ, ଭଙ୍ଗାକୁ ପୁଣି ଭାଙ୍ଗିବାରେ କି ପୌରୁଷ ଥାଏ ?

ସମୁଦ୍ର ପାଣିରେ ପାହାଡ଼ଟିଏ କାହିଁ ଠିଆ । ସ୍ନାନ ତାର ଶେଷ ହେଉ ନାହିଁ । କେବେ ନିଃଶେଷ ହୋଇଯିବ ପଛେ ସ୍ନାନ ତାର ସରିବ ନାହିଁ ।

ଆମ ସମୁଦ୍ର ତେଉଟଙ୍କୁଚ, ଜଙ୍ଗଲୀ, ପାହାଡ଼ୀ ବେଲାଭୂମି ପଥରେ ସବଙ୍କ ତେଶ୍ରା ପକାଇବା ସ୍ଥାନ, ବିଶ୍ରାମ ଗୃହ । କ୍ଳାନ୍ତ ଦେହକୁ ବିସ୍ତାରିତ କରି ଭେଲ୍‌ଭେଟ୍ ଘାସ ପଡ଼ିଆରେ ଗଡ଼ିଯିବାକୁ, କି ବସି ଝାଳ ମାରିବାକୁ, କି ଅମଣିଆ ମନକୁ ଚରି ଖାଇବା ଲାଗି ଛାଡ଼ିଦେବାକୁ ପ୍ରେରଣା ଆସେ ।

ଗୋଟିଏ ଝରଣାକୂଳେ ଓହ୍ଲାଇ ବସି ପଡ଼ିଲୁ । କମଳା ରସ ପିଇଲୁ । ମକ୍‌କା ରୁଟି; ଛତୁ ତରକାରୀ, ଛେନା ପୋଡ଼ ପିଠା, ମଞ୍ଜିହୀନ ଲାଲ ଅଙ୍ଗୁର ଖାଇଲୁ ।

ଫେଣଲୁ ଉପରବେଳା । ଝଗ୍ର କାଟୁଥିଲା । ବରଫ ପବନ ବି ମଞ୍ଜି ଥରାଇ ଦେଉଥିଲା । ପ୍ରସନ୍ନ ମଟର ସିଟ୍‌ଟି ଟିକିଏ ପ୍ରସାରିତ କରିଦେଇ କହିଲେ—ଭାଇନା, ତୁମର ତ ଦ୍ୱିପ୍ରହରେ ଶୋଇବା ଅଭ୍ୟାସ, ଟିକିଏ ଶୋଇପଡ଼ ।

ଦପଟେ ଜଙ୍ଗଲୀ ପାହାଡ଼ କାନ୍ଥି । ମଟର ଗ୍ରଲିଲା । ଅସରନ୍ତି ମର୍ମରରେ ଗ୍ରୁଇ ନିଦ; ବୋଧ ହେଉଥିଲା—ମୁଁ ସମୁଦ୍ର ସ୍ରୋତରେ ଭାସି ଭାସି ଯାଉଁ ଯାଉଁ କେଉଁ ପାତାଳ ପୁରରେ ଅଦ୍ଭୁତ ଉଦ୍ଭିଦସବୁ ଦେଖୁଛି, ସ୍ୱପ୍ନଠାରୁ ଆହୁରି ରଙ୍ଗୀନ୍ ଓ ଅଜବ୍ ।

**ନିଜ ମୁଣ୍ଡ ଯେ ନିଜେ ଖାଏ**

ଯେଉଁଠି ନିଆଁ, ସେଠି ଧୂଆଁ । ନିଆଁ ନଥାଇ ଧୂଆଁ ଆସିବ କାହୁଁ ? କାସ୍‌କେଡ୍ ପାହାଡ଼ମାଳା ଅଗ୍ନିଗିରି ଭାବେ ଖ୍ୟାତ । କିନ୍ତୁ ମୃତ । ଏବେ ନିଆଁ ନାହିଁ କି ଧୂଆଁ ନାହିଁ । ତେବେ ସମ୍ଭାବନା ଅଛି ।

ଏହି ଶତଶୃଙ୍ଗିତ ପର୍ବତର ଗୋଟିଏ ମାତ୍ର ଶୃଙ୍ଗ କ୍ରିୟାଶୀଳ—ହେଲେନ୍‌ସ । ସେଥିରୁ ଧୂଆଁ ବାହାରେ, ପାଉଁଶ ବାହାରେ, କିନ୍ତୁ ତା ମୁହଁରେ ହୁତୁ ହୁତୁ ହୋଇ ନିଆଁ ଜଳେ ନାହିଁ କିମ୍ବା ଘୋର ଗର୍ଜନରେ ଜ୍ୱଳନ୍ତ ଧାତୁ-ସ୍ରୋତ ବାହାରେ ନାହିଁ । ତଥାପି ଜୀବନ ଶଙ୍କା; ବିସ୍ଫୋଟ ଘଟି ନାହିଁ, ଘଟିପାରେ । ହୁଏତ ଜୀବନ ଘେନି ପଳାଇବାକୁ ବେଳ ମିଳିବ ନାହିଁ ।

ଏ ମାଉଣ୍ଟ୍ ଫୁଜିୟାମା ନୁହେଁ, କି ଭିସୁବିଏସ ନୁହେଁ, କି ମାଉଣ୍ଟ୍ ଏଟ୍‌ନା ନୁହେଁ । ଏଲୋଷ୍ଟୋନ୍ ପାର୍କର ଦଶ ହଜାର ଗାଇଜର୍‌ରୁ ଧୂଆଁ ବାହାରିଲା ପରି ଏଠୁ କେଉଁଠୁ ବାହାରେ ନାହିଁ । ହଠାତ୍ ନୀରବତା ଭଙ୍ଗ କରି କେତେବେଳେ ଇତାଳୀୟ ଦୁଇଟି ଗ୍ରାମ ପରି ଧୂଆଁ ପାଉଁଶରେ ଜନବସତି ପୋତି ପକାଇବ, କି ଲାଗି ସ୍ରୋତ ବୁହାଇ ସାମ୍ନାର ତରୁତୃଣ ବି ବିଲୁପ୍ତ କରିଦେବ, ତାର ଠିକ୍ ଠିକଣା ନାହିଁ ।

୧୯୮୦ ଖ୍ରୀଷ୍ଟାବ୍ଦରେ ଏହିପରି ଗୋଟିଏ ଉତ୍ପାତ ଘଟିଥିଲା ଓ ସମଗ୍ର ଆମେରିକାକୁ ଭୟରେ ଥରାଇ ଦେଇଥିଲା । କିନ୍ତୁ ଏ ଅଗ୍ନିଗିରି କାହାକୁ ଖାଇ ନାହିଁ, ଆଗେ ନିଜ ମୁଣ୍ଡ ଖାଇଲା, ପୁରାଣର ଭସ୍ମାସୁର ଭଳି । ପ୍ରଳୟ ତାଣ୍ଡବର ପ୍ରଚଣ୍ଡ ଉଲ୍ଲାସରେ ଗିରିଶୃଙ୍ଗଟା ଖଣ୍ଡଖଣ୍ଡ ହୋଇ କୁଆଡ଼େ ବୋଲି କୁଆଡ଼େ ପଡ଼ିଲା । ତା ସ୍ଥାନରେ ଖୋଲା ହୋଇଗଲା ଏକମାଇଲ ଗଭୀର ଏକ ଗର୍ତ୍ତ—ଜଳଭର୍ତ୍ତି ହ୍ରଦଟିଏ । ଗଦା ଗଦା ଧାତୁଭସ୍ମ ମାଇଲ୍ ମାଇଲ୍ ଧରି ବୃଷ୍ଟି ହୋଇଥିଲା । ଏବେ

ଏଠି ସେଠି ପୁଳା ପୁଳା ମିଳେ । ଧ୍ୱଂସରୁ ସୃଷ୍ଟି । ଆମେରିକାସ୍ଥ ଶିଳ୍ପୀ ଗଢ଼ିତ ଧାତୁ ଭସ୍ମରୁ ବଲ୍‌ଗା ହରିଣ, କୃଷ୍ଣସାର, ବାଇସନ୍, ଜିରାଫ୍, ଅକ୍ଟୋପାସ୍ । ଏହି ପାହାଡ଼ ଏବେ ଏକ ଜାତୀୟ ସ୍ମୃତି ମନ୍ଦିର । କେନ୍ଦ୍ର ସରକାରଙ୍କ ସଂରକ୍ଷିତ ପାର୍କର ଅନ୍ତର୍ଗତ ।

ନିକଟକୁ ନ ଯିବା ଲାଗି ତାଗିଦ୍ । ତିନି ମାଇଲ୍ ଦୂରରୁ ଏକ ଗ୍ରେଟ ପାହାଡ଼ଟି ଦିଶେ । ମଣିଷର ପ୍ରକୃତି ଯେପରି, ଏହାର ପ୍ରକୃତି ସେହିପରି । ମଣିଷ ବାହାରେ ବହୁ ଶତ୍ରୁ ଦେଖେ, ନିଜର ଭିତରର ଶତ୍ରୁକୁ ଦେଖିପାରେ ନାହିଁ । ନିଜେ ଯେ ସବୁଠାରୁ ନିଜର ବେଶୀ କ୍ଷତି କରେ, ବୁଝିପାରେ ନାହିଁ ।

## ଅନେକ ନଦୀ, ଅନେକ ସହର

ଉଇଲେମେଟ ନଦୀର ଏପାଖେ ସେପାଖେ ସହର, ଠିକ୍ ଝେଲମ୍ ନଦୀର ଦି ପାଖ ଶ୍ରୀନଗର ପରି, ବହୁ ସେତୁଦ୍ୱାରା ସଂଯୁକ୍ତ ।

ମେଘୁଆ, କୁହୁଡ଼ିଆ ପାଗ । ମୁହଁକୁ ମୁହଁ ଦିଶୁନାହିଁ ପ୍ରସନ୍ନ, ନରମା ଆମ ଝଲକ ଝଲକା । ଘନ ଜଙ୍ଗଲ ପାରି ହୋଇ ଆମେ ଏଭରଗ୍ରିନ୍ ରାଜ୍ୟ ଓ୍ୱାସିଂଟନ୍ ପ୍ରଦେଶରେ ପହଞ୍ଚିଲୁ । ସିଆଟଲ୍ ଏହାର ବଡ଼ ସହର । ଲୋକସଂଖ୍ୟା ଦଶଲକ୍ଷ ।

ତାପରେ ଆମେ ଇତିହାସ ପ୍ରସିଦ୍ଧ, ଗଙ୍ଗାନଦୀ ପରି ପ୍ରସାରିତ କଲମ୍ବିଆ ନଦୀ କୂଳେ ପହଞ୍ଚିଲୁ । କାସ୍‌କେଡ୍ ଏହି ନଦୀର ତୀରବର୍ତ୍ତୀ ପାହାଡ଼ମାଳା; ଏହି ନଦୀରେ ଲୁଇସ୍ ଓ କ୍ଲାର୍କ ଜଳଯାତ୍ରା କରି ପ୍ରଶାନ୍ତ ମହାସାଗର କୂଳରେ ପହଞ୍ଚିଥିଲେ, ପଶ୍ଚିମ ଆମେରିକା ଆବିଷ୍କୃତ ଓ ବିକଶିତ ହୋଇଥିଲା । ଏହା ଏକ ଜ୍ୱଳନ୍ତ ଐତିହାସିକ ଘଟଣା ।

କଲମ୍ବିଆ ବିପୁଳଜଳା । ତା ତୀରେ ତୀରେ ଯାଇ ଆମେ ଜଙ୍ଗଲୀ ସହର ଉଡ଼୍‌ଲାଣ୍ଡରେ ପହଞ୍ଚିଲୁ । କୁକୁର ଟ୍ରେନିଂ କେନ୍ଦ୍ର ଏଠାରେ ଅବସ୍ଥିତ । ଚୋର ଧରିବା, ଶିକାର କରିବା, ଆପଦବିପଦରେ ମାଲିକକୁ ସାହାଯ୍ୟ କରିବା ଆଦି କୁକୁରକୁ ଶିକ୍ଷା ଦିଆଯାଏ । କ୍ରମେ ଜଙ୍ଗଲ ଘନତର ହେବାକୁ ଲାଗିଲା, ଜନବସତି-ଶୂନ୍ୟ ଅଞ୍ଚଳ । ନିରିହ, ନିବିଡ଼ ସବୁଜତା ପ୍ରାଣକୁ ସରସ କରୁଥାଏ ।

## ମାଇଲେ ମଲ ନ ମାଇଲେ ମଲ

ଲୁଇସ୍ ନଦୀ । ତାର ଜଳ ନିୟନ୍ତ୍ରଣ କରି ପାଇପ୍ ସାହାଯ୍ୟରେ ତଳକୁ ଛାଡ଼ି ଦିଆହୋଇଛି । ନଈରେ ଦୁଇଟି ବଡ଼ ବଡ଼ ହ୍ରଦ, ସାମନ୍ ମାଛ ବୃଦ୍ଧି କେନ୍ଦ୍ର ।

ସାମନ୍ ଆକାରରେ ଜଲଙ୍ଗ ମାଛ ପରି ବୃହତ୍, ମଧୁର ମାଛ । ଲକ୍ଷ ଲକ୍ଷ ସଂଖ୍ୟାରେ ସାମନ୍ ପହଁଚୁଛନ୍ତି । ଝାଳ ମୁଣ୍ଡମାଳ । ଛଞ୍ଚାଣ, ଚିଲ କବଳରୁ ମାଛଙ୍କୁ ରକ୍ଷା କରିବା ଲାଗି ଉପରେ ଲୁହା ତାର ଜାଲି ଦିଆ ଯାଇଛି ।

ମାଈ ସାମନ୍ ଅନ୍ୟ ମାଛ ପରି ବର୍ଷକୁ ବର୍ଷ ମଞ୍ଜି ଛାଡ଼େ ନାହିଁ । ସେ ଜୀବନରେ ଥରେ ମାତ୍ର ଡିମ୍ବ ଛାଡ଼େ, ତାପରେ ପରେ ଆତ୍ମହତ୍ୟା କରେ । ଆତ୍ମ-ହତ୍ୟାର ନିର୍ଦ୍ଦିଷ୍ଟ ଋତୁ ଅଛି, ସ୍ଥାନ ଅଛି । ସେ ଋତୁ ଆସିବା ଆଗରୁ ବିଶେଷଜ୍ଞ ତାକୁ ଧରେ, ପେଟ କାଟି ମଞ୍ଜି କାଢ଼େ । ରକ୍ତ ଧାରି ବୋହିଯାଏ, ଧକେଇ ଧକେଇ ସାମନ୍ ମରେ, କିମ୍ବା ମରିବା ଆଗରୁ ତାକୁ ମାଟିତଳେ ସମାଧି ଦିଆଯାଏ ।

ପେଟ କଟା ହେଲା ପରେ ବିଶେଷଜ୍ଞଙ୍କୁ ପଚାରିଲି—ଏ ପାହାଡ଼ ପ୍ରମାଣେ ସାମନ କ'ଣ ବିକ୍ରୟ କେନ୍ଦ୍ରକୁ ଯିବ ? ଏଠି ବିକ୍ରି ହେବ ନାହିଁ ?

''ଏସବୁ ଖାଦ୍ୟର ଅଯୋଗ୍ୟ; ପୋଡା ହେବ ।''

ହୁଏତ ରାସାୟନିକ ପ୍ରକ୍ରିୟା ଫଳରେ ବିଷାକ୍ତ ହୋଇଛି । ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ । କିନ୍ତୁ ଓଡ଼ିଶାରେ ଏସବୁ ଶସ୍ତା ଦରରେ ବିକ୍ରୀ ହୁଏ କିପରି ?

## ନଦୀ ଧାରେ, ପାହାଡ଼ କିନାରେ

ଉଚ୍ଚ ଉଚ୍ଚ ଜଙ୍ଗଲୀ ପାହାଡ଼ ମଧ୍ୟରେ ଲିଉଇସ୍ ନଦୀର ଗତି, ଗଭୀରରୁ ଗଭୀରତର ଗର୍ତ୍ତ ମଧ୍ୟରେ । ଘନ ସବୁଜ ବନରେ କୁହୁଡ଼ି, ଦୀର୍ଘତମ ବୃକ୍ଷ ଶାଖାରେ ଧୂସର ଭଲ୍ଲୁକଟିଏ ପରି ବସିଛି, କିମ୍ବା ପାହାଡ଼ରୁ ପାହାଡ଼ ଉଠି ସର୍ବୋଚ୍ଚ ଶୃଙ୍ଗକୁ ଗତି କରୁଛି, ପ୍ରାଗୈତିହାସିକ ଡ଼ିନୋସର୍ ଭଳି । ନଦୀର ଶୂନ୍ୟସ୍ଥଳ ପୂର୍ତ୍ତି କରିଛି କୁହୁଡ଼ିର ମସୃଣତା । ଶୀତଳ ପବନ ଧାଏଁ ଆକାଶ ଆବୋରି, ଅନ୍ୟ ଏକ ମହା-ସ୍ରୋତ ପରି, ଏକ ପାହାଡ଼ରୁ ଅନ୍ୟର, ଏକ ବୃକ୍ଷରୁ ପରବର୍ତ୍ତୀ ବୃକ୍ଷର ଫାଙ୍କ ଦୂର କରି । ଖରା ଆସି ପୁଣି ସବୁ ଫାଙ୍କ ଫାଙ୍କ କରେ । ମନ ମୋ ନିସ୍ତବ୍ଧ ହୁଏ ଗୋଟିଏ ବିନ୍ଦୁରେ । ସେ ହେଲେନ୍ସ ଅଗ୍ନିଗିରି । ସୂର୍ଯ୍ୟ ମାରିଛନ୍ତି ଲକ୍ଷେ ସର୍ଚ୍ଚ-ଲାଇଟ୍ ସେଇ ରୂପାଚ୍ଛନ୍ନ ଶୃଙ୍ଗ ଉପରକୁ ।

କାସ୍କେଡ୍ ପର୍ବତମାଳାର ଉଚ୍ଚତମ ଶୃଙ୍ଗ ମାଉଣ୍ଟ୍ ରେନିଅର୍ (୧୪ ହଜାର ଫୁଟ) । ତଳେ ତାର ବିସ୍ତୃତ ହ୍ରଦ, ତରଳ ବରଫ ଜମେ । ପ୍ରକୃତିର ଅପରୂପ ରୂପଲୀଳା, ସୂର୍ଯ୍ୟ ଅଭିଷେକ, ସବୁ କ୍ଷଣେ ବ୍ୟର୍ଥ ହେଲା ମନ୍ତର ସେ କୁହେଳି ଚନ୍ଦ୍ରାନ୍ତେ ।

କାସ୍‌କେଡ୍ ପର୍ବତମାଳାରେ 'ଓ୍ୱାଇନୀ', 'ମୁଲଟ୍‌ନମା' ଆଦି ବହୁ ପ୍ରପାତ । ମଲ୍‌ଟ୍‌ନମାର ଉଚ୍ଚତା ଏକଶତ ଫୁଟ । ସମସ୍ତ ପ୍ରପାତ ସୃଷ୍ଟି କରିଛି ଲେକ୍‌ଟିଏ, ସେଥିରୁ ନଦୀଟିଏ ବୋହିଯାଇ କଲମ୍ବିଆରେ ପଡ଼ିଛି । ଓ୍ୱାଇନୀକୁ ଦେବୀ ଭାବେ ପୂଜା କରନ୍ତି ଲୋହିତଭାରତୀୟ । ମାରାତ୍ମକ ମହାମାରୀରୁ ରକ୍ଷା ପାଇବା ପାଇଁ ସେମାନେ ଝିଅଟିଏ ବଳି ଦେଇଥିଲେ ତାର ସ୍ରୋତରେ । କଳଧ୍ୱନିରେ ଏବେ ବି ତାର କାନ୍ଦଣା ଶୁଭେ ।

## ଉଠେଇ ବୁଡ଼େଇ ହେଲେ

ଭାବରେ ଉଠେଇ ବୁଡ଼େଇ ହେଲାବେଳେ ଭାବୁକର ପରମ ସୁଖ, ଚରମ-ଶାନ୍ତି । ସେପରି ମୁହୂର୍ତ୍ତ ଜୀବନରେ କେତେଥର ଆସେ ? ପ୍ରକୃତି କୋଳରେ ବସିଛୁ, ରୂପେ ରୂମେ ମଗ୍ନ; ଆତ୍ମବିସ୍ମୃତ । ଅବଚେତନର ଏକ ଅନ୍ଧକାର କନ୍ଦର ।

ପର୍ବତ, ପ୍ରପାତ, ନଦୀ, ଘନାରଣ୍ୟ, କ୍ରନ୍‌ଟୁଟୀ ଓ ରୌଦ୍ର ଲୀଳା—ଏଠି ଏସବୁ ସୌନ୍ଦର୍ଯ୍ୟର ଛନ୍ଦପତନ ଘଟାଏ ନାହିଁ କେହି । ସମସ୍ତ ସୁସଜ୍ଜିତ, ସୁବିନ୍ୟସ୍ତ, ଅକ୍ଷୁଣ୍ଣ, ଅଖଣ୍ଡ, ସେଇ ଏକ ସ୍ମରଣୀୟ ଅପରାହ୍ଣରୁ ସନ୍ଧ୍ୟା ଯାଏ ମୋର ଯୋଗଧ୍ୟାନ —ଶ୍ୱେତ ସ୍ୱଚ୍ଛ ରଙ୍ଗ ବଦଳି କ୍ଷଣକୁ କ୍ଷଣ ହୁଏ ଈଷତ୍ ପିଙ୍ଗଳ—ଗାଢ଼ ଲୋହିତ ।

ଗୋଟିଏ ସନ୍ଧ୍ୟାର ଅନେକ ରୂପ, ଅନେକ ରଙ୍ଗ, ନଦୀରେ, ପ୍ରପାତରେ, ଅରଣ୍ୟର ସ୍ତରେ ସ୍ତରେ, ଗିରି ଶୃଙ୍ଗେ ଶୃଙ୍ଗେ, କୌତୁକମୟୀ ଶୋଭାପାଏ ଅଷ୍ଟ-ଧାତୁର ରଙ୍ଗରେ, ଅଥବା ସେ ଘନଶ୍ୟାମମୟୀ ହସିଉଠେ ଆକାଶର ଏକ କୋଣେ ରକ୍ତାକ୍ତ ଅଧରେ । କେଉଁଠାରେ ଘନାରଣ୍ୟେ ଫୁଟାଏ ସେ ଇନ୍ଦ୍ରଜାଲ ବଳେ ଅଜସ୍ର ରଙ୍ଗର ଫୁଲ, ମୁହୂର୍ତ୍ତକେ ସବୁ ଝରିପଡ଼େ ।

କଲମ୍ବିଆ ନଦୀ ଜଳେ ହଠାତ୍ ତାର ରଙ୍ଗପଟେତ ଦିଶେ, ମାୟାମୟୀ ମେଘର କାନ୍ଥାରେ କାହିଁ ହଜିଯାଏ ହଠାତ୍ ନିମିଷେ । ହଠାତ୍ ଦେଖାଦିଏ କେଉଁ କୁହୁଡ଼ି ଶୀର୍ଷରେ ମନ୍ଦାର ଫୁଲଟି ପରି । ରୂପେ ରୂପେ ଲଗାଏ ସେ ତୁଳୀ, କାହିଁ ଲଘୁ, କାହିଁ ଅବା ଗମ୍ଭୀର ଭାବରେ ।

ମରୁଭୂମିର ସନ୍ଧ୍ୟା ଏ ନୁହେଁ । ସବୁ ସମୃଦ୍ଧିର ପୂର୍ଣ୍ଣତମ ଜୁଆରର ସନ୍ଧ୍ୟା, ଅଜସ୍ର ଐଶ୍ୱର୍ଯ୍ୟମୟୀ, କି କଳଇ, କି ଜଳଇ ?

ଯେଉଁ ଛନ୍ଦସବୁ ହରାଇଥିଲି ଅପନ୍ତରା କାନ୍ତାରରେ, ଯେଉଁ ଦିଶା ଭୁଲି-ଥିଲି ଦିବ୍ୟ ଆନନ୍ଦର, ସେସବୁ ଆଜି ହଠାତ୍ ଝଙ୍କୃତ ହେଲା ମୋ ମନରେ । କଳେ

ସରିଯାଇଥିଲି, କଲମ ଚିରକାଳ ଲାଗି ଅଟକିଗଲା ପରି ଲାଗୁଥିଲା । ନିଜକୁ ଫେରି ପାଇଲି ଆଜି କ୍ୟୋଢ଼ଷ୍ଟ ମଣ୍ଡଳେ ।

ପ୍ରକୃତିର ଏ କି ଅଦ୍ଭୁତ ଶକ୍ତି; ଦିହମନର ସମସ୍ତ କ୍ଷତ ଆରୋଗ୍ୟ କରିଦେଲା ତାର କୁଆଁରୀ ସ୍ପର୍ଶରେ । ନିଜକୁ ହରାଇ ନବ ରୂପେ ପାଇବାର ଅପୂର୍ବ ପୁଲକ ଅନୁଭବେ ମୋର ଅନ୍ତସ୍ଥଳେ । ତନ୍ତୁ ତଳେ ଡ଼ୁବିଗଲି ପ୍ରକୃତି ରୂପରେ କାମ୍ନା ରୂପ ଅଭିଭୂତ ମୋର ଅଭ୍ୟନ୍ତରେ ।

ଏ ପରିବେଶ ନିମଜ୍ଜନ ପରେ ଅନୁଭବ କଲି—ମୁଁ ଭିନ୍ନ ମନ, ଭିନ୍ନ ପ୍ରାଣ ରୂପପିପାସୁ ଜଣେ; ଅପୂର୍ବ ମୋ ଶିଳ୍ପୀ ପରମ୍ପରା—ବାର୍ଦ୍ଧକ୍ୟ ଯେ ମାନେ ନାହିଁ, ପଳିତ ହେଲେ ବି । ହୋଇ ନିର ପଥହରା ପାଏ ସେ ଜୀବନ ପଥ; ଅଶ୍ରୁଧାରା ଢ଼ାଳି ଯିଏ ଆବିଷ୍କାର କରେ ଯୌବନଦ ଆନନ୍ଦର ଉତ୍ସ । ଚିର ଯେ ସଂଗ୍ରାମ କରି ପାଇଛି ନିଜକୁ ନବ ନବ ରୂପେ, ନିଜକୁ ଉତ୍ସର୍ଗ କରି ସାଧନା ବେଦୀରେ ନିଜର ଯେ ଅସ୍ତିତ୍ୱ କଲାପେ । ସେହି ଶିଳ୍ପୀ ଅନ୍ତରଙ୍ଗ ରସ ପାଇଲି ପ୍ରପାତେ, ହ୍ରଦେ, ଗିରିଶିରେ, ଅରଣ୍ୟେ ବା ସବୁଜ ମଧ୍ୟରେ, ସନ୍ଧ୍ୟାର ଅଧରେ ।

# ଏଗାର

## ରଜନୀଶପୁରମ୍

'ମଠକୁ ଯିବେ ?'

'ମଠ ! କୋଉ ମଠ ?'

'ଆଶ୍ରମ ? ହଉ ଏବେ ଆଶ୍ରମ, ମଠରେ ମହନ୍ତ, ଆଶ୍ରମରେ ବାବା, ଏଇ ତାରତମ୍ୟ ନା ଆଉ କ'ଣ ?'

'କୋଉ ମଠ, ଆଶ୍ରମ, ମହନ୍ତ, ବାବା କଥା ଆପଣ କହୁଛନ୍ତି ପ୍ରସନ୍ନ-ବାବୁ ?'

'କାହିଁକି, ରଜନୀଶ ଓରେଗଁରେ ଥିବା କଥା ଆପଣ କ'ଣ ଜାଣି ନାହାନ୍ତି ? ନାଆଁ ଶୁଣି ନାହାନ୍ତି ?'

'ଶୁଣିଛି । ସେ ଜଣେ ବାବା । ଗେରୁଆ ପିନ୍ଧନ୍ତି, ମୁହଁରେ ଗହଳ ଦାଢ଼ି । ସେତକ ଭେକ ନ ଥିଲେ କଏ ବାବା ବୋଲି ଚହ୍ନିବ ଯେ !

ସେ ଅଧ୍ୟାପକ ଥିଲେ, ଦର୍ଶନ ବିଭାଗର; ଅଧ୍ୟାପକ ଜଣେ ବାବା; ଏ ବାବାପଣ ଛାଡ଼ି ସେ ବାବା ଭେକ କାହିଁକି ଧରିଲେ ? ଧର୍ମ କ'ଣ ଏକ ବ୍ୟବସାୟ, ଅଧିକ ଲାଭଜନକ ?

ସେ ପୁଣି ବୋଲାନ୍ତି ଭଗବାନ୍ ! ଭାରତରେ ଏବେ ବହୁ ଭଗବାନ୍, ଏ ଭଗବାନ୍‌ମାନଙ୍କ ଉପଦ୍ରବରେ ଭାରତରେ ମଣିଷ ଉଧେଇ ପାରୁ ନାହାନ୍ତି !

ଉଠୁରୁଛନ୍ତି ଭକ୍ତ । ଉଠୁରୁଛନ୍ତି କ'ଣ, ଉଠୁର ପଶୁଛନ୍ତି କହିଲେ ଚଳେ ।

ବେଳେବେଳେ ଭାବେ—ଅଧିକାଂଶ ତ ଭକ୍ତ, ଦେଶରେ ଏତେ ଦୁର୍ନୀତି କରୁଛି କଏ ?'

'ସେ କଥା ଛାଡ଼ । ଏ ରଜନୀଶ ପ୍ରକୃତରେ ଜଣେ ବାବା; ନଇଲେ ତାଙ୍କୁ ଏତେ ଲୋକ ମାନନ୍ତେ କାହିଁକି ? ଶିଷ୍ୟ ସଂଖ୍ୟା ହୁହୁ ହୋଇ ବଢ଼ିଯାନ୍ତା କିପରି ?

ମୋ ବିଶ୍ୱାସ—ଭାରତରେ ତାଙ୍କୁ ଭୁଲ ବୁଝିଲେ । ସେ ଜଣେ ତାନ୍ତ୍ରିକ । କାମରୁ ନିଷ୍କାମକୁ ତାଙ୍କର ଗତି । ପ୍ରବୃତ୍ତି ଚରିତାର୍ଥ ହେଲା ପରେ ନିବୃତ୍ତି; ସୀମାର ଶେଷରେ ଅସୀମରେ ପ୍ରବେଶ—ମୋକ୍ଷ ବା ମୁକ୍ତି ।'

"କିନ୍ତୁ କାମର କବଳରୁ ମଣିଷ ଖସିପାରେ ନାହିଁ । ସେଇ ନରକରେ ଘାଣ୍ଟି ହେଉ ହେଉ ମରେ ।

ପରକୀୟା ପ୍ରୀତିରୁ ଭ୍ରଷ୍ଟାଗ୍ରର ବ୍ୟାପିଲା, ଆଶ୍ରମର ବଦ୍‌ନାମ ହେଲା । ରଜନୀଶ ବାବା ପୁନାରୁ ବିତାଡ଼ିତ ହେଲେ ।'

'କିନ୍ତୁ ପୃଥିବୀରେ ବିତାଡ଼ିତମାନଙ୍କର ବଡ଼ ଆଶ୍ରୟଦାତା ଦେଶ କିଏ ? ଆମେରିକା । ଏବି ଆମେରିକୀୟଙ୍କ ପୂର୍ବପୁରୁଷ ଦିନେ ଆଶ୍ରୟପ୍ରାର୍ଥୀ ଥିଲେ ।

ପାହାଡ଼ିଆ, ଅପନ୍ତରା, ସନ୍ତସନ୍ତିଆ ଭୂଇଁ, ଏବେ ବି ପୂରା ଆବାସଯୋଗ୍ୟ ହୋଇନାହିଁ । ସେଥିରୁ ୬୪ ଏକର ଆବୋରି ବସିଲେ ରଜନୀଶ ।

ଏଇ ଅପନ୍ତରାରେ ତିଆରି ହେଲା ବାଟ; ଲଗାହେଲା ଜଙ୍ଗଲ, ବଗିଚା, କୋଠା ପରେ କୋଠା ଗଢ଼ା ହେଲା, ଜଳ ଓ ବିଦ୍ୟୁତ୍ ବ୍ୟବସ୍ଥା ହେଲା । ଦିନରାତି ପରିଶ୍ରମ କରି ଶିଷ୍ୟମାନେ ଛିଡ଼ା କଲେ ନୂତନ "ରଜନୀଶପୁରମ୍ ଆଶ୍ରମ'—ଅଭି-ନନ୍ଦନ ଗୃହ, ଗୋଶାଳା, ଅତିଥି ଭବନ, ପ୍ରାର୍ଥନା ମନ୍ଦିର । ଏଠାର ସ୍ଥାୟୀବାସିନ୍ଦା ଏବେ ଚାରି ହଜାର; ପ୍ରତିଦିନ ଯାତାୟାତ କରନ୍ତି ପ୍ରାୟ ଦୁଇ ହଜାର ଶିଷ୍ୟ ପ୍ରଶିଷ୍ୟ । ଏବେ ସାରା ପୃଥିବୀରେ ରଜନୀଶଙ୍କ ଶିଷ୍ୟ ୪ ଲକ୍ଷ—ଡାକ୍ତର, ଇଞ୍ଜି-ନିୟର, ଅଧ୍ୟାପକ, ବ୍ୟବସାୟୀ, ଫିଲ୍ମଷ୍ଟାର୍—ଆଉ କିଏ ବା ନୁହେଁ ?

ବର୍ଷକେ ଚାରିଗୋଟି ଧର୍ମୋତ୍ସବ ହୁଏ । ପଟୁଆରରେ ରଜନୀଶଙ୍କ ୬୦ଟି ସୁନା ରୂପା ଗୁଆଣି ରୋଲ୍‌ସ ରୟେସ୍ ଗାଡ଼ି ବାହାରେ । ଏସବୁ ଶିଷ୍ୟମାନଙ୍କ ଦାନ ।

ଆଶ୍ରମ ସମୃଦ୍ଧିଶାଳୀ; ବହୁତ ଅକୁଣ୍ଠ ଦାନ ଯୋଗୁଁ ଆଶ୍ରମରେ କେବେ ଅର୍ଥାଭାବ ଘଟେ ନାହିଁ ।

'ଏ ସଂସାରରେ କିଏ ଦେବାକୁ ଭଲ ପାଏ ? କି ଲାଭ ଆଶାରେ ଲୋକେ ଆଶ୍ରମକୁ ଏତେ ଦାନ କରନ୍ତି ?'

'ମୁଁ କେବେ ଦିଏ ନାହିଁ, ଠିକ୍ ଜାଣେ ନାହିଁ ।'

'ମୋ ଧାରଣା—ଲୋକେ ତ ଯେତେ ଇଚ୍ଛା ସେତେ ଟଙ୍କା ପାଇଲେ, ଯେତେ ଇଚ୍ଛା ସେତେ ଘରଦ୍ୱାର କଲେ । ପୃଥିବୀରେ ଯେତେ କିଛି ସ୍ୱାଦୁ ଦ୍ରବ୍ୟ ଖାଇଲେ, ଯେତେ ମନ ସେତେ ମୂଲ୍ୟବାନ୍ ପୋଷାକ ପିନ୍ଧିଲେ । ଅଦେଖା ଦେଖିଲେ, ଅଚାଖା ଚାଖିଲେ । ତାପରେ ? କି ସୁଖ, କି ସ୍ୱାଚ୍ଛନ୍ଦ୍ୟ ଆଉ ବାକି ରହିଲା ?

ରଜନୀଶ କ'ଣ ଅଧିକ ରଖିଛନ୍ତି ବୋଲି କହୁଛନ୍ତି ?

କେଉଁ ସୁଖ ପାଇଲେ ଆଉ ଅଧିକ ସୁଖ ଲୋଡ଼ା ପଡ଼େନାହିଁ ? କି ସ୍ୱାଦୁ ସେ, ଯାହାକୁ ଚାଖିଲେ ଆଉ କୌଣସି ସ୍ୱାଦୁ ଲୋଡ଼ା ପଡ଼େ ନାହିଁ ।

ତା ମହକ କୁଆଡ଼େ ବୁଲିଆ ବାହାରେ ? ଥରେ ପ୍ରାଣରେ ଲାଗିଲେ ଆଉ ଛାଡ଼େ ନାହିଁ ?

କି ସଙ୍ଗୀତ କଥା ସେ କହୁଛନ୍ତି, ଯାହାର ଛନ୍ଦ ମନରେ ପଶିଲେ ଆଉ କୌଣସି ଛନ୍ଦ ରୁଚେ ନାହିଁ ?

ରଜନୀଶଙ୍କ ଉକ୍ତିରେ ଏପରି କିଛି ଯୁକ୍ତି ଅଛି, ଯାହା ଶୁଣି ଜ୍ଞାନୀ ବିଜ୍ଞାନୀ ବି ତାଙ୍କ ଆଡ଼କୁ କେବଳ ଢଳି ପଡନ୍ତି ନାହିଁ, ସର୍ବସ୍ୱ ଆଣି ଢାଳି ଦିଅନ୍ତି ।'

'ପ୍ରସନ୍ନବାବୁ, ଚାଲ, ତାଙ୍କୁ ଟିକିଏ ଦର୍ଶନ କରି ଆସିବା ।'

ମୋଟେ ଶହେ ମାଇଲ୍ ବାଟ, କିନ୍ତୁ କଷ୍ଟ କରି ଗଲେ ବି ଦେଖା ହୋଇ ପାରିବ ନାହିଁ । ୧୯୮୧ ରେ ଏଠାକୁ ଆସିବା ପରେ ସେ ନୀରବ ରହିଛନ୍ତି । ଯାହା କହୁଛନ୍ତି ବା କରୁଛନ୍ତି, ତାଙ୍କର ଶିଷ୍ୟ । ଏହା ହିଁ ତାଙ୍କ ମହିମାକୁ ଆହୁରି ବଢ଼ାଇ ଦେଇଛି ।

ଏବେ ସେ ଇନ୍‌କମ୍ ଟିକସ ଦିଅନ୍ତି ନାହିଁ, ଭୋଟ ଦିଅନ୍ତି ନାହିଁ । ଓରେଗଁ ରାଜ୍ୟରୁ ସତେ ଯେପରି ଏ ଖଣ୍ଡ ବିଚ୍ଛିନ୍ନ ।

ଏ ସ୍ଥାନର ହଠାତ୍ ଏପରି ଉନ୍ନତିରେ କେତେ ଲୋକ ଈର୍ଷୀ, ଅସହିଷ୍ଣୁ । କେତେ ଆଶ୍ରମର ବିସ୍ତୃତ ସମ୍ପତ୍ତି ଉପରେ ଲୋଲୁପ ଦୃଷ୍ଟି ପକାନ୍ତି । ଥରେ ବୋମା ପକାଇ ଏହାର କେତେକ ଅଂଶ ଧ୍ୱଂସ କରିଥିଲେ । ତା ପରେ ଏକ ସ୍ୱେଚ୍ଛାସେବୀ ବାହିନୀ ଗଠିତ ହୋଇଛି । ଚାରି ଆଡ଼େ ସବ୍‌-ମେସିନ୍‌ଗନ୍ ଧରି ଗାର୍ଡ଼ ଜଗି ରହିଛନ୍ତି । ଆଶ୍ରମ ପ୍ରବେଶରେ କଡ଼ା କଟକଣା ଜାରି ।

## ଘୁ ଘୁ କାହିଁ ?

ବନ୍ଧୁ କଣ୍ଠର ଶବ୍ଦମିଶା ଏକ ନିରର୍ଥକ ଘୁ ଘୁ—ଆମ ହାଟ, ମେଳା ବା ମେଳଣର ଏକ ବିଜ୍ଞାପନ । ମହୁମାଛି ଗୁଞ୍ଜନରୁ ଗମ୍ଭୀରତର; କିଛି ସଉଦା ନ କଲେ ବି ଏଇ ଘୁ ଘୁ ଟିକ ମଣିଷ ମନରେ ଯୋଜନା ଆସେ ! ନର୍ମା ଆମକୁ ଓରେଗଁ ମେଳାକୁ ନେଲା, ମାଇଲ୍ ମାଇଲ୍ ବ୍ୟାପୀ; ଏଠି ବାଲିଯାତ୍ରା ପରି ଦଳ ଦଳ ଲୋକ ଖାଉଛନ୍ତି, ସଉଦା ବି କରୁଛନ୍ତି, ନାନା ପ୍ରକାରର ଦୃଷ୍ଟି ଆକର୍ଷଣ-କାରୀ ନାଗର ଦୋଳା ବୁଲୁଛି । ଗୋଟି ଗୋଟି ରଙ୍ଗୀନ୍ ବେଲୁନ୍ ଭିତରେ

ମଣିଷଟିଏ ନାହିଁ ଗୃଳିଛି; ବାଘ, ଭାଲୁ, ହିପୋପୋଟାମସ୍, ଗଧିଆ, ପାଡ଼ିମାଙ୍କଡ଼, କୁକୁର ମୁଖାଧାରୀ ଶିଶୁ, କିଶୋର ମହଲରେ କୌତୁକ ସୃଷ୍ଟି କରୁଛନ୍ତି। ନାନା ବ୍ୟଙ୍ଗ, ରଙ୍ଗ, କ୍ରୀଡ଼ା ମଧ୍ୟରେ କଳି ପରି ବ୍ୟବସାୟୀଙ୍କ ବିକ୍ରୀବଟା ଗୃଳିଛି। ମନ ପରିବର୍ତ୍ତନ ଲାଗି ଠେଲାଗାଡ଼ିରେ ବସାଇ କେତେ ପାଗଲାଗାରଦର ପାଗଳାଙ୍କୁ ମେଳା ଦେଖାଇ ନିଆ ହେଉଛି। କେତେ ଅଚଳ, ବୃଦ୍ଧ, ବିକଳାଙ୍ଗ ନିଜ ଗାଡ଼ି ନିଜ ହାତରେ ଠେଲି ମେଳା ଦେଖୁଛନ୍ତି। ଏଠି ଏତେ ଲୋକ; ଘୁଷୁ ନାହିଁ ?

ଆମ ପୁରୀ ମନ୍ଦିରର ଆନନ୍ଦ ବଜାରର ମହାର୍ଦ୍ଧ କିଣାବିକାରେ ଯେପରି, ଏଠି ମହୁ ବିକ୍ରିସ୍ଥରେ ସେହିପରି ଚଖାଚଖିର ସୁଆଙ୍ଗ। ରୁଚିଲେ କିଣ, ନଇଲେ ନାହିଁ।

ନର୍ମାର ଖାଦ୍ୟରୁଚି ଉଚ୍ଚସ୍ତରର; ସେ ଖାଲି ଭୋଜନୀ ନୁହେଁ, ଉତ୍ତମ ଗୃଖୁଣୀ ମଧ୍ୟ। ଲତା ଲାଜକୁଳୀ—ଭାବେ କାହିଁକି ଗୃଖିବ, ଯେବେ ନବ ନାହିଁ ! ଦୋକାନୀ କଣ ଭାବିବ ! ମୁଁ କିନ୍ତୁ ନର୍ମା ପଛେ ପଛେ ଧାଏଁ, ବହୁ ମଧୁଚକ୍ରର ମଧୁ ଗୃଖେ। ସୂର୍ଯ୍ୟମୁଖୀ ମଧୁ, ଗୋଲାପ ମଧୁ, ମାଗ୍ନୋଲିୟା ବା ବିଭିନ୍ନ ମିଶ୍ରିତ ବନଫୁଲ ମଧୁର ସ୍ୱାଦରେ କିଛି ତାରତମ୍ୟ ଥିବାର ମୁଁ ଜାଣିପାରେ ନାହିଁ। ମୋ ଜିଭ ଅପଟୁ। ନର୍ମା କାହିଁକି ଏତେ ଗୃଖେ, କିଛି କିଣେ ନାହିଁ, ସେ ଜାଣେ। ନ କିଣି ଏମିତି ଗୃଖି ବୁଲିଲେ ଆନନ୍ଦ ବଜାରର ବିକାଳୀ କହେ—ଚଖାଟାଏ ! ତା ପଛରେ ଲାଗେ ପୁରୀ ପ୍ରଚଳିତ ଏକ ଗାଳି, ଅଭିଧାନ ବହିର୍ଭୂତ ଶବ୍ଦ।

ଆମେରିକାସ୍ଥ ଫୁଲସଉକୀ। କେବଳ କଳାକାର ବା ସାହିତ୍ୟିକ ବା ଅଭିଜାତର ବିନୋଦନ ଏ ନୁହେଁ। ଏ ଏକ ଯୁଗୋପଯୋଗୀ ଜାତୀୟ ରୁଚି। ବଡ଼ ବଡ଼ ବଗିଗୃରେ ଏକା ଜାତୀୟ ଗ୍ରଣି ଗ୍ରଣି ଫୁଲ ଫୁଟେ। ସେହି କିଆରିରେ ମହୁ ବାକ୍ସରେ ରାଣୀ ମହୁମାଛି। ପ୍ରଚୁର ଫୁଲ; ଗୋଟେ ବଗିଗୃରେ ପେଟ ଭରି। ମହୁମାଛି ଅନ୍ୟତ୍ର ଯିବେ କାହିଁକି ? ସେହି ଫୁଲ କିଆରିର ମଧୁକୁ ତଜ୍ଜାତୀୟ ଫୁଲ-ମଧୁ କହନ୍ତି, ଗୋଲାପ ବଗିଗୃର ଫୁଲମଧୁକୁ ଗୋଲାପ ମଧୁ, ଯେପରି ଡାଲ୍-ଲେକ୍‌ର ପଦ୍ମବନ ମଧୁକୁ କହନ୍ତି, ପଦ୍ମ ମଧୁ।

ଓରେଗଁରେ ଚଉରିଶ ପ୍ରକାର ମଧୁ ପ୍ରଚଳିତ, ବଛି ବଛି ଗୃଖୁଣିଆଁମାନେ ବାରିକି କରି ରଖିଛନ୍ତି। ଆମେରିକା ମଧୁ ଗବେଷଣାରେ ଅଗ୍ରଗାମୀ; ଶହେ ପ୍ରକାର ମଧୁ ଅଲଗା ଅଲଗା ବୋତଲରେ ରଖା। ଏକରୁ ଅନେକ ଆମେରିକାସ୍ଥ

ଜଭ କେମିତି ବାଢେ ? ଗର୍‌ଭାଙ୍କ କ ସ୍ୱତନ୍ତ୍ର ସ୍ୱାଦୁତା ବା ଉପକାର ଲାଗି କଣେ ? ନା ଏ ସବୁ କେବଳ ଗବେଷଣାଗାରର କାରବାର ? ନା ବ୍ୟବସାୟୀ ପ୍ରଚାର ? ଏ ତ ମଧୁ କଥା; ଦୁଧ କଥା କାହିଁକି କହୁବା ? ଦୁଧ ମହୁରେ ଦେଶ ଭାସିବା କଥା ଯାହା କୁହାଯାଏ, ତାହା ଏ ବା ଏଇଭଳି ଦେଶ ପ୍ରତି ପ୍ରଯୁଜ୍ୟ । ଭାରତ ପରି ଦେଶ ପ୍ରତି ନୁହେଁ । ଏଠି ଝାଳବା ଗୁଡିଏ କଙ୍କାଳ ଚମଡ଼ାକୁ ଚୁଚୁମି ଚୁଚୁମି ଶୁଖୁଟା ଛୁଆ ମରେ । କ୍ଷୀର ସଙ୍ଗେ ମାରର ନିବିଡ଼ ସଂପର୍କ, ମଧୁ ଔଷଧ ବା ପଞ୍ଚାମୃତରେ ଲାଗେ ।

ମେଲା ଫେରନ୍ତା ବାଟରେ ନରମା ଆମକୁ ଦୈନନ୍ଦିନ ସଉଦା ଦୋକାନକୁ ଘେନଗଲା । ପାଉଣ୍ଡ୍‌କୁ ଦେଢ଼ ଡଲାର୍‌ରେ କିଣିଲା କାଚ୍ଛ ଛତୁ । ସାଲେମ ରେ ଗୋଟିଏ ଛତୁ କାରଖାନା ଅଛି । ଛତୁ ସଢ଼ା ଗହମ ବା ମକ୍‌କା ନଡ଼ାରୁ ଉତ୍ପନ୍ନ ।

ଏବେ ଓଡ଼ିଶାରେ ପଡିଆ, ଚୋଟା ବଲୁପ୍ତ; ଯାହା ବ କଛି ଅଛି, ଅତି ଅପରିଚ୍ଛନ୍ନ । ଧୁଙ୍ଗା ବା ବାଲିଛତୁ ଏବେ ବିରଳ; ଗଡ଼ଜାତର ଜଙ୍ଗଲୀ ପଶୁ ପକ୍ଷୀର, ମୋଗଲବନ୍ଦୀର ପାଳରୁ ଛତୁ ଉତ୍ପାଦନ ଜଙ୍ଗଲର ବିଲୋପ ଓ ପାଳର ଅପ୍ରାଚୁର୍ଯ୍ୟ ପରେ ବିରଳ ହୋଇ ଆସୁଛି ।

ତା ପରେ ମାଛ ଦୋକାନକୁ ଗଲୁ । ଖଣ୍ଡ ଖଣ୍ଡ ମାଛ ପ୍ଲାଷ୍ଟିକ୍ ବ୍ୟାଗ୍‌ରେ ରଖା—କଣ୍ଟା କଢ଼ା, ମୁଣ୍ଡକଟା । ମାଛର ନାମ ଓ ପାଉଣ୍ଡ୍ ପିଚ୍ଛା ଦର ବି ବ୍ୟାଗ୍ ଉପରେ ଲେଖା ଯାଇଛି ।

ଗୋଟିଏ ଚଉବଚ୍ଚାରେ ଜାଆଁ ହୋଇଛନ୍ତି ବଡ଼ ବଡ଼ ଚିଙ୍ଗୁଡ଼ି—ଲବ୍‌ଷ୍ଟର୍ । କଙ୍କଡ଼ା ବର୍ଗୀୟର ଚେହେରା, ସମୁଦ୍ର କଙ୍କଡ଼ାର ବୁଢ଼ା ଗୋଡ଼ ପରି ବୁଢ଼ା ଗୋଡ଼; ଏ ଏକ ନିରୀହ ପ୍ରାଣୀ ନୁହେଁ, ଆକ୍ରମଣକାରୀ; ହାବୁଡ଼େ ପଡିଲେ ବୁଢ଼ା ଆଙ୍ଗୁଠିରେ ଆଙ୍ଗୁଠିକି କାଟି ଦି'ଖଣ୍ଡ କରିଦେବ ।

## ଷୋଳି ଉପରେ ଷୋଳି

ଆମେ ତ କୁଣିଆଁ; କୁଣିଆଁ ଅଇଲେ ଠାଆ ବଢ଼େ ? କେବଳ ଓଡ଼ିଆ ଘର କଥା, ପୃଥିବୀର ସବୁ ଘରେ ଏଇ ଝିତି । ଘରେ ଶାଗ ଭାତ ଖାଉଁ ପଛେ ମାଛ ଭାତ ଖୋଇବାକୁ ହେବ । ଆମ ଦାରିଦ୍ର୍ୟ ପଦାରେ ପଡିବ କାହିଁକି ? କିଏ କାହାକୁ ଦେବ ନା ନେବ ? ଏ ବେମହତ କାମ କାହିଁକି ?

ମୁହଁ ରଖିବାକୁ ହେବ । ଦୈନନ୍ଦିନ ଖାଦ୍ୟ ପ୍ରକାରରେ ତେଣୁ ପରିବର୍ତ୍ତନ—ଅବଶ୍ୟ କିଛି ନୂତନ ଯୋଗ । ଆମେରିକାର ଖାଦ୍ୟମାନ ତ ଅତି ଉଚ୍ଚ: ବ୍ରେଡ୍, ସ୍ପ୍ରେଡ୍, ଆମକୁ ଘେରି ଖାଇଲା ପରି ଲାଗୁଥାଏ ।

ଆଜି ଭୋଜି ନିମନ୍ତ୍ରଣ; ଉଇଲେମେଟ୍ ବିଶ୍ୱବିଦ୍ୟାଳୟର ଧର୍ମ ଅଧ୍ୟାପକ ଫିଲିପ୍ ଡିନାର୍ ଦେଉଛନ୍ତି । ପ୍ରସନ୍ନ ଫୋନ୍ କଲେ—ଘରେ ଅତିଥି, ସେମାନଙ୍କୁ ଏକୁଟିଆ ରଖି ଯିବ କିପରି ? ଉତ୍ତର—ସେମାନେ ବି ମୋ ଅତିଥି । ସଙ୍ଗେ ନେଇ ଆସ । ସେ କିଛି ନୂତନ ଅଭିଜ୍ଞତା ଲାଭ କରିବେ ।

ଫିଲିପ୍‌ଙ୍କ ଘର ପଛଆଡ଼େ ଶ୍ରେଷ୍ଠ ବଗିଚାଟିଏ । ଗୋଟିଏ ଚେରି, ଗୋଟିଏ ପ୍ଲମ୍, ଏଭର୍‌ଗ୍ରିନ୍ ଓ ପାଇନ୍ କେତୋଟି । ଅତିଥିମାନେ ଯେଝା ସ୍ୱେଚ୍ଛା ଯେ ଗାଡ଼ିରେ ନିଜ ଆଣିଛନ୍ତି, କିଛି ଖାଦ୍ୟ ବି । ସବୁ ଖାଦ୍ୟ ଗୋଟିଏ ବଡ଼ ଟେବୁଲରେ ଗଦା ହେଲା, ବହୁ ବିଚିତ୍ର ପ୍ରକାରର । କେତେ ପାଗର, କେତେ ରୁଚିର ରନ୍ଧା ଆଜି ଖିଆ ଗଲା ? ଜନଗହଳରେ ସବୁ ପ୍ରକାର ବାଛି ଆଣି ଗୋଟିଏ ପ୍ଲେଟ୍‌ରେ ଖାଇବା ଅସମ୍ଭବ—ଫ୍ରୁଟ୍ ସାଲାଡ୍, ଚକୋଲେଟ୍ କେକ୍, ସ୍ପାଇସ୍ କେକ୍, ସିଡ୍ କେକ୍, ଚିକେନ, ସାମନ୍ ଭଜା, ମେକ୍ସିକୋ ଡିସ୍, କେତେ ପ୍ରକାର ମିଠା ଓ ଆଇସ୍‌କ୍ରିମ୍ ।

ବଗିଚା କୋଣରେ ଜଳୁଥାଏ ଗୋଷ୍ଠିଏ ନଲ୍‌ବତ୍ତି — ଆସନା ! କିନ୍ତୁ ଯେଉଁଠି ମନା, ସେଇଠି ମନ ଘୂରେ । ଖିଆପିଆ ଶବ୍ଦରେ କଥା ଅପେକ୍ଷା ଲଥାନ୍ତି ଏଠି ବଡ଼ । ଖିଆ ଗୌଣ । ସରୁନାଡ଼ିଆ ଗ୍ଲାସ୍ ଧରି ଥରକୁ ଥର ଯାଇ ଲୋକ ଆଣୁଥାନ୍ତି । ଖିଆପିଆ ପର୍ବ ମଧ୍ୟରେ କନ୍‌ସେର୍ଟିନାରେ ଗୋଟିକ ପରେ ଆଉ ଗୋଟିଏ ଘତ ଯୁବତୀଟିଏ ବଜାଉଥାଏ ।

ଖୋଲା ଜାଗା । ଶୀତରେ ଆମେ ଥରିବା ଦେଖି ପ୍ରସନ୍ନ, ନର୍‌ମା ଗ୍ରେଁକ୍ସ ଓ ନିଜେ ନେଇଥିବା ବଳକା ଖାଦ୍ୟ ଜିନିଷ ଘେନି ଫେରିଲେ ।

### ଛବ ଜମିଲା ବେଳକୁ

ଛବ ଜମିଲାବେଳକୁ ନୌକା ଝଟେଇ ଚାଲିଯିବା ଆମ ସ୍ୱଭାବ ହୋଇ-ଗଲାଣି । କାରଣ ବନ୍ଧୁତା ଜମେଇଲେ ଯାତ୍ରା ନାଟକଟା ଏକାଙ୍କିକା ହୋଇ-ଯାଏ । ପୂର୍ଣ୍ଣାଙ୍ଗ ନାଟକ ଦେଖାର ତୃପ୍ତି ସେଥିରୁ ମିଳିବ କାହୁଁ ? ଲକ୍ଷ୍ୟ ଆମର ଏକ ବନ୍ଦରରୁ ଅନ୍ୟ ବନ୍ଦର, ଗତି ଆମର ମାତ; ଛବ ଆମର ଲାଭ । ଏଇ ଲାଭ ଆଶାରେ ଲେଖକ ବୋଇତ କରେ ।

ପ୍ରସନ୍ନ ଆମକୁ ବୁଲେଇବାକୁ ଦିନେ ଛୁଟି ନେଇଥିଲେ । ଦି'ଦିନର କାମ ତାଙ୍କ ଉପରେ ଜମା ହୋଇ ପଡ଼ିଲା । ଡାକ୍ତରର ଜୀବନ ବଡ଼ କାର୍ଯ୍ୟବ୍ୟସ୍ତ ଜୀବନ । ମୁହୂର୍ମୁହୁ କର୍ତ୍ତବ୍ୟର ଆହ୍ୱାନ ।

ପାଗଳ ନିଜେ ଅଶାନ୍ତ; ସେ କାହାକୁ ଶାନ୍ତିରେ ରଖେଇ ଦିଏ ନାହିଁ । ଅଶାନ୍ତିକୁ ଶାନ୍ତ କରିବାରେ ପ୍ରସନ୍ନଙ୍କ ଜୀବନ ଯିବେ । ଘୋର ଅଶାନ୍ତିକର ପରିବେଶ ମଧ୍ୟରେ ସେ ନିଜକୁ ସ୍ନିଗ୍ଧ, ପ୍ରସନ୍ନ ରଖିଥାନ୍ତି ।

ସେ ପ୍ରକୃତିପ୍ରେମୀ, ମଣିଷପ୍ରେମୀ । ଡାକ୍ତର ହୋ'ଇ ନ ଥିଲେ ସେ କବି ହୋଇଥାନ୍ତେ । ଡାକ୍ତର ହୋଇ ବି ସେ ପ୍ରକୃତିଛଡ଼ା ହୋଇ ନାହାନ୍ତି । ସଂସ୍କୃତି, ସାହିତ୍ୟ ବା ସଙ୍ଗୀତ ଚର୍ଚ୍ଚା ଛାଡ଼ି ନାହାନ୍ତି । ବନ୍ଧୁତା ଅନୁରୋଧରେ ସେ ଆମକୁ ଯାହିତାହି କିଛି ଦେଖାଇ କର୍ତ୍ତବ୍ୟ ଶେଷ କରି ନାହାନ୍ତି । ଆମ ଦୈହିକ କ୍ଳାନ୍ତି ଓ ଅନିଚ୍ଛା ତାଙ୍କୁ ଏ କାର୍ଯ୍ୟରୁ ନିରସ୍ତ କରିଚି ମାତ୍ର ।

'ମୋ ଆଳସ୍ୟରୁ ଏହି ଲେଖକ ଦୃଶ୍ୟ ଦର୍ଶନରୁ ବଞ୍ଚିତ ହେବ, ଓଡ଼ିଆ-ସାହିତ୍ୟକୁ ଯାହା ଦେବାର ଦେଇ ପାରିବ ନାହିଁ, ଏ କଥା ହୋଇ ପାରିବ ନାହିଁ' —ପ୍ରସନ୍ନଙ୍କ ଉକ୍ତି ।

ତାଙ୍କର ଏକମାତ୍ର ଦୁଃଖ—ଆମେରିକା ଆସିବା ଦିନରୁ ସେ କେବଳ ଦେଇ ଆସିଛନ୍ତି । ଫଳେ ବା ପୁଷ୍ପେ ହେଉ, କୋଉଠୁ କିଛି ପାଇନାହାନ୍ତି । କୁଣ୍ଠତା, କୃପଣତା, ମାନସିକ ଦାରିଦ୍ର୍ୟ ଏକାନ୍ତ ଅସହ୍ୟ । ବିନା ବିନିମୟରେ ସ୍ନେହ କେତେ ଦିନ ଚଳେ ? ମାଡ଼ିବାକୁ ରଞ୍ଜା ନ ପାଇଲେ ଲତା ଆଉ ଉଙ୍କାଏ ନାହିଁ ।

କହିଲି— ଲୋକେ ବୋଧେ ବିଗୁରନ୍ତି—ତାର କଣ ନାହିଁ ? ଦେଲେ କଣ ସରି ଯାଉଛି ? କୁବେର ପୁରୀର ଲୋକକୁ ଆମେ କଣ ଦେଇ ପାରିବୁ ? ଅଧିକାଂଶ ବିଦେଶୀ ଓଡ଼ିଆଙ୍କ ମନରେ ଏଇ ଦୁଃଖ । ନେଇ ତା ବଦଳରେ କିଛି ହେଲେ ଦେବା ଦରକାର । ନୁଖୁରି ସ୍ନେହର କି ମୂଲ୍ୟ ? ଦିଅନ୍ତେ । ବୋଧେ ବିଗୁରନ୍ତି—ତାର କେଉଁ ମନ ହେ ଇଥିବ । କାଲେ ଅପସନ୍ଧିଆ ହେବ ।

କଠୋର ଶ୍ରମ ଜନିତ କ୍ଳାନ୍ତିକୁ ଭ୍ରୂକ୍ଷେପ ନ କରି ପ୍ରସନ୍ନ ଆମକୁ ପୋର୍ଟଲଣ୍ଡ୍ ବ୍ୟୋମ ବନ୍ଦର୍‌କୁ ନେଲେ, ଜିରୁପାସ୍ଥ । ଉଇଲେମେଟ୍ ନଦୀର ଏକ ପୋର୍ଟ ବା ବନ୍ଦର । ବାଣିଜ୍ୟ ବେପାରର କେନ୍ଦ୍ରସ୍ଥଳ — ଲୋକସଂଖ୍ୟା ଗ୍ଯର ଲକ୍ଷ । କଣ ନାଆଁ ଦିଅଯିବ ? ବଷ୍ଟନ୍ ନା ପୋର୍ଟଲଣ୍ଡ ? ବାଜି ରଖି

ଡଲାର୍‌ଟିଏ ଉପରକୁ ଫିଙ୍ଗା ଗଲା । ପୋର୍ଟଲଣ୍ଡ୍‌ର ଜନ୍ମ ହେଲା ? ସେହିକାଳୁ ପୋର୍ଟଲଣ୍ଡ୍ ନାଆଁ ଚାଲୁଛି ।

ବେଲ ଉଡ ଉଡ, ହଠାତ୍ ଏକ ଆଲୋକ ଝଲକରେ ଦେଖାଗଲା କାସ୍‌କେଡ୍ ପର୍ବତମାଳା, ହେଲେନ୍‌ସ ଆଗ୍ନେୟଗିରି, ପ୍ରଶାନ୍ତ ସାଗର ତୀର, କଲମ୍ବିଆ ନଦୀ ଓ ନାରୀ ନର୍‌ମା ।

ନର୍‌ମା ! ଭାରତ ଆମେରିକା, କଳା ଗୋରା ଭେଦ ତା ପାଖେ ତିଷ୍ଠି ପାରିନାହିଁ । ଆମ ପ୍ରତି ତାର ଯତ୍ନର ଅନ୍ତ ନ ଥିଲା । ନିଜ ଘରେ ଥିଲା ପରି ଆମକୁ ଲାଗୁଥିଲା । ଶୀତଳଜଳା ସମତଳବାହିନୀ ନଦୀ ସେ, ଏବେ ହ୍ରଦ ପରି ନିଜକୁ ପ୍ରସାରିତ କରିଛି, ପ୍ରସନ୍ନଙ୍କ ପରିବାର ମଧ୍ୟରେ ।

ସବୁ ପଥ ସେ ଜାଣେ । ନିଜର ବିଶ୍ୱସ୍ତତମ ପଥ ସେ ବାଛି ନେଇଛି । ଦୃଢ଼ ପଦରେ ଆଗେଇ ଚାଲିଛି । ଡାକ୍ତରଙ୍କ ସ୍ତ୍ରୀ, ନିଜେ ନର୍ସ, ରେଡ୍‌କ୍ରସ୍‌ର ସ୍ୱେଚ୍ଛାସେବିକା ।

ବହୁକା ସ୍ୱାସ୍ଥ୍ୟ ବା ଅସ୍ୱାସ୍ଥ୍ୟ ତାର ବିପଦ, ମାରାତ୍ମକ ରୋଗ ସେ । ଥରେ ବଢ଼ିଗଲେ ବଢ଼ି ଚାଲେ । କମେଇବା ସହଜସାଧ୍ୟ ନୁହେଁ । ସ୍ନେହଶୀଳା, ହୃଦୟବତୀ ଏଇ ଗୃହିଣୀଟି ପ୍ରତି ଆମ ହୃଦୟରେ ଗଭୀର ବେଦନା ।

ପ୍ରସନ୍ନ ଜୀବନସଂଗ୍ରାମୀ, କ୍ଳାନ୍ତ ପଦାକୁ ଫୁଟେ ନାହିଁ, ଭିତର କୋରି ଖାଏ । ହୃଦ୍‌ରୋଗ ରୂପରେ ଏବେ ତାହା ଫୁଟିଛି । ଏଇ ମହତ୍ ବ୍ୟକ୍ତିର ଦୁଃଖରେ ଆମେ ମ୍ରିୟମାଣ । ହୃଦୟରେ ଗଭୀର ଦାହ ଘେନି ଆମେ ସେଣ୍ଟ୍‌ଲୁଇସ୍ ଫେରିଲୁ, କାଲଚକ୍ରର ଆବର୍ତ୍ତନ ପରି ।

# ବାର

'ଆରେ ଢମଣା

ବୁଲି ବୁଲି କରି ସେଇ ଅଗଣା ।'

ଏକା ଢମଣା କାହିଁକି, ସବୁ ସାପ ବୋଧେ ସେଇଆ କରୁଥିବେ, ଚରିବୁଲି ନିଜ ଗାତକୁ ଫେରୁଥିବେ । ସେଣ୍ଟ୍‌ଲୁଇସ୍ ଆମ ଘର । ଯୁଆଡ଼େ ଯେମିତି ବୁଲି ଘରକୁ ଫେରିବା ଆମ ପକ୍ଷରେ ସେହିପରି ଏକ ସ୍ୱାଭାବିକ ରୀତି ।

କିନ୍ତୁ ଚାରିଦିନ ତଳେ ଦୁଇହଜାର ମାଇଲ୍ ଉଡ଼ି ପୋର୍ଟଲାଣ୍ଡ୍‌ରେ ପହଞ୍ଚିଥିଲୁ । ସେଠୁ ଅଧ ଘଣ୍ଟାକେ ସାନ୍‌ଫ୍ରାନ୍‌ସିସ୍‌କୋ ଉଡ଼ି ନ ଯାଇ ସେଣ୍ଟ୍-ଲୁଇସ୍ ପୁଣି ଫେରିବା ହାସ୍ୟକର ଅବିବେକିତା । ପୁଣି ତା ଆର ଦିନ ସେଣ୍ଟ୍‌ଲୁଇସ୍‌ରୁ ସାନ୍‌ଫ୍ରାନ୍‌ସିସ୍‌କୋ ଉଡ଼ିବାକୁ ହେବ ପ୍ରାୟ ଦୁଇହଜାର ମାଇଲ, ବଡ଼ କଷ୍ଟଦାୟକ; କିନ୍ତୁ ଟି. ଡବ୍ଲ୍ୟୁ. ଏ. କମ୍ପାନୀର ନିୟମ '୦'ବୁଲିବା । ନଇଲେ ଟିକେଟ୍ ବାତିଲ୍ । ଏଥିରେ କମ୍ପାନୀର ଲାଭକ୍ଷତି ବିଚାର ମୋର କାର୍ଯ୍ୟ ନୁହେ । କିନ୍ତୁ ରାତି ଅନିଦ୍ରା ଚିନ୍ତା ମୋତେ ବିବ୍ରତ କରୁଥାଏ । ରାତିଟିଏ ଅନିଦ୍ରା ହେଲେ ସାତ ରାତିରେ ଶୋଧ୍ ହୁଏ ନାହିଁ, ପିଲାଦିନ ପାଳି ବା ଯାହା ଦେଖାରୁ ବୁଝିଛି ।

ଆମ ଉଡ଼ାଣ ନମ୍ବର ୨୪୯; ଗେଟ୍ ନମ୍ବର ୪୯; ଉଦ, ଇରା ଆମକୁ ଗେଟ୍ ପାଖେ ବସାଇ ଦେଇ ଚିକାଗୋ ଗଲେ, ମୀରା ପାଖକୁ ।

ସେଣ୍ଟ୍‌ଲୁଇସ୍‌ରୁ ସାନ୍ ହୋଜେ ୧୭୪୦ ମାଇଲ୍, ତିନି ଘଣ୍ଟା ଚାଳିଶ ମିନିଟ୍ ଲାଗେ । କଥାଭାଷା ହୋଇ ଲୋକେ ବାଟଚାଲି ବାଧାରୁ ରକ୍ଷା ପାନ୍ତି । କିନ୍ତୁ ଯାନର ଗୁରୁ ଗର୍ଜନରେ କାନ ଆବ୍‌ଦା; ତୁଣ୍ଡରୁ ବଚନ ବାହାରେ ନାହିଁ ।

'ଏତେ ସମୟ କିପରି କଟାଇବ ? ମା ବୀଣାପାଣି, କିଛି ପଦ ସୁମରଣା କରାଇଦିଅ ।'

ଭୂତଳ ଦସ୍‌ଚଡ଼ା ଦୃଶ୍ୟରୁ ବ୍ୟୋମଯାନର ପ୍ରାକୃତିକ ଦୃଶ୍ୟ ଭିନ୍ନତର ଦିଶେ । ଭୂତ ଆବିଷ୍ଟ ହେଲେ ପ୍ଲାଞ୍ଚେଟ୍ ଚାଲେ । ସେହିପରି ଭାବ ଆବିଷ୍ଟ ହେଲେ କବିର କଲମ । କାଗଜରେ ମୁହଁ ମାଡି ରହିଲା; କେବେ ବା ଚାଲିଲା । ଚାଲୁ ବା ନ ଚାଲୁ ମନ ଲାଖି ରହିଲା ମୂନରେ ।

ଛ'ଟା ପନ୍ଦରରେ ବାହାରିଥିଲୁ । ପହଞ୍ଚିଲୁ ଆଠଟାରେ । ସେଣ୍ଟ୍ ଲୁଇସ୍ ଓ କାଲିଫର୍ଣ୍ଣିଆଁ ମଧ୍ୟରେ ଦୁଇ ଘଣ୍ଟା ସମୟ ତାରତମ୍ୟ, ଭୌଗୋଳିକ କାରଣରୁ । ଷ୍ଟେସନ୍‌କୁ ଆସିଥିଲେ ଜ୍ଞାନ ଦାଶ, ଶ୍ୱେତପଦ୍ମା (ଡାକ ନାମ ବୁଇ), ଅଧ୍ୟାପିକା ମନୋରମା ମହାପାତ୍ରଙ୍କ ଝିଅଜୋଇଁ, ସମାଜ ସମ୍ପାଦକ ରାଧାନାଥ ରଥଙ୍କ ନାତୁଣୀ, ନାତୁଣୀ ଜୋଇଁ । ଉଭୟେ ଆଠଗଡ଼ିଆ ।

ସାନ୍ ହୋଜେ କାଲିଫର୍ଣ୍ଣିଆଁର ଏକ ଶ୍ରେଷ୍ଠ ସହର । ମରୁ ରାଜ୍ୟ । କଲୋରାଡ଼ୋ ଓ କଲମ୍ବିଆ ନଦୀ ଏ ରାଜ୍ୟକୁ ଶସ୍ୟଶ୍ୟାମଳ କରିଛି । ସମଶୀତୋଷ୍ଣ ଜଳବାୟୁ ଫଳ ଉତ୍ପାଦନ ଲାଗି ଅନୁକୂଳ । ତଥାପି ମରୁରାଜ୍ୟର ଖର୍ଜୁର ଏବେ ବି ଅଛି, ବେଶ୍ ମୋଟା ମୋଟା, ପତ୍ର ଗହଳ, ସୁନେଲି ଫଳଭରା ।

ମର୍‌ଗାନ୍ ହିଲ୍ ମାଟିର ପାହାଡ଼, ଜ୍ଞାନଙ୍କର ଘର ସେଇ ପାହାଡ଼ ଉପରେ । ଗ୍ରାମ୍ୟ ବାତାବରଣ । ବୃକ୍ଷଲତା ଭରା । କିନ୍ତୁ ସହରର ସବୁ ସୁବିଧା ସୁଯୋଗ ଏଠି ମିଳେ । ବାଡ଼ିପଟେ କମଳାଲେମ୍ବୁ, ଦାଣ୍ଡରେ ଚେରି । ବର୍ଷା କାଳରେ ବାଡ଼ିରେ ସବୁ ଝରଣାଟିଏ ଝର୍ଝର ଶବ୍ଦରେ ଝରେ, କୂଳରେ ତାର ଫନ୍ଦିତ ହୁଇଲେ ।

ଜ୍ଞାନ ଆମେରିକାର ପ୍ରାଚୁର୍ଯ୍ୟ ମଧ୍ୟରେ ଗାଁ ମାଟିକୁ ଭୁଲି ନାହାନ୍ତି । ସେ ବାପ ମାଆଙ୍କୁ ଆଣି ପାଖରେ ରଖିଥିଲେ । ନିଜ ଖର୍ଚ୍ଚରେ ଛ'ଭଉଣୀଙ୍କୁ ସତ୍ ପାତ୍ରରେ ଅର୍ପଣ କରିଛନ୍ତି, ଏ ତାଙ୍କର ଏକ ମହତ୍ତ୍ୱ—ବାପମାଆଙ୍କ ଦାୟିତ୍ୱ ନିଜ ମୁଣ୍ଡକୁ ନେବା ସତ୍ ପୁତ୍ରର କର୍ତ୍ତବ୍ୟ ।

ତାଙ୍କର ସେତେବେଳେ ଗୋଟିଏ ମାତ୍ର କୁଳନନ୍ଦନ; ନାଆଁ ସୋମେଶ । ଅସଂଖ୍ୟ ଖେଳଣା ତାର, କେତୋଟି କିଣା, ଅଧିକାଂଶ ଜନ୍ମଦିନ ଉପହାର । ଖେଳଣାର ସମ୍ରାଜ୍ୟକୁ ଶାସନ କରୁଛି ସେ, ଆପଣା ଖିଆଲରେ । ଗାଉନ୍ ଆଉ ହୁଡ୍ ପିନ୍ଧା ପ୍ରଥମ ଫଟୋ ମୋର ଉଠିଲା ଏମ୍. ଏ. ଡିଗ୍ରୀ ନେଲାବେଳେ । ସୋମେଶ ମାଆ ପେଟରୁ ଖସି ଭୂଇଁ ଛୁଇଁବା ପରଠାରୁ ତାର ଫଟୋ; ପହିଲି ହସର ଫଟୋ; ନାଚ, ଖେଳର ଫଟୋ, ଜନ୍ମଦିନର ଚନ୍ଦନଚର୍ଚ୍ଚିତ ଫଟୋ—ରଙ୍ଗୀନ୍ ଫଟୋର ବଡ଼ ବଡ଼ ଆଲବମ୍, ବର୍ଷକୁ ବର୍ଷ, କେତେ ଦେଖିବ, ଦେଖରେ, ବାପା ।

ବୟସ ମାତ୍ର ଚାରି । ବାପାମାଆଙ୍କ ଆଖିପୁଅ, ବୁଇ ଘରେ ରହେ, କେବେ ଆଖିରୁ ଆଡ଼ କରେନାହିଁ । ସୋମେଶ ଚାହାଁ ଅଚାହାଁ ବାରେନାହିଁ । ଏମନ୍ତ ଉଚ୍ଛଳ ହୋଇଛି ଯେ ଗେଲ କରିବାକୁ ମନ ଡାକେ । ତା ତୁଣ୍ଡର ଭାଷା ବିକୃତ

ହୋଇନାହିଁ । ଭଲ ଓଡ଼ିଆ କହେ, ଇଂରାଜୀ ବି । ବେଳେବେଳେ ଗୋଟେ ବଙ୍କାଚାଳି କଥା ତା ତୁଣ୍ଡରୁ ବାହାରି ଶ୍ରୋତାଙ୍କୁ ବିସ୍ମିତ କରିଦିଏ ।

ଆମ ଭାଗ୍ୟକୁ ଖେଳଣା ଜୁଟିଥିଲା କନାମେଣ୍ଟା ଅଦଆ ବୁଢ଼ା, ବେଙ୍ଗୀ ବାଇଦ । ସୋମେଶ ଆପୋଲେ, ରିକେଟ୍‌ରେ ଖେଳୁଚି । ପିଲାଦିନୁ ଅନୁକୂଳ ପରିବେଶ ପାଇଛି । ବଡ଼ ମନିଷ ହେବା ଲାଗି ଏତିକି ଯଥେଷ୍ଟ ନୋହିଲେ ବି ସେ କିଛି ଆଖିଦୃଶିଆ କରିବ, ବିଶ୍ୱାସ ହେଉଚି । ଖାଲି ଅର୍ଥୋପାର୍ଜନର କଳାଟିଏ ହେଲେ ଅଧିକା କିଣ ହେବ, କିଛି ନ ପଢ଼ି ବି ଲୋକ ତା ହୋଇ ପାରୁଚି ।

ଶ୍ୱେତପଦ୍ମା; ଚେହେରାଟି ଶ୍ୱେତପଦ୍ମ ପରି ଅବିକଳ । ସେଇ ଚେହେରାଟି ଅକ୍ଷୁଣ୍ଣ ରଖିବା ଲାଗି ସଦା ଯତ୍ନପର । ଶିଳ୍ପୀର ଆଦର୍ଶ; କୃଶାଙ୍ଗୀ ଜନ୍ମର ସେଇ କ୍ଷୀଣ, ସୁନ୍ଦର ଚେହେରାଟି ଅବିକଳ ରଖିବା ଲାଗି ସଦା ତତ୍ପର, ଯେପରି ପ୍ରତି ଆମେରିକାସ୍ଥ, ବିଶେଷତଃ ନାରୀ । ମୋଦକ ପରି ବାଟୁଲାଟିଏ ଖାଦ୍ୟ ଖାଏ ସେ; ବଗିଚା ତାର ସ୍ନେହ ଲାଳନା ପାଏ, ଯେପରି ଏକମାତ୍ର ବତ୍ସଳଟି । ଯୋଉଠି ଯାହା ଠିକ୍ ଠିକଣା କରି ରଖିବାରେ ଆଳସ୍ୟ ଅନ୍ତରାୟ ହୁଏ ନାହିଁ । ଆଡ଼ମ୍ବର ନାହିଁ । ସେସବୁ ଦେଖାଇବା ଲାଗି କେତେ ସୌଧ, କେତେ ଧନ ଦରକାର ! କିନ୍ତୁ ପ୍ରକୃତ ଧନୀ କିଏ ଆଡ଼ମ୍ବର ଦେଖାଏ ? ସେ ଗୋଟାଏ ମନୋବୃତ୍ତି, ଫୁଲଙ୍କ ଫୁଟାଣି । ପୁଣି ଏସବୁ ଦେଖିବା ଲାଗି ଏଠି ଲୋକ କାହାନ୍ତି ? ଯେ ଯାହା କାର୍ଯ୍ୟରେ ବ୍ୟସ୍ତ । ଯେମିତି ଦେଖେଇ ହୁଅନ୍ତି ଦଳେ, ଦେଖନ୍ତି ଦଳେ । ଏଠି ଉଭୟ ଦଳର ଲୋକ ନାହାନ୍ତି, ନୁହେଁ, ସଂଖ୍ୟା ଊଣା ।

ଜ୍ଞାନଙ୍କର ଧନ୍ଦା ଦାନସାଗର, ଓ. ଏସ୍. ଏ (Orissa Society of Americans)ର ସମ୍ପାଦକ ସେ । ଆମେରିକା ଆଉ କାନେଡ଼ାରେ ମୋଟ ପାଞ୍ଚଶତ ଓଡ଼ିଆ ଅଛନ୍ତି । ପଦସ୍ଥ, ସମୃଦ୍ଧ । ଅଧିକାଂଶଙ୍କ ବାଲ୍ୟକାଳ ଦାରିଦ୍ର୍ୟରେ କଟିଥିଲା । ହୁଏତ ଆମେରିକାରେ ପହଞ୍ଚିଲା ବେଳକୁ ପକେଟରେ ଦଶ ଡଲାର୍ ନ ଥିଲା । ଏବେ ଦଶ ଲକ୍ଷ ଡଲାର୍‌ର ମାଲିକ ହୋଇଛନ୍ତି । ପ୍ରାଚୁର୍ଯ୍ୟ ମଧ୍ୟରେ ସନ୍ତୋଷର ଶ୍ରୀ ମୁଖେ ମୁଖେ । ବୈଷୟିକ ଉନ୍ନତି ମଧ୍ୟରେ ଗୋଟିଏ ଅଭାବ ହୁଏତ ଅସନ୍ତୋଷ ସୃଷ୍ଟି କରୁଥିଲା—ନିଜ ସଂସ୍କୃତିକି ହରାଇ ବସିଥିଲେ । ଏକାଠି ହୋଇ ପରସ୍ପର ସହିତ ଆଳାପ ଆଲୋଚନା ଓ ଯୋଗସୂତ୍ର ରକ୍ଷାର କିଛି ସୁଯୋଗ ନ ଥିଲା । ଏହି ଆମେରିକାସ୍ଥ ଓଡ଼ିଆ ସମିତି ସେହି ଅଭାବ ଦୂର କରିଛି । ଏକାଠି ହୋଇ ସେମାନେ ରଥଯାତ୍ରା କରନ୍ତି । ସରସ୍ୱତୀ, ଗଣେଶ ପୂଜା କରନ୍ତି, ନାଟକ

ଅଭିନନ୍ଦ କରନ୍ତି । ବିଶିଷ୍ଟ ଓଡ଼ିଆ ଆସିଲେ ତାଙ୍କଠାରୁ ଓଡ଼ିଆ ଭାଷଣ ଶୁଣନ୍ତି; ଓଡ଼ିଶାରୁ ନର୍ତ୍ତକ ବା ଗାୟକ ଡକାଇ ନର୍ତ୍ତନ ଓ ଗାନର ଆସର ଜମାନ୍ତି ।

ସବୁ ଓଡ଼ିଆଙ୍କ ଠିକଣା ଓ ଫୋନ୍ ନମ୍ବରର ଏକ ତାଲିକା ଛପା ହୋଇଛି । ଦକ୍ଷିଣ ଆମେରିକା ବା କାନେଡ଼ାର ଯେ କୌଣସି ଓଡ଼ିଆଙ୍କ ସହିତ ସମ୍ପର୍କ ସ୍ଥାପନ କରି ହୁଏ । News Letter ନାମରେ ଗୋଟିଏ ଟାଇପ୍ କରି ସମ୍ବାଦପତ୍ର ଜ୍ଞାନଙ୍କ ସମ୍ପାଦନାରେ ବାହାରେ । ସେଥିରେ ଓଡ଼ିଆଙ୍କ ଗଳ୍ପ ଅଭିଜ୍ଞ, ହାନିଲାଭ ବା ଓଡ଼ିଶାର ସୁଘଟଣା, ଦୁର୍ଘଟଣା ବିଷୟ ବାହାରେ । ମୋ ଆମେରିକା ଓ କାଲିଫର୍ଣ୍ଣିଆଁ ଆଗମନ ସମ୍ବାଦ ଏଥିରେ ପ୍ରକାଶ ପାଇଥିଲା ।

ଶ୍ରୀ ରାଧାନାଥ ରଥଙ୍କଠାରୁ ତାଙ୍କ ନିଜ ବିଷୟରେ କିଛି ସମ୍ବାଦ ଆଦାୟ କରିବା କାଠିକର କାଠ । ଜ୍ଞାନ ନିର୍ଲ୍ଲେଜ଼ଚନ୍ଦ୍ରା । ଲୁହା କୋଚଟକୁ କମାର କୋଚଟ । ଯୋଉ କଥା କେହି କରିପାରି ନଥିଲେ, ସେ କରି ପାରିଛନ୍ତି । ସେ ଏହି ମହାନ୍ ବ୍ୟକ୍ତିଙ୍କ ଜୀବନକାହାଣୀକୁ ଭିଡ଼ିଓ କରିଛନ୍ତି । ସେ କିପରି ଆଠଗଡ଼ର ଏକ ଗରିବ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ, ସୁଗ୍ରାହ୍ୟ ଥିଲେ, ଘୋର ଦାରିଦ୍ର୍ୟ ସହିତ ସଂଗ୍ରାମ କରି ଏଣ୍ଟ୍ରାନ୍ସ ପାସ୍ କରିଥିଲେ, କିପରି ଗୋପବନ୍ଧୁଙ୍କ ସମ୍ପର୍କରେ ଆସି ମଣ୍ଡିତ ହୋଇଥିଲେ, ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ କିପରି କାରାବରଣ କରିଥିଲେ, ଦକ୍ଷତା ସହ କିପରି 'ସମାଜ' ପରିଚାଳନା ଓ ସମ୍ପାଦନା କରୁଛନ୍ତି, ନିର୍ଭୀକ ସାମ୍ବାଦିକତା ଓ ଲୋକସେବା ଯୋଗୁଁ ସେ କିପରି ଗୋପବନ୍ଧୁଙ୍କ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇ ଅଛନ୍ତି, ଭିଡ଼ିଓରେ ଦେଖି ଆନନ୍ଦିତ ହେଲୁ ।

## ଗୋଡ ଖସି ଖେଦ ହେବାର ଦରଦ

ପ୍ରାତଃ ଭ୍ରମଣ ଲାଗି କୁଣ୍ଠିତା ଲତାକୁ ପ୍ରବର୍ତ୍ତାଇଲି । ଘରେ ବସି କଣ କରିବ ? କୁଣିଆଁ ବୋଲି ଯୋଉ ଅଧିକା ଠାଆମାନ ପେଟରେ ପଶୁଛି, ତାକୁ ଜୀର୍ଣ୍ଣ କରିବ କେମିତି ?

ମୁଁ ତ ସବୁ କାଳେ ବାଟଭୁଲା; ହେଇ ଦେଖ, ମନେ ରଖ—ଗେଟ୍ ଦ ପାଖେ ଦ'ଟା ଗଛ । ଘର ବାଁ ପଟେ ଥିଲୁଅ । ନୂଆ ଜାଗା; ବାଟ ଭୁଲିଲେ ଅବସ୍ଥା ଅଣାୟତ୍ତ ହେବ ।

ଅଳ୍ପ ଦୂର ଗଲା ପରେ ହାଇଓ୍ୱେ, ଯାନବାହନରେ ଅଗମ୍ୟ । ମୁହଁ ବୁଲାଇଲୁ । ଯୋଉ ବାଟରେ ଯାଇଥିଲୁ , ସେ ବାଟକୁ ଲୁହେଁ, ବାଙ୍ଗଲାରେ ଆଉ ଗୋଟେ ବାଟକୁ । ପାହାଡ଼ରେ ଉଦୟ ଶ୍ରୀ ଦେଖୁ ଦେଖୁ ଏ ଦଶା ।

ମୁଁ ସତର୍କ କଲି, ହେଲି ନାହିଁ । ଏବେ କି ବୁଦ୍ଧି କରିବୁ ? ଠିକଣା ଜଣା ନାହିଁ । ଘର ନମ୍ବର ବା ଟେଲିଫୋନ୍ ନମ୍ବର ଜଣା ନାହିଁ । ଥକ୍କା ହୋଇ ଗୋଟିଏ ଜାଗାରେ ଛିଡ଼ା ହୋଇଗଲୁ । ଭୁଲ୍ କରିବା ନାହିଁ, କରିବା ନାହିଁ ଭାବୁ ଭାବୁ ଭୁଲ୍ କରି ବସିଲୁ !

ଲତା ମନେ ମନେ ଭାବି ସଜାଡ଼ୁ ଥାଏ— କି କି ଅସ୍ତ୍ର ପ୍ରୟୋଗ କରିବ ? ବାବଲି ଶର, ଅର୍ଦ୍ଧ ଚନ୍ଦ୍ର ବାଣ ନା ଏ ଯୁଗର ଆଟମ୍ ବୋମା ? ଯଦି ବା ମୁଁ ଆହତ ହେଲେ ସମସ୍ୟାର ସମାଧାନ ହୋଇଯିବ ନାହିଁ ।

ପଚାରିଲି—ରାସ୍ତା ମନେ ରଖିଲି ନାହିଁ କାହିଁକି ? କହିଥିଲି ପରା ।

ସେତେବେଳକୁ ଆଗ୍ନେୟାସ୍ତ୍ର ପ୍ରୟୋଗ ହୋଇ ସାରିଥିଲା, ଉତ୍ତରପରୁ ବୁଝିଲି—ମୋତେ ଡାକିଲ କାହିଁକି ? ଏ ଅଜଣା ଜାଗାରେ ଭୁଆଁ ବୁଲାଉଛ କାହିଁକି ? ନିଜେ ମନେ ନ ରଖିଲ କାହିଁକି ? ଯାହା ଭୁଲ୍ ହେଲେ ମୁଁ ଦାୟୀ ରହିବି କାହିଁକି ? କିଛି ଦାଉଘାତ ହେଲେ ମୋ'ରି ଉପରେ ଝଡ଼େଇ ଦିଅ କାହିଁକି ? କାଳେ କାଳେ ମୋର ଏ ଦୁର୍ଦ୍ଦଶା ଯୋଗ ଗଲା ନାହିଁ ଲୋ ବୋଉ !

ରାଗ କାନ୍ଦକୁ ଫିଟି ପଡ଼ିବା ଦେଖି ହସି ହସି କହିଲି—

'ଗୋଡ଼ ଖସି ଖେଦ<br>
ହେବାର ଦରଦ ଯିବାର ଉପାୟ କହ...'

ଦ'ଘଣ୍ଟାର ଘେରା ଏ ପଟ ସେପଟ ହେଲା ପରେ କୌଣସି ପ୍ରକାରେ ବାଟଟା ମିଳିଗଲା । ଲତା ମୁହଁରେ ହସ ଫୁଟାଇ କହିଲା—ମୁଁ ଆଗରୁ କହୁ ନ ଥିଲି, ଏ ବାଟରେ ଆସ ବୋଲି ?

କହିଲି—ସତେ ?

## ସାନ୍ ଫ୍ରାନ୍‌ସିସ୍‌କୋ

ସାନ୍ ହୋଜେରୁ ସାନ୍ ଫ୍ରାନ୍‌ସିସ୍‌କୋ ପ୍ରାୟ ୬୦ ମାଇଲ୍ । ବାହାରିଲୁ ଆମେ—ଜ୍ଞାନ, ବୁଇ, ସୋମେଶ, ଲତା ଆଉ ମୁଁ; ରାସ୍ତା ଦୁଇ ପାଖରେ ମାଟିର ପାହାଡ଼, ଲାଲ୍ ରଙ୍ଗ, ଲଣ୍ଡା, ଏଠି ସେଠି ଶୁଖିଲା ଘାସ; ଗ୍ରେଟ ଗ୍ରେଟ ଅଙ୍ଗୁର ବଗିଚା—ଲାଲ୍, ସବୁଜ, କଳା ରଙ୍ଗର ପେଣ୍ଡା ପେଣ୍ଡା ଅଙ୍ଗୁର, ମଞ୍ଜିଯୁକ୍ତ, ମଞ୍ଜିହୀନ । ଚେରି, କମଳା ଲେମ୍ବୁ, ମୋଜାମ୍ବିକ୍, ପିଚ୍, ପ୍ଲମ୍ ବଗିଚା; ଯଥା ସମୟରେ ଫଳ ତୋଳା ହୋଇ ପାରୁନାହିଁ । ତଳେ ଝଡ଼ି ପଡ଼ି ସଢ଼ି

ଯାଉଚ । କାହା ବାଡବଗିଚ୍ଛରୁ କେହି ଗୋଟାଇ ନେଉ ନାହିଁ । ଘବଟ୍, ଗୁଣ୍ଡୁଚି, ମୂଷା ମଣ୍ଡା ମାରୁଛନ୍ତି । ପ୍ରାଚୁର୍ଯ୍ୟର ଦେଶ ଏ । ବଡ଼ ଲୋକ ଘରେ ଯେପରି, ଏଠି ସେହିପରି—କେତେ ଭୂମି ଖାଏ, କେତେ ଭମା ଖାଏ, କେତେ ଭୂତ ଖାଏ, ହିସାବ କରିବା ଶ୍ରେଷ୍ଠ ଲୋକର କାମ । ବେ-ହିସାବୀ ଭାବେ ଚଳିବା ହିଁ ବଡ଼-ଲୋକୀ ।

ଅଥଚ ଭାରତବର୍ଷରେ ଆମ୍ବୁଲା ଆମ୍ବଟାଏ ବି ତଳେ ପଡ଼ି ରହେ ନାହିଁ । ସେଟା ଗୋଟାଇ ନେଇ ଗଳାଧଃକରଣ କରିବାକୁ ଲୋକ ତା ଉପରେ ତା ଉପରେ ପଡ଼ନ୍ତି । ଗୋରୁ ବି ମାଡ଼ି ଆସନ୍ତି ।

"ଆମେରିକାର ବୃହତ୍ତମ ନଗର ନିଉୟର୍କର ହୋଟେଲ୍ଟିଏ ହେବା ଅପେକ୍ଷା ସାନ୍ ଫ୍ରାନ୍‌ସିସ୍‌କୋରେ ବସାଖଣ୍ଡିଟିଏ ହୋଇ ଛିଡ଼ା ହେବା ଭଲ" —ଜଣେ ବିଶିଷ୍ଟ ଅନୁଭବୀ କହୁଛନ୍ତି । କାହିଁକି ? ଚମତ୍କାର ପ୍ରାକୃତିକ ପରିବେଶ, ସମଶୀତୋଷ୍ଣ ଜଳବାୟୁ ଆକର୍ଷଣର କାରଣ ହୋଇ ପାରେ ।

ଅନାକର୍ଷଣର କାରଣ ମଧ୍ୟ ଅଛି; ଏହି ନଗର ମଡ଼କ, ମହାମାରୀ, ଝଞ୍ଜାରେ ବାରମ୍ବାର ଆକ୍ରାନ୍ତ, ବହୁବାର ଦଗ୍‌ଧ, ଭୂକମ୍ପର ସମ୍ଭାବନାରେ ତ୍ରସ୍ତ । ତଥାପି ପ୍ରଶାନ୍ତ ମହାସାଗରତୀରର ଏଇ ମରୁଭୂମି ଜନବହୁଳ ହୋଇ ଉଠୁଚି । ସ୍ଥାନ ଦୁର୍ଲଭ, ଦୁର୍ମୂଲ୍ୟ ।

ସମୁଦ୍ର ପତ୍ତନରୁ ପ୍ରାୟ ହଜାରେ ଫୁଟ୍ ଉଚ୍ଚ; ଗୋଟେ ପଟେ ପ୍ରଶାନ୍ତ ସାଗର, ଆର ପଟେ ଉପସାଗର, ପୃଥିବୀର ବୃହତ୍ତମ ଭୂମିଘେରି ବନ୍ଦର ଏ ।

ସାନ୍ ଫ୍ରାନ୍‌ସିସ୍‌କୋ ୧୮୩୫ ଖ୍ରୀଷ୍ଟାବ୍ଦ ବେଳକୁ ଏକ କୈବର୍ତ୍ତ ଗ୍ରାମ ମାତ୍ର ଥିଲା । ମନୁଷ୍ୟର ଭାଗ୍ୟ ଭଳି ଭୂମିର ଭାଗ୍ୟ ମଧ୍ୟ ବଦଳେ । କେହି ଭ୍ରମଣ-କାରୀ ମୁଣ୍ଡାଏ ସୁନା ପାଇଲା କି ନାହିଁ, କିଏ ଜାଣେ ? ଗୁଜବ୍ ରାଷ୍ଟ୍ର ହୋଇଗଲା । ହଠାତ୍ ଏଇ ଗ୍ରାମ ସହର ଭାବେ ଗଢ଼ି ଉଠିଲା, ବଢ଼ିଗଲା । ସୁବର୍ଣ୍ଣପାଗଳଙ୍କ ସଂଖ୍ୟା ବଢ଼ି ଦଶ ହଜାରକୁ ଧାପ ଦେଲା—ଚୀନା, ଯାପାନୀ, ଇଟାଲୀୟ, ଜର୍ମାନ୍, ଇଂରେଜ; ସୁବର୍ଣ୍ଣର ଇନ୍ଦ୍ରଜାଲ ଏଇ ନଗ୍ନ, ଲୁଖୁରି ଟାଙ୍ଗରା ପାହାଡ଼ଗୁଡ଼ାକର ଭାଗ୍ୟ ବଦଳାଇ ଦେଲା ।

'ଏଇ ନଗରରେ ଥରେ ବାସ କଲେ ମଣିଷ ଗଭୀର ମମତାସୂତ୍ରରେ ଆବଦ୍ଧ ହୋଇଯାଏ । ସେ ସୂତ୍ର ଛିଣ୍ଡାଇବା ଅସମ୍ଭବ ।' ରୁଡ଼୍‌ୟାର୍ଡ଼ କିପ୍‌ଲିଙ୍ଗ୍ । ଏହି ଉକ୍ତି ସତ୍ୟ ବୋଲି ପ୍ରମାଣିତ ହୋଇଛି ।

ସାନ୍ ଫ୍ରାନ୍‌ସିସ୍‌କୋ ଗୋଟିଏ ପାହାଡ଼ଭରା ଦ୍ୱୀପ । ଇଚ୍ଛା କରିଥିଲେ ଡିନାମାଇଟ୍‌ରେ ଏହି ପାହାଡ଼ସବୁ ଉଡ଼େଇ ଦେଇ ହୋଇଥାନ୍ତା । କିନ୍ତୁ ପ୍ରକୃତି-ପ୍ରିୟ ଆମେରିକାୟ ତାହା କରି ନାହିଁ । ସହର ନିର୍ମାଣରେ ପ୍ରାକୃତିକତା ଯଥା-ସମ୍ଭବ ରକ୍ଷା କରିଅଛି ।

ଚାରିଗୋଟି ସେତୁ ଦ୍ୱାରା ମୁଖ୍ୟ ଭୂମି ସହିତ ଏହି ପାହାଡ଼ୀ ଦ୍ୱୀପ ସଂଯୁକ୍ତ । ଉପସାଗର ଉପର ବୃହତ୍ତମ ସେତୁର ନାମ ଗୋଲଡ଼େନ୍ ବ୍ରିଜ୍—୮୯୮୧ ଫୁଟ୍ ଲମ୍ବ । ଏଥିରେ ଦୁଇଟି ବଡ଼ବଡ଼ ଟାଓ୍ୱାର୍ ଅଛି; ରାସ୍ତା ଦୁଇ ମହଲା: ଅବିରତ ଯାନର ତୋଫାନ୍ ଛୁଟିଛି । ଯେପରି ଯାନଗହଳ, ସେହିପରି ଜନଗହଳ, ତରଙ୍ଗ-ସଂକୁଳ ।

ଉପସାଗର ପ୍ରଶାନ୍ତ ମହାସାଗରର କନ୍ୟା । ମାତା ଯେତିକି ଶାନ୍ତା, କନ୍ୟା ସେତିକି ଉଦଣ୍ଡୀ । ପ୍ରଶାନ୍ତ ନିସ୍ତରଙ୍ଗ, ସମତଳ, ଉପସାଗରର ବେଳା ତରଙ୍ଗ-ଭଙ୍ଗୁର, ଦୁର୍ଦ୍ଧର୍ଷ, ବନ୍ୟ । ଅଥଚ ଜନନୀ କି ସ୍ନେହ ପ୍ରବଣତାରେ ଲଳନା କରେ ଉପସାଗରଟିକି, ନରମ ନରମ କଅଁଳ ଢେଉ ହାତରେ ଆଉଁସି ପାଉଁସି ଦେଇ । ବନ୍ୟତା ଭିତରେ ଏ ବତ୍ସଳତା ବଡ଼ ଉପଭୋଗ୍ୟ ।

ଭାରତ ମହାସାଗରର ପୁତ୍ରୀ ବଙ୍ଗୋପସାଗର ଅତି ବିପୁଳ, କନ୍ୟା ତୁଳନାରେ କିନ୍ତୁ ସେ ବାତ୍ସଲ୍ୟ ତରଙ୍ଗିତ । ସାଗରର ତୀବ୍ର ବିକ୍ଷୁବ୍ଧତା, ବନ୍ୟତା ବହୁଳାଂଶେ ଶାନ୍ତ ।

ସାଗର ଆଉ ଉପସାଗରର ମିଳନ ସ୍ଥଳରେ ଯାଇ ଛିଡ଼ା ହେଲି । ଦୂରରୁ ବରଫ ପାହାଡ଼ ଭାସିଆସେ, ସମୁଦ୍ର ସ୍ରୋତର ଉଷ୍ଣ ବାୟୁରେ ତରଳିଯାଏ । ବାୟୁର ତୀବ୍ର ଶୀତଳତା ଅସହ୍ୟ ।

ଉପସାଗରରେ ଗୋଟିଏ ମାତ୍ର ପାହାଡ଼ ଦିଶେ । ତା ଉପରେ ଥିଲେ ଜେଲ୍ ଥିଲା । କଏଦୀ ପଳାଇବାର ଭୟ ନ ଥିଲା । ଜଣେ କଏଦୀ ପଳାୟନ ଚେଷ୍ଟା କରି ହିଂସ୍ର ଜଳଜନ୍ତୁ ଦ୍ୱାରା ଭକ୍ଷିତ ହୋଇଥିଲା ।

ଯେଉଁଠି ଉପସାଗର ପ୍ରଶାନ୍ତରୁ ସ୍ୱତନ୍ତ୍ର, ସେଠି ଯାଇ ଦଣ୍ଡେ ଛିଡ଼ା ହୋଇ ଦୁଇ ପାଖର ତୃଣାସ୍ତୃତ, ପୁଷ୍ପିତ ପ୍ରାନ୍ତର ଶ୍ରୀ ଉପଭୋଗ କଲି ।

କେବଳ୍ କାର୍‌ରେ ବସି ସୌନ୍ଦର୍ଯ୍ୟର ଏ ଲୀଳା ସ୍ଥଳୀ ଉପଭୋଗ କରିବାର ସୌଭାଗ୍ୟ ମିଳିଲା କାହିଁ ? ମନ ଛାଡ଼ିବା ଆଗରୁ ମୋତେ ଏ ସ୍ଥାନ ଛାଡ଼ିବାକୁ ପଡ଼ିଲା । ଆର୍ଟ ମ୍ୟୁଜିଅମ୍, ଆର୍ମି ମ୍ୟୁଜିଅମ୍, ମେକ୍ସିକାନ୍ ମ୍ୟୁଜିୟମ୍ ଲାଇବ୍ରେରୀ,

ପିଲାଙ୍କ ମ୍ୟୁଜିଅମ୍, ଚିଡ଼ିଆଖାନା, ଟ୍ରେଜର୍ ଆଇଲାଣ୍ଡ୍ ମ୍ୟୁଜିଅମ୍, ଓ୍ୱାକ୍ସ୍ ମ୍ୟୁଜିଅମ୍, ଥିଏଟର କିଛି ଦେଖି ପାରିଲି ନାହିଁ । କେବଳ ସାଗର ଆଉ ଉପ-ସାଗର ଉପରେ ଫିକା ଅପରାହ୍ନର ପାଣ୍ଡୁର ଶ୍ରୀ ଦେଖୁ ଦେଖୁ ଆମେ ଫେରିଲୁ ।

ରାସ୍ତା ବହୁତ ଉଚ୍ଚକୁ ଉଠିଛି, ବହୁ ତଳକୁ ଖସିଛି, ଯେଉଁଠି ଗଡ଼ାଣିଆଁ ଭୂମି ନାହିଁ, ସେଠି ବଙ୍କାଟଙ୍କା ରାସ୍ତା ଥାକକୁ ଥାକ ଅନେକ ବୁଲି ଗାଡ଼ି ତଳକୁ ଗଡ଼େ । ଚାଳକ ସଦା ସତର୍କ । ଗାଡ଼ିର ଗତି ଦୃଢ଼ଭାବେ ନିୟନ୍ତ୍ରିତ । ଗତି ଟିକିଏ ଅଧିକ ହେଲେ ରାଡ଼ାର୍ ଯନ୍ତ୍ରରେ ଧରା ପଡ଼େ, କଠୋର ଶାସ୍ତି ମିଳେ ।

## ବର୍କଲେ ବିଶ୍ୱବିଦ୍ୟାଳୟ

ସାନ୍‌ଫ୍ରାନ୍‌ସିସ୍‌କୋରୁ ଗୋଲ୍‌ଡେନ୍ ବ୍ରିଜ୍ ବାଟେ ଆସି ବର୍କଲେ ବିଶ୍ୱବିଦ୍ୟାଳୟରେ ପହଞ୍ଚିଲୁ, ଉପବନ ପରିବେଶ, ଶାନ୍ତ ବାତାବରଣ । ପୃଥିବୀର ଶ୍ରେଷ୍ଠ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ଅନ୍ୟତମ; ୧୮୬୬ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷ ବର୍ଷ କାଲିଫର୍ଣ୍ଣିଆଁ ବିଶ୍ୱବିଦ୍ୟାଳୟ ସ୍ଥାପିତ । କାଲିଫର୍ଣ୍ଣିଆଁ ବିଶ୍ୱବିଦ୍ୟାଳୟର ୯ଟି କାମ୍ପସ୍ ମଧ୍ୟରୁ ବର୍କଲେ ଗୋଟିଏ, ସାନ୍-ଫ୍ରାନ୍‌ସିସ୍‌କୋ ଉପସାଗର କୂଳରେ, ବହୁ ଫଳପୁଷ୍ପୋଦ୍ୟାନ, ପାର୍କ ଓ ସବୁଜ ପ୍ରାନ୍ତର ମଧ୍ୟରେ ଅବସ୍ଥିତ । ପ୍ରଶାନ୍ତ ମହାସାଗର ଓ ତାର ତୀରବର୍ତ୍ତୀ ପାହାଡ଼ର ଅରଣ୍ୟ ହାଓ୍ୱା ଏହାକୁ ଗୁରୁଗମ୍ଭୀର ସଙ୍ଗୀତରେ ସଞ୍ଜୀବିତ କରେ । ସରଳ, ସୁନ୍ଦର ସାଧନାମୟ ଜୀବନ । ଆମେରିକା ଏହିପରି ବିଶ୍ୱବିଦ୍ୟାଳୟମାନଙ୍କରେ ଯୋଗମଗ୍ନ । ଫଳରେ ତାର ଯାବତୀୟ ଅଗ୍ରଗତି ।

ଏଠି କ୍ଷିପ୍ର ବା ଦ୍ରୁତ କିଛି ନାହିଁ । ମନ୍ଥର କିନ୍ତୁ ନିଶ୍ଚିତ ଗତିରେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ପ୍ରୟାସ ସର୍ବତ୍ର । ଏହି ବିଶ୍ୱବିଦ୍ୟାଳୟରେ ୧୬ଜଣ ନୋବେଲ୍ ଲରିଏଟ୍ ଅଛନ୍ତି, କେବଳ ଆସନ ମଣ୍ଡନ କରି ନାହାନ୍ତି, ଗବେଷକମାନଙ୍କ ସହାୟକ ସେମାନେ, କ୍ଲାସ୍ ନିଅନ୍ତି ।

ବର୍କଲେ ବିଶ୍ୱବିଦ୍ୟାଳୟର ଗ୍ରନ୍ଥସଂଖ୍ୟା ୬୭ ହଜାର । ଏଠି ୮୦ଟି ବିଭାଗ ଓ ମାନବିକ ଯାବତୀୟ ବିଦ୍ୟା ଅଧ୍ୟୟନର ବ୍ୟବସ୍ଥା ଅଛି । ଗବେଷଣା ଏହାର ମୁଖ୍ୟ କର୍ମ । ଏହା ଆଟମ୍ ବୋମାର ଧ୍ୱଂସାତ୍ମକ ପ୍ରଭାବନାଶକାରୀ ସାଇକ୍ଲୋଟ୍ରନ୍ ଉଦ୍‌ଭାବନ କରିଛି, ମଙ୍ଗୋଲୀୟ ଇଂରାଜୀ ଅଭିଧାନ, ଥାଇ ଇଂରାଜୀ ଅଭିଧାନ

ନିର୍ମାଣ କରିଛି । ଇଲେକ୍ଟ୍ରୋନିଅମ୍‌ରୁ ଅଧିକ ଓଜନିଆ ୧୧ଟି ମୌଳିକ ଉପାଦାନ ଆବିଷ୍କାର କରିଛି ।

ବଡ଼ବଡ଼ ଓ ସୃଷ୍ଟିଶୀଳତା—ଉଭୟ ଶକ୍ତି ଅର୍ଜନରେ ଷ୍ଟାନ୍‌ସମାଜ ତତ୍ପର । କଳା, ସ୍ଥାପତ୍ୟ, ସାହିତ୍ୟ, ସଙ୍ଗୀତ, ନାଟକ ଦିଗରେ ଉନ୍ନତ ଗବେଷଣା ଲାଗି ଏହା ବହୁ ମର୍ଯ୍ୟାଦାଜନକ ପୁରସ୍କାର ଲାଭ କରିଅଛି । ଏହାର ଆଟମିକ୍ ଗବେଷଣା, ଗ୍ରହ ଉପଗ୍ରହ ଯାତ୍ରା ଗବେଷଣା, କୀଟ ଓ ବୃକ୍ଷଲତା ତତ୍ତ୍ୱ ଗବେଷଣା, ପରିବେଶ ସୁରକ୍ଷା ଗବେଷଣା ବିଶେଷ ଉଲ୍ଲେଖଯୋଗ୍ୟ । ଅଦୂରରେ ଷ୍ଟାନ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟ, ସେଠି ୯ ଜଣ ନୋବେଲ୍‌ଲରିଏଟ୍ ଅଧ୍ୟାପନା କରନ୍ତି ।

ସାନ୍‌ହୋଜେ ଫେରିବା ବାଟରେ ଆମେ ଓଡ଼ିଆ ଇଞ୍ଜିନିଅର୍ ଶରତ ବେହେରାଙ୍କୁ ସାକ୍ଷାତ କରିଥିଲୁ । ତାଙ୍କ ସ୍ତ୍ରୀ ସୁମିତ୍ରା ରେଭେନ୍‌ସା କଲେଜରେ ମୋର ଛାତ୍ରୀ, ଦକ୍ଷିଣ ଭାରତ ଭ୍ରମଣରେ ସହଯାତ୍ରିଣୀ । ତା ସହିତ ଜୀବନରେ ଆଉ ଥରେ ଦେଖା ହେବ, ଏ ବିଶ୍ୱାସ ନ ଥିଲା । ଭ୍ରମଣ ସ୍ମୃତି ଆଲୋଡ଼ନରେ ବହୁ ତିକ୍ତ, ମଧୁର କଥା ମନେ ପଡ଼ିଲା ।

ଶ୍ରୀ ବେହେରାଙ୍କ ଘର କଳାହାଣ୍ଡିରେ । ସେ ଗାଲ୍‌ଟିକ ଡକ୍ଟର ଭୁବନେଶ୍ୱର ବେହେରାଙ୍କ ସମ୍ପର୍କୀୟ, ଉଦାର; ଓଡ଼ିଆ ମହଲରେ ଏକାନ୍ତ ଶ୍ରଦ୍ଧାଭାଜନ । ତାଙ୍କ ଘରେ ରାତ୍ରିଭୋଜନ କରି ଆମେ ଫେରିଲୁ ।

କାଲି ଗଣେଶପୂଜା । ବୁଇ, ଲତା ମିଶି ରାତିରେ ରାଶିକୋଶ କଲେ । ଆଉସବୁ ଭୋଗରାଗ ସଜାଡ଼ି ରଖିଲେ । କାଲି ଓଡ଼ିଆମାନେ ଏଠି ଏକାଠି ହୋଇ ପୂଜା କରିବେ, ହସଖୁସି ଗୀତ, ଅଭିନୟରେ ଦିନଟି କଟିବ, ଏଠା ଓଡ଼ିଆ ଓଡ଼ିଶାର ଓଡ଼ିଆଙ୍କ ଅପେକ୍ଷା ଭିନ୍ନତର । ବିଦେଶ ବାସ ସେମାନଙ୍କୁ ସ୍ନେହାଳୁ, ସମବେଦନାଶୀଳ ସଜ୍ଜନ କରିଛି, ପରିବାରରୁ ବିଚ୍ଛିନ୍ନ; ଏକମନ, ଏକପ୍ରାଣ ହୋଇ ସେମାନେ ଏକ ସ୍ନେହସ୍ୱଚ୍ଛ ଆନନ୍ଦମୟ ପରିବେଶ ସୃଷ୍ଟି କରନ୍ତି, ଯାହା ଓଡ଼ିଶାରେ ବିରଳ ।

ବିଦେଶୀ ଓଡ଼ିଆଙ୍କ ଗଣେଶ ପୂଜାରେ ଯୋଗ ଦେବାର ସୁଯୋଗ ଆମକୁ ମିଳିଲା ନାହିଁ । ଗୋଟିଏ ମାତ୍ର ଦିନରେ କଣ ଦେଖାଯାଇ ପାରିବ ? କିନ୍ତୁ ନିରୁପାୟ । ଜ୍ଞାନଙ୍କର ବଦଳି ହୋଇଛି ଟେକ୍‌ସାସ୍ । ଗଣେଶ ପୂଜା ସାରି ଚାଲି-ଯିବେ । ଘରଟିକୁ ଭଡ଼ା ଲଗାଇବାକୁ ହେବ । ଆହୁରି ଅନେକ କାମ ବାକି । କାର୍ଯ୍ୟବ୍ୟସ୍ତତା ଭିତରେ ବି ଆମକୁ ଗୋଟିଏ ଦିନ ଦେଲେ, ସ୍ୱଭାବତଃ ସହାନୁ-ଭୂତିଶୀଳ ଓ ଓଡ଼ିଆ ସାହିତ୍ୟ ପ୍ରତି ଶ୍ରଦ୍ଧାଭାବାପନ୍ନ ବୋଲି ।

# ତେର

## ଲସ୍‌ଆଞ୍ଜେଲ୍‌ସ୍

ଅର୍ଦ୍ଧ ଦର୍ଶନ, ଅର୍ଦ୍ଧ ଉପଭୋଗର ଅତୃପ୍ତି ନେଇ ଆମେ ସାନ୍‌ଫ୍ରାନ୍‌ସିସ୍କୋରୁ ଲସ୍‌ଆଞ୍ଜେଲ୍‌ସ୍ ଯାତ୍ରା କଲୁ। ପ୍ଲେନ୍‌ରେ ପଞ୍ଚାଳିଶ ମିନିଟ୍ ମାତ୍ର ଲାଗେ। ଷ୍ଟେସନ୍‌କୁ ଆସିଥିଲେ ନୀରୋଦ ମହାନ୍ତି। ଘର ସୋରୋ, ବାଲେଶ୍ୱର। ଅଧ୍ୟାପକ କାଲିଫର୍ଣ୍ଣିଆଁ ବିଶ୍ୱବିଦ୍ୟାଳୟରେ ପଢ଼ାନ୍ତି, ସପ୍ତାହକେ ମାତ୍ର ଦୁଇ ଦିନ। ତା ବ୍ୟତୀତ ଅନ୍ୟ ଚାକିରିଟିଏ ମଧ୍ୟ କରନ୍ତି। ସ୍ତ୍ରୀ ସ୍ନେହପ୍ରଭା, ଡାକ ନାମ ଉଷା। ମୋ ଅବସର ବର୍ଷ—ଅର୍ଥାତ୍ ୧୯୬୧ରେ ସେ ଏମ୍. ଏ. ଶ୍ରେଣୀରେ ମୋ ଛାତ୍ରୀ ଥିଲା। ତାର କିଛି ଦିନ ଆଗରୁ ବିବାହ, ସ୍ୱାମୀଙ୍କ ସହିତ ଆମେରିକା ଯିବା ପୂର୍ବରୁ ମୋ-ଠାରୁ ଆଶୀର୍ବାଦ ନେବାକୁ ଆସିଥିଲା, ସ୍ୱଭାବତଃ ସ୍ନେହଶୀଳା, ଭକ୍ତିପରାୟଣା।

ସେତେବେଳେ ଶିକ୍ଷା ଏତେ ବ୍ୟବସାୟମୂଳକ ହୋଇ ନ ଥିଲା। ଶିକ୍ଷକ ଛାତ୍ରଛାତ୍ରୀଙ୍କୁ ନିଜ ପରିବାରର ଲୋକ ପରି ମନେ କରୁଥିଲେ ଓ ସେମାନଙ୍କ ଲାଗି ତାଙ୍କ ଗୃହଦ୍ୱାର ସଦା ଉନ୍ମୁକ୍ତ ଥିଲା। ଛାତ୍ର ବିଦାୟ ନେଲା ପରେ ବି ଯୋଗାଯୋଗ ସମ୍ପର୍କ ରହୁଥିଲା; ଉଷା ଛଳ ଛଳ ଆଖିରେ ବିଦାୟ ନେଲା ପରେ ଅନୁରୋଧ ଜଣାଇଲା—ସାର୍, ଆମେରିକା ଆସିଲେ ନିଶ୍ଚୟ ଆମ ଘରକୁ ଆସିବେ। ଗତାନୁ-ଗତିକ ରୀତିରେ ହଁ ଟାଏ ମାରିଦେଲି; ଆମେରିକା ପରି ବିରାଟ ଦେଶରେ ଗୋଟିଏ ଜାଗାରୁ ଅନ୍ୟ ଜାଗା ହଜାର ହଜାର ମାଇଲ୍ ଦୂର, କଥା ରଖିବା ସମ୍ଭବ ନୁହେଁ, ଜାଣିଥିଲେ ବି। ତାର ଭାବପ୍ରବଣ ମନ ଶାନ୍ତ ହେଲା।

ଏ ମଧ୍ୟରେ ପନ୍ଦର ବର୍ଷ ବୋହିଗଲାଣି। ମୋ ମନର ବାଲୁଚରରେ ଲିଭିଗଲା ତାର ସ୍ମୃତି ସଙ୍କେତ। ଏମିତି କେତେ ଛାତ୍ର ଆସନ୍ତି, ଯା'ନ୍ତି; ଗାଁ ଦେଖିବାକୁ, ବିଭାଘରକୁ, କି ପୁଅ ଏକୋଇଶାକୁ ନିମନ୍ତ୍ରଣ କରନ୍ତି। ଯାଇ ହୁଏ କୋଉଠି! ତାପରେ କର୍ମକ୍ଷେତ୍ରରେ ପ୍ରବେଶ କଲେ କାହା କଥା କାହାର ମନେ ପଡ଼େ?

କିନ୍ତୁ ଓଲ୍ଗା ଭୁଲିଯିବାର ଝିଅ ନୁହେଁ; ତା କଳନାରେ ଗୁରୁଶିଷ୍ୟର ସମ୍ପର୍କ ଚିରକାଳର ସମ୍ପର୍କ ।

ଆଉ ଥରେ ଆମେରିକା ଯିବା କଳ୍ପନା ମୁଁ କେବେ କରୁ ନ ଥିଲି । କିନ୍ତୁ ଯୁଗ ଲେଉଟିଲା, ଯୋଗ ପଡ଼ିଲା । ଈଶ୍ୱରେଚ୍ଛାରେ ସେଇ ଅଭାବିତ କଥା ଘଟିଲା । ଓଲ୍ଗା ଗୋଦା ଜଗିଥିଲା, ମୋ ଆମେରିକା ଯିବା କଥା ତା କାନରେ ପଡ଼ିଲା; ଗୁମ୍ ମାରି ବସିଗଲା—ଦେଖିବା, ସାର୍ କଥା ରଖୁଛନ୍ତି କି ନାହିଁ ?

ସ୍ୱାଧୀନ ଭାବେ ମୁଁ ଭ୍ରମଣ କରିବାକୁ ଅସମର୍ଥ । ଉଦ ପଶ୍ଚିମ ଆମେରିକା-ବାସୀ ଓଡ଼ିଆଙ୍କ ଛପା ନାମ ତାଲିକାଟି ଖୋଜିଲି—ବାହାରିଲି ନିର୍ବେଦ ମହାନ୍ତି । ବୈଜ୍ଞାନିକ, କମ୍ପ୍ୟୁଟର୍ ବିଶେଷଜ୍ଞ । ସେ ଜଣେ ସାହିତ୍ୟିକ ପ୍ରତି ଆଗ୍ରହ ପ୍ରକାଶ କରିବେ କାହିଁକି ?

ଓଲିମ୍ପିକ୍ ଖେଳ । ବହୁ ଓଡ଼ିଆ ଖେଳଦେଖାଳୀ ତାଙ୍କୁ କେତେ ଦିନ ଧରି ବ୍ୟତିବ୍ୟସ୍ତ ଓ ବିରକ୍ତ କରିଛନ୍ତି - ଅତିଥି ହେବେ, ଏଣେ ବହୁ ସ୍ଥାନ ବୁଲି ଦେଖିବେ, ବୁଲାଇ ଦେଖାଇବେ ଶ୍ରୀ ମହାନ୍ତି । ଶାନ୍ତିପ୍ରିୟ ଅଧ୍ୟାପକ, ସେ ନିରବ-ନିଶ୍ଚଳ ଭାବେ ବସି ପଢ଼ାପଢ଼ି କରନ୍ତି, ଦୌଡ଼ଧାପଡ଼କୁ ସେତେ ଭଲ ପାନ୍ତିନାହିଁ । ତାଙ୍କ ଦୈନନ୍ଦିନ ରୁଟିନ୍‌ରେ ବହୁ ବାଧା ଜନ୍ମିଛି ।

ପୁଣି ଅତିଥି ଆସିବା ପ୍ରସ୍ତାବରେ ସେ କ'ଣ ଭାବୁଥିବେ କେଜାଣି, ଫୋନ୍‌ଟା ବେସୁରା ଶୁଣାଗଲା । ସେଥିରୁ ବୁଝିଲି, ଆଗ୍ରହ ନାହିଁ । ଲସ୍‌ଆଞ୍ଜେଲସ୍ ଯିବା ବନ୍ଦ ହେଲା ।

କଥାଟା ଓଲ୍ଗା କାନରେ ବାଜିଲା । ସେ କହିଲା, ତୁମ ପ୍ରିୟ ସାର୍ ହୋଇ-ଥିଲେ ତୁମେ ନ ଡାକି ରହିପାରିଥାନ୍ତି ? ମୋ ପ୍ରିୟ ସାର୍ ବୋଲି ସିନା···

ନିର୍ବେଦ—ଉପଦ୍ରବ ଉପରେ ଉପଦ୍ରବ, ଟିକିଏ ଶାନ୍ତିରେ ରଖେଇ ଦେବ ନାହିଁ ନା—କଣ ?

ଓଲ୍ଗା ଜିଦ୍ ଧରି ବସିଲା—ମୋ ସାର୍ ନିଶ୍ଚୟ ଆସିବେ । ପନ୍ଦର ବର୍ଷ ତଳେ ନିମନ୍ତ୍ରଣ କରିଛି । ନିମନ୍ତ୍ରିତ ଅତିଥି ଆସିଲା ପରେ କଣ ଦୁଆରୁ ଫେରାଇ ଦିଆଯାଏ ?

କଥାଟା ଅଧିକ ତିକ୍ତ ହେବା ପୂର୍ବରୁ ନିର୍ବେଦ ପୁଣି ଫୋନ୍ କଲେ—ଆସ, ନିଶ୍ଚିତ ଭାବେ ଆସ, କିନ୍ତୁ ବ୍ୟୋମ ଷ୍ଟେସନ୍‌କୁ ଯାଇ ମୁଁ ଆଣି ପାରିବି ନାହିଁ !

'ଏ ଆସ, ପୁଣି ନ ଆସ' ଏ କଥା ଏକାବେଳକେ କହିଲି ପରି ହେଲା । ଆମେରିକାର ଦ୍ୱିତୀୟ ବୃହତ୍ତମ ସହର । ଏହାର ଆଦି ଅନ୍ତ ପାଇବା ଆମ ପକ୍ଷେ ଦୁଷ୍କର । ପୁଣି ବସାଘର ଖୋଜି ପାଇବା ଆହୁରି ଅସାଧ୍ୟ ।

ପୁଣି ଏ ସହରକୁ ଛାଡ଼ିଦେଲେ ବି ଆମେରିକାରେ ବହୁ ଚମତ୍କାର୍ଯ୍ୟକ ସ୍ଥାନ ରହିଛି । ବନ୍ଧୁମାନେ ସାଗ୍ରହେ ଦେଖିବାକୁ ନିମନ୍ତ୍ରଣ କରୁଛନ୍ତି । ଯୋଉଠି ପାଦପୂଜା ମିଳିବ, ସେଠିକି ନ ଯାଇ ଲସ୍ ଆଞ୍ଜେଲସ୍ ଉପରେ ଲଖ ମରିଚ କାହିଁ ? ସ୍ତ୍ରୀଙ୍କର ଆଗ୍ରହ; ପୁରୁଷର ନାହିଁ । ଏ ଶ୍ରେଷ୍ଠ କଥାରେ ସ୍ୱାମୀ ଇଚ୍ଛା ବିରୁଦ୍ଧରେ ସ୍ତ୍ରୀ କାହିଁକି ଛିଡ଼ା ହେବ ? ମୋ ଭ୍ରମଣଟା ମନର ଆନନ୍ଦ ପାଇଁ, କାହା ଶାନ୍ତ, ଶୀତଳ ସଂସାରରେ ଅଶାନ୍ତି ଜନ୍ମାଇବା ପାଇଁ ନୁହେଁ । ସେଠିକି ନ ଗଲେ କଣ ଆମ୍ବିଳା ହୋଇଯାଉଛି ?

ଘରେ କଣ ଘଟିଲା କେଜାଣି, ମୀରେନ୍ଦ୍ର ପୁଣି ଫୋନ୍ କଲେ । ଫୋନ୍‌ରେ କଣ କଥାବାର୍ତ୍ତା ହେଲା ? ସେଥିରୁ ମୀରେନ୍ଦ୍ର ବୁଝିଲେ—ଉଦ ରାଗୀ, ଉଦ ବୁଝିଲା —ମୀରେନ୍ଦ୍ର ରାଗୀ; ଉଦ ମୋତେ ସ୍ପଷ୍ଟ କହିଦେଲା—ତୁମ ଲାଗି ସମସ୍ତ ଦେବାକୁ, ବ୍ୟସ୍ତ କରିବାକୁ ସେ କୁଣ୍ଠିତ; କୁଣ୍ଠାର ପାଖ ମାଡ଼ ନାହିଁ ।

ଏମିତି ଭୁଲ୍ ବୁଝାମଣା ହେଲା; ଫୋନ୍‌ରେ ସାଲିସ୍ ବି ହେଲା । ମନେ ମନେ ଭାବିଲି—ଏଇ ସାଲିସ୍ ତଳେ ଯୋଉ ଝିଅଟି କାମ କରୁଚି, ସେ କିଏ ? କେବେ ମୋ'ର ଛାତ୍ରୀ ଥିଲା ? ତା ଚେହେରା ଆଦୌ ମୋର ମନେ ପଡ଼ିଲା ନାହିଁ ।

ଶେଷକୁ ଡ଼ଲାର ଜିଦ୍ ରହିଲା । ମୁଁ ଲସ୍ ଆଞ୍ଜେଲସ୍ ଗଲି । ମୀରେନ୍ଦ୍ର ଆମକୁ ପାଛୋଟି ନେବା ଲାଗି ଷ୍ଟେସନକୁ ଆସିଥିଲେ ।

ବାଟରେ କେତେ ଦୃଶ୍ୟ ଅଦେଖା ରହିବ କାହିଁକି ? ମୀରେନ୍ଦ୍ର ଆମକୁ କାଲିଫର୍ଣ୍ଣିଆଁ ସମୁଦ୍ର କୂଳକୁ ନେଇ ଚା ଖୁଆଇଲେ—କପ୍ ପିଛା ଏକ ଡ଼ଲାର୍— ମାନେ ଭାରତୀୟ ମୁଦ୍ରାରେ ବାର ଟଙ୍କା ।

କାଲିଫର୍ଣ୍ଣିଆଁର ଆବିଷ୍କାରକ ଜଣେ ସ୍ପେନ୍‌ବାସୀ । ଦୀର୍ଘକାଳ ଏହି ଅଞ୍ଚଳ ସ୍ପେନ୍ ସାମ୍ରାଜ୍ୟଭୁକ୍ତ ହୋଇ ରହିଥିଲା, ତାପରେ ମେକ୍‌ସିକୋ ରାଜ୍ୟର ଅଙ୍ଗୀଭୂତ ହେଲା । ଯୁକ୍ତରାଷ୍ଟ୍ର ଆମେରିକା ସ୍ୱାଧୀନ ହେବା ପରେ ମେକ୍‌ସିକୋଠାରୁ ଏହା ଛଡ଼ାଇ ନେଲା । ସେତେବେଳେ ବାସିନ୍ଦାଙ୍କ ସଂଖ୍ୟା ଥିଲା ଏକ ଲକ୍ଷ— ମୁଖ୍ୟତଃ ଆଦିବାସୀ ବା ଯାଯାବର, ସେମାନଙ୍କୁ ମୂଳପୋଛ କରି ଦିଆହେଲା ।

ଏହି ସମୟରେ ଗୋଟିଏ ଦୈବୀ ଘଟଣା ଇତିହାସର ମୋଡ଼ ବଦଳାଇ ଦେଲା । ସାନ୍ ଫ୍ରାନ୍ସିସ୍କୋରେ ଯେପରି, ଏଠି ସେହିପରି କେହି ଭାଗ୍ୟବନ୍ତ ବାଲିଗିରଡ଼ା ଗଦାରୁ ସୁନା ମୁଣ୍ଡାଟିଏ ପାଇଲା, ସମ୍ବାଦ ଚୌଦଗରେ ଖେଳିଗଲା । କୃଷକ କୃଷି, ଗୋବାଳକ ଗୋରୁଚରା, ଦୋକାନୀ ଦୋକାନ, ଅଫିସର୍ ଅଫିସ୍ ଛାଡ଼ି ହଠାତ୍ ବଡ଼ଲୋକ ହେବାର ତୀବ୍ର ଲାଳସାରେ ଶତସହସ୍ର ସଂଖ୍ୟାରେ ଧାଇଁଲେ । ସେତେବେଳେ ଘୋର ମରୁଭୂମି ଅଞ୍ଚଳ, ଖାଲି ଆଣ୍ଠେ ଧୁଙ୍ଗା ବାଲି । ଖାଦ୍ୟ ଓ ଜଳାଭାବରୁ ବହୁ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ।

ବହୁ ଖୋଳାତାଡ଼ା ପରେ ସୁନା ତ କେଉଁଠି ମିଳିଲା ନାହିଁ, ମିଳିଲା ମୂଲ୍ୟବାନ୍ ଗ୍ୟାସ୍ । ସୁନାର ମାୟା ମରୀଚିକାରେ ପଡ଼ି ଯେଉଁମାନେ ପଳାଇ ଆସିଥିଲେ, ଲଜ୍ଜା ସଙ୍କୋଚରେ ସେମାନେ ଆଉ ଘରକୁ ଫେରିଲେ ନାହିଁ । ସେମାନେ ହେଲେ କାଲିଫର୍ଣ୍ଣିଆଁର ନବ ଅଧିବାସୀ । ସେମାନେ କୃଷି ଆଉ ଶିଳ୍ପର ଉନ୍ନତି ଘଟାଇଲେ । କାଲିଫର୍ଣ୍ଣିଆ ବେଳାର ଲମ୍ବ ପ୍ରାୟ ଏକ ହଜାର ମାଇଲ୍ । ଏଇ ରାଜ୍ୟର ଲୋକସଂଖ୍ୟା ଅଢ଼େଇ କୋଟି ।

୫୦ଟି ରାଜ୍ୟ ମଧ୍ୟରେ କାଲିଫର୍ଣ୍ଣିଆଁ ସବୁଠାରୁ ସମୃଦ୍ଧିଶାଳୀ, ଆମେରିକାର ଶସ୍ୟ ଓ ଫଳ ଭଣ୍ଡାର; ରତ୍ନ ଭଣ୍ଡାର କହିଲେ ବି ଅତ୍ୟୁକ୍ତି ହେବ ନାହିଁ ।

ମାର୍ଗେଟ ଯେଉଁ ସମୁଦ୍ର ତୀର ଦେଖାଇଲେ, ସେଥିରେ ବୁଲାବୁଲି କରି ଦେଖିବା ଲାଗି ପ୍ରସାରିତ ବାଲୁକାବେଳା ନାହିଁ—ଭୂମି ନଇଲେ ଗଭୀର ସମୁଦ୍ର ଜଳ । ସେହି ଜଳ ଉପରେ କାଠ ଘର ମୋଟେଲ୍ । ଜାହାଜରେ ଥିଲା ପରି ଲାଗେ । ସେଥିରେ ରହି ଯାତ୍ରୀ ସମୁଦ୍ରର ଶ୍ରୀ ଓ ବାୟୁ ଉପଭୋଗ କରେ ।

## ଦୂର ଦେଖା, ପାଖ ଦେଖା

ପାଖ ଦେଖାରେ ଦୂରର ରୋମାଞ୍ଚ ସ୍ୱପ୍ନ ଭାଙ୍ଗିଯାଏ । ମାର୍ଗେଟ ଓଲଟା । ପାଖ ଦେଖାରେ ଦୂର ଦେଖା ମିଛ ହୋଇଗଲା, ଅଳ୍ପଦିନ ରହଣି ମଧ୍ୟରେ ସେ ମୋ ମନର ପାଖାପାଖି ହୋଇଗଲେ । ମୁଁ ଯେମିତି ମଣିଷକୁ ଭଲ ପାଏ, ସେ ସେମିତି । ଆମେରିକା ତାଙ୍କ ଭିତର, ବାହାର କିଛି ହେଲେ ବଦଳାଇ ପାରି-ନାହିଁ । ସେ ଖାଣ୍ଟି ଭାରତୀୟ, ଖାଣ୍ଟି ଓଡ଼ିଆ ହୋଇ ରହିଛନ୍ତି ।

ସେ ବହୁପାଠୀ, ବିଜ୍ଞ, ଅବଶ୍ୟ ସ୍ୱବୟସରେ । ଉଚ୍ଚକୋଟୀର ଆନ୍ତର୍ଜାତିକ ପତ୍ର ପତ୍ରିକାରେ ତାଙ୍କର ପ୍ରବନ୍ଧ ପ୍ରକାଶ ପାଏ । ଗୃହକର୍ମରେ

ନିପୁଣତା ଅର୍ଜନ ଲାଗି ତାଙ୍କ ବଦ୍‌ବଣ୍ଡା ବାଧକ ହୋଇ ନାହିଁ । ଗନ୍ଧାଗନ୍ଧ, ବଜାରହାଟ ସବୁ କରନ୍ତି । ଅଧିକାଂଶ ବିଦେଶୀ ଓଡ଼ିଆ ବୃତ୍ତିଗତ କର୍ମ ବ୍ୟତୀତ ପାର୍ଟି ଫାଜିଲମିରେ ଦିନ କାଟନ୍ତି । ମାଗ୍ରେଟ ସେପରି ନୁହନ୍ତି । ସେ ଉଚ୍ଚ ଆଦର୍ଶ ପୋଷଣ କରନ୍ତି । କିଛି ଗବେଷଣା ବା ଉଚ୍ଚସ୍ତରର କାର୍ଯ୍ୟ କରିବାକୁ ଚାହାନ୍ତି । ତାଙ୍କୁ କେତୋଟି ପ୍ରଶ୍ନ ପଚାରିଲି । ପ୍ରଥମ ପ୍ରଶ୍ନ—ଆପଣ ବାପି (ପୁଅର ଡାକ ନାମ) କୁ ଅନ୍ୟ ଆମେରିକାନ୍ ପିଲାଙ୍କ ପରି ନିଜେ ରୋଜଗାର କରି ପଢ଼ିବା ସ୍ୱାଧୀନତା ଦେଉ ନାହାନ୍ତି କାହାନ୍ତି ?

ମାଗ୍ରେଟ—ମୁଁ ଭାରତୀୟ, ମୋ ସ୍ତ୍ରୀ ଭାରତୀୟା, ମୁଁ ଚାହେଁ ମୋ ପୁଅ ଭାରତୀୟ ହୋଇ ରହୁ । ଏ ଦେଶରେ ବାପମାଆଙ୍କ ପ୍ରତି ପିଲାଙ୍କ ଔଦାସୀନ୍ୟ ଦେଖିଲେ ମୋ ମନରେ ଦୁଃଖ ହୁଏ । ଅର୍ଥନିର୍ଭରତା ବାଦ୍ ଦେଲେ ଆନୁଗତ୍ୟ ଉଣା ପଡ଼ିଯିବାର ଶଙ୍କା ପଦେ ପଦେ । ତା କରିବାକୁ ମୁଁ ଦେବ କାହିଁକି ? ଘର ବା ପରିବାର ଗୋଟିଏ ସହଯୋଗୀ ଅନୁଷ୍ଠାନ । ପରସ୍ପର ନିର୍ଭରତା ଫଳରେ ଏହା ଗୋଟାଳିଆ ହୋଇ ରହେ ।

ଦ୍ୱିତୀୟ ପ୍ରଶ୍ନ—ଏ ଦେଶରେ ଏତେ ଛାଡ଼ପତ୍ର କାହିଁକି ? ଉତ୍ତର—ସହନଶୀଳତାର ଅଭାବ ଛାଡ଼ପତ୍ରର ଗୋଟିଏ ବଡ଼ କାରଣ । ଶୁଣି ହସିବେ, କିନ୍ତୁ କଥାଟା ସତ – ସେ ଘରେ ସ୍ତ୍ରୀ ଘୁଙ୍କୁଡ଼ି ମାରେ, ପୁରୁଷ ବି । ଅଚେତା ଘୁଙ୍କୁଡ଼ି ଚେତା ଅବସ୍ଥାରେ ମଣିଷ ସ୍ୱୀକାର କରେ ନାହିଁ । ପରସ୍ପର ଉପରେ ଦୋଷ ନଦିଲେ । ଏଥିଲାଗି ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଅପଡ଼ ଓ ଛାଡ଼ପତ୍ର ଦିଆଦେଇ ହୋଇଗଲା !

ମାଗ୍ରେଟ ଦେଶପ୍ରେମୀ । ଦେଶର ଦିନୁଁ ଦିନ ଅଧୋଗତି ଦେଖି ବିଶେଷ ମ୍ରିୟମାଣ । ମୋତେ ଅନୁରୋଧ କଲେ—ଦେଶର ନୈତିକ ବା ଆଧ୍ୟାତ୍ମିକ ମାନ ବୃଦ୍ଧି ଲାଗି କିଛି କରନ୍ତୁ ।

କହିଲି—ସାହିତ୍ୟ ଜରିଆରେ ଆଧ୍ୟାତ୍ମିକ ବା ନୈତିକ ମାନ ବୃଦ୍ଧି ଲାଗି ଚେଷ୍ଟା କରି ଆସିଛି, ସାରା ଜୀବନ । ମହାନ୍ ମଣିଷ, ଦେଶପ୍ରେମୀ, ସ୍ୱାର୍ଥତ୍ୟାଗୀ, ମଣିଷପ୍ରେମୀ ମଣିଷ ଗଢ଼ିବା ମୋର ଲକ୍ଷ୍ୟ । କିନ୍ତୁ ସାହିତ୍ୟ ଲୋକ ସାଧାରଣଙ୍କ ପାଖେ ପହଞ୍ଚି ପାରୁନାହିଁ । ପୁସ୍ତକର ଏପରି ମୂଲ୍ୟ ବୃଦ୍ଧି ଘଟିଛି ଯେ ତାହା ଲୋକଙ୍କ କ୍ରୟଶକ୍ତି ବାହାରକୁ ଚାଲିଯାଉଛି । ଏବେ ସ୍କୁଲ୍‌ଟିଏ କରିଛୁ । ପ୍ରବେଶର ପ୍ରଥମ ସର୍ତ୍ତ-ଶାରୀରିକ ଶ୍ରମ । ଯେ ଉଦ୍ୟାନ କର୍ମ ନ କରିବ, ତାକୁ ସ୍କୁଲରେ ଭର୍ତ୍ତି କରାଯିବ ନାହିଁ । ସେବାଭାବ ବୃଦ୍ଧି ଲାଗି ଦାତବ୍ୟ ଚିକିତ୍ସାଳୟଟିଏ ମଧ୍ୟ କରିଛୁ ।

ଦେଖା ଶିଖା ଓଡ଼ିଶା, ଦେଖି ଯଦି ଲୋକେ କିଛି ଶିଖନ୍ତି ! ଆଉ କଣ କରିବା ? ନିର୍ବେଦ ନୀରବ ରହିଲେ ।

ହର୍ଣ୍ଟିଂଟନ୍ ବିଚ୍‌ରେ ନିର୍ବେଦଙ୍କ ଘର, ଘରଣୀ ଉର୍ମି । ତା ଲାଗି ଆମ ଲସ୍‌ଆଞ୍ଜେଲ୍‌ସ୍ ଦେଖିବା ସମ୍ଭବ ହେଲା । ଅଥଚ ତା ମନର ଆନନ୍ଦ ଖୋଲା-ଖୋଲି ଭାବେ ପ୍ରକାଶ ପାଇଲା ନାହିଁ । ଗମ୍ଭୀର ପ୍ରକୃତିର ଝିଅ, ମନର ଭାବ ପଦାକୁ ଫୁଟି ଦିଶେ ନାହିଁ । ଖୁସି ହେଲେ ଗୁଡ଼ାଏ ହସି ପକାଏ ନାହିଁ, ଦୁଃଖରେ ଅଭିଭୂତ ହେଲେ ସେହିପରି ଗୁଡ଼ାଏ କାନ୍ଦୁ ବି ନ ଥିବ । କଳ ପରି କର୍ତ୍ତବ୍ୟ କର୍ମ କରିଯାଏ । ବକ୍ ବକ୍ କରି କଥା କହେ ନାହିଁ, ଦୁମ୍ ଦୁମ୍ ବା ଟପକ୍ ଟପକ୍ ଚାଲେ ନାହିଁ । ଧୀର ଚାଲି; ଥିର କଥା । ନିର୍ବେଦ ଚାକିରି କରାଇ ଦିଅନ୍ତି ନାହିଁ । ଉର୍ମି ବୋହୂ ପରି ଚଳେ, ଶାଶୂ ଏଠି ନ ଥିଲେ ବି ଅଭିଭାବକ ନିର୍ବେଦଙ୍କ କଡ଼ା ମନୋଭାବ ଚାହିଁର କଠୋର ଶୃଙ୍ଖଳା ରକ୍ଷା କରେ । ତା ମଧ୍ୟରେ ଗୃହ, ଉଦ୍ୟାନ ସବୁଠି ଏକ ପ୍ରଶାନ୍ତି ।

ଓଡ଼ିଆ ଏମ୍. ଏ. ଡିଗ୍ରୀ ଉର୍ମିର କିଛି କାମରେ ଆସୁନାହିଁ । ଓଡ଼ିଆ ବହି ପଢ଼ିବାକୁ ମନ ହାଉଁପାଉଁ ହୁଏ, କିନ୍ତୁ ମିଳିବ କୋଉଠୁ ? କେତେ ଖଣ୍ଡ ବହି ବା ବୋହି ଆଣି ପାରିବ ? ଉର୍ମି ଓଡ଼ିଶାରୁ ଲେଖିକା ହେବାର ପ୍ରେରଣାଟି ମନରେ ଘେନି ଆସିଛି । ସେ ଗଳ୍ପ ଲେଖେ,'ଅମୃତାସ୍ୱନ' ବୋଲି ଖଣ୍ଡିଏ ଗଳ୍ପପୁସ୍ତକ ପ୍ରକାଶ ପାଇଛି, ଝିଅ ଲିସା, ମାଆ ପରି ସ୍ନେହଶୀଳା । ମୋତେ ଗୋଟିଏ ବିରାଟ ଆଲ୍‌ବମ୍ ଓ ଗଣେଣାପନ୍ତ ଉପହାର ଦେଇଛି । ପାଖେ ପାଖେ ରହି ଆମ ସୁବିଧା ଅସୁବିଧା ବୁଝେ ।

## ସ୍ପେନ୍ ରାଣୀଙ୍କର ଗୋଟିଏ ଗ୍ରାମ

ବନ୍ଦର ସହର ଲସ୍‌ଆଞ୍ଜେଲ୍‌ସ୍ ଦିନେ ଅପ୍‌ସରା ରାଣୀ ସ୍ପେନ୍ ରାଣୀଙ୍କର ଗୋଟିଏ ଗ୍ରାମ ଥିଲା; ଗ୍ରାମବାସୀ ମତ୍ସ୍ୟଜୀବୀ କୈବର୍ତ୍ତ ।

ଏବେ ଏହା ଆମେରିକାର ଦ୍ୱିତୀୟ ବୃହତ୍ତମ ସହର, ବନ୍ଦର ଓ ବ୍ୟବସାୟ କେନ୍ଦ୍ର । ବିସ୍ତୃତ ଭୂମି, ବିପୁଳ ଏହାର ଲୋକସଂଖ୍ୟା ।

ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ମେକ୍‌ସିକୋ ସାମ୍ରାଜ୍ୟବାଦୀ ସ୍ପେନ୍ କବଳରୁ ମୁକ୍ତିଲାଭ କଲା, ୧୮୪୭ରେ ମେକ୍‌ସିକୋ ସହିତ ସଂଗ୍ରାମ କରି ଆମେରିକା କାଲିଫର୍ଣ୍ଣିଆ ରାଜ୍ୟ ଦଖଲ କଲା । ଏ ମରୁ ରାଜ୍ୟରେ ବାର୍ଷିକ ବର୍ଷା ପରିମାଣ

ମାତ୍ର ୧୪ ଇଞ୍ଚ୍ । ସ୍ପେନୀୟ ସଂସ୍କୃତିର ପ୍ରଭାବ ଏବେ ସମଗ୍ର ପ୍ରଦେଶରେ, ବିଶେଷତଃ ପଶ୍ଚିମାଞ୍ଚଳରେ ସୁସ୍ପଷ୍ଟ ।

ଲସ୍ ଆଞ୍ଜେଲ୍ସ୍ ମୁଖ୍ୟତଃ ଦୁଇଟି ଜିନିଷ ଲାଗି ପ୍ରସିଦ୍ଧ—ଏହା 'ଡିଶ୍‌ନେ'ର ଜନ୍ମଭୂମି; ଦ୍ୱିତୀୟରେ ଏହାର ପ୍ରତିଷ୍ଠା ହଲିଉଡ୍ ଲାଗି । ଆମେରିକାର ତିନି ଚତୁର୍ଥାଂଶ ଫିଲ୍ମ୍ ଏଠାରେ ପ୍ରସ୍ତୁତ ହୁଏ । ଆମେ କିନ୍ତୁ ପହିଲେ ଗଲୁ ଡଲ୍‌ଫିନ୍ ଓ ସିଲ୍ ଖେଳ ଦେଖି ।

## ଏ ପାଖେ ପାହାଡ଼, ସେ ପାଖେ ସମୁଦ୍ର

ମଝିରେ ଆମେ—ଲିତା, ଲିସା ଆଉ ମୁଁ । ନାଗେନ୍ଦ୍ର ଆମକୁ ଭୂମି ଶେଷ ଅଞ୍ଚଳକୁ ଘେନିଗଲେ । ବାମ ପଟେ ଲମ୍ବିତ ଲମ୍ବା ପାହାଡ଼ ଶ୍ରେଣୀ, ଧାଡ଼ି ଧାଡ଼ି ମୋଟେଲ୍, ପ୍ରତି ମୋଟେଲ୍ ସ୍ତରପଟେ ଉଦ୍ୟାନ ଓ ବନସ୍ପତିର ପରିବେଶ ।

ଆମ ଡାହାଣ ପଟେ ପ୍ରଶାନ୍ତ ମହାସାଗର, ଢେଉର ନୀଳ ନୀଳ ସୋପାନ ଦିଗ୍‌ବଳୟକୁ ଉଠି ଉଠି ଯାଉଛି, କୂଳରେ ଶ୍ୱେତସ୍ୱଚ୍ଛ ଫେନ ସ୍ଫୁଟିତର, ଗାଢ଼ ନୀଳିମ ପରିବେଶ ଯୋଗୁଁ । ପାହାଡ଼ ଓ ସମୁଦ୍ର ମଝିରେ ବଡ଼ ବଡ଼ ପୋଖରୀ; ଏ ପାଖେ, ସେ ପାଖେ ବଡ଼ ବଡ଼ ଖଜୁରୀ ଗଛ, ସୁନେଲୀ ଫଳଭରା, ଗାଢ଼ ଲାଲ୍ ବୋଗେନ୍ ଭେଲିଆ, କଳା କଳା ଫଳଭରା ଓଲିଭ୍ ଗଛ । ଗଛବୃଛର ସବୁଜ ମଞ୍ଚତଳେ ଭିତରେ ବୁଲୁଥାନ୍ତି ବ୍ୟାଘ୍ର, ଭଲ୍ଲୁକାଦିର କୌତୁକ ବେଶଧାରୀ ମନୁଷ୍ୟ; ବଡ଼ ବଡ଼ ରଙ୍ଗୀନ୍ ଛତି ସ୍ଥାନକୁ ଉତ୍ସବର ରଙ୍ଗ ଦେଇଥାଏ । ନାନା ବାଜା ବାଜୁଥାଏ, ଖେଳ ମାଷ୍ଟର ନାନା କୌତୁକ କଥା କହି ହାସ୍ୟର ହିଲ୍ଲୋଳ ଉଠାଉଥାଏ ।

ପ୍ରଚଣ୍ଡ ଖରା; ସମୁଦ୍ର ହାଓ୍ୱା କ୍ଷୀଣ, ଝାଳ ପୋଛିନେବାକୁ ଅକ୍ଷମ । ବାଜା ଜୋର୍‌ରେ ବାଜିଲା, ବାଣ ଫୁଟିଲା, ଖେଳାଳୀ ଜଣେ ଲମ୍ଫ ଦେଲା ୪୯୦ ଫୁଟ୍ ଉଚ୍ଚରୁ ପୋଖରୀ ଭିତରକୁ । ଆଖି ବୁଜି ହୋଇଗଲା ।

## ଡଲ୍‌ଫିନ୍, ସିଲ୍ ଓ ତିମି ମାଛର ଖେଳ

ଦେଖିବି, ଦେଖିବି କେତେ କାଳରୁ ହେଉଥିଲି । ଏଇ ଡଲ୍‌ଫିନ୍ ! ବଡ଼ ବଡ଼ ଆଖି କି ଜଳଙ୍ଗ ମାଛ ପରି ତ । ଏ କୁଆଡ଼େ ମଣିଷର ବଡ଼ ବନ୍ଧୁ । ଅପନ୍ତରା ସମୁଦ୍ରରେ ବାଟବଣା ହେଲେ ଏ କୁଆଡ଼େ ବାଟ କଢ଼ାଇ ନିଏ । ତେଣୁ ଏ

ଉପକାଗ୍ଯ ଜୀବଟି ପ୍ରତି ମଣିଷର ଏତେ ସ୍ନେହ ! ନଇଲେ ମାଛ ମାଧେ ମଣିଷର ଖାଦ୍ୟ, କେବଳ କେତେକ ବିପାକ୍ରଙ୍କୁ ଗ୍ରହିଦେଲେ ।

ଏବେ ଡଲ୍‌ଫିନ୍ ଗୋଟିଏ ସର୍କସ୍‌ର ଜୀବ ହୋଇଛି, ମଣିଷ ତାର ସର୍କସ୍ ମାଷ୍ଟର । ସେ ଡଲ୍‌ଫିନ୍ ଖେଳ ଦେଖାଇ ବହୁ ଅର୍ଥ ଉପାର୍ଜନ କରେ ।

ସେ କ ଇଙ୍ଗିତ ଦେଲା କେଜାଣି, ପାଖ ପୋଖରୀରୁ ଭାସି ଆସିଲେ ବଡ଼ ବଡ଼ ଡଲ୍‌ଫିନ୍ । ସେମାନଙ୍କ ଦଉଡ ଧାପଡ଼, ଡ଼ିଆଁ ଡେଇଁରେ ପୋଖରୀ ପାଣି ପଡ଼ିଲା ଉଠିଲା, ପୋଖରୀକ ପାଣି ଘାଣ୍ଟି ହୋଇଗଲା ପରି ଲଗିଲା ।

ମଣିଷର ଭାଷା ସେ ବୁଝେ, ତା ଆଜ୍ଞା ପାଳେ, ଡ଼ିଏଁ, ନାଚେ ବା ଖେଳେ । କଥା ମାନିଲେ ପୁରସ୍କାର, କାଠିପୋହଲା ମାଛ ପରି ମାଛ, ପକାଇବା ମାଧେ ଉପରକୁ ଉଠି ଟପ୍‌ଟାପ୍ ଗିଳିଦିଏ । କଥା ନ ମାନିଲେ କିଛି ନାହିଁ । ବାଲ୍‌ଟି ବାଲ୍‌ଟି ମାଛ; କଥା ମାନି ପାଣିରୁ ଶୁଖିଲାକୁ ଆସି ଘୁସୁରି ଘୁସୁରି ଚାଲିଲେ ତା ପାଟିକି ଆଁ କରି ମାଷ୍ଟର ଗୋଟାକୁ ଗୋଟା ମାଛ ଗିଳେଇ ଦିଏ, ତାକୁ ବହୁତ ଗେଲ କରେ ।

ସେହିପରି ଅନ୍ୟ ଏକ ଆଦେଶରେ ଦୁଇଟି ଡଲ୍‌ଫିନ୍ ବୋଧହୁଏ ମାଈ, ଅଣ୍ଡିରା, ଚୁମା ଦିଆଦେଇ ହେଲେ । ବହୁତ ଉଚକୁ ଡେଇଁଲେ, ଶୂନ୍ୟରେ ଚକ୍ର ଗଡ଼ା ଦେଇ ତଳକୁ ଖସିଲେ ।

ଯେପରି ସିଂହ, ବାଘ, ଭାଲୁକୁ ଆୟତ୍ତ କରିଥାଏ ସର୍କସ୍ ମାଷ୍ଟର, ମାକଡ଼କୁ ଟ୍ରେନିଂ ଦେଇଥାଏ ଦିଆସୀ, ପାହାର ଉପରେ ପାହାର ବସାଇ ପିଲାଙ୍କୁ ଅଭିନୟ ଶିଖାଏ ଯାଜାଗୁରୁ, ସେହିପରି ଡଲ୍‌ଫିନ୍‌କୁ ଶିକ୍ଷା ଦେଇଛି ସର୍କସ୍ ମାଷ୍ଟର, ପାହାର ଲୁହେ, ଆହାରର ପ୍ରଲୋଭନ ଦେଖାଇ । ଖାଦ୍ୟ ଲୋଭରେ ଡଲ୍‌ଫିନ୍ ଓଲଟା ଶୂନ୍ୟ ମାରି ପାଣିରେ ପଡ଼ିବା ଚନ୍ଦରେ ଚମକ ଆଣିଲା ପରି ଏକ ଦୃଶ୍ୟ ।

ଅନ୍ୟ ଏକ ବଡ଼ ପୋଖରୀ ପାଖକୁ ଗଲୁ । ପାହାଚ ପରେ ପାହାଚ ପରି ଆସନ ପଡ଼ିଛି । ମାରକ ତିମି ବିପଦ୍‌ଜନକ । ଖେଳ ଦେଖାଉଁ ଦେଖାଉଁ ଥରେ ସେ ଗୋଟିଏ ଝିଅକୁ ଦର୍ଶକ ମଞ୍ଚରୁ ଟାଣିନେଲା, ଝିଅର ଚିହ୍ନବର୍ଣ୍ଣ ଆଉ ମିଳିଲା ନାହିଁ । ସେହି କାଳରୁ କେବଳ ନଗ୍ନାହ ଜାତିର ତିମି ଖେଳ ଦେଖାଇବା ଲଗି ଅଣା-ଯାଉଛି । ଏ ପୋଖରୀରେ କଳା କଳା ଦୁଇଟା ତିମି—ଅଣ୍ଡିରା, ମାଈ । ମୁହଁତଳ ଧଳା । ଗୋଟିକ ନାଆଁ ପର୍ଲ, ଆଉ ଗୋଟିକ ନାଆଁ କର୍ଲ । ସର୍କସ ମାଷ୍ଟରଙ୍କ ଆଜ୍ଞାରେ ଦୁଇଟାଯାକ ତିମି ଖୁବ୍ ଜୋର୍‌ରେ ଲଞ୍ଜ ପିଟିଲେ, ଦର୍ଶକ ମଞ୍ଚରେ

ପାଣି ଛୁଟିକି ପଡ଼ିଲା । ଦଶଟାଯାକ ନାକ ବାଟେ ପାଣିର ଫୁଆରା ମାରିଲେ । ତା ଉପରେ ଫଗୁ ପଞ୍ଚ ଇନ୍ଦ୍ରଧନୁ ଫୁଟିଉଠିଲା ।

କଣ ହେଲା ? ମାଷ୍ଟର ଡଲ୍‌ଫିନ୍‌କୁ କଥାକୁହା ଶିଖାଉଛୁ ! ଶୁଆସାରୀ, କାକତୁଆ, ବଣିଙ୍କୁ କଥା କୁହାଇ ବାହାଦୁରି ନେଉଛୁ କଣ ?

ଏଁ କଥାକୁହା କଣ, ତା ଉପରକୁ ଆଉର ପାହ୍ୟାଚେ ଉଠି ଗୀତବୋଲା ଶିଖାଉଛି ! ମାଷ୍ଟର ହସି ହସି କହୁଛନ୍ତି—ଏମାନେ ସଙ୍ଗୀତ, ନୃତ୍ୟ ଶିକ୍ଷାରେ ବହୁତ ଆଗେଇ ଗଲେଣି । ଶୀଘ୍ର ସଙ୍ଗୀତ, ନାଚ ସ୍କୁଲ୍‌ରେ ଆଡ୍‌ମିସନ୍ ନେବେ !

ହେଲା ଶଙ୍ଖଚୂଡ଼, ଅହିରାଜ, ନାଗ, ଡଲ୍‌ଫିନ୍ ଖେଳାଇଲାବେଳେ କହେ— ଦେଖ ଦେଖ, ତୋ ବେଙ୍ଗ ସାପଖିଆ ପାଟିକି ସାଆନ୍ତମାନଙ୍କୁ ଦେଖା ସାପ । ଆଁ କରେ, ସ୍ଵଚ୍ଛନ୍ଦେ ଲମ୍ବର କଳା କଳା ଜିଭ କାଢ଼େ । କାଚ ପରି ଆଖି ଚଗ୍‌ରିଚି ସ୍ପନ୍ଦେ । ସେହିପରି କରେ ଡଲ୍‌ଫିନ୍ ମାଛ । ତାପରେ ରେହୁ ଆକାରର ବଡ଼ ବଡ଼ ମାଛ ତା ପାଟିରେ ଗଳାଇ ଦିଆ ହୁଏ ।

କେଡ଼େ ବଡ଼ ଆଁ, କେଡ଼େ କେଡ଼େ ଦାନ୍ତ ! ଭରତ ସିଂହ ଛୁଆର ଦାନ୍ତ ଗଣିଲା ପରି ପିଲା ଦାନ୍ତରେ ହାତ ମାରୁଛନ୍ତି, ପିଠି ଆଉଁସୁଛନ୍ତି । ପୋଷା ମାଛ, ସେ ପାଟି ଚୁପି ଦେଉନାହିଁ ।

ଓଃ, ଡଲ୍‌ଫିନ୍ ଯେତେବେଳେ ଓଲଟେ, ବହୁତ ଉଚ୍ଚ ଆକାଶକୁ ଉଠି ପାଣିରେ ପଡ଼େ, ସେ ଏକ ଭୟଙ୍କର ଦୃଶ୍ୟ ।

ଏଁ, କଣ ? ମାଷ୍ଟର ଡଲ୍‌ଫିନ୍ ପିଠିରେ ବସି ପୋଖରୀଟାଯାକ ବୁଲୁଛୁ ! ପୃଥିବୀର ବୃହତ୍ତମ ଜନ୍ତୁ ନିଜ ହାତରେ ଚଉଦ ପା ମାନ ଏଇ ଟିକି ମଣିଷର ଏଡ଼େ ବଶ ହୋଇ ପାରିଛୁ ! ସତରେ ବଳ ତ ବଳ ବୁଦ୍ଧି ବଳ ।

କମ୍ପୀର ସାଙ୍ଗ ମାକଡ଼କୁ ପିଠିରେ ବସାଇ ନେଇ ସମୁଦ୍ର ଅଧା ବାଟରେ କେତୁଟା ଶିଙ୍ଗ ବୁଡ଼ା ଦେଇ ଆକେଡା କରିଥିଲା । ବିଶ୍ୱାସରେ ବିଷ ଦେଇଥିଲା । କିନ୍ତୁ ଡଲ୍‌ଫିନ୍ ଅଧିକ ବିଶ୍ୱସ୍ତ । ସେପରି କରୁନାହିଁ । ମାଷ୍ଟର ତା ପାଟିରେ ହାତ ପୂରାଉଛୁ । ମୂଳା ପରି ବଡ଼ ବଡ଼ ଦାନ୍ତମାନ ଟଣୁ ଛୁ । ତା ଦୃଷ୍ଟି ମତ୍ସ୍ୟ ପୁରସ୍କାର ଉପରେ । ପେଟ ଯାତନା ଲାଗି ମଣିଷ ପରି ଡଲ୍‌ଫିନ୍ କଣ ନ କରେ !

ସମୁଦ୍ର ସିଂହ ! ନୁହେଁ ପଶୁ, ନୁହେ ପକ୍ଷୀ, ନୁହେ ମାଛ । ଏ ସିଲ୍‌ଟାକୁ ଲୋକେ କହୁଛନ୍ତି ସମୁଦ୍ର ସିଂହ ! ହଁ ମାନିଲି— ନିଶଟା ସେମିତି ହୋଇଚି, କିଛି

ଅଂଶ ମୁହଁ ଠାଣିଟା ବା ! ହେଲେ ପ୍ରକୃତଟା ? ଶୃଗାଳ ପରି ! ଏ ଭଳି ଏ ପଟେ ସେ ପଟେ ଲୁଙ୍ଗ୍ ପୁଙ୍ଗ୍ ହେଉଛୁ କାହିଁକ ? ସମୁଦ୍ରରେ ଆହାର ଖୋଜା ଯନ୍ତ୍ରଣାରୁ ଅବ୍ୟାହତ ଖୁଜୁଁଚ ! କେଜାଣି ମାଷ୍ଟର ଦୟା ପାଇ ତା ପାଖକୁ ଗୋଟେ ମାଛ ପକାଇଦେବ ! ଯାହା କହ, ଏ ପାଖର ବୃତ୍ତିଟା ମୋତେ ଭଲ ଲାଗେ ନାହିଁ ।

ବରଫରେ ଲୁଚ ରହେ ସେ । କୁମେରୁର ଏକ୍‌ସିମୋ ସିଲ୍ ମାଂସ ଖାନ୍ତ, ସିଲ୍ ଚର୍ବି ଜାଳନ୍ତ; ସିଲ୍‌ଚମର ପୋଷାକ ପିନ୍ଧନ୍ତ । କୁମେରୁର ମାଂସାଶୀ ଶ୍ୱେତ ଭଲ୍ଲୁକ ସିଲ୍ ଶିକାର କରି ଖାଏ । କନ୍ତୁ ଆମେରିକାରେ ଏବେ ସିଲ୍‌ହତ୍ୟା ନିଷେଧ କରାଯାଇଛୁ । କନ୍ତୁ ସିଲ୍‌କୁ ସର୍କସ୍ ପ୍ରାଣୀ ପରି ପୁଲ୍‌ରେ ପୋଷି ଟ୍ରେନିଂ ଦେଇ ମାଷ୍ଟର ଖେଳ ଦେଖାଏ ।

ଭୂମିରେ ଛୁଡ଼ା ହୋଇ ସିଲ୍ ଦୌଡ଼ ପ୍ରତଯୋଗିତା କରୁଛ, ପାଣିରେ ସନ୍ତରଣ ପ୍ରତଯୋଗିତା ଦେଖାଇ ଜୟଯୁକ୍ତ ହେଲେ ପୁରସ୍କାର ଲାଭ କରୁଛୁ— ମତ୍ସ୍ୟ; ଉଦର ଭରି । ପ୍ରେମିକ ପ୍ରେମିକାଙ୍କ ପରି ଛୁଲ ଢଗରେ ହାସ୍ୟକୌତୁକମୟ ପ୍ରେମାଭିନୟ ଦେଖାଉଛନ୍ତ ସେମାନେ ।

ତମି ସିଲ୍ ସଙ୍ଗେ, ଡଲଫିନ୍ ସଙ୍ଗେ ଖେଳୁଛ, ଅଜା ସଙ୍ଗେ ନାତ ଖେଳିଲା ପରି । ଏତେ ବଡ଼ ଜନ୍ତୁ, ହାତୀଟାଏ ଗିଳି ଜୀର୍ଣ୍ଣ କରିବାର ଶକ୍ତ ତାର ଅଛୁ । ସେ ନାଚୁଛୁ, ଗୀତ ଗାଉଛୁ, ସିଟ୍‌କାଶ ମାରୁଛୁ, ହସ ଖୁସିରେ କଣସବୁ କହ ଯାଉଛୁ ! ମାଛର ଭାଷା ବୁଝିବା ଶକ୍ତ ମୋର କାହିଁ ?

ଦନ୍ତା ହାତୀ ପରି ବୁଇଟା ଦାନ୍ତ ପଦାକୁ ବାହାରିଥିବା ଓ୍ୱାଲ୍‌ରସ୍‌ର ଖେଳ ଦେଖିବା ସୌଭାଗ୍ୟ ଆମର ହେଲା ନାହିଁ, ତେବେ ଏ ଅପରିଚତ ପୃଥୁଳ ଜନ୍ତୁଟି ଯେ ଦେଖିପାରିଲୁ, ସେ ଆମର ଭାଗ୍ୟ ।

## ଚଉଦ

### ୱିଶ୍‌ନେ ଲଣ୍ଡ୍

ଓ୍ୱାଲ୍ଟ୍ ଡିଶ୍‌ନେ କଳାକାର; କାର୍ଟୁନ୍ ଛବି ଆଙ୍କନ୍ତି । କାର୍ଟୁନ୍ କଳାକାରର ସ୍ଥାନ ସେତେବେଳେ ସମାଜରେ ନଗଣ୍ୟ । ଗରିବ ଅବସ୍ଥା; ବଡ଼ ଦୁଃଖରେ ଡିଶ୍‌ନେ ଜୀବନ ବିତାଉଥାନ୍ତି ।

ତାଙ୍କର ଦୁଇଟି ଝିଅ । ସେମାନଙ୍କ ଚିତ୍ତ ବିନୋଦନ ଲାଗି ସମାଜ ବା ସରକାର କି ବ୍ୟବସ୍ଥା କରିଛି ? ପାର୍କ—ପାର୍କ; କେତେ ଥର ସେଇ ପାର୍କକୁ ଯିବ ? କେତେ ଥର ନାଗରଦୋଳାରେ ବୁଲିବ ? ୩୯ ଥର ନାଗରଦୋଳାରେ ବସିବା ପରେ ଝିଅ ଦୁହେଁ ବିରକ୍ତ; ପାର୍କ ବା ନାଗରଦୋଳା ନାଆଁ ଶୁଣିଲେ ଚିଡ଼ି ଉଠନ୍ତି । ଆଉ କି ଉପାୟରେ ସେମାନଙ୍କ ଚିତ୍ତ ବିନୋଦନ କରାଯାଇ ପାରିବ ? ଡିଶ୍‌ନେ ଭାବିବାକୁ ଲାଗିଲେ । ସହଜ ମଉଜମଜଲିସ୍ ଲାଗି କିଛି ଗୋଟିଏ ଉପାୟ ବାହାର କରିବାକୁ ହେବ—ପିଲା, ଜୁଆନ, ବୁଢ଼ା ସମସ୍ତେ ଯେପରି ତାହା ଉପଭୋଗ କରିପାରିବେ ।

ଡିଶ୍‌ନେ ଲଣ୍ଡ୍ ଡିଶ୍‌ନେଙ୍କ ଜୀବନବ୍ୟାପୀ ସାଧନାର ଫଳ । ଏହା ଜୀବନର ସବୁ ସ୍ତରର ଲୋକଙ୍କ ଉପଭୋଗ୍ୟ । ସୃଷ୍ଟି ମଧ୍ୟରେ ଏ ଏକ ନବୀନ ସୃଷ୍ଟି, ବାସ୍ତବ ମଧ୍ୟରେ ଏ ଏକ ସ୍ୱପ୍ନର ଜଗତ୍, କଳାକାର, କବି, ସ୍ୱପ୍ନଜୀବୀଙ୍କୁ ସମାଜ ଦୂରେଇ ରଖେ । କିନ୍ତୁ ଡିଶ୍‌ନେ କଳା ସାହାଯ୍ୟରେ ଜୀବନର ଏକ ଜୀବନ୍ତ ଭୂମିକା ରଚନା କରିଛନ୍ତି । ସେ ଜୀବନର ଅଭ୍ୟନ୍ତରତମ କୋଠରୀରେ ପ୍ରବେଶ କରିଛନ୍ତି । କଳା ଓ ଜୀବନକୁ ଏକ ପର୍ଯ୍ୟାୟବାଚୀ କରିଛନ୍ତି ।

ବିଧାତା ସୃଷ୍ଟିକର୍ତ୍ତା । କିନ୍ତୁ ଡିଶ୍‌ନେ ଦ୍ୱିତୀୟ ବିଧାତା, ଠିକ୍ ବିଶ୍ୱାମିତ୍ରଙ୍କ ପରି । ୧୯୫୫ ଖ୍ରୀଷ୍ଟାବ୍ଦରେ ଏହି ଦରିଦ୍ର ଶିଳ୍ପୀଙ୍କର ଜୀବନବ୍ୟାପୀ ସ୍ୱପ୍ନ ସଫଳ ରୂପ ନେଲା । ଦରିଦ୍ରର ମନୋରଥ ଉଦିତ ହେବା ମାତ୍ରେ ବିଲୀନ ହୁଏ, ଓ୍ୱାଲ୍ଟ୍ ଡିଶ୍‌ନେ ତାହା ମିଥ୍ୟା ବୋଲି ପ୍ରମାଣିତ କଲେ ।

ଲସ୍ ଆଞ୍ଜେଲସ୍‌ର ଡିଜ୍‌ନେ ଲ୍ୟାଣ୍ଡ୍‌ର କଥା କହୁଛି । ଏବେ ଫ୍ଲୋରିଡ଼ାରେ, ଯାପାନରେ ଡିଜ୍‌ନେ ଲ୍ୟାଣ୍ଡ୍‌ର ଅନୁକରଣରେ ସୌନ୍ଦର୍ଯ୍ୟ ରାଜ୍ୟ ସୃଷ୍ଟି କରାଯାଇଛି ଓ ତାର ଯୁଗୋପଯୋଗୀ ବିକାଶ ଘଟା ଯାଇଛି । ନୂଆ ଦିଲ୍ଲୀରେ 'ଅପ୍‌ପୁର ଘର'ରେ କିଶୋରକିଶୋରୀଙ୍କ ଲୀଳାରାଜ୍ୟ ଓ କଳ୍ପନା ମୂଳକ ସୃଷ୍ଟି କରା-ଯାଇଛି ।

ମିରେଜ ଘରଠାରୁ ପ୍ରାୟ ୨୫ ମାଇଲ୍ ଦୂରରେ ଆମକୁ ଛାଡ଼ି ଦେଇଗଲେ । ଜଣ ପିଛା ୨୫ ଡଲାର୍ ଟିକେଟ୍ । ଲିସା ଦେଖାଇବା ଦାୟିତ୍ୱ ନେଇଥିଲା । କିନ୍ତୁ ଜବରଦସ୍ତ ତାହା ଆଦୋର ନେଲେ ଜଣେ ଆଲିଆ ଲେଖାରେ ବାଲିଆ ବନ୍ଧୁ । ମୋହ ମୁଲାକାରେ କିଛି କୁହା ଯାଇପାରିଲା ନାହିଁ । କିନ୍ତୁ ଦୁଃଖିତ ହେବାର କାରଣ ଥିଲା । ଯେହେତୁ ଏହା ତାଙ୍କର କୃତାସ୍ଥ ଦେଖା, ମିରେଜଙ୍କ ବ୍ୟୟରେ ।

ଉଭୟ ଜଳ ଓ ସ୍ଥଳ ଭାଗରେ ବିବିଧ ଦୃଶ୍ୟ ଦେଖାଇ ଦିଆହୁଏ । ଆମେ ପହଞ୍ଚିଲେ ନୌକାରେ ବସିଲୁ । କିଛି ଦୂର ଗଲା ପରେ ଟ୍ରପିକାଲ୍ ଜଙ୍ଗଲ ପଡ଼ିଲା, ଟ୍ରପିକାଲ୍ ଅଞ୍ଚଳର ବୃକ୍ଷଲତା, ଜୀବଜନ୍ତୁ ଦେଖିବାକୁ ମିଳିଲା—ସିଂହ, ବ୍ୟାଘ୍ର, ହାତୀ, କୁମ୍ଭୀର, ହିପୋପୋଟାମସ୍, ଜେବ୍ରା, ଜିରାଫ୍, ଇଗଲ୍, ଓଟପକ୍ଷୀ । ହିପୋ ଦାନ୍ତ ଦେଖାଉଛି, ହାତୀ ପାଣି ପିଉଛି, ସିଂହ ଗର୍ଜୁଛି, ଦନ୍ତା ଦନ୍ତା ମଧ୍ୟରେ ଲଢ଼େଇ ଚାଲିଛି । ମାକଡ଼ ଗଛର ଡାଳେ ଡାଳେ । ଗୋଟେ ବିରାଟ ସାପ ଗଛ ଡାଳରେ ଲାଙ୍ଗୁଡ଼ ବାନ୍ଧି ବୃକ୍ଷମୂଳର ଏକ ମୃଗ ଶିଶୁକୁ ଗିଳିବା ଚେଷ୍ଟା କରୁଛି । କଂକ୍ରିଟ୍ ମୂର୍ତ୍ତିଗୁଡ଼ିକୁ ଯନ୍ତ୍ର ସାହାଯ୍ୟରେ ଜୀବନ୍ତ ଓ କ୍ରିୟାଶୀଳ ରୂପ ଦିଆଯାଇଛି ।

## ମୋର ବୁଡ଼ା ଜାହାଜ ଯାତ୍ରା

ଯୁଦ୍ଧ ବିଭାଗର ନୌସୈନ୍ୟଙ୍କ ବ୍ୟତୀତ ବୁଡ଼ାଜାହାଜଯାତ୍ରାର ସୁଯୋଗ ମିଳେ କାହାକୁ ? ଡିଜ୍‌ନେ ସେ ସୁଯୋଗ ସୃଷ୍ଟି କରିଚି । ମନରେ କିଶୋର କୌତୂହଳ—ପାଣି ଭିତରେ କିଛି ଦେଖି ହୁଏ ନା ନାହିଁ ? ସମୁଦ୍ର ତଳଟା ଦିଶେ କିପରି ? ବୁଡ଼ାଳୀ ଦେଖନ୍ତି, ସମୁଦ୍ର ତଳ ଉଦ୍‌ଭିଦର ଅପୂର୍ବ ବର୍ଣ୍ଣନା ଦିଅନ୍ତି, ରଙ୍ଗୀନ୍ ମାଛ ଓ ଗଛବୃଛର ଫଟୋ ବି ବାହାରେ, ଯାହା ସ୍ୱପ୍ନରେ ଦେଖାଯାଏ ବା ଯେପରି ଐନ୍ଦ୍ରଜାଲିକ କଳ୍ପନାରେ ପରୀରାଜ୍ୟ ବା ସ୍ୱର୍ଗ ମୂଳକର ଧାରଣା କରାଯାଏ, ସେହିପରି । ନବୁଜ ଡଙ୍ଗାଟି ଏକ ପ୍ରସାରିତ କେନାଲରେ ବୁଡ଼ିଲା । ଝରକା ବାଟେ ଚାହିଁ ଦେଖିଲି—ମଗର, ସାର୍କ୍ଫିସ, କଚ୍ଛପ, ତିମି, ସିଲ୍, ଡଲ୍‌ଫିନ୍, ସମୁଦ୍ର ଅଶ୍ୱ, ଅକ୍ଟୋପାସ୍, ବିଭିନ୍ନ ରଙ୍ଗୀନ୍ ଶଙ୍ଖ, ଶାମୁକା, ଗେଣ୍ଡା, ସାପ

ନର୍ତ୍ତକ ଭାବେ ବିଚରଣ କରୁଛନ୍ତି, ଲାଲ୍, ସବୁଜ, ହଳଦିଆ ଗଛବୃଛ, କେତେ ପ୍ରକାର ରଙ୍ଗୀନ୍ ବାଲିଗିରଡ଼ା, ଅସମ୍ଭବ ଧାତୁ ଓ ଅଗଣିତ ରତ୍ନର ଭଣ୍ଡାର । ଏଥିଲାଗି ସମୁଦ୍ରକୁ ରତ୍ନାକର କହନ୍ତି । ଏସବୁ ଜୀବନ୍ତ ବୃକ୍ଷ ବା ପ୍ରାଣୀ ନୁହନ୍ତି, ବିଦ୍ୟୁତ୍ ଯୋଗେ ଗଠିତ ବିଭିନ୍ନ ରୂପକୁ ସଞ୍ଜୀବିତ କରାଯାଇଛି । ସମୁଦ୍ର ଭିତରେ ଯାହା ଦେଖାଯାନ୍ତା, ଆମକୁ ଆଖି ପଲକରେ ତାହା ସବୁ ଦେଖାଇଲେ—ଜୀବଜନ୍ତୁଙ୍କ ମୁକ୍ତ ବିଚରଣ, ଶିକାର ଓ ଆନନ୍ଦ ଲୀଳା, ଏକ ସୀମାବଦ୍ଧ କ୍ଷେତ୍ରରେ, ଗୋଟେ କେନାଲ୍ ଭିତରେ; ଦର୍ଶକଙ୍କ ସାଧୁବାଦ ।

## ଯୋଉସବୁ ସ୍ୱପ୍ନ ଦେଖନ୍ତି

କିଶୋର କିଶୋରୀ ଯୋଉସବୁ ସ୍ୱପ୍ନ ଦେଖନ୍ତି, ଲୋକଗଳ୍ପ ପଢ଼ିଲା ପରେ ରାତିରେ, ତାକୁ ରୂପାୟିତ କରାଯାଇଛି ଅବିକଳ । ପ୍ଲାଷ୍ଟିକ୍ କଣ୍ଢେଇସବୁ ଜୀବନ୍ତ, କ୍ରିୟାଶୀଳ । ସୁନା ଗଛରେ ହୀରାଫୁଲ ଧରିଚି, ପକ୍ଷୀ ତୋଳୁଚି । କେଡ଼େ ଲଘୁ ତାର ଗତି, କେଡ଼େ ସୁନ୍ଦର ତାର ଦେହ, କଞ୍ଚନ ଫୁଲ ପରି ମୁହଁ, ଚମ୍ପାକଢ଼ି ଆଙ୍ଗୁଠି । ରଙ୍ଗୀନ୍ ପ୍ରଜାପତି ଡ଼େଣା ପରି ଡେଣା । କେଡ଼େ ମଜାରେ ଉଡ଼ିଯାଉଚି ଚନ୍ଦ୍ରଲୋକକୁ, କେମିତି କଷ୍ଟରେ ଖସି ଆସୁଚି ମନ୍ଥର ବଗିଚାମାନଙ୍କୁ, ଫୁଲଙ୍କୁ ଗେଲ କରିବା ଲାଗି, କଢ଼ୁଆ କଢ଼ିକି ଉଠେଇବା ଲାଗି ।

କିଶୋର କିଶୋରୀଙ୍କ ଭିତରୁ କିଏ ନାଚୁଚି, କିଏ ଗୀତ ଗାଉଚି, କିଏ ପେଙ୍ଗାଳି ବଜାଉଚି, କିଏ ମାଦଳ । କିଏ ବା କବିତା ଆବୃତ୍ତି କରୁଚି ମଧୁର କଣ୍ଠରେ, ଗୋଟିକି ଗୋଟି ଶବ୍ଦ ମନରେ ସ୍ୱପ୍ନ ଭରି ଦେଉଚି, ଗୋଟାଏ ଯୁଗର, ଯାହା ମୋ କତିରୁ ଦୂରେଇ ଯାଇଚି ।

କିଏ ବଗିଚାରେ ଦୌଡ଼ି ଦୌଡ଼ି ଧରୁଚି ପ୍ରଜାପତି, କିଏ ମେଳାପୀ ପକ୍ଷୀ ସହିତ ଆଳାପ ଜମେଇଚି । କିଏ ଅନ୍ଧାରି ଆକାଶର ତାରା ପରି ଫୁଟନ୍ତ ବଗିଚାର ଫୁଲମାନଙ୍କୁ ମୁଗ୍ଧଭାବେ ଚାହିଁ ରହିଚି । ଲାଲ୍, ହଳଦିଆ, ବାଇଗଣୀ, ଗୋଲାପୀ ଆଉ ସବୁଜ ରଙ୍ଗର ଆଲୁଅ ସେମାନଙ୍କୁ ସ୍ୱପ୍ନସୁନ୍ଦର କରିଚି ।

କିଏ ପକ୍ଷିରାଜ ଘୋଡ଼ା ବା ମନପବନ ଡଙ୍ଗାରେ ଆକାଶରେ ଉଡ଼ିଯାଉଚି, ଅସୁର ରାଜ୍ୟରେ ପ୍ରବେଶ କରି ଜୀବନନାଟିକ ଚପିଦେଉଚି, ଅସୁର ଏଡ଼େ ବଡ଼ ଜିଭ କାଢ଼ି ପଡ଼ି ମରିଚି । ସେ ରାଜପୁତ୍ର ରାଜକନ୍ୟାକୁ ଘେନି ସ୍ୱରାଜ୍ୟକୁ ଫେରିଚି ।

ସାହସୀ କିଶୋର କିପରି ବନ୍ଧୁ ଅସାଧ୍ୟ ସାଧନ କରିଚି, ଡ୍ରାଗନ୍‌କୁ ହତ୍ୟା କରିଚି, ହିର୍‌କୁଲିସ୍, ଖିମ ପରି ଅଜେୟ ହୋଇଚି, ତାହା ଆଖି ପଲକରେ ଦେଖାଇ ଦିଆ ହୋଇଚି ।

**ଭାଲୁଙ୍କ ସଙ୍ଗୀତ ଚର୍ଚ୍ଚା**

ଭାଲୁ ତୁଣ୍ଡରେ ଗୀତ ପଶେ ନାହିଁ, ଗାଆନ୍ତି ମଣିଷ, ପକ୍ଷୀ, ପୋକ ବା ବେଙ୍ଗ । ଭାଲୁ ଧୁସରଧୂମା ଚେହେରାରେ ଖଣ୍ଡିଆ ଭୂତ ଦୌଡ଼ୁଥିଲା ପରି ଦିଶେ । ସେ ଗୀତ ଗାଇବା କଥା ଶୁଣିଲେ ଲୋକେ ହାସ୍ୟରେ ଉଡ଼ାଇ ଦିଅନ୍ତି । ତଥାପି ନିର୍ଜନରେ ସେ ଗାନ୍ଧର୍ବ ବିଦ୍ୟା ଚର୍ଚ୍ଚା କରିଚି ଓ ତାହା ପ୍ରଘଟ କରି ଗୋବାଲିକ ହାନସ୍ତା ହୋଇଚି, ଓଡ଼ିଆ ଲୋକଗଳ୍ପରେ ପଢ଼େ । କିନ୍ତୁ ଅସମ୍ଭବକୁ ସମ୍ଭବ କରେ ଡିଶ୍‌ନେଙ୍କ ଇନ୍ଦ୍ରଜାଲ ।

ଭାଲୁଙ୍କ ଦେହ ନୃତ୍ୟବିଦ୍ୟା ହୁଏ, ଓଡ଼ିଶୀ ବା ମଣିପୁରୀ ନାଚ ନ ପାରିଲେ ବି ପାଦ ପକାଇ ସେମାନେ ନାଚନ୍ତି, ବା ନାଚିଲା ପରି ଦିଶନ୍ତି, ମୁଖରେ ବା ଆଖିରେ କିଛି ଭାବଭଙ୍ଗୀ ନ ଥିଲେ ବି । ଡିଶ୍‌ନେଙ୍କ ଭାଲୁ ନାଚିଛନ୍ତି, ଗୀତ ଗାଇଛନ୍ତି । ବେହେଲା ବା ସେତାର ବଜାଇଛନ୍ତି । ଡିଶ୍‌ନେ ଦୈବଠାରୁ ପାହାଚେ ଉପରେ । ଦୈବ ଯେଉଁ ଗୁଣରୁ ଭାଲୁଙ୍କୁ ବଞ୍ଚିତ କରିଚି, କଳାକାର ଡିଶ୍‌ନେ ମହାନନ୍ଦରେ ତାଙ୍କୁ ଅର୍ପଣ କରିଛନ୍ତି । ଡିଶ୍‌ନେ ରାଜ୍ୟରେ ସବୁ କିଛି ଅଜବ, ଅସମ୍ଭବ । ଆମେରିକା ପରି ଅତ୍ୟାଧୁନିକ ଦେଶ, ପୁରାପୁରି ବାସ୍ତବ ଢଗରେ ତାର ଗଢ଼ । ତା ଭିତରେ ଆଶ୍ଚର୍ଯ୍ୟ ଏ କଳ୍ପନାର ମାୟାପୁରୀ । ବେଳେ ବେଳେ ଏପରି ସ୍ୱପ୍ନ ଦେଖାଯାଏ—ସାପ ଝୋଟ ମାରିବାକୁ ଫଣା ଟେକିଚି, କିନ୍ତୁ ଦୌଡ଼ିଲାବେଳକୁ ଗୋଡ଼ ଚଳୁନାହିଁ ! ବାଘ ଝାମ୍ପି ନେବାକୁ ଲମ୍ଫ ଦେଉଛି । ଶିକାରି ଗାଡ଼ ବା ଗହଳ ଲଟାରେ ପଶି ବା ଗଛରେ ଚଢ଼ି ଆତ୍ମରକ୍ଷା କରୁଚି । କିନ୍ତୁ ଡିଶ୍‌ନେ-ପୁରୀରେ କିଛି ଅଲଗା; ଋଷି ଆଶ୍ରମରେ ଯାହା ହୁଏ, ସେଇଆ । ଭାଲୁ ନାଚ ସଙ୍ଗୀତରେ ବୁଡ଼ି ରହି ହିଂସାଭାବ ଭୁଲି ଯାଇଚି । ସତେ ଯେପରି ସେ ଆମର ପରମ ବନ୍ଧୁ ।

ଏ ସଙ୍ଗୀତ ଆସର ଆପଣଙ୍କୁ କେମିତି ଲାଗିଲା ? ମତ ପଚାରି ଦିବାରୁ କାନ୍ଥରେ ଥିବା ବାଇସନ୍ ମୁଣ୍ଡର ପାଟି କୁଦୁକ ଭାବେ ଖୋଲିଗଲା, ସେ କହିଲା— ହଁ ହେଲା ଯେ କୋଉଠି କିଛି ବେତାଳିଆ, ବେସୁରା ରହିଗଲା ପରି ଲାଗିଲା ।

ଅନ୍ୟ ଏକ କାନ୍ଥରୁ ହ୍ରିଣର ମୁଣ୍ଡ କହିଲା—ମୋ ବିଚାରରେ ଏମାନେ ଖୁବ୍ ସ୍ୱରସାଧନା କରିଛନ୍ତି; ଦୈବ ଦିଆ ଅବାଗିଆ କଣ୍ଠକୁ ଏମାନେ ଖୁବ୍ ବାଗେଇ

ସବାକ, ସୁନ୍ଦର କଣ୍ଠରେ । ସ୍ୱର ମଧୁର, ତାଳ ଲୟ ଠିକ୍ ଅଛି । ଜାଗାରୁ ଶିଙ୍ଘ କାଢ଼ିବା ଠିକ୍ ହେବ ନାହିଁ ।

## ସମୁଦ୍ର ଡାକୁ

ଡାକୁ ଆମେରିକାର ଯାତ୍ରାଘରେ, ସମ୍ବାଦପତ୍ରରେ, ଚଳଚ୍ଚିତ୍ରରେ, ଏପରି କି ଲଣ୍ଡନ ଲଣ୍ଡରେ ଏକ ମୁଖ୍ୟ ସ୍ଥାନ ଅଧିକାର କରିଛି । ଡାକୁଠାରୁ ଶିକ୍ଷଣୀୟ ତାର ସାହସିକତା । ଦେଶ୍ନର ବୈଶିଷ୍ଟ୍ୟ—ତାର ଡାକୁ, ସମୁଦ୍ର ଡାକୁ । ଘର ନୁହେଁ ସମୁଦ୍ରଗାମୀ ଜାହାଜ ଉପରେ ସେ ଅତର୍କିତ ଆକ୍ରମଣ କରେ, ଧନ, ଦ୍ରବ୍ୟ ଲୁଣ୍ଠନ କରେ, ଜାହାଜକୁ ବନ୍ଦୀ କରି ରଖେ, ଯାତ୍ରୀଙ୍କୁ ଦାସଦାସୀ କରି ଖଟାଏ ।

ପଥହରା ଯାତ୍ରୀବାହୀ ପୋତକୁ ସେ ପଥ ଦେଖାଇବା ବାହାନାରେ ବିପନ୍ନ କରେ । ପୁରୁଷମାନଙ୍କୁ ହତ୍ୟା କରେ, ଅବଳାମାନଙ୍କ ଉପରେ ଅତ୍ୟାଚାର କରେ, ସମୁଦ୍ର ପାହାଡ଼ ଗୁମ୍ଫରେ କମ୍ବା ଲୁଣ୍ଠିତ ଜାହାଜରେ ସେ ରହେ । ତା ହାତରେ ପ୍ରଚଣ୍ଡ ଅସ୍ତ୍ର, ରଣକୌଶଳରେ ସେ ନିପୁଣ, ପୋତକୁ ଗୋଡ଼ାଇ ଧରିବା ଲାଗି ତାର ଦ୍ରୁତଗାମୀ ନୌକା ଅଛି । ପର ଉପରେ ଖାଇପିଇ ଜୀବନ ବିତାଇବା ତାର ଅଭ୍ୟାସ । ସେ ଗୃହ ବା ବଣିଜ ବେପାର କରିବ କାହିଁକି ?

ବିନା ଯୁଦ୍ଧରେ କେଉଁ ଯାତ୍ରୀଜାହାଜ ଆତ୍ମସମର୍ପଣ କରେ ? ସେହି ବାଧ୍ୟତିକାମୟ ଜଳଯୁଦ୍ଧ ଏଠାରେ ଦେଖାଇ ଦିଆ ହୋଇଛି । ଖୁବ୍ ବନ୍ଧୁକ ଫୁଟାଫୁଟି; ଧୂଆଁରେ ଚାରିଆଡ଼ ଅନ୍ଧାର ହୋଇଉଠେ; ବହୁ ସଂଖ୍ୟାରେ ଯାତ୍ରୀ ଆହତ, ମୃତ ହୁଅନ୍ତି । ସମସ୍ତଙ୍କୁ ନିର୍ବିଚାରରେ ସମୁଦ୍ର ଭିତରକୁ ଫିଙ୍ଗି ଦିଆହୁଏ । ଅବଳାମାନଙ୍କ ବିକଳ କ୍ରନ୍ଦନ ଧ୍ୱନିରେ ଚତୁର୍ଦ୍ଦିଗ କରୁଣ ହୋଇ ଉଠେ ।

## ଗୋରା ଭୂତ, ଗୋରୀ ଚିରୁଗୁଣୀ

ଆମ ଭୂତ କଳା, ଆମ ଚିରୁଗୁଣୀ କାଳୀ । ଗୋରା ଭୂତ କେମିତି ? ଆମ ଦେଶରେ ଗୋରାଙ୍କ ପ୍ରଚଣ୍ଡ ଉପଦ୍ରବ ଦେଖିଥିଲି, ଆଜି ତାଙ୍କ ଭୂତ, ଚିରୁଗୁଣୀଙ୍କ ଉତ୍ପାତ ଦେଖିଲି । ଗୁଣ୍ଡା ଧରି ନାଚୁଛନ୍ତି, ହି—ହି—ହୋ—ହୋ ହଉଛନ୍ତି, ଗୋଟା ଗଛକୁ ନଗାଇ ଦେଉଛନ୍ତି । ମୋତେ ଡର ମାଡ଼ିଲା ନାହିଁ । ଆମ ଦେଶରେ ଗୋରା ଶାସକ ଯେତେ ଭୟଙ୍କର, ଉପଦ୍ରବସଙ୍କୁଳ ଥିଲେ, ଭୂତମାନେ ସେପରି ନୁହନ୍ତି । ଅତ୍ୟନ୍ତ ନିରୀହ, ଜୀବନର କ୍ଷତି ଘଟାଇବା ଶକ୍ତି ମୃତ୍ୟୁ ସଙ୍ଗେ ସଙ୍ଗେ ଲୋପ ପାଇ ଯାଇଅଛି ।

## ଆମେରିକା ଆବିଷ୍କାର

ଫିଲ୍‌ମ୍ ପରଦାରେ ପ୍ରଥମେ ଦର୍ଶିଲ ଅଜ୍ଞାତ ଆମେରିକା ଦେଶ—ତୁଷାର-ଧବଳ ପର୍ବତ, କୁହୁଡ଼ିଧୂସର ଅରଣ୍ୟ, ଗ୍ରିଜ୍‌ଲି ଭାଲୁକ, ବାଇସନ୍, ରାଟଲ୍‌ସ୍ନେକ୍ ଓ ରେଡ଼ଇଣ୍ଡିଆନ୍‌ମାନଙ୍କ ବାସସ୍ଥଳ, ଅବାରିତ ବନ୍ୟ ଝରଣା, ପ୍ରଚଣ୍ଡ ବନ୍ୟା, ଅକର୍ଷିତ ଭୂମି, ଦିଗନ୍ତବିସ୍ତାରୀ ଗୁଳ୍ମଭରା କ୍ଷେତ୍ର ।

ହଠାତ୍ ଶୂନ୍ୟବାଣୀ ହେଲା, ଆଲୋକ ଝଟକିଲା । ସେ ବାଣୀ ଓ ଆଲୋକ କଲମ୍ବସ୍‌ଙ୍କର; ଆମେରିକା ଆବିଷ୍କାର ପୃଥିବୀ ଇତିହାସର ଏକ ଯୁଗାନ୍ତକାରୀ ଘଟଣା ।

ଇତିହାସର ମୋଡ଼ ବଦଳିଲା, ବଦଳିଲା ରାଜନୀତି, ଅର୍ଥନୀତି, କୃଷ୍ଟିନୀତିର ଗତିରୀତି, ସଂସ୍କୃତିର ବି । ବିଶ୍ୱର ଆସନରେ ବସି ସେ ଯାହା କହିଲା, ସେ ହେଲା ରାୟ ।

ଧର୍ମଦ୍ୱନ୍ଦ୍ୱରେ, ରାଜନୀତିକ ନିପୀଡ଼ନରେ ବିତାଡ଼ିତ ଇଂରେଜ, ଜର୍ମାନ୍ ଓ ଅନ୍ୟାନ୍ୟ ଇଉରୋପୀୟମାନେ ଦଳଦଳ ହୋଇ ଆସି ଉପନିବେଶ ସ୍ଥାପନ କଲେ ।

ଏଇ କୁମାରୀ ଭୂମିର ପାଣିଗ୍ରହଣ ଲାଗି ସାମ୍ରାଜ୍ୟର ନାୟକଙ୍କ ଭିତରେ ଲାଗିଗଲା କନ୍ଦଳ—ଫ୍ରାନ୍‌ସ, ସ୍ପେନ୍, ଗ୍ରେଟବ୍ରିଟେନ୍ । ଶେଷରେ ବ୍ରିଟେନ୍‌ର ବିଜୟତିଳକ ବାଜିଲା । କିନ୍ତୁ ବ୍ରିଟେନ୍ ଦୀର୍ଘକାଳ କବଳିତ କରି ରଖିପାରିଲା ନାହିଁ, ବିପ୍ଳବୀଙ୍କ ସହିତ ସଂଗ୍ରାମରେ ହାରି ପେଡ଼ି ପୋଟଳା ବାନ୍ଧି ପଳାଇଲା । ସ୍ୱାଧୀନ ଆମେରିକା ଦେଶ ହେଲା ଅତ୍ୟନ୍ତ ଶକ୍ତିଶାଳୀ । ବନ୍ୟ ଝରଣାମାନଙ୍କୁ ଶୃଙ୍ଖଳିତ କଲା, ଅମଣିଆଁ ପ୍ରପାତମାନଙ୍କୁ ମଣ କରି ଦେଶସେବାରେ ଲଗାଇଲା । କୃଷି ଓ ଶିଳ୍ପର ପ୍ରଭୂତ ଉନ୍ନତି କରାଇଲା, ଅକ୍ଷୟ ସମ୍ପଦଭରା ଖଣିମାନଙ୍କର ବିକାଶ ଘଟାଇଲା; ଧନସମ୍ପଦ, ଅସ୍ତ୍ରଶସ୍ତ୍ର, ନୌବାହିନୀ, ବ୍ୟୋମବାହିନୀ ଆଦି ଯୋଉ ଦୃଷ୍ଟିରୁ ବିଚାର କଲେ ବି ଆମେରିକା ହେଲା ପ୍ରଥମ ଶ୍ରେଣୀର ଶକ୍ତିଶାଳୀ ଦେଶ । ସେ ଯେଉଁ ପକ୍ଷକୁ ସମର୍ଥନ କଲା, ବିଜୟଲକ୍ଷ୍ମୀ ତାକୁ ହିଁ ଆଲିଙ୍ଗନ କଲେ । ପ୍ରଥମ ମହାଯୁଦ୍ଧରେ ଏହା ପ୍ରମାଣିତ ହେଲା, ଦ୍ୱିତୀୟ ମହାଯୁଦ୍ଧରେ ବି ।

ପ୍ରଚଣ୍ଡ ପ୍ରତିଭାଧର, ସାଧକ ଓ ପ୍ରଭାବଶାଳୀ ଦେଶ ଭାବରେ ପୃଥିବୀରେ ତାର ନାମ ପ୍ରଥମେ ଆସେ । ଚନ୍ଦ୍ରଲୋକରେ ପହିଲେ ପାଦ ଦେଲା ସେ, ଗ୍ରହ ଉପଗ୍ରହ ବିଜୟରେ ତାର ଭୂମିକା ଅପୂର୍ବ ।

ଦାସତ୍ୱ ପ୍ରଥା ଅବଲୁପ୍ତ କଲା ସିଏ, ଦୁଃଖ ଦୁର୍ବିପାକର ପରମ ବନ୍ଧୁ, ସାମ୍ରାଜ୍ୟ ବିଲୋପର ପ୍ରଧାନ ହେତୁ, ସ୍ୱାଧୀନତାର ମୂର୍ତ୍ତି ପ୍ରଶ୍ରୟରେ ଅଭୟ ହସ୍ତ ଉତ୍ତୋଳନ କରିଛି ସିଏ । ସବୁଠାରୁ ଅଧିକ ନୋବେଲ୍ ପୁରସ୍କାର ପାଇଛନ୍ତି ଏହି ଦେଶର ଉଦ୍ଭାବକମାନେ, ଯେପରି ସ୍ଥାପତ୍ୟବିଦ୍ୟା, ଭାସ୍କର୍ଯ୍ୟ, ସେହିପରି ସାହିତ୍ୟରେ ତାର ଭୂମିକା ଅତି ଉଜ୍ଜ୍ୱଳ । ତାର ଏକ ଆବିଷ୍କାର, ଆମ୍ବ ଆବିଷ୍କାର, ମାନବିକ ଶକ୍ତି ଉତ୍ସ ଆବିଷ୍କାର ।

## ଅସଙ୍ଗରେ ସଙ୍ଗିତା

କଥା ଅଛି—

ଅସଙ୍ଗରେ ସଙ୍ଗିତା<br>
ଅସଙ୍ଗରେ ସଙ୍ଗୀ ହେଲେ<br>
କାଠଘଣ୍ଟି ଲମ୍ବିତା ।

ଓଲେଇ ଗାଈ ସଙ୍ଗେ ବାଇ ହେଲେ ବେକରେ କାଠଘଣ୍ଟି ପଡ଼େ, ଗୋଡ଼ ଛନ୍ଦେ, ଚରିବୁଲି ପାରେ ନାହିଁ । କୁସଙ୍ଗ ଫଳରେ ଆମ ବେକରେ ଘଣ୍ଟି ପଡ଼ିଲା ନାହିଁ କି ମୁହଁରେ ତୁଣ୍ଡିବନ୍ଧା ହେଲା ନାହିଁ, ଆମ ମନ ଭାଙ୍ଗିଗଲା, ଦୁନିଆ ଦେଖା ବନ୍ଦ ହୋଇଗଲା ।

ଆମ ସଙ୍ଗୀ ସେଇ ଭଦ୍ରକଆ ଟୋକା—ଓଙ୍କାର; ଦୁନିଆ୍ନେଙ୍କ ସ୍ୱପ୍ନ ତାଙ୍କୁ ଆବିଷ୍ଟ କରିନାହିଁ, କଳ୍ପନାର କୁହୁକ ମୁଲକରେ ସେ କୋଉଠି କିଛି କଲା ଲକ୍ଷ୍ୟ କରି ପାରି ନାହାନ୍ତି, ଏ ଯୁଗରେ ସେ ବୁଝନ୍ତି ଗୋଟିଏ ମୂଲ୍ୟ—ଅର୍ଥ ମୂଲ୍ୟ; ଅର୍ଥ ମୂଲ୍ୟରେ ଦୁନିଆର ସବୁ କାରବାର ଚାଲେ । ସେ ମକଦ୍ଦମା ଲଢ଼ନ୍ତି, ମହାଜନଙ୍କ-ଠାରୁ ପଇସା ଆଣନ୍ତି । ହାରିବା ଜିତିବାରେ ସବୁଠି ତାଙ୍କର ଜିତ୍, ଅର୍ଥଲାଭ । ହାରିବା ଜିତିବାର ସୌଭାଗ୍ୟ ବା ଦୁର୍ଭାଗ୍ୟ ଭୋଗ କରିବାକୁ ହୁଏ ପକ୍ଷକୁ । ଓଙ୍କାର କିନ୍ତୁ ବୁଝେ ଗୋଟିଏ ପକ୍ଷ—ଏହା ଶୁକ୍ଳପକ୍ଷ ।

ଲସା ଓକିଲଙ୍କ କାନେ କାନେ କହିଥିଲି—ମଉସା ମାଉସୀଙ୍କ ମୋ ଭଣ୍ଡଙ୍କର ଘାଟିକି ନେବ ନାହିଁ । ତାର କଥାକୁ ସେ କର୍ଣ୍ଣପାତ କଲେ ନାହିଁ । ତାଙ୍କ ଦୃଷ୍ଟିରେ ଦୁନିଆ୍ନେ ଲଣ୍ଡନର ମସ୍ତା ଏଠିକି । ତା ନୋହିଲେ ଦୁନିଆ୍ନେ ଦେଖିବାକୁ ଆସିବ କାହିଁକି କୋଉ ଭଦ୍ରଲୋକ ?

ପ୍ରଥମେ କିଛି ଜଣାଗଲା ନାହିଁ । ଭଲ ଲାଗିଲା । ବାଟରେ ପଡ଼ିଲା ହ୍ରଦ, ନଦୀ, ସେତୁ, ସୁଡ଼ଙ୍ଗ, ଅରଣ୍ୟ; ପ୍ରପାତ, ଉଦ୍ୟାନ, ନାନାବିଧ କଳ୍ପିତ ଅଜବ

ଜାବକନ୍ତୁ । ତାପରେ ଆରମ୍ଭ ହେଲା ଗାଡ଼ିର ଲମ୍ଫଝମ୍ଫ: ହଠାତ୍ ତଳକୁ ଗଡ଼ିଲା, ଉପରକୁ ଉଠିଲା, ବାମ ଆଡ଼କୁ ଶୋଇପଡ଼ିବା ଭଳି ନଇଁଗଲା, ପୁଣି ହଠାତ୍ ଡାହାଣକୁ ନଇଁଗଲା, ଚକାଭଉଁରି ବୁଲିଗଲା, ପାର୍ବତ୍ୟ ଉପତ୍ୟକାରେ ତୀବ୍ରତମ ତୀବ୍ର ଗତି, ଶରୀରପ୍ରତି ପୀଡ଼ାଦାୟକ, ଭୀତି ସଞ୍ଚାରକ ତୀବ୍ର ଗତି ।

ଖୋଲା ଗାଡ଼ିରେ ବନ୍ଧା ହୋଇଥାଏ । ତଥାପି ପ୍ରାଣଭୟ—ପଡ଼ିଯିବି, ଗାଡ଼ି ଚକତଳେ ଚକଟି ହୋଇଯିବି । ଜଣେ ଏଇ ଅବସ୍ଥାରେ ପଡ଼ି ମରି ଯାଇଥିଲା, ଯକ୍‌ରେ ହାର୍ଟ ଫେଲ୍ ହେବା ସମ୍ଭାବନା ପଦେ ପଦେ ।

ଲତା ମୋତେ କୁଣ୍ଢାଇ ଧରିଥାଏ; ମୁଁ ଗୋଟେ ଦଦରା ପୋପରା ଡାଙ୍ଗ, ଟିକିଏ ଚୁପ ଦେଲେ ମଟ୍‌କିନେ ଭାଙ୍ଗିଯିବ ।

ଗାଡ଼ିର ଦ୍ରୁତଗତି, ବକ୍ର ଓ ଚକ୍ରାକାର ଗତିକୁ ଉପଭୋଗ କରୁଥାନ୍ତି ଯୁବକ ଯୁବତୀ, ହୋ ହୋ ଆନନ୍ଦ ରୋଳ ଉଠୁଥାଏ, ଆମ କାନରେ ତାତିଲା ତେଲ ପଡ଼ିଲା ପରି ଲାଗୁଥାଏ ।

ଏମିତି ଏ ମାରାତ୍ମକ ଯାତ୍ରା ଶେଷ ହେଲା । ପିଣ୍ଡରେ ପ୍ରାଣ ପଶିଲା । ମରୁ ମରୁ ବଞ୍ଚିଗଲୁ । ଭଗବାନ୍‌ଙ୍କୁ ଶତସହସ୍ର ଧନ୍ୟବାଦ ଦେଲୁ । ଯା ଫଳରେ ଡିଶ୍‌ନିର ଅଧାଅଧି ଅଦେଖା ରହିଗଲା । ଗଙ୍ଗା ଗଲୁ ଯେତିକି, ଫଳ ପାଇଲୁ ତେତିକି ।

ଓ୍ୱାଲ୍ଟ୍ ଡିଶ୍‌ନେ ସ୍ୱତନ୍ତ୍ରଭାବେ ଉଦ୍ଭାବନ କରିଛନ୍ତି ଦୁର୍ଗମ ପଥରେ ଚଳମାନ ଏଇ ଗାଡ଼ିଟି; ସେଥିଲାଗି ସ୍ୱତନ୍ତ୍ର ଧରଣର ରେଳପଥ, କୃତ୍ରିମ ପର୍ବତ, ପର୍ବତ ଘାଟିମାନ ନିର୍ମାଣ କରାଯାଇଛି । ଯୁବକୀୟ ଉନ୍ମାଦନା ଚରିତାର୍ଥ ଲାଗି ଫେଡ଼ରାଲ୍ ସରକାରଙ୍କଠାରୁ ସ୍ୱତନ୍ତ୍ର ଅନୁମତି ମଧ୍ୟ ମିଳିଛି । ତେବେ ୫୦ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ, ରକ୍ତଚାପ, ହୃଦ୍‌ରୋଗ ଭୋଗୁଥିବା ରୋଗୀଙ୍କୁ ଏ ଦୁଃସାହସିକ ଯାତ୍ରା ମନା, ଲତାର ବୟସ ୫୦ରୁ, ମୋର ୭୦ରୁ ବେଶୀ । ଏ ଓକିଲ ବନ୍ଧୁ ନିଜ ମଉଜ ଲାଗି ଆମକୁ କି ହରଡ଼ ଘଣାରେ ପକାଇଥିଲେ ! କିପରି ବଞ୍ଚିଲୁ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ !

## ଓ୍ୱାଲ୍ଟ୍ ଡିଶ୍‌ନେଙ୍କ ଜୀବନୀ ଓ ପ୍ରଚଣ୍ଡ ପ୍ରତିଭା

ପୃଥିବୀର କିଶୋର ଓ ତରୁଣ ସମାଜକୁ ସୁଖୀ କରିବା ଲାଗି ନିଜ ସୁଖ ତିଳେ ତିଳେ ବଳି ଦେଇଛି, ପୃଥିବୀକୁ ସୁଖୀତର ଦେଖି ଆଖି ବୁଜିଛି, ଓ୍ୱାଲ୍ଟ୍ ଡିଶ୍‌ନେ; ତାର ଜୀବନଚରିତ ଟିକେ ଆଲୋଚନା କରିବା ଏଠି ଅସଙ୍ଗତ ନୁହେଁ ।

ପିତାଙ୍କ ନାମ ଇଲିୟାସ୍ ଡିଜ୍‌ନେ । ୧୯୧୦ ଖ୍ରୀଷ୍ଟାବ୍ଦର ଏକ ଶୀତଳ ସକାଳ । ସେ ନିଜର କୃଷି ଫାର୍ମଟି ବିକ୍ରୀ କରିଦେବା କଥା ସ୍ଥିର କଲେ । ଫାର୍ମରେ ବହୁତ ଘୋଡ଼ା, ଗୋରୁ ଓ ବତକ ଥିଲେ, ଓ୍ୱାଲ୍ଟ୍ ଡ୍‌ଜିନେ ସେମାନଙ୍କ କାର୍ଟୁନ୍ ଛବି ଅଙ୍କନ କରୁଥିଲେ । ସେ ଜିଦ୍ ଧରି ବସିଲେ—ଫାର୍ମ ବିକ୍ରୀ ହେବ ନାହିଁ । ସାନ ଭଉଣୀ ରୁଥ୍ ବି ଗୁଲୁଗୁଲିଆ ଭାଷାରେ କହିଲା । ଇଲିୟାସ୍ ଦୁହିଁଙ୍କୁ ଲାଲ୍ ଆଖିରେ ଚାହିଁ ଜବାବ କଲେ—ମୋ କାର୍ଯ୍ୟରେ ହସ୍ତକ୍ଷେପ ! ଏଡ଼େ ସାହସ ! ମାରି ଗୁଣ୍ଡ କରିଦେବି ! ସ୍ତ୍ରୀ କିଛି ପିଟିଲେ । ବେତ ମାଡ଼ ସହି ନପାରି ଦୁଇ ପୁଅ ଘର ଛାଡ଼ି ପଳାଇଗଲେ । ଇଲିୟାସ୍ ଫାର୍ମ ବିକି ଦେଇ ସେଇ ଟଙ୍କାରେ ଗୋଟିଏ ଦୋକାନ କରି ଦେଇ କାନ୍‌ସସ୍ ସିଟିରେ ରହିଲେ । ପିଲାମାନେ କ୍ଷୁଧାର ଜ୍ୱାଳା ସହି ନ ପାରି କେତେ ଦିନ ପରେ ଘରକୁ ଫେରିଲେ; ପିତୃ କ୍ରୋଧର ଶରବ୍ୟ ନ ହେବା ଲାଗି ସେମାନଙ୍କୁ ବହୁ କଠିଣ କର୍ମ କରିବାକୁ ହେଉଥିଲା । ଭିନଫୁଟ ବରଫରେ ଦୌଡ଼ି ଦୌଡ଼ି ସେମାନେ ସମ୍ବାଦପତ୍ର ବିକି ବାପାକୁ ପଇସା ଆଣି ଦେଉଥିଲେ ।

ଯେତେ ନିଷ୍ଠୁର ହେଲେ ବି ନିଜ ପିଲାଙ୍କ ଶିକ୍ଷା ପ୍ରତି ଇଲିୟାସ୍‌ଙ୍କର ଦୃଷ୍ଟି ଥିଲା । ଫଳରେ କାନ୍‌ସସ୍ ସିଟିରେ କଳା ଶିକ୍ଷା କରିବା ଡିଜ୍‌ନେଙ୍କ ପକ୍ଷେ ସମ୍ଭବ ହେଲା । ତାପରେ ସେ ଚିକାଗୋ ଏକାଡ଼େମୀରୁ ପତ୍ରାଳାପ ଜରିଆରେ ବ୍ୟଙ୍ଗକଳା ଶିଖିବାକୁ ସମର୍ଥ ହୋଇଥିଲେ ।

ଇଲିୟାସ୍ ପୁତ୍ରମାନଙ୍କ ସମ୍ବାଦପତ୍ର ବିକ୍ରୀ ଟଙ୍କାରେ ଗୋଟିଏ ଜେଲି ଫ୍ୟାକ୍ଟରୀ କରିଥିଲେ । ବାପାଙ୍କ ଫ୍ୟାକ୍ଟରୀରେ ଓ୍ୱାଲ୍ଟ୍ ବୋତଲ ଧୋଉଥିଲେ, ଜଗୁଆଳୀ କାମ ବି କରୁଥିଲେ ।

ତାପରେ ସେ ପୋଷ୍ଟ୍ ଅଫିସ୍, ରେଲବାଇରେ ଓ ଅନ୍ୟତ୍ର ଆଂଶିକ ଭାବେ କାର୍ଯ୍ୟ କରୁଥିଲେ । ଏହି ଭିନ କାର୍ଯ୍ୟ ପାଇଁ ତାଙ୍କର ଭିନଗୋଟି ସ୍ୱତନ୍ତ୍ର ଟୋପି ଥିଲା ।

ତାପରେ ସେ ସବୁ ଛାଡ଼ି ଦେଇ ରେଡ଼କ୍ରସ୍ ଆମ୍ବୁଲେନ୍ସ ବିଭାଗରେ ଯୋଗ ଦେଲେ । ଦ୍ୱିତୀୟ ମହାଯୁଦ୍ଧ କାଳରେ ଏହି ବିଭାଗରେ ସେ ଏଗାର ମାସ କାର୍ଯ୍ୟ କରିଥିଲେ ଓ ଉପାର୍ଜିତ ଅର୍ଥ ପିତାଙ୍କ ନିକଟକୁ ପଠାଉଥିଲେ ।

ସେଠାରୁ ଫେରିଲା ପରେ ବାପା ଜେଲି କାରଖାନାରେ ପୁଣି କାର୍ଯ୍ୟ କରିବା ଲାଗି ପ୍ରବର୍ତ୍ତାଇଲେ; ଓ୍ୱାଲ୍ଟ୍ କହିଲେ—ଜଣେ କଳାକାର ହେବା ମୋର ଇଚ୍ଛା ।

ବାପା କହିଲେ—ଖାଇବାକୁ ନ ପାଇ ଛଟପଟ ହୋଇ ମରିବୁ । ଏ କ'ଣ ଗୋଟାଏ ଧନ୍ଦା ହୋଇପାରେ ? ଏ ଯୁଗରେ କଳାକୁ କିଏ ପଚାରେ ?

ଏ ଯୁକ୍ତି ନ ଶୁଣି ଓ୍ୱାଲ୍ଟ ପଳାଇ ଗଲେ । ଯେ ବିଜ୍ଞାପନ ବିଭାଗରେ କାର୍ଟୁନ୍ ଆଙ୍କିବା କାର୍ଯ୍ୟଟିଏ ପାଇଲେ । କିନ୍ତୁ ତାଙ୍କ ଅଙ୍କନ କର୍ତ୍ତାଙ୍କ ମନୋମତ ହେଲା ନାହିଁ । ସେ ବିତାଡ଼ିତ ହେଲେ ।

ଏହିକିବେଳେ ଫିଲ୍ମ ବିଭାଗରେ ଜଣେ କାର୍ଟୁନ୍ ଆର୍ଟିଷ୍ଟ ଭାବେ ତାଙ୍କୁ ନିଯୁକ୍ତି ମିଳିଲା । ଫିଲ୍ମରେ କାର୍ଟୁନ୍ ପ୍ରଥମଥର ପାଇଁ ପ୍ରଚଳିତ ହେଲା ଓ ଏହା ଏକାନ୍ତ ନିମ୍ନସ୍ତରର ଥିଲା ।

ମାଲିକ ତାଙ୍କୁ ଗୋଟିଏ ପୁରୁଣା କାମେରା ଦେଇଥିଲେ । ଗୋଟିଏ ମଟର ଗାରେଜ୍‌ରେ ବସି ପରୀକ୍ଷାମୂଳକ ଭାବେ ସେ ନମୁନା ରିଲ୍‌ଟିଏ ପ୍ରସ୍ତୁତ କଲେ । ନିଉମ୍ୟାନ୍ ଥିଏଟର୍ ତାକୁ କ୍ରୟ କଲା । ଏହା ଏତେ ଲୋକପ୍ରିୟ ହେଲା ଯେ ଆହୁରି ଅଧିକ କାର୍ଟୁନ୍ ଫିଲ୍ମ ପ୍ରସ୍ତୁତି ଲାଗି ସେ ଅର୍ଡ଼ର ପାଇଲେ ।

ଡିଜ୍‌ନେ ଏଥିରେ ଲାଭବାନ୍ ହେଲେ ନାହିଁ । ତେଣୁ ନିଜ ପ୍ରସ୍ତୁତ ଫିଲ୍ମ ବିକ୍ରୀ ନ କରି ନିଜେ ଚଲାଇବାକୁ ଚେଷ୍ଟିତ ହେଲେ । କିନ୍ତୁ ସ୍ୱାଧୀନ ବ୍ୟବସାୟ ଲାଗି ହାତରେ ପଇସା କାହିଁ ? ତଥାପି ସାହସ ବାନ୍ଧିଲେ । ଚିହ୍ନାଜଣା ଲୋକଙ୍କ-ଠାରୁ ପନ୍ଦର ହଜାର ଡଲାର୍ ଉଧାର କରି 'Laugh and Gain'' କର୍-ପୋରେସନ୍ ତରଫରୁ କାର୍ଟୁନ୍ ଫିଲ୍ମ ପ୍ରସ୍ତୁତ କଲେ । ଏଥିରେ ବିସ୍ତର କ୍ଷତି ଘଟିଲା । ହାତରେ 'ଆଲିଇସ୍ ଇନ୍ ଓ୍ୱଣ୍ଡରଲାଣ୍ଡ୍' ଛବିଟି ମାତ୍ର ସମ୍ବଳ । ଘୋର ଦୁରବସ୍ଥା ମଧ୍ୟରେ ଯେ ଭଡ଼ାଘର ସ୍ତୁଡ଼ିଓ ଆରାମ୍ ଚେୟାରରେ ଶୋଇ ରାତି କଟାଇଲେ । ଦିନକେ ବେଲ୍ସେ ମାତ୍ର ଖାଇଲେ । ସପ୍ତାହକେ ଥରେ ଗାଧୋଇଲେ । ଏହିପରି ନାନା ଦୁଃଖକଷ୍ଟ ମଧ୍ୟରେ ନିଜ ସାଧନା ଅବ୍ୟାହତ ରଖିଲେ ।

ଦାନ୍ତକୁ କିପରି ଶକ୍ତ ଓ ଦୀର୍ଘସ୍ଥାୟୀ କରି ହେବ, ଜଣେ ଦାନ୍ତ ଡାକ୍ତରଙ୍କ ପରାମର୍ଶରେ 'Tommy Talker's Tooth'' ନାମକ ଏକ ଫିଲ୍ମ ପ୍ରସ୍ତୁତ କରାଇ ୫୦୦ ଡଲାର୍ ଲାଭ କଲେ ।

ତାଙ୍କ ଅଳିଆ ଟୋକେଇରେ ବହୁତ ମୂଷା । ଡିଜ୍‌ନେ ଅଙ୍କନ କଲାବେଳେ ସାମ୍ନାରେ ବସି କୁଳୁକୁଳୁ କରି ଚାହାନ୍ତି, ପୁଣି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାନ୍ତି । ଏହିମାନେ ହିଁ ତାଙ୍କ ନିଃସଙ୍ଗ ଜୀବନର ସାଥୀ, ବହୁ ଦୁଶ୍ଚିନ୍ତା କବଳରୁ ରକ୍ଷା କରିଥାନ୍ତି । ଦିନେ ଡିଜ୍‌ନେ ଗୋଟିଏ ମୂଷା ଧରି ପଞ୍ଜୁରୀରେ ରଖିଲେ; ତାକୁ ନାନା

କ୍ରୀଡ଼ା କୌଶଳ ଶିକ୍ଷା ଦେଲେ, ଯେପରି କେଳା ଗୋବିନ୍ଦମୂଷାକୁ ଶିକ୍ଷା ଦେଇ ଥାଏ ।

ଏହି ସମୟରେ ଆଉ ଏକ ଦୁର୍ଦ୍ଦଶା ପଡ଼ିଲା; ଭାଇ କାଲଫର୍ଣ୍ଣିଆରେ ଟି.ବି. ରୋଗରେ ନିପୀଡ଼ିତ ହେଲେ; କାମେରା ପ୍ରଭୃତି ସର୍ବସ୍ୱ ବିକି ଡିଶ୍‌ନେ ଭାଇଙ୍କ ସାହାଯ୍ୟ କରିବା ଲାଗି ଉପସ୍ଥିତ ହେଲେ ।

୧୯୨୩ ମସିହାରେ ସେ ଲସ୍‌ଆଞ୍ଜେଲ୍‌ସ ଫେରିଲେ । ହାତରେ ମାତ୍ର ୪୦ ପାଉଣ୍ଡ୍ । ଚିରା ପ୍ୟାଣ୍ଟ୍, ଚିରା ଯୋତା । ଦୁଃସ୍ଥ ଅବସ୍ଥାରେ ନିଉସ୍ପେପର୍‌ରୁ ଖଣ୍ଡିଏ ପତ୍ର ପାଇଲେ—ତୁମ ଆଲିଇସ୍ ଇନ୍ ଓ୍ୱଣ୍ଡରଲ୍ୟାଣ୍ଡ୍ ଲାଗି ବାରଶତ ଡଲାର୍ ଦେବି । ଏହିପରି ବାରଗୋଟି କାର୍ଟୁନ୍ ଫିଲ୍ମ ମୋତେ ପ୍ରସ୍ତୁତ କରିଦିଅ ।

ଫିଲ୍ମ ପ୍ରସ୍ତୁତ କରିବେ କୋଉଠି ? ଘର କାହିଁ ? ପଇସା କାହିଁ ? ବିନା ପଇସାରେ କୋଉ ନାୟକ ନାୟିକା ଅଭିନୟ କରିବେ ?

ବହୁ ଚେଷ୍ଟା ପରେ ଜଣେ ବାଡ଼ିଘରଟି ଭଡ଼ା ନେଲେ । ଆଲିଇସ୍ ପାର୍ଟ ନେବା ଲାଗି ଜଣେ ସାଇ ପିଲାକୁ ପ୍ରବର୍ତ୍ତାଇଲେ । ଲିଲିସ୍ୱାନ୍ ବୋଲି ଝିଅଟିଏ ଏହି ଫିଲ୍ମରେ ଚମତ୍କାର ଅଭିନୟ କରିଥିଲା । ଏହା ଏକ ସାର୍ଥକ ଫିଲ୍ମ ଭାବରେ ପ୍ରତିଷ୍ଠା ଲାଭ କଲା । ଡିଶ୍‌ନେ ଲିଲିସ୍ୱାନ୍‌ର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ତାକୁ ବିଭା ହେଲେ ।

ଦୁଃଖେ ସୁଖେ ସଂସାର ଚାଲିଲା । ଜଣେ କଳାକାରର ସ୍ତ୍ରୀପାର୍ଟ ସାର୍ଥକ ଭାବେ ତୁଲାଇବା ଆଦୌ ସହଜସାଧ୍ୟ ନୁହେଁ । ଦିନକର ଘଟଣାରୁ ଏହା ବୁଝା ଯିବ । ଲିଲିସ୍ୱାନ୍ ରେଷ୍ଟୋରାଁରେ ସାରା ଦିନେ ଘଣ୍ଟା ଘଣ୍ଟା ଅପେକ୍ଷା କଲେ । ତାଙ୍କ ଧୈର୍ଯ୍ୟଚ୍ୟୁତି ଘଟିଥିଲା । ରାତି ଅଧିକୁ ଡିଶ୍‌ନେ ଫେରି ହସି ହସି କହିଲେ—କୌତୁକିଆ ଛବି ପ୍ରସ୍ତୁତିରେ ବୁଡ଼ି ରହି ଡିନାର୍ କଥା ଭୁଲି ଯାଇଥିଲି । ସ୍ୱାମୀ କହି ସ୍ତ୍ରୀ ହାତକୁ ଗୋଟିଏ କୁକୁର ଛୁଆ ବଢ଼ାଇ ଦେଲେ, କହିଲେ— ଏ ବଡ଼ ଅଣହେଲାରେ ଅଛି ; ଏହାକୁ ହେପାଜତ କର, ଏହା ସେବାରେ ତୁମ ଦିନକାଳ କଟିବ, ଭାବିବାକୁ ବେଳ ମିଳିବ ନାହିଁ । ଇତର ଜୀବଜନ୍ତୁଙ୍କ ପ୍ରତି ତାଙ୍କ ଚିତ୍ତରେ ଅପାର କରୁଣା ।

ଭାଗ୍ୟର ଗତି ବଦଳିଲା । ଡିଶ୍‌ନେ ଜଣେ ସଫଳ ଫିଲ୍ମ ପ୍ରସ୍ତୁତକାରୀ ଭାବେ ଯଶସ୍ୱୀ ହେଲେ । ଘରଟିଏ କିଣିବାକୁ ସମର୍ଥ ହେଲେ । ନିଜର ଷ୍ଟୁଡ଼ିଓଟିଏ ବି ନିର୍ମାଣ କଲେ ।

ଆଲାଇସ୍ ଇନ୍ ଓଣ୍ଡର୍ ଲ୍ୟାଣ୍ଡ୍ ଲୋକପ୍ରିୟତା ହରାଇଲା ପରେ ଡିଶ୍‌ନେ 'ଓସ୍‌ଓ୍ୱାଲ୍ ରାବିଟ୍' ଫିଲ୍ମ କଲେ । ଓସ୍‌ଓ୍ୱାଲ୍ କମ୍ପାନୀ ପ୍ରତ୍ୟେକ ଫିଲ୍ମ ଲାଗି ୧୭୫୦ ଡଲାର୍ ଦେବ ବୋଲି ଚୁକ୍ତିପତ୍ର ହୋଇଥିଲା । କମ୍ପାନୀ ଚୁକ୍ତି ଭାଙ୍ଗିଲା, ଡିଶ୍‌ନେଙ୍କ କଳାକାରମାନଙ୍କୁ ଶିଖାଇ ନେଇ ଅନ୍ୟ ଏକ କାର୍ଟୁନ୍ ପିକ୍‌ଚର୍ ସଂସ୍ଥା ଗଠନ କଲା । ତାପରେ ଡିଶ୍‌ନେ ଦୃଢ଼ ସଂକଳ୍ପ କଲେ— ଜୀବନରେ ଆଉ କୌଣସି କମ୍ପାନୀ ସହିତ ଚୁକ୍ତିପତ୍ରରେ ଆବଦ୍ଧ ହେବେ ନାହିଁ ।

## ମିକି ମାଉସ୍

ଜୀବଜନ୍ତୁଙ୍କ ଫିଲ୍ମ ତିଆରି କରିବା ଚିନ୍ତା ପୃଥିବୀରେ ପ୍ରଥମେ ଡିଶ୍‌ନେ କରିଥିଲେ । ପରିଲେ ସେ ଖୁସିବାସିଆ, କଉତୁକିଆ ଜନ୍ତୁଟିଏ ସ୍କେଚ୍ କଲେ । ତା ଚକ୍ ଚକ୍ ଆଖି କଥା କହୁଥିଲା । ତା ମଉଜିଆ ମୁହଁ ଡିଶ୍‌ନେଙ୍କ ମୁହଁ ସହିତ ଅନେକଟା ମିଳି ଯାଉଥିଲା । ପିଅର୍ ଫଳ ପରି ତାର ଆକାର । ତା ପାଦସବୁ ଜୋତା ଭିତରେ, ଆଖି ଚକ୍ ଚକ୍, ନିଶୁଆ ଗୋଲିଆ ମୁହଁଟି ମାତ୍ର ପଦାକୁ ଦିଶେ । ଏ ମିକି ମାଉସ୍ । ଏଇ ମୂଷାଟି ଯେ ଦିନେ ତାଙ୍କ ଭାଗ୍ୟ ନିର୍ମାଣ କରିବ, ତାଙ୍କର ଦୃଢ ବିଶ୍ୱାସ ଜନ୍ମିଥିଲା । ଡିଶ୍‌ନେ ନିଜ କୃତ କାର୍ଟୁନ୍‌ରେ ମୁଗ୍ଧ ହୋଇ କହିଲେ— ଦୁଷ୍ଟ ବାଳକଟିଏ ପରି ଏ ତିଆରିଟି ଚରମ ଅନିଷ୍ଟ ସାଧନ କରେ, କିନ୍ତୁ ମୋର ପରମ ହିତ ସାଧନ କରିବ । ଭବିଷ୍ୟ ବକ୍ତା କବି ବା କଳାକାରର ଉକ୍ତି ଏ, ଅକ୍ଷରେ ଅକ୍ଷରେ ସତ୍ୟ ହେଲା ।

୧୯୨୮ରେ 'ମିକି ମାଉସ୍' ଫିଲ୍ମ ପ୍ରସ୍ତୁତ ହେଲା, ଓ୍ୱାଟ୍ ଡିଶ୍‌ନେଙ୍କ ଅବିକଳ କଣ୍ଠ ସ୍ୱରରେ କଥାବାର୍ତ୍ତା କରୁଥିଲା ଯେ, ଦର୍ଶକମାନେ ଶୁଣି ମୁଗ୍ଧ ହୋଇଗଲେ । ଏହା ସର୍ବମନୋରଞ୍ଜକ ଫିଲ୍ମ ଭାବରେ ବିଶ୍ୱ ପ୍ରତିଷ୍ଠା ଅର୍ଜନ କଲା ଓ ଡିଶ୍‌ନେଙ୍କୁ ବିଶ୍ୱବିଖ୍ୟାତ କଲା ।

ଏବେ 'ମିକି' ଖେଳଣା ପ୍ରତି ଘରେ, ତା ଚିତ୍ର ପ୍ରତି ପିଲାର ପୋଷାକରେ ; ସେତେବେଳେ ମିକି ମାଉସ୍ ନାମରେ ବହୁ କ୍ଲବ୍ ପ୍ରତିଷ୍ଠିତ ହେଲା ; ଏହି ମିକି ମାଉସ୍ ଫିଲ୍ମ ବିଷୟ ସହସ୍ରାଧିକ ସମ୍ବାଦପତ୍ରରେ ଆଲୋଚିତ ଓ ଉଚ୍ଚ ପ୍ରଶଂସିତ ହେଲା । ଶେଷରେ ଏହା ବିଶ୍ୱ ସଦିଚ୍ଛାର ପ୍ରତୀକ ରୂପେ ଲିଗ୍ ଅଫ୍ ନେସନ୍‌ସର ପୁରସ୍କାର ଲାଭ କରିବାକୁ ସମର୍ଥ ହେଲା ।

୧୯୩୦ ମସିହା । ଅର୍ଥନୀତି ଦୃଷ୍ଟିରୁ ଘୋର ଦୁଃସମୟ । ଡିଶ୍‌ନେଙ୍କ ଫିଲ୍ମ କିନ୍ତୁ ଭଲ ଚାଲିଥିଲା ; ତାଙ୍କ ସଂସ୍ଥାରେ ସେତେବେଳକୁ ୭୫୦ ଜଣ କଳାକାର କାର୍ଯ୍ୟ କରୁଥିଲେ ।

'ମିକି ମାଉସ୍' ପରେ ଓ୍ୱାଲ୍ଟ୍ ଡିଜ୍‌ନେ 'ଡୋନାଲ୍ଡ୍ ଡକ୍', 'ସିଲି ସିମ୍ଫୋନି', 'ହେୟାର ଆଣ୍ଡ୍ ଟର୍ଟିଜ୍' ଓ 'ଲିଟିଲ୍ ଥିଏଟର୍' ସଫଳ ହୋଇଥିଲା । 'ସ୍ନୋ ହ୍ୱାଇଟ୍ ଓ ସେଭେନ୍ ଡ୍ୱାର୍ଫସ୍'ରେ ବାଙ୍ଗରମାନଙ୍କ ବିଚିତ୍ର ଚରିତ୍ର ଚିତ୍ରିତ ହୋଇଅଛି । ବାଙ୍ଗରଙ୍କ ଭିତରୁ ଜଣେ କ୍ରୋଧୀ, ଜଣେ ପ୍ରଫୁଲ୍ଲ, ଜଣେ ତନ୍ଦ୍ରାଳୁ, ଜଣେ ଲାଜକୁଳା । ଏହି ଦୀର୍ଘ ଫିଲ୍ମର ପ୍ରସ୍ତୁତି କାଳରେ ଅସୀମ ଧୈର୍ଯ୍ୟ ସହକାରେ ଡିଜ୍‌ନେ କଠୋର ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ପରିବାରର ସମସ୍ତେ ବିରକ୍ତ, କର୍ମଚାରୀମାନେ ଉଦ୍‌ବିଗ୍ନ ।

ଏକ ମହାନ୍ ପ୍ରତିଭାର ଇନ୍ଦ୍ରଧନୁ ରଙ୍ଗ ଲୋକ ସମକ୍ଷରେ ପ୍ରକଟିତ ହୋଇଥିଲା । ନାରୀ, ପୁରୁଷ, ବାଳକ, ବୃଦ୍ଧ କଣ୍ଠରେ ତାଙ୍କୁ କଥା କହିବାକୁ ପଡ଼ିଥିଲା । ସ୍ନୋ ହ୍ୱାଇଟ୍ ମୁଖରେ କ୍ଷୀଣ କୋମଳ ସ୍ୱରରେ, ସାବତ ମାଆର କର୍କଶ, ନିଷ୍ଠୁର ସ୍ୱରରେ କମ୍ବା ବାଙ୍ଗରମାନଙ୍କ ବିଭିନ୍ନ କଣ୍ଠରେ ତାଙ୍କ ବକ୍ତବ୍ୟ ବିସ୍ମୟ ସୃଷ୍ଟି କରିଥିଲା । ଏହା ବିଶେଷ ଲୋକପ୍ରିୟ ହୋଇଥିଲା, ପ୍ରଚୁର ଆୟ ମଧ୍ୟ କରିଥିଲା । ଫିଲ୍ମ ପରେ ସ୍ନୋ ହ୍ୱାଇଟ୍ ଓ ବାଙ୍ଗର ଖେଳଣା କୋଟି କୋଟି ସଂଖ୍ୟାରେ ବିକ୍ରି ହେଲା । ଡିଜ୍‌ନେ ଉଧାର ଟଙ୍କା ଶୁଝିସାରି ଲସ୍‌ଆଞ୍ଜେଲ୍‌ସ୍‌ରେ ଗୋଟିଏ ବିରାଟ ସୌଧ ନିର୍ମାଣ କରିବାକୁ ସମର୍ଥ ହୋଇଥିଲେ ; ବୃଦ୍ଧ ପିତା-ମାତାଙ୍କୁ ପାଖରେ ଆଣି ରଖିଥିଲେ ।

ସେତେବେଳକୁ ତାଙ୍କ ଅଫିସ୍‌ର କର୍ମଚାରୀ ସଂଖ୍ୟା ୧୫୦୦, ଡିଜ୍‌ନେଙ୍କ ଫିଲ୍ମ ଟ୍ରେନିଂ କ୍ଲାସ୍‌ରେ ଶତାଧିକ ଛାତ୍ର ।

ଦାରିଦ୍ର୍ୟ ଦୁଃଖ ଦୂର ହେଲା । କିନ୍ତୁ ମାନସିକ ଭାବରେ ଡିଜ୍‌ନେ ଏକାନ୍ତ ଏକାକୀ । ବନ୍ଧୁତା ଜମାଇବାକୁ ଅବସର ପାଇ ନ ଥିଲେ— ଦୁଇ ଝିଅ— ଡାଇନା, ସାରନ୍‌ଙ୍କ ପ୍ରତି ସ୍ନେହଶ୍ରଦ୍ଧା ପ୍ରକାଶ କରିବାକୁ ବି ବେଳ ପାଇ ନ ଥିଲେ ।

ତାଙ୍କ ସ୍ନେହ ବେଳେ ବେଳେ ବିସ୍ଫୋରଣଶୀଳ ଥିଲା । ସବୁ କାମ ପଛକୁ ଫିଙ୍ଗିଦେଇ ସେ ସେମାନଙ୍କୁ ବେଳେ ବେଳେ ପାର୍କକୁ ବୁଲାଇ ନେଉଥିଲେ । ପାର୍କରେ କିଶୋର ବିନୋଦନ ରୀତିର କଠୋର ସମାଲୋଚନା କରି ଦିନେ ସେ କହିଲେ— ମୁଁ ଗୋଟିଏ ନୂଆ ଧରଣର ପାର୍କ ଗଢ଼ିବି, ସେଥିରେ ନାନା କୌତୁକ ଖେଳ ରହିବ, ଶିଶୁଠୁ ବୃଦ୍ଧ ସମସ୍ତଙ୍କର ଉପଭୋଗ୍ୟ ହୋଇ ପାରିବ ।

ଲସ୍ ଆଞ୍ଜେଲ୍‌ସ୍‌ରେ ୧୬୦ ଏକର ଭୂମିରେ ଦିନେ ଡିସ୍‌ନେଙ୍କ ଅକ-ଳଙ୍କୀ ସ୍ୱପ୍ନର 'ଡିଜ୍‌ନେ ଲ୍ୟାଣ୍ଡ୍' ନିର୍ମିତ ହେଲା । ତାଙ୍କ ନିଜ ଘର ତଳେ

ରେଲ୍ ଲାଇନ୍ ପଡ଼ିଲା ; ସେ ଫ୍ଲାଟ୍ କାର୍, କେବଲ୍ କାର୍ ଚଲାଇଲେ । ଫ୍ଲାଟ୍ କାର୍‌ରେ ପ୍ରତି ଡବାରେ ଜଣେ ମାତ୍ର ଯାତ୍ରୀ ବସିବା ବ୍ୟବସ୍ଥା ହେଲା । ୧୯୫୫ରେ ଡ଼ିସ୍‌ନେ ପାର୍କର କାର୍ଯ୍ୟ ଶେଷ ହେଲା । ବଞ୍ଚିଥିବା ଯାକେ ସେ ନିଜ କୁତୁହଳ କଳ୍ପନାକୁ ନୂଆ ନୂଆ ଆନନ୍ଦ ଦେବାର ବାଟ ଫିଟାଉ ଥିଲେ ।

ପୃଥିବୀର ଜଣେ ଶ୍ରେଷ୍ଠ ଓ ପ୍ରିୟତମ ବ୍ୟକ୍ତିଭାବେ ପ୍ରସିଦ୍ଧି ଲାଭ କଲେ । ତାଙ୍କ ଫିଲ୍ମର ସ୍ୱପ୍ନରେ ଲାଳିତ ହେଉଥିଲା ଅଗଣିତ କିଶୋର ମନ । କିନ୍ତୁ ପିତା ଯେ କେଡ଼େ ପ୍ରସିଦ୍ଧ କନ୍ୟା ଦୁହିଁଙ୍କୁ ଅଗୋଚର । ଦିନେ ଖୁବ୍ ଆଶ୍ଚର୍ଯ୍ୟ ହେଲା ପରି ଡାଇନା ପଚାରିଲା— ବାପା, ତୁମେ କଣ ସେହି ବିଖ୍ୟାତ ପ୍ରସିଦ୍ଧ ଓ୍ୱାଲ୍ଟ୍ ଡିସ୍‌ନେ ?

ଡିସ୍‌ନେ ଝିଅ ମୁହଁକୁ ଚାହିଁ ହସି ହସି କହିଲେ— କାହିଁକି ? ହେଲେ ହୋଇଥିବ ।

ଡାଇନା— ମତେ ତୁମ ଦସ୍ତଖତ ଦିଅ ତାଡ଼ି, ମୁଁ ବଡ଼ ଲୋକଙ୍କର ସ୍ୱାକ୍ଷର ସଂଗ୍ରହ କରି ରଖେ ।

ଡିସ୍‌ନେ ଅତି ଖୁସିରେ ଝିଅକୁ କୋଳକୁ ଆଉଜାଇ ଆଣିଲେ— "କେବଳ ତୁମ ଦୁହିଁଙ୍କ ଲାଗି ମୁଁ ଜୀବନରେ ଯାହା କିଛି ହୋଇଛି ବା କରିଛି ।"

ଦ୍ୱିତୀୟ ମହାଯୁଦ୍ଧ କାଳରେ ଡିସ୍‌ନେଙ୍କ 'ସିଣ୍ଡ୍ରେଲା', 'ପେଟର୍ ପ୍ୟାନ୍', ଛବି ଦୁଇଟି ସୁନାମ ଅର୍ଜନ କରିଥିଲା । ତାପରେ ଡିସ୍‌ନେ ଆଲେସ୍କା ଯାଇ ପାହାଡ଼ ପର୍ବତ ଓ ବରଫ ମଧ୍ୟରେ ଏସ୍କିମୋ ଜୀବନ, ମତ୍ସ୍ୟ ଶିକାର ଓ ସେମାନଙ୍କ କଠୋର ଜୀବନ ଯାତ୍ରା ଉପରେ ଛବି ଅଙ୍କନ କରିଥିଲେ । ବର୍ଷେକାଳ ଏସ୍କିମୋ ମେଳରେ ରହି ସିଲ୍‌ମାନଙ୍କ ଗତିବିଧି ସେ ଲକ୍ଷ୍ୟ କରିଥିଲେ ଓ 'ସିଲ୍ ଆଇଲାଣ୍ଡ୍' ନାମକ ଚମତ୍କାର ଛବି ପ୍ରସ୍ତୁତ କରିଥିଲେ । ୧୯୪୮ ଖ୍ରୀଷ୍ଟାବ୍ଦରେ ଏହି ଛବି ଲାଗି ସେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

ଡିସ୍‌ନେ ଜୀବନରେ ଯେତେ ପୁରସ୍କାର ପାଇଥିଲେ, ସବୁ ରଖିଲେ ଗୋଟିଏ କୋଠରୀ ଭର୍ତ୍ତି ହୋଇଯିବ । ସେଥି ମଧ୍ୟରୁ ୩୦ ଗୋଟି ମ୍ୟାଜିକ୍ ପିକ୍‌ଚର୍ ଏକାଡେମୀ ପୁରସ୍କାର, ୭୦୦ଟି ସମ୍ମାନପତ୍ର, ଅଗଣିତ ଡିଗ୍ରୀ, ମେଡ଼ାଲ୍ ଓ ଟ୍ରଫି ।

ଗଣେଶଙ୍କ ବାହନ ମୂଷା, ତା' ପ୍ରତି କିଶୋରଙ୍କର ଯେତିକି ଶ୍ରଦ୍ଧା, ଅନିଷ୍ଟକାରୀ ଜୀବ ବୋଲି ବୟସ୍କଙ୍କର ସେତିକି ଅଶ୍ରଦ୍ଧା । ତାକୁ ଯନ୍ତା ବସାଇ ଧରେ, ବିଷ ଦେଇ ମାରେ, ତା ଉପଦ୍ରବରୁ ଛାଡ଼ି ପାଇବା ପାଇଁ ବିରାଡ଼ି ପୋଷେ ;

ମାଟି ଘର ମାନେ ହିଁ ପୁଞ୍ଜା ପୁଞ୍ଜା ମୂଷା ଗାତ ; ଚୁଟିଆ ମୂଷା, ଗୁଳୁଆ ମୂଷା, ଗାରୁଆ ମୂଷା, ବଣୁଆଁ ମୂଷା, ପାହାଡ଼ୀ ମୂଷା । ମଣିଷ ସବୁ ଜୀବଜନ୍ତୁଙ୍କୁ ଆୟତ୍ତ କରି ପାରିଚ, ମୂଷାକୁ ପାରିନାହିଁ ।

ମୂଷା ପାଇଁ ପାଇ ହୋଇଛୁ ଆମ ଦେଶରେ କେଲା ହାତର ଗୋବନ୍ଦ ମୂଷା—ନବ ବଧୂର କୂଅରୁ ପାଣି କଢ଼ା ଅଭିନୟ କରେ ସେ, ଗୋପାଳିଆ ଦେଢ଼ଶୁର ଆସୁଛୁ ବୋଲି ତରବରରେ ।

ଏହି ମୂଷା କନ୍ଥୁ ଥିଲି ଢଣ୍‌ନେଙ୍କ ଶିଳ୍ପୀଜୀବନର ମୁଖ୍ୟ ପ୍ରେରଣା, ମୂଷାକୁ କେନ୍ଦ୍ର କରି ସେ ଅଗଣିତ ଜୀବଜନ୍ତୁଙ୍କୁ ତାଙ୍କ ସ୍ୱପ୍ନ ମୂଳକର ଅଙ୍ଗୀଭୂତ କରି-ଥିଲେ ।

ଅଜବ ସ୍ୱପ୍ନକୁ ସେ ନିର୍ଚ୍ଚ ସତ୍ୟ ବୋଲି କିଶୋର କିଶୋରୀଙ୍କ ବିଶ୍ୱାସ ଜନ୍ମାଇ ପାରିଥିଲେ—ଏହା ହିଁ କଳାକାର ଭାବରେ ତାଙ୍କର କୃତିତ୍ୱ ।

ଆଜି ପର୍ଯ୍ୟନ୍ତ କେଉଁ କଳାକାର ଲୋକଙ୍କୁ ଏତେ ଅଭିଭୂତ କରାଇ ପାରି ନ ଥିଲି, କଳାକୁ କେହି କରାଇ ପାରି ନ ଥିଲି ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ ।

ଢନେ ଲସ୍‌ ଆଞ୍ଜେଲ୍‌ସ୍‌ ପରି ବିପୁଳ ନଗରର ସମ୍ମାନିତ ମେୟର୍‌ ପଦ ତାଙ୍କୁ ଯାଚି ଯାଇଥିଲି । ସେ ହସି ହସି କହିଲେ— ସ୍ୱପ୍ନ ରାଜ୍ୟର ସମ୍ରାଟ ମୁଁ, କୌଣସି ମୃଣ୍ମୟ ସୀମା ମୋ ଲାଗି ଯଥେଷ୍ଟ ନୁହେ ।

୧୯୬୬ ମସିହାରେ ଏହି କଳାକାରଙ୍କର ମୃତ୍ୟୁ ହେଲା, ମାତ୍ର ୬୫ ବର୍ଷ ବୟସରେ । ତାଙ୍କର ଜନ୍ମକାଳ ୧୯୦୧ ।

# ପନ୍ଦର

## ହଲିଉଡ୍

ହଲିଉଡ୍ ନାଆଁରେ ଚମକ; ହଲିଉଡ୍‌ର ନକ୍ଷତ୍ର ବା ଚନ୍ଦ୍ରମାନେ କେମିତି ? ଅଜସ୍ର ଅର୍ଥ ଉପାର୍ଜନ କରନ୍ତି, ତାକୁ ବ୍ୟୟ କରନ୍ତି କପରି ? କଣ ସେମାନେ ଖାନ୍ତି ? କପରି ଚଳବୂଚଳ ହୁଅନ୍ତି ?

'ଷ୍ଟାର୍ ଡ ଷ୍ଟାର୍' ପୁଣି ହଲିଉଡ୍‌ର ଷ୍ଟାର୍ ' ସୁପର୍ ଷ୍ଟାର୍ ସେମାନେ । କେବଳ ବିପୁଳ ଐଶ୍ୱର୍ଯ୍ୟ, ଅନୁପମ ରୂପଶ୍ରୀ ବା ଚମତ୍କାର ଅଭିନୟ କଳା ଦୃଷ୍ଟିରୁ ନୁହେଁ, ସର୍ବତୋଭାବେ । ହଲିଉଡ୍ କଥା ଭାବିଲେ ଆଖି ବଡ଼ ବଡ଼ ହୋଇଯାଏ । କେମିତି ହୋଇଥିବେ, ସତେ କେମିତି ! ଲସ୍‌ଆଞ୍ଜେଲସ୍‌ରେ ହଲିଉଡ ନ ଦେଖି ଫେରିଲେ ମନ କେମିତି କେମିତି ଲାଗିବ । ଯଦି ବା ସିନେମା ଭକ୍ତ ମୁଁ ନୁହେଁ ।

ଫର୍ଗେଦବାବୁ ୨୫ ମାଇଲ୍ ଦୂରବର୍ତ୍ତୀ ଏକ ସ୍ଥାନକୁ ନେଇ ଟିକେଟ୍ କରିଦେଲେ – ହଲିଉଡ୍ ଦେଖିବାକୁ ଜଣପିଚ୍ଛା ୩୫ ଡଲାର୍; ତା ମଧ୍ୟରେ ବସ୍ ଯାତାୟାତ ବ୍ୟୟ ଅନ୍ତର୍ଭୁକ୍ତ ।

ବସ୍‌ରେ ଲେଡି ଡ୍ରାଇଭର୍ । ତାଙ୍କ ସ୍ୱାମୀ ଓ ପୁତ୍ରମାନେ ବି ଡ୍ରାଇଭର୍ । ଗୋଟା ପରିବାର ଗୋଟିଏ ମାତ୍ର ଧନ୍ଦା କରୁଥିବା ଦୃଷ୍ଟାନ୍ତ ବିରଳ । ଗ୍ରେ·ଲାଇନ୍ ବସ୍ କମ୍ପାନୀରେ ସମସ୍ତେ ଚାକିରି କରନ୍ତି ।

ଲସ୍‌ଆଞ୍ଜେଲ୍‌ସ୍ ଡାଉନ୍ ଟାଉନ୍; ଆକାଶସ୍ପର୍ଶୀ ସୌଧ । ସମୃଦ୍ଧ ବ୍ୟବସାୟ ଅଞ୍ଚଳ । କାନଭାସ୍‌ଟିର ଅତିରିକ୍ତ ଲମ୍ବ ଲମ୍ପସା ରାଜପଥକୁ କେଉଁଠି କ୍ଷତବିକ୍ଷତ, ବିବର୍ଣ୍ଣ କରିନାହିଁ । ସମସ୍ତ କଳାକାରର ତୂଳୀରେ ଅଙ୍କିତ ହେଲା ପରି ଲାଗେ ।

ପୃଥିବୀ ମାତାର ଢଳାଙ୍କି ଉଲଗ୍ନତା ଅସହ୍ୟ । ନାନା ବୃକ୍ଷ, ପୁଷ୍ପଗୁଳ୍ମ ସମ୍ଭାରରେ ପଥଧାର ମଣ୍ଡିତ; କିନ୍ତୁ ଏଠା ଯୁବତୀ ଅର୍ଦ୍ଧଉଲଗ୍ନ, ଅଭ୍ୟାସବଶତଃ ଦୃଷ୍ଟିସହ୍ୟ ହେଲେ ବି । ପରିହିତ, ପଳାୟିତ ଯୌବନକୁ ଧରି ଉଗ୍ର ଓ ଉଦ୍ଧତ ରଖିବାରେ ବ୍ୟଗ୍ର ।

ଏ କି ବୃକ୍ଷ ? ଅତି କାଳ ବରଗଛ ପରି ଦିଶେ, ପତ୍ର, ଫଳ ବି ସେହିପରି । ବଟବୃକ୍ଷ ଲାଳନ ପ୍ରୟାସ ହୋଇଛି ନା କ'ଣ ? କିନ୍ତୁ ଜନଗହଳି ସହରରେ ତାର ପ୍ରସାର ପାଇଁ ସ୍ଥାନ କାହିଁ ?

ଚୀନା ବଜାରରେ ଲୋହିତଭାରତୀୟ ବେଶ ପିନ୍ଧି କିଏ ଠିଆ ହୋଇଛି ? ଭ୍ରମଣକାରୀ ଫଟୋ ନେବେ, ଡଲାଟରେ ଦି ଡଲାର ଦେବେ, ଏଥିଲାଗି ଏ ସୁଆଙ୍ଗ ବେଶ ।

ସେହିପରି ଠିଆ ହୋଇଛି ଜଣେ ମଲ୍ଲ ଯୋଦ୍ଧା; ମୁଦ୍‌ଗର ପରି ବାହା, କବାଟ ପରି ଛାତି; ଶକ୍ତିଶାଳୀ, ସୁନ୍ଦର ପୁରୁଷ । ଯୁବତୀ ଚକ୍ଷୁ ସ୍ୱତଃ ଆକୃଷ୍ଟ ହୁଏ; ରୂପସୀମାନେ ତା ସହିତ ଠିଆ ହୋଇ ଫଟୋ ନେବାକୁ ଆଗ୍ରହୀ । ଆମ ଆଡ଼ ହେଲେ କନ୍ଦାର ନାଗରୀ ବ'କନ୍ତା । ଏଠି ଏସବୁ ଦୃଷ୍ଟିକଟୁ ହୁଏ ନାହିଁ ।

ସେହି ପ୍ରଚଣ୍ଡ, ଦୀର୍ଘ ପୁରୁଷ ନିଜକୁ ଖୁବ୍ ଶସ୍ତା କରିନାହିଁ । ତା ସହିତ ଫଟୋ ନେଲେ ଦଶ ଡଲାର୍ ଦେବାକୁ ହେବ । ନିଜର ଭୋଜନ ଲାଗି ତାକୁ ବହୁତ ବ୍ୟୟ କରିବାକୁ ହୁଏ । ସେ ଏହି ଉପାୟରେ ତାହା ଆଦାୟ କରେ ।

ଚୀନା, ଯାପାନୀ ଏଠି ଗୋଟେ ଗୋଟେ ବଜାର ଦଖଲ କରି ବସିଛନ୍ତି । ଚୀନ୍ ଶ୍ରମିକ ଯୋଗାଇ ଆମେରିକା ଗଢ଼ିଥିଲା । ସେ ଭଳି ଭୂମିକା ଲାଗି ଭାରତୀୟର ସୁଯୋଗ ନ ଥିଲା । ସେତେବେଳେ ଭାରତ ପରାଧୀନ । ସ୍ୱାଧୀନ ଭାବେ ଭ୍ରମଣ ସୁଯୋଗ ବି ଭାରତୀୟର ନ ଥିଲା । ସେତେବେଳେ ଭାରତୀୟ ବିଦେଶ ଗଲେ ଯାଉଥିଲେ ବିଲାତ । ବିଲାତଫେରନ୍ତାର ଇଜ୍ଜତ ଥିଲା । ଆମେରିକା ଆସିବାର ସୁଯୋଗ ସେତେବେଳେ ମିଳୁଥିଲା କାହିଁ ? ସ୍ୱାଧୀନତା ପରେ ଏବେ ଧାଡ଼ି ଲମ୍ବିଛି । ସବୁ ଭାରତୀୟ—ଡାକ୍ତର, ଇଞ୍ଜିନିୟର ବା ବ୍ୟବସାୟୀ । ଏଠି ଗୋଟେ ଅଧେ ଭାରତୀୟ ଦୋକାନ ଅଛି, ଚୀନା ବା ଯାପାନୀର ବଜାର ଭଳି ଭାରତୀୟ ବଜାର ନାହିଁ ।

ଯାପାନ ତ ଅର୍ଥନୀତି ଦିଗରୁ ଆମେରିକାର କାନ୍ଧରେ ଆସି ବସିଛି । ସେ କ୍ଷେତ୍ରରେ ତାକୁ ଟପ୍ କରିବା ଆମେରିକା ପକ୍ଷରେ ସମ୍ଭବ ହୋଇନାହିଁ । ଯାପାନୀ ମଟର ଗାଡ଼ି, ରେଡ଼ିଓ, ଟେଲିଭିଜନ୍, କାମେରା, କାସେଟ୍ ସବୁ ।

ଯାପାନ ଦିନେ ହାୱାଇ ବନ୍ଦରରେ ଆମେରିକୀୟ ଯୁଦ୍ଧ ଜାହାଜ ଡେଲା ଉପରେ ବିଶ୍ୱାସଘାତୀ ଆକ୍ରମଣ କରିଥିଲା; ଆମେରିକା ତାହା ଭୁଲିଯାଇଛି ବା ଭୁଲିଯିବାକୁ ବାଧ୍ୟ ହୋଇଛି । କାରଣ ସେ ତାର ପ୍ରତିଶୋଧ ତୀବ୍ରତର ଭାବେ ନେଇଥିଲା

ବୋଲ୍ । ଦ୍ୱିତୀୟ ମହାଯୁଦ୍ଧରେ ଯେତିକି ଲୋକ ମରିଥିଲେ, ଏକା ଆଟମ୍‌ବୋମା-ପାତରେ ଯାପାନ ଦେଶର ସେତିକି ଲୋକ ମରିଥିଲେ ବା ବିକଳାଙ୍ଗ ହୋଇ-ଥିଲେ । ଏଇ ଘୋର ନିଷ୍ଠୁର କାର୍ଯ୍ୟ ଲାଗି ଆମେରିକା ସମାଲୋଚନାର ଶରବ୍ୟ ହୁଏ ।

ଚୀନା ଥିଏଟର୍‌କୁ ଲାଗି ଚୀନା ବଜାର; ଆକର୍ଷଣୀୟ ଦ୍ରବ୍ୟ ସମ୍ଭାର ଦେଖି ଲଡା ଆବୋର ବସିଛି—ଏହାକୁ ନେବ, ତାକୁ ନେବ । କାହାକୁ କେମିତି ଦେବାକୁ ହେବ ।

ପଚ୍ଚରିଲି—ଯେ ଯୁଆଡ଼େ ଯାନ୍ତି, କ'ଣ ତୁମ ଲାଗି କିଛି ନେଇଆସନ୍ତି ?

'ସମସ୍ତଙ୍କୁ କ'ଣ ବିଦେଶଯାତ୍ରା ସୁଯୋଗ ମିଳେ ? ଯାହାକୁ ମିଳେ, ତା-ଠାରୁ ବନ୍ଧୁବାନ୍ଧବ, ଶୁଭାକାଂକ୍ଷୀ କିଛି ଆଶା କରନ୍ତି ।'

'କଥାଟା ସତ, କିନ୍ତୁ ଟଙ୍କା ପାହୁଲାଟିଏ ନଥିବା ଲୋକ ଯାହା ଇଚ୍ଛା କରିବ, ନେଇ ପାରିବ କିପରି ?'

'ବାଟଖର୍ଚ୍ଚରୁ କିଛି ଦେଇ ମନୋମତ ଜିନିଷ ଗୋଟେ ଅଧେ କିଣି ନେବା ।'

'ଭଲ କଥା, ଆପତ୍ତି ନାହିଁ; ହେଲେ ବାଟଖର୍ଚ୍ଚ ନିଅଣ୍ଟ ହେଲେ କିଏ ପିଠିରେ ପଡ଼ିବ ?'

ଲଡା ମୋ ଯୁକ୍ତି ବୁଝିଲା, ସ୍ମୃତି ସ୍ୱରୂପ ଗୋଟିଏ ମାତ୍ର ଜିନିଷ କିଣି ବୁଲି ବୁଲି ଚମତ୍କାର ବଜାରଟି ଦେଖିଲୁ । ତାପରେ ମୁଁ ହସି ହସି କହିଲି—ଆମେ ଭ୍ରମଣକାରୀ, ବୁଲି ବୁଲି ଦେଖିବା ଆମର କାମ । କେତେ ଅଳ୍ପ ଜିନିଷରେ ଚଳି ପାରିବା—ଏ ଆମ ଜୀବନଦର୍ଶନ । ଗ୍ରାହକଚକ୍ରରେ ଭୋଳ ହୋଇ ବାସ୍ତୁ ପରି ଆଧୁନିକ ଜିନିଷ ନେଇ ଗଦେଇବା ଧନିକ ଜୀବନର ନିତ୍ୟନୈମିତ୍ତିକ ଖେଳ ।

ଓଳା ଦେଇଥିବା ପାଉଁରୁଟି, ଫଳ ସହିତ ଛେନା ପିଣ୍ଡାଟିଏ କିଣି ଆମେ ମଧ୍ୟାହ୍ନ ଭୋଜନ ଶେଷ କଲୁ । ଦେଢ଼ଘଣ୍ଟା ବିଶ୍ରାମ ସମୟ ଆମର ଏହି ପ୍ରକାରେ କଟିଲା ।

ତାପରେ ବସ୍ ଡ୍ରାଇଭର୍ ମାଇକ୍‌ରେ କହିଲା, ଏ ଷ୍ଟାର୍ ଅଞ୍ଚଳ; ଏସବୁ ବିଶ୍ୱପ୍ରସିଦ୍ଧ ଷ୍ଟାର୍ ଭବନ । ଷ୍ଟାର୍ ଯାଇ କୋଠି ଭିତରେ, ଭବନ ବାହାରଟା ଦେଖି କି ଲାଭ ? ଆମେରିକାରେ ତ ତହୁଁ ବଳି, ତହୁଁ ବଳି ଭବନ ।

ଷ୍ଟାର୍‌ମାନେ ନିଜ ନିଜପାଇଁ ଲାଗି ଭିତରେ ରହନ୍ତି, ଭାରତରେ ଯେପରି, ଆମେରିକାରେ ସେହିପରି । ବଜାରରେ ଟିକିଏ ଶାନ୍ତିରେ କ'ଣ ଛୁଡ଼ା କରିଦେବେ ସିନେମା ପାଗଳ ଲୋକେ ? ଗ୍ଲାସ ଦେଖି ଯେ ବାଇ, ଯାହାର ଗ୍ଲାସ, ତାକୁ ଦେଖି କିଏ ଉନ୍ମତ୍ତ ନ ହେବ ?

ଏକ ପାହାଡ଼ୀ ଢାଲୁରେ ଷ୍ଟାର୍‌ଘେନ ଷ୍ଟାର୍‌କାଣ୍ଟେନ୍ ଦେଖିଲୁ, ନିସ୍ତବ୍ଧ ଷ୍ଟାର୍ ରଙ୍ଗମଞ୍ଚ ବି । ରିକ ପରବର୍ତ୍ତୀ ପ୍ରଶାନ୍ତ ମହାସାଗର କୂଳର ପାହାଡ଼ମାଳା ଏ । ଷ୍ଟାର ଅଞ୍ଚଳଟି ଏକ ପ୍ରାକୃତିକ ଦୃଶ୍ୟପୂର୍ଣ୍ଣ ସ୍ଥାନରେ ଅବସ୍ଥିତ । ଚତୁର୍ଦ୍ଦିଗକୁ ଏକ ତୃଷ୍ଣାତୁର ଦୃଷ୍ଟି ପକାଇ ଆମେ 'ବେଭରଲି ହିଲ' ଉପରକୁ ଉଠିଲୁ, ଏକ ସ୍ୱତନ୍ତ୍ର ଗାଡ଼ିରେ । ଏଇ ଦୂରବିଳମ୍ବୀ ପାହାଡ଼ ଓ ତାର ଉପତ୍ୟକାର ଏକ ବିପୁଳ ଅଞ୍ଚଳରେ ହଲିଉଡ଼୍ ଷ୍ଟୁଡିଓ ଅବସ୍ଥିତ । ଏଠି ଯାବତୀୟ ଆମେରିକୀୟ ସିନେମା ନିର୍ମିତ ହୁଏ । ସିନେମା ନିର୍ମାଣରେ କି କି କୌଶଳ ଅବଲମ୍ବନ କରାଯାଏ, ତାହା ଦେଖିବା ଲାଗି ବହୁ ଯାତ୍ରୀ ଆସିଛନ୍ତି, ଓଧ ସଙ୍ଗେ ବଣଭୁଆ ବାଇ ହେଲା ପରି ସେମାନଙ୍କ ସଙ୍ଗେ ଆମେ ।

ପାହାଡ଼ର ଗୋଟିଏ ସ୍ତରରେ ବୁଲି ବୁଲି ଦେଖିଲୁ—ମେଘଭରା ଆକାଶ, ପ୍ରଚଣ୍ଡ ଘଡ଼ଘଡ଼ି ଚଡ଼ଚଡ଼ି, ପ୍ରବଳ ବର୍ଷା । ତା ପରେ ନଦୀରେ ଘୋର୍ ବନ୍ୟା, ପ୍ରଚଣ୍ଡ ସ୍ରୋତରେ ଘର ତରୁସବୁ ଭାସିଗଲେ; ଆଉ ଘଡ଼ିକ ପରେ ସବୁ ନିସ୍ପନ୍ଦ । ମେଘ କାହିଁ ? ପ୍ରଖର ଖରା, ଏ କ'ଣ ଇନ୍ଦ୍ରଜାଲ ମାୟା ?

ଅନ୍ୟ ଏକ ସ୍ତରରେ ଦେଖିଲୁ—ବରଫ ଝଡ଼ ପ୍ରବାହ । ପ୍ରବଳ ତାର ଗତି, ପ୍ରଚଣ୍ଡ ଶବ୍ଦ । ତୁଷାରଭରା ପ୍ରଭଞ୍ଜନ, ମନେ ମନେ ଆତଙ୍କ ସୃଷ୍ଟି କରୁଥାଏ । ପ୍ରକୃତରେ ଏ ତୁଷାରକଣା ନୁହେଁ, ଶ୍ୱେତ ସ୍ୱଚ୍ଛ ଚକ୍‌ଖଡ଼ି ଗୁଣ୍ଡ; ଯାନ୍ତ୍ରିକ କୌଶଳରେ ଏସବୁ ମାୟା ଦେଖାଇ ଦିଆ ହେଉଥାଏ ।

ଅନ୍ୟ ଏକ ସ୍ଥାନରେ ଦେଖିଲୁ—ଲୋକଟିଏ ଘୋଡ଼ା ପିଠିରେ ବସି ଆଗକୁ ପଛକୁ ଦୋହଲୁଛି । କିନ୍ତୁ ଦୂରକୁ ଉଡ଼ିଗଲା ପରି ଦିଶୁଛି ।

ସିଂହ, ବାଘ, ଭାଲୁ, ଗଣ୍ଡା, ଅଜଗର, ଅହିରାଜ, କୁମ୍ଭୀର, ତିମି, ଡଲ୍‌ଫିନ୍, ସିଲ୍— ପିତୁଳା ସବୁ, ଫଟୋରେ ସଜୀବ ଜନ୍ତୁ ପରି ଦିଶନ୍ତି, ହିଂସ୍ର ଜନ୍ତୁଙ୍କ ଗର୍ଜନରେ ଅରଣ୍ୟ କମ୍ପି ଯାଏ । ତିମି ଜଳଭାଗକୁ ଦି ଭାଗ କରି ଉଠେ । ଆକ୍‌ସିଡେଣ୍ଟ୍, ପୋତ ଯୁଦ୍ଧ, ବୋମା ମାଡ଼, ଜାହାଜ ଭଙ୍ଗ, ବ୍ୟୋମଯାନ ପାତ; ସବୁ ପ୍ରକୃତ ଘଟଣାକୁ କେନ୍ଦ୍ର କରି ଫଟୋ ନିଆଯାଇ ନାହିଁ, ଫଟୋ ନେବା

କୌଶଳରେ ଦେଖାଇ ଦିଆ ହୋଇଅଛି । ଏହି ପାହାଡ଼ରେ ବନ୍ଧୁ ଉଦ୍ୟାନ । କିନ୍ତୁ ସିନେମାରେ ଦେଖାଇ ଦିଆହୁଏ କୃତ୍ରିମ ଉଦ୍ୟାନ, କୃତ୍ରିମ ପୁଷ୍ପ, ଭ୍ରମର, ପ୍ରଜାପତି ।

ଜଳି ଉଠିଲା ହଠାତ୍ ଏ କି ଅଗ୍ନି ଶିଖା ? ସବୁ ଦଗ୍ଧ କରିଦେବ । କିଣ ? ଦେଖିଲି ବେଳକୁ ଯନ୍ତ୍ରର କାରସାଦି ଏ, ଅବହେଳାର ଯୋଗ୍ୟ ଏକ ଅଗ୍ନି ଶିଖା କାଚ ଘରେ ଜଳୁଛି । ଘୋର ବୋମା ପାତ ପରେ ନଗରରେ ତୀବ୍ର ଅଗ୍ନି-କାଣ୍ଡ ଦେଖାଇବା ଲଗି ଏ ଯନ୍ତ୍ରଟି ବ୍ୟବହୃତ ହୁଏ । ସେହିପରି ଅଗ୍ନ୍ୟୁତ୍ପାତ ଓ ଭୂମିକମ୍ପ ମଧ୍ୟ ଏ ଯନ୍ତ୍ର ସାହାଯ୍ୟରେ ଦେଖାଇ ଦିଆହୁଏ ।

ପ୍ରଚଣ୍ଡ ଖରା । ପାହାଡ଼ରେ ବୁଲି ବୁଲି ପାଦ ଥକିଲାଣି, କିଣ ଦେଖିବ ? ଦୃଶ୍ୟର ବେଶୀ ଭାଗ ସର୍କସ୍, ନଇଲେ ମ୍ୟାଜିକ୍ । ଏଠିକି ସେଠିକି ଧାଉଁଥାଅ, ମଜା ଦେଖୁଥାଅ ରେ ବାବା । ଶତ ସହସ୍ର ବୁଲି ବୁଲି ଉପଭୋଗ କରୁଥାନ୍ତି । ଗୋଟିଏ ଗଛ ମୂଳେ ବସିପଡ଼ି ଭାବିଲି—ଗୋଟା ସିନେମା ତାହେଲେ ଖାଲି ଗୁଇ, ଭୁଛା ମିଛ । ଏଇ ତାହା ମିଛ ଲଗି ଏତେ ଦଉଡ଼ଧାପଡ଼, ଏତେ ପଇସା ଖର୍ଚ୍ଚ ।

‘ କବି ଯେ ସତ ମିଛ କରି କହନ୍ତି
କବିତା ଗୁରୁଣରେ ମନ ମୋହନ୍ତି ଗୋ ’ ।

ସିନେମା କିଣ କବିର ରଚନା ? ନୁହେଁ ତ ଆଉ କିଣ ? କବି ଭାବାପନ୍ନ ନ ହେଲେ ସିନେମା ଗଲ୍ପଟିଏ ଫାନ୍ଦି ପାରିବ କାହୁଁ ? ଭାଷା ଉପରେ ସେମିତି ଦଖଲ ନ ଥିଲେ ସାର୍ଥକ ସିନେମା ସ୍କ୍ରିପ୍ଟ୍‌ଟିଏ ଲେଖି ପାରିବ କାହୁଁ ?

ପୃଥିବୀର ତିନି ଜଣ ଶ୍ରେଷ୍ଠ କବି ହିଁ ନାଟ୍ୟକାର— କାଳିଦାସ, ସେକ୍‌ସ୍‌-ପିଅର୍, ଗେଟେ । ସିନେମା ନାଟକ ଲେଖକ ସେହିପରି ଜଣେ ନାଟ୍ୟକାର, ସିନେମା ଏକ ଦୃଶ୍ୟନାଟ୍ୟ, ପ୍ରକୃତ ନାଟକ ଅପେକ୍ଷା ଅଧିକ ଉପଭୋଗ୍ୟ । ଯାହା ସୀମିତ ରଙ୍ଗମଞ୍ଚରେ କଳ୍ପନା କରିଯାଇ ନ ପାରେ, ତାହା ଅବଳୀଳାରେ ସିନେମା-ରେ ଦେଖାଇ ଦିଆ ହୁଏ—ଭୂମିକମ୍ପ, ଅଗ୍ନ୍ୟୁତ୍ପାତ, ଜଳ ଯୁଦ୍ଧ ବା ଆକାଶ ଯୁଦ୍ଧ ଇତ୍ୟାଦି ।

ବିଶ୍ରାମ ବେଳେ ପୁଣି ଗୋଟିଏ ପ୍ରଶ୍ନ ମୋ ମନରେ ଉଠିଲା—ସିନେମା ଷ୍ଟାର୍‌ମାନେ କିଣ ସବୁଠାରୁ ସୁଖୀ ପ୍ରାଣୀ ? ରାଜରାଣୀ, ପୁଞ୍ଜିପତିର ପତ୍ନୀ ଅପେକ୍ଷା ଅଧିକ ଭାଗ୍ୟବତୀ ? ଏଇ ପ୍ରଶ୍ନ ଅନେକ ମନରେ ଉଠେ ; ସେମାନେ ହଲିଉଡ୍ ବା ବେଭର୍ଲି ହିଲ୍‌ସ୍‌କୁ ସ୍ୱର୍ଗଭୂମି ଓ ସିନେମା ଷ୍ଟାର୍‌ମାନଙ୍କୁ ଉର୍ବଶୀ, ମେନକା,

ତିଲୋତ୍ତମା ଆଦି ସ୍ୱର୍ଗକନ୍ୟା ପରି ସୁନ୍ଦରୀ, ସୁଖିନୀ ମନେ କରନ୍ତି, ସତେ ଯେପରି ସଂସାର ତାପ ସେମାନଙ୍କୁ ସ୍ପର୍ଶ କରେନାହିଁ, ସେମାନଙ୍କ ମନରେ କିଛି ହେଲେ ଦୁଶ୍ଚିନ୍ତା ପଶେ ନାହିଁ ।

ଦୁର୍ଭୋଗ ନାହିଁ, ଦୁଶ୍ଚିନ୍ତା ନାହିଁ, ଏପରି ପ୍ରାଣୀ କିଏ ସଂସାରରେ ଅଛି ? ଏ ଧାରଣା କିପରି ନିରର୍ଥକ, ଏ ପ୍ରଶ୍ନ କିପରି ଅବାନ୍ତର, ହଲିଉଡ୍ ଷ୍ଟାର୍-ମାନଙ୍କ ଜୀବନକାହାଣୀ ପଢ଼ିଲେ ବୁଝାଯାଏ ।

ମନ ଚହଲେଇ ଦେଇଥିବା, ପୃଥିବୀରେ ଚମକ ଖେଳାଇ ଥିବା କେତେ ଜଣ ଆମେରିକୀୟ ନକ୍ଷତ୍ରଙ୍କ ଜୀବନ କାହାଣୀ ସଂକ୍ଷେପରେ ଲିପିବଦ୍ଧ କଲି ।

## ଇସ୍ତର୍ ଉଇଲିୟମ୍

ଇସ୍ତର୍ ଥିଲା ହୋଇଥିଲା ଜଣେ କୋଟିପତିକୁ । ପୃଥିବୀର ଯାବତୀୟ ଭୌତିକ ସୁଖସମ୍ପଦ ତା ପାଦ ତଳେ ଆସି ଲୋଟିଥିଲା । ତିନି ଗୋଟି ସନ୍ତାନର ଜନନୀ । ଷ୍ଟାର୍ ଭାବରେ ଉଜ୍ଜ୍ୱଳ ଯଶ ପ୍ରତିଷ୍ଠାର ଅଧିକାରିଣୀ । ସବୁ କିଛି ସୁଖ-ସମ୍ପଦ ମଧ୍ୟରେ ସେ ବିବେକବୁଦ୍ଧି ଉଜ୍ଜ୍ୱଳ ରଖିଥିଲା । ତା ସୌନ୍ଦର୍ଯ୍ୟର ଗ୍ରାହକ ବହୁ ; କିନ୍ତୁ ସନ୍ତାନମାନେ ବୁଝିଆର ନ ହେବା ପର୍ଯ୍ୟନ୍ତ ସେ ଦ୍ୱିତୀୟ ଥର ବିବାହ କରି ନ ଥିଲା ।

ତାର ବହୁ ପ୍ରେମିକ ; ସେ ଏକମାତ୍ର ଷ୍ଟାର୍, ଯେ ଖୋଲାଖୋଲି ଭାବେ ନିଜ ପ୍ରେମିକମାନଙ୍କ ନାମ କହେ, ସେମାନଙ୍କ ଗତିବିଧି ବର୍ଣ୍ଣନା କରେ । ଲଜ୍ଜା ବା ସଙ୍କୋଚ ତାର ଅନ୍ତରାୟ ହୁଏ ନାହିଁ, ଅତି ମାତ୍ରାରେ ସ୍ପଷ୍ଟବାଦିନୀ ।

ଜୀବନର ଦ୍ୱିତୀୟ ପର୍ବ ତାର ଆଶାତୀତ ଭାବେ ଭିନ୍ନ ; କେହି କଳ୍ପନା ବି କରିପାରେ ନାହିଁ । ଏଇ ଅଭିଜାତ ସୁଖ ଦିନେ ତାକୁ ତିକ୍ତ ଲାଗିଲା । ଯୌବନ ଶ୍ରୀ ମଉଳି ଗଲା ଏବେ । ଏହି ଗତାନୁଗତିକ ଜୀବନରୁ ସେ କିଛି ହେଲେ ଆନନ୍ଦ ପାଇଲା ନାହିଁ ।

ସେହି ଜ୍ୟୋତିର୍ଲୋକରୁ ସେ ଖସି ଆସିଲା ଘୋର ଅନ୍ଧକାର ରାଜ୍ୟକୁ । ଦୁଃଖୀ ଗରିବ, ବିକଳାଙ୍ଗଙ୍କ ସେବା ଲାଗି ସେ ଜୀବନ ଉତ୍ସର୍ଗ କଲା । କାହିଁ ସେହି ଅତ୍ୟୁଜ୍ଜ୍ୱଳ ବସ୍ତ୍ରାଳଙ୍କାରଧାରିଣୀ, କାମୋଦ୍ଦୀପନାମୟୀ ଅପ୍ସରା, କାହିଁ ସେହି ପରଦୁଃଖମୋଚନତତ୍ପରା, କରୁଣାମୟୀ ଜନନୀ ! ଏ ପରିବର୍ତ୍ତନ କିପରି ହେଲା ? କିଏ ଘଟାଇଲା ?

## ଭେରୋ ହୃବା ରାଲ୍‌ଷ୍ଟନ୍

ଅଭିନୟର ରାଣୀ; ୩୬ଟି ଫିଲ୍ମରେ ସେ ସାର୍ଥକ ଅଭିନୟ କରିଥିଲେ । ଆଇସ୍ ସ୍କେଟିଂରେ ତାଙ୍କର ଖାରତ୍ୱ ପ୍ରକଟିତ ହୋଇଥିଲା । ପ୍ରିୟତମ ପତି; ପତିଙ୍କ ସହିତ ବିଶ୍ୱ ପରିକ୍ରମା କରି ପରମ ଆନନ୍ଦ ଲାଭ କରିଥିଲେ ।

ହଠାତ୍ ଦିନେ ସ୍ୱାମୀଙ୍କର ମୃତ୍ୟୁ ହେଲା; ସେ ସ୍ୱାମୀଙ୍କର ଅର୍ଜିତ ସମ୍ପତ୍ତି (୧୦ ନିୟୁତ ଡଲାର)ର ମାଲିକାଣୀ ହେଲେ; ଦ୍ୱିତୀୟ ବିବାହ କଲେ ନାହିଁ କିମ୍ବା ଅଭିନୟକ୍ଷେତ୍ରରେ ଆଉ ଅବତୀର୍ଣ୍ଣ ହେଲେ ନାହିଁ । ଆହ୍ୱାନ ଆସିବାରୁ ସେ କହିଲେ—ବଗିଚାରେ ଗଛ ଲଗାଇ ଫୁଲ ଫୁଟାଇବାରେ ମୋର ଆନନ୍ଦ, କାନ୍ଥ ପେଣ୍ଟିଂ କରିବାରେ ମୋର ଆନନ୍ଦ, ଅଭିନୟକୁ ଆଉ ମନ ବଳୁ ନାହିଁ ।

ତୁମେ ଜୀବନରେ ସର୍ବାଧିକ ଆନନ୍ଦ କେବେ ପାଇଛ ପଚାରିବାରୁ ସେ କହିଲେ—ଏବେ । ମଣିଷ ପାର୍ଥିବ ସୁଖ ବୋଲି ଯାହା ଲୋଡ଼େ ମୁଁ ସବୁ ଉପଭୋଗ କରିଛି । ନିବୃତ୍ତିର ଏବେ ଆନନ୍ଦକୁ ଯେ ଲାଗେ ନାହିଁ ।

## ବେଟ୍ଟୀ ହଟନ୍

ଖୁବ୍ ଆଲୋକିତ ଦିଶେ, କିନ୍ତୁ ହଲିଉଡ୍‌ର କେତେକ ସ୍ଥାନ ନିବିଡ଼ଭାବେ ଅନ୍ଧକାରମୟ । ଷ୍ଟାର୍‌ମାନେ ବହୁତ ରୋଜଗାର କରନ୍ତି, ଚରମ ଉପଭୋଗ ଓ ଆନନ୍ଦ ମଧ୍ୟରେ ଥାନ୍ତି । କିନ୍ତୁ ସାରା ସଂସାରରେ ଯେପରି ହଲିଉଡ୍‌ରେ ସେହିପରି କେତେକ ଘୋର ଦୁଃଖିନୀ ଅଛନ୍ତି । ବେଟ୍ଟୀ ହଟନ୍ ସେଥି ମଧ୍ୟରୁ ଜଣେ ।

ବଡ଼ 'ଉଠ୍-ପଡ଼୍' ଜୀବନ ତାର । ସପ୍ତାହକେ ୭୫ ଡଲାର୍‌ରୁ ବଢ଼ି ସେ ବର୍ଷକୁ ରୋଜଗାର କରିଥିଲା ଅଢ଼େଇ ଲକ୍ଷ ଡ଼ଲାର୍, ପ୍ରଥମ ଶ୍ରେଣୀର ଗାୟିକା, ଅଭିନେତ୍ରୀ ।

ଶେଷକୁ ଦୁର୍ଭାଗ୍ୟର ଶିକାର ହୋଇଥିଲା ସେ । ତା ହାତ ଭାଙ୍ଗି ଯାଇ-ଥିଲା, ଚୋଟି ପଡ଼ି ଯାଇଥିଲା । ତାର ଖାମଖିଆଲୀ ଭାବ ବି ତାର କାଳ ହୋଇ-ଥିଲା । ଅଭିନେତ୍ରୀ ତାଲିକାରୁ ବାଦ୍ ପଡ଼ିଯିବାରେ ତାର ଦୁର୍ଦ୍ଦଶାର ଚରମ ଅଧ୍ୟାୟ ଆରମ୍ଭ ହେଲା । ସେ ସଞ୍ଚୟ କରି ଜାଣି ନ ଥିଲା : ମନ ଇଚ୍ଛା ଖର୍ଚ୍ଚ କରୁଥିଲା, ଆଖି ବୁଜି ଦାନ କରି ଦେଉଥିଲା । ତାର କୁରଭ୍ୟାସ ଫଳରେ ସେ ଦେଢ଼ ଲକ୍ଷ ଡ଼ଲାର୍ କରଜ କଲା, ଶେଷକୁ ନିଜକୁ ଦେବାଳିଆ ଘୋଷଣା କଲା,

ଛଅଟି ସ୍ୱାମୀ ମଧ୍ୟରୁ କେହି ଏ ଆପଦରେ ଆସି ପାଖରେ ଛିଡ଼ା ହେଲେନାହିଁ । ଘୋର ନୈରାଶ୍ୟ ଓ ଡ୍ରଗ୍ ମଧ୍ୟରେ ତାର ଜୀବନଦୀପ ଲିଭି ଯାଇଥିଲା ।

## ଗ୍ଲୋରିଆ ଜିନ୍

ସୁନ୍ଦରୀ, ସୁଗାୟିକା । ଅଭିନୟ ନୈପୁଣ୍ୟ ଯୋଗୁଁ ଦିନେ ତା ଯଶ ମୁଖେ ମୁଖେ ମୁଖରିତ ହେଉଥିଲା । କିନ୍ତୁ ଫିଲ୍ମ କର୍ତ୍ତାମାନେ ତାର ସ୍ୱତନ୍ତ୍ର ନୈତିକ ଦୃଷ୍ଟିକୋଣ ଓ କଳାରୁଚି ପ୍ରତି ଆଖି ବୁଜି ଦେଇଥିଲେ । ନରହନ୍ତା ଭାବେ ଅଭିଯୁକ୍ତ ଜଣେ ବ୍ୟକ୍ତିର ପ୍ରେମିକା ଭାବେ ଅଭିନୟ କରିବାକୁ ସେ ଏକ ପ୍ରକାର ବାଧ୍ୟ ହୋଇଥିଲା ; ଇଚ୍ଛାବିରୁଦ୍ଧ ଅଭିନୟ ବିଫଳ ହିଁ ହୋଇଥିଲା ଓ ଷ୍ଟାର୍ ଭାବରେ ତାର ବଦ୍‌ନାମ ରଟିତ ହୋଇଥିଲା ; ଭିତର ମର୍ମ କିଏ ବୁଝେ ? ଅପମାନରେ ଜିନ୍ ଫିଲ୍ମ ଅଭିନୟ ପରିତ୍ୟାଗ କଲା ; ସେ ଜୀବନ ବଞ୍ଚେଇବା ଲାଗି ହୋଟେଲ୍ ହୋଷ୍ଟେସ୍ ହେଲା ଓ ଜଣେ ଇଟାଲୀୟ ତରୁଣ ସହିତ ପ୍ରେମରେ ପଡ଼ିଲା । ପୁଅଟିଏ କୋଳରେ ଦେଇ ପତି ତାର କୁଆଡ଼େ ଗଲା ଯେ ଗଲା । ଆଉ ଧରାଛୁଆଁ ଦେଲା ନାହିଁ । ଛକଷ୍ଟ କରି ଜିନ୍ ପୁଅଟିକୁ ମଣିଷ କଲା ।

## ଜେନିଫର୍ ଜୋନ୍ସ୍

ପ୍ରଥମ ଅଭିନୟରେ ପୁରସ୍କାର ଲାଭ କରେ କିଏ ? ଜୋନ୍‌ସ୍ ପରି ଭାଗ୍ୟବତୀ । ଅଳ୍ପ କାଳ ମଧ୍ୟରେ ତା ସୌଭାଗ୍ୟକୁ ଏକାଡ଼େମୀ ପୁରସ୍କାର ମଧ୍ୟ ସେ ଲାଭ କରିଥିଲା ।

ବହୁ ବିବାହ ଓ ଛାଡ଼ପତ୍ର ଜେନିଫର୍ ଜୀବନର ଏକ ନିତ୍ୟନୈମିତ୍ତିକ ଅଙ୍ଗ । ବହୁ ପୁରୁଷସଙ୍ଗିନୀ କାମିନୀ ସେ । ପୁରୁଷ ସଙ୍ଗ ଲିପ୍‌ସା ତାକୁ ଅବିରତ ବିଭ୍ରାନ୍ତ କରୁଥିଲା । ଅପରିମିତ ମଦ୍ୟପାନ ଓ ଅଗଣିତ ପୁରୁଷ ସଙ୍ଗ— ଏ ଦୁଇ ତାର ମୁଖ୍ୟ ବିନୋଦନ । କାମାତ୍ମକ ଅଭିନୟରେ ତାର ସମାସ୍କନ୍ଧ ଆଉ କେହି ନ ଥିଲେ । ତରୁଣ ସମାଜକୁ ଉଦ୍‌ବେଳ ଓ ଉତ୍‌କୂଳ କରିଥିଲା ସେ । ଦର୍ଶକସମାଜ ତାକୁ ଭଲ ପାଉଥିଲେ, ଘୃଣା କରିବା ପାଇଁ । ଘୃଣା କରୁଥିଲେ ଭଲ ପାଇବା ପାଇଁ ।

ଖିଆଲ୍‌ର ଏକ ଅବତାର ସେ । କେତେବେଳେ ଯେ କଣ କରେ, ତାର ଠିକ୍ ଠିକଣା ନାହିଁ । ଥରେ ବହୁତ ପିଲ୍ ଖାଇ ଏକ ପାହାଡ଼ ତଳେ ସମୁଦ୍ର କୂଳେ ସେ ଅଜ୍ଞାନ ହୋଇ ପଡ଼ିଥିଲା । ଲୋକେ ତା ମୁହଁ ଦେଖି ଚହ୍ନିଲେ ; ବହୁ

ହେପାଜତ ପରେ ତାର ଚେତା ଫେରିଲା । ଚିକିତ୍ସା ପରେ ପୁଣି ଉନ୍ମତ୍ତ ଯୌବନ ଓ ପ୍ରଚଣ୍ଡ କାମ ଲିପ୍‌ସାର ଉଦ୍ରେକ ଘଟିଲା ।

ବେଭର୍‌ଲି ହିଲ୍‌ସ୍‌ର ପ୍ରଥମ ସମ୍ମାନିତା ମହିଳା । ଯଶର ଚୂଡ଼ାନ୍ତ ସ୍ତରରେ ଥିଲା ବେଳେ ସେ ହଠାତ୍ ଅଭିନୟ ତ୍ୟାଗ କଲା । ତାର ଶେଷ ଜୀବନ ଶୋଚନୀୟ । ଏକମାତ୍ର କନ୍ୟା ୨୨ ତାଲା କୋଠାରୁ ଡେ଼ଇଁ ଆତ୍ମହତ୍ୟା କଲା । କନ୍ୟାର ଆତ୍ମ-ହତ୍ୟା ପରେ ଜେନିଫର ଜୋନ୍‌ସ୍‌ର କୌଣସି ପତ୍ତା ମିଳିଲା ନାହିଁ ।

# ଷୋହଳ

## କାଂସସ୍ ନଗର

ଲସ୍ ଆଞ୍ଜେଲ୍‌ସ୍‌ରେ ଆମର ଶେଷ ଦେଖା ଦୃଶ୍ୟ—ହର୍ଣ୍ଟିଂଟନ୍ ବିଚ୍; ମାରେ୍ରଦଙ୍କ ରହଣୀ ସ୍ଥାନ। କୂଳ ଘୁଞ୍ଚ ବେଲା ପଣ ପ୍ରଶସ୍ତ, ସ୍ୱଚ୍ଛ ବାଲୁକାଭରା। କାକରପଡ଼ିଲା ସକାଳର ଉଷୁମ ଉଷୁମ ଖରା ପୋହ୍ଲାଉଛନ୍ତି ସି-ଗଲ୍—ଆଟ୍ଲାଣ୍ଟ ପକ୍ଷୀ ପଣ ଉପ୍ତନ୍ନ୍ୟ; ରାଜହଂସ ଆକୃତିର, ପ୍ରକୃତିର ମଧ୍ୟ। ଲହଡ଼ି ସାର୍ଫିଂ, ବଲ୍ ଫିଙ୍ଗାଫିଙ୍ଗି ହୋଇ କେତେ ଭେଙ୍ଗି ସ୍ୱରେ ଖେଳୁଥାନ୍ତି କେତେ ସମୁଦ୍ର ସଖା, ସଖୀ—କାଲିଫର୍ଣ୍ଣିଆ ବେଲାର ଅତି ଅନ୍ତରଙ୍ଗ ତରୁଣ ତରୁଣୀ। ଭାସିଗଲା ବଲ୍ ହସି ହସି କୂଳକୁ ପକାଇ ଦେଇ ଏଇ କ୍ରୀଡ଼ାର ସକ୍ରିୟ ଦ୍ରଷ୍ଟା ସାଜିଥାଏ ସମୁଦ୍ର।

ବେଲାରେ ଏକ ଅଗ୍ରବର୍ତ୍ତୀ ଜେଟିରେ ବାଲି ଉପରେ ଶରୀର ଗଡ଼ାଉ-ଥାନ୍ତି କେତେ। କୂଳର ସିମେଣ୍ଟ ଚୂଲାରେ ବଡ଼ ବଡ଼ ମାଛ ପୋଡ଼ି ଖାଉଥାନ୍ତି କେତେକ। ପାଉଁରୁଟି ସାଙ୍ଗରେ। ଏ ପ୍ରାକୃତିକ ଭୋଜିର ମଉଜିଆ ସଂଖ୍ୟା ଅଳ୍ପ ନୁହେଁ।

ଏ ବେଳାରେ ଧନୁଷ୍କୋଟୀ ବେଲାର କାଳିଦାସଙ୍କ ତାଳ ବା ତମାଳ ନାହିଁ। ମୋଟା ମୋଟା ଝଙ୍କାଳିଆ ପାମ୍ ଓ ଖର୍ଜୁର ଅଛି। ପାଇନ୍ ସହିତ ତାହା ହିଁ ବେଲାଶ୍ରୀକୁ ଦେଇଛି ଏକ ସ୍ୱାତନ୍ତ୍ର୍ୟ।

ଡଣ୍‌ନେ ଅଧା ଦେଖା; ହଲିଉଡ୍ ଦେଖାରୁ କହୁ ହେଲେ ତୃପ୍ତି ମିଳିଲା ନାହିଁ। ଆଖିରେ ନାଚୁଥିଲେ ସିଲ୍, ତମି, ଡଲ୍‌ଫିନ୍, ସ୍ନେହମୟୀ ଜନୀ, ଉଦାର ମନୀଷୀ ମାରେ୍ରଦ, କନ୍ୟା ମୋନାଲିସା; ପ୍ରଶାନ୍ତ ସାଗର ଉପରେ ଶେଷ ଦୃଷ୍ଟି ପକାଇ ଆମେ ପ୍ଲେନ୍‌ରେ ଚଢ଼ିଲୁ; ପଶ୍ଚିମରୁ ପୂର୍ବ ଆମେରିକାକୁ ଆମର ଗତି। ଲସ୍ ଆଞ୍ଜେଲ୍‌ସ୍ ଆଉ ସେଣ୍ଟ୍‌ଲୁଇସ୍ ମଧ୍ୟବର୍ତ୍ତୀ ସହର କାଂସସ୍ ସିଟି; ବନ୍ଧୁବାନ୍ଧବଙ୍କ ରହଣୀର ସୁଯୋଗ ନେବା ଲାଗି ଆମ ଭ୍ରମଣ ନିର୍ଘଣ୍ଟ। ସ୍ଥାନ ହିସାବରେ ଆମେରିକାରେ କାଂସସ୍‌ର କିଛି ସ୍ୱତନ୍ତ୍ର ଆକର୍ଷଣ ନ ଥିଲେ ବି ତାହା କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିଲା।

ନାନା କାରଣରୁ କାନ୍‌ସସ୍ ଆମର ପରିଚିତ, ପ୍ରିୟ । ମୋ ଝିଅଟି ଗୀତା ପଢ଼ୁଥିଲା ଏଠା ମେଡ଼ିକାଲ୍ କଲେଜ୍‌ରେ, ପୁତୁରା ନନ୍ଦ ଏଠା ଇଞ୍ଜିନିୟରିଂ କଲେଜ୍‌ରେ । ରତ୍ନା ବଯରୁର୍ ସହିତ ମୋର ପାର୍ଜିକ ପରିଚୟ । ସେ ଇଗ୍ୱର ସଂପର୍କୀୟା, ସେ ଓ ନିଖିଳ ଆମକୁ କିଛି ବୁଲାଇ ଦେଖାଇବେ, ଏ ଭରସାରେ ଆମେ କାନ୍‌ସସ୍‌ରେ ଓହ୍ଲାଇଲୁ ।

ରତ୍ନା ବିଧବା । ତା ସ୍ୱାମୀ ବମ୍ବେଇର ଏକ ସିମେଣ୍ଟ୍ ଫ୍ୟାକ୍ଟରୀରେ ଜଣେ ବଡ଼ ଅଫିସର୍ ଥିଲେ । ଉଭୟେ ଆମେରିକାରେ ଝିଅ ଜୋଇଁଙ୍କ ପାଖେ ରହି ବୁଲି ବୁଲି ଆମେରିକା ଦେଖୁଥିଲେ ; ନାଏଗ୍ରା ଭ୍ରମଣ କାଳରେ ଏକ ହୃଦୟ-ବିଦାରକ ଦୁର୍ଘଟଣା ଘଟିଗଲା । ସ୍ୱାମୀ ସ୍ତ୍ରୀ ହାତ ଧରାଧରି ହୋଇ ଚାଲିଥିଲା ବେଳେ ହଠାତ୍ ସ୍ୱାମୀର ହାତ ଖସିଗଲା । ସେ କଚ୍ଛିଡ଼ି ହୋଇ ତଳେ ପଡ଼ି-ଗଲେ— ଅଚେତ ; ପରୀକ୍ଷା କରି ଦେଖିଲାବେଳକୁ ମୃତ, ହୃଦରୋଗରେ । ବିଧବା ବନ୍ଧୁବାନ୍ଧବଙ୍କ ସାହାଯ୍ୟରେ ବିଦେଶରେ ଶୁଦ୍ଧିକ୍ରିୟା ହେଲା ।

ଏକମାତ୍ର ସନ୍ତାନ କନ୍ୟା—ସୋନା, ବିଭା ହୋଇଥିଲା ମୋହନଙ୍କୁ ; ମୋହନ ଲିଉକୁମିୟାଁ ଡାକ୍ତର, ଭଲ ରୋଜଗାରୀ । କାନ୍‌ସସ୍ ନଗରୀରେ ଭଲ ଘର ଖଣ୍ଡିଏ କିଣି ରହିଛନ୍ତି । ରତ୍ନା ବମ୍ବେ ନଗରୀରେ କେତେ କାଳ ଏକାକିନୀ ରହି ପାରିବ ? ଭାରତ ଛାଡ଼ି ସେ ଆସି ଝିଅ ଜୋଇଁଙ୍କ ପାଖେ ରହୁଛି । ବମ୍ବେ ଘରଟି ବିକ୍ରି କରି ନିଜ ନାଆଁରେ ଟଙ୍କା ଜମାଇଛି । କିନ୍ତୁ ଟଙ୍କାକୁ ଡଲାର୍‌ରେ ପରିଣତ କରି ଆମେରିକା ଆଣିବା ଲାଗି ଅନୁମତି ମିଳୁନାହିଁ । ଆୟକର ବିଭାଗ ଧରୁଛି । କେବଳ ବାର୍ଷିକ ସୁଧଟିକ ଆସୁଛି ।

ଏବେ ବୟସ ୭୫ ବର୍ଷ । ଡେଙ୍ଗେଇ । ସିଧା ସଳଖ ଚେହେରା । ଲକ୍ଷ୍ୟ କଲେ ବୋଧହୁଏ, ଯୌବନରେ ସୁନ୍ଦରୀ ଥିଲା, ଦୃଷ୍ଟି ଆକର୍ଷଣ କଲା ଭଳି ।

ଚାଲିବା ବୁଲିବା ତାର ଅଭ୍ୟାସ, ମୋର, ମୋ ପରି ବୟସ୍କ ବହୁ ଲୋକ-ଙ୍କର । ବୁଢ଼ାଙ୍କ ଚାଲିବା, ସ୍ଥୂଳତା କମାଇବା ଲାଗି ଚେଷ୍ଟିତ ତରୁଣଙ୍କ ଝଣ୍ଟି-ଦଉଡ଼ା ଓ ପିଲାଙ୍କ ସାଇକଲ୍ ଚଳାଇବା ଲାଗି ଏ ସହରରେ ସର୍ବତ୍ର ଚାଲି ବାଟ ଅଛି । କଟକରେ ବୟସ୍କ ଓ ବାଳକବାଳିକାଙ୍କ ଦୁରବସ୍ଥା ଦେଖି ମନରେ କାରୁଣ୍ୟ ଉଦ୍‌ବେଳ ଉଠେ—କଟକ ନଗରର ଅଭିଭାବକମାନେ ଏଡ଼େ ନିଦାରୁଣ । ଗୋଡ଼ ହାତ ଛାଟି ବୁଲିବାକୁ, ଖୋଲା ମନରେ ନିଃଶ୍ୱାସ ମାରିବାକୁ କୋଉଠି ହେଲେ ଟିକିଏ ସନ୍ଧି ରଖି ନାହାନ୍ତି !

ଡାକ୍ତର ମୋହନଙ୍କର କୁକୁରଟିଏ । ନାଆଁ ମିଆଁ । ସମ୍ଭ୍ରାନ୍ତ ମୁସଲମାନୀ ନାମ ! ମୋହନ ସଂଶୋଧନ କରି କହିଲେ— ନା, ମୁଁ ସେ ଅର୍ଥ ଗ୍ରହଣ କରେ ନାହିଁ । ମିଆଁ ଏକ ଇଟାଲୀୟ ଶବ୍ଦ ; ତା ଅର୍ଥ ପ୍ରିୟା ।

ମନେ ମନେ ହସିଲି— ଓହୋ, ଶ୍ରୀମତୀ ଶ୍ୱାନ ଦେବୀ ପ୍ରିୟା ! ତା ହେଲେ ଚୂଡ଼ ଦେବୀ କିଏ !

ମିଆଁର ଜୀବନକାହାଣୀ ବଖାଣିବାକୁ ଯାଇ ମୋହନ କହିଲେ— ମୁଁ ତାକୁ କିଣିଥିଲି ଗୋଟିଏ ଦୋକାନରୁ, ବାଇଓଟିକ୍ ଇଞ୍ଜେକ୍‌ସନ୍ ସମେତ ମୋତେ ଦେବାକୁ ପଡ଼ିଥିଲା ମୋଟ ୧୦୦ ଡଲାର୍ । ଏବେ ବୟସ ସାତ ବର୍ଷ ହେଲା । ଏଇ କାନଲଡ଼୍କା, ଲମ୍ବାବାଳୁଆକୁ ଦେଖୁଛ ? ଠିକ୍ ସିଲ୍‌କ ପରି ତାର ଦେହ, କି କୋମଳ, ସୁନ୍ଦର !

ଲାଇସେନ୍‌ସ୍ କରିବାକୁ ହୋଇଥିଲା । ଦେୟ ୫ ଡଲାର୍ । ବେକରେ ଚମଡ଼ା ବାନ୍ଧ ତହିଁରେ ଝୁଲାଇ ଦେଇଥିଲି ଗୋଟିଏ ପ୍ଲେଟ୍—ସେଥିରେ ମାଲିକର ନାମ, ଠିକଣା, ଫୋନ୍ ନମ୍ବର ଲେଖି । ଦରକାର ବେଳେ କାମରେ ଆସିବ ।

ମଣିଷପ୍ରିୟା ଯାହା ଖାଏ, ଶ୍ୱାନପ୍ରିୟା ସେଇଆ । ତେବେ ତାର ଗୋଟିଏ ବଡ଼ ବିଶେଷତ୍ୱ - ତାର ଭାଇବନ୍ଧୁ କୁଟୁମ୍ବ ଯାହା ନ ଖାନ୍ତି, ସେ ଖାଏ— ମାନେ ଫଳ ; ଆପଲ୍, ପ୍ଲମ୍, ପିଚ୍, ଅଙ୍ଗୁର୍, ବ୍ଲୁବେରି, କାଣ୍ଟେଲୁପ୍ ; ମିଠା ବି ଖାଏ । କିନ୍ତୁ ଅଳ୍ପ ଦିଏ—କାଳେ ମୋଟେଇ ଯିବ ! ଅଥଚ ଘରେ ମଣିଷପ୍ରିୟା ମୋଟେଇ ଯାଉଛି, ଦୃଷ୍ଟିକଟୁ ହେଲା ଭଳି ; ତେଣିକି ନଜର ନାହିଁ ।

ଆମେରିକା ପରି ସ୍ୱାସ୍ଥ୍ୟସଚେତ ଦେଶ । ତହିଁ କି ପୁଣି ପଦେ ପଦେ ହେପାଜତ କରିବା ଲାଗି ଡାକ୍ତର ପଡ଼ି । ମୋଟା ବା କ୍ଷୀଣ ହେବା ନିଜ ହାତର କଥା । ମୋଟେଇଲେ ଯୁବତୀର ଶ୍ରୀ ହାନି ଓ ମୂଲ୍ୟ ହାନି ଘଟେ । ତେଣୁ ଏ ଦିଗ ପ୍ରତି ଯୁବକ ଅପେକ୍ଷା ଯୁବତୀର ଚେଷ୍ଟା ବେଶୀ । ବୋଧହୁଏ, ମନମୋଟିଆ, ସୋନାର ଖାତିର ନାହିଁ । ତାର ସ୍ୱାସ୍ଥ୍ୟ କମେ ଅକ୍ତିୟାର୍ ବାହାରକୁ ଚାଲି-ଯାଉଛି ।

ମୋହନ ଆଉ ଶାଶୁ ରନ୍ନା ଦୁହେଁ ପ୍ରାତଃଭ୍ରମଣ କରନ୍ତି, ଗତି ଦ୍ରୁତ । ମୁଁ ମନ୍ଥର । କାରଣ ମୁଁ କେବଳ ଚାଲେ ନାହିଁ, ଚାରିଆଡ଼କୁ ଅନାଇ କରେ, ଗୋଟିଏ ପ୍ରାକୃତିକ ଦୃଶ୍ୟ ଯେପରି ଦୃଷ୍ଟି ଏଡ଼ି ଚାଲି ନ ଯାଏ !

ମିଆଁ ଆମ ପଛେ ପଛେ ଚାଲେ । କିନ୍ତୁ ଘରେ ଘରେ କୁକୁର, କାହାର ଦୃଷ୍ଟି ଏଡ଼ି ସେ ଯାଇପାରିବ ? ଭୁକନ୍ତି ଜୋର୍‌ରେ ; ଖୋଲିଦେଲେ ସତେ କି ଛିଣିଭିଣା କରିଦେବେ !

ମିଆଁ ନୀରବ । ହିଂସା ନ କରି ତାର ଶରବ୍ୟ ହେଉଅଛୁ । କାରଣ ସ୍ୱନାଥ ପରହିଂସ୍ରକ, ଭୌଗୋଳିକ, ଐତିହାସିକ, ସାଂସ୍କୃତିକ ପରିବେଶ ତାର ସ୍ୱାଭାବିକ ପ୍ରକୃତି ବଦଳାଇ ପାରିନାହିଁ ।

ପଦାକୁ ବାହାରିବାର ବାଟ ନାହିଁ । ହତାରେ ବନ୍ଦୀ । ତା ଭିତରୁ ଗୋଟାଏ କପର ମୁକୁଳି ଖସି ଆସିଲା । ମିଆଁକୁ ଯୁଦ୍ଧ ମାଗିଲା । ମିଆଁ ଲାଙ୍ଗୁଡ଼ ଯାକି ପଳେଇବା ଜନ୍ତୁ ନୁହେଁ । ପାରୁ ନ ପାରୁ ସେ ଯୁଦ୍ଧ ଲାଗି ତିଆର ହୋଇ-ଗଲା । ଏତିକି ବେଳେ ମୋହନ ସେହି ବିପଥଗାମୀ ଆଗନ୍ତୁକକୁ ଶୀତଳ ଭାବେ ପଚାରିଲେ—ଆମେ ଯୁଆଡ଼େ ମନ ସିଆଡେ ଯାଉଛୁ; ତୋର କି ବିଶ୍ ! ସାଧାରଣ ରାସ୍ତା ଉପରକୁ ଆସି ଆମ ଗତିରେ ବାଧା ଦେଉଛୁ କାହିଁକି ? କହୁଛୁ—ଯା—ଯା, ସେତିକିରେ ସୌଜନ୍ୟ ରକ୍ଷା କରି କୁକୁରଟି ଚାଲିଗଲା । କିନ୍ତୁ ମାଲିକର ଗେଟ୍ ସାମ୍ନାରେ ସଦର୍ପେ ଛିଡ଼ାହୋଇ ବହେ ଝିଙ୍ଗାସିଲା, ତାର ଅର୍ଥ—ଆମ୍ଭ ସାମ୍ନାରେ ତୁମ୍ଭର ସଦର୍ପ ଯାତ୍ରା ଅସହ୍ୟ । କର୍ମ ସଫଳ, ଅକ୍ଷତ ଶରୀରରେ ଚାଲିଗଲା !

ରାଜପଥ ପାରି ହେଲା ବେଳକୁ ଗାଡ଼ିଟାଏ ହାବୁଡ଼ି ଗଲା । ମୁଁ ବିଶେଷ ଶଙ୍କିତ ହେଲାରୁ ରତ୍ନା ଆଶ୍ୱାସନା ଦେଇ କହିଲା, ମାରିବ ନାହିଁ, ଜରିମାନା ଲକ୍ଷେ ଡଲାର୍, ଏକଦମ୍ ଅଣ୍ଟା ଭାଙ୍ଗିଯିବା କଥା !

ମୋହନ ଲାଇବ୍ରେରୀ ବାକ୍‌ସରେ ବହିତକ ଗଳାଇ ଦେଲା । ବହି ଫେରା-ଇବା ସ୍ଥାନ ଏ । ଏ ସବୁ ଉପନ୍ୟାସ । ସୋନା ପଢ଼େ, ଉପନ୍ୟାସ ପଢ଼ା, ଟେଲି-ଭିଜନ ଦେଖାରେ ସୋନାର ଘର ସମସ୍ତଙ୍କ କଟେ ।

ମୋହନ ଗୋଟାଏ ବହି ଫେରାଇଲେ ନାହିଁ, ପାଞ୍ଚ ଦିନ ବିଳମ୍ବ ହୋଇ-ଥିଲା ବୋଲି, ଦିନକୁ ଦଶ ସେଣ୍ଟ୍ କରି ଜରିମାନା ଦାଖଲ କରିବାକୁ ପଡ଼ିବ ।

ଲାଇବ୍ରେରୀ ସାମ୍ନାରେ ଫୁଟିଛି ଅଗଣିତ ମାଣିକବୃନ୍ଦ ଗେଣ୍ଡୁ । କେତୋଟି ବାର୍‌ଚ ଗଛ । ଗଣ୍ଡି ଝୁଡ୍ ସ୍ୱଚ୍ଛ । ଖୋଲପା ସବୁ ଧଳା କାଗଜ ପରି, ବେଶ୍ ଲେଖି ହୁଏ ।

ତା ଛଡ଼ା ଲାଇବ୍ରେରୀ ହତାରେ ବହୁ ରଙ୍ଗୀନ୍ ମେପଲ୍, ଓ୍ୱାଲ ନଟ୍, ଝାଉଁଳି ଉଇଲୋ, ଭାବପ୍ରବଣା ବିରହିଣୀର ଝମାଗତ ଲୁହଧାର ପରି ଏହାର ଡାଳ ତଳକୁ ଲମ୍ବି ପଡ଼ିଥାଏ ।

ଉଦ୍ୟାନରେ ବହୁ ଓକ୍ । ମୋହନ କହିଲେ—ଏ ଦେଶରେ କୋଡ଼ିଏ ପ୍ରକାର ଓକ୍ ଅଛି । ସେପ୍‌ଟେମ୍ବର୍‌ରେ ସବୁ ଓକ୍‌ର ପତ୍ରପାତ ହୁଏ ନାହିଁ ।

ମେପଲ୍ ଗଛ ପତ୍ର ଲାଲ୍, ପତ୍ରଝଡ଼ା ବେଳକୁ କିନ୍ତୁ ଗଛଟା କଳା ପଡ଼ିଯାଏ । ମେପଲ୍ ଛଡ଼ା ଅଧିକାଂଶ ଗଛର ପତ୍ର ପାଚିଲେ ଲାଲ୍ ବା ହଳଦିଆ ଦିଶେ ।

ଗଛପତ୍ର ଆଲୋଚନାରେ ଅଧିକ ଅଗ୍ରସର ନ ହୋଇ ପଚ୍ଚରିଲି— ଆପଣ କିପରି ଉଚ୍ଚଶିକ୍ଷା ଲାଭ କଲେ, କେବେ ଆସି ଆମେରିକାରେ ବସବାସ କଲେ ?

ମୋହନ କହିଲେ— ମୋ ବାପା ରେଙ୍ଗୁନ୍‌ରେ ଡାକ୍ତର ଥିଲେ । ଭଲ ରୋଜଗାରପତ୍ର କରୁଥିଲେ । ଦ୍ୱିତୀୟ ମହାଯୁଦ୍ଧ କାଳ । ବର୍ମାରେ ଭାରତୀୟ ବିତାଡ଼ନ ଅତି ତୀବ୍ର ରୂପ ଧାରଣ କରିଥିଲା । ଭାରତୀୟ ପ୍ରତି ବର୍ମୀର କାହିଁକି ଘୃଣାଭାବ ଜାତ ହେଲା ? କିଏ ଏହାର ସୂତ୍ରଧର ? ଭାରତୀୟଙ୍କୁ ନିଜ ଘରଦ୍ୱାର, ପ୍ରଚୁର ଧନସମ୍ପତ୍ତି ହରାଇବାକୁ ପଡ଼ିଲା । ଜୀବନ ମାତ୍ର ଘେନି ସେ ବର୍ମା ଛାଡ଼ି ପଳାଇ ଆସିଲା । ବାପା ଆମକୁ ବୋଟ୍‌ରେ ବସାଇ ଦେଲେ । ଜାଗା ଅଭାବରୁ ନିଜେ ଚାଲି ଚାଲି ଫେରିଲେ । କେତେ ଡାକୁ ବା ବନ୍ୟଜନ୍ତୁ କବଳରେ ପଡ଼ି ଜୀବନ ହରାଇଲେ, ବାପାଙ୍କ ଆଶା ଆମେ ଛାଡ଼ିଥିଲୁ । ତିନି ମାସ ପରେ ବହୁ ଦୁଃଖକଷ୍ଟ ସହି ବାପା ଫେରିଲେ । ଦୁର୍ଲଭକୁ ଲାଭ କରି ପରିବାର ଆନନ୍ଦରେ ଉଚ୍ଛୁଳି ଉଠିଲା ।

ତା'ପରେ ଆମ ଆର୍ଥିକ ଅବସ୍ଥାରେ ଦ୍ରୁତ ପରିବର୍ତ୍ତନ ଘଟିଲା । ମାନ୍ଦ୍ରାଜ ମେଡ଼ିକାଲ କଲେଜରେ ଅଧ୍ୟୟନ ଶେଷ କଲା ପରେ ବାପା ମୋତେ ବିଲାତ ପଠାଇଲେ । ମୋ ନିଜ ଚେଷ୍ଟାରେ ମୁଁ ବିଲାତରୁ ଆମେରିକା ଆସିଲି । କାଂସସ୍ ସିଟିରେ ସୋନା ସହିତ ପ୍ରେମ ହେଲା ; ତାପରେ ବିବାହ । ସୋନା ଶିଶୁ ମନୋରଞ୍ଜନ ଅଧ୍ୟୟନ ଲାଗି କାଂସସ୍ ସିଟି ଆସିଥିଲା । ଆମର ଦୁଇଗୋଟି ପୁଅ । ମୁଁ ବନ୍ଧନରେ ପଡ଼ିଲି ପରେ ଆମେରିକାରେ ରହିଗଲି ; ଭାରତ ଫେରିବା ଚିନ୍ତା କରିନାହିଁ । ଭ୍ରମଣରୁ ଫେରିବା ମାତ୍ରେ ନିଜକୁ ଫୋଡ଼ିବା ଦେଖି ପଚ୍ଚରିଲି— ଏ କଣ ? 'ଇନସୁଲିନ୍ ; ମତେ ଡାଇବେଟିସ୍ !'

ଡକ୍ଟର ଡାକ୍ତର ମୋହନ ଖୁବ୍ ସ୍ଥୂଳ ଥିଲେ । ଅଳ୍ପାହାର ଓ ଅଧିକ ବିହାର ଫଳରେ ସେ ନିଜକୁ ଗୋଟିଏ ସୀମା ଭିତରେ ଆଣି ରଖିଛନ୍ତି । ଓଜନ କମୁନାହିଁ ବା ବଢ଼ୁନାହିଁ । ସ୍ତ୍ରୀ ସୋନାର ଗତି କିନ୍ତୁ ବିପରୀତ ଦିଗରେ, ଓଜନ ବଢ଼ୁଚି, ବଢ଼ି ଚାଲିଛି । ଏ ଯାକେ ଅବଶ୍ୟ କିଛି ଜଟିଳତା ସୃଷ୍ଟି କରିନାହିଁ ।

ମୋହନ ଚାକିରି କରନ୍ତି ନାହିଁ, ଦୁଇ ତିନୋଟି ହସ୍‌ପିଟାଲରେ ଘଣ୍ଟେଇ ପ୍ରାକ୍‌ଟିସ୍ କରନ୍ତି । ସୋନା ସ୍କୁଲରେ ଅଧ୍ୟାପିକା ଥିଲା । ଏତେ ବର୍ଷ ଚେଷ୍ଟାକରି ଯୋଗ୍ୟତା ଅନୁରୂପ ଚାକିରିଟିଏ ପାଇନାହିଁ, ଚାକିରି ନ କଲେ ବି ଚଳନ୍ତା, ଶିକ୍ଷିତା ଝିଅ ଘର ଧନ୍ଦାକୁ ଆବୋରି ସମ୍ଭାଳି ହୋଇ ଏ ଯୁଗରେ ରହି ପାରୁଛି କୋଉଠି ? ତେଣୁ 'ବସିବାଠାରୁ କାଟିବା ଭଲ' ନ୍ୟାୟରେ ସେ ବେସିକ୍ ସ୍କୁଲ୍‌ରେ ମାଷ୍ଟରାଣୀଟିଏ ହୋଇଛି, ଯାହା ରୋଜଗାର କରେ, ତା ନିଜ ଖର୍ଚ୍ଚକୁ ବି ନଅଣ୍ଟ । ତଥାପି ତାର ସମୟ କଟେଇବାର ଏ ଗୋଟିଏ ଭଲ ବାଟ, ନଇଲେ ଘରେ ବସି ବସି ବଡ଼ କଷ୍ଟ ଲାଗନ୍ତା ।

ସୋନା ଜଣେ ସହକର୍ମିଣୀଙ୍କ ଗାଡ଼ିରେ ସକାଳ ଛ'ଟାରେ ଯାଏ, ସନ୍ଧ୍ୟାରେ ଫେରେ । ସଂସାରର ଚିନ୍ତା ତାକୁ ଲାଗେ ନାହିଁ । ମାଆ ରତ୍ନା ସବୁ ସମ୍ଭାଳେ, ସେ ବଜାର ହାଟ, ରନ୍ଧାବଢ଼ା ସବୁ କରେ । ବୟସର ଘୁଣ ଦେହରେ ଲାଗି ନାହିଁ; ସୁନା ଖଡ଼ିକାଟି ପରି କ୍ଷୀଣ, ଆଣ୍ଟ ଦେହ, ପୁରୁଣାହାଡ଼ ମଣିଷ । ଖଟଣି ବୋଲି ଆଧୁନିକାକୁ ଯାହା ଡରାଏ, ତାହା ରତ୍ନାକୁ ଏକ ଖେଳ ।

ଗୋଟିଏ ଦୃଶ୍ୟ କିନ୍ତୁ ମୋତେ ମୋଟେ ଭଲ ଲାଗିଲା ନାହିଁ ; ମୋହନ କାର୍ଯ୍ୟରୁ ଫେରି ଆମକୁ ଫଳ କାଟି ଦେଲେ । ସୋନା ପଥର ପରି ଆରାମ ଚୌକିରେ ବସି ଟେଲିଭିଜନ୍ ଦେଖିଲା । ଏ କଣ ନାରୀ ସ୍ୱାଧୀନତା ନା ତାର ଅପବ୍ୟବହାର ? ବୋଧହୁଏ, ପୁରୁଣା ସଂସ୍କୃତିରେ ବଢ଼ିଥିବାରୁ ଆମକୁ ଏତେ ଦୃଷ୍ଟିକଟୁ ଲାଗୁଛି ।

ଡାକ୍ତର ମୋହନଙ୍କର ଦୁଇଟି ମୁଖ୍ୟ ବିନୋଦନ— ଗୋଟିଏ ମହାରଣା ବା ମିସ୍ତ୍ରୀ କାର୍ଯ୍ୟ, ଅନ୍ୟଟି ଉଦ୍ୟାନ କର୍ମ । ଲୋଡ଼ା ହେଲେ ସେ ଘରର କବାଟ, ଝରକା ମରାମତି କରନ୍ତି, ରଙ୍ଗ ଦିଅନ୍ତି । ଘର କୋଉଠି ଖଣ୍ଡିଆଖାବରା ହେଲେ ସେ କରଣି ଧରନ୍ତି । ପ୍ରାୟ ସବୁ ଆମେରିକାନ୍ କିଛି ମିସ୍ତ୍ରୀ, ମହାରଣା କାମ, ବିଦ୍ୟୁତ୍ କାମ ଜାଣନ୍ତି, ଆମ ପରି ଟିକି ଟିକି କଥାରେ ଏତେ ପରନିର୍ଭର-ଶୀଳ ନୁହନ୍ତି ।

ମରାମତି କାର୍ଯ୍ୟ କ୍ୱଚିତ୍ କରିବାକୁ ପଡ଼େ ; ଉଦ୍ୟାନ କର୍ମ ନିତ୍ୟନୈମି-ତ୍ତିକ । ଗତ ବର୍ଷ ମୋହନଙ୍କ ବଗିଚାରେ ବହୁତ ଲଙ୍କା, ଟମାଟୋ ହୋଇଥିଲା । କୌଣସି ଦ୍ରବ୍ୟର ବିନଷ୍ଟି ରତ୍ନା ଆଖିରେ ଯାଏନାହିଁ । ସେ ବଳକା ଟମାଟୋ ଓ ଲଙ୍କା ସବୁ ଆଚାର କରି ଦେଇଛନ୍ତି ।

ମୋହନ ଫୁଲ୍ ପ୍ରେମୀ । ତାଙ୍କ ବଗିଚାରେ ଆମେରିକାରେ ଦୁର୍ଲଭ ବହୁ ଭାରତୀୟ ଫୁଲ୍—ମଲ୍ଲୀ, ହେନା, କୁନ୍ଦ, ଡଗର; ଯେସବୁ ଶୀତଦିନେ ଖୋଲାରେ

ରହିଲେ ମଉଳିବ । ତେଣୁ ସେ ସବୁ ଅଶେଷ ଯତ୍ନରେ ଘର ଭିତରକୁ ଆଣି ବଞ୍ଚାଇ ରଖନ୍ତି ।

ଏ ଦେଶରେ ଶୀତ କାଳରେ ଫୁଲର ମୁହଁ ଦେଖିବାକୁ ମିଳେ ନାହିଁ । ତେଣୁ ଏତେ ଫୁଲ ପ୍ରୀତି ।

ଜଣସବୁ ବଗିଚାରେ ଗଦା ହୋଇଥିବା ଦେଖି ପଚାରିଲି—ଏ କ'ଣ ?

'ସାର; ଘାସରେ ଦିଆଯିବ; ସାର୍ ଗୁଣ—ବାଳୁଙ୍ଗା, ଅନାବନା ଗଛ-ଘଞ୍ଚ ମାରି ଦେବ, ଘାସକୁ ଅଧିକ ଶାଗୁଆ କରିବ ।

ମନେ ମନେ ବିଚାରିଲି—ଘାସ ଲାଗି ତ ଏତେ, ଫସଲ ଲାଗି କେତେ ଖର୍ଚ୍ଚ ହେଉ ନ ଥିବ !

ହେଲେ ଏ ଦେଶରେ କୌଣସି କାମ୍ ପ୍ରାଧାନ୍ୟ ଦିଆଯାଏ ? ଦେହ ଲାଗି ଖାଦ୍ୟ ଯେପରି, ମନ ଲାଗି ସୌନ୍ଦର୍ଯ୍ୟ ସେହିପରି ଆବଶ୍ୟକ । କିନ୍ତୁ ଭାରତ ବୁଭୁକ୍ଷିତ । ବୁଭୁକ୍ଷିତ ଆଖିରେ ସୌନ୍ଦର୍ଯ୍ୟର କି ମୂଲ୍ୟ ? ସର୍ଗର ସନ୍ତାନ ଖାଦ୍ୟା-ଭାବରେ ମାଟି ଖାଇଲା ପରି ଏ ସୌନ୍ଦର୍ଯ୍ୟକୁ କୁତ୍ସିତ କରି ଛିଣ୍ଡେଇ ଚଟାଣରେ ମୋଡ଼ି ଦେଉଛି । ପାହାଡ଼ ଲଣ୍ଡା, ଜଙ୍ଗଲ ସଫା, ପ୍ରାନ୍ତର ଉଷ୍ମ ଶୁଷ୍କ । ମରୁଭୂମି ମାଡ଼ି ଆସୁଛି, ଜନସଂଖ୍ୟା ବଢ଼ି ଚାଲିଛି ।

**ନକଲ ଆପାର୍ଟମେଣ୍ଟ୍**

କାଂସସ୍‌ରୁ ପ୍ରାୟ ୩୦ ମାଇଲ୍ ଦୂରରେ ଲରେନ୍ସ୍—ଛୋଟ ସହରଟିଏ । ସେଠା ଇଞ୍ଜିନିୟରିଂ କଲେଜରେ ନିଖିଳ ଦାଶ ଛାତ୍ର । ସାଧନାରତ ଅବସ୍ଥାରେ ତାକୁ ଦେଖିବା ଲାଗି ଆମେ ଗଲୁ ।

ବାଟଯାକ ସୂର୍ଯ୍ୟମୁଖୀ କ୍ଷେତ, ନଇଲେ ପାଣ୍ଡୁର ଶୁଖିଲା ଘାସ ପଡ଼ିଆ । ଛୋଟ ଛୋଟ ପାହାଡ଼, ଜଙ୍ଗଲ, ମଝିରେ ମଝିରେ ଗୁହା ।

କାଂସସ୍ ନଦୀ ନାମାନୁସାରେ ନଗର ନାମିତ । ନଦୀ ବନ୍ଧାଇ କୃତ୍ରିମ ହ୍ରଦଟିଏ ହୋଇଛି । ଛାତ୍ରଛାତ୍ରୀମାନେ ସେଥିରେ ନୌକା ଚଳାନ୍ତି, ସ୍କି ଖେଳନ୍ତି, ନଇଲେ ଯାଇ କୂଳରେ ବସି ଦୌଡ଼ା ଦେଖନ୍ତି ।

କଲେଜର ଅଦୂରରେ ବିଅର୍ ହାଉସ୍ । କ୍ଲାସ୍ ପରେ ବିଅର୍ ହାଉସ୍‌ରେ ଏକାଠି ହୋଇ ଛାତ୍ରମାନେ ଗପ ଜମେଇଛନ୍ତି ।

କଲେଜର ଅଧିକାଂଶ ଛାତ୍ର ଛାତ୍ରାବାସରେ ରହନ୍ତି, ପଂକ୍ତି ଭୋଜନ କରନ୍ତି

କଠୋର ଶୃଙ୍ଖଳା ଭିତରେ ଜୀବନ ବିତେଇବାକୁ ହୁଏ । ଆପାର୍ଟମେଣ୍ଟ୍‌ରେ ଅଧିକ ସ୍ୱାଧୀନତା ମିଳେ । ଆପାର୍ଟମେଣ୍ଟ୍ ଏକ ତିନିତାଲ ସୌଧ । ଶୀତତାପ ନିୟନ୍ତ୍ରିତ । ସବା ତଳ ତାଲରେ ଜିକ ରହେ, ତାର ତିନିବନ୍ଧୁଙ୍କ ସହ । ସାମ୍ନାରେ ବନ୍ୟ ସୂର୍ଯ୍ୟମୁଖୀଟିଏ, ଅଗଣିତ ଶାଖାରେ ଫୁଲ; ତାର ଏକକ ପ୍ରଫୁଲ୍ଲତା ବିସ୍ତାର ଗାଢ ମୋତେ ମୁଗ୍ଧ କଲା ।

ଆପାର୍ଟମେଣ୍ଟ୍‌ର ଜଣପିଚ୍ଛା ଭଡ଼ା ୧୭୧.୫୦ ଡଲାର୍ । ଖାଇବାଖର୍ଚ୍ଚ ମାସକୁ ୯୦ ଡ଼ଲାର୍ ପଡ଼େ; ବାହାରେ ଖାଇଲେ ତାର ତିନିଗୁଣ ଖର୍ଚ୍ଚ ହୁଏ । ବାର୍ଷିକ ଟିକେଟ ସିମେଷ୍ଟର ଲାଗି ଦେବାକୁ ହୁଏ ତିନି ହଜାର ଡଲାର ।

ଆପାର୍ଟମେଣ୍ଟ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଗୃହ । ଏଥିରେ ରୋଷେଇ ଘର ଅଛି, କିନ୍ତୁ ରୋଷେଇ ହୁଏ ନାହିଁ । ଜିକ ଓ ସାଙ୍ଗମାନେ ବିଚିତ୍ରବିଚିତ୍ର ହୋଇ ବାହାରୁ ଖାଦ୍ୟ କିଣି ଆଣି ଗରମ କରି ଖାନ୍ତି । ବୃତ୍ତିଜଣ ଡ଼ିନାର ଟେବୁଲ୍‌ରେ ଏକାଠି ବସି ଖାନ୍ତି ।

ଡାଇନିଂ ରୁମ୍‌ରେ ରଙ୍ଗୀନ୍ ଛବିଟିଏ ଟଣା—ମଣ୍ଡନ ମାତ୍ର । ନଇଲେ ଗ୍ଲାସ ତଳେ ଛବିର ଆବଶ୍ୟକତା କ'ଣ ?

କମନ୍‌ରୁମ୍‌ରେ ସମ୍ବାଦପତ୍ର, ମାଗାଜିନ୍ ପଢ଼ାଯାଏ, ଟି. ଭି. ଦେଖାଯାଏ । ଘର ଗୃହ କୋଣରେ ଗୁଚ୍ଛେଟି ଫଟୋ; କାହାର ? ଉଚ୍ଚା ହସି ହସି କହିଲି —କାହାର ଆଉ ? ପ୍ରିୟ ବାନ୍ଧବୀମାନଙ୍କର । ଜିକ ଆଉ ତିନି ସାଙ୍ଗ ଲାଜେଇଗଲେ ।

ପ୍ରତି ଗୃହର ଗୋଟିଏ କାର୍ ଅଛି । ଗରାଜ୍ ଭଡ଼ା ମାସିକ ଦଶ ଡଲାର୍ । ଗ୍ୟାରେଜ୍‌ରେ ଜାଗା ନ ଥିବାରୁ କାର୍‌ସବୁ ପଦାରେ ପଡ଼ିଛି, ଖରାବର୍ଷା ଖାଉଛି । କାର୍ ଚୋରି ବିରଳ ।

## ଶେଷ ଦୃଷ୍ଟି

ଆଜି ବିଦାୟ ଦିନ । ମୋହନ ନିଜେ ଆମକୁ ନଗର ପରିକ୍ରମା କରାଇ ନେଲେ । କାଂସସ୍‌କୁ ପାର୍କ ବା ଉଦ୍ୟାନ ନଗର କୁହାଯାଏ । କେବଳ ଡାଉନ୍ ଟାଉନ୍‌କୁ ଛାଡ଼ି ଦେଲେ ସବୁଠି ଗୋଟି ଗୋଟିକିଆ ଘର, ପ୍ରତି ଘରର ଆଗପଛ ବା ତିନି ପାଖରେ ଅରଣ୍ୟ, ବନସ୍ପତିର; ସାମ୍ନାରେ ଉଦ୍ୟାନ; ବିବିଧ ପୁଷ୍ପଗୁଳ୍ମର ।

ପ୍ରଥମ ମହାଯୁଦ୍ଧର ସ୍ମୃତିପୀଠ ଏକ ତୁଙ୍ଗ ମହଲ । ଲିଫ୍ଟରେ ଉପରକୁ ଯାଇ ସମସ୍ତ ସହର ଦେଖି ହେବ । ପ୍ରଥମ ମହାଯୁଦ୍ଧ କାଳରେ ଯେଉଁ ଯେଉଁ ସ୍ଥାନରେ ଶତ୍ରୁ ସହିତ ବଡ଼ ବଡ଼ ଯୁଦ୍ଧ ହୋଇଥିଲା, ତାର ଏକ ମାନଚିତ୍ର ଟଙ୍ଗା ଯାଇଛି ।

ମୃତ ସୈନିକମାନଙ୍କ ସ୍ମୃତିରକ୍ଷା ଲାଗି ଗୋଟିଏ ଲମ୍ବ କୋଠରୀରେ ଅନେକ ଚୌକି ପକାଯାଇଛି, ସେସବୁ ଭ୍ରମଣକାରୀଙ୍କ ବସିବା ଲାଗି ଉଦ୍ଦିଷ୍ଟ ନୁହେଁ । ପ୍ରେତମାନଙ୍କ ଲାଗି ଉତ୍ସର୍ଗୀକୃତ । ନିର୍ଜନ ରାତିରେ ସତେ ଯେପରି ପ୍ରେତମାନେ ଓହ୍ଲାଇ ଏଠି ବସି ଆଳାପ ଜମେଇବେ ।

ନିର୍ଜନ ବାତାବରଣ । କେବଳ ଘାସର ସବୁଜ, ପୁଷ୍ପରାଜିର ଦୋଳନ ଶ୍ରୀ ଓ ସୁରଭିରେ ଭରପୂର ।

ଚୀନା ବଜାର ବାଟେ ଆସିଲାବେଳେ ପଚାରିଲି—ଯାପାନୀ କାହିଁକି ଏ ଦେଶକୁ ଶ୍ରମିକ ଯୋଗାଇଲା ନାହିଁ ? ଯାପାନୀ କାହିଁକି ନିଜର ଏତେ ଟିକିଏ ଦେଶରେ ଭିଡ଼ କରିଛନ୍ତି ? ଏ ଦେଶକୁ ଆସି ବହୁ ସଂଖ୍ୟାରେ ରହି ନାହାନ୍ତି କାହିଁକି ?

ରମା ମୋ ପ୍ରଶ୍ନର ଉତ୍ତର ଦେଇ କହିଲା—ଯାପାନୀ ବଡ଼ ଆତ୍ମଗର୍ବୀ, ସ୍ୱଦେଶପ୍ରେମୀ ଜାତି । ଅନ୍ୟ ଦେଶରେ ଖଟିବାକୁ ମର୍ଯ୍ୟାଦାହାନିକର ମନେ କରେ । ଶିଳ୍ପ ପ୍ରତିଯୋଗିତାରେ ବିଜୟୀ ଯାପାନୀ ଗର୍ବିତ ଭାବେ ମୁଣ୍ଡ ଟେକି ଚାଲେ ।

ମନେ ମନେ ଭାବିଲି । ଚୀନା ଖଟିଥିଲେ । ଆମେରିକାଠାରୁ ଶତ ଗୁଣରେ ଆଦାୟ କଲେ । ଓଡ଼ିଆ ତ ଆରମ୍ଭରୁ କଲିକତା ଗଢ଼ିଥିଲେ । ଚୀନା ବଜାର ପରି ଓଡ଼ିଆ ବଜାରଟିଏ ଗଢ଼ି ପାରିଲେ ନାହିଁ କାହିଁକି ?

ଗଜାମୁଗ, ନଡ଼ିଆ ଡାଲି, କାଳିଆ ଟମାଟୋ ତରକାରୀ । ଏ ଦୁଇଟି ମଧ୍ୟରୁ ଗୋଟିଏ ଓଡ଼ିଶାରେ ହେବ; ପିଠା ସଙ୍ଗେ ଖଟା ମିଶା ହେବ ନାହିଁ । ଏ ସ୍ୱତନ୍ତ୍ର ଜଙ୍ଗଲୀ ତରକାରୀ, ରମା ରାନ୍ଧିଛି ଆମ ଲାଗି । ଆମ ଆଡ଼ ହୋଇଥିଲେ ମନ ପିତା ହୋଇଯିବ, ଏଇ ପାରମ୍ପରିକ ବିଶ୍ୱାସରେ ବଦାନ୍ୟବେଳେ ପିତା ଖାଇବାକୁ ଦେଇ ନ ଥାନ୍ତେ ।

କାଂଗସ୍ ସିଟିରେ ( ୨୪ ଅଗଷ୍ଟରୁ ସେପ୍ଟେମ୍ବର ୭ ତାରିଖ ) ମୋର ଚଉଦ ଦିନର ପଶ୍ଚିମ ଆମେରିକା ଭ୍ରମଣ ଉଜାଗର ହେଲା ।

## ସତର

### ସବୁ ସବୁ ଦିନ ନ ସରିଲେ

ଦିନେ ଗଲା, ଦି ଦିନ ଗଲା, କେତେ ଦିନ ଗଲା । ପଶ୍ଚିମ ଭ୍ରମଣ ଦୃଶ୍ୟ ମନରୁ ଅପସରି ଗଲା । ଦିନସାରା ବିଶ୍ରାମ, ଶ୍ରମବିହୀନ, ଅରୁଚିକର । ବସିଲା ଲୋକର ଦିନ କଣ ସରେ ? ବହିପାଏ, ପଢ଼େ, ଟେଲିଭିଜନ୍ ଦେଖେ, ଲତା ସଙ୍ଗେ ଆଳାପ କରେ । ତଥାପି ବେଳ ବଳେ । କ'ଣ କରିବି, କ'ଣ କରିବି ହୋଇ ଘରୁ ବାହାରେ, ବାହାରୁ ଘର ହୁଏ । ଇରା ଏସବୁ ଲକ୍ଷ୍ୟ କରେ । କଷ୍ଟକରେ କେତେ ବନ୍ଧୁ, କେତେ ବନ୍ଧୁତା । ଭାଇନା ନିଃସଙ୍ଗ ବୋଧ କରୁଛନ୍ତି । ସେ ପ୍ରତିଦିନ କିଛି ବୁଲେଇ ଦେଖେଇବା ବ୍ୟବସ୍ଥା କରେ । ସେହିଭାବରେ ମୁଁ ଦେଖିଥିଲି କେତେ କିଛି ଅଦେଖା ।

### ହାର୍ଓ୍ୱାର୍ଡ଼ ନେମେରୋଭ୍

ଭାବୁ ଭାବୁ ମୋ ପରି ଆଉ କାହାର ଦିନ ନ ସରେ ? ସେ କବି । ଗତଥର ଦେଖି ପାରି ନଥିଲି । ଏଥର ଦେଖିବି । ଏତେ ବଡ଼ ଅଗ୍ରଗାମୀ ଦେଶର ଜଣେ କବି ବା ଲେଖକର ଭାବ ଭାବନା ଜାଣି ନ ଗଲେ ମୋ ଭ୍ରମଣକାହାଣୀ ଅପୂର୍ଣ୍ଣ ରହିଯିବ । କାରଣ ଏ ତ ପାହାଡ଼, ପ୍ରପାତ, ହ୍ରଦର କାହାଣୀ ନୁହେଁ, ସବୁ କିଛି ଅନୁଭବର କାହାଣୀ । ରମ୍ୟରଚନା, କବିତା, ଉପନ୍ୟାସ, କ୍ଷୁଦ୍ରଗଳ୍ପ ପଢ଼ିଲେ ଯେଉଁ ଆନନ୍ଦ, ଭ୍ରମଣ କାହାଣୀ ପଢ଼ିଲେ ଏକାଧାରରେ ସେ ସବୁର ଆନନ୍ଦ ମନରେ ଜାଗ୍ରତ ହୁଏ, କୌଣସି ଦୃଶ୍ୟ, ଚିନ୍ତା ବା ଅନୁଭବର ପୂର୍ଣ୍ଣାଙ୍ଗ ରୂପ ପ୍ରକାଶ ନ ପାଇଲେ ବି ।

କବି ଦେଶର ଭାବ ଅନୁଭବୀ । ତା ଅନୁଭବରୁ ଜାତୀୟ ଅନୁଭବର ସ୍ପର୍ଶ ମିଳେ ।

ଗତ ଥର ଆମ୍ଭ ଖୋଜୁ ଖୋଜୁ ପାଇଥିଲି ଅମ୍ବିଡ଼ା । କବି ବା ଲେଖକ ଖୋଜୁ ଖୋଜୁ ପାଇଥିଲି ବିଜ୍ଞାପନ ଲେଖକ ବା ଛବିକାର ।

ଇରା ପହିଲେ କବି ଗୃହ ସହିତ ଯୋଗସୂତ୍ର ସ୍ଥାପନ କରିଥିଲା । ଫୋନ୍ ଧରିଥିଲେ କବିପତ୍ନୀ । ଜଣେ ଭାରତୀୟ ଲେଖକର ସାକ୍ଷାତ୍କାର ଇଚ୍ଛା ଜାଣି ସେ

କହିଲେ—କବି କାହାକୁ ଘରେ ଦେଖା ଦିଅନ୍ତି ନାହିଁ, ଅଫିସକୁ ଯାଅ—ଓ୍ୱାସିଂଟନ୍ ଇଉନିଭର୍ସିଟି ।

ଉଦି ମୋତେ ନେଲା ସକାଳ ୯ଟାରେ; ମିଠା ଖରା, କାଲୁଆ ପବନ । ଉପାର ରଙ୍ଗୀନ୍ ଆଭା ଏବେ ବି ଗଛବୃଛଙ୍କ ଲଭି ନାହିଁ । ସବୁଜ ଘାସ, ଫୁଟା ଫୁଲ, ଗୁଳ୍ମମାନଙ୍କ ଈଷତ୍ ଦୋହଲରେ ହିଡା ଖୁଗ ସୁନ୍ଦର ଦିଶୁଥାଏ । ବିଦ୍ୟା ବା ଚିକିତ୍ସା ନିକେତନ ବା ବ୍ୟକ୍ତିର ଭବନ ସବୁଠି ପହିଲେ ସୌନ୍ଦର୍ଯ୍ୟର ଆରାଧନା । ବିଶ୍ୱବିଦ୍ୟାଳୟର ବିଭିନ୍ନ ସୌଧ ଅତିକ୍ରମ କଲା ପରେ ଆମେ କବି କୋଠରିରେ ପହଞ୍ଚିଲୁ ।

ପୁସ୍ତକ ଆଲମାରି ଘେରା ଏକ ଚୌକିରେ କବି ହ୍ୱାଓ୍ୱାର୍ଡ ନେମେରୋଭ ବସିଛନ୍ତି । ପିନ୍ଧିଚନ୍ତି ବ୍ଲୁ ଜିନ୍ ପ୍ୟାଣ୍ଟ୍; ବୋତାମ ଖୋଲା, ବ୍ଲୁ ଜିନ୍ କୋର୍ଟ । ଉଦି କାନରେ ଚୁପ୍ ଚୁପ୍ କହିଲା—କି ଦରିଦ୍ର ବେଶ ! ଉଦି ତତ୍‌କ୍ଷଣାତ୍ ତାର ଜବାବ୍ ଦେଲା—ତୁମେ କ'ଣ ପିନ୍ଧି ନ ? ତୁମର କେତେ ଖଣ୍ଡ ପ୍ୟାଣ୍ଟ୍, କେତେ ହଳ ଯୋତା ଅଛି ? ବେଶରୁ ଯଦି କବି ଚିହ୍ନାଯାଏ, ତୁମକୁ କାହିଁକି କିଏ ଜଣେ କବି ବୋଲି କହିବ ? ଭିତରଟା ଯେତିକି ଫମ୍ପା, ଉପର ବେଶରେ ସେତିକି ଜାକ-ଜମକ ଚେଷ୍ଟା ବୋଧହୁଏ, ଫମ୍ପାମିକି ଘୋଡାଇବା ପାଇଁ ?

କବି ଆମକୁ ପାଖରେ ବସାଇଲା ପରେ ପଚାରିଲେ—କିଛି ଗୋଳମାଳ କଲି କି ?

କବି କହିଲେ—କବିତା ନୁହେଁ, ଚିଠି ଲେଖୁଥିଲି ।

'ଅଫିସ୍‌ରେ କବିତା ଲେଖନ୍ତି ?'

'ଏ ଅଫିସ୍ ନାମକୁ ମାତ୍ର । ଏଠି କୌଣସି ଗୋଳମାଳ ନାହିଁ । ମୁଁ ଏଠି ବସି ଯାବତୀୟ ଲେଖାଲେଖି କରେ । ଏସବୁ ମୋର ବ୍ୟକ୍ତିଗତ ବହି । କାଣ୍ଟିନ୍‌ରେ ଖାଏ, ସାରାଦିନ ମୋର ଏଇଠି କଟେ ।

ପ୍ରେରଣା ଆସିଲେ ଲେଖେ । ଘରେ ବା ଅଫିସ୍‌ରେ କେତେବେଳେ ପ୍ରେରଣା ଆସିବ, କିଏ ଜାଣେ ?'

'ଏବେ କ'ଣ ଲେଖୁଛନ୍ତି ?'

'କିଛି ଲେଖୁନାହିଁ । ଦୁଇବର୍ଷ ହେଲା କିଛି ଲେଖି ନାହିଁ, ମନ ସତେ ବା ଜଡ ପାଲଟି ଯାଇଛି । ପଢ଼ାପଢ଼ିରୁ ନାହିଁ, ପ୍ରକୃତିରୁ ବା ଜୀବନରୁ ନାହିଁ, କାହିଁରୁ ଚଳେ ହେଲେ ପ୍ରେରଣା ମିଳୁନାହିଁ । ଆଶ୍ଚର୍ଯ୍ୟ ।'

'ଏପରି ଜଡ଼ତାର ଅନୁଭବ ସର୍ବଜ । ପ୍ରତି ସ୍ରଷ୍ଟା ଏହାର ଅନୁଭବୀ; କ୍ରମାଗତଭାବେ ଲେଖନୀ ଚଳାଇବା କୌଣସି ପ୍ରତିଭାଶାଳୀ ପକ୍ଷରେ ଏ ଯାକେ ସମ୍ଭବ ହୋଇନାହିଁ । ତା ନହେଲେ କବି ଯେତେ ଇଚ୍ଛା ସେତେ ଲେଖିଥାନ୍ତା । ଉଦ୍ଦେଶ୍ୟହୀନ ସୃଷ୍ଟି ଲାଗି ଅବକାଶ ବା ଆବଶ୍ୟକତା ରହନ୍ତା ନାହିଁ, ଜଣେ ସ୍ରଷ୍ଟାର ବେଶୀ ଲେଖା ପଢ଼ିବାକୁ କ'ଣ ଭଲ ଲାଗେ ? ପୁନରୁକ୍ତି ଘଟେ, ଯେଉଁ ପ୍ରତିଭା ହୋଇଥାଉପଛେ, ପୁନରୁକ୍ତି ବିରକ୍ତ ।'

'ତେଣୁ ମୁଁ କେବଳ ଇଚ୍ଛା କଲେ ଲେଖି ନ ପାରେ । ପ୍ରେରଣା ଆଉ କାହା ହାତରେ, ସେ ଭଗବାନ୍, ଦୈବ ବା ବିଦ୍ୟାଦେବୀ ହୋଇ ପାରନ୍ତି ।'

'ଆପଣ ଉପନ୍ୟାସ ଲେଖନ୍ତି, ସମାଲୋଚନା ବି ଲେଖନ୍ତି । ଥରେ ଆରମ୍ଭ କଲେ ଏସବୁ ଅନେକ ଦିନ ପର୍ଯ୍ୟନ୍ତ ଚାଲେ । ଏଥିଲାଗି କ'ଣ ନିତ୍ୟନୈମିତ୍ତିକ ପ୍ରେରଣାକୁ ଅପେକ୍ଷା କରନ୍ତି ?'

ମୂଳରୁ ଇଚ୍ଛା ହୁଏ, ପ୍ରବଳ ରୂପ ଧାରଣ କରେ । ତାକୁ ଆପଣ ପ୍ରେରଣା କହି ପାରନ୍ତି । ସେହି ପ୍ରେରଣା ଦୀର୍ଘକାଳ ପ୍ରାଣକୁ ଆବୋରି ବସେ ।

ଲେଖା ସରଲେ ପ୍ରାଣରେ ଅପୂର୍ବ ତୃପ୍ତି ଆସେ, ବହୁତ କିଛି ଲେଖିଲିଣି । ଏବେ ନୂଆ କ'ଣ ଲେଖିବି ? ଚର୍ବିତଚର୍ବଣ କରି ଲାଭ କ'ଣ ?'

'ଠିକ୍ କଥା, ଏଣୁତେଣୁ ଗୁଡ଼ାଏ ଲେଖି ଲାଭ କ'ଣ ? ଆବୁରୁଜାବୁରୁ କରି ଏମିତି କେତେ ଲେଖନ୍ତି । ଦି ଦିନ ପରେ ସେ ସବୁ ଅଳିଆ ଗଦାରେ ପଡ଼େ ।'

'ଆମ ଲେଖା ଯେ କାଳଜୟୀ ହେବ, କିଏ କହିବ ? କେତେ ଜଣଙ୍କ ଲେଖା ସବୁକାଳେ ଲୋକେ ପଢ଼ନ୍ତି ?'

ତାପରେ ମୁଁ ପ୍ରସଙ୍ଗ ବଦଳାଇଲି, ପଚାରିଲି—ଏବେ ଆମେରିକାରେ କବିତାର ଗତିବିଧି କ'ଣ ?

'କର୍ତ୍ତୃପାରିବି ନାହିଁ, ଯିଏ ଯାହାକୁ ଯାହା ଦିଶେ, ସେ ତା'ହା ଲେଖେ । ଅନୁଭୂତି ନୂଆ ଭାବରେ ପ୍ରକାଶ ପାଇଲେ ହେଲା । ଅଧିକ କି ଲୋଡ଼ା ?'

'ସ୍ଥିତିବାଦ, ପ୍ରକାଶବାଦ.........'

'ମୁଁ ଏତେ ବାଦବିବାଦ ଜାଣେ ନାହିଁ । ସେସବୁ ଖଣ୍ଡସର୍ବସ୍ୱ କବିଙ୍କ ଲାଗି । ଭାବ ଯାହାର ଗଣ୍ଠିଧନ, ସେ ଖଣ୍ଡ ମାୟାରେ ଛନ୍ଦି ହେବ କାହିଁକି ?'

'Blue Star' ପୁସ୍ତକ ଲାଗି ଆପଣ ଜାତୀୟ ପୁରସ୍କାର ପାଇଛନ୍ତି । ତା ଆଗରୁ କବିତା ଲାଗି ଅନ୍ୟ ବହୁ ପୁରସ୍କାର ଓ ଏବେ ଅତି ସମ୍ମାନଜନକ 'ପୁଲିଟଜର' ପୁରସ୍କାର ବି ପାଇଛନ୍ତି । ପୁରସ୍କାର ପାଇଲେ କେମିତି ଲାଗେ ।'

'ତା ଆଗରୁ ଯେମିତି ଲାଗୁଥିଲା, ସେମିତି ଲାଗେ, ଅଧିକା ନୁହେଁ କି ଊଣା ନୁହେଁ ।

ମୋ ଭାବ ବହୁ ହୃଦରେ ପ୍ରସରିଲେ ମୋର ଚରମତମ ଆନନ୍ଦ ।'

'ଆପଣ ଆତ୍ମଚରିତ ଲେଖିନାହାନ୍ତି ?'

'କବି ଜୀବନରେ କି ଉଲ୍ଲେଖନୀୟ ଘଟଣା ଥାଏ, ଯାହା କବିତାରେ ପ୍ରକାଶ ନ ପାଇ ରହିଯାଏ ?

ମୋ ଧାରଣା—କବିର ଅନ୍ତର୍ନିହିତ ଭାବଜୀବନ ହିଁ କବିର ଅସଲ ଜୀବନ ।'

'ଯଥାର୍ଥ କହିଛନ୍ତି । କାହାର ଜନ୍ମଜାତକ ଜାଣି କି ଲାଭ ? କବିତାର ଜନ୍ମଜାତକ, ବିକାଶ, ଗତିଗତି କବିର ଅସଲ ଜାତକ । କିନ୍ତୁ କବିର ଅନ୍ତର୍ଜୀବନ ଜାଣିବାକୁ କେତେଜଣ ଆକାଂକ୍ଷୀ ?'

'କିଏ ଆକାଂକ୍ଷୀ ହେଉ ବା ନ ହେଉ, ଅନ୍ତର୍ଜୀବନ ନିର୍ଣ୍ଣିତ ଅଛି । ତାହା ସମୁଦ୍ରର ଅନ୍ତଃସ୍ରୋତ ପରି, ପଦାକୁ କେତୋଟି ତରଙ୍ଗମାତ୍ର ଦିଶେ ।'

'ବଡ଼ ବଡ଼ ପଣ୍ଡିତ, ଗବେଷକ କେହି କେବେ ଆପଣଙ୍କୁ ଦେଖିବାକୁ ଆସନ୍ତି ?'

'କ୍ୱଚିତ୍ କେହି । ଆସନ୍ତି ସମଧର୍ମୀ ଲେଖକ ବା ପାଠକ ।'

'ଆମେରିକାର ବଡ଼ ବଡ଼ କବିସବୁ କିଏ ?'

'ରିଚାର୍ଡ଼ ଉଇଲବର୍, ଆନ୍ତୋନି ହେଷ୍ଟ୍, ମାକ୍ସୱିନ୍ କୁନ, ମନୋଭାନ୍ ଡୁମନ୍...... ।'

'କେଉଁ କେଉଁ ଦେଶ ବୁଲି ଦେଖିଛନ୍ତି ?'

'ଆମେରିକା ବାହାରକୁ ଯାଇନାହିଁ ।'

'ଏବେ କ'ଣ ପଢ଼ାନ୍ତି ?

'ନାଟକ—ସ୍ନାତକୋତ୍ତର ଛାତ୍ରମାନଙ୍କୁ ।'

'ଗବେଷକମାନଙ୍କୁ ଗାଇଡ୍ କରନ୍ତି ?'

'ମୋତେ ସେଥିଲାଗି ଅବସର ନ ଥାଏ ।'

ବୟସ ୬୦ରୁ ଊର୍ଦ୍ଧ୍ୱ । ଚିକିଏ ହେଲେ ଫୁଲାପଣ ବା ପ୍ରଗଳ୍ଭ ମନୋଭାବ ନାହିଁ ।

ସେ Poetry ମାଗାଜିନ୍‌ର 'ବ୍ଲୁ ମେଡ୍ଡାଲ' ପୁରସ୍କାର, ଲେଭିନ୍‌ସନ୍ ପୁରସ୍କାର, ୧୯୬୮ର ପୁଲିତ୍‌ଜର ପୁରସ୍କାର ପ୍ରଭୃତି ଡଜନେ ବଡ଼ ବଡ଼ ପୁରସ୍କାର, ଫେଲୋସିପ୍ ଓ ଅନରାରୀ ଡ଼ିଗ୍ରୀ ଲାଭ କରିଛନ୍ତି ।

ସେ ବହୁ ବିଶ୍ୱବିଦ୍ୟାଳୟରେ ପରିଦର୍ଶୀ ଅଧ୍ୟାପକ ହୋଇ କବିତା ବା ନାଟକ ପଢ଼ାଇଛନ୍ତି ।

ତାଙ୍କର ୧୯ଖଣ୍ଡି କବିତା ବହି, ୩ ଖଣ୍ଡି ଉପନ୍ୟାସ ଓ ବହୁସଂଖ୍ୟକ ସମାଲୋଚନା ପ୍ରବନ୍ଧ ପ୍ରକାଶ ପାଇଅଛି ।

ତାଙ୍କ ସହିତ ଆଉ କିଛି ଆଲୋଚନା ବା ହୋଇଥାନ୍ତା । ବେତାରଯନ୍ତ୍ର ବାଜିଉଠିଲା—ଭୟଙ୍କର ଆକ୍‌ସିଡେଣ୍ଟ୍ ! ଶୀଘ୍ର ଆସ ।

ଡାକ୍ତର ଭିଦସ୍କି ଅସ୍ଥିର; ତା ଦେଖି ମୋ ଅସ୍ଥିରତା ବି ବଢ଼ିଲା—କାଳେ କଣ ହୋଇଯିବ ! କବିଙ୍କଠାରୁ ବିଦାୟ ନେଇ ଆମେ ଚାଲିଆସିଲୁ ।

କବି ନେମେରୋଭଙ୍କ ଜନ୍ମ ନିଉୟର୍କ ନଗରରେ । ହାର୍‌ଭାର୍ଡ଼ ଗ୍ରାଜୁଏଟ୍ ସେ । ତାଙ୍କ କବିତାର କେତୋଟି ପଦ ଉଦ୍ଧାର କଲି—

'ଏଠି ପ୍ରତି ଜିନିଷ ଲାଗି ଦାମ୍ ନିଆଯାଏ
କଣ ବା ଦେଖିବାକୁ ମିଳେ ଏଇ ଉଦ୍ୟାନରେ ?
ଦର୍ଶକ କ'ଣ କେବଳ ଲାଟିନ୍ ନାମ ପଢ଼ିବାକୁ ଆସେ ?
ଯୋଉବାଟେ ଆସିଥିଲୁ
ସେହିବାଟେ ଚାଲିଯାଉ ।
ଖାଲି ହାତରେ ।'

'ମୃତ୍ୟୁ ଗୁରୁତର
କମ୍ବା ସମସ୍ତ ଗୁରୁତର ଏଠି
କେବଳ ମୃତ୍ୟୁ ବ୍ୟତୀତ ।'

'ଗ୍ରୀଷ୍ମ ର ଆରମ୍ଭ ହେଲ
ହଠାତ୍ ହେବାକୁ ଶେଷ ?'

ଅର୍ଜନ ନାକୁଞ୍ଚେ
ଝିଲ୍ଲୀ ଗୁଞ୍ଜେ
ସମସ୍ତେ ଦେବାକୁ ଭଷା ।'

'ପଡ଼ ଖସୁଛି ଏକ ମୁଖା
କଳାର ଏ ଶେଷ କଥା ।'

ଟ୍ରେଡିସନାଲ୍ ସର୍ବସ୍ୱ କବିତାର ଆଦର ଆମେରିକାରେ ନାହିଁ । ଆମେରି-କାନ୍ମାନେ ପ୍ରକୃତିପ୍ରେମୀ । କଳା ବା କବିତାରେ ଯେଉଁ ପ୍ରେମ ଏବେ ବି ରୂପାୟିତ ।

କବି କେମେରେଭ୍ ରବର୍ଟ ଫ୍ରଷ୍ଟଙ୍କ ପରି ପ୍ରକୃତିପ୍ରେମୀ । ସେ ସଂଯତବାକ୍ । ଯେତିକି ଦରକାର, ସେତିକି କହନ୍ତି । କିଣ କହୁ କହୁ କୁଆଡେ ଯାଇ ପହଞ୍ଚନ୍ତି ନାହିଁ । ପ୍ରଶ୍ନର ସଂକ୍ଷିପ୍ତ ଉତ୍ତର ଦିଅନ୍ତି, ସମୟ ନଷ୍ଟ ହେଉଛି ବୋଲି ବୁଝିଁ, ଏଇ ତାଙ୍କର ରୀତି ।

ତାପରେ ମୁଁ ସେଣ୍ଟ୍ଲୁଇସ୍ ନଗର ଭିତରେ ବା ବାହାରେ କେତେକ ଦୃଶ୍ୟ ଦେଖିଥିଲି ।

## ଜେନେରାଲ୍ ମୋଟର୍ସ୍

ଏ ଯୁଗରେ ମଟର ଗାଡ଼ି ଚଢ଼ିଛନ୍ତି ପ୍ରାୟ ସମସ୍ତେ, ନିଜର ଥାଉ ବା ନ ଥାଉ । କିନ୍ତୁ ମଟର୍ ଗାଡ଼ି ତିଆରି ଦେଖିଛନ୍ତି କେତେଜଣ ?

ଯୋଗ ଘଟିଲ; ଅନୁମତି ମିଳିଲ । ନିକ ବି ଡ୍ରାଇଭ୍ କରିନେଲ । ଆମେ ପହଞ୍ଚିଲୁ ଓ୍ୱେଣ୍ଟ୍ଭିଲେ ଆସେମ୍ବ୍ଲି ସେଣ୍ଟର୍ ଜେନେରାଲ୍ ମୋଟର୍ସ୍ର କାର-ଖାନାରେ । କୋଡ଼ିଏ ହଜାର ଯାତ୍ରୀ, ପ୍ରଚଣ୍ଡ ଭିଡ଼ ।

ଏ ମଟର ତିଆରି ଇତିହାସକୁ ମଣିଷର ଉନ୍ନତିବିଷୟକ କାହାଣୀ ବୋଲି କୁହାଯାଇଛି । ଏହା ଆମେରିକାର ସର୍ବବୃହତ୍, ବୋଧହୁଏ ପୃଥିବୀର ବୃହତ୍ତମ

କାରଖାନା । ଏହାର ମୁଖ୍ୟ କେନ୍ଦ୍ର ଡେଟ୍ରଏଟ୍‌ରେ । ଆମେ ସେଣ୍ଟ୍‌ଲୁଇସ୍‌ର ଶାଖା କାରଖାନାଟି ଦେଖିଲୁ, ୪୦ ମାଇଲ୍ ଦୂରବର୍ତ୍ତୀ ।

କାରଖାନା ଦେଖିବା ଆଗରୁ ଆମ ଆଖିରେ ଏକ ସ୍ୱତନ୍ତ୍ର ଧରଣର ଚଷମା ପିନ୍ଧାଇ ଦିଆଗଲା । ଓ୍ୱେଲ୍‌ଡିଂ ଦେଖିଲାବେଳେ କାଳେ ନିଆଁ ଗୁଣ୍ଡ ଆଖିରେ ପଡ଼ିବ, ସେଥିଲାଗି । ଫେରିବା ଆଗରୁ ଚଷମା ଫେରାଇ ନିଆ ହେଲା ।

ଉନ୍ନତାଳବ୍ୟାପୀ କାରଖାନାଟି ଏକ ବିପୁଳ ଯନ୍ତ୍ରସଂସାର, ସ୍ୱୟଂଚାଳିତ । ବହୁ ଶକ୍ତିଶାଳୀ ଆଲୋକ, ଗ୍ରୀଷ୍ମ ମଧ୍ୟାହ୍ନର ରୌଦ୍ର ପରି ଚତୁର୍ଦ୍ଦିଗକୁ ଆଲୋକିତ କରେ । ୧୬୫ଟି ରୋବଟ୍ ବା ଲୌହମାନବ ଏଥିରେ କାର୍ଯ୍ୟ କରୁଛନ୍ତି । ମଣିଷର ଦୁଃସାଧ୍ୟ କାର୍ଯ୍ୟ ଅକ୍ଳେଶରେ ସାଧନ କରି ଯାଉଛନ୍ତି ।

କାରଖାନାରେ କର୍ମୀଙ୍କୁ ଯୋଗ୍ୟତା ଅର୍ଜନ ଲାଗି ୧୧୦୦ ଘଣ୍ଟା ଟ୍ରେନିଂ ଦିଆଯାଏ । ଅତ୍ୟାଧୁନିକ ଏଇ କାରଖାନାଟି ୭୧ ଏକର ଜାଗାରେ ଅବସ୍ଥିତ; ଆଗେ ଗହମ କ୍ଷେତ ଥିଲା । ଏବେ ଏଥିରୁ ଘଣ୍ଟାକୁ ୭୫ଟି କାର୍ ପ୍ରସ୍ତୁତ ହୋଇ ବିକ୍ରୀ ଲାଗି ବାହାରିଯାଏ । କାରଖାନାର ଶେଷଭାଗରେ ସ୍ୱତନ୍ତ୍ରଭାବେ ନିର୍ମିତ ବୃହତ୍ ଟ୍ରକ୍ ଗୋଟାକ ପରେ ଆଉ ଗୋଟାଏ ଆସି ଛିଡ଼ା ହେଉଛି । ଥରକେ ଦଶୋଟି କାର୍ ଘେନି ଟ୍ରକ୍ ଚାଲିଯାଉଛି ।

ରୋବଟ୍ ବ୍ୟତୀତ ୩୫୦୦ ଲୋକ ଏଥିରେ କାର୍ଯ୍ୟ କରନ୍ତି । ତିନୋଟି ସିଫ୍‌ଟରେ କାର୍ଯ୍ୟ ଲାଗି ୭୦ଟି ଡ୍ରାଇଭର୍ ବିହୀନ ରେଲ୍‌ଗାଡ଼ି ମଟର ପାର୍ଟ ଘେନି କାରଖାନାରେ ପ୍ରବେଶ କରନ୍ତି । ୫୫୦୦ଟି ମଟର୍ ପାର୍ଟ ୭୦୦ ଯୋଗାଣ କାରଖାନା ଯୋଗାଇଥାନ୍ତି । ବିଭିନ୍ନ ପାର୍ଟ ସବୁ କୋଉଠି ଲୁହା ମଣିଷ, କୋଉଠି ବା ରକ୍ତ ମାଂସର ମଣିଷ ଖଞ୍ଜି ଥାନ୍ତି । ଉପର ଭିତ ଓ ଗାଡ଼ିର ତଳ ଅଂଶକୁ ଓ୍ୱେଲ୍‌ଡିଂ କରିଯାଇ ବଡ଼ି ତିଆରି ହୁଏ, ତାପରେ ଯନ୍ତ୍ରାଂଶ ଖଞ୍ଜାଯାଏ, ଶେଷରେ ଧଳା, ଲାଲ୍ ବା ନୀଳ ରଙ୍ଗ ସ୍ପ୍ରେ କରାଯାଏ । ୧୪୭ଟି ରୋବଟ୍ ଏହା କରନ୍ତି ।

ତାପରେ ଯନ୍ତ୍ରାଂଶ ଠିକ୍ ଅଛି କି ନାହିଁ, ପରୀକ୍ଷା କରାଯାଏ । ସର୍ବତୋଭାବେ ସଂପୂର୍ଣ୍ଣ ଗାଡ଼ି ବାହାରି ଆସେ—କାଡ଼୍‌ଲାକ୍, ଡେଭିଲ୍‌ଲେଟ୍—ପ୍ରାମିସ୍ଥ ଦାମ୍ ୧୭,୧୦୦ ଡଲାର୍ ।

ଫେରିଲାବେଳକୁ ଆମକୁ ଖଣ୍ଡିଏ ବିବରଣୀ ବହି, କାରଖାନାର ନାମ ଅଙ୍କିତ ଗୋଟିଏ ତାମ୍ର ମୁଦ୍ରା, ଗୋଟିଏ ପ୍ୟାକେଟ୍ ବିସ୍‌କୁଟ୍, ଏକ ଗ୍ଲାସ୍ ସୋଡ଼ା ଜାତୀୟ ପାନୀୟ ବା ବିଅର୍ ଉପହାର ଦିଆଯାଇଥିଲା ।

## ନିଜକୁ ମଣିଷ କର

ଲତା, ମୁଁ, ଇରା, ନିକ ସ୍ୱଜନ—ଆମ ଲକ୍ଷ୍ୟ ଓଜାର୍କ ପର୍ବତମାଳାର ସିଲ୍‌ଭର୍‌ ଡଲର୍‌ ସିଟି । ପଥ ପର୍ବତମୟ, ଅରଣ୍ୟସଂକୁଳ । ବାଟରେ ଗୋଟିଏ ସ୍କୁଲ୍‌ ଦେଖିଲୁ—ଏଥିରେ ଜଣେ ହେଲେ ବଡ଼ଲୋକ ପିଲା ପଢ଼େ ନାହିଁ । ସବୁ ପିଲା ଗରିବ, ନିଜ ଗୋଡ଼ରେ ଛିଡ଼ା ହୋଇ ମଣିଷ ହୁଅନ୍ତି । କୁବେର ପୁରୀରେ ଆଶ୍ଚର୍ଯ୍ୟ ଏ କଳ୍ପନା, ଅଦ୍ଭୁତ ଏ ସ୍କୁଲ୍‌ !

ଷଟୀଦ୍ୱୀପର କପାଳ ଲେଖାକୁ ପୋଛନ୍ତି ଏମାନେ, ନିଜ ଲାଗି ବନ୍ଦ ଦୁଆର, ଝରକା ଧକ୍‌କା ମାରି ଖୋଲନ୍ତି, ସେଇ ଆଲୁଅ, ପବନରେ ନିଜେ ବଢ଼ନ୍ତି, ନିଜକୁ ଗଢ଼ିବାର ଗୌରବ ସମସ୍ତେ ଅର୍ଜନ କରନ୍ତି ।

ଓଜାର୍କ ସ୍କୁଲ୍‌ର ସବୁ ପିଲା ନିଜ ଅର୍ଜନରେ ପଢ଼ାବ୍ୟୟ ନିର୍ବାହ କରନ୍ତି । କିଏ ଘାସ କାଟେ, କିଏ ବଗିଚା କାମ କରେ, କିଏ ଗାଈ ଚରାଏ, କିଏ ଗୁହାଳ ପୋଛେ; କିଏ କାଣ୍ଟିନ୍‌ ଲାଗି ଜଳଖିଆ ତିଆରି କରେ, କିଏ ବା ଜଳଖିଆ ବାଣ୍ଟି କରେ, କିଏ ଅଇଁଠା ବାସନ ମାଜେ, କିଏ ରାସ୍ତାଘାଟ ଓଳାଏ, କିଏ ମ୍ୟୁଜିୟମ୍‌ ପରିଚାଳନା କରେ, କିଏ ଫଳରସ ବାହାର କରେ, କିଏ ବା ତିନୋଟି ଡବା-ଲଗା କୋଚ୍‌ ଚଳାଇ ଯାତ୍ରୀଙ୍କୁ ସ୍କୁଲ୍‌ ଦେଖାଏ ।

ସ୍କୁଲ୍‌ରେ ମୋଟ ୬୫ ପ୍ରକାର କାର୍ଯ୍ୟ । ଛାତ୍ରଛାତ୍ରୀମାନେ ପୂରାପୂରି ଆତ୍ମନିର୍ଭରଶୀଳତା ଏଇ ସ୍କୁଲରୁ ଶିଖନ୍ତି । କାର୍ଯ୍ୟକର୍ମ କରି ଖୁବ୍‌ ନିଦା, ସାଦାସିଧା, ଖାଇପିଇ ଖୁବ୍‌ ସ୍ୱାସ୍ଥ୍ୟବାନ୍‌, ସ୍ୱାସ୍ଥ୍ୟବତୀ ଦିଶୁଛନ୍ତି ।

୧୯୦୬ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ଏହି ଅନୁଷ୍ଠାନ ଏବେ ବଢ଼ିଯାଇଛି, ସମଗ୍ର ଦେଶରେ ଲୋକପ୍ରିୟ ହୋଇ ଉଠିଛି । ଏଥିଲାଗି ଧନୀଲୋକ ବହୁ ଅର୍ଥ ଦାନ କରନ୍ତି । ନିଜ ଅର୍ଜନରେ ଚଳାଚଳ ଲାଗି ନିଅଣ୍ଟ ହେଲେ ଦାନ ସୂତ୍ରରୁ ଲବ୍‌ଧ ଜମା ଟଙ୍କାରୁ ସାହାଯ୍ୟ ଦିଆଯାଏ ।

ଉଚ୍ଚ ଶିକ୍ଷା ପାଇବା ଇଚ୍ଛା, ଅଥଚ ଗଣ୍ଠିରେ ଧନ ନାହିଁ । ଏହିଭଳି ଛାତ୍ରଛାତ୍ରୀ ବାଛି ଅନୁଷ୍ଠାନରେ ନିଆଯାଏ । ଦିନସାରା ରୁଟିନବନ୍ଧା ଜୀବନ । ମୁଣ୍ଡରେ ମନ୍ଦ ଚିନ୍ତା ପଶିବାକୁ ବେଳ ନ ଥାଏ । ଜୀବନର ପ୍ରକୃତ ମୂଲ୍ୟମାନ ଏମାନେ ବୁଝନ୍ତି । ବଡ଼ଲୋକ ହେବାଲାଗି ଉପଯୁକ୍ତ ପରିବେଶ ସୃଷ୍ଟି ହୋଇଛି । ବଡ଼ଲୋକ ହେଲେ ଦୃଢ଼ଭାବେ ଗଠିତ ପ୍ରକୃତି ବଦଳିଯାଏ ନାହିଁ । କଠୋର କର୍ମ ଶୃଙ୍ଖଳାରେ ହାଡ଼ ଟାଣ ହୋଇଛି ।

ମନୋବିଜ୍ଞାନର କଷଟି ପଥରରେ ମନକୁ କଷି କାର୍ଯ୍ୟ ଦିଆଯାଏ । ପ୍ରତି ଛାତ୍ର ବର୍ଷକୁ ୧୬୦ ଘଣ୍ଟା କାର୍ଯ୍ୟ କରେ ।

ଏହି ଅନୁଷ୍ଠାନରେ କୃଷି, କଳା, ସାହିତ୍ୟ, ଯାତାୟାତ, ଶରୀର ବିଦ୍ୟା, ବ୍ୟବସାୟ, ଅର୍ଥନୀତି, ପଦାର୍ଥ ବିଦ୍ୟା, ଶାସନ, ଶିକ୍ଷା, ଇତିହାସ, ବିଦେଶୀ ଭାଷା, ସଙ୍ଗୀତ, ପାଠାଗାର ବିଦ୍ୟା, ଧର୍ମ, ଦର୍ଶନ, ସ୍ୱାସ୍ଥ୍ୟ, ମନୋବିଜ୍ଞାନ, ସମାଜ ବିଜ୍ଞାନ, ନାଟକ ପ୍ରଭୃତିର ପଠନ ପାଠନ ବ୍ୟବସ୍ଥା ଅଛି ।

ଛାତ୍ରଛାତ୍ରୀ ସଂଖ୍ୟା ୧୨୦୦; ଅନୁଷ୍ଠାନଟି କ୍ଷୁଦ୍ର, କିନ୍ତୁ ମହିମାମୟ । ବିପୁଳ କ୍ଷେତ୍ରରେ ଚମତ୍କାର ତୃଣକ୍ଷେତ୍ର, ଉଦ୍ୟାନ, ହ୍ରଦ, କୃତ୍ରିମ ପ୍ରପାତ ଓ ଫୁଆରାସବୁ ଦୃଷ୍ଟି ଆକର୍ଷଣ କରେ ।

ସବୁଠାରୁ ଚିତ୍ତାକର୍ଷକ ଯାଦୁଘରଟି, ଜନମଣ୍ଡଳୀ ଘର । ଏଥିରେ ଏକ ଲକ୍ଷ ଦ୍ରବ୍ୟ ସଂଗୃହୀତ, ବିଜ୍ଞାନ ରୀତିରେ ସଯତ୍ନେ ସଂରକ୍ଷିତ ।

ଓଜାର୍କର ପ୍ରସିଦ୍ଧ କବି, ଶିଳ୍ପୀ, ରାଜନୀତିକ, ଜ୍ଞାନୀ, ଚିତ୍ରକର, ସମାଜ-ସେବୀ ପ୍ରଭୃତିଙ୍କ ଚିତ୍ରପଟ ସୁସଜ୍ଜିତ ହୋଇ ରହିଛି । ଲୋହିତଭାରତୀୟଙ୍କ ଧନୁ, ତୀର, ଅସ୍ତ୍ରାଗାର, କାନୋ, ବିଭିନ୍ନ ଶିଳ୍ପ, ଭାସ୍କର୍ଯ୍ୟ, ବ୍ୟାଘ୍ର, ସିଂହ, ବାଇସନ୍, ବନ୍ୟ ମହିଷ, ବିଭିନ୍ନ ସର୍ପ ଭଲ୍ଲୁକ ବିଶେଷ ଆକର୍ଷଣୀୟ ।

ଓଜାର୍କ ପର୍ବତମାଳାର ଏକ ଶାଖା ପର୍ବତ 'ଟେବୁଲ୍ ରକ୍' ତା ତଳେ ବୋହିଥିବା ଏକ ନଦୀ ବନ୍ଧା ଯାଇ ୭୯ ମାଇଲ୍ ବ୍ୟାପୀ ଏକ କୃତ୍ରିମ ହ୍ରଦ ନିର୍ମାଣ କରାଯାଇଛି ।

ଏହି ହ୍ରଦ କୂଳେ କୂଳେ ଯାଇ ଗ୍ରାମଙ୍କ ସଂଗୃହୀତ ଆଉ ଗୋଟିଏ କ୍ଷୁଦ୍ର ମ୍ୟୁଜିଅମ୍ ଦେଖିଲୁ । ସେଥିର ଦ୍ରବ୍ୟ ସମ୍ଭାର ମଧ୍ୟରେ ଓଜାର୍କ ପର୍ବତର ଜୀବନ୍ତ, ମୃତ, ବିଷାକ୍ତ, ଅବିଷାକ୍ତ, ବିଶେଷତଃ ତମ୍ବାମୁଣ୍ଡିଆ ସାପ ଦେଖିଲୁ ।

ଆମେରିକାରେ ପକ୍ଷୀ ଦୁର୍ଲଭ । ତେଣୁ ଗାୟକ ପକ୍ଷୀମାନଙ୍କ ସ୍ୱର ଟେପ୍-ରେକର୍ଡ଼ କରାଯାଇଛି । ଯେ ବାଟେ ଗଲାବେଳେ ଲାଗୁଛି—ସତେ ଯେପରି ପକ୍ଷୀ ପାଖ ବୃକ୍ଷ ଶାଖାରେ ବସି ମଧୁର କାକଳି ଶୁଣାଉଛି ।

ପାନାମା ଦେଶର ଝିଅଟିଏ ଏହି ଗ୍ରେଟ ମ୍ୟୁଜିୟମ୍ ଦାୟିତ୍ୱରେ ଅଛି । ପାନାମା କେନାଲ୍ ପରି ତାର ତୀକ୍ଷ୍ଣ ମୁଖ । ଆଳାପ ମଧୁର ଗୀତ ପରି ଶୁଭେ । ଭାଷା ସ୍ପାନିସ୍ । ଭଙ୍ଗା ଭଙ୍ଗା ଇଂରାଜୀ କହେ । ମ୍ୟୁଜିଅମ୍ ଦେଖି ଆମେ ହ୍ରଦ

ତାରରେ କଣ୍ଟା ଗଛର ଗଣ୍ଡି ଉପରେ ବସିଲୁ । ସନ୍ଧ୍ୟା ନଇଁ ଆସୁଥାଏ । ଦିନ ରଡରଡ । ଏଠି ସେଠି ଅସ୍ତାଡପ ଦପ୍ ଦପ୍ କରୁଥାଏ ।

## ସିଲ୍‌ଭର୍ ଡଲାର୍ ସିଟି

ଓଜାର୍କ ପର୍ବତ ଧାରେ ଧାରେ ମୋଟେଲ୍ । ସମୁଦ୍ର ପଉନର ସହସ୍ରାଧିକ ଫୁଟ୍ ଉପରକୁ ଉଠିଛୁ । ଶୀତ କାଳରେ ପ୍ରବଳ ତୁଷାର ବୃଷ୍ଟି ହୁଏ, ଏବେ ବି ଶୀତଳ । ତେଣୁ ଯାତ୍ରୀ ଭିଡ଼ । ମୋଟେଲ୍‌ରେ ସ୍ଥାନ ଦୁର୍ଲଭ । ଆଗରୁ ବହୁ ଚେଷ୍ଟା କରି କଲ୍ ମ୍ୟାନ୍‌ସ୍ ଶପର୍ଟର ୧୦ ନମ୍ବର କାବିନ୍‌ଟି ମାତ୍ର ମିଳିଥିଲା । ଦୁଇଟି ଖଟ; ଆମେ ତ୍ରିଶଜଣ ଯାତ୍ରୀ । ଲିଡା, ଇରି ଗୋଟିଏ ଖଟରେ, ମୁଁ ଗୋଟିଏ ଖଟରେ, ନିଜ ଲାଗି ତଳେ ଶେଯ ପାରି ଦିଆଗଲା ।

ଇରି କହିଲା—ଏ ପାଣବାଗଜ ନିକାଟଟା; ମାନେ—ଅଳ୍ପ ଖାଦ୍ୟ ବାଣ୍ଟି-ଖୁଣ୍ଟି ଖାଇବା, ଅଳ୍ପ ଜାଗାରେ କୁଙ୍କୁରି କାଙ୍କରି ହୋଇ ଶୋଇବା । ଲାଗାଲାଗି ହୋଇ ବସି ହାର୍ଦ୍ଦିକ ଆଳାପ ଜମେଇବା । କାରୁ କାହାରି ପେଟରୁ ଊଣା ହେଲା ନାହିଁ, ଘରୁ ଯଥେଷ୍ଟ ଅଣାଯାଇଥିଲା—ପାଉଁରୁଟି, ଲହୁଣୀ, ଡାଲି, ତରକାରି, କଟେଜ ଚିଜ୍, ଫଳ, ଟମାଟୋ । ଖାଇବା ଶୋଇବା ଅପେକ୍ଷା ଏଠି ବଡ଼ ସମସ୍ୟା ହେଲା ଗାଡ଼ି ପାର୍କ କରିବା, ଲୁଆଁ ବୁଲିବାକୁ ପଡେ, ଏଠୁ ସେଠୁ ଆରଠୁ ବି ନିରାଶ ହୋଇ ଫେରିବାକୁ ହୁଏ ।

## ଓଜାର୍କର ମେଣ୍ଢାଚରାଳୀ

ହାନିବାଲ୍‌ରେ ଔପନ୍ୟାସିକ ମାର୍କଟ୍ୱେନ୍ ଯେପରି, ଓଜାର୍କରେ ହାରୋଲ୍‌ଡ ବେଲ୍ ରାଇଟ୍ ସେହିପରି ଲୋକପ୍ରିୟ । ତାଙ୍କ 'ମେଣ୍ଢାଚରାଳୀ' ଲୋକନାଟକ ଅଭିନୟ ଡଲାର୍ ସିଟିର ପ୍ରତିବର୍ଷର ମୁଖ୍ୟ ଆକର୍ଷଣ । ମୁଣ୍ଡପିଛା ଟିକେଟ୍ ପଡ଼େ ସାଢ଼େ ବାର ଡଲାର୍ ।

ଦିନରେ ବୁଲି ଯାହା ଯେମିତି ଦେଖାଦେଖି କରିବ, ରାତିଟି କଟିବ କିପରି ? ଯାତ୍ରୀଙ୍କ ବିନୋଦନ ଲାଗି ଅଭିନୟ ଏକମାତ୍ର ବ୍ୟବସ୍ଥା । ତେଣୁ ଅଣ୍ଡାବଚ୍ଚା ବୁଢ଼ାବୁଢ଼ୀ ସମସ୍ତେ ନାଟକ ଦେଖନ୍ତି । ଟିକେଟ୍ ପାଇବା ଦୁଷ୍କର ହୋଇପଡ଼େ ।

ଗାଡ଼ି ପାର୍କ କରି ସ୍ୱତନ୍ତ୍ର କୋଚ୍‌ରେ ନାଟକ ସହରକୁ ଯିବାକୁ ହୁଏ । ସହରକୁ ଏକ ପୁରୁଣା ରଙ୍ଗ ଦିଆହୋଇଛି, ପୁରୁଣା ଲଣ୍ଠନରେ ବିଜୁଳି ବଲ୍‌ବ ଖଞ୍ଜାଯାଇ ଧାଡ଼ିଧାଡ଼ି ଜଳୁଛି—ମିଞ୍ଜି ମିଞ୍ଜି ଆଲୁଅ ଆଉ ଛାଇରେ ସ୍ଥାନଟି ରହସ୍ୟମୟ ହୋଇ ଉଠିଛି । ପୁରୁଣା ଯୁଗର ରୋମାଞ୍ଚକର ଅନୁଭୂତିରେ ଲୋକେ ମୁହୂର୍ତ୍ତିକ

ଲାଗି ବୁଢ଼ା ଯିବାକୁ ଶୁଦାନ୍ତ । ତେଣୁ ନୂଆ ମଦକୁ ପୁରୁଣା ବୋତଲରେ ରଖି ପିଉଛନ୍ତି; ପୁରୁଣା କାଳର ଏକ ଗାଉଁଲି ପ୍ରେମ ଘଟଣାକୁ ନେଇ ରଚିତ ଯାତ୍ରା-ନାଟକ ଦେଖୁଛନ୍ତି ।

ପ୍ରାୟ ୮୦ ବର୍ଷ ତଳର ଘଟଣା । ଓଜାର୍କ ଅଞ୍ଚଳରେ ମରୁଡ଼ି ପଡ଼ିଲା । ଘାସ ପଡ଼ିଆ ବି ଶୁଖିଶାଖି ଗଲା । ମେଣ୍ଢା ଚରିବେ କେଉଁଠି ? ଚରାଳୀ କଣ ଖାଇ ବଞ୍ଚିବେ ? ଓଜାର୍କ ପାହାଡ଼ର ଗ୍ରାମସବୁ ତୀବ୍ର କ୍ଷୁଧା ଓ ରୋଗ ବ୍ୟାଧିର ସମ୍ମୁଖୀନ ହୋଇଥିଲା ବେଳେ ଶାନ୍ତିଲାଭ ଆଶାରେ ହାରୋଲ୍‌ଡ଼୍ ବେଲ୍ ରାଇଟ୍ ଆସି ସେଠି ପହଞ୍ଚିଲେ । ଜଣେ ମେଣ୍ଢାଚରାଳୀ ଝିଅ ସହିତ ପ୍ରେମରେ ପଡ଼ିଲେ । ନାନାଭାବେ ନିପୀଡ଼ିତ ଲୋକଙ୍କ ସହାୟକ ହୋଇ ଜୀବନ ବଞ୍ଚାଇଲେ ।

ସେହି ଲୋକନେତାଙ୍କ ପ୍ରେମ, ତତ୍କାଳୀନ ପାହାଡ଼ୀ ମେଣ୍ଢା ଚରାଳୀଙ୍କ ଜୀବନଯାତ୍ରାର ବିଶଦ ଚିତ୍ର ନାଟକରେ ଦିଆଯାଇଛି, ମୂଳରୁ ଚୂଳ ହାସ୍ୟରସ-ଭରା । ସେ କାଳରେ ଲୋକପ୍ରିୟ ଘୋଡ଼ାନାଲ୍ ଖେଳର ଚିତ୍ର ବି ଦିଆ ଯାଇଛି ।

ମେଣ୍ଢାପଲ୍ ନେଇ ଚରାଳୀ ଷ୍ଟେଜ୍ ଉପରକୁ ଆସୁଛି, ବନ୍ୟ ଗୀତ ଗାଉଛି । ନାୟକ ନାୟିକା ଘୋଡ଼ାଗାଡ଼ିରେ ବସି ଷ୍ଟେଜ୍ ଉପରକୁ ଆସୁଛନ୍ତି । ସେମାନଙ୍କ ପୁରୁଣା ପ୍ରେମରୀତି, ଠାଣିମାଣି ଓ ଗୀତରେ ଜବାବ୍ ଦିଆନିଆ ଦର୍ଶକମାନଙ୍କର ଏକାନ୍ତ ଉପଭୋଗ୍ୟ ହୋଇଥିଲା ।

ଓଜାର୍କର ସରଳ ପଲ୍ଲୀ ଜୀବନ, ଅନାଟନ ଓ ରୋଗ ବ୍ୟାଧିରେ ନିଃସ-ହାୟତା ଏକାନ୍ତ ଆକର୍ଷଣୀୟ, ଯଦି ବା ସେମାନଙ୍କ ଶସ୍ତା ହାସ୍ୟରସ ବୁଝିବାକୁ ମୁଁ ଅକ୍ଷମ ହେଲି ।

ବେଳା ଦଶଟା; ପିଲ୍‌ଗ୍ରିମ୍ ଡାଲର୍ ସିଟି ଖୋଲିଲା । ପଢ଼ିଲେ ଗୁରୁଗମ୍ଭୀର ସଂକଳ୍ପ ବଚନ—ମୁଁ ଆମେରିକା ପ୍ରତି, ତାର ସମ୍ମାନିତ ପତାକା ପ୍ରତି, ଆମେରିକୀୟ ଗଣତନ୍ତ୍ରର ଉଚ୍ଚ ଆଦର୍ଶ ପ୍ରତି ଅନୁଗତ ରହିବ ।

ତାପରେ ଗୁଳି ଫୁଟିଲା । ରଙ୍ଗମଞ୍ଚରୁ କେତେକ କୌତୁକ କଥା, ଗୀତ ଶୁଣାଗଲା । ଗୃହ ଖୋଲିଲା । ଯାତ୍ରୀ ଧାଡ଼ି ଲମ୍ବି ଚାଲିଲା ।

ଓଜାର୍କ ଅର୍ଥ ଧନୁର ରାଜ୍ୟ । ଏ ଯୁଗରେ ଧନୁର୍ଦ୍ଧର କେହିତ ଭାରତୀୟ ଥାଇ ନାହାନ୍ତି ? ସେମାନେ ମରୁଭୂମି ଅଞ୍ଚଳକୁ ବିତାଡ଼ିତ ।

ଓଲ୍ଡ଼୍ ମ୍ୟାଟ୍‌ସ୍ କାବିନ୍ ତା'ର ଗୋଟିଏ ନମୁନା ଘର । ଏ ଘରେ ତାର କିଛି ଆସବାବ୍, ଚଳଣିର ଇତିହାସ ରହିଛି । ଦିନେ ମାଟ୍ ଜୀବନ୍ତ ଓ ତା ପଡ଼ୋଶୀ ଓ ଗ୍ରାମ୍ୟ ସମାଜ ଗଭୀର ସତ୍ୟ ଥିଲା । ଏବେ ସ୍ୱପ୍ନ ପରି ଲାଗେ ।

କପର୍ ଡଲାର ସିଟିର ପ୍ରାକୃତିକ ପରିବେଶ ଅପୂର୍ବ । ପାହାଡ଼ ଉପରେ ଉଠାପକା ରାସ୍ତା, କୃତ୍ରିମ ଝରଣା ଓ ପ୍ରପାତ; ସେହି କ୍ଷୁଦ୍ର ପ୍ରପାତ ସହିତ କାନୋରେ ପାହାଡ଼ ଉପରୁ ଦ୍ରୁତ ବେଗରେ ଗଡ଼ିଆସିବାରେ ଯୁବକୀୟ ଉନ୍ମାଦନା ପ୍ରକାଶ ପାଏ ।

ପାହାଡ଼ ଗୁମ୍ଫାରେ ହୋଟେଲଟିଏ । ଭିତରେ ମୁଣ୍ଡ ବାଜେ ନ ବାଜେ । ପୁରୁଣା ଲଣ୍ଠନରେ ବିଜୁଳି ବଲ୍‌ବ, ଆଲୋକ କ୍ଷୀଣ, ପଥ ସଙ୍କୀର୍ଣ୍ଣ, ବୁଭୁକ୍ଷୁଙ୍କ ଭିଡ଼ । ପେରେମ୍ବୁଲେଟର୍‌ରେ ଛ' ମାସିଆ ଶିଶୁ, ମାଆ ଠେଲି ନେଉଛି । ନିଜେ ଚଲାଇ ପାରୁଥିବା ଚକଲଗା ଚୌକିରେ ବୃଦ୍ଧ, ବୃଦ୍ଧା, ବିକଳାଙ୍ଗ, ସ୍ଥା ଭିତରୁ ବାହାରକୁ ଖସିଯାଇ ହିଁ ନିଃଶ୍ୱାସ ମାରିଲୁ । ଏମାନଙ୍କ ସହିତ ଭୋଜନ ଲାଗି ପ୍ରତିଯୋଗିତା କରିବାକୁ ମନ ବଳିଲା ନାହିଁ । ବୁଲି ବୁଲି ପାଦ ଥକିଥିଲା ।

ଗାଡ଼ିରେ ବସିଲୁ; ଆମ ନନ୍ଦନ ବନ ପରି ଏଠି ରେଲ୍‌ଗାଡ଼ି ବୁଲେ । ଗୁଳି ମରାମରି—ପୁଲିସ୍ ଆଉ ରେଲ୍ ଡାକୁଙ୍କ ମଧ୍ୟରେ । ଡାକୁ କେତେକ ମରି-ପଡ଼ିଲେ, କେତେକ ଖସି ପଳାଇଗଲେ । ଯାତ୍ରୀଙ୍କ ମନୋରଞ୍ଜନ ଲାଗି ଏ ନିଷ୍ଠୁର କୌତୁକ ଦେଖାଗଲା ।

ତାପରେ ବହୁ ପୁରାତନ ପଥର ଘର, ପୁରାତନ ଯନ୍ତ୍ରପାତି, ପୁରାତନ କାଷ୍ଠ ସେତୁ, କାଷ୍ଠ ପଥ, ବୃକ୍ଷଲତା କୁଞ୍ଜ, ହ୍ରଦରେ ନୌକାଯାତ୍ରା ଦେଖିଲୁ ।

ଜଣେ ବେହେଲା ବଜାଇ ନାଚୁଛି, ଜଣେ କଥାକୋବିଦ ପ୍ରାଚୀନ ରୀତିରେ ଗପ କହୁଛି, ପିଲାମାନେ ଘେରି ଶୁଣୁଛନ୍ତି । ଉଦ୍ୟାନର କୋଣେ କୋଣେ କେତେ ନାଚ, ସଙ୍ଗୀତ ଆସର ଜମିଛି ।

ସିଟିର ସତ୍ତା ସ୍ଥା ଭିତରେ ନାହିଁ । ସିଲ୍‌ଭର୍ ଡଲାର୍, କପର୍ ଡଲାର୍ ନାମ କାହିଁକି ଦିଆଯାଇଛି ? ମନେ ହେଲା—ନାମ୍ ବଡ଼ା, ଦରଶନ୍ ଥୋଡ଼ା । ବହ୍ୱାରମ୍ଭେ ଲଘୁକ୍ରିୟା । ଘରୋଇ ପ୍ରତିଷ୍ଠାନର ଶିଳ୍ପ ପ୍ରଦର୍ଶନୀଟିଏ; ବିଜ୍ଞାପନ ପ୍ରଚୁର । ଶୃଙ୍ଖଳା, ସୌଜନ୍ୟ ଉଚ୍ଚକୋଟୀର । ମୋଟେଲ୍‌କୁ ଫେରିଲାବେଳେ

ବୋଧ ହେଲା—ଗୋଟିଏ ହେଲେ ସିଲ୍‌ଭର୍ ବା କପ୍‌ର୍ ଡଲାର୍ ପକେଟରେ ନ ନେଇ ଫେରିଛୁ ।

## ହ୍ରଦ ତୀରର ସକାଳଟିଏ

ବଡ଼ଘେର୍‌ରୁ ଉଠି ଏକମୁହାଁ ହ୍ରଦ କୂଳକୁ ଚାଲିଗଲି । ଚତୁର୍ଦ୍ଦିଗରେ ପାହାଡ଼, ମଝିରେ ଓଜାର୍କ ହ୍ରଦ । ହ୍ରଦ ଉପରେ ପଡିଲା କୁହୁଡ଼ି ? କୁହୁଡ଼ି ଉପରେ ଉଷାର ରଙ୍ଗୀନ୍ ପଣତ ଦୋହଲୁଛି ।

ରବିନ୍‌ଟିଏ ଆସି ହଠାତ୍ ସାମ୍ନାରେ ବସିଗଲା ମୋର । ସ୍ନେହରେ ଟିକିଏ ଗେଲ କରିବା ଲାଗି ତା ପାଖକୁ ଚାଲି ଚାଲି ଗଲି । ଧରୁ ନ ଧରୁ ଦେଲା ଏକ ଲମ୍ଫ—ଏକା ଥରକେ ପାଞ୍ଚ ହାତ । ଦୂର ବୁଦା ପଛରେ ଛୁଆ ହୋଇ ମୋତେ ପ୍ରଶ୍ନକଲା—ବିଶ୍ୱାସର କ'ଣ ଏଇ ଫଳ ? ବଣରେ ଆଉ କିଏ ଅଛୁ ? ଏଇ ଆମେ କେଉଁଟା ଶ୍ରେଷ୍ଠ ଜୀବ ମାନ । ଧରୁଛ କି ସାହସରେ ? ତୁମେ କଣ ଏକା ଏଇ ସଂସାରରେ ରହିବ ? ଆଉ କୋଉ ପଶୁ କି ପକ୍ଷୀ ରହିବେ ନାହିଁ ?

ମନେ ମନେ ତାର ଉତ୍ତର ଦେଲି—ଧର୍ମ ଦେବ କି ନାହିଁ ଦେଖୁଥିଲି ନା, ସତେ କଣ ଧରିଥାଆନ୍ତି ? କେତେଲୋକ ଏମିତି କୌତୁକ କରି ଆସୁଛନ୍ତି ନା ମୁଁ ଏକା ? ବାପ କଣ ପୁଅଝିଅଙ୍କୁ ଗେଲ କରେନାହିଁ ?

କି ମଧୁର ମଧୁର ସ୍ୱର ! ଏଠି ତ ଆଉ କେହି ନାହିଁ, ଏ ପକ୍ଷୀ କଣ ଏକା ମୋର ଲାଗି ଗାଉଛନ୍ତି ?

ପଢ଼ିଶାରେ ରହି ମଧ୍ୟ ଏଠା ପକ୍ଷୀ ମଣିଷର ପଡ଼ୋଶୀ ନୁହନ୍ତି । ମଣିଷ ପକ୍ଷୀ ଆଧାରରେ ବିଷ ମିଶାଇ ଗଣହତ୍ୟା କରିଛି । ବୁଲବୁଲ୍ କାହିଁ ? କାହିଁ କୋଇଲି ?

ମଣିଷ ସାଙ୍ଗେ ସେମାନେ ଆଉ ମିଶିବେ କାହିଁକି ? ଫାନ୍ଦ ବସାଇ ଧରିନେବ ! ଚଢ଼େଇଖାନାରେ ବନ୍ଦୀ କରିବ ! ପକ୍ଷୀ ଉଷା, ସନ୍ଧ୍ୟାରେ ଯୋଉ ସଙ୍ଗୀତ ଶୁଣାଏ, ତାର ପ୍ରତିଫଳ କଣ ଏଇ ?

ରଙ୍ଗୀନ୍ କୁହୁଡ଼ି ତ୍ଳା ପରି କୁଆଡ଼େ ଉଡ଼ିଗଲା । ହ୍ରଦଯାକ ଗାଢ଼ ରଙ୍ଗର ଅବିର ବୁଣି ହୋଇଗଲା । ତରଙ୍ଗଚଞ୍ଚଳ ହ୍ରଦରେ ସ୍ନାତ ସକାଳଟି ମୋ ପ୍ରାଣରେ ପଶିଗଲା । ମୁଁ ଫେରିଲି କବିତାଭରା ହୋଇ ।

ସ୍ୱିମିଂପୁଲ୍ ? ପୁଲ୍ ଘରପାଖେ କେଉଁଟା ଏଭରଗ୍ରିନ୍ । ସେଥିରେ କଣ୍ଟା କଣ୍ଟା ସବୁଜ ଫଳ । ବଗ୍ଗୁ ବଗ୍ଗୁ ବାଲିଗିରଡ଼ାରେ ଏକ ଜାତୀୟ ଏଭର୍‌ଗ୍ରିନ୍

ଲଟାଇଛି । ପାଖରେ କେତୋଟି ଲାଲ୍ ଫୁଲର ମଞ୍ଚା । କେତୋଟି ରଙ୍ଗୀନ୍ ଛତା ଟଣା ।

ଦେଖିବାରେ ନାମକୁ ମାତ୍ର ଆବରଣ, ଯୁବତୀମାନେ ଜଳକେଳି କରୁଛନ୍ତି । ବାପା ପୁଲ କୂଳ ଆରାମ୍ ଚେୟାର୍‌ରେ ବସି ଘୁମାଉଛନ୍ତି ।

## କଷ୍ଟ ନ କଲେ କୃଷ୍ଣ ନ ମିଳେ

ଇରା ସଙ୍ଗରେ ରୁଟିଲ, ଡାଲି, ଅଣ୍ଡା, ଦୁଧ, ପଣ୍ଡପଣିଆ ସବୁ ଆଣିଥିଲା । କିନ୍ତୁ ସେସବୁ ଆଉ ବାସନମଜା ହେଙ୍ଗାମରେ ପଶୁଛି କିଏ ? ଆମେ ଗୋଟିଏ ହୋଟେଲ୍‌କୁ ଗଲୁ । ମୁଁ କଡ଼୍ ମାଛଭଜା, ଗ୍ରିଲ୍‌ଚିକ୍, ସ୍ୟାଣ୍ଡ୍‌ଓ୍ୱିଚ୍, ଚିପ୍‌ସ୍, ଦୁଧ ମଗାଇ ଖାଇଲି । ଅନ୍ୟମାନେ ଯେଝା ରୁଚିମତେ ଖାଇଲେ ।

ଡଲର୍ ସିଟି ଲେକ୍‌ରେ 'ସ୍କି' ଖେଳିବା ନନ୍ଦର ଇଚ୍ଛା । ଏକମାତ୍ର ଗେହ୍ଲା-ପୁଅ, ତା ଇଚ୍ଛାକୁ ରୋଧ କରିବ କିଏ ? ଜେଟ୍ ପାଓ୍ୱାର୍ ସ୍କିର ଭଡ଼ା ଘଣ୍ଟାକୁ ୫୦ ଡଲର୍ । ତା ଉପରେ ଛିଡ଼ାହୋଇ ବୋତାମ ଟିପିଲେ ଦ୍ରୁତ ଗତିରେ ପାଣି ଉପରେ ଚାଲେ । ମାଆମନ ଦହଲିଗଲା । ଏ ହ୍ରଦରେ କେତେ ପାଣି କିଏ କହିଛି ? କାଳେ ହ୍ରଦ ମଝିରେ ଯନ୍ତ୍ର ବିଗିଡ଼ିଯିବ ' ପୁଅ କୂଳକୁ ପହଁରି ଆସି ନ ପାରିବ ! ଇରାଯାଇ ହ୍ରଦ କୂଳରେ ଜଗି ବସିଲା । ନନ୍ଦ ଦୁଃସାହସିକ ସ୍କି ଖେଳି କୂଳକୁ ଫେରିଲା । ମନରେ ଅସୀମ ତୃପ୍ତି ।

ଜଙ୍ଗଲି ପାହାଡ଼ସବୁ କୁହୁଡ଼ିଭରା, ସୂର୍ଯ୍ୟ ଅଧା ଅଧା ଦିଶୁଥାନ୍ତି, କେତେ-ବେଳେ ବା ପୁଣି ଲୁଚି ଯାଉଥାନ୍ତି । ଆମେ ଫେରିଲୁ—ଦୀର୍ଘ ଦୁଇଶ ଷାଠିଏ ମାଇଲ୍ ପଥ, ଅଧେ ନନ୍ଦ, ଅଧେ ଇରା ଡ୍ରାଇଭ୍ କଲା ।

ଇରା ମୋ ମର୍ଜି ଜଗି ଯେତେ କଷ୍ଟ ପଡ଼ୁ ପଛେ ସବୁ ଦୃଶ୍ୟ ବୁଲାଇ ଦେଖାଉଥାଏ । କିନ୍ତୁ ମନରେ ଅସନ୍ତୋଷ—ବହୁତ ପଥକଷ୍ଟ ! ତା ତୁଳନାରେ ଦେଖାହେଲା ଏମିତି କଣ ? ହେଲେ ପଥ କାହାଣୀ ହିଁ ଭ୍ରମଣକାହାଣୀ, ସେଇ କଷ୍ଟ ହିଁ ଇଷ୍ଟ । ତା ନ କଲେ କୃଷ୍ଣ ମିଳିବେ କାହିଁ ?

## ଧାନଟି ଭିତରେ ଚାଉଳଟିଏ

ଘରେ ପହଞ୍ଚି ଉଦ ସଙ୍ଗେ କଥା ହେଉଁ ନ ହେଉଁ ଓ୍ୱାୟାର୍‌ଲେସ୍ ସମ୍ବାଦ ପାଇ ସେ ଚାଲିଗଲା । ଫେରିଲା ପରେ ପଚାରିଲି—

—'କଥା କଣ ?'

—'ଧାନଟି ଭିତରେ ଗୁଡ଼ଲଟିଏ ।'

—'ମାନେ ?'

'ଜଣେ ସ୍ତ୍ରୀ ଲୋକର ହାତପାପୁଲି ଘର୍ଷି ଯାଇଛି । ପଚାରିଲି—କେମିତି ? ସେ କହିଲା—ଗ୍ଲିସ୍‌ର ବୋପା ପାଖାରେ ପକାଇଲି, ଆମ ଆଡ଼େ ଯେମିତି କହନ୍ତି—ହଗୁରି ବୋଉ, ଗୋବରି ମାଆ, ଚଇତନିଆ ବାପ ଇତ୍ୟାଦି; ଗାଁରେ ସେ ସ୍ୱାମୀର ନାଆଁ ଧରିଲା ନାହିଁ, ଯଦି ବା ଏଠି ସ୍ତ୍ରୀ ସ୍ୱାମୀ ନାମ ଧରି ଡାକେ, ଦାମ୍ପତ୍ୟ କଳହ କ୍ଷଣସ୍ଥାୟୀ—ବହ୍ୱାରମ୍ଭେ ଲଘୁକ୍ରିୟା । କିନ୍ତୁ ଆମେରିକାରେ ନୁହେଁ; ଏଠି ଝିଙ୍ଗିଟି ଖେଳରୁ ମଧ୍ୟ ମହାଭାରତ ଯୁଦ୍ଧ ଉପୁଜିପାରେ ।'

# ଅଠର

## ମୋ କଥାଟି……

ସଫଳ ? ସାଗର ବୋଇଲେ ସହର କୋଉଠି ? ଯେବେ ଆରମ୍ଭ କଲେ ସେ ତା ବାଟରେ ଗଲେ, ଚଳନ୍ତ ଚରଣମାନେ, ଯେମିତି ପୃଥିବୀ ସୃଷ୍ଟି ହେଲା ପରେ ଚଲାଉଛନ୍ତି ଆମେ ମଣିଷମାନେ । କାହ୍ନାଣୀର ଗୋଧୂଳି ସଙ୍କେତ ଦେଖି କାହ୍ନାଣୀ-କାରଙ୍କୁ ବିଦାୟ ଦେବାଲାଗି ଆସିଥିଲେ ଗୀତା, ନକ୍ସ । ଆସି ପାରିନାହିଁ ଏକା ମୀରା । ତାଠାରୁ ବିଦାୟ ନେବା ଲାଗି ଆମେ ଗଲୁ ଚିକାଗୋ—ଆଲୁ ବିକା ସଙ୍ଗେ ମହାଦେବ ଦେଖା ହେବ ବୋଲି । ଆମ ଯୋଜନା—ଚିକାଗୋରୁ ନିଉୟର୍କ—ଫିଲାଡ଼େଲ୍‌ଫିଆ—ପୁଣି ନିଉୟର୍କ — ଦିଲ୍ଲୀ — ନିଉୟର୍କରୁ ବାହାରିବୁ ଅକ୍ଟୋବର ସାତ ତାରିଖରେ, ଦିଲ୍ଲୀରେ ପହଞ୍ଚିବୁ ନଅ ତାରିଖରେ, ପନ୍ଦର ତାରିଖ ଟିକେଟକୁ ବଦଳାଇ କରିଛୁ ସାତ ତାରିଖ ।

ଲତା ଯେତେଦିନ ସେଣ୍ଟ୍ ଲୁଇସ୍‌ରେ ରହେ, ତାର ମୁଖ୍ୟତଃ ଦୁଇଟି କାର୍ଯ୍ୟ, —ବାକ୍ସ ସଜଡ଼ା, ରନ୍ଧାବଢ଼ା ।

ଏଠି ବଡ଼ି ମିଳେ ନାହିଁ । ଲତା ଏସୀୟ ଦୋକାନରୁ ଫାଳ ବିରି କିଣି ଆଣି ବତୁରାଇ ଗ୍ରାଇଣ୍ଡର୍‌ରେ ବାଟିଛି, ମେଘ ଦାଉ ସାଧବ'ରୁ ଓଭନ୍‌ରେ ସେକିଛି; ବଡ଼ିଫୁଲ, ମାଛ ବେସର, ଘିଇ ସନ୍ତୁଳା କରି ପ୍ରିୟ ଦିଅରକୁ ଖୋଇଛି; ଦିଅର—ଯେ ଭାଇନା ଭାଉଜଙ୍କୁ ବାପମାଆ ପରି ସମ୍ମାନ କରେ, ସେ ଆମେରିକାରେ କେତେ କ'ଣ ଖାଉଛି; ହେଲେ ତାର ଦୃଷ୍ଟି ପିଲାଦିନ ଉପରେ । ମରି ନଡ଼ିଆର ଘିଅ କୋରୁଅ, ଗୁଆଘିଅ ଗୋଲା ଚୁଡ଼ାଭଜା ଉପରେ । ପିଲାଙ୍କ ପରି ଅଳି କରି ବସୁଛି, ମୁହଁ ଫୁଲାଉଛି, ଯଦି ବା ଏ ବୟସ ସଙ୍ଗେ ସେସବୁ ଖାପ ଖାଉନାହିଁ ।

ପଡ଼ୋଶୀମାନଙ୍କର କି ସ୍ନେହ ଭାବ ! ଆମକୁ ଲଞ୍ଚ ବ୍ରେକ ବା ଡିନାର୍‌କୁ ଡାକିଛନ୍ତି । ବାଟରେ ଆଖି ପଡ଼ିଗଲେ ଗାଡ଼ି ଅଟକାଇ ଆଳାପ କରିଛନ୍ତି, କିମ୍ବା କେବଳ ହାତ ଟେକି ହାସ୍ୟ ହାସ୍ୟ କହି ଅଭିନନ୍ଦନ ଜଣାଇଛନ୍ତି । ଇରାଉଦଙ୍କୁ ସମୟ ନୋହିଲେ ବେଳେ ନିଜ ଗାଡ଼ିରେ ବୁଲାଇ ବିଭିନ୍ନ ସ୍ଥାନ ଦେଖାଇଛନ୍ତି । ଯାହାଙ୍କୁ ନିଶ୍ଚୟ ମନାସିଛନ୍ତି, ପରସ୍ପର ପ୍ରତି ଏ ସାହାଯ୍ୟକାରୀ ମନୋଭାବ ବଡ଼

ଆନନ୍ଦ ଦେଇଛୁ । ଏହାଠାରୁ ଦେଲେ ନେଲେ କ'ଣ ଅଧିକା ହେବ ? ତଥାପି ଧନ୍ୟବାଦ, ଝିଆପିଆ ଗ୍ଲେ । ପରସ୍ପର ବନ୍ଧୁଭାବ, ବଡ଼ ଶାନ୍ତିପ୍ରଦ ।

ସକାଳ କିରଣ ଗଛବୃଛକୁ ସୁନେଇ ଦେଇଛୁ । ପତ୍ର ଗହଳରୁ କେତୋଟି ସୁନାଧାର ଲମ୍ବି ଆସିଛୁ ଆମ ତୃଣ ପ୍ରାଙ୍ଗଣକୁ । ଶୀତ ପାଖାପାଖି । କେନିଆ, ମାଗ୍ନୋଲିଆ ଫୁଟା ବନ୍ଦ୍ । ଗୋଲାପଗେଣ୍ଡୁରେ ଗାଢ଼ ଲାଲ୍ ଫୁଲ । ସେବନ୍ତି ଫୁଟିବ ଫୁଟିବ ହେଉଛୁ ।

ପରିଚିତ ବନଘେରା ଏଇ ବଙ୍କା ବଙ୍କା ନଦୀ ପଥ । ଭୁଲିଗଲା ବାଟ ଏ ମୋର, ଏହା ଉପରେ କିଏ ନ ଗ୍ଲେ ? ମତେ କାହିଁକି ଜଜର ପରି ଲାଗେ ? ଭାବ ଜମାଇଥିଲି ବୋଲି ? ଗ୍ଲିଲାବେଳେ ମନରେ ସଞ୍ଚିତ ଭାବନାଚୟ ସଙ୍ଗରେ ନେଇ ଯାଉଛୁ ବୋଲି ।

ହାତାରେ, ହାତା ବାହାରେ କରୁଣ ଦୃଷ୍ଟିଟିଏ ପକାଇ ଗାଡ଼ିରେ ବସିଲି । ଏ ଗାଡ଼ିଟି ଚିକାଗୋରେ ମୀରାକୁ ଦିଆଯିବ । ସେ ଏବେ ବସ୍‌ରେ ଯାଏ । ସେଥିରେ ବିପଦ ନାହିଁ । ବସ୍ ଲାଗି ରାସ୍ତାରେ ଅପେକ୍ଷା କରିବାବେଳେ ହିଁ ଭୟ, ହରଣଗ୍ଲ୍ ଭୟ । ଜଙ୍ଗଲୀ ଦେଶ ଅପେକ୍ଷା ସଭ୍ୟ ଦେଶ ସେ ଦିଗରୁ ଅଧିକ ଆଦିମ, ଅସଭ୍ୟ ଓ ବନ୍ୟ ।

ଇରା, ଉଦ ଆମକୁ ଚିକାଗୋ ଦେଖାଇବେ, ପ୍ଲେନ୍‌ରେ ବସାଇଲା ପରେ ଫେରିଯିବେ ସେଣ୍ଟ୍‌ଲୁଇସ୍ । ଏଇ ଯୋଜନା ।

ଚିକାଗୋ ପ୍ଲେନ୍ ଟିକେଟ୍ ଆମର ଥିଲା । କିନ୍ତୁ ପରିବାରର ସଙ୍ଗ ମେଳରେ ବାଟ କଟେଇବା ଲାଗି ଆମେ କାର୍‌ରେ ଗଲୁ । ସେଣ୍ଟ୍‌ଲୁଇସ୍‌ରୁ ଚିକାଗୋ ୩୦୦ ମାଇଲ୍ ଦୂର, ୬ ଘଣ୍ଟା ଲାଗେ । ଆମେ ମିସିସିପି ସେତୁ ପାର ହେଲୁ । କ୍ୱଚିତ୍ ପାହାଡ଼, ନଦୀ ବା ହ୍ରଦଟିଏ । ରାସ୍ତା ଦୁପାଖେ ମକ୍‌କା କ୍ଷେତ । ଶୁଖିଲା ଘାସ ନଦା ଟ୍ରକ୍‌ସବୁ ଗୋ-ଫାର୍ମକୁ ଯାଉଛୁ । ଏ ଘାସ ଶୀତଦିନ ଲାଗି ସାଇତା ହେବ ।

ଅଦୂରରେ ସ୍ପ୍ରିଙ୍ଗ୍‌ଫିଲ୍‌ଡ୍—ଲିଙ୍କନ୍ ସ୍ମୃତି ମନ୍ଦିର; ପାର୍କରେ ବସି ଆମେ ଲଞ୍ଚ୍ ଖାଇଲୁ । ଶୀତ ପବନ । ଗରମ ପାଣିରେ ହାତ ଧୋଇଲୁ । କଳ ଖୋଲି ଗରମ ପବନରେ ହାତ ଶୁଖାଇଲୁ ।

ଚିକାଗୋ ଇଲିନଏସ୍ ରାଜ୍ୟର ବୃହତ୍ତମ ନଗରୀ । ଅପରାହ୍ନ ତିନଟା । ଆମେ ହଲିଡ଼େ ଇନ୍‌ରେ ପହଞ୍ଚିଲୁ । ଫୋନ୍, ଟେଲିଭିଜନ ଓ ଅତ୍ୟାଧୁନିକ ସାଧର

ଯାବତୀୟ ବ୍ୟବସ୍ଥା ଅଛି । ଦିନକୁ ଭଡ଼ା ୬୬ ଡଲାର୍ । ହିଦ, ଇସ୍ମ ଇନ୍‌ରେ ରହିଲେ, ଆମକୁ ରଖିଲେ ମୀସ୍ମର ଆପାର୍ଟମେଣ୍ଟ୍ ଘରେ ।

ମୀସ୍ମ ଏବେ ଦୁଇଟି ଚାକିରି କରେ—ଗୋଟିଏ ବହି ଦୋକାନରେ, ଆଉଟି ବିଶ୍ୱକୋଷ ଅଫିସ୍‌ରେ । ସାରାଦିନ ଚାକିରି ଧନ୍ଦା । ମାସ ଶେଷ ହେବାକୁ ଆଉ ୯ ଦିନ ବାକି । ତା ପରେ ବହି ଦୋକାନ ଛାଡ଼ିଦେବ । କ୍ଷୀଣାଙ୍ଗୀ ମୀସ୍ମ କାମରେ ପେଣ୍ଡି ହୋଇ ଗଲାଣି । ଓଜନ ପାଉଣ୍ଡ୍ କମିଛି । ଏ ସମ୍ବାଦ ସୁଖକର ନୁହେଁ, ଘରେ କି ଅଭାବ ଅଛି ? ଚାକିରି କରିବା କ'ଣ ଦରକାର ? ବୟସ ହେଲାଣି । ବାହା ହେଇଗଲେ ତ ଅଡ଼ୁଆ ଛୁଟେ ।

କିନ୍ତୁ ମୀସ୍ମର ଭାବନା ଭିନ୍ନ । ବାପ, ମାଆ ସେଇ ଭାବନାକୁ ହିଁ ଅଧିକ ମୂଲ୍ୟ ଦିଅନ୍ତି । ସେ ବାପ, ମାଆଙ୍କ ଉପରେ ନିର୍ଭର କରି ଚଳିବାକୁ ଆଉ ଇଚ୍ଛା କରେ ନାହିଁ । ଏ କର୍ମକଠିଣ ଜୀବନ ମଧ୍ୟ ତା ପକ୍ଷେ ଶ୍ରେୟସ୍କର । ନିଜ ଗୋଡ଼ରେ ନିଜେ ଠିଆ ହୋଇ ପାରିଲେ ତା ପାଠପଢ଼ା ସାର୍ଥକ ହେଲା ବୋଲି ସେ ମନେ କରେ ।

ମୀସ୍ମର ପ୍ରଥମ କର୍ମସ୍ଥଳ ବହି ଦୋକାନରେ ଛୁଟି ହୋଇ "Writer's Image" ବହିଟି ଓଲଟାଉଛି । ଏଥିରେ ଦେଶର ମୁଖ୍ୟ ଲେଖକ ଲେଖିକାମାନଙ୍କ ଫଟୋ—ବସି ଚିନ୍ତାକଲା ବେଳର, ବନ୍ଧୁ ସହିତ ଆଳାପ ଜମେଇଲା ବେଳର, ଲେଖିଲା ବେଳର, ତାପରେ ଲେଖକର ସଂକ୍ଷିପ୍ତ ଜୀବନୀ, ଶେଷରେ ଏ ବିଭିନ୍ନ ମାନସିକ ଅବସ୍ଥାରେ ମୁଖଶ୍ରୀର ଫଟୋ । ବହିଟି ଏକ ମନରେ ଦେଖୁଥିବାବେଳେ ମୀସ୍ମ କର୍ତ୍ତବ୍ୟ କ୍ଷେତ୍ରରୁ ମୋ ପାଖକୁ ଦୌଡ଼ିଆସିଲା—ଦଦେଇ, ଏ ବହିଟି ନବ କି ? ବହୁତ ଶସ୍ତା ମିଳିବ, ଯେହେତୁ ଏ ଦୋକାନରେ ମୁଁ ଚାକିରି କରୁଛି ।

ମୁଁ କହିଲି—ଆମ ଜିନିଷ ଆଂକୁ ବଳାଇଛି । ବାକ୍‌ସରେ ପିମ୍ପୁଡ଼ିଟିଏ ପଶିବାକୁ ବି ଜାଗା ନାହିଁ । ଏତିକି କହୁଁ ନ କହୁଁ ମୀସ୍ମ ବିଜୁଳି ପରି ଛୁଟିଗଲା, କର୍ତ୍ତବ୍ୟବେଳେ ବନ୍ଧୁ ଆଳାପ ନଚଳିବ ବୋଲି ।

## ଏକୁଟିଆ ଜୀବନ

ଲୁମାସ୍ମ ଝିଅ, ଗୋଟିଏ ବେଡ଼୍‌ରୁମ୍, କିଚେନ୍, ଡାଇନିଙ୍ଗ୍ ରୁମ୍ । ଏତିକିରେ ଚଳନ୍ତା । କିନ୍ତୁ ଏଥି ସଙ୍ଗେ ସେ ଗୋଟାଏ ବଡ଼ ରୁମ୍ ନେଇଛି, ବାପ, ମାଆ ମଝିରେ ମଝିରେ ଆସି ରହିବେ ବୋଲି । ଶୀତାତପ ନିୟନ୍ତ୍ରଣ ନାହିଁ, ଫ୍ୟାନ୍ ଅଛି । ଶୀତଦିନେ ନିଆଁ ଜଳାଇ ଘର ଗରମ ରଖିବା ଲାଗି ଚୁଲ୍ଲୀ ଅଛି ।

ଏ ଘର ଲାଗି ସବୁ ଆସବାବ ପତ୍ର, ଇଏ ଯୋଗାଇ ଦେଇଛନ୍ତି; ଟେଲି-ଭିଜନ୍‌ଟିଏ ବି କିଣି ଦେଇଛନ୍ତି । ମୀରାର ମାସିକ ଦରମା ଏକହଜାର୍ ଡଲାର୍ । ସେଥିରୁ ଘରଭଡ଼ା ଯାଏ ୪୦୦ ଡଲାର୍ । ହାତରେ ରାନ୍ଧି ଖାଏ । ଅଣ୍ଟେ ନଅଣ୍ଟେ ବାପମାଆ ଚଳାନ୍ତି ।

ମୀରାକୁ ବଡ଼ ଏକୁଟିଆ ଲାଗେ । ସେ ଖେଲଣାଟିକୁ ପାଖରେ ଶୁଆଇ ଶୁଏ, ତାର ଗୋଟେ ପାଖେ ଘଣ୍ଟା, ଆରପାଖେ ରେଡ଼ିଓ, ପାଦତଳେ ଟେଲିଭିଜନ୍ ।

ଝରକା କବାଟ ସବୁ ବନ୍ଦ । ଗରମ୍ । ବାହାରେ କାହିଁକି ଏତେ ଗୋଳମାଳ ? ଝରକା ଖୋଲି ଲକ୍ଷ୍ୟ କଲୁ—ଝିପୁଝିପୁ ବର୍ଷା; ତା ଭିତରେ ଦଳେ ପାଗଳ ହେଲା ପରି ନାଚୁଥାନ୍ତି ।

ମଦ୍ୟପ ? ବୁଝିଁ ବୁଝିଁ ବେସ୍‌ବଲ୍ ଖେଳରେ ସେଣ୍ଟ୍‌ଲୁଇସ୍‌କୁ ଚିକାଗୋ ହରାଇ ଦେଇଛି, ବହୁ ବର୍ଷ ପରେ । ଚିକାଗୋ ନଗରର ୩୦ ହଜାର୍ ଲୋକ ୩୦୦ମାଇଲ୍ ଦୂରବର୍ତ୍ତୀ ସେଣ୍ଟ୍‌ଲୁଇସ୍ ସହରକୁ ଖେଳ ଦେଖି ଯାଇଥିଲେ । ସେଥିଲାଗି ଏ ଉନ୍ମାଦନା, ଉଦ୍ଦଣ୍ଡ ନୃତ୍ୟ, ଗୋଟା ସହର ନାଚୁଛି, ବର୍ଷା ଭିତରେ । ଏ ଯୁଗର ରୀତି, ଆମେରିକାରେ, ଇଉରୋପରେ, ଭାରତବର୍ଷରେ ଓ ଓଡ଼ିଶାରେ ସର୍ବତ୍ର ।

ଗୋଟିଏ ଗୁଡ଼ିଏ ଗୁବ ଲତା ଧରିଛି, ବୋଧହୁଏ ବେଶୀ ଭାଗ ଅସଳ କୋଳପର । ଇଏ ପଚାରିଲା—ନାନୀ, ଆମର କୋଉ ଘର ତାଲା ପଡ଼େନାହିଁ, ଦେଖୁଛ; ଯାହା ଗୁବ ପଡେ ଦାଣ୍ଡ ବା ବାଡ଼ି ଦୁଆରେ, ଗଲା ଅଇଲାବେଳେ । ତୁମର ଏତେ ଗୁବ କ'ଣ ?

ଲତା ଉତ୍ତର ଦେବା ଆଗରୁ ମୁଁ ଆଗଚାଲା ପିଲା ପରି ଉତ୍ତର ଦେଲି — ଏଥିରୁ କେତୋଟା ମୋ ଜୀବନର ଗୁବ, ଏପଟୁ ମୋଡ଼ିଲେ ହସେ, ସେପଟୁ ମୋଡ଼ିଲେ କାନ୍ଦେ । ଗୋଟା ଜୀବନର ଦଖଲକାର ସେ ।

ଲତା ସାଧାରଣ ସ୍ୱରର ଏକ ସରୁ ସମ୍ବରଣ କରି କହିଲା—ସବୁ ଚୋର, କାହିଁରେ ହାତ ଦେବୁନାହିଁରେ ବାବା ! ରଜାଙ୍କ ଫୁଲପର୍ଣ୍ଣି ପଛେ ପଡ଼ିଆ ହେବ, ସ୍ୱାମୀଙ୍କର କୋଉ କଥା ଟିକେ ଏପଟସେପଟ ହେବନାହିଁ । ଡରି ଡରି ମୋ ଦିନ ସରେନାହିଁ ।

'ଲତା ମତେ ଡରେ ? ଘଡ଼ିକେ ତୁଷାର ସ୍ରୋତ, ଆର ଘଡ଼ିକେ ଉଷ୍ଣ ପ୍ରସ୍ରବଣ । ଏକ୍ଷଣି ଅମୃତ, ଆର କ୍ଷଣେ ବିଷ; ମର୍ଜି ଜଗୁ ଜଗୁ ମୋ ଦିନ ସରେ-

ନାହିଁ । ଏଇଲେ ଘଜ୍ୟଟାଏ ଦେଇଦବ, କଣ ଟିକାଏ ବଗିଡ଼ିଲେ ଚଡ଼କଟାଏ କଗୁଡ଼ି ଦବ ।'

'ହଉ, ହଉ, ସେତକ ଥାଉ । ସ୍ତ୍ରୀକୁ ପୁରୁଷ ଏତକ ଡରୁଥିଲେ ପୃଥିବୀ ଓଲଟିଯାନ୍ତା । ପୁରାଣ, ଶାସ୍ତ୍ର, କାବ୍ୟ ଅଲଗା ଭାବେ ଲେଖାଯାନ୍ତା; କଳାକାରର ଅଙ୍କନ, ଭାସ୍କରର ଖୋଦନ ଶୈଳୀ ମଧ୍ୟ ବଦଳିଯାନ୍ତା ।

ମତେ ଗୋଟେ ଖୁଣ୍ଟ ବୋଲି କହୁଛ ? ସୁନାମ କରୁଛ ନା ବଦ୍‌ନାମ୍ ?'

ବଦ୍‌ନାମ୍ କରିବା ସାହସ ମୋର ନାହିଁ । ସତରେ ତୁମେ ଗୋଟାଏ ଖୁଣ୍ଟ । ଖୁଣ୍ଟ ଗୁଡ଼ିଏ ଘୋଡ଼ା କୁଦେ, ଖୁଣ୍ଟ ଜବର ଦେଖି ମୋ କୁଦା ଜବର ହୁଏ । କିନ୍ତୁ କଆବାଡ଼ ଡେଇଁ ଉଦା ଖାଇବା କଥାଟା ମୋ ଦେହ ହେଲନାହିଁ । ଫଳରେ ଜୀବନକୁ ଫାଲେମାଫ ଜାଣିଲି । ନାରୀ ଚରିତ୍ର ନିଖୁଣ ଭାବେ ଆଙ୍କି ପାରିଲି ନାହିଁ, କେତେକ କହନ୍ତି । ହଉଓ, ହବ ବୋଲି କଣ ଚରିତ୍ରକୁ ଜଳାଞ୍ଜଳି ଦେବ ?

'କଳାରେ ପୂର୍ଣ୍ଣତା ଆଣିବା ଲାଗି ଲେଖକ ଅମଡ଼ା ମାଡ଼େ, ନୀତିଗର୍ହିତ କାର୍ଯ୍ୟ କରେ ।'

'କଣ କହୁଛ ? ତୁମ ତୁଣ୍ଡରେ ଏ କଥା ଶୋଭା ପାଉଛି ? ଯେତେ ଲେଖକ ସମସ୍ତେ ଚରିତ୍ରହୀନ ? ନିଜ ସ୍ତ୍ରୀ ସହିତ ପ୍ରେମକରି କେହି ଲେଖକ ହୋଇପାରିବ ନାହିଁ ? ନିଜ ଚରିତ୍ରଟି ଆଗେ ହରାଇବ, ତାପରେ ଚରିତ୍ରପୂର୍ଣ୍ଣ ରାମସୀତା, ସାବିତ୍ରୀ-ସତ୍ୟବାନ୍, ନଳଦମୟନ୍ତୀ ଚରିତ୍ର ଅଙ୍କନ କରିବ ? ନିଜ ଚରିତ୍ର ରକ୍ଷା କରି ବି ଅନ୍ୟ ସ୍ତ୍ରୀ ଚରିତ୍ର ନିଖୁଣଭାବେ ଅଙ୍କନ କରିହେବ । ଆମର ସବୁଠାରୁ ବଡ଼ ଲେଖକ ବାଲ୍ମୀକ, ବ୍ୟାସଦେବ—ଋଷି । ଜୀବନର କେଉଁ ଦିଗ ଉଭୟେ ନିଖୁଣ-ଭାବେ ଅଙ୍କନ କରିନାହାନ୍ତି ?'

ଆମ ଓଡ଼ିଆ ସଂଳାପ ଇଗ୍ରା ବୁଝୁନ ବୁଝୁ ଶୁଣୁଥାଏ । ଏହା ମୋର ଅସୌଜନ୍ୟ ବୁଝିଲି, ସଂକ୍ଷେପରେ ଇଂରାଜୀରେ କଥାଭାଷାର ତାତ୍ପର୍ଯ୍ୟ ବୁଝାଇଦେଲି ।

**ଶିକାଗୋର ଝିଲିକା**

ଲେକ୍ ସୁପିରିଅର୍, ଲେକ୍ ମିଚିଗାନ୍, ଲେକ୍ ହୁରନ୍, ଲେକ୍ ଇରୀ, ଲେକ୍ ଅଣ୍ଟାରିଓ ପ୍ରାକୃତିକ ହ୍ରଦପୁଞ୍ଜ; ମାନଚିତ୍ରରେ ଯୁକ୍ତ ଆମେରିକା ଓ କାନେଡ଼ା ସୀମାରେ ଦିଶେ । ହ୍ରଦ ତ ନୁହେ, ଗୋଟିଏ ଗୋଟିଏ ସମୁଦ୍ର । ପ୍ରାକୃତିକ ଝିଲିକା ଅକୃତିର ଅର୍ଦ୍ଧ ସହସ୍ରେ ବା ଅଧିକ ହ୍ରଦ ଆମେରିକାରେ ଅଛି, କୃତ୍ରିମ ହ୍ରଦର ତ ସଂଖ୍ୟା ନାହିଁ ।

ଚିଲିକା ପରି ଏକ ହ୍ରଦକୁ ଲେକ୍ ମିଚିଗାନ୍ ସଙ୍ଗେ ତୁଳନା କରିବା, ପର୍ବତ ସହିତ ଉପଲ ଖଣ୍ଡକୁ ତୁଳନା କଲା ପରି । ତେବେ ମିଚିଗାନ୍‌କୁ ଚିଲିକାଠାରୁ ଚଳିକା ଲେଖିଲି କାହିଁକି ?

ଯାହାକୁ ମଣିଷ ଭଲପାଏ, ତାଠାରୁ ସଂସାରରେ ଆଉ କଣ ବଡ଼ ? ଚିଲିକାରେ କେଉଁ ଦୃଶ୍ୟବା ନାହିଁ ? ଉଚ୍ଚ ଅନୁଚ୍ଚ ପର୍ବତ । ସବୁଜ ଅରଣ୍ୟଭରା ଦ୍ଵୀପ, ନାସୀ ସବୁ ଅଛି । ଅଦୂରରେ ମହୋଦଧି ତାକୁ ଆଲିଙ୍ଗନ କରିଛି । ସାଇବେରିଆ, କାନେଡ଼ାର ଅନାମିକା ପକ୍ଷୀ, କସ୍ପିସ୍ଥାନ ଓ ବୈକାଲର ହଂସ, ଆଟଲାଣ୍ଟିକ ମହାସମୁଦ୍ରର ସି-ଗଲ୍ ଏଠିକି ବର୍ଷକୁ ବର୍ଷ ଆସି କଳଧ୍ଵନିରେ ଚତୁର୍ଦ୍ଦିଗ ମୁଖରିତ କରନ୍ତି । ଦୋଳାୟମାନ ଚିଲିକା ଉପରେ ଖଣ୍ଡମେଘ ଆକାରରେ ସେମାନଙ୍କ ଉତ୍ପାପାତ, ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ଓ ଚନ୍ଦ୍ରିକାରେ ସେମାନଙ୍କ ଚକ୍ରାକାର ଘୂର୍ଣ୍ଣନ ଏକାନ୍ତ ଚିତ୍ତାକର୍ଷକ । ମିଚିଗାନ୍ ସ୍ତବ୍ଧ କରେ, ଚିଲିକା ମୁଗ୍ଧ କରେ । ମିଚିଗାନ୍ ସ୍ଥୂଳାଙ୍ଗ, ଚିଲିକା କ୍ଷୀଣାଙ୍ଗୀ; ରୂପର ଆଦର୍ଶସମ୍ଭାର ଯେମିତି ଚିତ୍ରାଙ୍କିତ ଯୁବତୀର ଛବିଟିଏ ପରି ଦିଶେ, ଅଥଚ ଆପଣାର ପରି ଲାଗେ, ଆଲିଙ୍ଗନ ପିପାସା ଜାଗେ ।

ମିଚିଗାନ୍ କୂଳେ କୂଳେ ଗଲୁ । ବାମପଟେ ଆକାଶଛୁଆଁ କୋଠାସବୁ ମହୁଫେଣା ଉପରେ ମହୁଫେଣା ସଜା ହୋଇଲାପରି ଦିଶେ । ମହଲା ଉପରେ ତିନି ମହଲା ହାଇଓ୍ଵେ । ଛୁଟିଛି ଅସଂଖ୍ୟ ଗାଡ଼ି ।

ମିଚିଗାନ୍ କୂଳରେ ବୁଲିଲେ ସମୁଦ୍ର କୂଳରେ ବୁଲିଲା ପରି ଲାଗେ, ଜଳ ଉପର ପ୍ରାୟ ସମତଳ ଦିଶେ, ଚୂର୍ଣ୍ଣି ତରଙ୍ଗ ; ତାର ଧୀର ଗତି ଅଛି, କିନ୍ତୁ ଅବଚେତନ ସ୍ତରକୁ ଭାବବିହ୍ଵଳ ମନ ଗଢ଼ିକରି ପାରେନାହିଁ । ଏ ତୀରରେ ବସି କିଛି ସ୍ଵପ୍ନ ଦେଖି ହୁଏନାହିଁ. କଳ୍ପନାମହଲ ଗଢ଼ି ହୁଏନାହିଁ । ପୃଷ୍ଠପଟେ ଜନ ଓ ଯାନ ସମୁଦ୍ର, ମନରେ କିଛି ସ୍ଵପ୍ନ ବା କଳ୍ପନା ଥିଲେ ଅପସରି ଯାଏ ।

ପାର୍କ୍ ପାଖରେ ପାର୍କ୍, ତା ପାଖକୁ ପାର୍କ୍ ; ଶତ ଶତ ମାଇଲ୍ ଲମ୍ବିଛି ଉଦ୍ୟାନ । ସ୍ଵାସ୍ଥ୍ୟ ଲାଗି, ଶାନ୍ତି ଲାଗି ଏହି ବିପୁଳ ନଗରର ବହୁଲୋକ ବୁଲୁଛନ୍ତି, ଧାଉଁଛନ୍ତି ବା ବସି ବସି ଖୋଲା ହାଓ୍ଵା ଶୋଷୁଛନ୍ତି ।

ଉଦ କହିଲା—ଏଠି ଗୋଟେ ଘରେ ମୋର ଅଂଶ ଅଛି । ମାସକୁ ମାସ ଭଡ଼ା ପାଏ । କୁବେରପୁରୀରେ ଜଣେ ଓଡ଼ିଆ ପୁଅର ଅଂଶ ଅଛି ? ଯୋଉ ଓଡ଼ିଆ ବଣିକ ବେପାରରୁ ମାଢ଼ ମାଢ଼ ସୁନା ବୋହିଆଣି ବଡ଼ ବଡ଼ ମନ୍ଦିର ଗଢ଼ିଥିଲା, ଭାରତର ଅର୍ଥନୀତି ଭୂମିକାରେ ତାର ଅଂଶ କାହିଁ ? ପାଦତଳେ ଅଗଣିତ ମୂଲ୍ୟବାନ୍

ଧାରୁ, ଛୁଡ଼ା ହୋଇଛ ସେ ସାଧବ ବା ପୁଞ୍ଜିପତି ବେଶରେ ନୁହେ, ଏକ ଦରିଦ୍ର ବେଶରେ, ମୁଟରେ କାଲୁବାଣୀ । ଜଣେ ଓଡ଼ିଆ କୁବେର ସମ୍ପତ୍ତିର ଅଂଶୀଦାର ? ବାଃ, ଚାଲ ଦେଖିବା । ଏଇ ବ୍ୟାଙ୍କ୍ ପାଖେ ପାଖେ ଚାଲ । ଉଦ ପଚାରଲ— କୋଉ ବ୍ୟାଙ୍କ ?

'ସୌନ୍ଦର୍ଯ୍ୟର ବ୍ୟାଙ୍କ୍ ଏଇ ମିଚଗାନ୍, ତାର କୂଳେ କୂଳେ । ପୃଥିବୀର ହୀରା ମୋତି ମାଣିକ, ସୁନା ଖାଡ଼ର ବ୍ୟାଙ୍କ୍ ସଙ୍ଗେ ମୋର କି ସମ୍ପର୍କ ଅଛି ? ଯୋଉ ବ୍ୟାଙ୍କ୍ର ଅଂଶୀଦାର ସଂଖ୍ୟା ନଗଣ୍ୟ, ମୁଁ ସେହି ବ୍ୟାଙ୍କ୍ର ଜଣେ ଅଂଶୀଦାର ।

ପିଲାଦିନେ ମାନଚିତ୍ର ଦେଖୁଥିବା ବେଳେ କିଏ ଭାବୁଥିଲା—ଏ ସ୍ଥାନରେ ଦିନେ ପାଦ ପଡ଼ିବ ? କିନ୍ତୁ ଭଗବାନ୍ ତାଙ୍କ ଅପୂର୍ବ ସୌନ୍ଦର୍ଯ୍ୟ ଲୀଳା ନ ଦେଖାଇ ସଂସାରରୁ ବିଦାୟ ଦେବେନାହିଁ ; ତେଣୁ ଆଣିଛନ୍ତି, ଯେତେପାରିବ, ଦେଖିବ । ତା ଆର ଦିନ ସକାଳେ ପୁଣି ମିଚଗାନ୍ କୂଳେ କୂଳେ ଚାଲିଲି ।

ନୂତନ ଜଳାଶୟକୁ ଆସିଲେ ଟିକିଏ ପାଣି ମୁଣ୍ଡରେ ଛୁଅଁିବା ଆମ ଜାତୀୟ ଅଭ୍ୟାସ । ଏବେ ସେଇ ଅଭ୍ୟାସର ଧାର୍ ନ ଧାରିଲେ ବି ଟିକିଏ ପାଣି ମୁଣ୍ଡରେ ଛୁଅଁିଲି, ସୌନ୍ଦର୍ଯ୍ୟର ଲୀଳାକ୍ଷେତ୍ର ବୋଲି; କିନ୍ତୁ ପାଟିରେ ଟିକେ ମାଇଲି ନାହିଁ, ଚିକାଗୋର ଆବର୍ଜନାରେ କଳୁଷିତ ହୋଇଥିବ, ଏଇ ଶଙ୍କାରେ ।

ଏଇ ଉଜ୍ଜ୍ୱଳ ଦର୍ପଣରେ ଚିକାଗୋ ନଗରର ଛାଇ ନାଚୁଥାଏ, ନାଚୁଥାଏ । ଲତା ତା କୂଳରେ ବୁଲି ବୁଲି ଆହରଣ କରୁଥାଏ ଉପଲ । ପଚାରିଲି —ମିଚଗାନ୍, ମିସିସିପି ବା ପ୍ରଶାନ୍ତ ସାଗର ତୀରର ଉପଲ ଅଲଗା ଅଲଗା ରଖିବ କି ? ନୋହିଲେ ଚିହ୍ନିବ କିପରି ? ବୋହିନେଇ ପାରିବ ବା କେତେ ? ଲତା କହିଲା—ଅଧିକାଂଶ ମୀରା ପାଖରେ ରହିଯିବ । ବୟସ ହେଲେ ବି ତାର ଖେଳ ବା ଖେଳଣାରୁ ମନ ଛାଡ଼ିନାହିଁ । ଏ ବାଲିଗିରଡ଼ା ଯେବେ ସେ ଖେଳିବ, ମୋତେ ମନେ ପକାଇବ ?

କହିଲି—ଗଣି ଗଣି ଆଧୁନିକ ଖେଳଣାରେ ଯାହାର ଜୀବନ ବିତିଛି, ସେ ଖେଳିବ ବାଲିଗିରଡ଼ାରେ ? ଯାହାଙ୍କ ବାପମାଆ ଦାରିଦ୍ର୍ୟ ଯୋଗୁଁ ଖେଳଣା-ଟିଏ କିଣି ପାରନ୍ତି ନାହିଁ, ସେ ଖେଳନ୍ତି ଝିନୁକି ବା ବଉଳ ମଞ୍ଜିରେ, ବାଲି-ଗିରଡ଼ାରେ, କଆପତ୍ରରେ ଚକବଣ୍ଟା କରି ବା ଡିମ୍ବିରିଫଳ ଆଉ ଖଡ଼ିକାରେ ରଥ ଗଢ଼ି, ଯାହା ମଧୁ ବାବୁଙ୍କୁ ପ୍ରେରଣା ଦିଏ ବର୍ଣ୍ଣବୋଧରେ 'ରଥ ଗଢ଼' ଲେଖି-ବାକୁ । ନଇଲେ ବାଳୁତର ରଥଗଡ଼ା ସଙ୍ଗେ କି ସମ୍ପର୍କ ଅଛି ?

ମିଚିଗାନ୍ ଏବେ ବି ମୁଣ୍ଡରେ ଓଢ଼ଣା ଟାଣିଛି ଦେଇଛି, ଗାଢ଼ କୁହୁଡ଼ିର । କାନାଡ଼ାର ଅତି ଶୀତଳ ହାଓ୍ବା ତାକୁ ଅଶ୍ୱସ୍ତି କଲା ପରି ଲାଗୁଛି । ବଡ଼ ବଡ଼ ଢେଉ କୂଳରେ ବାଡ଼େଇ ହେବାର ବୋଧ ହେଉଛି ।

ମିଚିଗାନ୍‌ରେ ଗାଧୋଇ ଜଣେ ଚୁଟିଆ ଗୋରା ଝୋଥାକାରେ ମାଳା ଭରି କୃଷ୍ଣ ନାମ ଜପି ଜପି ଯାଉଛି । ଖାଲି ଦେହ । ଶୀତକ୍ଲିଷ୍ଟ । ତାର ନାମ କୀର୍ତ୍ତନ ଲଙ୍କାରେ ହରି ଶବ୍ଦ ପରି ଶୁଣାଯାଉଛି, କୃଷ୍ଣଚେତନା ସମିତିର ଏ କେନ୍ଦ୍ର ହେବ ନିଶ୍ଚୟ ।

## ବାଘ ନ ଦେଖିଲେ କୁକୁର ଦେଖ

ବାଘ ସ୍ଥାନରେ ଗଧିଆ କମ୍ବା କୁକୁର ସ୍ଥାନରେ ବିରାଡ଼ି ରଖିଥିଲେ ଠିକ୍ ହୋଇଥାନ୍ତା । କିନ୍ତୁ ମୁଁ ବାଘକୁ ଡରେ, କୁକୁରକୁ ନୁହେଁ । ମସ୍ତବଡ଼ କୁକୁରଟାଏ ହଠାତ୍ ହାବୁଡ଼ି ଗଲାରୁ ବାଘଟାଏ ଯେପରି, ଗ୍ରୁନିଆ ହୋଇଗଲି ।

ତା ଆଘ୍ରାଣକୁ ମୁଁ ମୋଟେ ପସନ୍ଦ କଲି ନାହିଁ । କାରଣ ଆଘ୍ରାଣଂ ଅର୍ଦ୍ଧ-ଭୋଜନମ୍—ମୋତେ ଶୁଙ୍ଘି ଦେଲା ମାନେ ମୋ ଦେହରୁ ଅଧେ ରକ୍ତ ଶୁଖିଗଲା ।

ମୁଁ ଦେହକୁ କାଠ କରି ଛିଡ଼ା ହେଲି, ଭୟ ସଙ୍କେତ ପାଇଲେ କୁକୁର ପ୍ରତିକୂଳ ଆଚରଣ କରନ୍ତି ବୋଲି ।

କୁକୁର ମୋତେ ଶୁଙ୍ଘି ଶତ୍ରୁ ମିତ୍ର କ'ଣ ବାଛିଲା, ତାକୁ ଗୋଚର । ପ୍ରକୃତିର ତାଡ଼ନାରେ ମୋତେ ଗ୍ରହି ସେ ଘାସ ଉପରକୁ ଯାଇ 'ହୁଇ' କଲା । ମାଲିକ ତା ପଛେ ପଛେ ଯାଇ ପ୍ଲାଷ୍ଟିକ୍ ବ୍ୟାଗ୍‌ରେ ମଇଳାତକ ନେଇ ଡଷ୍ଟବିନ୍‌ରେ ପକାଇଦେଲା । ସହରବାସୀ ଏପରି କର୍ତ୍ତବ୍ୟନିଷ୍ଠ ନୋହିଲେ ଲକ୍ଷ ଲକ୍ଷ ଶ୍ୱାନ ମଳରେ ସହର ପୂତିଗନ୍ଧମୟ ହୋଇଯାନ୍ତା, ଯେପରି ବୁଲା ଜନ୍ତୁଙ୍କ ମଳମୂତ୍ରରେ ଓଡ଼ିଶାର ସହର ହୁଏ ।

## ଆଗତ ପାଞ୍ଚ ସବୁ କଞ୍ଚା

ଶିଲ୍ଡ ଯାଦୁଘର ଦେଖିବା, ଚିଡ଼ିଆଖାନା ଦେଖିବା—ମନରେ ପାଞ୍ଚି ଆସିଲୁ । ଯାଦୁଘର ବନ୍ଦ । ଚିଡ଼ିଆଖାନା ପାଖକୁ ଆସିଲୁ । ପଶିବାକୁ ମନ ହେଲା ନାହିଁ—ସେଇ ବାଇସନ୍, ବଲଗାହରିଣ, ବାଘ, ସିଂହ କେତେ ଦେଖିବା ? ଆଗତ ପାଞ୍ଚ କଞ୍ଚା ହେଲା । ଏବେ କ'ଣ ଦେଖିବା ? ଯାହା ସାମ୍ନାରେ ପଡ଼ିବ, ତାହା ଦେଖିବା । ପାଞ୍ଚ ନାହିଁ, ଯୋଜନା ନାହିଁ, ଭାବନା ନାହିଁ, ଟିକେଟ ନାହିଁ । ବୁଲୁ

ଯୋଉଠି ଯାଇ ପହଞ୍ଚିବୁ, ବଡ଼ ବଡ଼ ଦୃଶ୍ୟକୁ ପ୍ରାଧାନ୍ୟ ଦେବୁ ନାହିଁ । ଅବାଟରେ ବୁଲିବୁ, ଅଘାଟରେ ବୁଲିବୁ, ଅଦୃଶ୍ୟ ଦେଖିବୁ । ଦେଶକୁ ସେଇ ବାଟେ ବୁଝିବୁ, ଏତେ ଟିକେ ହେଉ ପଛେ ଭ୍ରମଣ ପାଇଁ ଲୋଡ଼ା ।

ଯାଉ ଯାଉ ଗୋଟିଏ ପୋଖରୀ କୂଳରେ ପହଞ୍ଚିଲୁ । ବହୁତ ହଳଦିଆ ବୋଟ୍, ପିଲାଏ ବସି ଆହୁଲା ମାରି ବୁଲନ୍ତି । କିନ୍ତୁ ଜଳ ଅଗଭୀର, ଅନିର୍ମଳ । କେନ୍ ଆଉ ବୋତଲ ଭରି, ନିଶାଖୋରଙ୍କ ଉପଦ୍ରବର ସଂକେତ । ଏଠାର ନିୟମସବୁ ଚେତା ଓ ଚିନ୍ତା ଥିବା ଲୋକେ କରନ୍ତି, ପାଳନ୍ତି, ଅଚେତା ଲୋକ ଭାଙ୍ଗନ୍ତି ।

ଛୋଟ ହ୍ରଦଟିର ମଝି ଦ୍ୱୀପରେ ବଡ଼ ବଡ଼ ଘାସ । କେତୋଟି ପାଳିତ ହଂସ ପହଁରୁଛନ୍ତି ଆଉ ଗୋଟିଏ ପୋଖରୀରେ । ଅପଦୃଶ୍ୟକ୍ଳାନ୍ତ ଆଖି ସେମାନଙ୍କ ପଛେ ପଛେ ଗଲା, ଯାଇ ପହଞ୍ଚିଲା ଏକ ଗାଈ ଗୁହାଳରେ । ଫାର୍ମ୍‌ରୁ ଫାମିଲିକୁ ଏଠାରୁ ଦୁଧ ଯାଏ, ଫାମିଲି ମାନେ ଚିଡ଼ିଆଖାନାର ଜୀବଜନ୍ତୁ ପରିବାର, ପ୍ରତି ଗାଈ କେତେ ନଡ଼ା, କେତେ ଦାନା ଖାଏ, ତାର ଏକ ତାଲିକା ଝୁଲି ଯାଉଛି ।

ଦୁଇଟି ଗାଈଙ୍କୁ ଏକାବେଳକେ ଦୋହନ ସ୍ଥାନକୁ ଅଣାଗଲା । ଟୋକେଇ ପରି ପହ୍ନା ପୂରି ଫାଟି ପଡ଼ୁଥାଏ । କଳପାଣି ପିଚକାରୀ ମାରି ପହ୍ନା ଧୋଇ ପୋଛି-ଗଲା । ତାପରେ ଲଙ୍କା ଆମ୍ବ ଆକୃତିର ଦୋହନ ଯନ୍ତ୍ର ଚାରିଗୋଟି ଥନରେ ଲଗାଇ ଦିଆ ହେଲା । ନଳବାଟେ ଗାଈ ଦୁଧ ଯାଇ ତିନିଥର ଶୋଧନ ହେଲା ପରେ ଗୋଟିଏ ବୃହତ୍ ଡ୍ରମ୍‌ରେ ଜମିଲା, ଯେଉଁଠୁ ବୁହା ହୋଇ ଚିଡ଼ିଆଖାନାକୁ ଗଲା ।

ପ୍ରତି ବାଛୁରୀର ଅଲଗା ଘର । ଛୁଆ ଜନ୍ମ ହେଲା ପରେ ଗାଈର କର୍ତ୍ତବ୍ୟ ଶେଷ । ସେ ଆଉ କେବେ ବାଛୁରୀ ମୁହଁ ଦେଖେ ନାହିଁ କି ବାଛୁରୀକି ଖୋଜେ ନାହିଁ । ଭୋକ ଶୋଷ ହେଲେ ବାଛୁରୀ ମାଆକୁ ହମା ହମା ଡାକ ପକାଏ ନାହିଁ କି ବାହାରେ ଡିଆଁ ମାରେ ନାହିଁ ।

ମଣିଷ ପରିବାରରେ ବି ଏଠି ପ୍ରତି ପିଲା ଲାଗି ଅଲଗା ଅଲଗା ଘର; ଏଇ ଅଲଗା ହୋଇ ରହିବା ଭାବ ମୂଳରୁ ହିଁ ସୃଷ୍ଟି କରାଯାଏ ।

ତେବେ ଇଚ୍ଛା ନଥିଲେ ବି ଗୋଟିଏ ଘୁଷୁରି ଗୁହାଳରେ ପଶିଲୁ । ଧବଳୀ ଘୁଷୁରୀର ସଦ୍ୟଜାତ ଦଶୋଟି ଛୁଆ । ଆଖି ଫିଟି ନାହିଁ, ଚରି ଦରାଣ୍ଡି ହଉଛନ୍ତି । ଭୁଇଁରେ ପଡ଼ୁ ପଡ଼ୁ ଝଗଡ଼ା ଲାଗିଯାଉଛି, କାମୁଡ଼ା କାମୁଡ଼ି, ଦାନ୍ତ ତେମନ୍ତ ପାକଲ ହୋଇ ନ ଥିଲେ ବି ।

ମାଆ ଆଖିବୁଜି ଆଳଜା ହୋଇ ପଡ଼ିଛି, ଇନ୍ଦ୍ରିୟଗୋଚର ବାଧା । ଧାଇଁ ଲେଡ଼ା ପଢ଼ୁନାହିଁ । ପଶୁଡାକ୍ତର ବି ଆଖି ପକାଇ ନାହିଁ । ଶୋଷ ଘୋଟିଥିବ, କିଏ ଢୋକେ ପାଣି ବି ଦେଉନାହିଁ । ଦଶୋଟି ଛୁଆ ଛୁଅଟି ଚାରକୁ ଟଣାଓଟରା କରୁଛନ୍ତି । କିଏ ପିଉଛି, କିଏ ନ ପିଉଛି, ଆଖି ଫିଟାଇ ମାଆ ଦେଖୁନାହିଁ, ଅଚେତା ହୋଇ ପଡ଼ିଛି ।

ବେଲୁନ୍, ରବର୍, କୁକୁର, ବିରାଡ଼ି, ମୂଷା ଖେଳଣା ଧରି ଠେଲାଗାଡ଼ିଟିଏ ବୁଲୁଛି । ସ୍କୁଲ୍ ଖୋଲା । କିଏ ଚିଡ଼ିଆଖାନା ଦେଖି ଆସୁଛି ? ଠେଲାଗାଡ଼ିବାଲା ବିକଳ ଡାକ ପକାଉଛି । କିଏ କାହିଁ ଅଛି ଯେ ଧାଇଁ ଆସି କିଣିବ ?

ଆଉ ପାଦ ଚଳୁ ନାହିଁ । ଆମେ କ୍ଳାନ୍ତ ହୋଇ ପଡ଼ିଲୁ କାହିଁକି ? ଗାଡ଼ିରେ ଗଲେ ବି ଏଠି ଅଳ୍ପ ବୁଲିବାକୁ ପଡ଼େ ନାହିଁ, କିନ୍ତୁ ଆଜି କ'ଣ ଏମିତି ବେଶୀ ବୁଲିଛୁ ? ବୋଧେ ଉଦ୍ଦିଷ୍ଟ ଦୃଶ୍ୟ ନ ଦେଖିବାରୁ ଏ କ୍ଳାନ୍ତି । ତା ଛଡ଼ା ଚକ୍ଷୁର କ୍ଳାନ୍ତି ତ ଅଛି । କେତେକ ଜିନିଷ ଦେଖିସାରିଲା ପରେ ଚକ୍ଷୁ ସହିତ ମନର ସଂଯୋଗ ଆଉ ରହେ ନାହିଁ । ଦୃଶ୍ୟ ଉପରେ ମିଛେ ମିଛେ ଆଖି ବୁଲେଇବା ହିଁ ସାର ହୁଏ । ପ୍ରାୟ ତିନିଘଣ୍ଟା ବୁଲି ସାରିଲା ପରେ ଥକ୍କା ହୋଇ ବସିପଡ଼ିଲି ଗୋଟିଏ ମୂର୍ତ୍ତି ସାମ୍ନାରେ ।

## ହାନ୍ସ୍ ଆଣ୍ଡରସନ୍

ଏଁ, ଏ କିଏ ? ହାନ୍ସ୍ ଆଣ୍ଡରସନ୍ ! ଯେ ଗଳ୍ପର ସାଗର, ବସିଗଲେ ଗଳ୍ପ ଶୁଣିବାକୁ ତିନିପାଖେ ପିଲା ଜମିଯାନ୍ତି, ପିଲାଙ୍କ ଆଖିରେ ନିଦ ଜମାଟ ବାନ୍ଧିବା ଆଗରୁ ଯାହାଙ୍କ ଗପ କୁହା ସରେ ନାହିଁ, ଯେ ସ୍ୱପ୍ନକୁ ସତ ଫଳାଇ କହନ୍ତି, ଯାହାଙ୍କ ଅଜବ କଳ୍ପନାକୁ ପିଲା ଗୋଟାପଣେ ବିଶ୍ୱାସ କରିଯାନ୍ତି, ଯେ ପିଲାଙ୍କ ମନୋବିଜ୍ଞାନ ଗଭୀରଭାବେ ବୁଝି ପାରନ୍ତି, ଯାହାଙ୍କ 'କୁତ୍ସିତ ହଂସ', 'ରଜା ଓ ନୂଆ ଲୁଗା' ଆମ ମାଟ୍ରିକ୍ ଶ୍ରେଣୀର ପାଠ୍ୟ ଥିଲା, ସେହି ପ୍ରିୟ ଲେଖକ ଏ ମୋର ।

କୁତ୍ସିତ ହଂସ ଅସୁନ୍ଦର ରୂପ ଯୋଗୁ ଅନ୍ୟ ହଂସମାନଙ୍କ ଘୃଣାର ପାତ୍ର ଥିଲା । ପରେ ସ୍ୱଗୁଣ ବଳରେ ସେ ସଙ୍ଗୀମାନଙ୍କ ମନ ଜୟ କରିବାକୁ ସମର୍ଥ ହେଲା ଓ ଏକାନ୍ତ ପ୍ରିୟପାତ୍ର ହେଲା ।

ବୋକା ଚିହ୍ନିବାର ବାଟ କ'ଣ ? ବାଛି ବାଛି ଚତୁର ଲୋକ ନିଯୁକ୍ତ ନ କଲେ ରାଜ୍ୟଶାସନ ଉଚ୍ଚ ସ୍ତରର ହେବ କିପରି ? ରଜା ଏଇ ଭାବନାରେ

ପଢ଼ୁଥିବାବେଳେ ଦୁଇଜଣ ଲୁଗା ବେପାରୀ ଆସି ପହଞ୍ଚିଲେ ଏବଂ କହିଲେ—ଚତୁର ଚହ୍ନିବାର ଉପାୟ ଆମକୁ ଜଣା; ଯେ ଆମ ହାତର ଲୁଗା ଦେଖି ନ ପାରିବ, ସେ ବୋକା, ନିର୍ଭର ଭାବେ ଜାଣିବେ । ରାଜକୋଷରୁ ଟଙ୍କା ବୋହି ଚାଲିଲା; କାଳେ ବୋକା ବୋଲି ଧରା ପଡ଼ିଯିବେ, ଚାକିରିରୁ ତଡ଼ା ଖାଇବେ, ଏଥିଲାଗି ତଥାକଥିତ ଲୁଗା ଦେଖି ମନ୍ତ୍ରୀ କହିଲେ—ଚମତ୍କାର, ସେନାପତି ବି ତଦ୍ରୂପ କହିଲେ । ସ୍ୱୟଂ ରାଜା ବି ଲୁଗାର ଉଚ୍ଚ ପ୍ରଶଂସା କଲେ ।

ରାଜ୍ୟରେ ନୂଆ ଲୁଗା ପିନ୍ଧା ଉତ୍ସବଟିଏ ହେଲା । ରଜା, ମନ୍ତ୍ରୀ, ସେନାପତି ଡଗର ସମସ୍ତେ ଲୁଗାପିନ୍ଧା ଅଭିନୟ କଲେ । ରାଜଦାଣ୍ଡରେ ଚାଲିଲା ଏକ ଲଙ୍ଗଳା ପଟୁଆର । ଅଜ୍ଞାନ ବାଳୁତ, ସେ କି ଜାଣେ ରାଜା, ମନ୍ତ୍ରୀ ? ସେ ଏଡ଼େ ପାଟିକରି କହିଲା—ବୋଉଲୋ, ଆ, ଦେଖିବୁ, କେମିତି ଲୋକେ ଲଙ୍ଗଳା ହୋଇ ଚାଲିଛନ୍ତି । ଏଥିରୁ ରଜା ମନ୍ତ୍ରୀ ବୁଝିଲେ—ପ୍ରକୃତ ସତ୍ୟ ଲୁଚାଇବା ଚେଷ୍ଟା ବୃଥା । ରାଜ୍ୟର ସମସ୍ତେ ବୋକା । ସମସ୍ତଙ୍କୁ ବୋକା ବନାଇ ଠକ ବେପାରୀମାନେ ସେତେବେଳକୁ ରାଜ୍ୟ ସୀମା ପା'ର ହୋଇ ଚାଲିଯାଇଥିଲେ ।

ଡିସ୍‌ନେ ଲ୍ୟାଣ୍ଡ୍‌ର ଉତ୍ପତ୍ତି ଏହି ମହାତ୍ମାଙ୍କ ଅଜବ ସ୍ୱପ୍ନରୁ । ତାଙ୍କ ପରି ହୋଇନାହିଁ, ହେବାଲାଗି ଚେଷ୍ଟା କରିବାରେ ଅପରାଧ କ'ଣ ? ତାଙ୍କ ଗପ ପଢ଼ିଲା ପରେ ଜଣେ କିଶୋର ସାହିତ୍ୟିକ ହେବା କଳ୍ପନା କରୁଥିଲି, ବହୁତ ବାଟ ଆଗେଇ ବି ଯାଇଥିଲି । କିନ୍ତୁ ବଡ଼ଙ୍କ ଲାଗି ଲେଖୁ ଲେଖୁ ପିଲାଙ୍କୁ ଭୁଲିଲି ।

ତାଙ୍କପରି ମୁଁ ଜଣେ ଭ୍ରମଣକାରୀ ହେବା ଚେଷ୍ଟା ବି କରିଛି । କିନ୍ତୁ ଏତେ ଅଜବ ସ୍ୱପ୍ନ ଦେଖିପାରି ନାହିଁ । ମୁଁ ଅଖ୍ୟାତ, ସେ ବିଶ୍ୱବିଖ୍ୟାତ ।

ଡେନମାର୍କ ପରି ଏକ ଶ୍ରେଷ୍ଠ ଇଉରୋପୀୟ ଦେଶରେ ତାଙ୍କର ଜନ୍ମ, ଚମତ୍କାର ରଚନା ଯୋଗୁଁ ସେ ସ୍ୱଦେଶର ଓ ଜଗତର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି ।

ଜଣେ ମୋଚିର ପୁଅ । ଦିନେ ଗାଉଁଲି ଯାତ୍ରାରେ ମୁହଁରେ ପାଉଡ଼ର ବୋଳି ହୋଇ ନାଚୁଥିଲେ । ଭଗବାନଙ୍କ କରୁଣା କାହିଁକି ତାଙ୍କ ଉପରେ ଢାଳି ହୋଇଗଲା ! ବୋଧେ ତାଙ୍କରି ଅଙ୍ଗୁଳି ଇଙ୍ଗିତରେ ସେ ରାଜଧାନୀ କୋପେନ୍‌-ହେଗେନ୍‌ ଆସିଲେ, ସୁଲେଖକ କଲିନ୍‌ସ୍‌ଙ୍କ କୃପାଦୃଷ୍ଟି ତାଙ୍କ ଉପରେ ପଡ଼ିଲା । କଲିନ୍‌ସ୍‌ ତାଙ୍କୁ ଡେନ୍‌ମାର୍କ ରାଜାଙ୍କ ସହିତ ପରିଚିତ କରାଇଦେଲେ । ସେ ବୃତ୍ତି ଲାଭ କଲେ ।

ସେ ପହିଲେ ନାଟକ, ତାପରେ ଭ୍ରମଣକାହାଣୀ ଓ କିଶୋର ଗଳ୍ପ ଲେଖି ସ୍ୱଦେଶରେ ଓ ପରେ ସମଗ୍ର ଇଉରୋପ ଓ ଆମେରିକାରେ ପ୍ରତିଷ୍ଠିତ

ହେଲେ । ମୃତ୍ୟୁର ବହୁ କାଳ ପରେ ତାଙ୍କ ସ୍ଥାନ ଅପୂରଣୀୟ ରହିଛି । ଆମେରିକାର କିଶୋର କିଶୋରୀମାନେ ଏବେ ବି ତାଙ୍କୁ ନିଜର ପ୍ରିୟ ଲେଖକ ବୋଲି ମନେ କରନ୍ତି । ତେଣୁ ଏହି ଲୋକପ୍ରିୟ ଲେଖକଙ୍କ ମୂର୍ତ୍ତି ଯାଦୁଘର ଅଞ୍ଚଳରେ ପ୍ରତିଷ୍ଠିତ ।

ହାନସ ଆଣ୍ଡରସନଙ୍କ ଜୀବନୀ ଓ ରଚନା ବାବଦ କଥା ଇଭ୍ ସହିତ ଆଲୋଚନା କଲା ପରେ ମୋ ମନର କ୍ଲାନ୍ତି ଦୂର ହେଲା । ଆମେ ଗଲୁ ମୀରାଙ୍କୁ ତା କର୍ମକ୍ଷେତ୍ରରେ ଦେଖିବା ଲାଗି ।

## ଦ ଓ୍ୱାର୍ଲଡ୍ ବୁକ୍ ଏନସାଇକ୍ଲୋପେଡ଼ିଆ

କେଡେବଡ଼ ଘର ! ଦୁଇଥର ଲିଫ୍ଟରେ ଉଠିବାକୁ ହେଲା । ଏ ଘରେ କେତେ ବଡ଼ ବଡ଼ ଦୋକାନ ! ଆମେରିକୀୟ କେତେ ଜିନିଷ ବ୍ୟବହାର କରନ୍ତି । ଏଠି ରୁଚିର କି ଘନ ଘନ ପରିବର୍ତ୍ତନ ହୁଏ । ଫଳରେ ଡ୍ରେସ୍ ବଦଳେ, ଘର ବଦଳେ, କାର୍ ବଦଳେ, ମନ ବଦଳିଲେ ସବୁକିଛି ବଦଳେ । ସେଥିଲାଗି ଆର୍ଥିକ ସଙ୍ଗତି ଆମେରିକୀୟର ଅଛି ।

ଏ ସୌଧର ଗୋଟିଏ ଅଂଶ ଦ ଓ୍ୱାର୍ଲଡ୍ ବୁକ୍ ଇନସାଇକ୍ଲୋପେଡ଼ିଆ ବ୍ୟବହାର କରେ ।

ମୀରା କ'ଣ ଲେଖୁଥିଲା । ଆମ ଫୋନ୍ ପାଇ ବୁଲାଇ ଅଫିସ୍ଟି ଦେଖାଇଲା । ଗତ ୨୮ ବର୍ଷ ମଧ୍ୟରେ ଏହି ବିଶ୍ୱକୋଷ ୧୯ ଖଣ୍ଡରୁ ବଢ଼ି ୨୮ ଖଣ୍ଡ ହୋଇଅଛି । ଏହା ପୃଥିବୀର ବୃହତ୍ତମ ବିଶ୍ୱକୋଷ । ୧୯୧୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ମହାଯୁଦ୍ଧ କାଳରେ ଏହାର ଅଯୁମାରମ୍ଭ ହୋଇଥିଲା । ଏଥିରେ ତରୁଣ, ପ୍ରୌଢ଼ ସମସ୍ତଙ୍କ ଲାଗି ଜ୍ଞାନର ବିଭିନ୍ନ ଶାଖା ଶୃଙ୍ଖଳିତ ଓ ଚିତ୍ରାକର୍ଷକ ଭାବରେ ପରିବେଷିତ ହୋଇ ଅଛି । ପୃଥିବୀର ୩୦୦୦ ଲେଖକ, ଗବେଷକ, ବିଦ୍ୱାନ୍, ବିଦ୍ୟାବିଶାରଦ ଏଥିରେ ଅଂଶ ଗ୍ରହଣ କରିଛନ୍ତି ।

ପ୍ରତିଦିନ ଜ୍ଞାନର ଭଣ୍ଡାର ବଢ଼ି ଚାଲିଛି । ତାସହିତ ପ୍ରତିବର୍ଷ ସହସ୍ରାଧିକ ପୃଷ୍ଠାରେ ଏହି ବିଶ୍ୱକୋଷ ମଧ୍ୟ ବଢ଼ି ଚାଲିଛି । ପ୍ରତିବର୍ଷ ସଂଶୋଧନ କରି ଯୁଗୋପଯୋଗୀ ନ କଲେ ଏହାର ମହତ୍ତ୍ୱ ଊଣା ହୋଇଯିବ ।

ବିଶ୍ୱକୋଷ ଛଡ଼ା ଏହି ଅନୁଷ୍ଠାନ ତରଫରୁ Child Craft, How and Why ୧୫ ଖଣ୍ଡରେ ପ୍ରକାଶିତ । କିଶୋର କିଶୋରୀଙ୍କ ଲାଗି ସହଜବୋଧ୍ୟ, ଛବିଳ ଜ୍ଞାନ ଭଣ୍ଡାର ଏ । ପ୍ରଥମ ଖଣ୍ଡ କବିତା, ଦ୍ୱିତୀୟ ଖଣ୍ଡ ଗପ, ତୃତୀୟ ଖଣ୍ଡ ସବୁ ଦେଶର ପିଲା, ଚତୁର୍ଥ ଖଣ୍ଡ ଜୀବଜନ୍ତୁ, ପଞ୍ଚମ ଖଣ୍ଡ ସ୍ଥାନ, ଷଷ୍ଠ ଖଣ୍ଡ ଦେହ,

ଏହି ଘଟରେ ୧୫ ଖଣ୍ଡ । ଏହାକୁ ପଢ଼ି କିଶୋର ପଣ୍ଡିତ ବାହାରୁଛନ୍ତି । ଆମର ଓ ଏ ଯୁଗୀୟ କୈଶୋରର ଆକାଶ ପାତାଳ ତାରତମ୍ୟ, ଭାବି ହୁଏନା ।

ଏହା ବ୍ୟତୀତ The World Book Dictionary, Child Craft Dictionary, World Book Year Book, Science Year ଓ Child Craft Annual ପ୍ରଭୃତି ଉପାଦେୟ ଗ୍ରନ୍ଥସବୁ ଏହି ଅନୁଷ୍ଠାନ ତରଫରୁ ପ୍ରକାଶିତ ହୁଏ ।

ଏହାର ନିଜର ୨୫ ଗୋଟି ଜଳ ଜାହାଜ ଅଛି । ଏଥିରେ ଏହିସବୁ ଗ୍ରନ୍ଥକୁ ପୃଥିବୀର ବିଭିନ୍ନ ଦେଶକୁ ବୋହି ନିଆହୁଏ ।

**ଗ୍ରହ ନକ୍ଷତ୍ର ସଙ୍ଗମେଳେ**

ବିଶ୍ବକୋଷ ଅଫିସରେ ମିସ୍ ସହିତ ଲଞ୍ଚ୍ ଖାଇଲୁ । ଖାଇ ହି ପହିରେ ଟିକିଏ ଗଡ଼ପଡ଼ ହୁଏ । ଆଜି ସେଥିଲାଗି ସମୟ ନ ଥିଲା । ଦୁଇଟାରେ ପ୍ଲାନେଟୋରିଅମ୍ ଶୋ । ଏଠୁ ଅଧଘଣ୍ଟାକର ବାଟ ।

ଟିକି ବାଟରେ ମିଚିଗାନ୍ ହ୍ରଦ । ମେଘ ଗ୍ରୁପ୍ସରେ ଜଳ ମାଳତର । ମିଚିଗାନ୍‌ର ଏକ ଅଂଶ ପୋତି ପ୍ଲାନେଟୋରିୟମ୍ ସୌଧ ନିର୍ମିତ, ଅପୂର୍ବ ପ୍ରାକୃତିକ ଦୃଶ୍ୟ ।

ଦୁଇଟାରେ ଶୋ । ଏବେ ୨୦ମିନିଟ୍ ବାକି । ଅଭ୍ୟାସ ଭାଙ୍ଗିବାର ସୋଉ ଅସୁବିଧା ଲାଗେ, ଲାଗୁଥାଏ । କାଲେ ନିଦ ଝାଙ୍କିବ, ଏଥିଲାଗି କପେ କଫି ଖାଇଲି, ତାପରେ ଆଇସ୍‌କ୍ରିମ୍, କଫି ଉଭୟ ବିରିଦ୍ ଦେଇଥାଏ । ଥଣ୍ଡା ଖାଇ ହଠାତ୍ ଗରମ ଖାଇଲେ ସର୍ଦ୍ଦି ଦେହରେ କାଳେ ବିଷମୟ ଫଳ ହେବ, ଏଇ ଶଙ୍କାରେ ଆଇସ୍‌କ୍ରିମ୍ ଖାଇଲି ନାହିଁ ।

ଅଗ୍ନିଗିରିର ମୁଖଗହ୍ବର ଗ୍ରୁଣ୍ଟରେ 'ଥିଏଟର୍ ରେଷ୍ଟୁରାଣ୍ଟ୍' ନିର୍ମିତ । ଥିଏଟର୍ ଭିତରେ ପଶିବାର ଗୁରୁତ୍ବ ଅନୁଭୂତ ହେଲା, କିନ୍ତୁ ମନ ଭୟଶୂନ୍ୟ ।

ଥିଏଟର୍ ଭିତରେ ଏକ ସୌରମଣ୍ଡଳ ଯାନ୍ତ୍ରିକ ଉପାୟରେ କ୍ରିୟାଶୀଳ । ପୃଥିବୀ ସ୍ବକକ୍ଷରେ ସୂର୍ଯ୍ୟ ଚତୁର୍ଦ୍ଦିଗରେ ଚନ୍ଦ୍ର, ପୃଥିବୀର ଚତୁର୍ଦ୍ଦିଗରେ ଘୂରୁଥାନ୍ତି । ଯାନ୍ତ୍ରିକ ଉପାୟରେ ଅସଂଖ୍ୟ ଗ୍ରହନକ୍ଷତ୍ରର ଆକାଶ ସାମ୍ନାରେ ମୋର ପ୍ରଦର୍ଶିତ ।

ଥିଏଟର୍ ବିପୁଳ ଏକ ପାଟି, ଜଗତର ସବୁ ପାଟି ଖାଏ, ଏ ଖାଏ ନାହିଁ । ବମନ କରେ—ଉଦ୍ଗ୍ର ଲଭା, ଭସ୍ମରେ ଧୂମାୟିତ ଆକାଶ ।

ମୃତ ଅଗ୍ନିଗିରିର କ୍ରେଟର୍‌ରେ କେବଳ ଜୀବଜନ୍ତୁ ରହିପାରନ୍ତି । ଜଳପୂର୍ଣ୍ଣ ହୋଇଥିଲେ ସେହି ହ୍ରଦରେ ମତ୍ସ୍ୟ ବି । କିନ୍ତୁ କୋଉଠୁ ଆସନ୍ତି ସେମାନେ ?

ଥିଏଟର୍‌ରୁ ଉଠି ଉପରକୁ ଗଲାପରେ ଦେଖିଲୁ—କାଚ ଭିତରେ ଏଡ଼େ ଯତ୍ନରେ ରଖାହୋଇଛି ଏ କଣ ? ଚନ୍ଦ୍ରର ମାଟି । ୧୯୬୯ରେ ଆର୍ମଷ୍ଟ୍ରଙ୍ଗ୍, ଆଲ୍‌ଡ୍ରିନ୍ ଓ କଲିନ୍‌ସ୍ ଚନ୍ଦ୍ରରୁ ୬୦ ପାଉଣ୍ଡ୍ ମାଟି ଆଣିଥିଲେ, ଆପୋଲୋ ୧୧ରେ ପୃଥିବୀ ପୃଷ୍ଠରୁ ଚନ୍ଦ୍ରକୁ ୨ ଲକ୍ଷ ୪୦ ହଜାର ମାଇଲ୍ ଯାତାୟାତ ; ଏତିକି ମାଟି ପ୍ରାୟ ଅଧ ପାଉଣ୍ଡେ ଓଜନ ହେବ । ମାଟି ତ ନୁହେଁ, ପ୍ରସ୍ତରଖଣ୍ଡ, ଧାତୁମିଶ୍ରିତ ।

ଗ୍ରହ ଉପଗ୍ରହ ସବୁ ପଥର, ମାଟି; ଦୂରରୁ ଉଜ୍ଜ୍ୱଳ ଦିଶେ, ଚୁମ୍ବକ ଶକ୍ତିରେ ଆକାଶରେ ଝୁଲେ, ପୃଥିବୀ ପୃଷ୍ଠରୁ କେତେ ଆଲୋକ ବର୍ଷର ଦୂରତାରେ ।

ଚନ୍ଦ୍ରର ପର୍ବତମାଳା ଧୂଳିଧୂସର । ଟୋପାଟିଏ ସବୁଜ ରଙ୍ଗ କୋଉଠୁ ହେଲେ ଯୋଗି ପଡ଼ୁନାହିଁ । ପିତୃଲୋକଙ୍କର ଏଇ ଭୂମି, ମୃତ୍ତିକାରୁ ପାଣି ଟୋପିଏ ଝରେନାହିଁ । ପିତୃଲୋକେ ନିତ୍ୟ ତୃଷାର୍ତ୍ତ, ବଂଶଧରଙ୍କ ଅର୍ପିତ ଶ୍ରାଦ୍ଧରେ ତୃପ୍ତିଲାଭ କରନ୍ତି । ଏଭଳି ଏକ ମରୁଭୂମିରେ କ୍ଷୁଧା, ତୃଷା ସ୍ୱାଭାବିକ । କିନ୍ତୁ ମୃତ୍ୟୁପରେ ଦେହହୀନ ଆତ୍ମାର କ୍ଷୁଧା, ତୃଷା କିଣ ସମ୍ଭବ ?

କେଡ଼େ ନୁଖୁରା ମାଝିଆ, ଅଥଚ ଚନ୍ଦ୍ରିକା ଝରିଲାବେଳେ କେଡ଼େ ଚକ୍‌ମକ ଦିଶେ । ଦୂର ପର୍ବତ ପରି ଅତି ଦୂର ଚନ୍ଦ୍ର ସୁନ୍ଦର, ପାଖକୁ ଗଲେ ଆଣ୍ଠୁଏ ଧୂଳି, ମଳି କଅଁ ପାହାଡ଼, ବାଳିଝମାଟି । ଆକାଶରେ ମେଘ ନାହିଁ, ସୁରଆଡ଼ ଶୁଖିଲା ଠୋ-ଠୋ ।

ନିଜର ନିଶ ନାହିଁ, ଦିନା ସୁଇର ନିଶ ପିନ୍ଧି ସେ ବାହାରେ । ତାର ଆଲୋକରେ ଆମକୁ ଆଲୋକିତ କରେ, ଆପଣା ପଛ ଉଇ ଖାଇଯାଉ, ଗାଢ଼ ଅନ୍ଧାରରେ ରହିଯାଏ ପଛକେ ।

ଭୂତ ଦେଶରେ ଆର୍ମଷ୍ଟ୍ରଙ୍ଗ୍ ପ୍ରଭୃତି ଚନ୍ଦ୍ରପଥର ତାଣ୍ଡବ ଦୃଶ୍ୟ ଅଦ୍ଭୁତ ; ସାମ୍ନାରେ ଖୋଲି ଦିଆଯାଇଛି ଚନ୍ଦ୍ରର ଶୁଷ୍କ ପ୍ରକୃତିର ଲକ୍ଷ୍ମୀଛଡ଼ା ରୂପ । ଶଶ ତୃଷାରେ ଆତୁର ହୋଇ ମରି ତାକୁ ଦିନେ ଶଶାଙ୍କ କରିଥିଲା । ବୈଜ୍ଞାନିକମାନେ ପଞ୍ଚାଶଟି ତାରକାଚିହ୍ନିତ ଆମେରିକାର ଜାତୀୟ ପତାକା ଚନ୍ଦ୍ର ପୃଷ୍ଠରେ ପୋତି ଏହାକୁ ଧ୍ୱଜାଙ୍କ କଲେ । ପିତୃଲୋକେ ସାଧୁବାଦ ଦେଲେ । ଜୀବନ୍ତ ଓ ମୃତ ଏଣିକି ଚନ୍ଦ୍ରଲୋକରେ ଏକାଠି ରହିପାରିବେ, ଯେମିତି ରହିଛନ୍ତି ପୃଥିବୀରେ, ସମାଧିରେ ଓ ସୌଧରେ ।

କି ଉପାୟ କଲେ ଚନ୍ଦ୍ରରେ ବାୟୁମଣ୍ଡଳ ନିର୍ମିତ ହେବ, ବର୍ଷା ହେବ, କୃଷି ସମ୍ଭବ ହେବ, ପୃଥିବୀରୁ ଯାତ୍ରା ସହଜତର ହେବ, ଚନ୍ଦ୍ରକୁ କେନ୍ଦ୍ରକରି ଗ୍ରହ ନକ୍ଷତ୍ର ବିଜୟ ସମ୍ଭବ ହେବ, ବୈଜ୍ଞାନିକମାନେ ଚିନ୍ତା କରୁଛନ୍ତି । ନକ୍ଷତ୍ର ଯୁଦ୍ଧ ଓ ପୃଥିବୀର ଧ୍ୱଂସର ଭୟଙ୍କର କଳ୍ପନା ମଧ୍ୟ ଅଳ୍ପ ହେଉନାହିଁ ।

ଦୁଇଟି ରଙ୍ଗମଞ୍ଚରେ ପ୍ଲାନେଟୋରିୟମ୍ ଦେଖାଗଲା—ଗୋଟିଏ ଭୂଇଁତଳେ; ସେଥିରୁ ଗ୍ରହ ଉପଗ୍ରହରେ ବସତି ସ୍ଥାପନର ବିବିଧ ଚେଷ୍ଟାର ଏକ ପୂର୍ଣ୍ଣାଙ୍ଗ ବିବରଣୀ ମିଳିଲା । ଶୂନ୍ୟପଥ ଯାତ୍ରୀ ଲାଗି କିପରି ଟ୍ରେନିଂ, କି ପୋଷାକ, କି ଖାଦ୍ୟ ଆବଶ୍ୟକ, କିପରି ପୃଥିବୀରୁ ଯାତ୍ରା ନିୟନ୍ତ୍ରଣ କରାଯାଏ ଓ ବିବିଧ ନିର୍ଦ୍ଦେଶ ଦିଆଯାଏ, ତାର ଏକ ପୂର୍ଣ୍ଣାଙ୍ଗ ବିବରଣୀ ଦିଆଗଲା । ଏଥିଲାଗି କେତେ ପ୍ରକାର ଟେଲିସ୍କୋପ୍ ଆବଶ୍ୟକ, ତାହା ମଧ୍ୟ ବୁଝାଇ ଦିଆହେଲା ।

ଦ୍ୱିତୀୟ 'ସୋ'ଟି ବହୁତ ପାହାଚ ଉଠିଲା ପରେ । ଖୋଲା ଆକାଶ ସହିତ ନିବିଡ଼ ଯୋଗାଯୋଗ ରକ୍ଷିହେଲା । ଟେଲିସ୍କୋପ୍ ଦିନକୁ ଲମ୍ବାଇ ଦେଇ ପୂରା ରାତିର ଆକାଶଟିଏ ସମକ୍ଷରେ ଖୋଲିଦେଲା । ଆମକୁ ଆକାଶରେ ପରିଚିତ ଗ୍ରହ-ନକ୍ଷତ୍ରଙ୍କ ଅବସ୍ଥିତି, ଧୂମକେତୁର ସ୍ଥିତି, ଗତି, ଆତ୍ମପ୍ରକାଶ ଓ ସୂର୍ଯ୍ୟ ସମ୍ପର୍କରେ ଆସି ତାର ପରିବର୍ତ୍ତନ ଦେଖାଇ ଦିଆହେଲା ।

ଶକ୍ତିଶାଳୀ ଟେଲିସ୍କୋପ୍‌ରେ ଦୃଶ୍ୟମାନ ଆକୃତିର ଦେଢ଼ଶ ଗୁଣ ବଢ଼ାଇ ଦିଆଯାଇଥିଲା । ଅଷ୍ଟର୍ଯ୍ୟ ଏ ଅତ୍ୟୁଜ୍ଜ୍ୱଳ ଗ୍ରହଲୋକ, ସପ୍ତର୍ଷି, ଛାୟାପଥ, ସନ୍ଧ୍ୟାତାରା ଓ ଲଣ୍ଡାତାରା ।

ପାଦତଳେ ମୋର ପୃଥିବୀ, ଉପରେ ଜ୍ୟୋତିର୍ମଣ୍ଡଳର ପ୍ରଚଣ୍ଡ ଦୀପ୍ତି, ଅପୂର୍ବ ଏ ବିଶ୍ୱଜଗତର ପ୍ରାକୃତିକ ଦୃଶ୍ୟ ! କ୍ଷୁଦ୍ର ପୃଥିବୀର କେତୋଟି ପର୍ବତ, ପ୍ରପାତ ଓ ପ୍ରସ୍ରବଣ ଦେଖି ମୁଗ୍ଧ ହୋଇଥିଲି । ଏବେ ସ୍ତବ୍ଧ ହୋଇଗଲି । ଭଗବାନ୍‌ଙ୍କ ବିଶ୍ୱମୂର୍ତ୍ତି ପରି ସମଗ୍ର ବିଶ୍ୱ ପ୍ରକୃତିର ଅଖଣ୍ଡ ମଣ୍ଡଳ ରୂପ ଚକ୍ଷୁ ସମକ୍ଷରେ ଉଦ୍‌ଭାସିତ ହୋଇ ଉଠିଲା, ଠିକ ପୃଥିବୀର ଠିକ ମଣିଷଟିଏ ମୁଁ ଦେଖୁଛି ।

ପ୍ରଥମ ସ୍ପେସ୍ ଷ୍ଟେସନ୍ ଦେଖିଲି, ଦେଖିଲି ଚନ୍ଦ୍ରର ପ୍ରତି ପାହାଡ଼ରେ ସୌଧ, ଚନ୍ଦ୍ରପଥରେ ଯାନବାହନରେ ଗତି, ଚନ୍ଦ୍ରଖଣିରୁ ଖଣିଜ ଉତ୍ତୋଳନ । ତାପରେ ଦେଖିଲି—ବିପୁଳ ଚନ୍ଦ୍ର ସ୍ୱପ୍ନାଚ୍ଛନ୍ନ, ରକ୍ତିମ, ସୁନ୍ଦର । ଚନ୍ଦ୍ରରେ ସକାଳ ହୋଇଛି, ମାନବିକ ଉନ୍ନତିର ଏକ ସକାଳ । ଏ ସକାଳ ଯେତେବେଳେ ମଧ୍ୟାହ୍ନ ହେବ ?

ସେହି ସ୍ୱପ୍ନରୁ ହଠାତ୍ ଜାଣି ପଦାକୁ ଆସିଲା ବେଳକୁ ମିଚିଗାନ୍‌ର ଢେଉ ଖରରେ ଚକ୍ ଚକ୍ କରୁଛି, ଚିକାଗୋ ସହର ହସି ଉଠୁଛି ସେହି ପାର୍ଶ୍ୱରେ । ପୁଣି ନୂଆ ସ୍ୱପ୍ନ ଦେଖିଲା ପରି ଲାଗିଲା । ସ୍ୱପ୍ନ ଆଉ ସତ୍ୟ, ସତ୍ୟ ଆଉ ସ୍ୱପ୍ନ କେଡ଼େ ପାଖାପାଖି ସତେ !

ଯାହା ଭିତରେ ସ୍ୱପ୍ନ, ତାହା ବାହାରେ ସତ୍ୟ । କିଏ କାହାଠାରୁ ଊଣା ବା ଅଧିକ ?

## ଉଣେଇଶ

### ବାହାଇ ମନ୍ଦିର

ସୌନ୍ଦର୍ଯ୍ୟପୂର୍ଣ୍ଣ ସ୍ଥାନରେ ଧର୍ମକୀର୍ତ୍ତି ଭାରତରେ ସଦ୍ୟ ପ୍ରତିଷ୍ଠିତ । ସାରା ପୃଥିବୀରେ ବି ସେହି ଗୀତ । ମିଚିଗାନ୍ ହ୍ରଦ କୂଳରେ ବାହାଇ ମନ୍ଦିର—ମନ୍ଦିରର ପରିବେଶ ଓ କାରୁକାର୍ଯ୍ୟ କଥାରେ କହିହୁଏ ନାହିଁ; ଗୀତରେ ଗାଇବା ଅଧିକ ବାତୁଳତା । 'ହୃଦ ସେ କେବଳ ପାରେ ଅନୁଭବି ।'

ଚକ୍‌ଚକ ସବୁଜ ଘାସ ପଡ଼ିଆରେ ଟ୍ୟୁଲିପ୍—ଲାଲ୍, ବେଗ୍ ବଡ଼ ବଡ଼ ଗେଣ୍ଡୁ ଓ ଗୋଲାପ । ଫୁଆରା ଛୁଟିଛି । ଗାଢ ସବୁଜ ଚିତ୍ରପଟରେ ନାନା ରଙ୍ଗର ପରିପାଟୀ ପରି ଫୁଟିଛି ବିଭିନ୍ନ ବର୍ଣ୍ଣର ଫୁଲ । ବଗିଚାଟି ପଟୁ କ୍ଷିପ୍ରର ଅଙ୍କିତ କଳାକୀର୍ତ୍ତି ପରି ଦିଶେ ।

ଉଦ ପଗ୍ଚାରିଲି—ଏ ମନ୍ଦିର ଦେଖି କି ପୁଣ୍ୟ ଅର୍ଜନ କଲି ? କହିଲି—ଭଗବାନ୍‌ଙ୍କ ଚୋଟା ଆଖି ଏ ଫୁଲେ ସେ ଫୁଲେ ଦେଖୁଛି, କରୁଣାର ଆକାରରେ ଟଳମଳ । ଭଗବାନ୍‌ଙ୍କ ରସଭରା ହୃଦସ୍ପନ୍ଦ ବି ଅନୁଭବ କରୁଛି । ସ୍ୱଚ୍ଛସରସ ସବୁଜିମା ଓ ମଧୁଭରା ମଧୁପ ଗୁଞ୍ଜିତ ପୁଷ୍ପ ଦେଖି ପୁଣ୍ୟ ହେଉ କି ନ ହେଉ, ତାଙ୍କ ଶ୍ରୀର ଗୋଟିଏ କଣିକା ମୋ ମନରେ ଟଳମଳ ହେଉଛି, ତାଙ୍କୁ ପ୍ରକୃତି ଶ୍ରୀରେ ପାଇବାରେ ମୋର ଚରମ ଆନନ୍ଦ । ଫଟା କଣ୍ଠରେ ସ୍ତୁତିଗୀତ ଗାଇ ତାଙ୍କୁ ଅନ୍ତର ଭିତରକୁ ଟାଣି ଆଣିବାର ଭରସା କେବେ କରି ପାରି ନାହିଁ । କବି ଭଗବାନ୍ ହିଁ ମୋର ଧ୍ୟେୟ । ପ୍ରକୃତ ବିଶ୍ୱକବି ସେ ।

ଧ୍ୟାନ ମାଧ୍ୟମ ହିଁ ମୁଁ ତାଙ୍କୁ ପାଏ, ଅତି ସହଜରେ ଫୁଲଫୁଟା ସକାଳ ଓ ଝରଣାଧୁଆ ସବୁଜ ଶ୍ରୀ ମଧ୍ୟରେ । ସେତିକିରେ ତୁଷ୍ଟ ମୁଁ । ତପସ୍ୟା କରି ହୁଙ୍କା ପାଳିଟିବା ଧୈର୍ଯ୍ୟ ମୋର ନାହିଁ ।

ବାହାରେ ନୀରବ ହେବା ଚେଷ୍ଟା କଲେ ଭିତରେ ତୋଫାନ ଉଠେ । ଧୂଳି ଧୂମ ଧୂସରେ ସବୁକିଛି ମଳିନ ହୋଇଯାଏ ।

ବାହା-ଉ-ଲ୍ଲା ବାହାଇ ଧର୍ମର ସ୍ଥାପୟିତା । ଧର୍ମ ଲାଗି ସେ କାରା ବରଣ କରିଛନ୍ତି, ନିର୍ବାସନ ଦଣ୍ଡ ଭୋଗିଛନ୍ତି ।

ବାହାଇ ଧର୍ମ ଆଧୁନିକ ଯୁଗର ଧର୍ମ । ବାହାଉଲ୍ଲାଙ୍କ ଜନ୍ମ ୧୮୧୭ ଖ୍ରୀଷ୍ଟାବ୍ଦରେ; ମୋଜେସ୍, ଖ୍ରୀଷ୍ଟ, ବୁଦ୍ଧ, ମହମ୍ମଦଙ୍କ ପରି, ସେ ବି ଈଶ୍ବରଙ୍କ ଦୂତ ।

ବାହା ଅର୍ଥ ଗୌରବ । ବାହାଇ ଧର୍ମ ମାନବ ସମାଜ ପକ୍ଷରେ ଏକ ଗୌରବମୟ ଆବିର୍ଭାବ ।

ଇରାନ୍ ଦେଶରେ ବାହାଙ୍କ ଜନ୍ମ, ସେହି ଦେଶର ଏକ କାରାଗାର ଅନ୍ଧକାରରେ ତାଙ୍କର ମୃତ୍ୟୁ । ମୃତ୍ୟୁ ପରେ ତାଙ୍କ ଧର୍ମ ଏବେ ପୃଥିବୀର ୩୪୦ଟି ଦେଶରେ ସଞ୍ଚାରିତ ହୋଇଛି । ଏ ସମ୍ପର୍କରେ ବହୁ ଭାଷାରେ ବହୁ ପୁସ୍ତକ ରଚିତ ହୋଇଅଛି ।

ବାହାଇଧର୍ମୀ ଏକେଶ୍ୱରବିଶ୍ୱାସୀ । ତା କଳନାରେ ମଣିଷଜାତି ଗୋଟାଏ, ବର୍ଣ୍ଣ, ଜାତି, ଗୋଷ୍ଠୀରେ ତାକୁ ଭିନ୍ନ ଭିନ୍ନ କରି ଦେଖିବା ଅନ୍ୟାୟ । ଧର୍ମ ଓ ବିଜ୍ଞାନର ସମନ୍ୱୟ ହେବା ଆବଶ୍ୟକ ।

ବାହାଇ ଦୃଷ୍ଟିରେ ସ୍ତ୍ରୀ-ପୁରୁଷ ସମାନ । ଶିକ୍ଷାର ସମାନ ସୁଯୋଗ ସମସ୍ତେ ପାଇବା ଉଚିତ । ବିଭିନ୍ନ ଅର୍ଥନୈତିକ ସମସ୍ୟାର ସମାଧାନରେ ଆଧ୍ୟାତ୍ମିକତା ସହାୟକ ହୋଇପାରେ ।

ସମସ୍ତ ମାନବସମାଜର ଭାବ ବିନିମୟ ଲାଗି ଗୋଟିଏ ଭାଷା ଚାଲିବା ଆବଶ୍ୟକ । ସଂଗଠିତ ବିଶ୍ୱସରକାର କେବଳ ବିଶ୍ୱଶାନ୍ତି ଅବ୍ୟାହତ ରଖିପାରିବ ।

ଏହି ଧର୍ମର କେହି ପ୍ରଚାରକ ବା ପୁରୋହିତ ନାହିଁ । ପ୍ରାର୍ଥନା ବାଧ୍ୟତାମୂଳକ । ଏଥିରେ କେହି ଗୁରୁ ନାହିଁ କି ଶିଷ୍ୟ ନାହିଁ । କେହି କାହାକୁ ଦୀକ୍ଷା ଦେବା ପ୍ରଶ୍ନ ନାହିଁ ।

ବର୍ଷକେ ୧୯ ଦିନ ଉପବାସ ବାଧ୍ୟତାମୂଳକ—ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ଖାଦ୍ୟ ଓ ଜଳଗ୍ରହଣ ନିଷେଧ । ପିତାମାତାଙ୍କ ଅନୁମତିକ୍ରମେ ବିବାହ; ଏକପତ୍ନୀ ବ୍ରତ ବାଧ୍ୟତାମୂଳକ ।

ବର୍ଷକେ ୧୯ ଦିନ ଭୋଜ । ଏ ଏକ ଲେହ୍ୟ, ପେୟ ଭୋଜ ନୁହେଁ, ମାନସିକ ଭୋଜ; ଏ ୧୯ ଦିନ ମଧ୍ୟରେ ସେ ନିବିଡ଼ ଭାବରେ ବାହାଇ ଧର୍ମ ଚର୍ଚ୍ଚା କରିବ । ସ୍କୁଲ, କଲେଜ, ଗୋଶାଳା, ଅନାଥାଶ୍ରମ, ଚିକିତ୍ସାଳୟ ସ୍ଥାପନରେ ସାହାଯ୍ୟ କରିବ ।

ବାହାଇ ଏକ ସମନ୍ୱୟ ଧର୍ମ । ବିଭିନ୍ନ ଧର୍ମର ସାରସତ୍ତ୍ୱ ଏହା ବ୍ୟାଖ୍ୟା କରେ, ସବ ଧର୍ମର ନେତୃ ସମ୍ମିଳନୀ ମଧ୍ୟ କରାଏ, ଧର୍ମଗତ ବିଭେଦ ଦୂରୀକରଣ ଲାଗି ।

ବାହାଇ ମତରେ ବର୍ଷକ ୧୯ ମାସ । ପ୍ରତି ମାସର ଦିନ ସଂଖ୍ୟା ୧୯; ମାର୍ଚ୍ଚ ୨୧ ତାରିଖରେ ବର୍ଷାରମ୍ଭ । ଏହା ପୁଣ୍ୟ ଦିବସ ଭାବେ ପାଳିତ ।

ମଣିଷଜାତିକୁ ଏକାତ୍ମ କରିବା ବାହାଇ ଧର୍ମର ଲକ୍ଷ୍ୟ । ସଂସାରରେ ସମସ୍ତଙ୍କର ସମାନ ଅଧିକାର ରହିଛି । ସବୁ ମଣିଷ ବିକାଶର ସମାନ ସୁଯୋଗ ପାଇବା ଆବଶ୍ୟକ । ଅତି ସମୃଦ୍ଧି ଓ ବିକଟ ଦାରିଦ୍ର୍ୟ ସମଭାବେ ଅବାଞ୍ଛନୀୟ ।

ବାହାଇ ଗ୍ଲଡ଼ଯନ ସମର୍ଥନ କରେ ନାହିଁ; ସଂସାର ତ୍ୟାଗ ଓ ସନ୍ନ୍ୟାସକୁ ପ୍ରଶ୍ରୟ ଦିଏ ନାହିଁ ।

ସତ୍କର୍ମର ଆନନ୍ଦ ମଣିଷକୁ ଭଗବାନ୍ଙ୍କ ନିକଟବର୍ତ୍ତୀ କରାଏ । ଅସତ୍ କର୍ମ କଲେ ମଣିଷ ଭଗବାନ୍ଙ୍କଠାରୁ ଦୂରେଇ ଯାଏ ।

ବାବ୍ ବାହାଉଲ୍ଲାଙ୍କ ଗୁରୁ । ତାଙ୍କୁ ୧୯୫୦ରେ ଧର୍ମଅସହିଷ୍ଣୁ ଇରାନ ସରକାର ମୃତ୍ୟୁଦଣ୍ଡ ଦେଇଥିଲେ । ତାପରେ ୨୦ ହଜାର ବାହାଇଧର୍ମୀଙ୍କୁ ମୃତ୍ୟୁଦଣ୍ଡ ଦିଆ ହୋଇଥିଲା । ଏହି ତୀବ୍ର ଦମନନୀତି ଓ ନୃଶଂସ ହତ୍ୟା ବାହାଇ ଧର୍ମର ଦ୍ରୁତ ପ୍ରସାରରେ ସହାୟକ ହୋଇଥିଲା ।

## କବି ହୋଇଗଲେ ଜଗତଯାକ

ପୃଥିବୀରେ ସମସ୍ତେ କବି ହେଲେ କଣ କ୍ଷତି ହେବ ? ଊଣା ଅଧିକେ ସମସ୍ତେ କବି ନୁହନ୍ତି କି ? କଣ କ୍ଷତି ଘଟିଯାଇଛି ?

ହଉ ଏବେ କ୍ଷତି କଥା ଛାଡ଼, ଲାଭ କଣ ହେବ ? ସମସ୍ତେ ଯୋଗୀ ହେଲେ ଭିକ ଦେବ କିଏ ! ସମସ୍ତେ ଲେଖିଲେ ପଢ଼ିବ କିଏ ? କିମ୍ବା ଏବ ପର କବିର କବିତା କେବଳ କବି ପଢ଼ିବେ ; ନହେଲେ ନିଜ କବିତା ନିଜେ ପଢ଼ିବେ । ସୌଭାଗ୍ୟକୁ ପୃଥିବୀରେ ସେପରି ଦୁର୍ଯୋଗ କେବେ ଘଟିନାହିଁ ।

ନାହିଁ ଯଦି ଓଲଟା ହୁଏ ·····; ମାନେ ପୃଥିବୀରେ ଜଣେ ବି କବି ନ ରହିଲେ କଣ ହେବ ? କଣ ଆଉ ହେବ ? ଲୋକେ ଖାଇବା ବିନା ମରିଯିବେ ନାହିଁ, ଲଙ୍ଗଳା ହୋଇ ବାରବୁଲା ବାଇଆ ପରି ବୁଲିବେ ନାହିଁ, କିମ୍ବା ଗୋଡ଼ ଉପରକୁ ଟେକି ହାତରେ ଚାଲିବେ ନାହିଁ । ପୃଥିବୀଟା ଓଲଟି ଯିବ ନାହିଁ କିମ୍ବା ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦେହେବେ ନାହିଁ ।

ସତ କହିଲେ ଏ ଯୁଗରେ କବି ଅଛନ୍ତି ? କବିକୁ କିଏ ମାରିଲା ? କାହିଁକି କିଏ ମାରିବ ? କେହି କବିତା ପଢ଼ିଲେ ନାହିଁ । କବି ଗୁଁଏ ଗୁଁଏ ମରିଗଲେ ।

କିନ୍ତୁ କବିପ୍ରାଣଟା ପ୍ରାଣେ ପ୍ରାଣେ ରହିଗଲା । ଫଳରେ ଫୁଲଫୁଟା ବା ସମୁଦ୍ରରେ ତରଙ୍ଗର ବନ୍ଦ ହେଉନାହିଁ । ଲୋକେ ସୂର୍ଯ୍ୟୋଦୟ ଓ ଚନ୍ଦ୍ରିକାକୁ ପ୍ରୀତିଦୃଷ୍ଟିରେ ଦେଖିଲେ, ପରସ୍ପରକୁ ଯେତେ ଭଲ ପାଇବାର ପାଇଲେ । କବି ଅଭିମନ୍ୟୁ ଲେଖିଛନ୍ତି—

'କବିତା ଗ୍ରାହକ କବି କୋଟି ଆୟୁ ଘେନ
ବର୍ତ୍ତିଥିଲେ କବି କବିତା କି ହେବ ମ୍ଳାନ ?'

ସତରେ କବିର କୋଟି ଆୟୁ ଘେନି ରସିକ ଗ୍ରାହକ ବଞ୍ଚିଛି । ତେଣୁ କବିତା ବା ସାହିତ୍ୟର ମହତ୍ତ୍ୱ ହାନି ଘଟିନାହିଁ, ଯେତେ ପ୍ରତିକୂଳ ପରିସ୍ଥିତି ରହିଥିଲେ ବି, ବଞ୍ଚିବା ଲାଗି ଯେତେ ନୀରସ ଦାର୍ଯ୍ୟ କରୁଥିଲେ ବି ।

ତେଣୁ ଜଣେ ଗ୍ରାହକକୁ ଆଉ କେତେ ଓଡ଼ିଆ ଗ୍ରାହକ ଆଦରିନେବା ବ୍ୟବସ୍ଥା ହେଲା ଚିକାଗୋ ନଗରୀରେ, ମୀରାର ଆପାର୍ଟମେଣ୍ଟରୁ ପ୍ରାୟ ୫୫ ମାଇଲ୍ ଦୂର ସୂର୍ଯ୍ୟ ମିଶ୍ରଙ୍କ ଘରେ, ଆମେରିକାରେ ଏ ଦୂରତା କିଛି ନୁହେଁ । ଖୁବ୍ ହେଲେ ଘଣ୍ଟାକର ବାଟ । କିନ୍ତୁ ରାସ୍ତାଟା ବାରବୁଲା, ବଙ୍କାଟଙ୍କା । ଇରା ମାନଚିତ୍ର ଦେଖି ନିର୍ଣ୍ଣୟ କରୁଥାଏ । ଉଦୟ ଗାଡ଼ି ଚଳାଉଥାଏ ।

ଗ୍ରେଟରାସ୍ତା ; ଧନଧାଡ଼ି ଗାଡ଼ି ଯାଉଥାଏ, ଲାଲ୍ ଆଲୁଅ; ଧନଧାଡ଼ି ଗାଡ଼ି ଆସୁଛି, ଗୁହିଁ ହେଉନାହିଁ । ରାସ୍ତାରେ ଦୁଇଥର ବାଡ଼ ଲମ୍ବିଗଲା । ଟୋଲ୍ ପଇସା ଗଲା ହେଲାପରେ ଗୁଡ଼ ମିଳିଗଲା ।

ଚିକାଗୋର ୫୦ ହଜାର ଭାରତୀୟଙ୍କ ମଧ୍ୟରେ ଦଶୋଟି ମାତ୍ର ଓଡ଼ିଆ ପରିବାର । ମାତ୍ର ଦୁଇଜଣଙ୍କୁ ଛାଡ଼ିଦେଲେ ଉଚ୍ଚ ସ୍ତରରେ ସମସ୍ତେ ଅବସ୍ଥିତ । ସେ ଦୁଇଜଣ ଅର୍ଥନୀତିକ ଦିଗରୁ ଉଚ୍ଚତର ସ୍ତରକୁ ଯାଇପାରନ୍ତି, ସେମାନଙ୍କ ବ୍ୟବସାୟ ଯୋଜନା ସଫଳ ହେଲେ । ଓଡ଼ିଶାରେ ଅପରେସନ୍ କ୍ଲଥ, କଟନ, ବ୍ୟାଣ୍ଡେଜ୍ ଆଦି ଡାକ୍ତରଖାନାର ବ୍ୟବହାର୍ଯ୍ୟ ବସ୍ତୁ ଉତ୍ପାଦନରେ ସେମାନେ ଚେଷ୍ଟିତ ।

ପଚାରିଲି—ଏଠା ଜୀବନ କିପରି ? ସୂର୍ଯ୍ୟ ମିଶ୍ରେ କହିଲେ—ଆମ ପକ୍ଷେ କଠିଣ, କଷ୍ଟକର । ପ୍ରଥମତଃ ଜଳବାୟୁ ପ୍ରତିକୂଳ । ଶୀତଦିନେ ପଦାରେ ପାଦ ପକେଇବାର ଉପାୟ ନାହିଁ । ଚାକିରି କରିଥିବା ସ୍ତ୍ରୀ ଲୋକଙ୍କ ବ୍ୟତୀତ ଅନ୍ୟ ଗୃହିଣୀ ଗୃହବନ୍ଦିନୀ ହୋଇ ରହେ । ଏଇ ଦଶୋଟି ପରିବାର ମଧ୍ୟ ପରସ୍ପରଠାରୁ ଅନେକ ଦୂରରେ ରହିଛନ୍ତି । ବନ୍ଧୁମିଳନ ବ୍ୟତୀତ କାହା ସଙ୍ଗେ କାହାର ମିଳାମିଶା କରିବାର ଉପାୟ ନ ଥାଏ ।

ଅମେରିକୀୟ ପଡ଼ାକୁ ଖୁବ୍ ଆଳାପୀ, ମିଳାମିଶା ପ୍ରକୃତିର ପରି ଜଣା-ପଡ଼େ । ତା ସହିତ ମେଳ ପକ୍ସ ସରଳ, ସଜୀବ କରି ରଖିବା କଷ୍ଟକର, ତା ହୃଦୟର ଗଭୀର ପ୍ରଦେଶରେ ସ୍ଥାନ ପାଇବା ଭାରତୀୟ ନରନାରୀଙ୍କ ପକ୍ଷରେ କ୍ୱଚିତ୍ ସମ୍ଭବ ହୁଏ ।

ଦ୍ୱିତୀୟରେ ଏଠା ଚାକିରୀରେ ଉଧେଇବା କଠୋର କର୍ତ୍ତବ୍ୟନିଷ୍ଠା ଉପରେ ନିର୍ଭରଶୀଳ । ଏଠି ଖୋସାମତି, ରାଜନୀତି ଚଳେନାହିଁ, ଜୀବନ ମୂର୍ଚ୍ଛା ଖଟଣି । ଟିକିଏ ହାଲୁକା ବା ହୁଗୁଳା ଦେଖିଲେ କର୍ତ୍ତା କ୍ଷମା ଦିଅନ୍ତି ନାହିଁ, ଚତୁରତା ସବୁ ଖସାଇ ଦିଅନ୍ତି ।

ତୃତୀୟରେ ଏଠା ଓଡ଼ିଆ ପିଲା ଆଉ ଓଡ଼ିଆ ହୋଇ ରହୁନାହାନ୍ତି । ସେମାନଙ୍କ ଚଳାଚଳ ଓଡ଼ିଆତ୍ୱ ବିବର୍ଜିତ ହୋଇଯାଇଛି, ଏଠା ପିଲାଙ୍କ ସଙ୍ଗେ ମିଳାମିଶି ଚଳିବା ଆମ ପିଲାଙ୍କ ପକ୍ଷେ ସହଜ ନୁହେଁ ।

ପୁଣି ନିଜ ପରିବାର ଓ ବନ୍ଧୁ କୁଟୁମ୍ବଙ୍କୁ ଛାଡ଼ି ଚିରଦିନ ଏଠି କଟାଇବାରେ କି ସୁଖ ଅଛି ? ବାହାରୁ ଦେଖିଲେ ସ୍ୱର୍ଗ ସୁଖ ; ଭିତର ଟା ପୋଲ, ଫମ୍ପା ।

ମିଳାମିଶାର ଏପରି ସୁଯୋଗ ଆମକୁ କ୍ୱଚିତ୍ ମିଳେ । ତେଣୁ କୌଣସି ଅସୁବିଧା ପ୍ରତି ଭ୍ରୂକ୍ଷେପ ନକରି ବନ୍ଧୁ ମିଳନର ଏଇ ବିରଳ ସୁଯୋଗ ସମସ୍ତେ ନିଅନ୍ତି ।

କେବଳ ପିଲାଙ୍କୁ ଛାଡ଼ି ସମସ୍ତେ କୋଠରୀରେ ଏକାଠି ହେବା ପରେ ପ୍ରାରମ୍ଭ ଭାଷଣରେ ଶ୍ରୀ ମିଶ୍ର କହିଲେ—ଓଡ଼ିଶାର ପହିଲା ନମ୍ବର ଲେଖକ ଜଣେ ଚିକାଗୋ ଆସିଛନ୍ତି । ସତୁରୀ ବର୍ଷ ବୟସରେ ତାଙ୍କ ଲେଖନୀ ଅବ୍ୟାହତ ଗ୍ଭଲିଛି । ଆମ ଭିତରେ ତାଙ୍କୁ ପାଇବା ଏକ ସୌଭାଗ୍ୟର ବିଷୟ । ତାଙ୍କ ମୁଖରୁ ଦିପଦ ଶୁଣିଲେ ଆମେ ବିଦେଶୀ ଓଡ଼ିଆ ନିଜକୁ କୃତାର୍ଥ ମନେ କରିବୁ ।

କହିଲି—ମୁଁ ଜଣେ ସ୍ୱପ୍ନଗ୍ଭରୀ, ସ୍ୱପ୍ନ ଦେଖି ମୋ ଜୀବନ ଯାଇଛି । ସ୍ତ୍ରୀ ଲତା, ସାନଭାଇ ହିଦ. ଭଣଜାବୋହୂ ଇରା ସେଥିଲାଗି ଖୋରାକ ଯୋଗାଇଛନ୍ତି । ମୋ ପରି ଆଉଜଣେ ଯାଯାବର ଓଡ଼ିଶାରେ ନାହିଁ । ୧୮ ବର୍ଷ ତଳେ ଏ ଦେଶ ଭ୍ରମଣ କଲାବେଳେ ଯେପରି ସ୍ୱପ୍ନାଳୁ ଥିଲି, ଆଜି ୭୦ ବର୍ଷ ବୟସରେ ବି ସେହିପରି ରହିଅଛି । କେବଳ ବୁଲିବା ପାଇଁ ମୁଁ ବୁଲୁଛି, ମହାଦେବ ଦେଖାକୁ ଆଳୁବିକାର ଆନୁଷଙ୍ଗିକ କରିନାହିଁ ।

ଆପଣମାନେ ଦେଶର ବଡ଼ ବଡ଼ ଲୋକ, ଯେ ଯାହା ଦିଗରେ ବିଶାରଦ । ସୁଖାସନରେ ବସି ଦୀନଦୁଃଖୀ ଓଡ଼ିଆଙ୍କୁ ଭୁଲି ନଥିବେ, ବିଶ୍ୱାସ ।

ଏ ପ୍ରଦେଶର ବହୁ ଲୋକ ଏବେ ବି ବର୍ଷକେ ଛଅମାସ ଖାଡର ମୁହଁ ଦେଖି ନାହାନ୍ତି । ମଡର ବା ଗଛ ବକଳ ପିନ୍ଧୁଛନ୍ତି । ଉଚ୍ଚକୋଟୀର ପ୍ରତିଷ୍ଠା ଥିଲେ ବି ଦରିଉପବାସୀ ଓଡ଼ିଆ ଆତ୍ମପ୍ରକାଶ ଲାଗି ଅନୁକୂଳ ପରିବେଶ ଲାଭ କରି ପାରୁନାହିଁ । ତାର ଅର୍ଥନୈତିକ ଜୀବନଡ଼ୋରି ବାହାର ବ୍ୟବସାୟୀଙ୍କ ହାତରେ । ଓଡ଼ିଆ ଏବେ ବି ନିଜ ଗୋଡ଼ରେ ଛିଡ଼ା ହୋଇ ରୁଚି ମୁତାବକ ସ୍ଵପ୍ରଦେଶ ଗଢ଼ି ପାରିନାହିଁ ।

ଆପଣମାନେ ଓଡ଼ିଶା ଲାଗି କିଛି କରିବେ, ଅଧିକ କିଛି ନୋହିଲେ ବି ଗ୍ରାମାଞ୍ଚଳରେ ସ୍କୁଲ୍, କଲେଜ୍ ବା ହସ୍‌ପିଟାଲ୍ ଟିଏ ଗଢ଼ି ପାରିବେ ।

ଓଡ଼ିଆ ସାହିତ୍ୟ ବିଷୟରେ କ'ଣ କହିବି ? କହିଲେ କୁଳକୁ ମୁହଁକୁ ଲାଜ । ଓଡ଼ିଆ ଲୋକେ ନିଜ ସଂସ୍କୃତିକି ରକ୍ଷା ନ କଲେ ବା ଭଲ ନ ପାଇଲେ କାହାକୁ ଦୋଷ ଦେବା ? ଶିକ୍ଷିତ ଲୋକଙ୍କର ଶ୍ରଦ୍ଧା ଅଭାବରୁ ଓଡ଼ିଆ ସାହିତ୍ୟର ଯଥେଷ୍ଟ ଉନ୍ନତି ହୋଇପାରୁନାହିଁ ।

ଦୁଃଖଦୁର୍ଦ୍ଦଶା ମଧ୍ୟରେ କେବଳ ଗାଢ଼ ପ୍ରୀତିର ପ୍ରେରଣାରେ ଓଡ଼ିଆ ଲେଖକ ଲେଖେ । ସ୍ଵଦେଶ ବା ବିଦେଶ ଭ୍ରମଣ ଲାଗି ଯେତେ ମନ ଥିଲେ ବି ହାତରେ ଧନ କାହିଁ ? କିଛି ନ ଦେଖିଲେ ଦୃଷ୍ଟିକୋଣର ପ୍ରସାର ଘଟିବ କିପରି ? ବହୁ ଦୁଃଖରେ ଲେଖକ ଯାହା ଅର୍ଜେ, ସେଥିରୁ କେତେ ତା' ପତରରେ ପଡ଼େ ? ତା ସୃଷ୍ଟିବୃକ୍ଷର ଫଳ ଉପଭୋଗ କରେ ଅନ୍ୟ ଜଣେ । ତାର ମହଲା ପରେ ମହଲା ଉଠେ—କିନ୍ତୁ ଲେଖକର ଭାଗ୍ୟ ପଥରତଳେ ଚାପି ହୋଇଯାଏ ।

ଲୋକସଂଖ୍ୟା ତୁଳନାରେ ଏ ପ୍ରଦେଶର ଲେଖକଙ୍କ ସଂଖ୍ୟା ଊଣା । ସେଥି ମଧ୍ୟରୁ ଗଭୀର ସାଧନାରେ ନିମଗ୍ନ ହେବାର ସୁଯୋଗ ମିଳେ କେତେ ଜଣଙ୍କୁ ?

ସାହିତ୍ୟକୁ ଅଣ୍ଟିଠାର ମାଣି କେତେକ ବେଳେ ବେଳେ କଲମ ଚଳାନ୍ତି । ସୁଖସୌଖୀନ ଜୀବନ ମଧ୍ୟରେ କେତେକ ବା ହଜିଯାନ୍ତି । ଆଜୀବନ ସାଧିକା ଓଡ଼ିଶାରେ କେତେଜଣ ଅଛନ୍ତି ? ଅଧିକାଂଶ ସହିକଥା; "ଟିକି ଚଢ଼େଇ, ଟିକିଏ ପାଣିରେ ବୁଡ଼ି ମରଇ" ।

ଏ ପ୍ରଦେଶରେ ଅଧିକାଂଶ ଅବସ୍ଥାପନ୍ନ ବ୍ୟକ୍ତିଙ୍କର ବ୍ୟକ୍ତିଗତ ପାଠାଗାର ନାହିଁ । ପଢ଼ିବା ଅଭ୍ୟାସ କ୍ଵଚିତ୍ କାହାର ଅଛି । ଓଡ଼ିଆ ବହି କିଣି ପଢ଼ନ୍ତି କେତେ ଜଣ ?

କେବଳ ସାହିତ୍ୟ ଆୟ ଉପରେ ନିର୍ଭର କରି ବଞ୍ଚିପାରି ନାହିଁ ଜଣେ ହେଲେ ଓଡ଼ିଆ ଲେଖକ । ଲେଖି ଲେଖି କଲମ ମୁଣ୍ଡା ହୁଏ, କିନ୍ତୁ ପେଟ ଅଣ୍ଡା

ହୁଏ ନାହିଁ । ଆର୍ଥିକ ଅବସ୍ଥା ନ ସୁଧୁରିଲେ କଲମ ଅନର୍ଗଳ ଭାବେ ଚାଲିବ କିପରି ?

ପୁସ୍ତକର ମୂଲ୍ୟ ବି ସାଧାରଣ ଓଡ଼ିଆଙ୍କ କ୍ରୟଶକ୍ତିର ବାହାରକୁ ଚାଲି ଯାଉଛି । ସାହିତ୍ୟ ଖାଦ୍ୟ ବା ବସ୍ତ୍ର ପରି ଅପରିହାର୍ଯ୍ୟ ନୁହେଁ; ଯାହା କିଣିବାକୁ ବାଧ୍ୟ, ଯେତେ ବ୍ୟସ୍ତ ହେଲେ ବି ସେ କିଣେ । ସାହିତ୍ୟ ଅଲୋଡ଼ା ପରି ବାଦ୍ ପଡ଼ିଯାଏ, ତା ସହିତ ଦୃଢ଼ ପ୍ରୀତିର ବନ୍ଧନ ନ ଥିବାରୁ ।

ଏଥିରେ ଓଡ଼ିଆ ସାହିତ୍ୟର କି ସମୃଦ୍ଧି ଆଶା କରାଯାଏ ?

ନାନା ସୁଖାଳାପ ପରେ ଭୋଜି । ଝିପି ଝିପି ବର୍ଷା ମଧ୍ୟରେ ଆମେ ଫେରିଲୁ, ୫୫ ମାଇଲ୍ ବାଟକୁ ମାତ୍ର ୪୫ ମିନିଟ୍‌ରେ ଅତିକ୍ରମ କରି ।

କାଲି ଅପରେସନ୍ । ଉଦୟ ସେଣ୍ଟଲୁଇସ୍ ଫେରିଯିବ । ତା ସହିତ ଆମେରିକାରେ ଏଇ ଶେଷ ଦେଖା ।

ମିଚିଗାନ୍ ହ୍ରଦ କୂଳେ କୂଳେ ଉତ୍ତର ପଶ୍ଚିମ ବିଶ୍ୱବିଦ୍ୟାଳୟ ବାଟେ ଆମେ ଉଦୟକୁ ଷ୍ଟେସନକୁ ଛାଡ଼ିଗଲୁ । ମୀରା ଏହି ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ ।

ବାଟରେ ଗଲାବେଳେ ଇରାକୁ ପଚାରିଲି—ହାଇଓ୍ୱେ କାହାକୁ କହନ୍ତି ?

ଇରା କହିଲା—ଯୋଉଠି ଗତି ଅବାରିତ, ଗାଡ଼ି ଅଟକେଇବାକୁ ସାମ୍ନାରେ ବାରମ୍ବାର ଲାଲ୍‌ବତି ଜଳେ ନାହିଁ, ଗାଡ଼ି ଛିଡ଼ା କରି ଟୋଲ୍ ଦେବାକୁ ପଡ଼େ ନାହିଁ, ତାକୁ ହାଇଓ୍ୱେ କହନ୍ତି ।

ମୁଁ କହିଲି—ଯୋଉଠି କମା କି ସେମିକୋଲନ୍ ନାହିଁ, ହଠାତ୍ ପୂର୍ଣ୍ଣଚ୍ଛେଦ (ଦୁର୍ଘଟଣାରେ), ମୋ ବିଚାରରେ ତାହା ହିଁ ହାଇଓ୍ୱେ !

ବାଟରେ ଗୋଟିଏ ଗଳି ପଡ଼ିଲା, ସ୍ଥିର, ଶାନ୍ତ । ଇରା କହିଲା—ଏ ଶାନ୍ତ ଶ୍ମଶାନର, ପ୍ରକୃତପକ୍ଷେ ଯାବତୀୟ ଅଶାନ୍ତିର ସ୍ଥାନ ଏ । ଏଠି ଚୋରି, ଡକେଇତି, ହତ୍ୟା, ହରଣଚାଲ୍ ସବୁ ହୁଏ । ତେଣୁ ଏ କୁଖ୍ୟାତ ।

ଏ ଖମ୍ବଟା କ'ଣ ପଚାରିବାରେ ଇରା କହିଲା—ଆମେରିକାର ଘରସବୁ କାଠରେ ଗଢ଼ା । ନିଆଁ ଲାଗିବାର ଭୟ ପଦେ ପଦେ । ଏ ଖମ୍ବ ଜଳଭଣ୍ଡାର: ଏଥିରୁ ପାଇପ୍ ସାହାଯ୍ୟରେ ପାଣି ନେଇ ନିଆଁ ଲିଭାଯାଏ । ରାସ୍ତାସାରା ଏହିପରି ସ୍ତମ୍ଭ—ଏସବୁ ପାଣିକଳ ।

କହୁ କହୁ ଏକ ଅଗ୍ନିନିର୍ବାପକ ଗାଡ଼ି ବିକଟାଳ ରଡ଼ି କରି ମାଡ଼ିଆସିଲା । ରଡ଼ି ଶୁଣି ଯାନସବୁ ଯେ ଯେଉଁଠି ଥିଲେ ଅଟକି ଗଲେ । କିଛି କାଳ ପରେ ଅଗ୍ନି ଶାନ୍ତ ହେଲା, ଗାଡ଼ି ଚଲାଇବା ଅନୁମତି ମିଳିଲା ।

ଚିକାଗୋ ଆମେରିକାର ତୃତୀୟ ବୃହତ୍ତମ ନଗରୀ । ଏଠାର ବୃହତ୍ ବ୍ୟୋମ ଷ୍ଟେସନ୍ ଆମେରିକାରେ ଦ୍ୱିତୀୟ । ଗାଡ଼ି ପାର୍କ୍ ଲାଗି ସ୍ଥାନ ବିରଳ । ତେଣୁ ଉଦୟଙ୍କୁ ଦ୍ରୁତ ବିଦାୟ ଦେବାକୁ ପଡ଼ିଲା । ମୋ ଆଖିରୁ ସବୁ ଲୁହ ଶୁଖିଯାଇଛି, କିନ୍ତୁ ଦେଖୁ ଦେଖୁ ଉଦୟର ଆଖି ଓଦା ହୋଇଗଲା, ମୋତାର ବି ।

## ହମ୍‌ରମ୍

ଜଣେ ଭାରତୀୟ ହିନ୍ଦୁ, କୌଣସି ଭାରତୀୟ ବ୍ୟବସାୟୀଙ୍କ ଦଲାଲ୍—ସେ ଚିକାଗୋରେ ଗୋଟିଏ ବ୍ୟାଙ୍କ୍ ଖୋଲିବାକୁ ଚାହାନ୍ତି, ଆମେରିକା ଅଧିବାସୀ ଭାରତୀୟଙ୍କ ସାହାଯ୍ୟରେ । ତାହେଲେ ଏଇ ବ୍ୟାଙ୍କ୍ ମାଧ୍ୟମରେ ଭାରତୀୟ-ଆମେରିକୀୟ ବ୍ୟବସାୟୀର ନେଣଦେଣ କାରବାର ଚାଲିପାରିବ । ସେ ଇତି ଉଦୟଙ୍କୁ ତାଙ୍କ ସାହାଯ୍ୟକାରୀ ତାଲିକାର ଅନ୍ତର୍ଭୁକ୍ତ କରିଛନ୍ତି । ସେ ସେଣ୍ଟ୍ ଲୁଇସ୍ ଯାଇଥିଲେ । ଏବେ ସେମାନଙ୍କ ଆଗମନ ସମ୍ବାଦ ପାଇ ଆସି ପହଞ୍ଚିଛନ୍ତି । ସେ ଆମ ଲାଗି ବମ୍ବେ ହୋଟେଲ୍‌ରେ ଲଞ୍ଚ୍ ବ୍ୟବସ୍ଥା କରିଛନ୍ତି ।

ବୟସ ୪୦ ବର୍ଷ ମଧ୍ୟରେ । ଗ୍ରେଟଗ୍ରେଟ ଦାଢ଼ି । ଦାର୍ଶନିକ ପରି ଦିଶନ୍ତି, କିନ୍ତୁ ଚାଲାକ ଚତୁର ବ୍ୟବସାୟୀ କଥା ଶୁଣିଲା ପରେ ଧାରଣା ଓଲଟି ଯାଏ । ଆମେରିକାର ଭାରତୀୟ ସମ୍ମିଳନୀରେ ସେ ଯୋଗ ଦିଅନ୍ତି, ଏଇ ଉଦ୍ଦେଶ୍ୟରେ । କଥା ନରମ, କାହାର କିଛି ଅସୁବିଧା ଦେଖିଲେ ସାହାଯ୍ୟ କରିବାକୁ ତତ୍ପର ପଦେ ପଦେ । ଭିତର ଉଦ୍ଦେଶ୍ୟ—ଲୋକଙ୍କୁ କପର ହାତ କରିବା, ଉଦ୍ଦେଶ୍ୟ ଚରିତାର୍ଥ କରିବା ।

ଆମେରିକାବାସୀ ସବୁ ଭାରତୀୟଙ୍କ ଠିକଣା ତାଙ୍କ ପାଖରେ, ବହୁ ଚିଠିପତ୍ର କାରବାର କରନ୍ତି, ଯୋଗାଯୋଗ ଲାଗି ବହୁ ଫୋନ୍ କରନ୍ତି, ଯାତାୟାତ ଓ ଉପହାର ଦେବାରେ ବି ବହୁ ବ୍ୟସ୍ତ ହୁଏ । ମେଳାପୀ ପ୍ରକୃତି, ଚତୁର ଗତି, ତାଙ୍କ ଲକ୍ଷ୍ୟ ଅଚିରେ ସିଦ୍ଧ ହେବ, ସନ୍ଦେହ ନାହିଁ ।

ସେ କହିଲେ—ଚିକାଗୋରେ ୫୦ ହଜାର୍ ଭାରତୀୟଙ୍କ ଭିତରୁ ଅଧିକାଂଶ ଡାକ୍ତର୍, ଇଞ୍ଜିନିୟର୍, ଅଧ୍ୟାପକ । ବମ୍ବେ ହୋଟେଲ୍‌ର ପୋଷକ ମୁଖ୍ୟତଃ ସେହିମାନେ ।

ବହୁ ଭାରତୀୟ ଦେବଦେବୀ ମୂର୍ତ୍ତି, ରମ୍ୟ ଭାରତୀୟ ଛବି ଓ ବିଭିନ୍ନ ବର୍ଣ୍ଣର ପୁଷ୍ପଗୁଚ୍ଛ ସୁସଜ୍ଜିତ । ଭୋଜନବେଳେ କୋଳରେ ପକାଇବା ଲାଲ୍ କନାଖଣ୍ଡି ଟେବୁଲ୍ ଉପରେ ଏପରି ସଜା ହୋଇଛି ଯେ ଫୁଟିଲା ଲାଲ୍ ପଦ୍ମଟିଏ ପରି ଦିଶୁଛି ।

ବମ୍ବେ ହୋଟେଲ୍ ତରକାରି ମସଲା ବର୍ଜିତ, ତେଣୁ ମୋ ପକ୍ଷେ ତୃପ୍ତିକର ହେଲା ।

**ପ୍ରାକୃତିକ ଇତିହାସ ଯାଦୁଘର**

ମ୍ୟୁଜିଅମ୍ ପାହାଚରୁ ଖସି ଚକ୍ ଚକ୍ ମିଚଗାନ୍ ଛେଉର ନାଚ ଦେଖୁ ଦେଖୁ ମାର୍ବଲ୍ ପ୍ରାଙ୍ଗଣରେ ପଶିଲି, ଫୁଆରା, ପାଣି ଟୋପି ଉପରେ ଅର୍ଦ୍ଧବଳୟିତ ଇନ୍ଦ୍ରଧନୁ ।

ପୃଥିବୀର ଯୋଉ ଯୋଉ ଦୃଶ୍ୟର ଦେଖିବା ସୁଯୋଗ ଜୀବନରେ ମିଳିନି ନାହିଁ, ସେସବୁ ଏଠି ପ୍ରଦର୍ଶିତ—ଆଲେସ୍କାର ତୁଷାରୋଜ୍ଜ୍ୱଳ ପର୍ବତମାଳା, ଶୀତ କାଳର ଶ୍ୱେତ ସ୍ୱଚ୍ଛ ଶ୍ରୀ, ପତ୍ରହୀନ ବୃକ୍ଷ ଶାଖାରୁ ଖଣ୍ଡ ଖଣ୍ଡ ବରଫ ଖସେ, ବରଫ ଲଦନରେ ଶାଖା ଭାଙ୍ଗେ ନ ଭାଙ୍ଗେ । ଏଠିସେଠି ଟିକେ ଟିକେ ସବୁଜ, ତାକୁ ଖୋଜି ଖୋଜି ବୁଲୁଥାନ୍ତି ବଲ୍ଗା ହରିଣ, ବରଫକୁ ଖୁରାରେ ଆଡ଼େଇ ଆଡ଼େଇ; ଉପର ବରଫକୁ ଖୁରାରେ ଖୋଳି ତା ଭିତରୁ ଜୀବନଧାରଣର ଉପକରଣ ବାହାର କରୁଛନ୍ତି ଓ ସେହି ଗର୍ତ୍ତରେ ବିଶ୍ରାମ ନେଉଛନ୍ତି । ସିଲ୍ ଶିକାରୀ ଶ୍ୱେତ ଭଲ୍ଲୁକ ଓ ଉପମିଶାଦକ ଏକ୍ସିମୋଙ୍କ ଜୀବନସଂଗ୍ରାମ ଏଠି ତୀବ୍ର ।

ଆମେରିକା ଆଦ୍ୟବାସୀ ରେଡ଼ଇଣ୍ଡିଆନ୍ଙ୍କୁ ପ୍ରାୟ ନିଃଶେଷ କରିଛି, କିନ୍ତୁ ତାର ମୂଲ୍ୟବାନ୍ ସଂସ୍କୃତିକୁ ଉପଯୁକ୍ତ ମର୍ଯ୍ୟାଦା ଦେଇ ରକ୍ଷା କରିଛି । ସେମାନଙ୍କ କଳା, ଭାସ୍କର୍ଯ୍ୟ, ସଭାସ୍ଥାନ ପ୍ରଣାଳୀ, ଗୃହନିର୍ମାଣରୀତି ଓ ରଣକୌଶଳ ଉନ୍ନତ ଧରଣର ଥିଲା । କେବଳ ଉନ୍ନତତର ଅସ୍ତ୍ରବଳରେ ବର୍ଲ୍ଡ଼ିୟାନ୍ ଉପନିବେଶକାରୀ ତାର ଧ୍ୱଂସ ସାଧନ କଲା । ଯେ କେତେଜଣ ରଣ ଉଚ୍ଛିଷ୍ଟ ଏବେ ଜୀବିତ, ସେମାନେ ଆମେରିକୀୟଙ୍କର କରୁଣାର ପାତ୍ର, ବ୍ୟବସାୟର ପଣ୍ୟ ହୋଇ ରହିଛନ୍ତି ।

ସେମାନଙ୍କ ରମ୍ୟ କାରୁକଳାର ଉନ୍ନତ ପ୍ରତୀକ ଟୋଟେମ୍ ବା ସଙ୍କେତ-ସ୍ତମ୍ଭ ଦେଖିଲି; କେଉଁ ସଙ୍କେତସ୍ତମ୍ଭଟି କେଉଁ ଗୋଷ୍ଠୀର ତାହା ରେଡ଼ଇଣ୍ଡିଆନ୍ଙ୍କ ଜାଣିପାରିବେ ।

ଜୀବନରେ ଅଳ୍ପ କେତୋଟି ପ୍ରଜାପତି ଦେଖିଥିଲି —ମଧୁବାବୁଙ୍କ ବର୍ଣ୍ଣ-ବୋଧର କଳା ପ୍ରଜାପତି, ଡେଣାର ଧାରେ ଧାରେ ଧଳା ଗାର (ପ୍ରଜାପତିଟି

ହରଘରେ, ବସିଛୁ ଫୁଲର ଉପରେ), ଆଲୋ ଅଲୁଅ ପରି, କଞ୍ଚନ ପାଖୁଡ଼ା ପରି, କେତେ ଏକ ରଙ୍ଗର, କେତେ ଚିପିଚିପିକିଆ ପ୍ରଜାପତି—ପ୍ରଜାପତିର ସଂସାର ଏକ ଫୁଲର ସଂସାର, ଫୁଲକୁ ଉଡ଼େଇ ଦେଲେ ଯେମିତି ଦିଶନ୍ତା, ସେହିପରି । ଏଠି ହଜାରେ ପ୍ରକାର ପ୍ରଜାପତି ସ୍ୱାଭାବିକ ବର୍ଣ୍ଣିଳ ଆଭାରେ ପ୍ରଦର୍ଶିତ ।

ଜୀବଜନ୍ତୁ, ବୃକ୍ଷଲତା, ପୁଷ୍ପଫଳ, ପ୍ରାଣୀକଙ୍କାଳ, ରତ୍ନଭଣ୍ଡାର—କି ବର୍ଣ୍ଣନା ଦେବି ? ଏତେ ବଡ଼ ମ୍ୟୁଜିଅମ୍—ଘଣ୍ଟାଏ ଦିଘଣ୍ଟାରେ କଣ ବା ବୁଲି ଦେଖିବ ?

କି କଠୋର ସାଧନା, ଅପୂର୍ବ ତ୍ୟାଗ, କି ଗବେଷଣା ଫଳରେ ଏପରି ଏକ ମ୍ୟୁଜିଅମ୍ ନିର୍ମାଣ ସମ୍ଭବ ହୋଇଛି, ବସି ଭାବୁଥିଲି । ଭୂତତ୍ତ୍ୱ, ନୃତତ୍ତ୍ୱ, ଜୀବତତ୍ତ୍ୱ, ଶରୀର ଗଠନ ତତ୍ତ୍ୱ, କଳା ତତ୍ତ୍ୱ, ଭାସ୍କର୍ଯ୍ୟ ଓ ନନ୍ଦନ ତତ୍ତ୍ୱର କି ଅପୂର୍ବ ପ୍ରଦର୍ଶନୀ । ଗବେଷକମାନଙ୍କୁ ହାତଯୋଡ଼ି ନମସ୍କାର କଲି । ଏସବୁ କେବଳ ଅର୍ଥ-ବଳରେ ନୁହେଁ, ଜାତିପ୍ରେମ ଓ ଆନ୍ତରିକ ସୌନ୍ଦର୍ଯ୍ୟ ପ୍ରୀତି ଫଳରେ ସମ୍ଭବ ହୋଇଛି ।

ଯାବତୀୟ ପରିବେଶ ପ୍ରାକୃତିକ—ଉଷା ସନ୍ଧ୍ୟାର, ବର୍ଷା ଶରତର, ବସନ୍ତ ପୁଷ୍ପଶ୍ରୀର; ମ୍ୟୁଜିଅମ୍‌ରେ କଳାତ୍ମକ ଶ୍ରୀ ଫୁଟାଇବାରେ ଚମତ୍କାର କୃତିତ୍ୱ ପ୍ରକାଶିତ ।

ବୈଜ୍ଞାନିକ ଢଙ୍ଗରେ ପ୍ରାକୃତିକ ଶୋଭା ମଧ୍ୟରେ ଜୀବଜନ୍ତୁଙ୍କ ଲୀଳାଖେଳା, ଜୀବନସଂଗ୍ରାମ, ପରସ୍ପର ସହିତ ସୌଖ୍ୟ ଓ ଶତ୍ରୁତା ଆଚରଣ ଦେଖାଇ ଦିଆ ହୋଇଛି ।

ଗ୍ୟାଲେରୀ ମାନେ ଅପ୍ରତ୍ୟକ୍ଷ ବିଦ୍ୟୁତ୍ ଆଲୋକରେ ଦ୍ରଷ୍ଟବ୍ୟ ସବୁ ଉଦ୍-ଭାସିତ ହୋଇ ଉଠୁଛନ୍ତି; ରେକର୍ଡ ବାଜି ଉଠୁଛି, କିଏ, କଣ, କାହିଁକି, କିପରି, ବୁଝାଇ ଦିଆ ହେଉଛି । ସେ ସ୍ଥାନରୁ ଅପସରି ଗଲେ ମାତ୍ରେ ଆଲୋକ ନିର୍ବାପିତ, ରେକର୍ଡ ବନ୍ଦ ।

ମାଆ ମେଣ୍ଢାକୁ ଈଗଲ୍ ଝାମ୍ପି ନେଉଛି । ଛୁଆମାନେ ବିକଳ ଚିତ୍କାର କରୁଛନ୍ତି । ମହାବଳ ପ୍ରାକୃତିକ ଠାଣିରେ ପାହାଡ଼ରୁ ଗଡ଼ୁଛି, ସିଂହ ଜେବ୍ରା ଉପରକୁ ଝାମ୍ପି ପଡ଼ୁଛି, ହରିଣ ହରିଣୀ ଲେହାଲେହି ହେଉଛନ୍ତି, ଗରିଲା ଗୋଟେ ଲୋମଶ ହାତରେ ଗଛ ଡାଳକୁ ଧରି ଓହଳିଛି । ସାପ ଗଛ ଡାଳରେ ଲାଙ୍ଗୁଳି ବାନ୍ଧି ତଳକୁ ମୁହଁ ଓହଳାଇ 'ଲାମା'କୁ ଧରିଛି; ବାଘ୍, ହସ୍ତୀ, ବନ୍ୟ ଗୁଗଲ; ଈଗଲପେଷ୍ଟ ମିଶ୍ରିତ ଏକ ପ୍ରାଣୀ, ପେରୁର ଲାମା, ଆମାଜନ୍ ଜଙ୍ଗଲର ବନ୍ୟ ମାର୍ଜାର ଓ ରୌଦ୍ରରୁ ବୃକ୍ଷର ଶତ୍ରୁ ସଂଗ୍ରହ ଦୃଶ୍ୟ ଦେଖି ଆମେ ଫେରିଲୁ । ବନ୍ଧୁ

ଅଦେଖା ରହିଗଲା ବୋଲି ମନରେ କିଛି ଗ୍ଳାନି ନାହିଁ । ପୃଥିବୀର କିଏ ସବୁ ସ୍ଥାନରେ ପାଦ ପକାଇ ପାରେ, ସବୁ ଶ୍ରୀ ଦେଖିପାରେ, ସ୍ୱଳ୍ପ ଜୀବନକାଳର ନାନା ଜଞ୍ଜାଳ ଓ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ?

ଆଜି ଆମର ବାହୁଡ଼ା ଯାତ୍ରା, ମୀରା ଗାଡ଼ିଟି ନେଇ ଅଫିସ୍‌କୁ ଯାଇଛି । ଆମେ ଟାକ୍‌ସିଟିଏ କରି ହ୍ୟୋମ ଷ୍ଟେସନ୍‌କୁ ଗଲୁ ।

ଡ୍ରାଇଭର୍ ରବର୍ଟ ଟାକ୍‌ସି କମ୍ପାନୀରେ କାମ କରେ । ବେତାର ଯନ୍ତ୍ରରେ କମ୍ପାନୀ ସହିତ ବାରମ୍ବାର ଯୋଗସୂତ୍ର ରକ୍ଷା କରେ । କେତେବେଳେ ସେ ଟାକ୍‌ସି ନେଇ ବାହାରିଲା, ଫେରିଲା, କିଛି ଅସୁବିଧା ହେଲା କି ନାହିଁ, ଓ ଏହାପରେ କେଉଁଠାକୁ ଯିବାକୁ ହେବ, ନିର୍ଦ୍ଦେଶ ପାଏ ।

ରବର୍ଟ ବିବାହିତ, କିନ୍ତୁ ସ୍ତ୍ରୀ ଗୁଡ଼ିଚ ପଳାଇଛି, ଏଭଳି ଦୃଶ୍ୟ ଏଠି ନିତ୍ୟନୈମିତ୍ତିକ । ଆଜି ଘର—ଘରଣୀ; କାଲି ପଞ୍ଚୁ ମୁଁ ଖାଲି, ଚଢ଼ିଆ ଚାଲ୍ । ଆମେରିକାର ଘରସଂସାର ସଦା ଟଳମଳ । କେତେବେଳେ ଯେ କଣ ଘଟିଯିବ, କେହି କେହି ନ ପାରେ ।

ରବର୍ଟ ଅଠର ଡଲାର୍ ଭଡ଼ା ନେଲା, ଏତକ କମ୍ପାନୀର ପ୍ରାପ୍ୟ; ଦୁଇ ଡଲାର୍ ଟିପ୍‌ସ୍ ମାତ୍ର ତାର ନିଜର ।

ସ୍ନେହମୟୀ, ବିପଦାଶଙ୍କୀ ଇରା ଆମକୁ ନିଉୟର୍କ ପ୍ଲେନ୍‌ରେ ବସାଇଲା । ବିଦାୟବେଳେ ଦି'ଜାଆ ପରସ୍ପରକୁ ଆଲିଙ୍ଗନ କଲେ । ଲତା ଆଖିରେ ଲୁହ, ଇରା ଆଖିରେ ହସ । ଦୂରବର୍ତ୍ତୀ ଦୁଇ ପରିବାର ଏକାନ୍ନବର୍ତ୍ତୀ ହୋଇ ଦୀର୍ଘ କାଳ କଟାଇବା ସୁଯୋଗ ଜୀବନରେ କେତେଥର ମିଳେ ? ଉଦଇରା ଭାରତକୁ ଆସିଲେ ଗାଆଁ ଆଉ କଟକରେ ୧୫ ଦିନ ମାତ୍ର ରହିବା ସମ୍ଭବ ହୁଏ ।

# କୋଡ଼ିଏ

## ନିଉୟର୍କ୍

ବିକ୍ଷୁବ୍ଧ ଆକାଶ, ପ୍ରଚଣ୍ଡ ପବନ; ଝଡ଼ ସହିତ ଯୁଝି ଯୁଝି ଜେଟ୍ ଚାଲିଥାଏ; କଣ ହେଲା ? ହଠାତ୍ ତଳକୁ ଖସିଗଲା ! ଲତା ଭୟରେ ମୋତେ କୁଣ୍ଢାଇ ପକାଇଲା । ମୁଁ ହସି ହସି କହିଲି—କଣ କୁଣ୍ଢାକୁଣ୍ଢି ହୋଇ ମରିବା ? ଅଲଗା ଅଲଗା ମଲେ କ୍ଷତି କଣ ?

ଭାଗ୍ୟକୁ ପ୍ଲେନ୍‌ଟା ଠିକ୍ କିନେ ରହିଗଲା, ଆଉ ତଳକୁ ଖସିଲା ନାହିଁ । ଲତା 'ବୋଉଲୋ' ବୋଲି ଚିତ୍କାରଟାଏ କରିଥିଲା; କଳା ପଡ଼ିଯାଇଥିଲା । ମୋ ଅବସ୍ଥା ବି ସେଇଆ ହୋଇଥିବ । କିନ୍ତୁ କଥା ଅଛି—

ଅତର୍କିରେ ହଡ଼ା ଛେରଇ ମୂତଇ
ମୁହଁ ଆଣ୍ଠୁ ନ ଗ୍ରୁଡ଼ଇ ।

ଝରକା ବାଟେ ତଳକୁ ଚାହିଁଦେଲାକ୍ଷଣି ସତେ କି ମୋ ହଂସା ଉଡ଼ିଗଲା ! ଆରେ ବାପ୍‌ରେ ବାପ୍ । 'କେତେ କେତେ ବିପତ୍ତି ନ ପଡ଼ିଲା, କୃଷ୍ଣ ଥିଲାକୁ...'

ତଳେ ଆକାଶ, ଉପରେ ଆକାଶ, ମଝିରେ କୃତ୍ରିମ ଏଇ ଜଟାୟୁ ପେଟରେ ଆମେ, ୧୩ ହଜାର ଫୁଟ୍ ଉପରେ ଉଡ଼ୁଚୁ । ଗ୍ଲାନିଆଁରେ ଗ୍ଲାନି ଦାଉଁ ଦାଉଁ ପଡ଼ୁଥାଏ —ଏ କଣ ହେଲା ? କାହିଁକି ହେଲା ? ଆକ୍‌ସିଡେଣ୍ଟ୍ ଆଉ କେତେ ବାକି ଥିଲା ? ହରି ରଖିଲାକୁ ଆମେ ରହିଲୁ ।

ଚିକାଗୋରୁ ନିଉୟର୍କ୍ ମୋଟ ଏକ ଘଣ୍ଟା ତେତିଶ ମିନିଟ୍ ଲାଗିଲା, ଟି. ଡବଲ୍ୟୁ. ଏ. ପ୍ଲେନ୍ ଯାତ୍ରା ଆମର ଏହିଠାରୁ ଶେଷ ହେଲା ।

ପୃଥିବୀର ବୃହତ୍ତମ ନଗର ନିଉୟର୍କ । ଏ ନଗରର ଆକାଶରେ ଉଡ଼ିଲା ବେଳେ ରୋମାଞ୍ଚ ହେବା କଥା, କିନ୍ତୁ ଆନନ୍ଦ ପରିବର୍ତ୍ତେ ଶଙ୍କା ଆମ ମନକୁ ଏବେ ବି ଗ୍ରାସ କରିଥିଲା । ଅବଶ୍ୟ ଏ ଶଙ୍କା ଲଘୁତର—ଆମେ ଯଥା ସ୍ଥାନରେ ପହଞ୍ଚି ପାରିବୁ କି ନାହିଁ, ଆମ ଜିନିଷ ଠିକ୍ ଆସି ପହଞ୍ଚିବ କି ନାହିଁ, ଯାହାଙ୍କ ଘରେ ରହିବୁ, ସେ ନେବାକୁ ଆସିବେ କି ନାହିଁ ?

ଏଠି ଗାଡ଼ି ପାର୍କ୍ କରିବାକୁ ଜାଗା ମିଳେ ନାହିଁ । ଏଣୁ ଡଚେର୍ଇଙ୍ଗ ଆଗରୁ କହି ରଖିଥିଲେ—ପହଞ୍ଚିବା ମାତ୍ରେ ଫୋନ୍ କରିବେ । ଭଲ । କିନ୍ତୁ ଶଙ୍କା—କେବେ ଦେଖିନାହାନ୍ତି । ଚିହ୍ନିବେ କେମିତି ?

ଫୋନ୍‌ରେ ନିଜର ଏଇ ବର୍ଣ୍ଣନା ଦେଇଥିଲି—ଛ ଫୁଟ୍‌ରୁ ବେଶୀ ଉଚ୍ଚ, ମୋ ସ୍ତ୍ରୀ ସେପରି ବାଙ୍ଗରା ହୋଇ ନ ଥିଲେ ବି ମୋ ପାଖରେ ଛୁଡ଼ା ହେଲା ବେଳେ ଦିଶେ ।

ମୁଁ ବେଶ ମୋଟା, ରଙ୍ଗ ସାବନା, ମୁଣ୍ଡରେ ପ୍ରାୟ ୩ ମାସ ହେଲା ଅକ-ତୁରା ଝୋଟ ପରି ଧଳା ପ ଚିଲ ବାଳ ।

ପ୍ରକୃତ ପକ୍ଷେ ଡାକ୍ତର ଜଗତ୍ ସୁବୁଦ୍ଧିଙ୍କୁ କିଛି ଅସୁବିଧା ହେଲ ନାହିଁ । ସେ ମୋ ସାନ ଭାଇକୁ ଚିହ୍ନିଥିଲେ । ବାରିନେଲେ ।

ନିତାନ୍ତ ଅସୁବିଧା ନ ହେଲେ ଏଠି କେହି କୁଲି ଖୋଜେ ନାହିଁ । ଜଗତ୍‌ବାବୁ ଆମକୁ ସୁହିଁ ଜାଣିଗଲେ—ଉଠାଇବାକୁ ଅସମର୍ଥ; ସେ ଚଳପର ଜିନିଷ ଝାମ୍ପି ନେଇ ଗାଡ଼ି ପଛଆଡ଼େ ରଖିଦେଲେ । ପଛ ଗାଡ଼ି ଅଷ୍ଥିର କରୁଛନ୍ତି, ପୁଲିସ୍ ଚମକ ଆସୁଛି ।

ଜଗତ୍‌ବାବୁଙ୍କ ନିଜ ଘର ଲଙ୍ଗ୍ ଆଇଲଣ୍ଡ୍, ନିଉୟର୍କରୁ ୫୦ ମାଇଲ୍ ଦୂର । ଅଧଘଣ୍ଟାଏ ଲାଗେ । ଦୁଇ ଏକରରୁ ଅଧିକ ଜାଗାରେ ସେ ବିରାଟ ଘର କରି ଆଡ଼ାଚୌଡ଼ାରେ ରହିଛନ୍ତି । ନିଉୟର୍କରେ ଗେଷ୍ଟି ହୋଇ ରହନ୍ତେ କାହିଁକି ?

ଘର ପଛରେ ବଡ଼ ବଡ଼ ଗଛର ଜଙ୍ଗଲଟିଏ । ବଗିଚା କରିବାକୁ କାହାକୁ ବେଳ କାହିଁ ? ତଥାପି ଚେନାକରେ କେତୋଟି ଫୁଲଗଛ, ଆଉ ଚେନାକରେ ଲଙ୍କା, ଟମାଟୋ, ବାଇଗଣ ଗଛ ।

ଜଗତ୍‌ବାବୁ ସର୍ଜନ; ହାତଯଶ ଅଛି । ଭଲ ରୋଜଗାର; ରୋଜଗାରୀ ଡାକ୍ତରଙ୍କୁ ଅବସର ଥାଏ କାହିଁ ? ସଦା କାର୍ଯ୍ୟବ୍ୟସ୍ତ ସେ ।

ସ୍ତ୍ରୀ ମେନକା ଦାନବୀର ମଣିସାହୁଙ୍କ କନ୍ୟା, ତାଙ୍କ ନାମରେ ବକ୍ସି-ବଜାରର ଛକଟି 'ମଣିସାହୁ ଛକ' ନାମରେ ନାମିତ ।

ଲଙ୍ଗ୍ ଆଇଲଣ୍ଡ୍ ମଫସଲ ପରି । ଯାନବାହାନ ଗହଳ ଏଠି ନାହିଁ । ଋଷି ଆଶ୍ରମ କୁହାଯାନ୍ତା, ତପୋଭଙ୍ଗକାରିଣୀ ମେନକା ନ ଥିଲେ ।

## ମୂଳକୁ ଗଲ, ମୂଳରୁ ଗଲ

ଓଡ଼ିଶାରେ ସୁବୁଦ୍ଧିଙ୍କ ଘର ଦଶପଲ୍ଲା ଗଡ଼ଜାତରେ । ତାଙ୍କର ଗୋଟିଏ ଭଉଣୀକି ବାତ ମାଇଲା । ଡାକ୍ତରୀ ଚିକିତ୍ସାରେ ଭଲ ହେଲା ନାହିଁ । କେତେ ହୋମିଓପାଥି ଚିକିତ୍ସା କଲେ ସେଥିରେ ବି କିଛି ହେଲା ନାହିଁ । ଦିନେ ପୁରୁଣା ବୈଦ୍ୟ ଆସି ବାପାଙ୍କୁ କହିଲେ—ଏ ସବୁରେ କିଛି ହେବ ନାହିଁ । ମୂଳକୁ ଆସ । କବିରାଜୀ ହେଲ ମୂଳ ଚିକିତ୍ସା । ଟିକିଏ ବିଳମ୍ବ ହୁଏ; କିନ୍ତୁ ରୋଗ ସମ୍ପୂର୍ଣ୍ଣ ଭଲ ହୋଇଯାଏ । ମୁଁ ଏକା ରାତିକେ ଏ ରୋଗ ଭଲ କରିଦେବି । ଯଦି ନ ପାରିବି ମୋ ବଟୁଆ ଫିଙ୍ଗିଦେବି, ବୈଦ୍ୟଗିରି ଛାଡ଼ିଦେବି ।

ବାପା ତାଙ୍କ କଥାରେ ଭୁଲିଗଲେ । ଶୀତଦିନ । ବୈଦ୍ୟ ଅତଡ଼ା ଘରେ ଅତଡ଼ା ନିଆଁ ଜାଳି ଭଉଣୀକି ସେକ ଦେବାକୁ ଲାଗିଲା ।

ବାପାମାଆ ଭଉଣୀକି ଜଗି ରାତି ଉଜାଗର ହୋଇ ସେ ଘରେ ବସିଥାନ୍ତି । ବନ୍ଦ ଘର । ଧୂଆଁରେ ଶ୍ୱାସରୁଦ୍ଧ ହୋଇ ଆଗେ ବୈଦ୍ୟ ମଲା; ତାପରେ ବାପା-ମାଆ ଏକାବେଳକେ ଟଳି ପଡ଼ିଲେ । ପାଞ୍ଚଦିନ କାଳ ଭଉଣୀ ଅଚେତା ରହିଲା ପରେ ଚେତା ଫେରିଲା । ଜଣେ ବନ୍ଧୁ ଭେଉର୍ରୁ ଦ୍ୱାର ଖୋଲିବା ପରେ ଏ ଭୟଙ୍କର ଦୃଶ୍ୟ ଦେଖି ତାଟକା ହୋଇଗଲା ।

ଡାକ୍ତର ସୁବୁଦ୍ଧି ପିତୃସ୍ମୃତି ରକ୍ଷା ଲାଗି ବହୁ ଅର୍ଥଦାନ କରି ଦଶପଲ୍ଲାରେ "ବୃନ୍ଦାବନ ସୁବୁଦ୍ଧି" କଲେଜ୍ ଗଢ଼ିଛନ୍ତି, ନିଜର ମାନସିକ ଯନ୍ତ୍ରଣାକୁ ଲଘୁତର କରିଛନ୍ତି । ଏଇ ପୁରୁଣା ବୈଦ୍ୟଙ୍କ ଦୌରାତ୍ମ୍ୟ ଯୋଗୁଁ କେତେ ମହାପ୍ରାଣର ଅକାଳ ବିୟୋଗ ଯେ ଘଟେ, ତାର ଇୟତ୍ତା ନାହିଁ ।

ଏଠା ଐଶ୍ୱର୍ଯ୍ୟ ପ୍ରତି ଜଗତଙ୍କର ଭ୍ରୂକ୍ଷେପ ନାହିଁ । ଏସବୁ ଛାଡ଼ି ସେ ଗାଆଁରେ ଗୋଟିଏ କ୍ଲିନିକ ଗଢ଼ି ଦୁଃଖୀ ଗରିବଙ୍କ ସେବା କଳ୍ପନା କରିଛନ୍ତି । ସେଥିରେ ସେ ମାନସିକ ଶାନ୍ତି ଲାଭ କରିବେ । ନିଜ ଭାଇ ବନ୍ଧୁ କୁଟୁମ୍ବ, ଦେଶ-ବାସୀଙ୍କ ଉପକାରରେ ନ ଆସିଲେ ଏ ଶିକ୍ଷାର ମୂଲ୍ୟ କ'ଣ ? କିନ୍ତୁ ବନ୍ଧନ ଛିଣ୍ଡାଇ ଯିବା କଣ ସହଜ କଥା ?

## ଦେଖିଲେ ଯଦି ପେଟ ପୂରେ……

ମେନକା ବ୍ରେକ୍‌ଫାଷ୍ଟ ଖୋଇଲେ, ପୁଅକୁ ସ୍କୁଲ୍‌ରେ ଛାଡ଼ିଲେ, ତାପରେ କହିଲେ—ଚାଲ, ଟିକିଏ ବୁଲି ଆସିବା ।

ଏବେ ଏଠି ଗ୍ରୀଷ୍ମ କାଳ । କିନ୍ତୁ ଆମେ ବର୍ଷାକୁ ସଙ୍ଗରେ ଘେନି ଆସିଛୁ, ତା ସହିତ ଅତି ଶୀତଳ ପବନ । ତୁଷାର ଝଡ଼ ପରି ଆମକୁ ଲାଗୁଥାଏ । ମନ୍ଥର ଶୀତ ଭିତରେ ଆମେ ବାହାରିଲୁ ।

ମେନକା ପହିଲେ ଆମକୁ ଗୋଟିଏ ପୋଷାକ ଦୋକାନକୁ ଘେନିଗଲେ । ଏଠା ଦରଦାମ୍ ଦେଖି ଲତା ବାଡ଼େଇ କରିବୃତ ହେଲା । ଓଃ, କାହିଁକି ମିଛରେ ଚବାଗୋରେ କିଣିଲି; ଏଠି କି ଶସ୍ତା !

ମୁଁ ପାଟିକଲି । କିନ୍ତୁ ଲତା ଶୁଣି ନଥିଲା ପରି ନାତିଙ୍କ ଲାଗି ପୁଣି ପାରେ ପୋଷାକ କିଣିଲା, ମୋ ଆଡ଼କୁ ଗୋଟେ ଜବାବ୍ ଫିଙ୍ଗିଲା—ତୁମକୁ କାହିଁକି ଚିନ୍ତା ? କିଣୁଛି ମୁଁ, ବୋହିବି ମୁଁ । ଏଠି ତ ବିନ୍ଦୁ ଦ୍ରବ୍ୟରେ ଚଳିବା ଅଭ୍ୟାସ । ଦେଖିଲି, ମେନକା ବି ଅଳ୍ପ କିଣିଲେ ନାହିଁ ।

ତାପରେ ଆଉ ଗୋଟିଏ ବିଭାଗକୁ ଗଲୁ । ଏଠି ପ୍ଲେଟ୍, କପ୍, ଟ୍ରେ ଏପରି ଭାବେ ସଜ୍ଜିତ ଯେ ଟିକିଏ ହାତ ଝାପ ବାଜିଲେ ଅଜାଡ଼ି ହୋଇ ପଡ଼ିବ । ସ୍ତ୍ରୀ ଭାବି ସତର୍କ ଭାବେ ବୁଲୁ ବୁଲୁ ଝଣ୍‌କିନେ ଶବ୍ଦଶୁଣି ଚମକି ପଡ଼ିଲି—କ'ଣ ହେଲା ?

କେତୋଟି ପ୍ଲେଟ୍ ତଳେ ପଡ଼ି ଖଣ୍ଡ ଖଣ୍ଡ ହୋଇ ଯାଇଥିଲା । ଦୋକାନର ସେ ସୁନ୍ଦରୀ ଝିଅଟି ବିଦ୍ୟୁତ୍ ବେଗେ ଅପରାଧୀ ନିକଟକୁ ଚମକି ଗଲା—ହିସାବ କରି ଚଉଦ ଡଲାର୍‌ର ବିଲ୍ ଟିଏ ତା ହାତକୁ ବଢ଼ାଇ ଦେଲା । ଭଦ୍ରଲୋକ ମୁହଁ ଆମ୍ବିଳା କରି ଏତକ ଅକଳ ସଲାମ୍ ଦେଲେ । ପାଟି ଫିଟେଇବାର ଜୁ ନାହିଁ କି କୈଫିୟତ୍ ଲୋଡ଼ା ନାହିଁ । କ୍ଷମାର ପ୍ରଶ୍ନ ଉଠେ ନାହିଁ । ଆର୍ଥିକ କ୍ଷତି ଘଟାଇଛ; ତୁମେ ପୂରଣ କରିବ ନାହିଁ ତ କରିବ କିଏ ?

ଦୁଇ ସୁନ୍ଦରୀ ହୀରା, ନୀଳା, ମୋତି, ମାଣିକ ଦୋକାନରେ ହାର ଓ ମୁଦି ମୂଲଉଥାନ୍ତି, ତାପରେ ନେଲ୍ ପଲିସ୍, ଲିପ୍‌ଷ୍ଟିକ୍, ସେଣ୍ଟ୍, ଆଉ କେତେ କ'ଣ; ଦୌଡ଼ ମାରୁଥାନ୍ତି, ଫୁଲରୁ ଫୁଲେ ଭ୍ରମର ଯେପରି । ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ମୋ ପାଦ ଥକିଗଲା । ଦେଖିଲେ ପରା କୁଆଡ଼େ ପେଟ ପୂରେ ! ଏତେ ଜିନିଷ ଦେଖି ଦେଖି ମୋ ପେଟ ତ ପୂରିଲା ନାହିଁ, ଓଲଟି ଲୋକଶୋଷରେ ଆଖିରୁ ଜୁଳୁଜୁଳିଆ ପୋକ ବାହାରିଲା, ଯାହାର ତେଜ ବା କରାମତି ହୀରା ନୀଳାଠାରୁ କମ୍ ନୁହେଁ ।

ଲତା ପେଟ ଲୋକ ବୁହେ । କାଳବେଳ ଜଗି ପ୍ରସ୍ତୁତ ରହେ । ତାର ବ୍ରତ ଉପାସ ଅଭ୍ୟାସ ଅଛି, ସେ ଲୋକ ସହିପାରେ, ମୋ ଆଡ଼କୁ ଚାହେଁ, ମୁରୁକି ମୁରୁକି ହସେ । କିନ୍ତୁ ଅକଡ଼ିଆରେ ତ ପଡ଼ି ଯାଇଛି, କ'ଣ କରିବ ? ମୋ

କାନରେ ଚୁପ୍ ଚୁପ୍ କହିଲି—ଧନେ ନ ଖାଇଲେ କ'ଣ ଚଳୁନାହିଁ ? ନିଜର ମାନ୍‌ମହତ ଜଗି ଚଳିବା ଆବଶ୍ୟକ ।

ଲତାର ଦୃଢ଼ ଯୁକ୍ତି ବୁଝିଲେ ବି ମୋ ମନ ମାନିଲା ନାହିଁ । ପେଟରେ ଯଦି ଲୋଭ, ମୁହଁରେ ଲାଜ କାହିଁକି ? ବିଦ୍ୱତ୍‌ବର, ମହାପ୍ରାଣ ଚାଣକ୍ୟ ବି ଏ ଅସୁବିଧା ବୁଝି ସତର୍କ କରି ଦେଇଛନ୍ତି—

'ଆହାରେ ବ୍ୟବହାରେ ଚ
ତ୍ୟକ୍ତଲଜ୍ଜଃ ସୁଖୀ ଭବେତ୍ ।'

ଆମ ଓଡ଼ିଆରେ ବି କଥା ଅଛି—ମୁଖ ଫିଟିଲେ ଦୁଃଖ ଯାଏ । ମେନକାଙ୍କ ଭ୍ରୂଭଙ୍ଗ ନ ଦେଖି ମୁହଁ ଖୋଲି କହିଲି—ବାରୁ ଉପରେ ଗୋଟାଏ ହେଲାଣି । ଆଜି କ'ଣ ଖାଇବା ନାହିଁ କି ?

ମେନକା କହିଲେ—ଚାଲନ୍ତୁ, ଘରେ ରୋଷାଇ କରିବି ।

'ଏତେବେଳେ, ଏତେ ବାଧାରେ ରୋଷାଇ କରିବେ ?'

'ନ ହେଲେ ଏଠି ସ୍ୟାଣ୍ଡ୍‌ଓ୍ୱିଚ୍ ଖାଇଦେବା ।'

ଚିକେନ୍ ସ୍ୟାଣ୍ଡ୍‌ଓ୍ୱଇଚ୍, ଛେନା ସ୍ୟାଣ୍ଡ୍‌ଓ୍ୱିଚ୍, ସେଭେନ୍ ଅପ୍‌ରେ ଆମ ପେଟ ଭରିଗଲା ।

ଭିତର କଥା କଣ କି ସ୍ୱାମୀ ବ୍ରେକ୍‌ଫାଷ୍ଟ ଖାଇ ଯାଇ ସନ୍ଧ୍ୟାରେ ଫେରନ୍ତି, ପିଲା ବି ସେଇଆ କରନ୍ତି । ମେନକା ରୋଷାଇ କରିବେ କାହା ଲାଗି ? ସେ ଫ୍ରିଜ୍‌ରୁ ଯାହା କିଛି ଖାଇ କ୍ଷୁଧା ମେଣ୍ଟାନ୍ତି । ଆମେରିକାରେ ଘରେଘରେ ଏଇ ଲୀଳା । ମଧ୍ୟାହ୍ନ ରନ୍ଧନ ନାସ୍ତି ।

ଖାଇସାରି ଲଙ୍ଗ୍ ଆଇଲଣ୍ଡ୍ ଫେରିଲୁ, ମେନକା ଟେପ୍ ରେକର୍ଡ଼ ଗୀତ ଛାଡ଼ିଦେଲେ । ତାର ମର୍ମ – ଜଗନ୍ନାଥେ ଷାଠିଏ ପୌଟି ଖାନ୍ତି । ମୁଁ ମେନକାଙ୍କୁ ହସି ହସି ପଚାରିଲି—କିଏ କେତେ ଖାଇଲା ଖୋଲିଖାଲି କହିବା କ'ଣ ସୌଜନ୍ୟ ? ଭକ୍ତମାନଙ୍କର ଏ ଗୀତ ଶୁଣି ଭୋଜନମୀ ବର ଦେବେ ନା ଅଭିଶାପ ?

ତା ଛଡ଼ା ଏତେ ଖାଦ୍ୟ ଖାଇ ପ୍ରଭୁଙ୍କ ଓ୍ୱେଟ୍ ବଢ଼ି ଯାଉ ନ ଥିବ ! ଓଡ଼ିଆ ଗିଳେଇ ଗିଳେଇ ଜଗନ୍ନାଥଙ୍କୁ ଗେଧ୍‌କା କରିଦେଲେ । ସେ ଚଳତ୍‌ଶକ୍ତିରହିତ ହୋଇପଡ଼ିଲେ । ସେହି କାଳୁଁ ଓଡ଼ିଶାରେ ଦୁଃଖୀ ଗରିବଙ୍କ ସଂଖ୍ୟା ବଢ଼ିଛି ପିନା,

କମି ନାହିଁ । ଓଡ଼ିଆ କହୁ ସଂଖ୍ୟାରେ ଦାରିଦ୍ର୍ୟର ସୀମାରେଖା ତଳକୁ ଖସି ଖସି ଯାଉଛି ।

ଓଡ଼ିଆ ଖୋଇ ଖୋଇ କାଙ୍ଗାଳ । ପ୍ରଭୁ ଖାଇ ଖାଇ ଅଚଳ ।

## ସସ୍ମିତାର ବାହାଘର

ଆମେରିକାରେ ଓଡ଼ିଆ ଝିଅର ବାହାଘର କିପରି ହେଲା ? ଆଗ୍ରହ ସ୍ୱାଭାବିକ । ଲେଖକ ବରଯାତ୍ରୀଭାବେ ଏ ବାହାଘରେ ଯୋଗ ଦେଇ ନାହିଁ, ଭକ୍ଷ୍ୟବାଦ୍ୟ, ଖରଡ଼ିଆ ମହାପ୍ରସାଦ କଣ୍ଢୁ ବା ନିମନ୍ତ୍ରିତ ଅତିଥି ଭାବେ ଯାଇ ଭୋଜି ଖାଇନାହିଁ । ବସି ଛ'ଘଣ୍ଟା ଟେଲିଭିଜନ୍‌ରେ ମାତ୍ର ଦେଖିଛି ।

ଜଗନ୍ନାଥ ମେନକାଙ୍କ ବଡ଼ ଝିଅ ସସ୍ମିତା । ଜୋଇଁଙ୍କ ନାମ ମାହାର, ଇଞ୍ଜିନିୟର୍ । ଦୁହେଁ ନିଉୟର୍କରେ ଚାକିରି କରନ୍ତି । ସୁଖର ସଂସାର ।

ବରଧରାରୁ ବାଡ଼ୁଅପାଣି ଗାଧୁଆ, ଦହିଁ ମଙ୍ଗୁଳାରୁ ବନ୍ଦାଣ, ବନ୍ଦାପନା, କଉଡ଼ି ଖେଳ ସବୁ ଦେଖିଛି । ଓଡ଼ିଶାରୁ ମୁକୁଟ ଓ ଓଡ଼ିଶୀ ଅଳଙ୍କାର ଉଧାର ହୋଇ ଆସିଥିଲା । ବେଦୀ ଉପରେ ବରକନ୍ୟା, କନ୍ୟାପିତା, ବରପିତା ବସିଥିଲେ । ବଙ୍ଗାଳି ପୁରୋହିତ ମନ୍ତ୍ରପାଠ କରିଥିଲେ । ହୋମାଗ୍ନିରେ ଘୃତାହୁତି ଦିଆଯାଇ ପାରି ନଥିଲା । ତା ବଦଳରେ କାଣ୍ଡଲ୍‌ଗୁଚ୍ଛ ଜଳାଇ ଦିଆଯାଇଥିଲା । କାଣ୍ଡଲ୍ ଅଗ୍ନିକ ସ୍ୱାହା ମନ୍ତ୍ର ଶୁଣି ଆଧୁନିକ ଦେବତାମାନେ ଅବତରିଲେ, ଅଗ୍ନି ଏ ବିବାହରେ ସାକ୍ଷୀ ରହିଲେ ।

ଝାଞ୍ଜ ବାଜିଥିଲା । ହୁଳହୁଳି ଆଉ ବ୍ୟାଣ୍ଡ୍ ବାଜା ଶବ୍ଦ ମଧ୍ୟରେ ହାତଗଣ୍ଠି ପଡ଼ିଥିଲା । ଗଇଁଠାଳ ବନ୍ଧା ହୋଇଥିଲା । ଆଧୁନିକା ଝିଅ ଲମ୍ବା ଓଢ଼ଣାଟାଏ ପକାଇବା କ'ଣ ସୁନ୍ଦର ହୁଅନ୍ତା ? ତା ହେଲେ ଏତେ ଫଟୋ ନିଆଯାଇ ପାରିଥାନ୍ତା କିପରି ? ବିଦେଶରେ ଯାହା ସମ୍ଭବ, କିଛି ଓଡ଼ିଶୀ, କିଛି ଭାରତୀୟ, କିଛି ଆମେରିକୀୟ ରୀତିରେ ବାହାଘର ହୋଇଥିଲା । ପାରମ୍ପରିକ ଯାବତୀୟ ବିଧି ନିଷେଧ ମାନିବା କଟକରେ ସମ୍ଭବ ହୋଇ ପାରୁନାହିଁ, ଆମେରିକାରେ କେତେ ହେବ ?

ବରକନ୍ୟା କେକ୍ କାଟି ଖଣ୍ଡେ ଖଣ୍ଡେ ନିମନ୍ତ୍ରିତ ଅତିଥିଙ୍କି ଦେଲେ । କକ୍‌ଟେଲ୍ ପାର୍ଟିରେ ସ୍ନାକ୍‌ସ୍, କେକ୍, ବିଯ୍‌କୁଟ୍, ନଟ୍‌ସ୍, ଏଗ୍‌ସ୍ ଓ ଡ୍ରିଙ୍କ୍‌ସ୍ ରଙ୍ଗୀନ୍ ଆଲୋକମାଳା ମଧ୍ୟରେ ଟେବୁଲ୍ ଉପରେ ସୁସଜ୍ଜିତ ହୋଇ ରହିଥିଲା । ଗୋରାମାନଙ୍କ ସହିତ ଭାରତୀୟ ଓ ଓଡ଼ିଆମାନେ ବାଜା ଓ ସଙ୍ଗୀତ ସହ ସଙ୍ଗତି ରକ୍ଷା କରି ନୃତ୍ୟ କଲେ ।

ଲଙ୍ଗ୍ ଆଇଲାଣ୍ଡ୍‌ର ହ୍ୱାସିଂଟନ୍ ହଲ୍ ଭଡ଼ା ନିଆ ଯାଇଥିଲା । ପାଞ୍ଚଶତ ଲୋକଙ୍କୁ ଭୋଜିକୁ ନିମନ୍ତ୍ରଣ କରାଯାଇଥିଲା । ପାକିସ୍ଥାନୀ ଖାନ୍‌ସାମା ଓ ଖ୍ରିଷ୍ଟାନ ରାନ୍ଧୁଣିଆଁ ଖାଦ୍ୟ ପ୍ରସ୍ତୁତ କରିଥିଲେ ।

ଘରଭଡ଼ା, ଭୋଜି, ପୁରୋହିତ ପାଉଣା (୨୦୦ଡଲାର୍) ମିଶାଇ ଅଳଙ୍କାର-ପତ୍ର ଛାଡ଼ି ଏ ବିବାହରେ ମୋଟ ପନ୍ଦର ହଜାର ଡଲାର ଖର୍ଚ୍ଚ ହୋଇଥିଲା । ଓଡ଼ିଶୀ ସୁନା ଅଳଙ୍କାର ବ୍ୟତୀତ ଝିଅକୁ ନିଉସ୍ମବିର ଷ୍ଟ୍ରାପେଟ୍ ଦିଆ ଯାଇଥିଲା ।

## ଭୂରିଶବା ପାଗ ବାନ୍ଧୁ ବାନ୍ଧୁ

ମହାଭାରତ ଯୁଦ୍ଧ ଶେଷ ହୋଇଗଲା । ସେହିପରି ଆମ ଅବସ୍ଥା । ଦିନ ଏଗାରଟାରେ ନିଉୟର୍କ ଦେଖିଯିବା ପ୍ରସ୍ତାବ ହେଲା । ଘରୁ ବାହାରୁ ବାହାରୁ ଗୋଟାଏ । ବନ୍ଧୁସଙ୍କୁଳା ମେନକାଙ୍କ ପ୍ରକୃତିଗତ । ସେଇବାଟେ ଯିବ, କେମିତି ଟିକିଏ ମୁହଁ ନ ଦେଖାଇ ଯିବ ? ମଣିଷ କ'ଣ ଏଡ଼େ ପଥର ହୋଇପାରେ ? ଦେଖାଚାହିଁବାର ସୁଯୋଗ କେବେ ବା ମିଳୁଛି ? ଦିଅଁ ଦୁଆରେ ଦୁଆରେ ଚାଁଦେଶ୍ୱ ଭୋଗ ଖାଇ ଗଲା ପରି ବାଟଯାକ ବନ୍ଧୁ ସଙ୍କୁଳ ଗଲୁ ।

ପ୍ରଥମେ ପହଞ୍ଚିଲୁ ରମେଶ ରାୟଚୌଧୁରୀଙ୍କ ଘରେ । ସେ ହୃତ୍ ଡାକ୍ତର । ଆଗେ ବ୍ରହ୍ମପୁର, କଟକ ବଡ଼ ଡାକ୍ତରଖାନାରେ ଚାକିରି କରୁଥିଲେ । ବର୍ଷକ ଲାଗି ଆମେରିକା ଆସିଥିଲେ; ଆମେରିକା ଗୋଟିଏ ଅଠାକାଠି । ଯେ ଏଠିକି ଆସନ୍ତି, ଲାଖିଯାନ୍ତି, ସହଜରେ ଫେରିଯାଇ ପାରନ୍ତି ନାହିଁ । ରାୟଚୌଧୁରୀଙ୍କର ସେହି ଦଶା ଘଟିଛି, ସେ ଏଠି ବାରବର୍ଷ ରହିଲେଣି, ଫେରି ପାରୁନାହାନ୍ତି । ଭାରତରୁ ଗ୍ରୀନ୍ କାର୍ଡ଼ ନ ପାଇବାରୁ ଏଠାର ବହୁ ସୁବିଧା ସୁଯୋଗରୁ ବଞ୍ଚିତ ହେଉଛନ୍ତି । ସେଥିଲାଗି ସେ ଚିନ୍ତାଗ୍ରସ୍ତ ।

ସେ ସ୍ୱଭାବତଃ ଆଳାପୀ; ତାଙ୍କ ସହିତ ଖୁବ୍ ଭାବ ଜମିଲା । ପଚାରିଲୁ— ଏଠି ଏବେ ନିଗ୍ରୋଙ୍କ ଅବସ୍ଥା କିପରି ? ରାୟଚୌଧୁରୀ କହିଲେ—ନିଗ୍ରୋଟିଏ ପାଇରେ ରହିଲେ ପାଇର ମୂଲ୍ୟ କମିଯାଏ । ସେ ଗୃହ ଚାଲିଗଲେ ଆଉ କୌଣସି ଗୋରା ସେ ଘରେ ରହନ୍ତି ନାହିଁ । ଘରଭଡ଼ା ପରିମାଣ ମଧ୍ୟ ବହୁତ ତଳକୁ ଖସି ଆସେ । କଳା ଗୋରା ମଧ୍ୟରେ ଆଇନ୍‌ଗତ ସମାନତା ଥିଲେ ବି ଗୋରାଙ୍କ ଅନ୍ତରରେ ଏବେ ବି ତୀବ୍ର ଘୃଣାଭାବ ରହିଅଛି । ବ୍ୟବସାୟ କ୍ଷେତ୍ରରେ ନିଗ୍ରୋଙ୍କ ସ୍ଥାନ ନାହିଁ । ଗୋରା ଭାଗ୍ୟ ବିସ୍ତାରକ ଥିବା ସ୍ଥଳେ ଚାକିରି କ୍ଷେତ୍ରରେ କ୍ୱଚିତ୍ ନିଗ୍ରୋ ସ୍ଥାନ ପାନ୍ତି । ତେଣୁ ଚାକିରିଆମାନଙ୍କ ମଧ୍ୟରେ ନିଗ୍ରୋ ସଂଖ୍ୟା ଆନୁପାତିକ ଦୃଷ୍ଟିରୁ ଊଣା । ନିଗ୍ରୋ କିନ୍ତୁ ଏ ଦେଶକୁ ନିଜର ଦେଶ ଭାବେ ଗ୍ରହଣ କରିନେଇଛି ।

ଦୁଇଟି ଦିଗରେ ସେ ଆମେରିକାସ୍ଥ ଗୌରବ ଦିଏ—ରଙ୍ଗାଳୟରେ ଖେଳ ଓ ସଙ୍ଗୀତ । ନିଗ୍ରୋ କଳାକାର, ଲେଖକ, ବକ୍ତାଙ୍କ ସଂଖ୍ୟା ବି ଏ ଦେଶରେ ଯଥେଷ୍ଟ ।

କିନ୍ତୁ ସ୍ୱାଧୀନ ହେବା ଦିନରୁ ଜଣେ ହେଲେ ନିଗ୍ରୋ ଆମେରିକାର ସଭାପତି ହୋଇ ପାରିନାହିଁ, କିନ୍ତୁ କାଲେ ହୋଇ ପାରିବ କି ନାହିଁ ସନ୍ଦେହ ।

ପୁଣି ପଚାରିଲି—କେତେକାଳକେ ନିଗ୍ରୋ ଯୁବତୀଟିଏ ମିସ୍ ଆମେରିକା ହୋଇଥିଲା; କାଳୀ ଯେ ସୁନ୍ଦରୀ ହୋଇପାରେ, ତା ସୌନ୍ଦର୍ଯ୍ୟ ଯେ ଉଚ୍ଚ ସ୍ଥାନ ଲାଭ କରିପାରେ, ଏହା ପ୍ରଥମ ଥର ଲାଗି ପ୍ରମାଣିତ ହୋଇଥିଲା । କିନ୍ତୁ ସେହି ଭାଗ୍ୟବତୀ ଇସ୍ତଫା ଦେଲା କାହିଁକି ?

"ମିସ୍ ଆମେରିକାର ଗୋଟିଏ ଉଚ୍ଚ ନୈତିକ ମାନ ଥାଏ । ଏହି କାଳୀ କନ୍ୟାଟି ତାର ଅବମାନନା କରିଥିଲା । ସେ କଲେଜଛାତ୍ରୀ ଥିଲାବେଳେ ନିଜର କେତେକ ଉଲଗ୍ନ ଫଟୋ ଉଠାଇ ଗୋଟିଏ ମାଗାଜିନକୁ ଛାପିବାକୁ ଦେଇଥିଲା । ତା ବିନିମୟରେ ବହୁତ ଟଙ୍କା ପାଇଥିଲା । ବର୍ଷେ ଯାଇଥିଲେ କିଛି ହୋଇ ନ ଥାନ୍ତା । ଦଶ ମାସ ଭିତରେ ତା ଦୁର୍ବିନୀତି କାହାଣୀ ପଦାରେ ପଡିଗଲା । ସ୍ୱ ମର୍ଯ୍ୟାଦା ରକ୍ଷାରେ ଅସାମର୍ଥ୍ୟ ହେତୁରୁ ସୌନ୍ଦର୍ଯ୍ୟରାଣୀର ରତ୍ନମୁକୁଟ ତା ମୁଣ୍ଡରୁ କାଢ଼ି ନିଆଗଲା ଓ ତାକୁ ଇସ୍ତଫା ଦେବା ଲାଗି ବାଧ୍ୟ କରାଗଲା । ସୌନ୍ଦର୍ଯ୍ୟକୁ କେନାକେଇ ଜାରି କରି କଦର୍ଯ୍ୟଭାବେ ବ୍ୟବହାର କରୁଥିବା ବ୍ୟକ୍ତି ସେହି ସମ୍ମାନଜନକ ଆସନରେ ବସିବାକୁ ଯୋଗ୍ୟ କି ? ଉଚ୍ଚ ଚରିତ୍ର ନଥିଲେ ସୌନ୍ଦର୍ଯ୍ୟ ଦାଣ୍ଡରେ ପଡ଼ି ହାଟରେ ଗଡେ ।"

ତାପରେ ପଚାରିଲି—ରେଡ଼ଇଣ୍ଡିଆନ୍ମାନେ ଏବେ କିପରି ଅଛନ୍ତି ?

'ସେମାନଙ୍କୁ ସଂରକ୍ଷିତ ସ୍ଥାନମାନଙ୍କରେ ରଖାଯାଇଛି; କୃଷି ଓ ପଶୁପାଳନ ମୁଖ୍ୟ ବୃତ୍ତି ।'

'ଆପଣଙ୍କପରି ସୁଶିକ୍ଷିତ ଓ ବିଶେଷଜ୍ଞମାନେ ଭାରତ ଛାଡ଼ି ଏଠି ଦୀର୍ଘକାଳ ରହିଯିବାରେ ବ୍ରେନ୍ ଡ୍ରେନ୍ ହେଉନାହିଁକି ?

'ବ୍ରେନ୍ ଡ୍ରେନ୍' ହେବ କାହିଁକି ? ଏବେ ଭାରତରେ ବହୁ ଡାକ୍ତର ବେକାର । ବହୁତ ନୂଆ ଡାକ୍ତର ବି ବାହାରୁଛନ୍ତି ।

ଆମ ଉପାର୍ଜିତ ଅର୍ଥର ଏକାଂଶ ଆମେ ଭାରତକୁ ପଠାଉଛୁ । ଏହି ଦୁର୍ଲ୍ଲଭ ଡଲାର୍ ପ୍ରାପ୍ତିରେ ଭାରତର କିଛି ଉପକାର ହେଉନାହିଁ ?'

ଏଠି ଭାରତୀୟ ବିଶେଷତଃ ଓଡ଼ିଆଙ୍କ ଚଳାଚଳରେ ସୁବିଧା ଅସୁବିଧା କଣ ?

ରାୟ ଚୌଧୁରୀ କହିଲେ—'ଏଠି ୩୫ ହଜାର ଭାରତୀୟ ଡାକ୍ତର ଅଛନ୍ତି। ରୋଜଗାର ପ୍ରଚୁର। ଚଳାଚଳର ମାନ ଉଚ୍ଚ। କେହି ଆମେରିକା ଛାଡ଼ିଯିବାକୁ ଇଚ୍ଛୁକ ନୁହନ୍ତି। ସ୍ତ୍ରୀଲୋକମାନେ ଫେରିଯିବାର ପୂରା ବିରୋଧୀ। ଏଠି ଚଳାଚଳରେ ଅଖଣ୍ଡ ସ୍ୱାଧୀନତା, ଉଚ୍ଚ ସ୍ତରର ଖାଦ୍ୟପେୟ। ଯୋଉଠି ଲକ୍ଷ୍ମୀ, ସେଠି ଗୃହଲକ୍ଷ୍ମୀ ରହିବା ଲାଗି ଇଚ୍ଛୁକା। ଏଠି ପିଲାଏ ଉଚ୍ଚ ମାନରେ ଚଳିଲେଣି, ସେଠି କାଳେ କିଛି ଅସୁବିଧା ଭୋଗିବେ! ମନରେ ଏଇ ଶଙ୍କା।'

'ଏ କୁବେର ରାଜ୍ୟରେ ଦୁଃଖ ଆଉ କଣ?'

'ଏଠି ଛାଡ଼ପତ୍ର ବଡ଼ ଦୁଃଖ। ପାରିବାରିକ ଜୀବନ ସଦା ଭଙ୍ଗପ୍ରବଣ। ଶତକଡ଼ା ପଞ୍ଚାସ୍ତରି ପରିବାର ଭାଙ୍ଗେ, ଥରେ ନୁହେଁ, କେତେଥର। ଗାର୍ହସ୍ଥ୍ୟ ଜୀବନରେ ଶାନ୍ତି ବିରଳ। ବହୁସଂଖ୍ୟକ ଲୋକ ଯୌବନ ବୟସରେ ଚରିତ୍ର ହରାନ୍ତି। ଫଳରେ ଅଗଣିତ ଅବୈଧ ପୁତ୍ରକନ୍ୟା ଜନ୍ମ ଲାଭ କରନ୍ତି। ଏହା ନିନ୍ଦନୀୟ ବୋଲି ଭାରତରେ ହତ୍ୟା କରାଯାଏ, କିନ୍ତୁ ଆମେରିକାରେ ସେମାନଙ୍କୁ ବଢ଼େଇ ମଣିଷ କରାଯାଏ। ମଦ୍ୟ, କୋକେନ୍, ଡ୍ରଗ୍ ଏଠାରେ ଦୁରଭ୍ୟାସ; ଭାରତ ମଧ୍ୟ ଏ ଦିଗରେ ବିଶେଷ ଅନୁକରଣ କରିଲାଣି। ତେଣୁ ପ୍ରାଚୁର୍ଯ୍ୟ ମଧ୍ୟରେ ବି ଏଠି ଶାନ୍ତି ନାହିଁ, ଯେପରି ଏ ଦୁରଭ୍ୟାସ ଯୋଗୁଁ ଶତଶତ ଭାରତୀୟ ଦରିଦ୍ର ପରିବାର ମଧ୍ୟରେ।'

ଶିକ୍ଷକ ଅଭିଭାବକଙ୍କୁ ସତର୍କ କରନ୍ତି—ଦଣ୍ଡା ବାଳୁଙ୍ଗାଙ୍କ ଉପରେ କଡ଼ା ନଜର ରଖ, ଲାଳନ ସହିତ ତାଡନ ଆବଶ୍ୟକ—ଲାଳନେ ବହବଃ ଦୋଷାଃ, ତାଡ଼ନେ ବହବଃ ଗୁଣାଃ। ତେଣେ ଚାପୁଡ଼ାଟାଏ ପକାଇଲେ ପୁଲିସ୍‌କୁ ଇତ୍ତଲା ଦିଆଯାଏ। ବାପ ହାଜତରେ ପଶେ।

ଏଠା କୁପ୍ରଭାବରୁ ପିଲାଙ୍କୁ ରକ୍ଷା କରିବାଲାଗି ମୁଁ ଶୀଘ୍ର ଭାରତ ଫେରିଯିବି। ଏବେ ଏଠି ଯେତେ ଦିନ ଅଛି, ଓଡ଼ିଆ ଅନୁଷ୍ଠାନ ତରଫରୁ ଜଗନ୍ନାଥଙ୍କ ମୈତ୍ରୀଧର୍ମ ପ୍ରଚାର କରିବି। ଏହା ଖୁବ୍ ଆବଶ୍ୟକ।'

## ଅସୀମା

ଡାକ୍ତର ରମେଶ ଚୌଧୁରୀଙ୍କ ସ୍ତ୍ରୀ, ଉତ୍କଳ ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନରେ ଏମ. ଏ. ପାସ୍ କରିଛନ୍ତି। କଟକ ଘର ଝିଅ। ସ୍ୱାମୀ ଖଣ୍ଡାୟତ। ପ୍ରେମ ବିବାହ। ଅନେକ ବର୍ଷ ତଳ କଥା। ଏବେ ବଡ଼ ପୁଅ ଡାକ୍ତର ହେଲେଣି। ତଥାପି ବାପାଙ୍କ ସହିତ ସାଲିସ୍ ହୋଇ ପାରିନାହିଁ। ଗାଁ ଆଡ଼କୁ ଗଲେ ମାଆ କୋଳକୁ ନିଅନ୍ତି, ବାପା କଥା କହନ୍ତି ନାହିଁ। ପୂର୍ବର ରାଗ ରହିଛି, ଅନୁରାଗ ମରି

ଯାଇଛି । କାଳେ ବାପା ଫୋପଡ଼ା ଫିଙ୍ଗା କରିବେ, ଏଇ ଭୟରେ ପ୍ରାଚୀର ମଧ୍ୟରେ ଥିଲେ ବି ଘରକୁ କିଛି ଜିନିଷ ପଠାନ୍ତି ନାହିଁ ।

ଅସୀମା ସରସ କଥା କହିବାରେ ପ୍ରବୀଣା, ହାସ୍ୟମୁଖୀ ବାଳା ! କିନ୍ତୁ ବାପାଙ୍କ କଥା କହୁଁ କହୁଁ କାନ୍ଦି ପକାଇଲେ ।

ସେ ଆମ ଚର୍ଚ୍ଚା କଲେ । ସେତିକି ବେଳେ ଓଡ଼ିଆ ରେକର୍ଡ ବାଜି ଉଠିଲା, ଦ୍ୱିତୀୟ ପୁତ୍ର ରାକେଶ ପଚାରିଲେ—ମାମ୍, ଓଡ଼ିଆ ଗୀତ ଭିତରେ କିଏ କାନ୍ଦିଲା ପରି କାହିଁକି ଶୁଭେ ? ସବୁ ଗୀତରେ କାନ୍ଦ ସ୍ୱର କାହିଁକି ? ଓଡ଼ିଆ କଣ ହସନ୍ତି ନାହିଁ ?

ଅସୀମା—ଜନ୍ମ ପରେ ସବୁ ପିଲା କାନ୍ଦନ୍ତି । ତାହା ସୁଖର, ସ୍ୱାସ୍ଥ୍ୟର ସ୍ୱର, ଦୁଃଖ ବେଦନାର ସ୍ୱର ନୁହେଁ । ତୁ ତ ଜୀବନରେ କେବେ କୋଉ କଥାକୁ ଜିଦ୍ କରି କାନ୍ଦି ନାହୁଁ ? କାନ୍ଦିବୁ କାହିଁକି ? ସବୁ ଜିନିଷ ତ ତୋ ହାତ ପାଆନ୍ତାରେ । କାନ୍ଦ ତଳେ କି ଦୁଃଖ ଅଛି, ତୁ ବୁଝିବୁ କିପରି ? ଓଡ଼ିଶା ଦେଖିଥିଲେ, ଓଡ଼ିଆଙ୍କ ସଙ୍ଗେ ମିଶିଥିଲେ ବୁଝି ପାରିଥାନ୍ତୁ—କି ଦୁଃଖରେ ସେମାନେ ଚଳନ୍ତି ! ବନ୍ୟା, ମରୁଡ଼ି, ନାନା ଅଭାବ, ଅନାଟନ; ହସୁ ହସୁ ବେଳେ ବେଳେ ଆଖିରୁ ଲୁହ ବୋହିପଡ଼େ । ଭଗବାନ୍‌ଙ୍କୁ ସେ ନିଜର ଦୁଃଖ ଜଣାଉଛି । କାନ୍ଦିଲା ପରି ଶୁଭିବ ନାହିଁ କାହିଁକି ?

ରାକେଶ—ମାମ୍, ସେ ଦୁଃଖ ଆମେ କିଛି ଦୂର କରିପାରିବା ନାହିଁ ?

ଅସୀମା—ଆମେ ପାରି ନାହୁଁରେ ବାବା । ତୁ ନିଜକୁ ଯୋଗ୍ୟ କର । ତୁ ମନ କଲେ ନିଜେ ଦୁଃଖ କଷ୍ଟ ସହି ଲୋକଙ୍କୁ ସୁଖରେ ରଖିବାକୁ ଚେଷ୍ଟା କରିବୁ ।

## ମେନକା—ଅସୀମା—ଲତା

ଅସୀମାଙ୍କୁ ସଙ୍ଗେ ନେଇ ଆମେ ପୁଣି ନିଉମାର୍କେଟ ରାସ୍ତାରେ ଗଲୁ । ସାଢ଼େ ଦୁଇଟା ।

ମେନକା ଗୃହିଣୀ । ଅସୀମା ମନୋରଞ୍ଜିକା, ଲତା ଦୁହିଙ୍କ ମଧ୍ୟରେ ଏକ ତ୍ୟାଗ । ଗଙ୍ଗା ଯମୁନା ସରସ୍ୱତୀ—ଏ ତିନି ନଦୀ ମିଶିଗଲାରୁ ଏବେ ପ୍ରୟାଗ ହେଉଛି । ସେ ଭାବନା ମୋ ମନକୁ ଧକ୍‌କା ଦେଉଛି ।

ଏ ତିନି ଜଣଙ୍କ ମଧ୍ୟରୁ କେହି ଗୃହକର୍ମ କରନ୍ତି ନାହିଁ, କେହି ସ୍ୱାମୀ ନାଁଆ ଧରି ଡାକନ୍ତି ନାହିଁ, ତିନିଜଣ ପୂରା ଆଧୁନିକା । ଅନେକ ବର୍ଷ ଆମେରିକାରେ ରହି ଏଠା ରୀତିରେ ଚଳିଛନ୍ତି । କିନ୍ତୁ ଓଡ଼ିଆ ସଂସ୍କୃତି ପ୍ରତି ଗାଢ଼ ଅନୁରାଗ ରହିଅଛି ।

ତୃତୀୟ ଜଣକ ଆଧୁନିକା, କଟକରେ ଯେତିକି ଆଧୁନିକତାର ହାଓ୍ୱା ବହେ। କଟକର ଅଧିକାଂଶ ପରିବାରର ଇତିହାସ ତାଙ୍କ ଜିହ୍ୱାଗ୍ରରେ । ତିନିଜଣଯାକ ଭାରତୀୟ ଶାଢ଼ୀ ପିନ୍ଧିଛନ୍ତି, ସିନ୍ଦୂର ନାଇଛନ୍ତି ।

ଅସୀମା ଉଚ୍ଚଶିକ୍ଷିତା । ତାଙ୍କର ଅଭିମାନ ଯଦି କିଛି ଥାଏ, ତାହା ଦୁଇ ସଙ୍ଗିନୀଙ୍କ ସହିତ ମିଶିବାରେ ଅନ୍ତରାୟ ହେଉନାହିଁ ।

ବାଟଯାକ କି କଥା ହେଲା ? ଇରାନ୍ ଇରାକ୍ ଯୁଦ୍ଧ ? ଗ୍ରହ ଉପଗ୍ରହ ଯାତ୍ରା ? ଆମେରିକା ରୁଷିୟାଙ୍କ ପ୍ରୀତି ଉପରେ ନିର୍ଭରଶୀଳ ପୃଥିବୀର ଭାଗ୍ୟ ? ନା, କିମ୍ବା ଭାରତରେ ବା ଓଡ଼ିଶାରେ କେଉଁ ଲେଖକ କିପରି ଲେଖୁଛନ୍ତି, କେଉଁ ଚିତ୍ରକର କିପରି ଆଙ୍କୁଛନ୍ତି ? କେଉଁ ଚିତ୍ରତାରକା କିପରି ଅଭିନୟ କରୁଛନ୍ତି ? ସେ କଥା ବି ହେଲାନାହିଁ ।

ଜଣକୁ ଗୁଣ୍ଡି (ପାଖରେ ପତି ଥିବାରୁ) ଅନ୍ୟ ଦୁଇଜଣ କେବଳ ପତିମାନଙ୍କ ଗୁଣ ଅଗୁଣ ବଖାଣିଲେ । 'ସେ କେମିତି କାହା କଥା ଶୁଣନ୍ତି ନାହିଁ, ଯାହା ଠିକ୍ ବିଚାରନ୍ତି, କରିଯାନ୍ତି; ସେ କେମିତି ଖୋସାମତି କରି ଜାଣନ୍ତି ନାହିଁ—ଫଳରେ ଯେତେ ଅସୁବିଧା ଘଟେ; ସେ କେମିତି ଘରେ କିଛି ଅନର୍ଥ ଘଟିଲେ ସବୁ ଦୋଷ ସ୍ତ୍ରୀ ଉପରେ ଢାଳି ଦିଅନ୍ତି—ସ୍ୱାମୀ କାହିଁକି କଲ ନାହିଁ ? ସେ ବିଷୟ କାହିଁକି ବୁଝିଲ ନାହିଁ' ଇତ୍ୟାଦି । ତା ମଧ୍ୟରେ ସ୍ୱାମୀଙ୍କ ପାରିଳପଣ, ବହୁ ସଦ୍‌ଗୁଣର ବ୍ୟାଖ୍ୟା, ମଧ୍ୟ ହୋଇଯାଉ ଥାଏ, ଏସବୁ ଶୁଣି ଲତା ମନ ଛଟପଟ । ସେ କେମିତି କହି ପକାନ୍ତା—ତା ସ୍ୱାମୀ କେଡ଼େ ଗୁଣିଆ, କେଡ଼େ ପ୍ରତିଷ୍ଠାବାନ୍, ଯଶସ୍ୱୀ, ଘର ଭାର ସବୁ ମୋ ଉପରେ ପକାଇଦେଇ······ଇତ୍ୟାଦି ଓଙ୍କାରୁ ଓଙ୍କାରୁ ମୁଁ ଆଙ୍ଗୁଠି ଦେଖାଇଦେଲି । ତାପରେ ପୁତ୍ରମାନଙ୍କ କଥା ପଡ଼ିଲା—କିପରି ଯୋଗ୍ୟ, ଶିକ୍ଷା କ୍ଷେତ୍ରରେ କୃତୀ, ଉଚ୍ଚ ଆସନ ପାଇଛନ୍ତି ବା ପାଇବେ, ବହୁ ରୋଜଗାର କରୁଛନ୍ତି ବା କରିବେ ଇତ୍ୟାଦି ।

କଥା ଲହରରେ ଅସଲ ଉଦ୍ଦେଶ୍ୟଟି ଭୁଲି ହୋଇଗଲା । ଗାଡ଼ି ମୃଦୁ ଗତିରେ ଚାଲିଲା; ବଢ଼ିବା ଆଗରୁ ଅଟକିଗଲା, କୃଷ୍ଣମୋହନ ଦାସଙ୍କ ଦୁଆରେ । କାରଣ ସ୍ନେହ ତାକୁ ଅଧିକ ଯିବାକୁ ଦେଲାନାହିଁ ।

କୃଷ୍ଣମୋହନ ପଶୁଡାକ୍ତର, ତାଙ୍କର ଦିପୁଅ ଏଠି ଡାକ୍ତର ହୋଇଛନ୍ତି; ଦିଭଉଣୀ ଦିବୋହୂ ହୋଇ ଆସିଛନ୍ତି । ଦିହିଙ୍କର ପ୍ରାୟ ଏକାବେଳକେ ଦୁଇଟି ପିଲା ହୋଇଛନ୍ତି—ଜଣଙ୍କର ପୁଅ, ଆଉ ଜଣଙ୍କର ଝିଅ ।

ତ ଭଉଣୀ ଗ୍ରନ୍ଥ ଛନ୍ତି । ଘର ହାତକୁ ଘରର ପାଇଟି ଅଣ୍ଟୁ ନାହିଁ । ଶାଶୁ କେତେ ବସିବେ ? ନାଜକ୍ଷାଲୀ, ନିଷ୍ଟର୍ମା ଜୀବନ ତାଙ୍କ ଲାଗି ଉତ୍ପୀଡ଼କ । ଧନ ସରୁନାହିଁ ।

ବୋହୂ ଦୁହେଁ ଲଗାଇଦେଲେ ତାଙ୍କୁ ଏକ ଇଚ୍ଛିତ କର୍ମରେ । ସେ ପିଲାଙ୍କ ଜଞ୍ଜାଳ ବୁଝୁଛନ୍ତି । ଦାଣ୍ଡରେ ମାଲପା ଘଷୁଛନ୍ତି, ଗାଧେଇ ଦେଉଛନ୍ତି, ଖୋଉଛନ୍ତି, ପୁରୁଣା ଧୋ ବାଇଆ ଗୀତ ବୋଲି ଜଙ୍ଘ ହଲାଇ ହଲାଇ ଶୁଆଇ ଦେଉଛନ୍ତି । ଏ ଗୀତ ବୋହୂଙ୍କୁ ଭଲ ନ ଲାଗିଲେ ବି ପାଟି ଫିଟାଉ ନାହାନ୍ତି । ସେତ ଫେର୍ ନିଜ ପୁଅଙ୍କୁ ଏମିତି ବଢ଼େଇ ମଣିଷ କରିଥିଲେ । ସେମାନେ କାହିଁରେ କଣ ହେଲେ ।

ଆମ ଗପସପ ଜମିଥିଲାବେଳେ ପିଲା ଦହେଁ ମୋଡ଼ିଭଡ଼ି ହୋଇ ଉଠିଲେ ।

କୃଷ୍ଣବାବୁ କହିଲେ—ଇଏ ମୋର କ୍ଲାସ୍‌ମେଟ୍; ତାଙ୍କୁ ସେ କାଳୁ ଦେଖିନାହିଁ ।

ଆପଣଙ୍କ କର୍ମ କ୍ଷମତା ଏବେ ଯଥେଷ୍ଟ ଥିଲା ପରି ଜଣାଯାଏ ।

କହିଲି—ମୁଁ ୧୫ ବର୍ଷ ତଳେ ଅବସର ନେଲି; ସେତେବେଳକୁ ମୋର ବୟସ ୫୫ ବର୍ଷ—ମୋ କପାଳରେ ସରକାର ଅଥର୍ବତାର ମୋହର ମାରିଦେଲେ, କର୍ମ କ୍ଷମତା ଅଛି କହିଲେ ଶୁଣିବ କିଏ ?

"ଆମେରିକାରେ ଏବେ ଯେ ଯାହା ଇଚ୍ଛାରେ ଅବସର ନେଉଛନ୍ତି । ୬୫ ବର୍ଷ ସୀମା ଏବେ ଉଡ଼ାଇ ଦିଆ ଯାଇଛି । ଠକାଠକ ଏଠି ଚଳେନାହିଁ । କର୍ମ କରି ନ ପାରିଲେ ଲୋକେ ଆପେ ଖସିଯାଆନ୍ତି । ହାତ ଥରିଲେ, ଦୃଷ୍ଟିଶକ୍ତି କମିଲେ ଡାକ୍ତର ଅପେରେସନ୍ କରିପାରେନାହିଁ । ଅର୍ଥଲୋଭରେ ସେପରି କଲେ, କାହାର କିଛି କ୍ଷତି ଘଟିଲେ, ଶାସ୍ତି ସାଙ୍ଘାତିକ ।"

ମୋ ମତରେ ଦକ୍ଷ ଅବସରପ୍ରାପ୍ତଙ୍କୁ ଭାରତ ବା ଓଡ଼ିଶା ସରକାର ସତ୍‌କର୍ମରେ ଲଗାଇବା ଉଚିତ । ଅଥର୍ବ ହୋଇଗଲେ ବି ନିଜ ପ୍ରିୟଜନଙ୍କୁ କେବଳ ଏ ବର ଦିଆଯାଉଛି ।

ଏଠି କିଛି ସଙ୍ଗୀତ ପାନ କରି ବାହାରୁ ବାହାରୁ ରାତି ନଅଟା । ତାପରେ ଗାଡ଼ି ଅଟକିଗଲା ପ୍ରିୟଜନ ଡାକ୍ତର ଉମାଶଙ୍କର ପତିଙ୍କ ଦୁଆରେ । ଉମାଶଙ୍କରଙ୍କ ବଂଶ ଡାକ୍ତର ବଂଶ । ପତ୍ନୀ ଲକ୍ଷ୍ମୀ ଡାକ୍ତର, ଦୁଇ ପୁଅ ଡାକ୍ତର ।

ମଟର୍ ଆକ୍ସିଡେଣ୍ଟ୍ ଫଳରେ ଲକ୍ଷ୍ମୀଙ୍କର ଦୁଇଟି ମେରୁଦାଣ୍ଡ ଭାଙ୍ଗି-ଗଲା, ଖାଡ଼ିକ ଦାନ୍ତ ବି ଉଡ଼ିଗଲା । ଗାଲଟା ଚୂନା । ତାଙ୍କ ଜୀବନ କେବଳ ଦୁଲୁ ଦୁଲୁ ହୋଇ ଚାଲିଛି । ଏତକ ବି ବଡ଼ ଆଶ୍ୱାସନା । ବହୁ ଚିକିତ୍ସା ପରେ ସେ ଆରୋଗ୍ୟ ଲାଭ କଲେ । ଜଣେ ମଦ୍ୟପର ଅସତର୍କ ଗାଡ଼ିଚାଳନ ଫଳରେ ତାଙ୍କୁ ଏ ଦୁର୍ଦ୍ଦଶା ଭୋଗିବାକୁ ହେଲା ।

ପୁଅମାନେ ଦୂରରେ ଚାକିରି କରି ରହିଛନ୍ତି । ଏଡ଼େ ବଡ଼ ଘରେ ବୁଢ଼ା ବୁଢ଼ୀ ବଡ଼ ଏକୁଟିଆ ହୋଇ ଚଳୁଛନ୍ତି, ଯାହା ଯତ୍ରତତ୍ର ଭାରତରେ ଏବେ ଘଟୁଛି ।

ଡାକ୍ତର ପତିଙ୍କ ଘରୁ ମେନକା ଫୋନ୍ କଲେ କନ୍ୟା ସସ୍ମିତାଙ୍କୁ; ବିବାହର ଦୁଇ ବର୍ଷ ହେଲା । ସିଏ ଚାକିରି କରୁଛି । ପିତୃଗୃହକୁ ଫେରିବାକୁ ଅବକାଶ ପାଇନାହିଁ । ଏଇ ଭ୍ରମଣ ସୁଯୋଗରେ ତା ସହିତ ଟିକିଏ କଥାବାର୍ତ୍ତା ନ ହୋଇ ମେନକା ଘରକୁ ଫେରିବେ କିପରି ?

ସସ୍ମିତା ଫୋନ୍ ପାଇ ମୁଖ୍ୟ ରାସ୍ତାଧାରକୁ ଆସିଲା । ବିଭାଘର ଚାହିଁ ଦେଖିଥିଲି; ତାକୁ ସଦେହେ ଦେଖିଲି । ପୂରାପୂରି ଆମେରିକାଲଲିତ; ଖାଣ୍ଟି ଓଡ଼ିଆ ନ କହି ପାରିଲେ ଦୋଷ ବାଛିବାର ନାହିଁ । ଓଡ଼ିଆ କହଣିରେ ଗୋଟିଏ ଇଂରାଜୀ ଛାଞ୍ଚ ଓ ସ୍ୱର ବାହାରୁଛି । ମୁଣ୍ଡବାଳ ମୁକୁଳା । ହସ ହସ ମୁହଁ ।

ପୁଲିସ୍ ଗାଡ଼ିକୁ ରାସ୍ତା ଧାରରେ ଛିଡ଼ା କରାଇ ଦେଲାନାହିଁ । ମାଆ ଝିଅଙ୍କର ସ୍ନେହାଭିବ୍ୟକ୍ତିରେ ବାଧା ଘଟିଲା ।

ଏଠି ପାର୍କ୍ କରିବା ଏକ ଅସମ୍ଭବ କଥା । ପୁଣି ବହୁ ଦୂରରେ ଗାଡ଼ି ପାର୍କ୍ କଲେ ବି ଚାଲି ଚାଲି ଅନେକ ବାଟ ଯିବାକୁ ପଡ଼େ । ମେନକା ସୂକ୍ଷ୍ମ ଉପାୟଟିଏ ଉଦ୍ଭାବନ କଲେ । ଗାଡ଼ିରୁ ମୋଟେ ଓହ୍ଲାଇବାକୁ ହେଲା ନାହିଁ । ଅଥଚ ସବୁ ଦେଖା ହୋଇଗଲା ।

ଏ ଓ୍ୱାଲଷ୍ଟ୍ରିଟ୍, ଏ ଓ୍ୱାର୍ଲ୍ଡ୍ ଟ୍ରେଡ୍ ମାର୍କେଟ୍, ଏ ଏମ୍ପାୟାର୍ ଷ୍ଟେଟ୍ ବିଲ୍ଡିଙ୍ଗ୍, ଏ ଇଷ୍ଟ୍ ନଦୀ, ଏ ଜାତିସଙ୍ଘ ଅଫିସ୍ । ଏ ନିଉୟର୍କ୍ ବେ, ଏ ମନ୍ହଟନ୍ ଦ୍ୱୀପ । ଏମିତି ଆମ ନିଉୟର୍କ୍ ଦେଖା ଦଣ୍ଡକେ ଶେଷ ହୋଇଗଲା ।

'ହାତ ନ ଲଗେ
ଗୋଡ଼ ନ ଲଗେ
ଚଟୁ ପିଠାଖଣ୍ଡି ସୁଆଦ ଲଗେ !'

ଢଲାଙ୍କ ଶ୍ରମ ନ କରି ପିଠା କଲେ ଯେମିତି ଲାଗେ, ଏ ଦୃଶ୍ୟସବୁ ଆମକୁ ସେମିତି ଲାଗିଲା ।

ତାପରେ ରାସ୍ତା ଧାରରୁ ମେନକା ସାନ ପୁଅକୁ ପୁଣି ଫୋନ୍ କଲେ— କେମିତି ଅଛୁ ? ପୁଅ ଉତ୍ତର ଦେଲା—ମମ୍, ଓକେ; ଟିକଏ ଲେଟ୍ କରି ଆସ ।

ଆଶ୍ଚର୍ଯ୍ୟ ଏ ଉତ୍ତର; ଗ୍ରେଟ ପିଲା; ମାଆ କେତେବେଳୁ ଛାଡ଼ି ଆସିଲାଣି; ବ୍ୟସ୍ତବିକଳ ହେବା କଥା । ଓଲଟି କଣ କହୁଛି ନା, ଡେରି କରି ଆସ !

ମେନକା ଗୂଢ଼ ରହସ୍ୟର ମର୍ମ ବୁଝାଇଦେଲେ—ସେ ଅସୀମାର ଦୁଇ ଗୁଅଙ୍କ ସଙ୍ଗେ ଖେଳୁଛି । ଖେଳ ଜମିଛି, ଚଞ୍ଚଳ ଫେରିଲେ କାଳେ ମଉଜ ଭାଙ୍ଗିଯିବ !

ସାଙ୍ଗରଙ୍କ ଏମାନେ; ଏଠା ପିଲାଙ୍କ ସଙ୍ଗେ ମିଶି ବି ମିଶି ପାରନ୍ତି ନାହିଁ । ମନମତ ଓଡ଼ିଆ ସାଙ୍ଗଟିଏ ଦୈବାତ୍ ପାଇଗଲେ ଛାଡ଼ିବାକୁ ନାରାଜ୍ ।

## ଗୋଟିଏ ନିଷ୍ଫଳ ଦିନ

ଗତଥର ନିଉୟର୍କରେ ଏକ ସପ୍ତାହ କଟାଇଥିଲି, ଲତା ଲାଗି ଯଦିବା ଅନୁଭୂତି ଅଭିନବ । ମେନକା ଅନେକ ଦେଖାଳୀଙ୍କୁ ଏହି ନଗରର ଦୃଶ୍ୟରାଜି ଦେଖାଇ ଦେଖାଇ କ୍ଲାନ୍ତ । ଆମକୁ ପୁଣି ଥରେ ସେସବୁ ଦେଖାଇବା ଲାଗି ଆଗ୍ରହ ନ ହେବା ସ୍ୱାଭାବିକ । ପୁଣି ଗାଡ଼ି ପାର୍କ୍ କରିବାର ଜଟିଳ ସମସ୍ୟା ତ ଅଛି, ବର୍ଷା ପବନ ବି ପ୍ରତିକୂଳ ପରିବେଶ ସୃଷ୍ଟି କରୁଛି । ଫଳରେ ତିନି ଦିନର ରହଣି ମଧ୍ୟରେ ଗୋଟିଏ ବି ଚମତ୍କାରିକ ଦୃଶ୍ୟ ଆମେ ଦେଖି ପାରିଲୁ ନାହିଁ ।

ବଡ଼ ଲୋକଙ୍କର ସଉଦା ସରେନାହିଁ । ଯେତେ ଜିନିଷ ଘରେ ଭର୍ତ୍ତି ହୋଇଥିଲେ ବି ନୂଆ କିଛି ଦେଖିଲେ କିଣିବାର ସଖ୍ ଥାଏ । ଭଲ ଖାଇବା, ଭଲରେ ରହିବା, ଯୁଗୋପଯୋଗୀ କରି ପିନ୍ଧିବା ଚେଷ୍ଟା ସ୍ୱାଭାବିକ; ପଇସାର ଅଧିକ ସଦୁପଯୋଗ କିଛି ହୋଇ ନ ପାରିଲେ ।

କଥାଅଛି—'ଓଧ ସଙ୍ଗେ ବଣଭୁଆ ବାଇ ।' ଦୁଇଟିଯାକ ପ୍ରାଣୀ ମତ୍ସ୍ୟରେ ଆଗ୍ରହୀ । ଗୋଟିଏ ପାଣିରେ ବୁଡ଼ି ମାଛ ଧରି ଖାଏ, ଅନ୍ୟଟିର ସେ ସୁଯୋଗ ନାହିଁ । ତଥାପି ଲତା ସାଙ୍ଗହୋଇ ବଜାର ସଉଦା କରି ବୁଲୁଥାଏ । କିଛି ନ ହେଲା ଭିତରେ ବଜାର ବୁଲିଟା ତ ହେଲେ ହୋଇଯିବ, ଗୁଡ଼ାଏ ଆଧୁନିକ ଜିନିଷପତ୍ର ଉପରେ ଆଖି ବୁଲିଯିବ । ଏମିତି ବୁଲି ବୁଲି ସଉଦା କରିବାକୁ ମତେ ଭଲ ଲାଗେ ନାହିଁ ।

ଫଳରେ ମୁଁ ସାରାଦିନ ଗୋଟିଏ ଘରେ ବସି ରହିଲି । ବାହାରେ ଗାଡ଼ି ଦେଇ ମେନକା ଗଲେ, ଲତାଙ୍କୁ ସଙ୍ଗରେ ନେଇ ।

ଆମକୁ ବସ୍‌ଷ୍ଟାଣ୍ଡରେ ଛାଡ଼ି ଦେଇଥିଲେ ଆମେ ଯାଇ ପାରିଥାନ୍ତୁ; କାରଣ ଟୁରିଷ୍ଟ୍ ବସ୍‌ମାନଙ୍କରେ ଜଣେ ଦେଖାଇବା ଲୋକ ଥାନ୍ତି, ଏହି ବସ୍‌ମାନଙ୍କରେଯାଇ ଅଧିକାଂଶ ଭ୍ରମଣକାରୀ ନିଉୟର୍କ୍ ଦେଖିଥାନ୍ତି, କାରଣ ଏହା ଶସ୍ତା ଓ ସୁବିଧାଜନକ । ଦୃଶ୍ୟ ଦେଖା ପରେ ଅପରାହ୍ଣ ପାଞ୍ଚଟାରେ ଆମକୁ ଷ୍ଟାଣ୍ଡରୁ ନେଇଯାଇଥିଲେ ହୋଇଥାନ୍ତା । ତାହା କରାଗଲା ନାହିଁ, ଏ ଆମର ଦୁର୍ଭାଗ୍ୟ । ଆମ ଆଗମନ ଲକ୍ଷ୍ୟ ପ୍ରତି କେହି ଦୃକ୍‌ପାତ କଲେନାହିଁ ।

ମୁଁ ସାରାଦିନ ଘରେ ବସି ପତ୍ରପତ୍ରିକା ପଢ଼ିଲି, ଯାହା ବହୁ ସଂଖ୍ୟାରେ ଏଠିକି ଆସେ, ଅବହେଳିତ ଭାବେ ପଡ଼ି ରହେ ।

ବଡ଼ଲୋକ ଘର; ଚଳାଚଳର ସମସ୍ତ ସୁବ୍ୟବସ୍ଥା । ଉଭୟେ ମେଳାପୀ; କିନ୍ତୁ ଅନ୍ୟର ମନ ବୁଝି ପ୍ରତିକାର ହୋଇ ପାରେନାହିଁ । ଫଳରେ ଆମ ନିଉୟର୍କ୍ ଯାତ୍ରା ବିଫଳ ହୋଇଗଲା । ଯାହା ଗତଥର ଦେଖିଥିଲି, ଜଣେ ସଦା କାର୍ଯ୍ୟବ୍ୟସ୍ତ ଡାକ୍ତରଙ୍କ ଘରେ ଥିଲେ ବି, ତାହା ଏଥର ହୋଇପାରିଲା ନାହିଁ । କାରଣ ମନୋ-ବିଜ୍ଞାନ ବୁଝିବାରେ ସେ ସଦା ତତ୍ପର ଥିଲେ ।

ହେଲେ ଜଣେ ଲେଖକ ପକ୍ଷରେ ବ୍ୟର୍ଥ ଦିନ କେଉଁଟି ? ଘୋର ନୈରାଶ୍ୟ ଓ ବ୍ୟର୍ଥତାରୁ ସେ ରସ ଆହରଣ କରି ଆଣେ । ବିଫଳ, ଗ୍ଲାନିକର ସମୟର ବିହିତ ଉପଯୋଗ କରେ । କେବଳ ଲତା ମନରେ ଘୋର କ୍ଷୋଭ ଓ ଗ୍ଲାନି ରହିଗଲା ।

ଏଠି ଯେଉଁମାନଙ୍କର ସମୟ ଅଛି, ବିଶେଷତଃ ଚାକିରୀ ନ କଲା ସ୍ତ୍ରୀଲୋକ-ମାନଙ୍କର, ସେମାନଙ୍କ ମଧ୍ୟରୁ କ୍ୱଚିତ୍ କେହି ପଢ଼ନ୍ତି । ବେଳ ପାଇଲେ ବନ୍ଧୁ ସଙ୍ଗକୁ ଯାନ୍ତି, ନଇଲେ ଟେଲିଭିଜନ୍ ଦେଖନ୍ତି ।

ପାଟିକି ଗଲେ ଲୋକେ ତ ସମୟଚେତନା ପ୍ରାପ୍ତ ହୁଅନ୍ତି । ରୀତିମତ ପଢ଼ାପଢ଼ି କରୁଥିବା କିମ୍ବା ସାହିତ୍ୟ ପଢ଼ି ରସ ଉପଭୋଗ କରୁଥିବା ଜଣେ ହେଲେ ଓଡ଼ିଆ ସ୍ତ୍ରୀଲୋକ ଏଯାକେ ମୋ ଦୃଷ୍ଟିରେ ପଡ଼ିନାହିଁ । ମୋଟାମୋଟି ବୁଝନ୍ତି ଯେ ମୁଁ ଲେଖକ, ଦେଶ ବା ଜାତି ଲାଗି କିଛି କରିଛି; ମୋ ସାହିତ୍ୟ କେହି ପଢ଼ିଥାଉ ବା ନ ଥାଉ, ମୋତେ ଆଦର ଅଭ୍ୟର୍ଥନା କରିଛନ୍ତି । ସୁବୁଦ୍ଧି ଜଣେ ଡାକ୍ତର, ମୋ ମନ ବୁଝି ନ ପାରିଲେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଓଡ଼ିଶାର କେତେ ଜଣ ଡାକ୍ତର ବା ଇଞ୍ଜିନିୟର୍ ଓଡ଼ିଆ ସାହିତ୍ୟ ବା ସାହିତ୍ୟିକର ମନ ବୁଝନ୍ତି ?

ବଞ୍ଚିବା ଲାଗି ପ୍ରତ୍ୟେକ ମଣିଷର କିଛି ହସଖୁସି ଦରକାର । ସେ ଖୋରାକ ସହଜ ଉପାୟରେ ମିଳିଗଲେ ସାହିତ୍ୟକୁ ଯତ୍ନରେ କିଏ ? ମୋତେ ଲାଗେ—ଏଠା ଜୀବନ ଯନ୍ତ୍ର ପରି ଚାଲିଛି । ଯନ୍ତ୍ରର ଯନ୍ତ୍ରଣାବୋଧ ନାହିଁ ।

ଦେଶପ୍ରେମ, ଲୋକସେବାଭାବ କେତେ ନିବିଡ଼ ହେଲେ ଏଠା ସୁଖ-ସୌଖୀନ ଜୀବନ ଛାଡ଼ିଯାଇ ଭାରତୀୟ ହୋଇ ଚଳି ପାରିବ ? ଭାରତୀୟ ଜର୍ମାନ୍ ବା ଜାପାନୀ ନୁହେଁ । ତା ଦେଶପ୍ରେମର ଗୋଟାଏ ସୀମା ଦେଖି ହୁଏ । ସେ ଏବେ ଏଠାର ସ୍ଥାୟୀ ବାସିନ୍ଦା ହୋଇଛି । ଦୈନନ୍ଦିନ ଜୀବନମାନକୁ ଉଚ୍ଚତର କରିବା ଆଶାରେ ନିଜକୁ ହାଇଓ୍ୱେରେ ଦୌଡ଼ାଇଛି, ଯୌବନକୁ ଦୀର୍ଘସ୍ଥାୟୀ କରି ରଖିଛି । କେତେ ସହଜରେ ଶସ୍ତାରେ ଅପମିଶ୍ରଣହୀନ ଶୁଦ୍ଧ ଖାଦ୍ୟ, ସର୍ବୋତ୍ତମ ଚିକିତ୍ସା ଲାଭ କରୁଛି, ମୁହୂର୍ତ୍ତକେ ଘରଠାରୁ ଆକାଶ ପରିକ୍ରମା କରିପାରୁଛି । ଆଧୁନିକ ଦ୍ରବ୍ୟସମ୍ଭାରରେ ପ୍ରତି କୋଠରୀ ସୁସଜ୍ଜିତ, ଯାନ୍ତ୍ରିକ ଉପାୟରେ ଗୃହକୁ ଯଥେଚ୍ଛ ଶୀତଳ ବା ଉଷ୍ମ ରଖିପାରୁଛି । ଏସବୁ ସୁଖ ଛାଡ଼ି ସେ ଅସୁବିଧା ଭିତରକୁ ଯିବ କାହିଁକି ? କାଦୁଅରେ ପଶିବ କାହିଁକି ? ଗୋଡ଼ ବା ଧୋଇବ କାହିଁକି ?

ସ୍ୱଦେଶରେ ଚଳାଚଳର ନାନା ଅସୁବିଧା ବ୍ୟତୀତ ତଥାକଥିତ ଭାଇ-ବନ୍ଧୁଙ୍କର ଚକ୍ରାନ୍ତ ଚାଲିଛି—ଉପରକୁ ଉଠୁଥିବା ବ୍ୟକ୍ତିର ପାଦ ଟାଣି ଖସାଇ ଦେବେ, କଣ୍ଟକ ହୋଇ ପଡ଼ିଲେ ଆହା ଆହା କହି ଉଠାଉଥିବେ, ଏଣେ ମନରେ ଭାବୁଥିବେ—ମଲା ନାହିଁ ତ, ଆଉ ହେଲା କ'ଣ ?

ଅବଶ୍ୟ ଏଠା ବିଦେଶୀ ଭାରତୀୟ ଦୁଃଖ ପ୍ରକାଶ କରି କହନ୍ତି—ଏଠି ଏତେ ଭଲ ରହି ମୂଲ୍ୟ କ'ଣ ? ସ୍ୱାଦୁ ଦ୍ରବ୍ୟ ଏକା ଭୁଞ୍ଜିଲେ ତାର ଆସ୍ୱାଦ ମାମୁଲି ହୋଇଯାଏ । ସେହିପରି ସୁଖ ଗତାନୁଗତିକ ହେଲେ ତାର ମାଧୁରୀ ଊଣା ହୋଇଯାଏ ।

ମରିଗଲେ ଏଠି ଆମ ଲାଗି କିଏ ଝୁରି ହେବ ? ଏଠି ମଲେ ମଶାଟାଏ, ଭାରତରେ ମଲେ ହାତୀଟାଏ । ନିଜ ଲୋକଙ୍କ ଲାଗି କିଛି କରିଥିଲେ ସେମାନେ ଅନ୍ତେ ଗୁଣକୀର୍ତ୍ତି ବାହୁନି ହେବେ । କୋଟିକେ ଗୋଟିଏ ବାରି ହୋଇ ପଡ଼ୁଥିବା, ପର ମନ ଚିହ୍ନୁଥିବା ଲୋକଟି ଚାଲିଗଲା ବୋଲି କେହି ହେଲେ ଟୋପାଟିଏ ଲୁହ ଗଡ଼ାଇବେ ।

ଏଠି ବହୁ ଧନ ଅର୍ଜି ଛିଣ୍ଡି ଲାଭ କ'ଣ ? ପିଲାଏ ପିଇ ସବୁ ଉଡ଼ାଇ ଦେଇ ପାରନ୍ତି । ଅତି ସ୍ୱାର୍ଥପରତା ଯୋଗୁଁ ଏଠା ଭାରତୀୟ କଦାଚିତ ସ୍ୱଦେଶ ଲାଗି କିଛି କରନ୍ତି ନାହିଁ । ଓଲଟି କହନ୍ତି—ଆମ ଲାଗି କିଏ କ'ଣ କରିଥିଲା କି ? ଆମକୁ

ଅଭାବ ବେଳେ କିଏ ସାହାଯ୍ୟ ଦେଇଥିଲା ? ଆମେ କାହିଁକି କାହା ଲାଗି କ'ଣ କରିବୁ ?

ବହୁ ଶିକ୍ଷିତ ଓ ଅଭିଜ୍ଞ ହେବା ପରେ ଲୋକ ଯଦି ମୂର୍ଖ ଆଉ ସ୍ୱାର୍ଥାନ୍ଧ ପରି କାର୍ଯ୍ୟ କରେ, ଏହା ଅତି ଦୁଃଖର ବିଷୟ ବୋଲି କହିବା ।

ମେନକା ସୁନ୍ଦରୀ, ସୌଜନ୍ୟମୟୀ; ସେ ଘର ସଜାଡ଼ିଛନ୍ତି ନିଜ ରୁଚିରେ । ଘରେ ଚୀନା କାର୍‌ପେଟ୍, ଗ୍ରାନାଇଟ୍ ପଥର, ପିତ୍ତଳର ଛତ୍ର ଓ ଚନ୍ଦ୍ରାତପ, ବୃହତ୍ ଶିଙ୍ଗନିର୍ମିତ ବକ, ଚମ୍ପୁରେ ଚିଙ୍ଗୁଡ଼ି ମାଛ (କଟକୀ), ତାରକସୀ ଜଗନ୍ନାଥ, ଏକ ବୃହତ୍ ଘଣ୍ଟା—ବାଜିଲେ ଚର୍ଚ୍ଚ ଘଣ୍ଟା ବାଜିଲା ପରି ଶୁଭେ ।

୨୯ । ୯ । ୮୪; ଆଜି ବିଦାୟର ଦିନ । ମେନକା ଗୃହିଣୀପଣକୁ ହସି; କେତେକ ନୂଆ ଆଇଟେମ୍ କରି ଖୁଆଇଲେ । ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କଲା ଦ୍ୱିତୀୟ ଝିଅ ନମିତା, ମେନକା ନମିତା ବିଷୟରେ ଗୋଟିଏ କୌତୁକ କାହାଣୀ ଶୁଣାଇଲେ ।

ନମିତା ଥରେ ପିତୃଗ୍ରାମ ଦଶପଲ୍ଲାକୁ ଯାଇଥିଲା । ଶରତ୍ କାଳ । ଧୋଇଡ଼ି ଧାନ ଗାଢ଼ ସବୁଜ । ତାକୁ ଦେଖି ମୁଗ୍ଧ ହୋଇ ନମିତା କହିଲା—ମାମ୍, କି ସୁନ୍ଦର 'ଲନ୍' !

ମୁଁ ପଚାରିଲି—ମିତା, ଦଶପଲ୍ଲାରୁ ସାତକୋଶିଆ ଗଣ୍ଡ ଦେଖି ଯାଇଥିଲ ? ସେଠି କ'ଣ ଭଲ ଲାଗିଲା ?

'ସୂର୍ଯ୍ୟାସ୍ତ !'

'ସକାଳ ଆଠଟାରେ ଉଠେ । ମୋ ଦୁର୍ଭାଗ୍ୟକୁ ଆଠଟା ପରେ କେବେ ସୂର୍ଯ୍ୟୋଦୟ ହୋଇନାହିଁ !'

# ଏକୋଇଶି

## ଫିଲଡେଲ୍‌ଫିଆ—ଓ୍ୱାସିଂଟନ୍

ମନରେ କ୍ଷୋଭ, ମୁଖରେ ସୌଜନ୍ୟ ହସ; ଆମେ ବିଦାୟ ନେଲୁ । ମୋ ଷଢ଼ୁ ସୁଧାଂଶୁ ନିଜ ଗାଡ଼ିରେ ଲଙ୍ଗ୍ ଆଇଲାଣ୍ଡ୍‌ରୁ ଆମକୁ ନେଇ ଚାଲିଲେ ଫିଲାଡ଼େଲ୍‌ଫିଆ ।

ସୁଧାଂଶୁ ମିଶ୍ର ଏମ୍. ଏସ୍. ସି., ପି.ଏଚ୍. ଡି., ଲିନ୍‌ସଡ଼େଲ୍ ବାଟେରୀ କମ୍ପାନୀର ପ୍ରଜେକ୍ଟ ଅଫିସର; ସ୍ତ୍ରୀ ଚନ୍ଦ୍ରମଣି ଯେତିକି କଥାକହି, ସୁଧାଂଶୁ ସେତିକି ନୀରବ, ଗମ୍ଭୀର; ତାଙ୍କ ତୁଣ୍ଡରୁ କୌଣସି କଥା ସହଜରେ ଖସିଯାଏ ନାହିଁ । ସେ ବହୁତ ମାପିଚୁପି କଥା କହନ୍ତି, ହାତେ ମାପି ଚାଟଣ୍ଡେ ଚାଲନ୍ତି ।

ନ ପଚାରିଲେ କିଛି କହନ୍ତି ନାହିଁ, କାହା ସମସ୍ୟାରେ ହସ୍ତକ୍ଷେପ କରନ୍ତି ନାହିଁ । ତାଙ୍କ ପକ୍ଷରେ ଜୀବନ ଏକ ଅଙ୍କ ବହି । ଜୀବନର ବିଭିନ୍ନ ସମସ୍ୟା ଗୁଣନ ହରଣ ମିଶାଣ ଫେଡ଼ାଣର ସମସ୍ୟା । ଏ ସଂସାରର ବିଫଳତା ଅଙ୍କ କଷାକଷିରେ ଭୁଲ ହୋଇଯିବା ସମସ୍ୟା, ସଫଳତା ବା ସାର୍ଥକତା ଅଙ୍କର ଠିକ୍ ଫଳ ବାହାରିବା କଥା । ସଂସାରର ଦୁଃଖକଷ୍ଟ ଗଣନା ବିଭ୍ରାଟର ଫଳ ।

ସେ କଠୋର କର୍ତ୍ତବ୍ୟନିଷ୍ଠ, ଅଧ୍ୟବସାୟୀ, ଚାକିରିରେ ସୁଦକ୍ଷତାର ପରିଚୟ ଦେଇ ଆସିଛନ୍ତି । ଘରୋଇ କମ୍ପାନୀ; ବର୍ଷକେ ୧୪ ଦିନ ମାତ୍ର ଛୁଟି, ପୀଡ଼ା ଛୁଟି ୭ ଦିନ । କାଜୁଆଲ୍ ଛୁଟି ନାସ୍ତି । ୬୫ ବର୍ଷରେ ଅବସର ।

## ଚନ୍ଦ୍ରମଣି

ମୋ ସ୍ତ୍ରୀ ଛ' ଭଉଣୀ, ସବା ସାନ ଚନ୍ଦ୍ରମଣି, ଡାକ ନାମ ଚନ୍ଦୁ । ଚିକାଗୋ ଓଡ଼ିଆ ନାରୀ ମହଲରେ ତାର ଲୋକପ୍ରିୟ ନାମ ଚନ୍ଦ୍ରା ବା ଚନ୍ଦ୍ରାବତୀ । ବୟସରେ ସାନ, ବନ୍ଧୁ ମିଳନରେ ସବୁ କାମ ଆଗେଇ ଯାଇ କରେ, ତେଣୁ ସେ ଥିଲା ସମସ୍ତଙ୍କର ଆଖିଡ଼ୋଳା ପରି ପ୍ରିୟ ।

ମୋ ଶାଶୁଙ୍କର ମୁମୂର୍ଷୁ ଅବସ୍ଥାରେ ତାର ଜନ୍ମ । ଶୁଖିଲା ଥନକୁ ରୋଗିଣା କଙ୍କାଳ ଛାତିରୁ ଭିଡ଼ି ଆଣି ଶୋଷିଲା ବେଳେ ମୁଁ ରାଗିଯାଇ କହୁଥିଲି—ଏଇଟା କି ନିଲଠୀ ଝିଅ ! ମାଆ ଅବସ୍ଥା ଅଠାଠିକ୍; ମରଣ ଦୁଆରେ ପାଦଟିଏ ଥୋ

ସାରିଲାଣି । ଏ ନିଳିକ୍ଷୀ ଝାଶୁଛି, ଚିପୁଡ଼ୁଛି, ଝିଙ୍କୁଛି ! ଟୋପାଟିଏ ଦୁଧ ପାଟିକି ନ ଗଳିରୁ ରଡ଼ୁଛି । ସତେ ଯେପରି ମାଆ ଗତ ଜନ୍ମରେ ଋଣ ନେଇଥିଲା, ଜୀବନର ଶେଷ ନିଃଶ୍ୱାସ ଟୋପାକ ଦେଇ ଶୁଝୁଛି ।

ମାଆଛେଉଣ୍ଡ ଝିଅ, ଲାଳନାର ବନ୍ଧୁ ତୃଟିବିଚ୍ୟୁତିକ ବେଖାତିରେ କରି କାନ୍ଥବାଡ଼ ଧରି ଚାଲିଲା, ଗୁନ୍ଦିକଲା ପରି ବଢ଼ିଲା । ପୁନିଅ ଚାନ୍ଦ ପରି ଦିଶିବା ମାତ୍ରେ ସୁଧାଂଶୁ କାହିଁ ଥିଲା, ଝାମ୍ପି ନେଲା । ଦି ଭଉଣୀଙ୍କ ଦି ଭାଇ ବିଭା ହେଲେ । ଦି ଭଉଣୀ ଦି ଜାଆ ହୋଇ ଏକାଠି କାଳ କାଟିଛନ୍ତି କ୍ୱଚିତ୍ ।

ସୁଧାଂଶୁ ବମ୍ବେରେ କିଛିକାଳ ଚାକିରି କଲା ପରେ ଆମେରିକା ଗଲେ । ଚନ୍ଦ୍ର ଆତ୍ମ ଚେଷ୍ଟାରେ ବି. ଏ. ପାଶ୍ କଲା । ସର୍ବତୋଭାବେ ସହଧର୍ମିଣୀ, ସୁଧାଂଶୁଙ୍କର ଉପଯୁକ୍ତ ହେବା ଲାଗି ତା ଚେଷ୍ଟାର ଅନ୍ତ ନାହିଁ । ଆମେରିକା ଘରେ ଦୁହେଁ ନାମ ଧରି ଡକାଡକି ହୁଅନ୍ତି ।

ଏବେ ସୁଧାଂଶୁ ଚିକାଗୋରୁ ବଦଳି ହୋଇ ଫିଲାଡ଼େଲ୍‌ଫିଆ ଆସିଛନ୍ତି । ଚନ୍ଦ୍ର ଉଚ୍ଚତର ନର୍ସିଂ ପଢ଼ୁଛି ।

ତାର ଦୁଇଟି ପିଲା—ପୁଅଟିଏ, ଝିଅଟିଏ—ସୁକାନ୍ତ (ଡାକ ନାମ ବବି), ସୀମା ।

ପିଲାଙ୍କୁ ପାଳି ମଣିଷ କରିବା, ବଜାରହାଟ, ରନ୍ଧାବଢ଼ା ଆଦି ଯାବତୀୟ କର୍ମ କରିବା ସଙ୍ଗେ ସଙ୍ଗେ ଆତ୍ମୋନ୍ନତିର ସବୁ ଦୁଆର, ଝରକା ସେ କିଳି ଦେଇ-ନାହିଁ । ସେ ନିଜକୁ ବଢ଼ାଇ ଚାଲିଛି ବଡ଼ାଇଶୂନ୍ୟ ଭାବରେ ।

ତାର ବଡ଼ ଭଉଣୀମାନେ ଉତ୍ତମ ସ୍ୱାମୀ ପାଇଛନ୍ତି । ସମସ୍ତେ ସୁଗୃହିଣୀ, ସୁଖଶାନ୍ତିରେ ଅଛନ୍ତି । କିନ୍ତୁ ନିଜ ଗୋଡ଼ରେ ଛିଡ଼ା ହୋଇ ଯୋଗ୍ୟତା ହାସଲ କରିବାରେ ଗୋଟାଏ ସ୍ୱତନ୍ତ୍ର ଗୌରବ, ଯାହା ପାଖ ଅନ୍ୟମାନେ ମାଡ଼ି ପାରି-ନାହାନ୍ତି ।

ସେ ଆମ କଟକ ବସାରେ ରହି ମାଟ୍ରିକ୍ ପଢ଼ୁଥିଲା । ଲତା ତାକୁ କଡ଼ା ଶାସନ ଭିତରେ ରଖି ମଣିଷ କରିଥିଲା । ବନ୍ଧୁବତ୍ସଳତା, ସ୍ନେହାଦରର ଆନ୍ତ-ରିକତା ଓ ଉଦାରତା ଦିଗରୁ ଲତା ପାଞ୍ଚଭଉଣୀଙ୍କ ସର୍ବୋପରି ଥିଲା, ଯଦି ବା ଗୃହିଣୀପଣରେ ଅନ୍ୟମାନେ ତାକୁ ନାନାଭାବେ ବଳି ଯାଇଥିଲେ । ଚନ୍ଦ୍ର ବଡ଼ ଭଉଣୀକୁ ମାଆ ପରି ଭକ୍ତି କରୁଥିଲା । ତାର ସେ ଭାବ ଏବେ ବି ଯାଇନାହିଁ ।

ଗେଲ ଗୌରବମୟୀ ସାନ ଶାଳୀଟି ମୋର କବିତାଟିଏ ହରଣଚାଲ୍ କରି ନେଇ ମୋ କବିତାକୁ ସ୍ୱତନ୍ତ୍ର ଗୌରବ ଦେଇଥିଲା । ସେ ବିଷୟରେ ହାସ୍ୟ-ରସାତ୍ମକ କବିତାଟିଏ ମୁଁ ଲେଖିଥିଲି ।

ତା ମଧୁର ସଂସାରର ସ୍ୱାଦ ମୁଁ ଏଇ ପ୍ରଥମ ପାଇଲି । ମୋ ନିଜ ରୁଚିର ଖାଦ୍ୟ ଗଣ୍ଡି ସେ ଖୁଆଇଛି । ତା ବ୍ୟସ୍ତତାର ସୀମା ନାହିଁ । ଏଣେ କ୍ଲାସ୍, ତେଣେ ଘର ପାଇଁକି, ତା ଭିତରେ ଆମକୁ କେମିତି କୁଆଡ଼େ ବୁଲାଇ ନେବ, ମନରେ ଭାବନା । ଲତା ତା ହାତରୁ ରନ୍ଧାବଢ଼ା କାର୍ଯ୍ୟଟି କାଢ଼ି ନେଇଛି, ଯେମିତି ସେଣ୍ଟ୍‌ଲୁଇସ୍‌ରେ ଇସି ହାତରୁ ନେଇଥିଲି ।

ଚନ୍ଦୁ ମନରୁ ସେ କାଳ ଜବିତାର ସମସ୍ତ ଭାବ ହଜି ଯାଇଛି, ସ୍ୱପ୍ନ ମରି ଯାଇଛି, ସେ ଏବେ ପୂରାପୂରି ବାସ୍ତବିକ । ଆନାଟମୀ ପଢ଼ୁଛି । କହୁଛି—ଏ ଦେହରେ ୨୦୬ ଖଣ୍ଡି ହାଡ଼ ଅଛି । ମୁଣ୍ଡରେ କେତେ, ମୁହଁରେ କେତେ, ହାତ ଗୋଡ଼ ଆଉ ମେରୁଦଣ୍ଡରେ କେତେ, ତାର ହିସାବ ମୋତେ ଦେଉଛି, ଏ ସପ୍ତାହରେ ତାର ପରୀକ୍ଷା । ଏ ସଂସାରର ଆନାଟମୀ ତା ଆଖିରେ ନାଚୁଛି ।

ସେ କହୁଛି—ଏଠି ସମସ୍ତେ ଲାଗିଛନ୍ତି ଅତ୍ୟାଧୁନିକ ତତ୍ତ୍ୱ ବଖାଣିବାରେ, ତା ନ ହେଲେ ଡାକ୍ତର ରୋଗୀମାନଙ୍କରୁ ତଡ଼ା ଖାଇ ଯିବ । ଶିକ୍ଷକଙ୍କୁ ବି ସ୍କୁଲରୁ ବିଦାୟ ନେବାକୁ ହେବ । ଆଳସ୍ୟର ସ୍ଥାନ ଏଠି ନାହିଁ । ପତ୍ରପତ୍ରିକା ଓ ଅତ୍ୟାଧୁନିକ ପୁସ୍ତକସବୁ ପଢ଼ିବାକୁ ହେବ, ଅଜ୍ଞାନତାର କ୍ଷମା ନାହିଁ । ତେଣୁ ଇଞ୍ଜିନିୟର ହେଲେ ବି ସୁଧାଂଶୁ ଗାଡ଼ିମତ ପଢ଼ୁଛନ୍ତି । ଉଦ୍ଭାବିତ ଆଧୁନିକତମ ତତ୍ତ୍ୱ କାର୍ଯ୍ୟରେ ଲଗାଇ କମ୍ପାନୀକୁ ଲାଭବାନ୍ କରିବାକୁ ହେବ । ତା ନହେଲେ ସେମିତି ପଡ଼ିଥିବ, ପ୍ରମୋଶନ୍ ହେବ ନାହିଁ । ତେଣୁ ଗ୍ରାହକଙ୍କଟିଏ ପାଇଗଲେ ଯଥେଷ୍ଟ ନୁହେଁ । ତାକୁ ରଖିବା ଲାଗି ପ୍ରାଣପାତ ପରିଶ୍ରମ କରିବାକୁ ହେବ, ଅବସର ନେବା ପର୍ଯ୍ୟନ୍ତ ।

ଏଠି ଆପେ ଭଲ ରହିଲେ ଦୁନିଆଁ ଭଲ । ସ୍ୱଦେଶ ବା ବନ୍ଧୁବାନ୍ଧବଙ୍କ କଥା ଭାବିବାକୁ ଅବସର କାହିଁ ? କାଲି ପରି ମନିଷ ଗଲେ ।

କାହିଁକି ଏ ପାଇଁ ?

ଗଲା ବର୍ଷ ଚନ୍ଦୁ ବ୍ରିଜ ୱାଇନାର ନିଆ ସମୁଦ୍ରକୂଳ (ପୁରୀ) ଘରେ ଏକମାତ୍ର ପୁତ୍ର ବିଭାର ବ୍ରତଘର କରିଥିଲି । ଆମେରିକା ପଇସା, ପୁରୋହିତଙ୍କର ତେଣୁ ଅଧିକ ଦାବି, ଗ୍ରାହକରବାକର, ବନ୍ଧୁବାନ୍ଧବ, ବେଠିଭୂଲ, ଟହଲିଆ ସମସ୍ତଙ୍କର ବଡ଼ ବଡ଼ ଆଖି, ଚନ୍ଦୁ ବି କାହାକୁ ନିରାଶ କରି ନ ଥିଲା । ଖର୍ଚ୍ଚ ପ୍ରତି ଆଖି ବୁଜି ଦେଇଥିଲି ।

ସାହେବ ଛୁଆପରି ଗୋରା ଚକ୍ ଚକ୍ ବଟୁ ହୋମ ଧୂଆଁର ଧାସରେ ଅଚେତା ହୋଇ ପଡ଼ିଥିଲା । ଆମେରିକାରୁ ବହୁ ଖର୍ଚ୍ଚାନ୍ତ ହୋଇ ଆସି ଏ ବ୍ରତଘର ।

ବଷୀର କାନ୍ଧ ଖାଲି ଦେଖି ପଚାରିଲି—ତୋ ପଇତା କାହିଁ ? ଧୋବା ଘରେ ପକାଇଛୁ ନା ଇସ୍ତ୍ରୀ କରିବାକୁ ଦେଇଛୁ ?

ବଷୀ ମମୀ ମୁହଁକୁ ଚାହିଁଲା । ଓଡ଼ିଆ ବୁଝୁଛି, କହିପାରୁ ନାହିଁ । ଇଂରାଜୀରେ ମୋ ପ୍ରଶ୍ନର ଉତ୍ତର ଦେଲା—ମମୀ ଦାଷ୍ଟିନ୍ବରେ ଅଛି ଡ୍ର, ଭିତରେ ।

କ'ଣ ବ୍ରହ୍ମ ପଇତାକୁ ଡ୍ର ଭିତରେ ରଖିଛୁ ?

ମଜା କରିବାକୁ ଏମିତି କହିଦେଲି ସିନା, ମନରେ ଭାବିଲି—କୋଉ ବ୍ରାହ୍ମଣ ପିଲା ଆମେରିକାରେ ପଇତା ରଖିଛି ? ତାର ମାନେ—କିଛି ଅର୍ଥ ନ ବୁଝି କାହିଁକି ବା ରଖିବ ? ଭାରତବର୍ଷ ଓ ଓଡ଼ିଶାରେ ବି ସେଇ ଦଶା । ତେବେ କାହିଁକି ଏ ପାଳି ଚାଲିଛି ?

ଲଙ୍ଗ୍ ଆଇଲାଣ୍ଡ୍‌ରୁ ପେନ୍‌ସିଲ୍‌ଭାନିଆଁ ୧୩୦ ମାଇଲ୍ ଦୂର, ସାଢ଼େ ତିନିଘଣ୍ଟା ଲାଗେ । ଆମେ ନିଉୟର୍କ୍‌ର ସହରତଳୀ ଅଞ୍ଚଳ ପାର୍ ହୋଇ ପହଞ୍ଚିଥିଲୁ ନିଉଜେରେସି ରାଜ୍ୟରେ । ତାପରେ ଡେଲ୍‌ଓ୍ୱାର୍ ନଦୀ ପାର୍ ହୋଇ ପେନ୍‌ସିଲ୍-ଭାନିଆଁ ରାଜ୍ୟରେ ।

ଶୀତଋତୁର ଅସ୍ତମାରମ୍ଭ । ଅକ୍ଟୋବର ବୋଲି ହେଲା ପର ଦିଶୁଛନ୍ତି କେତେ ଗୁଳ୍ମ । କେତେ ଗଛ ସୁନା ପାଣିରେ ଧୂଆ, ଗାଢ଼ ଲାଲ୍, ଫିକାଲାଲ୍, ହଳଦିଆ-ଲାଲ୍, ଗାଢ଼ ସବୁଜ ପାଇନ୍ ଆଉ ଏଭରଗ୍ରିନ୍ ମଧ୍ୟରେ ।

ଆମେରିକାର ପଞ୍ଚମ ବୃହତ୍ତମ ନଗର ଫିଲାଡେଲ୍‌ଫିଆ । ଆମେରିକାର ସ୍ୱାଧୀନତାର ଜନ୍ମଭୂମି, ପବିତ୍ର ତୀର୍ଥକ୍ଷେତ୍ର, ପ୍ରଥମ ରାଜଧାନୀ । ତେଣୁ ଏହି ନଗର ପ୍ରତି ଆମର ଗଭୀର ଶ୍ରଦ୍ଧା ।

ଏହି ନଗର ସୁଧାଂଶୁଙ୍କ ଘରଠାରୁ ୪୦ ମାଇଲ୍ ଦୂର । ଶନିବାର ଦିନ ନିଉୟର୍କ୍‌ରୁ ଆସିଲୁ । ଆଜି ରବିବାର । ସୁଧାଂଶୁ ଆମକୁ ଫିଲାଡେଲ୍‌ଫିଆ ଘେନିଗଲେ ।

ପହିଲେ ଡେଲ୍‌ଓ୍ୱାର୍ ନଦୀର ପ୍ରସାରିତ ବକ୍ଷ ଉପରେ ଆଖି ପକାଇଲି । ସେପାଖେ ନିଉଜେରେସୀର ସୌଧମାଳା, ଏ ପାଖେ ପେନ୍‌ସିଲ୍‌ଭାନିଆଁ ଓ ତାର ରାଜଧାନୀ ଫିଲାଡେଲ୍‌ଫିଆ । ଡେଲ୍‌ଓ୍ୱାର୍ ନଦୀ ଦୁଇ ରାଜ୍ୟର ସୀମା । ଫିଲା-ଡେଲ୍‌ଫିଆ ବନ୍ଦରରେ ବହୁ ପୋତ ଭିଡ଼ ଜମେଇଛନ୍ତି । ଆଟ୍ଲାଣ୍ଟିକ ମହା-ସାଗରରେ ଏଠାରୁ ୫୦ ମାଇଲ୍ ଦୂରରେ ଡେଲ୍‌ଓ୍ୱାର୍ ନଦୀ ପଡ଼ିଛି ।

**ଏ କଣ ଥିଲ ?**

ଫିଲାଡେଲ୍‌ଫିଆ ଥିଲ ଗୋଟିଏ ବଡ଼ ଗ୍ରାମ । ବିଭିନ୍ନ ଫଳ ନାମରେ ଏହାର ରାସ୍ତାସବୁ ନାମିତ ହୋଇଥିଲା—ଯଥା ଆପଲ୍‌ଷ୍ଟ୍ରିଟ୍ ? ଚେଷ୍ଟ୍‌ନଟ୍ ଷ୍ଟ୍ରିଟ୍, ଓ୍ୱାଲନଟ ଷ୍ଟ୍ରିଟ୍, ଯେପରି ବିଭିନ୍ନ ଧାନ, ପରିବା ବା ଡ଼ାଲି ନାମରେ ଓଡ଼ିଶାରେ ବ୍ୟକ୍ତି ନାମିତ ହୁଅନ୍ତି, ଯଥା ଭୁତିଆ, ମୋଟରି, ନାଣ୍ଡୀ, ଡାଳିପୋହଳା, ବରଗଡ଼ା, ପୋଟଳ, ହରଡ଼ ଇତ୍ୟାଦି ।

ଓଡ଼ିଶାର ବଡ଼ ଗ୍ରାମମାନଙ୍କରେ ଯେପରି, ଏଠି ସେହିପରି ସପ୍ତାହକେ ଦୁଇଥର ହାଟ ବସୁଥିଲା, ତଟକା ପନିପରିବା, ମାଛ ମାଂସ ମିଳୁଥିଲା ।

ଫିଲଡେଲ୍‌ଫିଆ କଟକ ପରି ନଳାନର୍ଦ୍ଦମା, ମଶା ମାଛିରେ ଭରି । ଏଠି ସେଠି ଅଳିଆ ଆବର୍ଜନା, ନଳା ପଙ୍କ ଗଦା, ବୁଲା କୁକୁର, ବିରାଡ଼ିଙ୍କର ଶବ ଏଠି ସେଠି ପଚି ଚତୁର୍ଦ୍ଦିଗ ଦୁର୍ଗନ୍ଧମୟ କରିଥିଲା । ବଜାର ଭିତରେ ଦଳ ଦଳ ଘୁଷୁରି ମଇଳା ଘାଣ୍ଟୁଥିଲେ ।

**କଣ ହେଲ !**

ଏଇ ସ୍ଥାନରେ ବେନ୍‌ଜାମିନ୍ ଫ୍ରାଙ୍କ୍‌ଲିନ୍‌ଙ୍କର ଆବିର୍ଭାବ ଘଟିଲା । ମହାନ୍ ସାଧକ, କର୍ମନିଷ୍ଠ ବ୍ୟକ୍ତି । ଅଳ୍ପକାଳ ମଧ୍ୟରେ ସେ ଏହି ସ୍ଥାନର ଚେହେରା ବଦଳାଇ ଦେଲେ ।

ସେ ପହିଲେ ଏଠି ଛାପାଖାନାଟିଏ ବସାଇଲେ, 'ପେନ୍‌ସିଲ୍‌ଭାନିଆଁ ଗେଜେଟ୍' ବୋଲି ଗୋଟିଏ ସମ୍ବାଦପତ୍ର ପ୍ରକାଶ କଲେ । ଏଥିରେ ସୁନାମ ହେଲା; ଏତେ ପଇସା ମିଳିଲା ଯେ ଜୀବନରେ ଆଉ ତାଙ୍କୁ କୌଣସି ଅର୍ଥୋପାର୍ଜନ କରିବାକୁ ପଡ଼ିଲାନାହିଁ । ସେ ଲାଇବ୍ରେରୀରେ ବସି ବହୁ ଅଧ୍ୟୟନ କଲେ, ସୁପଣ୍ଡିତ, ଦାର୍ଶନିକ ଓ ରାଜନୀତିକ ଭାବେ ପ୍ରତିଷ୍ଠା ଲାଭ କଲେ ।

ତାଙ୍କ ଜୀବନର ପ୍ରଥମ ଲକ୍ଷ୍ୟ ହେଲା—ଫିଲାଡେଲ୍‌ଫିଆର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା । ସେ ଚିକିତ୍ସାଳୟଟିଏ ସ୍ଥାପନ କଲେ । ତାଙ୍କ ପ୍ରତିଷ୍ଠିତ ଫିଲଡେଲ୍‌ଫିଆ ଏକାଡ଼େମୀ 'ପେନ୍‌ସିଲ୍‌ଭାନିଆଁ' ଇଉନିଭର୍‌ସିଟି ନାମରେ ପରିଚିତ ହେଲା । ସେ ଏହି ସହରରେ ପ୍ରଥମ ଅଗ୍ନି ନିର୍ବାପକ ସଂସ୍ଥା ଓ ଫାୟାର୍ ଇନ୍‌ସୁରେନ୍‌ସ କମ୍ପାନୀ ସ୍ଥାପନ କଲେ । ଏହି ପ୍ରକାରେ ତାଙ୍କ ଅକ୍ଳାନ୍ତ ଚେଷ୍ଟା ଫଳରେ ଫିଲଡେଲ୍‌ଫିଆ ସେ କାଳ ଆମେରିକାର ସର୍ବଶ୍ରେଷ୍ଠ ନଗରୀରେ ପରିଣତ ହେଲା ଓ ପରବର୍ତ୍ତୀ କାଳରେ ସ୍ୱାଧୀନ ଆମେରିକାର ରାଜଧାନୀ ଲାଗି ଉପଯୁକ୍ତ ସ୍ଥାନ ବୋଲି ବିବେଚିତ ହେଲା ।

ଆମେରିକା ଉପନିବେଶର ବିଭିନ୍ନ ଜଟିଳ ସମସ୍ୟା ସମାଧାନ ଲାଗି ସେ ମାତୃଦେଶ ଗ୍ରେଟବ୍ରିଟେନ୍‌କୁ ନିବେଦନ କରୁଥିଲେ । ଗ୍ରେଟ୍‌ବ୍ରିଟେନ ଏଥିରେ କର୍ଣ୍ଣପାତ ନ କରିବାରୁ ସେ ଉପନିବେଶବାସୀମାନଙ୍କୁ ଏକଜୁଟ୍ କରିବା ଲାଗି ଯୋଜନା ପ୍ରସ୍ତୁତ କରିଥିଲେ । ସୁସଂଗଠିତ, ନୂତନ ଦେଶର ସେନାପତି ଭାବେ ଜର୍ଜ ଓ୍ୱାସିଂଟନ୍ ନିଯୁକ୍ତ ହୋଇଥିଲେ; ବେନ୍‌ଜାମିନ୍ ତାଙ୍କୁ କାଳୋପଯୋଗୀ ପରାମର୍ଶ ଦେଉଥିଲେ ।

ସ୍ୱାଧୀନତା ଘୋଷଣା ଲାଗି ଯେଉଁ କମିଟି ଗଠିତ ହୋଇଥିଲା, ସେଥିରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପ୍ରଥମେ ଇଂଲଣ୍ଡ୍‌ର ଦ୍ରବ୍ୟ ବୟ୍କଟ୍ କରାଯାଇଥିଲା ।

## ସ୍ୱାଧୀନତା ହଲ୍

ଯେଉଁ ଘରେ କଂଗ୍ରେସ ସଭ୍ୟ ଉପନିବେଶର ଦୁଃଖଦୂରୀକରଣ ଲାଗି ସମ୍ରାଟ ଜର୍ଜ ତୃତୀୟଙ୍କୁ ନିବେଦନ ଲିପିବଦ୍ଧ କରିଥିଲେ, ତାହା 'ସ୍ୱାଧୀନତା ହଲ୍' ନାମରେ ନାମିତ । ୧୭୭୬ ଖ୍ରୀଷ୍ଟାବ୍ଦରେ ତେରେଟି ବିପ୍ଳବୀ ଉପନିବେଶ ରାଜ୍ୟ ଏହି ହଲ୍‌ରେ ସ୍ୱାଧୀନତା ଘୋଷଣା କରିଥିଲେ । ଜର୍ଜ୍ ଓ୍ୱାସିଂଟନ୍ ଏହି ସମିତିରେ ସଭାପତିତ୍ୱ କରିଥିଲେ ।

ଆମେ ସେଇ ହଲ୍‌ରେ ଯାଇ ବସିଲୁ । ଯେତେବେଳ ଯାଏ ଲୁହାମୁନ କଲମ ପ୍ରଚଳିତ ହୋଇ ନ ଥିଲା । ପରକଲମରେ ଯାବତୀୟ ଲେଖାଲେଖି କାର୍ଯ୍ୟ ହେଉଥିଲା ।

ଯେଉଁ ପରକଲମରେ ସ୍ୱାଧୀନତା ଘୋଷଣା ବାକ୍ୟସବୁ ଲିପିବଦ୍ଧ ହୋଇ-ଥିଲା, ତେରେଟି ଉପନିବେଶ ତେରେଟି ପ୍ରଦେଶରେ ପରିଣତ ହୋଇଥିଲେ ଓ ପ୍ରତିନିଧିଗଣ ଜଣ ଜଣ କରି ଦସ୍ତଖତ କରିଥିଲେ, ସେହି କଲମ ଓ କାଳିଘଡ଼ି ମୂଲ୍ୟବାନ୍ ସ୍ମୃତି ଭାବେ ସଂରକ୍ଷିତ ହୋଇଅଛି ।

୧୭୬୫ରେ ବ୍ରିଟିସ୍ ପାର୍ଲିମେଣ୍ଟ୍‌ରେ ଷ୍ଟାମ୍ପ୍ ଆକ୍ଟ୍ ପାସ୍ ହେଲା । ଫଳରେ ଆମେରିକାରେ ଯାବତୀୟ ବ୍ୟବହାର୍ଯ୍ୟ ଦ୍ରବ୍ୟ, ଏପରିକି ସାଧାରଣଙ୍କ କ୍ରୀଡ଼ା ସାମଗ୍ରୀ ତାସ୍‌ମୁଠା ଉପରେ ଟିକସ୍ ବସିଲା । ଆମେରିକାବାସୀମାନେ ଜିଦ୍ ଧରି ବସିଲେ—ବ୍ରିଟିସ୍ ପାର୍ଲିମେଣ୍ଟ୍‌ରେ ଆମର କୌଣସି ନିର୍ବାଚିତ ପ୍ରତିନିଧି ନାହାନ୍ତି । ତେଣୁ ଆମ ବିନା ଅନୁମୋଦନରେ ପାସ୍‌କରା ଆଇନ୍ ଆମେ ମାନିବୁ ନାହିଁ, ଯାହା ମନ ତା ହେଉ ପଛକେ ।

୧୭୬୭ରେ ସେମିତି ଆଉ ଗୋଟିଏ ଆଇନ୍ ପାସ୍ ହେଲା । ଫଳରେ କାଗଜ, କାଚ, ରଙ୍ଗ, ଚା ଉପରେ ଶାସକ ଟିକସ୍ ବସାଇଲେ । ଆମେରିକାରେ ସେସବୁ ଦ୍ରବ୍ୟର ଦର ହୁହୁ ହୋଇ ବଢ଼ିଗଲା । ଇଂରେଜ ଇଷ୍ଟ୍ ଏଣ୍ଡିଆ କମ୍ପାନୀ ଆମେରିକାରେ ଏକଚାଟିଆ ବ୍ୟବସାୟ ଅଧିକାର ଲାଭ କଲା । ଆମେରିକାବାସୀମାନେ ବଷ୍ଟନ୍ ବନ୍ଦରରେ ଚା ପେଟିସବୁ ଖଲାସ୍ ନ କରି ରାଗରେ ସମୁଦ୍ର ଭିତରକୁ ଫିଙ୍ଗିଦେଲେ ।

ତା ପ୍ରତିବାଦରେ ପାର୍ଲାମେଣ୍ଟ୍ "ବଷ୍ଟନ୍ ଟି ଆକ୍ଟ୍" ପାସ୍ କଲା ଓ ଚା'ର କ୍ଷତି ପୂରଣ ନ ହେଲା ପର୍ଯ୍ୟନ୍ତ ବଷ୍ଟନ୍‌ରେ ସବୁ ବାଣିଜ୍ୟବ୍ୟବସାୟ ବନ୍ଦ କରିଦେଲା ।

ତାର ପ୍ରତିବାଦରେ ଆମେରିକାବାସୀ ଘୋଷଣା ପ୍ରକାଶ ପାଇଲା—ଗୋଟିଏ ଉପନିବେଶ ଉପରେ ଆକ୍ରମଣ ଅର୍ଥ ସମଗ୍ର ଆମେରିକା ଉପରେ ଆକ୍ରମଣ ।

ଥୋମାସ୍ ଜେଫରସନ୍ ଏଇ ଘୋଷଣା କାଳରେ ଉଦ୍ଧୃତ ଭାବେ କହିଲେ—ତି କଥାରୁ କଥାଏ କରି—ମୋତେ ସ୍ୱାଧୀନତା ଦିଅ ଅଥବା ମାରିଦିଅ । ଦାସତ୍ୱ ଆମ ପକ୍ଷେ ଅସହ୍ୟ ।

ଆଶ୍ଚର୍ଯ୍ୟ କଥା—ବଷ୍ଟନ୍‌ରେ ବିପ୍ଳବ ଦମନ ଚେଷ୍ଟାରେ ବ୍ରିଟେନ୍ ପରାସ୍ତ ହେଲା, ଫଳରେ ଆମେରିକାବାସୀ ସାହସ ବଢ଼ିଲା ।

## ମହାନ୍ ସାଧକ ଜର୍ଜ୍ ଓ୍ୱାସିଂଟନ୍

ଶୃଙ୍ଖଳିତ ସୈନ୍ୟ ବାହିନୀ ନାହିଁ । ଅସ୍ତ୍ର ଶସ୍ତ୍ର ନାହିଁ, ପୋଷାକପତ୍ର ନାହିଁ, ଖାଦ୍ୟପେୟ ନାହିଁ । ଓ୍ୱାସିଂଟନ୍ ଶୂନ୍ୟରୁ ହିଁ ଆରମ୍ଭ କଲେ ।

ପାହାଡ଼ ଅରଣ୍ୟଘେରା ପ୍ରାକୃତିକ ଦୁର୍ଗ 'ଫୋର୍ଜ' ତାଙ୍କର ସାଧନାକ୍ଷେତ୍ର, ସହରରୁ ଦୂରବର୍ତ୍ତୀ, ପଥ ନାହିଁ । ୧୭୭୭-୭୮ର ଦୁରବସ୍ଥା । ତେରୋଟି ଦରିଦ୍ର ପ୍ରଦେଶ ପ୍ରବଳ ପରାକ୍ରାନ୍ତ ବ୍ରିଟିସ୍ ଶକ୍ତିର ସମ୍ମୁଖୀନ—ବହୁ ରଣକ୍ଷେତ୍ରରେ ପରାସ୍ତ, କ୍ଳାନ୍ତ, ପଳାୟିତ; ଘୋର ଶୀତକାଳ; ଶୀତବସ୍ତ୍ର ନାହିଁ, ଘରଦ୍ୱାର ନାହିଁ । ଭୂମି ଉପରେ ଛ'ଇଞ୍ଚ୍ ବରଫ; ପ୍ରଚଣ୍ଡ ତୁଷାର ଝଡ଼, ଚତୁର୍ଦ୍ଦିଗ କୁଜ୍‌ଝଟିକାରେ ଆଚ୍ଛନ୍ନ ।

ଗ୍ରେଟ୍‌ବ୍ରିଟେନ୍‌ର ସେନାପତି ସାର୍ ଉଇଲିୟମ୍ ହାଓ୍ୱେ ଚେସାପିକ୍ ଉପସାଗର ଅଧିକାର କଲା ପରେ ରାଜଧାନୀ ଫିଲାଡେଲ୍‌ଫିଆ ତାଙ୍କ ପ୍ରଭାବ ପରି-ସରକୁ ଆସିଗଲା । ତାଙ୍କର ସମ୍ମୁଖୀନ ହୋଇ ନ ପାରି ଜର୍ଜ ଓ୍ୱାସିଂଟନ୍ ୧୮ ମାଇଲ୍ ଦୂରବର୍ତ୍ତୀ ଫୋର୍ଜ ଉପତ୍ୟକାରେ ଆଶ୍ରୟ ଗ୍ରହଣ କରିଥିଲେ ।

ସେହି ଉପତ୍ୟକାରେ ଦୁଇ ଗୋଟି କ୍ଷୁଦ୍ର ନଦୀ ପ୍ରବାହିତ—ସ୍କୁଲ୍‌କିଲ୍, କ୍ରିକ୍ । ଉଭୟ ନଦୀର ପାଣି ଶୀତ ଦିନେ ଜମାଟ ବାନ୍ଧିଥିଲା, ବିଗଶ୍ରୀସ୍ତ, ଅନ୍ନ ବସ୍ତ୍ରହୀନ, ବିଗଣା ଜର୍ଜରିତ ତାଙ୍କ ସୈନ୍ୟବାହିନୀର ଦୁଇ ହଜାର ସୈନିକ ନିମୁନିଆଁ, ଟାଇଫଏଡ୍ ଓ ଡ଼ିସେଣ୍ଟ୍ରିରେ ପ୍ରାଣତ୍ୟାଗ କଲେ । ହିତଦମ୍ଭ ଏହି ବାହିନୀକୁ କିପରି ଟ୍ରେନିଂ ଦେଇ ଆଧୁନିକ ବାହିନୀରେ ପରିଣତ କରିବେ, ଓ୍ୱାସିଂଟନ୍ ଚିନ୍ତାରେ ନିମଗ୍ନ ଥାନ୍ତି । ଜର୍ମାନ୍ ସମ୍ରାଟ ଫେଡ୍ରେରିକ୍, ଦି'ଗ୍ରେଟ୍-ଙ୍କର ଜଣେ ସାହସୀ ସୈନିକ ଈଶ୍ୱରପ୍ରେରିତ ବନ୍ଧୁ ସେଠି ଆସି ପହଞ୍ଚିଲେ । ଚେହେରା ଦେଖି ବୁଝିପାରିଲେ ଓ୍ୱାସିଂଟନ୍—ମନର ମଣିଷଟି ଏହି, ଯେ ତାଙ୍କ ଲକ୍ଷ୍ୟ ସିଦ୍ଧ କରିପାରିବ ।

ଭନ୍ ଷ୍ଟିଉବେନ୍ ଇଂରାଜୀ ଭାଷା ଅନଭିଜ୍ଞ; ଜର୍ମାନ୍ ଭାଷାରେ ପ୍ରକାଶିତ ତାଙ୍କ ମନୋଭାବ ସଙ୍ଗେ ସଙ୍ଗେ ଇଂରାଜୀରେ ଅନୁବାଦ କରିବା ବ୍ୟବସ୍ଥା କରାଗଲା ।

ଏପରି ଜଣେ ଅଧ୍ୟବସାୟୀ ବ୍ୟକ୍ତି ପ୍ରକୃତରେ ଦୁର୍ଲଭ, ତାଙ୍କ ଲାଗି ସେନାପତିଙ୍କ ଅନ୍ତର ଆଶା ଓ ଆତ୍ମବିଶ୍ୱାସରେ ଭରି ଉଠିଲା । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଷ୍ଟିଉବେନ୍‌ଙ୍କ ପାଟି ଶୁଣା ଯାଉଥିଲା ।

କାଠଗଡ଼ କାଟି ତା ଉପରେ ତା ଉପରେ ନଦା ଘର କରାଗଲା । ପ୍ରତି ଘରେ ତିନି ମହଲା ଖଟ ଗଢ଼ାଗଲା, ଯେପରି ଅନେକ ସୈନିକ ଗୋଟିଏ କୋଠରୀରେ ବିଶ୍ରାମ ନେଇ ପାରିବେ । ଘର ଗରମ ରଖିବା ଲାଗି ଚୂଲ୍ଲୀ ତିଆରି ହେଲା । ଏହି ପ୍ରକାରେ ତୁଷାର ଝଡ଼ ମଧ୍ୟରେ ସମସ୍ତ ସୈନ୍ୟ ଓ ସେନାପତିଙ୍କ ଲାଗି ଆଶ୍ରୟସ୍ଥଳ ଗଢ଼ାଗଲା; ଜର୍ଜ ଓ୍ୱାସିଂଟନ୍‌ଙ୍କ ଲାଗି ଶ୍ରେଷ୍ଠ ଦିତାଲା କୋଠା ଓ ପୁରୁଣା ଧରଣର ରୋଷାଇ ଘରଟିଏ ଥିଲା ।

ଟ୍ରେନିଂପ୍ରାପ୍ତି ପରେ ଏହି ସୈନିକମାନଙ୍କ ନିକଟରେ ଉପଯୁକ୍ତ ଖାଦ୍ୟପେୟ, ବସ୍ତ୍ର, ଔଷଧ ଓ ଅସ୍ତ୍ରଶସ୍ତ୍ର ଆସି ପହଞ୍ଚିଲା । ଫ୍ରାନ୍‌ସ ସହିତ ଆମେରିକାର ସନ୍ଧି ପରେ ଏହି ସାହାଯ୍ୟ ମିଳିଥିଲା । ବ୍ରିଟିସ୍ ସେନାପତି କିପରି ସୁରାକ୍ ପାଇଲେ କେଜାଣି, ସେ ଓ୍ୱାସିଂଟନ୍‌ଙ୍କ ମୁହାଁମୁହିଁ ନ ହୋଇ ଭୟରେ ପଳାୟନ କଲେ । ଓ୍ୱାସିଂଟନ୍ ସସୈନ୍ୟେ ଏହି ପଳାୟିତ ବାହିନୀର ପଶ୍ଚାତ୍ ଧାବନ କଲେ, ନିଉୟର୍କ୍ ପର୍ଯ୍ୟନ୍ତ ।

ବ୍ରିଟେନ୍ ସହିତ ଆମେରିକାର ଯୁଦ୍ଧ ପ୍ରାୟ ୫ବର୍ଷ କାଳ ଲାଗିରହିଥିଲା । ଓ୍ୱାସିଂଟନ୍‌ଙ୍କର ଏହି ବାହିନୀ ରଣ କ୍ଷେତ୍ରରେ ଅପୂର୍ବ କୌଶଳ ପ୍ରଦର୍ଶନ କଲେ ।

ନିଉୟର୍କ୍‌ରେ ଅବସ୍ଥାପିତ ବ୍ରିଟିସ୍ ସମ୍ରାଟ୍ ଜର୍ଜ ତୃତୀୟଙ୍କ ଲୌହ ମୂର୍ତ୍ତିକୁ ଭାଙ୍ଗି ସେଥିରେ ବନ୍ଧୁକ ତିଆରି କରି ବ୍ରିଟିସ୍ ବାହିନୀକୁ ଶୋଚନୀୟ ଭାବେ ପରାସ୍ତ କରିଥିଲେ ।

ବିପ୍ଳବ ଓ ଯୁଦ୍ଧ କାଳରେ ଫୋର୍ଜ ଉପତ୍ୟକାର ଆଶ୍ଚର୍ଯ୍ୟ ଭୂମିକା ଆମେରିକା ଭୁଲିପାରିନାହିଁ । ଏବେ ସେଠାରେ ୫୦ ଏକର ଭୂମିରେ ଏକ ଜାତୀୟ ପାର୍କ୍ ନିର୍ମିତ ହୋଇଅଛି, ନାନାବିଧ ମେପଲ୍ ବୃକ୍ଷଭରା । ସ୍କିକ୍ ନଦୀ ଓ୍ୱାସିଂଟନ୍‌ଙ୍କ ସେକାଳ ବାସଭବନକୁ ଛୁଇଁ ଛୁଇଁ କଲକଲ ଧ୍ୱନିରେ ସଗର୍ବେ ପ୍ରବାହିତ ହେଉଅଛି । ପାଖରେ ପୁରୁଣା ରେଲ୍‌ୱେ ଟିଏ, ଗୋଟା ପାର୍କ୍ ବୁଲି ଫେରିଲାବେଳକୁ ସୂର୍ଯ୍ୟ ପାହାଡ଼ ତଳକୁ ବୁଡ଼ି ଯାଉଛନ୍ତି । ମେପଲ୍ ବୃକ୍ଷମୟ ବନର ଅର୍ଦ୍ଧାଂଶ ସ୍ୱର୍ଣ୍ଣାଭ । ଲତା, ବୀର ରକ୍ତ ଗଢ଼ା ସେହି ମୃତ୍ତିକାରୁ କେତୋଟି ଉପଲ ସଂଗ୍ରହ କରିନେଲି । ସେ କାଳ ଯୁଦ୍ଧରେ ବ୍ୟବହୃତ କେତେକ କମାଣ ଦେଖି ପାହାଡ଼ ଉପରେ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ନିର୍ମିତ ଆର୍କ ତଳେ ଛିଡ଼ାହେଲୁ: ଚୌଦିଗରେ ତୃଣ ପ୍ରାନ୍ତର, ଘନାରଣ୍ୟ; ଦୂରବର୍ତ୍ତୀ ନୀଳ ନୀଳ ପାହାଡ଼ସବୁ ସନ୍ଧ୍ୟାରାଗରେ ରଞ୍ଜିତ ହୋଇଗଲା । କ୍ରମେ ରାତ୍ରି ଗମ୍ଭୀରତର ହେଲା । ଆମେରିକାର ଦଶମୀ ଚନ୍ଦ୍ର କଥା କହିବା ଭଙ୍ଗୀରେ ସମକ୍ଷରେ ଦେଖା ଦେଲେ । ଅଢ଼େଇ ମାସ ମଧ୍ୟରେ ଆଜି ପ୍ରଥମ ଚନ୍ଦ୍ରଦର୍ଶନ । ଚତୁର୍ଦ୍ଦିଗ ଚନ୍ଦ୍ରିକା ଧବଳିତ ହେବା ପୂର୍ବରୁ ଆମେ ଫେରିଲୁ, ଅର୍ଦ୍ଧବୃତ୍ତାକାର ପାଷାଣ ଫଳକ ଉପରେ ଉଲ୍ଲିଖିତ ଉକ୍ତିକି ମନେ ମନେ ଧ୍ୟାନ କରି—

"ଏ ଅପମାନର କ୍ଷେତ୍ର
ଘନ ଅବସାଦର ସ୍ଥାନ
ଘୋରତମ ଶଙ୍କାଦ୍ ଶ୍ମଶାନ ।

ଏହି ମହାତ୍ୟାଗ ସ୍ଥଳୀରୁ
ଆମେରିକାସ୍ଥ ଜାତି
ଆଉ ନବ ଜୀବନର ଜନ୍ମ,
ଉଜ୍ଜୀବନ, ସମ୍ପ୍ରସାରଣ ।

ଧନେ ଏକତାର ମନ୍ତ୍ର
ସେମାନଙ୍କୁ ବିଜୟୀ କରିଥିଲା ।
ସ୍ୱାଧୀନତା ସେମାନଙ୍କର ଅତି ପ୍ରିୟ ଥିଲା
ଯେପରି ଏବେ ମୋର

ତୁମର
ଏବଂ ଭବିଷ୍ୟତ ବଂଶଧରମାନଙ୍କର ।"
—ହେନେରୀ ବ୍ରାଉନ୍

ତାପରେ ଫିଲଡେଲ୍‌ଫିଆର ଆଉ କେତୋଟି ଅବଶ୍ୟ ଦ୍ରଷ୍ଟବ୍ୟ ଉପରେ ଆଖି ପକାଇଲୁ ।

## ଲିବର୍ଟି ବେଲ୍

ପରାଧୀନକୁ ସ୍ୱାଧୀନ ହେବା ଲାଗି । ଏହା ଯୁଗେ ଯୁଗେ ଆହ୍ୱାନ ଦେଇ ଆସିଛି; ବିଶ୍ୱସ୍ୱାଧୀନତାର ପ୍ରତୀକ ରୂପେ ଏହା ଅସୀମ ଶ୍ରଦ୍ଧା ଆକର୍ଷଣ କରେ ।

ଲଣ୍ଡନର କାରିଗର ଏହା ନିର୍ମାଣ କରିଥିଲେ । ୧୭୫୨ରେ ଫିଲ୍-ଡେଲ୍‌ଫିଆରେ ପହଞ୍ଚିଲା । ଏହାକୁ ସାଧାରଣତଃ କେହି ବଜାନ୍ତି ନାହିଁ । ୧୮୪୬ ଖ୍ରୀଷ୍ଟାବ୍ଦରେ ଜର୍ଜ ଓ୍ୱାସିଂଟନ୍‌ଙ୍କ ଜୟନ୍ତୀରେ ଏହା ଥରେ ମାତ୍ର ବାଜିଥିଲା । ତାପରେ ଫାଟିଗଲା । ଏତେ ବଡ଼ ପିତ୍ତଳ ବେଲ୍; ବଜ୍ରାଘାତ ହୋଇନାହିଁ; କୌଣସି ଉଚ୍ଚ ସ୍ଥାନରୁ ତଳକୁ ଖସି ନାହିଁ । ଫାଟିଗଲା କାହିଁକି ? ଏହି ଜାଗରଣ ଯୁଗରେ ବହୁ ଜାତି ପରାଧୀନ ରହିଥିବାରୁ କି ? ଭଲମନ୍ଦର ଯୁଦ୍ଧରେ ଆମେରିକା ତା ଅହ୍ୱାନ ଭୁଲିଯାଇ ବେଳେ ବେଳେ ମନ୍ଦ ପକ୍ଷ ସମର୍ଥନ କରୁଥିବାରୁ କି ? ଆମେରିକା ଗଣତନ୍ତ୍ର, ଯୋଉଠି ସ୍ୱାଧୀନତାର ମୂର୍ତ୍ତି ପ୍ରତୀକ ଅଭୟ ହସ୍ତ ଟେକିଛି, ସାର୍ବଭୌମ, ଅତ୍ୟାଗ୍ରହୀ ରାଷ୍ଟ୍ର ପକ୍ଷକୁ ଆଉଜି ଯାଉଥିବାରୁ କି ?

ଫଟା ବେଲ୍‌କୁ ନମସ୍କାରଟିଏ କଲି—କାରଣ ଦିନେ ଏ ଥିଲା ଆମେ-ରିକୀୟ ସ୍ୱାଧୀନତା ଆନ୍ଦୋଳନର ପ୍ରେରକ; ଏହାର ସ୍ୱରଣ ସଙ୍ଗୀତ ରଣକ୍ଷେତ୍ରରେ ପ୍ରାଣବଳି ଦେବା ଲାଗି ସୈନ୍ୟମାନଙ୍କୁ ଉନ୍ମାଦିତ କରୁଥିଲା ।

## ପୋଟ୍ରେଟ୍ ମ୍ୟୁଜିୟମ୍

ସେ କାଳର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଫଟୋ ଏଥିରେ ପ୍ରଦର୍ଶିତ ହୋଇଅଛି । ପ୍ରତ୍ୟେକଙ୍କ ପରିଚୟ ଫଟୋ ତଳେ ଲିପିବଦ୍ଧ । ସ୍ୱାଧୀନତା ଆନ୍ଦୋଳନ କିପରି ଆରମ୍ଭ ହେଲା, ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କେଉଁ କେଉଁ ଐତିହାସିକ ପୁରୁଷ, ମହାବୀର ଏହା ସହିତ ସଂପୃକ୍ତ ଥିଲେ, କେଉଁ କେଉଁ ଯୁଦ୍ଧରେ କେଉଁ କେଉଁ ବୀର ପ୍ରାଣବଳି ଦେଇଥିଲେ, କେଉଁ ସମୟରେ କେଉଁ ସଭାପତିଙ୍କ ରାଜତ୍ୱ ଓ ତାଙ୍କ ବଡ଼ ବଡ଼ କୀର୍ତ୍ତି କ'ଣ, ତାହା ବର୍ଣ୍ଣନା କରାଯାଇଛି । ଫଟୋ ତଳରେ ଉଲ୍ଲିଖିତ ଦେଶର ଇତିହାସ ମନରେ ଜୀବିତ ହୋଇ ରହେ ।

'ଜାତି ଇତିହାସ ଜାତିର ନିର୍ଭର
ତାହୁଁ ବହେ ସଦା ଜାତି ପ୍ରାଣଧାର
ସେ ଧାରାରୁ ନୀର ପିଉଛି ଯେ ନର
ନଷ୍ଟପ୍ରାୟ ହେବ ସେ ଜାତି କର୍ମଧାର ।'

ଆଧୁନିକ ଓଡ଼ିଆ ଜାତିର ପିତା ମଧୁସୂଦନଙ୍କର ଉକ୍ତି ପ୍ରତି ଆମେରିକାୟ ପକ୍ଷରେ ଜୀବନ୍ତ ସତ୍ୟରେ ପରିଣତ ହୋଇଅଛି ।

## ନୌ ଯାଦୁଘର

ଆମେରିକା କିପରି ସ୍ୱାଧୀନତା ଲାଭ କଲା, ସେ ବିଷୟରେ ଏକ ଫିଲ୍ମ ଦେଖିଲି । ତାପରେ ନୌ ମ୍ୟୁଜିୟମ୍ ରେ ପଶିଲି । ସେକାଳେ ପାଲଟଣା ଜାହାଜରେ କିପରି କମାଣ, ବନ୍ଧୁକ ଖଞ୍ଜା ଯାଉଥିଲା, ବନ୍ଧୁକ ବା କମାଣରେ କିପରି ବାରୁଦ ଖୁନ୍ଦା ହେଉଥିଲା, ତୁମ୍ବ, କାଠଚକ ଆଉ ହାତେଲୀ ବାଣରେ ଯେପରି, ତାହା ପ୍ରଦର୍ଶିତ ହୋଇଅଛି ।

ଯେକାଳେ ସମୁଦ୍ର ଇଂଲଣ୍ଡର କ୍ରୀଡ଼ା ସରୋବର ଥିଲା । ଆମେରିକାୟ ନୌଶକ୍ତି କିପରି ସ୍ୱାଧୀନତା ପରେ ଜନ୍ମଲାଭ କଲା, କେବଳ ସ୍ଥଳଯୁଦ୍ଧରେ ଇଂରେଜଙ୍କୁ ହଟାଇ ତାଙ୍କୁ ସ୍ୱଦେଶରୁ କିପରି ବିତାଡ଼ନ କଲା, ସେନାପତି ଲର୍ଡ଼ କର୍ଣ୍ଣୱାଲିସ୍ କିପରି ଆତ୍ମସମର୍ପଣ କଲେ, ଆମେରିକା ସାମ୍ରାଜ୍ୟ ହରାଇବା ପରେ ଇଂରେଜ ଭାରତକୁ କରକବଳିତ କଲା ଓ ଏହି ପରାଭୂତ ସେନାପତି କିପରି ଭାରତ ସାମ୍ରାଜ୍ୟର ଦ୍ୱିତୀୟ ଗଭର୍ଣ୍ଣର ଜେନେରାଲ ହେଲେ ଓ କ୍ରମେ ଭାରତ କିପରି ବ୍ରିଟିଶ୍ ରାଜମୁକୁଟର ଉଜ୍ଜ୍ୱଳତମ ହୀରକ ହେଲା, ତାହା ପ୍ରଦର୍ଶିତ ହୋଇଅଛି ।

## ପ୍ରକୃତିର କୋଳରେ ବସିଲେ

ମାଆ କୋଳରେ ବସିଲେ କେମିତି ଲାଗେ, ବଡ଼ ହେଲା ପରେ କାହାର ମନେ ରହେ ? ପ୍ରକୃତି ମୋର ଧାଈମା; ମାଆର କାଖ, କୋଳ ଛାଡ଼ିଲା ଦିନରୁ ମୁଁ ତା'ର କୋଳରେ ବସିଆସୁଛି । ସେ କୋଳର ଶ୍ରୀ ଓ ଆରାମ୍ ଘଡ଼ିକି ଘଡ଼ି ବଦଳେ । ସେ କେବଳ ଧୋବାୟା ନୁହେଁ, ଜୀବନସାରା ମୋତେ ନାନାବାୟା ଗୀତ ଶୁଣାଇ ଆସିଛି, ବାୟା କରି ମୋତେ ରଖିଛି, ସଂସାରର ଜଣେ ବାୟା ହୋଇ ମୁଁ ବଞ୍ଚିଯାଇଛି, ଚାହିଁବା ହେବାର ଯାବତୀୟ ଖୋରାକ୍ ମୋତେ ଯୋଗାଇ ଦେଉଛି ।

ଆଜି ସେଇ ମାଆ କୋଳରେ ନିଶ୍ଚିନ୍ତ ଭାବେ ବସିଯିବାର ସୁଯୋଗ ମୋତେ ମିଳିଲା । ସୁଧାଂଶୁ କର୍ମକ୍ଷେତ୍ରରେ, ଚନ୍ଦୁ ନର୍ସିଂ ସ୍କୁଲରେ, ଲତା ରନ୍ଧନ ଶାଳାରେ । ମୁଁ ମନ୍ଦିରର ପୃଷ୍ଠ ପ୍ରାଙ୍ଗଣର ଗୋଟିଏ ଲମ୍ବ କୋଠରୀରେ ବସିଛି, ବେଶୀ ଶୀତ ହେଲେ ଆଗକୁ ପଛକୁ ଚାଲି ରକ୍ତ ଉଷ୍ମ କରୁଛି ।

କାଲି ରାତିରୁ ବର୍ଷାଧାରା ଝରୁଛି । କାଚର ଘରେ ବି ଗଛ ପତ୍ରରେ ପଡ଼ୁଥିବା ଟପର ଟପର ଶବ୍ଦ କାନରେ ବାଜୁଛି । ବର୍ଷା ସାଙ୍ଗକୁ ଝଙ୍କା ପବନ । ତୁଷାର ଝଡ଼ର ଅଗ୍ରଦୂତିକା ସେ, ନଚାଇ ଦେଉଛି ହସ୍ତ୍ୟନ୍ତ ହସ୍ତାନ୍ତ ବନସ୍ପତିମାନଙ୍କୁ । ମୁଁ ବୁଲୁଛି ଆଗରୁ ପଛକୁ, ପଛରୁ ଆଗକୁ, ଯନ୍ତ୍ର ଭିତରର ଏକ ଜନ୍ତୁ ପରି ।

ଗୋଟାଦିନ ଏମିତି କଟିଲା । ବର୍ଷାର ବିରାମ୍ ନାହିଁ । ମୁଁ ବୃକ୍ଷଦୁର୍ଗବାସୀ; ଲଗାଲଗି, ଘଷାଘଷି ହୋଇ ରହିଛନ୍ତି ବନସ୍ପତି, ତଥାପି କାଲୁଆ ପବନର ଚମୁଟା ଆଉ କାମୁଡ଼ାରୁ ରକ୍ଷା ପାଇ ପାରିଲିନାହିଁ । ସାଧାରଣ ହାଓ୍ୱାକୁ ଗଛମାନେ ନିଜ ଦେହରେ ଚରାଇ ନେଉଥାନ୍ତି । କନ୍ଦିକାଳୁ ନାଚିବା ଅଭ୍ୟାସ ସେମାନଙ୍କର । କିନ୍ତୁ ଝଙ୍କା ପବନର ଧକ୍କା ସମ୍ଭାଳି ପାରୁ ନଥାନ୍ତି । ବେଖାତିର ଭାବେ ସେମାନଙ୍କୁ ଧକ୍କା ଦେଇ ନିଜ ଲାଗି ରାସ୍ତା କାଟି ଝଞ୍ଜା ଧାଉଁଥାଏ । ଉଷ୍ଣ ଜଳବାୟୁରେ ବର୍ଦ୍ଧିତ ଏ ବିଦେଶୀକୁ ଶୈତ୍ୟର ତୀବ୍ର ତିକ୍ତ ଆସ୍ୱାଦରେ ବିବ୍ରତ ନ କଲେ ଯେପରିକି ତା ମନରେ ଶାନ୍ତି ନାହିଁ ।

ବୃକ୍ଷ ଦରବାରରେ ରଙ୍ଗୀନ୍ ମେପଲ ରାଜନର୍ତ୍ତକୀ ପରି ନୃତ୍ୟ କରୁଥାଏ । ବର୍ଷା ଅସରାର ଛେଚ୍କଚ୍ଚ ଓ ବତାସର ଠେଲାପେଲାରେ ଗେଲବସରା ଗୋଲାପ-ମାନେ ମୁହଁ ମାଡ଼ି ପଡ଼ିଥାନ୍ତି । ତଥାପି ନିସ୍ତାର ନାହିଁ, ଛିନ୍ନଛତର ନ କରିବା ପର୍ଯ୍ୟନ୍ତ ଝଡ଼ ତାକୁ ବାଲିଗିରଡ଼ା ଉପରେ ଗଡ଼େଇଡଡ଼େଇ କରୁଥାଏ । ଘନ ପାଇନ୍ ମର୍ମର ଭିତରେ ପକ୍ଷୀର ବିକଳ ଚିତ୍କାର । ଏ ପାଗରେ ଗରିବ ମୂଲିଆ ପରି ବସାରେ ଜାକିଯୁକି ହୋଇ କାଳ କଟାଏ ସେ । କିନ୍ତୁ ଛୁଆ କଣ ସୁବିଧା ଅସୁବିଧା ବୁଝେ ? ଭୋକଦାଉ ସମ୍ଭାଳିପାରେ ? ତାର ବିକଳ କେଁକଟର ସହି ନ ପାରି ବର୍ଷାରେ ଓଦା ହୋଇ ମାଆ ଭୂଇଁରୁ କିଛି ଘାସ ଦାନା ଖୁଣ୍ଟି ଖୁଆଇ ଦିଏ । ବସାରେ ଅନ୍ଧାର ସଞ୍ଚୟ ରାତି ପକ୍ଷୀକୁ ଅଗୋଚର ।

ଖାଦ୍ୟାଭାବରୁ ତୁଷାରଛନ୍ନ ପୃଥିବୀରେ ପକ୍ଷୀବଂଶ ଲୋପ ପାଇଯାନ୍ତେ । ତା ହେଲେ ପକ୍ଷୀ ବିନା ଉଦ୍ୟାନ ବା ଅରଣ୍ୟରେ ମନୁଷ୍ୟ ଅଧିକ ନିଃସଙ୍ଗ ହୋଇଯାନ୍ତା । ବନରେ ଥାଇ ନିତି ସଙ୍ଗୀତ ଶୁଣାଉଥିବା କିମ୍ବା ପର୍ବତାରଣ୍ୟ ଭ୍ରମଣ ଲାଗି ନିତି ଆହ୍ୱାନ ଜଣାଉଥିବା, କିମ୍ବା ଉଷାପ୍ରଦୋଷର ବାର୍ତ୍ତା, ଶରତ

ବସନ୍ତ ଓ ବର୍ଷାର ଆଗମନୀ ଶୁଣାଉଥିବା ପକ୍ଷୀ ଆମର ଚିର ଆଦରଣୀୟ । ତେଣୁ ମରୁଡ଼ି ସମୟରେ ତାକୁ ଖାଦ୍ୟ ଯୋଗାଇ କରୁଣା ବିତରଣ କଲି ବୋଲି ଭାବିବା ଯଥାର୍ଥ ନୁହେଁ । ତଥାପି ମାନବିକ ମହତ୍ତ୍ୱ ହୃଦୟର ଏହା ଏକ ପରିଚୟ ।

ଆମ ଦେଶର ହିମାଳୟ ଅଞ୍ଚଳରେ ଶୀତକାଳରେ ଏ ଖାଦ୍ୟାଭାବ ଦୁରବସ୍ଥା ଉପୁଜୁଥିବ । ସୌଧ ଶୃଙ୍ଗରେ, ଉଦ୍ୟାନରେ, ପ୍ରାଙ୍ଗଣରେ, ତୃଣ ପ୍ରାନ୍ତରରେ, ଗିରି ଉପତ୍ୟକାରେ, ଯେଉଁଠି ବ୍ୟାଧ ବା ଶ୍ୱାନର ଭୟ ନ ଥିବ, ସେଠି ଦାନଶୀଳ ବ୍ୟକ୍ତିମାନେ ଆହାର ବିତରଣ କରନ୍ତି ।

କିନ୍ତୁ ଶଶକ, ମୂଷିକ ହରିଣଗୁଳିକ କଲେ କଣ କରାଯାଇ ପାରିବ ? ବୃକ୍ଷ ପୁଷ୍ପପତ୍ରହୀନ; କେଦାର, ପ୍ରାନ୍ତର ତୁଷାରାବୃତ । ସେ ବୁଭୁକ୍ଷୁ; ଖାଦ୍ୟାଭାବରେ ସେ ବି ବିନିଦ୍ର ରଜନୀ ଯାପନ କରୁଥିବ !

୫-୧୦-୮୪; ଆଜି ଖରାପାଗ, ପଡ଼ୋଶୀ ହତାରେ ବନ୍ଧା କୁକୁରଟା ମିଛେ ମିଛେ ଭୁକୁଛି । ଉପର ବେଳା ଚନ୍ଦ୍ର, ଘରକୁ ଫେରି ଆମକୁ ବୁଲାଇନେଲି ତା କାଥୋଲିକ୍ ନର୍ସିଂ କଲେଜକୁ; ପାଠାଗାର ଦୁଆରେ ଗୋଟିଏ ନାନା ଧାତୁ ପତ୍ରପୂର୍ଣ୍ଣ କୃତ୍ରିମ ବୃକ୍ଷ; ପତ୍ର ପତ୍ରରେ ଏହି ଅନୁଷ୍ଠାନ ନିର୍ମାଣ ଲାଗି ଅର୍ଥଦାତା-ମାନଙ୍କ ନାମ ଲିପିବଦ୍ଧ ହୋଇଅଛି ।

ନିକଟରେ ବଡ଼ାର ସ୍କୁଲ୍; ସବୁ ଗଛବୃଚ୍ଛ ରଙ୍ଗୀନ୍, ଷଷ୍ଠ, ସପ୍ତମ ଦୁଇଟି ଶ୍ରେଣୀ ମାତ୍ର ଅଛି । ଏତେବଡ଼ ଜାଗା ମାତ୍ର ୩୮ଟି ପିଲା ପଢ଼ନ୍ତି । କାନ୍ଥରେ ଲେଖା ହୋଇଛି—ବଡ଼ ପାଟିକରି କଥା କହନାହିଁ । ଘରୁ ପେନ୍‌ସିଲ୍ କାଟି କରି ଆଣ, କିଏ କିଛି ପ୍ରଶ୍ନ କଲେ ଭଦ୍ରଭାବେ ଉତ୍ତର ଦିଅ ।

ତାପରେ ସୀମା'ର ହା. ସ୍କୁଲ୍‌କୁ ଆମେ ଗଲୁ । ସ୍କୁଲ୍ ଦୁଆରେ କେଡ଼େ ସୁନ୍ଦର ଗୋଲାପ, ସେବତୀ, ଗେଣ୍ଡୁ, ପଡ଼ିଆରେ ପିଲାମାନେ କ୍ରିକେଟ୍ ଖେଳୁଛନ୍ତି ।

ପ୍ରବେଶ ଦ୍ୱାରରେ ଶିକ୍ଷକମାନଙ୍କ ନାମ; ଯେଉଁମାନେ ଭଲ ପଢ଼ନ୍ତି, ଭଲ ଖେଳନ୍ତି ବା ଅଭିନୟ କରନ୍ତି, ସେମାନଙ୍କ ଫଟୋ ଓ ପରିଚୟ ।

ସ୍କୁଲ୍‌ରେ ନେହା ନ ଥିଲେ; ଥିଲି ଜଣେ ଜେନିଟର୍ (ମେହେନ୍ତରାଣୀ); ସୁନ୍ଦର ରୂପ, ବେଶ ପୋଷାକ । ସେ ଆମକୁ ସ୍କୁଲ୍ ବୁଲାଇ ଦେଖାଇ ଦେଲା ।

ଫେରିଲା ବେଳେ ଗୋଟିଏ ଦୃଶ୍ୟ ଦେଖି ମନ ମରିଗଲା—ଦୁଇ ଯୁବତୀ ପୁଅ, ଝିଅ ଚୁମା ଦିଆଦେଇ ହେଉଛନ୍ତି । ଗୋଟିଏ ଖାଲିଥିବା ରୁମ୍‌ରେ

୧୨ ବର୍ଷର ଝିଅ ଉପରେ ୭ ଥର ଅତ୍ୟାଚାର ହୋଇଛି । ମାଆ ସ୍କୁଲ୍ ନାଆଁରେ କେସ୍ କରିଛି ।

**ଲତାର ପସରା**

ଗୋଟିକରୁ ଦୁଇଟି, ଦୁଇଟିରୁ ତିନୋଟି ସୁଟ୍‌କେସ୍ ହେଲଣି । କେତେ ଜିନିଷ କଣା ହୋଇଛି । କେତେ ଉପହାର ମିଳିଛି । ନିଜର ପୁଅ, ବୋହୂ, ନାତି ନାତୁଣୀ ଅଛନ୍ତି । ନିଜ ଭାଇଭାଉଜ, ପାଖପାଖି, ଯୋଖାଯୋଖି, ଉପକାରୀ ସାଇପଡ଼ିଶା ଅଛନ୍ତି, କିଛି ଆପଦ ବିପଦ ପଡ଼ିଚି ଶୁଣିଲେ ଯେ ସବୁ କାମ ଛାଡ଼ି ଧାଇଁ ଆସନ୍ତି, ରୋଗ ଶୋଗ ପାଖେ ବସି ଯେ ସେବା କରନ୍ତି; ଧରମଝିଅ, ଧରମପୁଅ, ପ୍ରିୟ ଛାତ୍ରଛାତ୍ରୀ, ବାଲ୍ୟବନ୍ଧୁ, ସାହିତ୍ୟିକ ବନ୍ଧୁ, ଆଜିଆ ଲେଖାରେ ବାଳିଆ ବନ୍ଧୁ ଅଛନ୍ତି, 'କାଲେ ମୋ ଲାଗି ବିଦେଶରୁ କଣଟାଏ ଆସିଥିବ' ଭାବି ଯେ ମୁହଁ ଦେଖାନ୍ତି; ତା ଛଡ଼ା ଲତାର ଭାଇ ଓ ଭଉଣୀମାନେ ନନ୍ଦୁକୁ ଲେଖିଛନ୍ତି—ନାନୀ ହାତରେ ଅମୁକ ନାଇଁ ସମୁକ ପଠାଇବୁ । ଯାହା କଥା ନ ରଖିବ, ସେ ମୁହଁ ଏଡ଼େ କରିବ, ହୁଏତ କହିବ— ସ୍ନେହର ସଂକେତ ସ୍ୱରୂପ କଡ଼ାକର ଜିନିଷ ଆଣିଲେ ନାହିଁ !

ସମସ୍ତ ବୋହିଯିବ, କଥା ରହିଯିବ । ତିନୋଟି ସୁଟ୍‌କେସ୍‌କୁ ଏବେ ଜିନିଷ ବଳେଇଛି । ଇଚ୍ଛା ନ ଥିଲା; ଏବେ ଚନ୍ଦ୍ର ନ ଦିଅଛି । ଏତେ କାଳକେ ନାମା, ଭାଇନା ଆସିଛନ୍ତି, ଜୀବନରେ ପ୍ରଥମ ଥର ପାଇଁ; ମାନମର୍ଯ୍ୟାଦା ନ କରି ଛାଡ଼ିବେ କିପରି ।

ଲତା ଦେଖୁଛି, କାଢୁଛି, ପୁଣି ଥୋଉଛି; ପୁଣି ବାହାର କରୁଛି । ଘଣ୍ଟା ଘଣ୍ଟା ଧରି ଲାଗିଛି ଏଇ ଲୀଳା ।

ଦିଲ୍ଲୀ ପର୍ଯ୍ୟନ୍ତ ଏୟାର୍ ଇଣ୍ଡିଆରେ ୪୦ କେ.ଜି. ଇଣ୍ଡିଆନ୍ ଏୟାର ଲାଇନ୍‌ସ୍‌ରେ ୨୦ କେ.ଜି. ଓଜନର ଜିନିଷ ନେବାକୁ ଅନୁମତି ମିଳେ ।

ଇଲେକ୍‌ଟ୍ରୋନିକ୍‌ସ୍ ଜିନିଷ କିଛି ଅଛି । ଦିଲ୍ଲୀରେ ଧରିପାରେ; ଓଜନ ବଢ଼ିଲେ ସେ ବାବଦକୁ ବହୁତ ଟଙ୍କା ଦେବାକୁ ପଡ଼ିପାରେ । ପୁଣି ଡଲାର୍ ନେଲେ ତ ଛାଡ଼ିବ ନାହିଁ, ଓଲଟି ଜୋରିମାନା କରିପାରେ । ଏମିତି ଆକାଶ ପାତାଳ ଭାବନା ପସାରିଣୀ ଲତା ମନରେ ।

ଏତିକି ବେଳେ ରୂଢ଼ଭାବେ କହିଦେଲି—ଆମ ଭାରତ ଯାତ୍ରା ବନ୍ଦ; ରିଜର୍‌ଭେସନ୍ ନାହିଁ ।

ମୁଣ୍ଡରେ ଚଡ଼କ୍ ପଡ଼ିଲା ପରି ଚମକି ପଡ଼ି ଲତା କହିଲା—ଏଁ, କଣ ହେଲା ?

## ଓ୍ୱାସିଂଟନ୍

ସୁଧାଂଶୁ—ଟିକେଟ୍ ଠିକ୍ ଅଛି ?

ମୁଁ—୧୫ ତାରିଖରେ ଭାରତ ଫେରିଯିବାର ଥିଲା । ବଦଳାଇ ୭ ତାରିଖ କରିଛି ।

"କନ୍‌ଫାର୍‌ମେସନ୍ ଆସିବା ପରେ ଆମ ଏଜେଣ୍ଟ୍ ସାତ ତାରିଖକୁ ବଦଳାଇ ଟିକେଟ୍‌ରେ ଲେଖିଦେଇଛି—ହେଇ ଟିକେଟ୍ ।"

"ସବୁ ହୋଇ ବ ଯାତ୍ରୀ ସିଟ୍ ନ ପାଇ ବ୍ୟୋମଷ୍ଟେସନ୍‌ରୁ ଫେରି ଆସୁଛନ୍ତି । ଏଜେଣ୍ଟ୍ ଯାହା କହୁଛି, କରୁନାହିଁ । ଆଚ୍ଛା, ମୁଁ ଫୋନ୍ କରୁଛି ।"

ସୁଧାଂଶୁ ନିଉୟର୍କ୍‌କୁ ଫୋନ୍ କରି ବୁଝିଲେ ଯେ ସାତ ତାରିଖରେ ଏୟାର୍ ଇଣ୍ଡିଆରେ ଆମର ରିଜର୍‌ଭେସନ୍ ନାହିଁ ।

ରାତିରେ ନିଦ ହେଲା ନାହିଁ ।

## ଦେଖିବାକୁ ମନ ନ ଥିଲେ

ଦେଖିବାକୁ ମନ ନ ଥିଲେ କିଛି ଦେଖି ହୁଏ ନାହିଁ । କିନ୍ତୁ ଏତେ ପାଖକୁ ଆସି ଲତାକୁ ରାଜଧାନୀ ଓ୍ୱାସିଂଟନ୍ ନ ଦେଖାଇ ଫେରିବା ଅନ୍ୟାୟ । ଇତ୍ୟାକୁ ଆମ ସଙ୍କଟ ସମ୍ପର୍କରେ ଫୋନ୍‌ଟିଏ କରିଦେଇ ସୁଧାଂଶୁ ଆମକୁ ନିର୍ଦ୍ଧାରିତ ମତେ ଓ୍ୱାସିଂଟନ୍ ଘେନି ଚାଲିଲେ ।

ଫିଲାଡେଲ୍‌ଫିଆରୁ ଓ୍ୱାସିଂଟନ୍ ଡ. ସି. ଦୁଇଶ ମାଇଲ୍ ବାଟ; ତିନି ଘଣ୍ଟା ଲାଗେ । ସକାଳ ଆଠଟାରେ ବାହାରି ପହିଲେ କ୍ଷୁଦ୍ର ଡେଲାଓ୍ୱାର୍ ରାଜ୍ୟରେ ପହଞ୍ଚିଲୁ । ଡେଲାଓ୍ୱାର୍ ନଦୀର ନାମାନୁସାରେ ରାଜ୍ୟ ନାମିତ ହୋଇଅଛି । ଉଇଲମିଂଟ୍ ଏହାର ମୁଖ୍ୟ ନଗର; ସ୍ୱାଧୀନତା ଘୋଷଣା ଦଲିଲ୍‌ରେ ଡେଲାଓ୍ୱାର୍ ରାଜ୍ୟ ପ୍ରଥମ ଦସ୍ତଖତକାରୀର ଗୌରବ ଲାଭ କରିଥିଲା ।

ଏହି ରାଜ୍ୟ ପାରିହେଲା ପରେ ଅତଲାଣ୍ଟିକ୍ ସମୁଦ୍ର ତୀରେ ତୀରେ ଆମର ଗତି; ପଶ୍ଚିମ ଆମେରିକାରେ ଯେପରି ରକି ପର୍ବତମାଳା, ପୂର୍ବରେ ସେହିପରି ଆପାଲ୍‌ଚିଆନ୍, ମେନ୍‌ରୁ ଜର୍ଜିୟା ରାଜ୍ୟ ପର୍ଯ୍ୟନ୍ତ ବିସ୍ତୃତ । ପୂର୍ବ ପଶ୍ଚିମ ଉଭୟ ଉପକୂଳରେ ବିସ୍ତୃତ ସମତଳ ଭୂମି । ଆମ ଗତିପଥରେ କେତେବେଳେ ସମୁଦ୍ର ଦେଖା ଦିଏ, କେତେବେଳେ ବା ଲୁଚିଯାଏ । ବୃକ୍ଷଲତାର ରଙ୍ଗୀନ୍ ପକ୍ୱ ପତ୍ର ନବବସନ୍ତର ଆମ୍ର, ଜାମୁ, କେନ୍ଦୁ ପଲ୍ଲବ ପରି ମନ ମୁଗ୍‌ଧ କରେ, ଗୋଟିଏ ବାର୍ଦ୍ଧକ୍ୟର, ଅନ୍ୟଟି ବାଲ୍ୟର ପ୍ରତୀକ ହେଲେ ବି ।

ଆମେ ଡେଲାଓ୍ୱାରରୁ ମେରିଲ୍ୟାଣ୍ଡ୍ ରାଜ୍ୟରେ ପ୍ରବେଶ କଲୁ; ଗୋଟିଏ ହେଲେ ନଦୀରେ ବାଲୁକାର ସତ୍ତା ନାହିଁ । ସମସ୍ତ ଜଳପୂର୍ଣ୍ଣ । ତାହାଣେରେ ମେରି-ଲ୍ୟାଣ୍ଡ୍‌ର ରାଜଧାନୀ ବଲ୍‌ଟିମୁର୍‌ର ଡାଉନ୍ ଟାଉନ୍; ଆମେ ଚେସେପିକ୍ ଉପସାଗରତଳେ ନିର୍ମିତ ୩ ମାଇଲ୍ ଲମ୍ବ ଏକ ଟନେଲ୍ ଭିତରେ ଗଲୁ । ଆଶ୍ଚର୍ଯ୍ୟ ଇଞ୍ଜିନିୟରିଂ କୌଶଳ । ତାପରେ ବଲ୍‌ଟିମୁର୍ ଉପସାଗର ସେତୁ ଅତିକ୍ରମ କରି ଆମେ ଓ୍ୱାସିଂଟନ୍‌ରେ ପହଞ୍ଚିଲୁ ।

ଆମେରିକାର ଅଧିକାଂଶ ଗୃହର କାଷ୍ଠ କଙ୍କାଳ । ଅଗ୍ନି ନିର୍ବାପକ ସଂସ୍ଥା ଏଠାର ଗୋଟିଏ ବଡ଼ ସଂସ୍ଥା । ଆଜି ରାଜଧାନୀରେ ବାର୍ଷିକ ପ୍ୟାରେଡ୍; ଲକ୍ଷାଧିକ କର୍ମଚାରୀ ଦେଶର ବିଭିନ୍ନ ଅଞ୍ଚଳରୁ ଆସିଛନ୍ତି । ରାଜଧାନୀରେ ପ୍ରବଳ ଜନ ଓ ଯାନ ଭିଡ଼ । ଯୁଆଡ଼େ ଦେଖ ସେଆଡ଼େ ଫାୟାର୍ ବ୍ରାଇଗେଡ୍ ଗାଡ଼ି; ଆମେ ଏ ଗଳି, ସେ ଗଳି, ଆର ଗଳି, ଏମିତି ବହୁ ଗଳି ବୁଲିଲୁ; ବହୁ କଷ୍ଟରେ ଗାଡ଼ିଟି ପାର୍କ୍ କଲୁ । ସେତେବେଳକୁ ଗୋଟାଏ । ଝିଙ୍କ । ଭୁଲ ଭୁଲ କ୍ଳାନ୍ତ ହୋଇ ପଡ଼ିଲୁ । ବ୍ରେକ । ଗୋଟିଏ ପାର୍କ୍‌ର ଗଛ ଛାଇରେ ବସି ଖିଆପିଆ କଲୁ ।

ଟିକିଏ ହେଲେ ଡର ଭୟ ନାହିଁ । ପାଖକୁ ଲାଗି ଲାଗି ବସୁଥାନ୍ତି ସି-ଗଲ୍ ପକ୍ଷୀ ଦଳ, ଯାତ୍ରୀଙ୍କଠାରୁ ଖାଦ୍ୟମିଳ ଆହାର ସଂଗ୍ରହକାରୀ । ନଦୀ ବା ସମୁଦ୍ରରୁ ଆହାର ସଂଗ୍ରହ କଷ୍ଟସାଧ୍ୟ । ତେଣୁ ଏହି ସହଜ ଖାଦ୍ୟ ଲାଭ ପନ୍ଥା ବାଛି ନେଇଛନ୍ତି ।

ଆମ ପାର୍କ୍‌କୁ ଘେରି ରାଜଧାନୀର ଯାବତୀୟ ମୁଖ୍ୟ ଅନୁଷ୍ଠାନ—ହ୍ୱାଇଟ୍ ହଲ୍, ସିନେଟ୍ ଗୃହ, କାପିଟୋଲ ବିଲ୍‌ଡିଙ୍ଗ୍, ଜର୍ଜ ଓ୍ୱାସିଂଟନ୍, ଆବ୍ରାହାମ୍ ଲିଙ୍କନ୍, ଥୋମାସ୍ ଜେଫରସନ୍, ପ୍ରଭୃତି ବିଶିଷ୍ଟ ରାଷ୍ଟ୍ରପତିମାନଙ୍କ ସ୍ମୃତି ମନ୍ଦିର, ପ୍ରସିଦ୍ଧ ସ୍ମିଥୋସୋନିଆନ୍ ମ୍ୟୁଜିଅମ୍ ଓ ଅନ୍ୟାନ୍ୟ ବହୁ ଯାଦୁଘର ।

ଆମେ ପଶିଲେ ଗୋଟିଏ ଯାଦୁଘରେ ମଣିଲୁ । ଛ' ହଜାର ବର୍ଷ ତଳର ଚୀନା କଳା ପ୍ରଦର୍ଶନୀ । ଏନେ ତ କଳା ଅଧ୍ୟୟନ ନାହିଁ । ନିବିଡ଼ ମନଯୋଗ ଥିଲେ ଏହାର କିଛି ହେଲେ ସୌନ୍ଦର୍ଯ୍ୟ ଉପଭୋଗ କରିପାରିଥାନ୍ତୁ, କେତେ ସାଧନା ବଳରେ ଗବେଷଣା ସହକାରେ ଏ ମନ୍ଦ କଳାତ୍ମକ ସମ୍ଭାର ପ୍ରଦର୍ଶିତ ହୋଇଛି । ଏହା ପରି ଯଥେଷ୍ଟ ଶ୍ରଦ୍ଧା ସମ୍ମାନ ନ ଦେଖାଇବା ଅନ୍ୟାୟ । କିନ୍ତୁ କଣ କରିବୁ ? ଯାହାର ଅଜ୍ଞନିଷ୍ଠତା ଯୋଗୁଁ ମନର ମୂଳ ଉପୁଡ଼ିଗଲା ପରି ଲାଗୁଥିଲା ।

ଆମ ହାତରେ ବହୁ ସମୟ ବି ନ ଥିଲା, ଅଧ ଘଣ୍ଟାକ ମଧ୍ୟରେ ବହୁ ଶ୍ରମରେ ସଂଗୃହୀତ, ଅକଳନ୍ତୀ ସାଧନାର ପ୍ରତୀକ କଳା ପ୍ରଦର୍ଶନୀ ପ୍ରତି କ ସୁବିଚାର

କଣ ଯାଇପାରେ ? ମନର ଏଇ ଅବସ୍ଥାରେ ଚୀନା କଳା ଦେଖା ହୋଇ ବା ଅଦେଖା ରହିଗଲା ।

ଆସିଛୁ ଯେତେବେଳେ, କିଛି ନ ଦେଖି ଫେରିଯିବାଟା ଅନ୍ୟାୟ । ସୁଧାଂଶୁ ଆମ ଲାଗି ୪୦୦ ମାଇଲ୍ ଗାଡ଼ି ଚଲାଇ ଆସିଛନ୍ତି । ତାଙ୍କୁ ଅଯଥା ଶାସ୍ତି ଦେଲା ପରି ହେବ । ତେଣୁ ଦେଖାର ବାଧ୍ୟ ରକ୍ଷା ଲାଗି ପ୍ରକୃତି ଇତିହାସ ଗୃହରେ ପ୍ରବେଶ କଲୁ ।

ପୃଥିବୀର ବୃହତ୍ତମ ତିମିର କଙ୍କାଳ ଗୁଡ଼ିକୁ ଲଗାଇ ଲମ୍ବାଇ ରଖା ହୋଇଛି । ତା ପେଟରେ କେତୋଟି ହାତୀ ଅକ୍ଲେଶରେ ରହିପାରିବେ ।

ତାପରେ ପହଞ୍ଚିଲୁ ଆଫ୍ରିକାର ଏକ ପାହାଡ଼ୀ ପରିବେଶ ମଧ୍ୟରେ । ଶୁଷ୍କ, ରୁକ୍ଷ, ଇତସ୍ତତଃ କ୍ୱଚିତ୍ କହିଁଡ଼ି ସବୁଜ । ଆହାର ଖୋଜି କେତୋଟି ଜେବ୍ରା ନିରିଶ ମୁଖରେ ବୁଲୁଛନ୍ତି ।

ଓଟପକ୍ଷୀ ଅଣ୍ଡା ନୁଆଁଇଁ ଡ଼ିମ୍ବ ଫୁଟାଇଚି, ଝିକ ଝିକ ଛଅୋଟି ଛୁଆ ପଦାକୁ ବାହାରିଛନ୍ତି ।

ଏକ ଭଙ୍ଗା ଗଛର ଗଣ୍ଡି ଖୋଲରେ ବରଫ ଜମିଛି । କେତୋଟି ପକ୍ଷୀ ଗୁଡ଼ିକୁ ଆବୋରି ରହି ଦୀର୍ଘ ଶୀତ କାଳ କଟାଇଛନ୍ତି ।

ନିଜର ଦୀର୍ଘ ଅତୀତ ନାହିଁ । କିନ୍ତୁ ପ୍ରଚଣ୍ଡ ଅର୍ଥବଳ ଅଛି । ଡଲାର୍‌ରେ ଅନ୍ୟ ଅନେକ ଦେଶର ଅତୀତ କିଣି ଆଣି ସାଇତିଛନ୍ତି ଆମେରିକାୀୟ, ତା ବ୍ୟତୀତ ନିଜର କ୍ଷୁଦ୍ର, କିନ୍ତୁ ଗୌରବମୟ ଅତୀତକୁ ଚମତ୍କାର ଭାବେ ଉପସ୍ଥିତ କରି ପ୍ରଦର୍ଶନ କରିଛନ୍ତି । ଏ ସବୁ ଦେଖିବାକୁ ମାସ ମାସ ସମୟ ଲାଗେ; ତଥାପି ଗତାନୁଗତିକ ଭାବରେ ଦେଖି ବୁଲିଆଲୁ, କିନ୍ତୁ ସେ ମଉକା ଭାଙ୍ଗିଦେଇ ଲତା କହିଲା—ଏ ସବୁ ଢେର୍ ଦେଖା ହୋଇଛି ଚିକାଗୋରେ; ଆଉ କାହିଁକି ?

ତାପରେ ଆମେ ଅତୀତ ସ୍ମୃତି ମନ୍ଦିରସବୁ ଛାଡ଼ି ଏକ ବୈଜ୍ଞାନିକ ସାଧନାମନ୍ଦିରରେ ପହଞ୍ଚିଲୁ; ୧୯୭୬ରେ ଏହି ମ୍ୟୁଜିୟମ୍ ନିର୍ମିତ । ଉଇଟ୍‌ବାୟୁ ଯେଉଁ ଆକାଶ ଉଡ଼୍‌ଡ଼ୟନ ପ୍ରଚେଷ୍ଟାରୁ ବ୍ୟୋମଯାନର ବିଭିନ୍ନ ଆକୃତି ଓ ବିକାଶ, ଚନ୍ଦ୍ରର ଏକ ପର୍ବତରେ ଅଷ୍ଟ୍ରୋନଟ୍‌ଙ୍କ ଅବତରଣ ଦୃଶ୍ୟ ଏଥିରେ ପ୍ରଦର୍ଶିତ ।

ତାପରେ ଦେଖିଲୁ ରୁଷୀୟ ଗାଗାରିନ୍ ଓ ଆମେରିକାୀୟ ଜନ୍ ଗ୍ଲେନ୍ କିପରି ୨୫ ହଜାର ମାଇଲ୍ ବ୍ୟାପୀ ପୃଥିବୀ ପରିକ୍ରମା କରିଥିଲେ, ଆମେରିକାର କଲମ୍ବିୟା, ଚ୍ୟାଲେଞ୍ଜର୍, ସ୍କାଇଲାବ୍, ଜେମିନି, ପାଇଓନିଅର୍ ପ୍ରଭୃତି ବହୁ

ସ୍ପେସ୍ ଯାନ କିପରି ଗ୍ରହ ଉପଗ୍ରହରେ ଉପନିବେଶ ସ୍ଥାପନ ପ୍ରୟାସ କରି ଆସୁଛନ୍ତି, ଆପୋଲୋ ୧୧ରେ ତିନି ବୈଜ୍ଞାନିକ ବନ୍ଧୁ ଯାଇ ଚନ୍ଦ୍ରରେ ଅବତରଣ କରି କିପରି ମୃତ୍ତିକା ସଂଗ୍ରହ କରି ଆଣିଛନ୍ତି, ସ୍ପେସ୍ ସଟଲ୍‌ସବୁ ମଙ୍ଗଳ, ବୃହସ୍ପତି ଆଦି ଗ୍ରହରେ କିପରି ଅବତରଣ ଚେଷ୍ଟା ଚଳାଇଛନ୍ତି, ଗ୍ରହ ଉପଗ୍ରହ ଅଭିଯାନରେ ରୁଷିୟାର ସହଯୋଗିତାରେ କିପରି ଜେମିନି ଓ ସୋୟୁଜ୍‌ର ମିଳନ ସମ୍ଭବ ହୋଇଛି ଓ ଅଷ୍ଟ୍ରୋନଟ୍‌ମାନେ ଶୂନ୍ୟମଣ୍ଡଳରେ ବିଚରଣ କରିଛନ୍ତି; ବିଭିନ୍ନ ସ୍ପେସ୍‌କ୍ରାଫ୍‌ଟ, ମିସାଇଲ୍‌ସ୍, ରକେଟ୍ ଇଞ୍ଜିନ୍, ପ୍ରପେଲର୍, ଅଷ୍ଟ୍ରୋନଟ୍‌ଙ୍କ ପୋଷାକ, ଖାଦ୍ୟ, ପ୍ରାପ୍ତ ମେଡାଲ୍ ପ୍ରଭୃତି ଉପରେ ଦ୍ରୁତ ଦୃଷ୍ଟି ପକାଇ ଆମେ ପୋଟୋମାକ୍ ନଦୀ ଧାରେ ଧାରେ ହାଇୱେକୁ ଯାଇ ଫିଲାଡେଲ୍‌ଫିଆ ଫେରିଲୁ । ବାଟରେ ସୁଧାଂଶୁ କହିଲେ—ଆମେରିକାନ୍‌ଙ୍କର ମୁଖ୍ୟତଃ ତିନୋଟି ଜିନିଷ ପ୍ରିୟ—ଚେଭରଲେଟ୍ ଗାଡ଼ି, ବେସ୍‌ବଲ୍ ଖେଳ, ହଟ୍ ଡଗ୍ (ଗୋମାଂସ ପ୍ରସ୍ତୁତ ଏକ ଖାଦ୍ୟ, ଗରମ କୁକୁର ମାଂସ ନୁହେଁ ) ।

## ବିଶ୍ୱାସେ ବିଷ

ରାତିଯାକ ମନଟା ବହୁତ ଘାଣ୍ଟି ଚକଟି ହେଲା—କଣ କରିବା ? ଆଗେଇବା ନା ପଛେଇବା ?

ଅପରିହାର୍ଯ୍ୟ କାରଣରୁ କେତେକ ଯାତ୍ରା ବନ୍ଦ ହୁଏ, କେତେ ସିଟ୍ ପୂରଣ ନ ହୋଇ ଖାଲି ରହିଯାଏ । ଟିକେଟ୍ ରିଜର୍ଭ ନ ହୋଇଥିଲେ ବି ଅନେକ ସିଟ୍ ପାଇଯାନ୍ତି ।

ଭାଗ୍ୟ ଉପରେ ବିଶ୍ୱାସ କରି ଯିବା ? ଦିଲ୍ଲୀରେ ପହଞ୍ଚିଲା ପରେ ଭୁବନେଶ୍ୱରକୁ ସିଟ୍ ନ ପାଇଲେ କଣ ହେବ ? ରେଲ୍ ଗାଡ଼ିରେ ଯିବା ? ସେଥିରେ ଜାଗା ନ ପାଇଲେ ଖୁନ୍ଦାଖୁନ୍ଦି ଭିତରେ ଦି ଦିନ ପରେ ଦରମଲା ହୋଇ କଟକରେ ପହଞ୍ଚିବା । ଏକା ଥରକେ ବିଶ୍ୱଭ୍ରମଣ ମଜ୍ଜା ନିକଳିଯିବ !

ଦୀର୍ଘ ପଥ ଯାଇ ନିଉୟର୍କ୍‌ରେ ସିଟ୍ ନ ପାଇ ନିରାଶରେ ଫିଲାଡେଲ୍‌ଫିଆ ଫେରିଲେ ମୁଣ୍ଡ ବାଡ଼େଇ ଦେବାକୁ ମନ ହେବ, ପୁଣି ସାତ ଦିନ (୧୫ ତାରିଖ ପର୍ଯ୍ୟନ୍ତ) ସୁଧାଂଶୁଙ୍କ ଘରେ ରହିବା ମଧ୍ୟ ଅତ୍ୟନ୍ତ ଦୁଃଖଦାୟକ ହେବ । ଆମେ ବୁଲି ନ ପାରି ଅସ୍ଥିର ହେଉଥିବୁ । ସେ ବୁଲାଇ ନ ପାରି ବ୍ୟତିବ୍ୟସ୍ତ ହେଉଥିବେ । ଏ ଆତ୍ମପୀଡ଼ନ ଅସହ୍ୟ ।

ବଡ଼ ସକାଳୁ ଉଦସ୍ଙ୍କ ଫୋନ୍ କଲ୍—ଏକେଣ୍ଟ୍ ସ୍ୱେରପଟିଆ ହୋଇ ଲୁଚୁଛି, ଧରାକୁଆଁ ଦେଉନାହିଁ । ଏ ଅନିଶ୍ଚିତତା ଭିତରେ ନ ପଡ଼ି ତୁମେ ସବୁ ଓକାର୍କ ପ୍ଲେନ୍‌ରେ ସେଣ୍ଟ୍ ଲୁଇସ୍ ଫେରିଆସ । ଆମେ ପ୍ଲେନ୍ ଭଡ଼ା ଦାଖଲ କରି ଦେଇଛୁ । ମନ ଶାନ୍ତ ହେଲା—ଯାହାହେଉ, ଏବେ ଯାଇ ଆମ ଘରେ ତ ଆମେ ରହିବୁ, ଦୁଃଖ କଣ ?

ଉଦ ମୂଳରୁ ତ ସେଇଆ କହୁଥିଲା—ଭାଉଜ ଏତେ କାଳ ପରେ ଆସିଲେ, ଫେରିଯିବା ଲାଗି ତରବର କାହିଁକି ? ପୁଅମାନେ ତ ବଡ଼ ହେଲେଣି, ଝିଅ ନାହିଁ । ଘୁଡ଼ି ଘର କଣ ପିମ୍ପୁଡ଼ି ଖାଇ ଯାଉଛି ?

ମୁଁ କହିଲି—ନାହିଁ ଯେ ! ଯାହା ଦେଖିବାର ତ ଦେଖିଲୁ । ଆଉ କାହିଁକି ? ଲତା ଆଖିରୁ ଲୁହ ଗଡ଼ାଇ ପକାଇ କହିଲା—ଏ କଥା ନାହିଁ ସେ କଥା କଣ ହେଉଥିବ ! ଅମକ ଅଡ଼ୁଆ ଭିତରେ ସମକ୍ ମୁସ୍କିଲ୍ ଯଦି ପଡ଼େ !

# ବାଇଶି

ମଧ୍ୟମ ଆକୃତିର ଓ଼ଜାର୍କ କମ୍ପାନୀର ପ୍ଲେନ୍‌ଟିଏ; ଫିଲାଡେଲ୍‌ଫିଆରୁ ସେଣ୍ଟ୍‌ଲୁଇସ ଦୁଇଘଣ୍ଟା ଲାଗେ । ଯାତ୍ରୀମାନେ ବସିଲା ପରେ ଖଣ୍ଡିଏ ଖଣ୍ଡିଏ ବହି ବଣ୍ଟାଗଲା—ମଦ୍ୟ ବିଜ୍ଞାପନ ପୁସ୍ତକ ! ପ୍ଲେନ୍‌ରେ ଇଂଲଣ୍ଡ, ଫ୍ରାନ୍‌ସ୍‌, ଇଟାଲୀ ପ୍ରଭୃତି ବହୁ ଦେଶର ବିଭିନ୍ନ ଜାତୀୟ ମଦ୍ୟ କ୍ରୟ କରିବାକୁ ମିଳେ । କେବଳ ପେପ୍‌ସୀ, ଲେମୋନେଡ୍‌, ଆପଲ୍‌ରସ ମାଗଣା ।

ମଦ୍ୟ ବିକ୍ରୟ ପରେ ଗୋଟିଏ ଗୋଟିଏ ପ୍ଲେଟ ବାଉଁଶ ଟୋକେଇରେ ଖାଦ୍ୟ ପରିବେଷିତ ହେଲା—ଟର୍କି ମାଂସଦିଆ ରୁଟି, ଛେନା, ଲହୁଣୀ, କେକ୍‌, ମଞ୍ଜିହୀନ ଲାଲ୍ ଅଙ୍ଗୁର୍‌, କଫି ।

ମଦ୍ୟଗ୍ଲାସ୍ ଖାଲି କଲା ପରେ ଜଣେ ପ୍ରୌଢ଼ା ନାୟିକା ମୋ ପାଖରେ ପହଞ୍ଚିଲା—ମୁହଁରୁ ଅନର୍ଗଳ କବିତା ଛୁଟୁଥାଏ । ଆଦୌ ଶେଷ ହୁଏନାହିଁ; ମୁହେଁ ମୁହେଁ ରଚନା କରୁଛି ନା ମୁଖସ୍ଥ କବିତା ବୋଲୁଛି ?

ଏୟାର୍ ହୋଷ୍ଟେସ୍ ମୋ କାନରେ ଚୁପ୍ ଚୁପ୍ କହିଲା—ଏ ସବୁ ଆଦୌ କବିତା ନୁହେଁ; ବାତୁଳ ପ୍ରଳାପ । ମୁଣ୍ଡ ଗୋଳମାଳ ।

ହୋଷ୍ଟେସ୍ ତାପରେ ପ୍ରୌଢ଼ା କାନରେ କହିଲା—ଏମାନେ ଭାରତୀୟ; ଇଂରାଜୀ ଭାଷା ବୁଝନ୍ତି ନାହିଁ ।

ପ୍ରୌଢ଼ା କହିଲା—ମୋ ପୁଅ ଭାରତରେ ରହେ; ଶିକ୍ଷିତ ଭାରତୀୟ ଭଲ ଇଂରାଜୀ କହନ୍ତି ବୋଲି କହେ ।

ହୋଷ୍ଟେସ୍ ଅସୁବିଧାରେ ପଡ଼ିବା ଦେଖି ମୁଁ ଇଂରାଜୀ ନ ଜାଣିବାର ଭାନ କଲି । ପ୍ରୌଢ଼ା ନିରାଶ ହୋଇ ଜଣେ ଆମେରିକୀୟକୁ ପକଡ଼ିଲା । କବିତା ଆବୃତ୍ତି ପୁଣି ଅନର୍ଗଳ ଭାବରେ ଚାଲିଲା, ସେସବୁ ଯେତେ ମଧୁର ଲାଗିଲେ ବି ମରୁଭୂମିର କାନରେ ପଡ଼ୁଥାଏ । ଭଦ୍ରବ୍ୟକ୍ତି ଅବିଚଳିତ ।

ଲତାର ଭଙ୍ଗା ଭଙ୍ଗା ଇଂରାଜୀରୁ ହୋଷ୍ଟେସ୍ ବୁଝିଲା—ମୁଁ ଜଣେ ଭାରତୀୟ ଲେଖକ ।

ସେ କର ମର୍ଦ୍ଦନ କରି ମୋତେ ଶ୍ରଦ୍ଧା ଜଣାଇଲା, ଆଉ ପଚାରିଲା—ମୋ ବିଷୟରେ ଲେଖିବ ନାହିଁ ?

ଆମର କିଛୁ ଭାବ ଜମିବାର ଦେଖି ଲଜ୍ଜାର ମୁହଁ କୁହୁଳିଲା ପରି ଲାଗିଲା—ଏ କଣ ଈର୍ଷା ?

ସେଣ୍ଟ୍ ଲୁଇସ୍‌ରେ ପାଣିପାଣିକ ମିଳନରେ ପୁଣି ଆନନ୍ଦର ଜୁଆର ଉଚ୍ଛୁଳିଲା । ବାରଦିନ ତଳେ ଏଇ ଘରଗୁଡ଼ା ଯାଇଥିଲି । ଏ ମଧ୍ୟରେ ପତ୍ରପାତ ଋତୁ ପାଖେଇ ଆସିଛି । ଗଛଲତା ଖୁବ୍ ରଙ୍ଗୀନ୍ ହୋଇ ଉଠିଛନ୍ତି । ବର୍ଷାରେ ଧୋଇ ଧାଇ ହୋଇ ରଙ୍ଗ ଜଳିଲା ପରି ଝଟକୁଥାଏ ।

## ଅଲ୍ଲୀ ଖାଁ—ଏଜେଣ୍ଟ୍

ବିଶ୍ୱାସରେ ବିଷ ଦେଇଥିଲା ଏଇ ଖାଁ—ଆମ ଏଜେଣ୍ଟ୍ । ହାଇଦରାବାଦୀ ପଠାଣ । ହାଇଦରାବାଦରେ ତାର ପଠାଣୀ ସ୍ତ୍ରୀ ଅଛି । ତାର ଚାରୋଟି ପିଲା । ସେଣ୍ଟ୍ ଲୁଇସ୍‌ରେ ଆଉ ଗୋଟିଏ ସ୍ତ୍ରୀ—ଫିଲିପାଇନ୍‌ସ୍‌ର ଝିଅ । ତାର ମଧ୍ୟ ଚାରୋଟି ପିଲା । ଆଉ ଦୁଇଟି ବିଭା ହୋଇ ଚାରି ଚାରି ପିଲା ପଇଦା କଲେ କିଛି ଦୋଷ ବାଛୁଡ଼ାର ନାହିଁ । ଭାରତର ଜନନିୟନ୍ତ୍ରଣର ବାହାରେ ସେ, କିନ୍ତୁ ଏହି ରୀତି ଯୁଗୋପଯୋଗୀ ନୁହେ, ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ୍, ମସ୍‌ଲିମ୍ ଯାହା ହେଉ ପଛକେ ।

ଶହେ ଡଲାର୍ ଲାଭରେ ସେ ପଢ଼ିଲେ ଆମ ଟିକେଟ୍ ୧୫ ତାରିଖକୁ କରିଥିଲା । ତାପରେ ଏବେ ଆମ ଟିକେଟ୍ ପାଖରେ ୧୫ ଦିନ ରଖି ୭ ତାରିଖକୁ ବଦଳାଇଲା, ସେଇ ଲାଗିଲା । ଏଥିଲାଗି ଆଉ ଶହେ ଡଲାର୍ ନେଲା ।

ପ୍ରକୃତ ପକ୍ଷେ ସେ କିଛି କରିନାହିଁ, ଟିକେଟ୍‌ରେ ୧୫ ତାରିଖ କାଟି ସାତ ତାରିଖ କରିଦେଇଛି । ରିଜର୍‌ଭେସନ୍ ବା କନ୍‌ଫର୍‌ମେସନ୍ କିଛି ନ ପାଇ ଆମକୁ କହିଛି—ହୋଇଯାଇଛି, ସେ ତାହା ମିଛୁଆ । ତାକୁ ଅବିଶ୍ୱାସ କାହିଁକି କିଏ କରିବ ? କିନ୍ତୁ ଅତି ବିଶ୍ୱାସର ଫଳ ହେଲା ବିଷମୟ । ଉଦରାଇବାକୁ ଅର୍ଥ ଦଣ୍ଡ ଦେବାକୁ ହେଲା ଏକ ହଜାର ଡଲାର୍ !

ଇରା ପଚାରିଲା—ମୋ ଲାଗି ଭାଇନା ଭାଉଜଙ୍କର ଏତେ କଷ୍ଟ !

କହିଲି—ଏ ପର୍ଯ୍ୟନ୍ତ କେବଳ କଷ୍ଟ ଦେଇଛୁ; ଏବେ ଆହୁରି ଦେଲୁ—ଅର୍ଥନାଶ ମନସ୍ତାପ !

ଅର୍ଥନାଶ ତ ଯାହା ହେବାର ହେଲା । ମନସ୍ତାପ କରି ଆଉ ସେ କଷ୍ଟ ବଢ଼ାଅ ନାହିଁ ।

ଇସ୍—ଦୁଃଖ କରିବି ନାହିଁ ଭାବିଲେ କି ସେଥିରୁ ତ୍ରାହି ମିଳେ ?

ଜୀବନରେ କେବେ ଏପରି ଭୁଲ୍ କରିନାହିଁ ।

'ଏ ଭୁଲ୍ ତୁମର ନୁହେ । କାହାକୁ ବିଶ୍ୱାସ ନକରି ଏ ସଂସାରରେ ମଣିଷ ଚଳିବ କିପରି ।'

'ତେବେ ମୋର କିଛୁ ତ୍ରୁଟି ରହିଗଲା, ନିଜେ ଏୟାର୍ ଏଣ୍ଡିଆକୁ ଟେଲିଫୋନ୍ କରି ନ ବୁଝିଲି କାହିଁକି ?'

'ଏପରି ସବୁ କଥା କେହି ବୁଝି ନ ପାରେ, ନିର୍ଭର କରିବାକୁ ହିଁ ହେବ । ତେବେ ମୋର ଗୋଟିଏ ଅନୁରୋଧ ।'

'କିଣ ପ୍ରତିଶୋଧ ନେବ ?'

'ତା ମୁଁ କହୁନାହିଁ । ଅନ୍ୟମାନଙ୍କୁ ସତର୍କ କରିଦିଅ । ଆମ ପରି ଆଉ ଯେପରି କାହାକୁ ଅସୁବିଧାରେ ପଡ଼ିବାକୁ ନ ହୁଏ !'

'ତୁମେସବୁ ଫେରିଆସିଲା ପରେ ସେ ନିଲଠା ଏବେ ମୁହଁ ଦେଖାଉଛି, କହୁଛି—ସିଟ୍ ମିଳିଯାଇଥାନ୍ତା । ମୁଁ ସବୁ ବ୍ୟବସ୍ଥା କରିଥିଲି ! ଗଲେ ନାହିଁ କାହିଁକି ?'

'କଟା ଘାରେ ଚୂନ ଲଗୁଛି !'

'ହଉ, ଯାହା ହେବାର ହେଲାଣି । ଏଥିଲାଗି ଯାହା ଅଧିକ ଖର୍ଚ୍ଚ କରିବାକୁ ପଡ଼ୁଛି, ମୁଁ ଦେଇଦେବି ।'

'ଆଉ ସେ ବିଷୟରେ ଆଲୋଚନାକରି ନିଆଁରେ ପେଟ୍ରୋଲ୍ ଢାଳ ନାହିଁ, ତୁମ ସହିତ ଏଇ ଶେଷ କାରବାର' । ସ୍ୱା କହି ଠକ୍‌କିନେ ଫୋନ୍‌ଟି ରଖିଦେଲି ।

ମନେ ମନେ ଭାବିଲି—ଇସ୍ ସୁଚତୁରୀ; ତାକୁ ଏ ଲୋକ ଠକି ଦେଲା କିପରି ? ଫେର୍ ଭାବିଲି—ଯେତେ ଚାଲାକ୍‌ଚତୁର ହେଲେ ବି ଏ ସଂସାରରେ ଠକାମିରେ ନ ପଡ଼ୁଛି କିଏ ?

## ମର୍କୋପୋଲୋ

ସେଣ୍ଟ୍‌ଲୁଇସ୍‌ରେ ଭ୍ରମଣର ଶେଷ ସପ୍ତାହଟି କଟିଲା କିପରି ? ଗୃହମୁଖୀ, ବ୍ୟଥାଦଗ୍ଧ, ଅସ୍ଥିର ମନକୁ ସ୍ଥିର, ଶାନ୍ତ, ଶୀତଳ କରିବାକୁ କିଛି ସମୟ ଲାଗିଲା ।

ବସି ଟେଲିଭିଜନ୍ ଦେଖିଲି—"ମର୍କୋପୋଲୋ" ମୋ ଯାଯାବର ଜୀବନର ପ୍ରେରଣାଦାତା ମର୍କୋପୋଲୋଙ୍କୁ ନମସ୍କାର । ଦୁର୍ଦ୍ଧର୍ଷ ମନୋବଳ ତାଙ୍କର, ଅସୀମ ସହିଷ୍ଣୁତା । ପ୍ରତୀଚ୍ୟ ସହିତ ପ୍ରାଚ୍ୟର ସମ୍ପର୍କ ସ୍ଥାପନକାରୀ ସାହିତ୍ୟିକ ସେ ।

ମର୍କୋପୋଲୋଙ୍କ ପରି ପଥଦର୍ଶୀ ନୁହେଁ; ବୈଜ୍ଞାନିକମାନଙ୍କ ମହାନ୍ ଦାନ ଫଳରେ ମର୍କୋପୋଲୋଙ୍କୁ ଯେଉଁତକ ପଥ ଅତିକ୍ରମ କରିବାକୁ ସାଢ଼େ ତିନିବର୍ଷ ଲାଗିଥିଲା, ଆକାଶ ପଥରେ ମୁଁ ମାତ୍ର ସାଢ଼େ ତିନି ଘଣ୍ଟାରେ ତାହା ଅତିକ୍ରମ କରିଅଛି ।

ତାଙ୍କ ପରି ଆଉଜଣେ ଭ୍ରମଣକାରୀ ସଂସାରରେ ଥିବ କି ନ ଥିବ । କିନ୍ତୁ ଏ ଯୁଗରେ ମୋ ପରି ଭ୍ରମଣକାରୀ ଶତ ସହସ୍ର, ପ୍ରାକୃତିକ ଶୋଭା ଉପଭୋଗ କରୁଛନ୍ତି, ଲେଖୁଛନ୍ତି, ଆଙ୍କୁଛନ୍ତି, ଗୋଟା ପୃଥିବୀକ ପାହୁଣ୍ଡକେ ବୁଲି ଆସିବା ଲୋକର ବି ଅଭାବ ନାହିଁ ।

ଏ ଯୁଗର ଭ୍ରମଣ ଗୋଟାଏ ବଡ଼ କୃତିତ୍ୱ ନୁହେଁ । ଏଥିରେ କିଛି ମହତ୍ତ୍ୱ-ମହିମା ଥିଲେ ତାହା ଉଦ୍ଭାବକର ବା ଦ୍ରୁତଗାମୀ ଯାନସ୍ରଷ୍ଟାର ପ୍ରାପ୍ୟ ।

ସେତେବେଳ ଓ ଏତେବେଳ ମଧ୍ୟରେ ଗୋଟିଏ ମାତ୍ର ସାମ୍ୟ—ସେ ଶଙ୍କା—ବିଶ୍ୱଦର୍ଶନ ନଇଲେ ମୃତ୍ୟୁବରଣ ।

ଭ୍ରମଣରେ ଯେତେ ଆନନ୍ଦ ମିଳେ, ତା ତୁଳନାରେ ଶଙ୍କା ବା ପଥକଷ୍ଟ ଅକିଞ୍ଚିତ୍କର ।

ସେ ଯୁଗ କାହାଣୀର ପୃଷ୍ଠାଟିଏ ଦେଲି—ତୁଳନା କରି ଦେଖିହେବ—ସୁଖ କେତେ, ଦୁଃଖ କେତେ ।

ମର୍କୋପୋଲୋ ଭେନିସ୍‌ର ଦୁଃସାହସୀ ବୀର, ପଥ ଆବିଷ୍କର୍ତ୍ତା ଭ୍ରମଣକାରୀ । ମାତ୍ର ୧୭ ବର୍ଷ ବୟସରେ ଦୁର୍ଗମ ଏସିଆ ପଥରେ ସେ ଚୀନ୍ ଦେଶକୁ ଯାତ୍ରା କରିଥିଲେ । ସେତେବେଳେ କୁବ୍ଲାଇ ଖାଁ ଚୀନ୍‌ର ସମ୍ରାଟ୍ । ତାଙ୍କ ଦରବାରରେ ମର୍କୋ ବହୁ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ । ସେ ନିଜର ଭ୍ରମଣକାହାଣୀ ଲିପିବଦ୍ଧ କରି ଯାଇଛନ୍ତି । ତାଙ୍କ ସମୟ—୧୨୫୪ ରୁ ୧୩୨୪ ଖ୍ରୀଷ୍ଟାବ୍ଦ । ଇଟାଲୀରୁ ଚୀନ୍‌ରେ ପହଞ୍ଚିବା ଲାଗି ତାଙ୍କୁ ସାଢ଼େ ତିନିବର୍ଷ ଲାଗିଥିଲା । ଟାଇଗ୍ରିସ୍ ନଦୀ ବାଟେ ବାଗ୍‌ଦାଦ୍, ତାପରେ ନଦୀ ମୁହାଣରୁ ପାରସ୍ୟ ଉପସାଗର ବାଟେ ହର୍‌ମୁଜ୍, ପାରସ୍ୟ ମରୁଭୂମି ଲଙ୍ଘନ କରି ଆଫଗାନିସ୍ଥାନ୍ ଓ ସେଠାରୁ ଚୀନ୍‌ର

ରାଜଧାନୀ ପେକିଙ୍ଗ୍‌ରେ ପହଞ୍ଚିଥିଲେ । ଚୀନ୍‌ର ୟାଙ୍ଗ୍‌ଚୁଉ ପ୍ରଦେଶର ଶାସକ ହେଲା ପରେ ସେ ସାଇବେରିଆ, ଜାଞ୍ଜିବର, ମାଡ଼ାଗାସ୍କର୍, ଆବିସିନିଆଁ ବୁଲି ଦେଖିଥିଲେ । ତାଙ୍କ କଳନାରେ ଇଉରୋପ ଅପେକ୍ଷା ଚୀନ୍‌ର ସଭ୍ୟତା ଉଚ୍ଚତର କୋଟୀର ଥିଲା ।

ପାରସ୍ୟର ରାଜା ଅର୍ଘୁନ୍ ଖାଁଙ୍କ ରାଣୀ ପ୍ରାଣତ୍ୟାଗ କଲେ । ରାଜା ଚୀନ୍ ସମ୍ରାଟ କୁବ୍ଲାଇ ଖାଁଙ୍କୁ ରାଜ ପରିବାରର ଗୋଟିଏ କନ୍ୟା ପଠାଇବା ଲାଗି ଅନୁରୋଧ ଜଣାଇଲେ । କନ୍ୟା ଠିକ୍ ହୋଇଗଲା । ତାକୁ ପାରସ୍ୟ ନେଇଯିବା ଲାଗି ଲୋକ ବି ଠିକ୍ ହେଲା । କିନ୍ତୁ ଚୀନ୍‌ରୁ ପାରସ୍ୟକୁ ବାଟ କଢ଼ାଇ ନେବ କିଏ ? ବାଟଦେଖାଳୀ ଭାବେ ମର୍କୋପୋଲୋ ସେମାନଙ୍କ ସଙ୍ଗେ ଗଲେ । ସେମାନଙ୍କୁ ପାରସ୍ୟ ଦେଶରେ ପହଞ୍ଚାଇବା ପରେ ସେ ସ୍ୱଜନ୍ମଭୂମି ଭେନିସ୍‌କୁ ଫେରିଲେ ।

ସେତେବେଳେ ଭେନିସ୍ ସହିତ ଜେନୋଆର ଯୁଦ୍ଧ ଲାଗିଥାଏ । ମର୍କୋ ଜଣେ ଯୁଦ୍ଧ ବନ୍ଦୀ ଭାବରେ ଜେନୋଆର ଜେଲ୍‌ଖାନାରେ ରହିଲେ । ସହବନ୍ଦୀମାନଙ୍କୁ ସେ ନିଜ ଜୀବନର ରୋମାଞ୍ଚକର ଭ୍ରମଣକାହାଣୀ ଶୁଣାନ୍ତି । ଏହି ଚମକର୍ପକ କାହାଣୀକୁ ଲିପିବଦ୍ଧ କରିବା ଲାଗି ଜଣେ ବନ୍ଦୀ କଏଦୀ ଦିନେ ତାଙ୍କୁ ଅନୁରୋଧ କଲେ ।

ପର କଲମରେ ଲେଖା ଫରାସୀ ଭାଷାର ସେହି କାହାଣୀଲିପି ଏବେ ପ୍ୟାରିସ୍‌ର ଜାତୀୟ ପାଠାଗାରରେ ସଂରକ୍ଷିତ ହୋଇଅଛି ।

ତାଙ୍କର ଦ୍ୱିତୀୟ ଚୀନ୍ ଭ୍ରମଣ ବି ସ୍ଥଳ ପଥରେ । ସମ୍ରାଟ କୁବ୍‌ଲାଇ ଖାନ୍ ଏଥର ସୁବ୍ୟବସ୍ଥା କରି ଦେଇଥିଲେ । ତାପରେ ଜଳପଥରେ ସେ ଫେରିଥିଲେ— ପେକିଙ୍ଗ୍‌ରୁ ଶ୍ୟାମ୍, ତାପରେ ସିଂହଳ, ଭାରତ, ଆରବ୍ ସାଗର ବାଟେ ହରମୁଜ୍, ତାପରେ ଭେନିସ୍, ଏଥିଲାଗି ମଧ୍ୟ ଦୀର୍ଘକାଳ ଲାଗିଥିଲା । ପାଲଟଣା ପୋତରେ ଆସିବାକୁ ହେଉଥିବାରୁ ବାୟୁର ମର୍ଜି ଉପରେ ନିର୍ଭର କରିବାକୁ ହେଉଥିଲା ।

ଜଳପଥରେ ପ୍ରତିକୂଳ ଜଳବାୟୁ, ଝଞ୍ଜା, ସ୍ଥଳପଥରେ ଜଳହୀନ ମରୁଭୂମି, ଦୁରାରୋହ ପର୍ବତ, ଦୁର୍ଗମ ଅରଣ୍ୟ ଓ ଭୟଙ୍କର ଦସ୍ୟୁଦଳର ସମ୍ମୁଖୀନ ହେବାକୁ ହୋଇଥିଲା, କେତେବେଳେ ପଦବ୍ରଜରେ, କେତେବେଳେ ବା ଅଶ୍ୱ ପୃଷ୍ଠରେ ତାଙ୍କୁ ଗତି କରିବାକୁ ପଡ଼ିଥିଲା ।

## ଆରେ ଭୁଲ, ବାରବୁଲ

ମୁଁ ବୁଲେ ଖାଲି ପାହାଡ଼ ଜଙ୍ଗଲରେ ନୁହେ, ଗାଆଁରେ; ଛ' ଗାଁ ଗଲେ ସେରେ ମିଳୁ, ନ ଗାଁ ଗଲେ ସେରେ ମିଳୁ ବା କିଛି ନ ମିଳୁ ।

କବିତା ଏବେ ମୋର ନିଶିତ ରାଜ୍ୟ, ଲେଖେନାହିଁ କି ପଢ଼େନାହିଁ । ସେଦିନ ଉଦୟପୁର ଲାଇବ୍ରେରୀ ଖୋଜି ଖୋଜି ହାତ ପଡ଼ିଗଲା ଖଲିଲ ଗିବ୍ରାନଙ୍କ 'ଭବିଷ୍ୟବକ୍ତା' କବିତା ବହିଟି ଉପରେ । ବାରବୁଲା ତ; ତାଙ୍କ ଭାବରାଜ୍ୟରେ ବୁଲି ଟିକେ ହାଓ୍ୱା ଖାଇବାକୁ ମନ ଖିଲି ଖିଲି ହେଲା !

ଖଲିଲ ଗିବ୍ରାନ ଆଧୁନିକ କବି । ଘର ଲେବାନନ । ଜନ୍ମକାଳ ୧୮୮୩, ମୃତ୍ୟୁ ୧୯୩୧; ମଧ୍ୟ ପ୍ରାଚ୍ୟ ଓ ଆମେରିକାରେ ତାଙ୍କ କବିତା ସମାଦୃତ, ଏହା ଯେପରି ମନୋରଞ୍ଜକ, ସେହିପରି ଦାର୍ଶନିକ ଭାବଭରା ଓ ଉପଦେଶାତ୍ମକ ।

ଉପଦେଶ ଦେଲେ କବିତ୍ୱର ହାନି ଘଟେ । କିନ୍ତୁ ଗୁରୁ ଗମ୍ଭୀର ଆସନରେ ବସି କବି ଉପଦେଶବାଣୀ ଢାଳି ଦେଇ ନାହାନ୍ତି । ତାଙ୍କ ଉପଦେଶ ଅନୁଭୂତି-ପ୍ରସୂତ; ଏକାନ୍ତ ଶିକ୍ଷଣୀୟ । ତେଣୁ ସୁଖପାଠ୍ୟ ଓ ସହଜଗ୍ରାହ୍ୟ ।

ତାଙ୍କ କବିତା ବନ୍ଧନ ରଚନାରୁ ନିର୍ମୁକ୍ତ, ସ୍ୱତଃସ୍ଫୂର୍ତ୍ତି, ସତେ ଯେପରି କୌଣସି ମହାନ୍ତର ଆଧ୍ୟାତ୍ମିକ ସ୍ରୋତ ସହିତ ତାଙ୍କର ନିବିଡ଼ ସଂଯୋଗ ରହିଛି ।

'ଯଦି କବିତାର ଭାବଦର୍ଶନ ଗ୍ରହଣ କରି ନ ପାରିଲ, ତେବେ ତୁମେ ସତ୍ୟ ପ୍ରତି ଉଦାସୀନ ଓ ମୃତ ।' ପ୍ରକାଶକଙ୍କର ଏହି ଉକ୍ତି ଯଥାର୍ଥ ।

ଗିବ୍ରାନଙ୍କ କବିତାର କେତୋଟି ପଦ ଉଦ୍ଧୃତ ହେଲା—

୧— କାମନାମାନେ ଆପଣାଗୁଁ ଏ ଜନ୍ମ ନିଅନ୍ତି
ତୁମ ଭିତରୁ;
କିନ୍ତୁ ତୁମର ନୁହନ୍ତି,
ଯେପରି ତୁମ ପିଲାମାନେ
ତୁମ ପାଖରେ ଥିଲେ ବି,
ତୁମେ ସେମାନଙ୍କ ଅଧିକାରୀ
ବୋଲାଉ ଥିଲେ ବି ।
ତୁମେ ଧନୁ
ପିଲାମାନେ ଶର
ତୁମଠାରୁ ନିକ୍ଷିପ୍ତ
ହୋଇଛନ୍ତି ।

୨— ନିଜ ଧନସମ୍ପତ୍ତି ଦାନ କଲେ
ତୁମେ ନିଜର କିଛିଟା ମାତ୍ର ଦିଅ,
ନିଜକୁ ଦେଲେ
ତୁମେ ପ୍ରକୃତରେ ଦିଅ ।

୩— କର୍ମ
ପ୍ରେମର ଏକ ଦୃଶ୍ୟମାନ ରୂପ ।

୪— ତୁମ ସୁଖ
ଆବରଣହୀନ ଦୁଃଖ;
ଯେଉଁ କୂପରୁ
ତୁମର ହାସ୍ୟର ଜୁଆର ଛୁଟେ
ଏହା ହିଁ ତୁମ ଅଶ୍ରୁରେ ଭରି ଥିଲା;
ତା ବ୍ୟତୀତ ଆଉ କ'ଣ ହୋଇ ପାରେ ?
ତୁମ ମନରେ ଦୁଃଖ ଯେତେ ଗଭୀର ଗର୍ତ୍ତ କରେ
ତେତେ ଆନନ୍ଦ ତହିଁ ଧରେ ।

୫— ଜୀବନର ଯାବତୀୟ ଦୁଃଖ ଯନ୍ତ୍ରଣା
ଆତ୍ମସୃଷ୍ଟ ।

୬— ଶୋଭା ଚିରନ୍ତନୀ
ନିଜରେ ଦର୍ପଣେ ଦେଖେ
ତୁମେ ନିଜେ ଚିରନ୍ତନ
ତୁମେ ହିଁ ଦର୍ପଣ ।

୭— ତୁମ ଦୈନନ୍ଦିନ ଜୀବନ
ତୁମର ମନ୍ଦିର
ତୁମର ଧର୍ମ ।

୮— ଜୀବନ ଓ ମୃତ୍ୟୁ ଏକା ପରି
ନଦୀ ଆଉ ସମୁଦ୍ର ଯେପରି ।

୯— ନିଜନତା ଯେତେବେଳେ ପ୍ରେରଣା ଦିଏ
ତୁମେ ଗୀତ ଗାଅ ।

## ଜେମ୍ସ୍ ମିଚେନ୍

ମିଚେନ୍ ଆମେରିକାର ଜଣେ ଔପନ୍ୟାସିକ, ପୁଲିଟ୍‌ଜର୍ ପୁରସ୍କାର ବିଜେତା । ଏହି ସାହିତ୍ୟିକଙ୍କୁ ଟେକ୍‌ସାସ୍ ବିଶ୍ୱବିଦ୍ୟାଳୟ ବରଣ କରି ନେଇଛି । ଜୀବନର ଅବଶିଷ୍ଟାଂଶ ସେ ସେହିଠାରେ କଟାଇବେ, ବିଶ୍ୱବିଦ୍ୟାଳୟ ତାଙ୍କର ସମସ୍ତ ବ୍ୟୟ ବହନ କରିବ ।

ଭାରତର ଏବ ସାହିତ୍ୟଚର୍ଚ୍ଚା ଏକ ସାମୟିକ ବିନୋଦନ । ସଂସାର ତା ଉପର ଅଧିକାଂଶ ଝାଳ ବୁହାଇ ଦିଏ । ସାହିତ୍ୟ ଲାଗି ସାମୟିକ କେତେ ବିନ୍ଦୁ ମାତ୍ର ଝରେ । କେବଳ ସାହିତ୍ୟ ଲେଖି ଜୀବନ ବିତାଉଥିବା ସମୃଦ୍ଧ ଦେଶର ସାହିତ୍ୟିକଙ୍କ ସହିତ ଭାରତୀୟ ସାହିତ୍ୟିକ ପ୍ରତିଯୋଗିତାରେ ଛିଡ଼ା ହୋଇ ପାରିବ କିପରି ? ଭାରତର କେଉଁ ବିଶ୍ୱବିଦ୍ୟାଳୟ ଔପନ୍ୟାସିକଙ୍କୁ ନିଶ୍ଚିନ୍ତ ଭାବେ ସୃଷ୍ଟି କର୍ମ ସାଧନ ଲାଗି ଏପରି ବରଣ କରି ନେଇଛି ?

## ନୋବେଲ୍ ପୁରସ୍କାର

ସାହିତ୍ୟ ଲାଗି ୧୯୮୪ର ନୋବେଲ୍ ପୁରସ୍କାର ପାଇଛନ୍ତି ଜେକୋସ୍ଲୋଭାକିଆର ଗୀତିକବି ଜେରୋସ୍ଲାଭ୍ ସଫ୍‌ଟ—ଏକ ଲକ୍ଷ ତେୟାନବେ ହଜାର ଡ଼ଲାର୍, ଭାରତୀୟ ମୁଦ୍ରାରେ ପ୍ରାୟ ଚବିଶ ଲକ୍ଷ ଟଙ୍କା !

ରବୀନ୍ଦ୍ରନାଥ (୧୯୧୩)ଙ୍କ ପରେ ଆଉ ଜଣେ ଭାରତୀୟ ସାହିତ୍ୟିକ ପକ୍ଷରେ ଏ ପୁରସ୍କାର ପ୍ରାପ୍ତି ସମ୍ଭବ ହୋଇନାହିଁ । ସତେ କଣ ଏ ମଧ୍ୟରେ ସେପରି ଆଉ ଜଣେ ପ୍ରତିଭାଶାଳୀ ସାହିତ୍ୟିକ ଭାରତରେ ଆବିର୍ଭୂତ ହୋଇ ନାହାନ୍ତି ? କିମ୍ବା ସେହି ସ୍ତରର ବିବେଚନାକୁ ଆସିବା ଲାଗି ଯେଉଁ ଶ୍ରମ ବା ଅର୍ଥବ୍ୟୟ ଆବଶ୍ୟକ, ତାହା ଆଉ କେହି କରିନାହିଁ । ୟେଟ୍‌ସ୍ ସୁପାରିସ୍ କରି ନଥିଲେ, ରବୀନ୍ଦ୍ରନାଥ ସ୍ୱୟଂ ଇଂଲଣ୍ଡ୍ ଯାଇ ପ୍ରସ୍ତାବ କରି ନ ଥିଲେ 'ଗୀତାଞ୍ଜଳି', କ'ଣ ଏହି ପୁରସ୍କାର ଲାଗି ଉପସ୍ଥାପିତ ହୋଇ ପାରିଥାନ୍ତା ?

ଏହି ପୁରସ୍କାର ପ୍ରଥମ ଥର ଜଣେ ଜେକୋସ୍ଲୋଭାକୀୟ ଲାଭ କଲା । ସେ ସ୍ୱଦେଶ ବାହାରେ ଅପରିଚିତ; ତାଙ୍କର ଅନ୍ୟ କୌଣସି ପୁସ୍ତକ ବିଦେଶୀ ଭାଷାରେ ଅନୁବାଦିତ ହୋଇନାହିଁ । ଏହି ପୁରସ୍କାର ଲାଭ ଫଳରେ ସେ ସ୍ୱଦେଶରେ ଜାତୀୟ କବିର ସମ୍ମାନଜନକ ଆସନ ଲାଭ କଲେ । କବିଙ୍କ ବୟସ ୮୩ ବର୍ଷ, ହୃଦ୍‌ରୋଗରେ ଆକ୍ରାନ୍ତ । ଏ ଶୁଭ ସମ୍ବାଦରେ ସେ ଉଦ୍‌ଜୀବିତ ହେବେ । ସୋଭିଏଟ୍ ଇଉନିୟନ୍‌ରେ ଏହା ଏକ ନିଷିଦ୍ଧ ପୁସ୍ତକ । ପୁରସ୍କାର ପ୍ରଦାନରେ ବିଦଗ୍ଧ ବୁଦ୍ଧି କାର୍ଯ୍ୟ କରିଛି ନା ରାଜନୀତି ?

# ତେଇଶି

## ବଡ଼ ଘଟଣା ଦୁର୍ଘଟଣା

ଡାକ୍ତର ପକ୍ଷରେ ବଡ଼ ସମ୍ବାଦ ଦୁଃସମ୍ବାଦ, ବଡ଼ ଘଟଣା ଦୁର୍ଘଟଣା । ଏ ଦୁଇ ଡାକ୍ତରଙ୍କ ଭିତରୁ ଜଣେ ରୋଗୀକୁ ଆବଶ୍ୟକ ମତେ ଅଚେତା କରେ, ଆଉ ଜଣେ ଭଙ୍ଗା ହାଡ଼ ଖଣ୍ଡି ଯୋଡ଼ିଦିଏ । ଇସ୍ରି ହିଦସ୍ତଙ୍କର ନିତ ଦିନର ଘଟଣା ଦୁର୍ଘଟଣା । ତା ସହିତ ସେମାନଙ୍କ ଜୀବନ ଜଡ଼ିତ—କିଏ ବଞ୍ଚେ, କିଏ ମରେ, କିଏ ବା କ୍ଲୀବ, ବିକଳାଙ୍ଗ ହୋଇ ରହେ । ଦୁର୍ଘଟଣା ଆଗରେ ସେମାନଙ୍କ ଜୀବନର ଯେ କୌଣସି ଘଟଣା ଗୌଣ ।

ଏଇ ଦୁର୍ଘଟଣା ଭିତରେ ଆମ ଭ୍ରମଣ ଗୋଟିଏ । ଦୁର୍ଘଟଣା ବେଳେ ବେଳେ ଘଟୁ ଘଟୁ ଅଧା ରହିଯାଏ । ସେ ଦିନ ସେମିତି ଘଟିଲା ।

କଥା ଅଛି— ହିନ୍ଦି ନ ଦିଶେ<br>ଭିତରେ ପଶେ<br>ସଜ ଗୋବରରେ ଅଂସେଇ ବସେ<br>ଡାକ ବୋଲେ ପୁତା, ନିଶ୍ଚେ ବରଷେ ।

ଆମେରିକାର ବାଟଘାଟରେ ଗୋବର ଲଣ୍ଡାଏ କୋଉଠି ପଡ଼ିଥିବାର ଦେଖାଯାଏ ନାହିଁ । ଅଂସେଇ ବି ଅଗୋଚର । ଅତଏବ୍ ସେ ଲକ୍ଷଣଟି ବାଦ୍ ପଡ଼ିଲା । କେବଳ ସୂର୍ଯ୍ୟ ଦେଖାଦେଇ ଲୁଚିଗଲେ । ତାପରେ ମୌସୁମୀ ବର୍ଷା ପରି ସେଣ୍ଟ ଲୁଇସ୍‌ରେ ହେଲା ବର୍ଷା ।

ଟିକିଏ ବୁଆଡ଼େ ବୁଲାଇ ନେବା ଇସ୍ରିର ଇଚ୍ଛା, କିନ୍ତୁ ବର୍ଷା ବାଦ ସାଧିଲା । ବର୍ଷା ଧୁଆ, ସଜ ସୁନ୍ଦର ପ୍ରକୃତି ଉପରେ ଆଖି ପକାଇଛୁ କି ନାହିଁ, ବେତାର ଯନ୍ତ୍ର ବାଜି ଉଠିଲା—ବିପଦ—ପାକସ୍ଥଳୀରୁ ରକ୍ତ କ୍ଷରଣ—ଆଶୁ ଅପରେସନ୍—ଶୀଘ୍ର, ଶୀଘ୍ର ? ଟିକିଏ ବିଳମ୍ବରେ ହୁଏତ ଜୀବନ ବୁଲିଯିବ ।

ଇସ୍ରି ହସ୍‌ପିଟାଲ୍ ଗଲା । ମୁଁ ହିଦସ୍ତର ପାଠାଗାର ଦରାଣ୍ଡିଲି । ପାଠାଗାରଟି ବିଚ୍ଛିନ୍ନ—ଏ ଘରେ, ସେ ଘରେ, ଆର ଘରେ; ଅଫିସ୍ ଘରେ କେବଳ ଅସ୍ଥିଶଲ୍ୟବିଦ୍ୟା ସମ୍ପର୍କୀୟ ପୁସ୍ତକ । ଅନ୍ୟାନ୍ୟ ସାହିତ୍ୟ, ଦର୍ଶନ, ଇତିହାସ,

ଧର୍ମ, ଜୀବନଚରିତ ଆଦି ବିବିଧ ବହୁ ପୁସ୍ତକ ରହିଅଛି । ଏବେ ଏ ସବୁ କେବଳ ଗୃହମଣ୍ଡନ । ସେତେବେଳେ ତରୁଣ ବୟସ, ଧନ୍ଦା ଅଳ୍ପ ଥିଲା । ସମୟ ମିଳୁଥିଲା, ପଢ଼ୁଥିଲେ ।

ଏବେ ଦୈନନ୍ଦିନ କର୍ତ୍ତବ୍ୟ ସାଧନ ଲାଗି ବେଳ ଅଣ୍ଟେନାହିଁ । ଦୈନିକ ସମ୍ବାଦପତ୍ର ଓଲଟା ହୁଏନାହିଁ । ଉଚ୍ଚ ସ୍ତରର ପତ୍ରିକା ଉପରେ ଆଖି ବୁଲାଇ ନେବାକୁ ଅବସର ହୁଏନାହିଁ । ଭିନାରଟିଆ, ଟେଲିଭିଜନ୍ ଦେଖା ହୁଏ ଏକା-ବେଳକେ । ଟେଲିଭିଜନ୍‌ରୁ କ୍ରୀଡ଼ା, ନାଟକ, ପାଣିପାଗ, ବଜାରଦର, ବ୍ୟବସାୟ-ବାଣିଜ୍ୟ, ରାଜନୀତି ଓ ସଂସ୍କୃତିର ସମ୍ବାଦ ମିଳେ ଯେତିକି, ସେତିକି ହିଁ ଏହି ଦର୍ଶକର ମୁଖ୍ୟ ପୁଞ୍ଜି ।

ପାଠାଗାର ଖୋଜୁ ଖୋଜୁ ମାର୍କଟ୍ୱେନ୍‌ଙ୍କ ଗ୍ରନ୍ଥାବଳୀଟିଏ ମିଳିଗଲା; କୋଡ଼ିଏବର୍ଷ ପର ସ୍ମୃତିରେ ଜାକିଦେଲା । କେତୋଟି ଉପନ୍ୟାସ, ପ୍ରବନ୍ଧ, ଆତ୍ମଚରିତ, ମିସିସିପି ନଦୀ ତୀରର ଜୀବନଯାତ୍ରା ଭ୍ରମଣକାହାଣୀ ! ସମସ୍ତ କାହିଁ ? ଏଠୁ ସେଠୁ ଟିକିଏ ଟିକିଏ ପଢ଼ିଗଲି—

‘ଆରିଷା ପିଠା
ଯୁଆଡ଼ୁ ଖାଇଲେ ସିଆଡ଼ୁ ମିଠା ।’

ପ୍ରଚେଷ୍ଟାର କ୍ଳାନ୍ତତା ଟିକିଏ ବୋଲି ନାହିଁ, ଆପେ ଆପେ ଯେପରି ଲେଖି ହୋଇ ଯାଇଛି—ଜୀବନ୍ତ ଚରିତ୍ର ସବୁ—ବଗୁଲିଆ ପିଲା, ଯେ ଗୁଲିଲା ଶଗଡ଼ରେ ହାତ ଲଗାଏ; କିଶୋର ପ୍ରେମିକ ପ୍ରେମିକା; ମଦୁଆ, ମଣିଷମାରୁ, ଓଲିକାବଡ଼ା—ହାନିବାଲ୍ ସହର ଓ ଆଖ ପାଖ ଗ୍ରାମର ଚରିତ୍ରସବୁ ।

ବର୍ଷାଧୁଆ ଚକ୍ ଚକ୍ ସନ୍ଧ୍ୟା ପ୍ରକୃତି, ଗଛପତ୍ରରେ ଏଠି ସେଠି ରଙ୍ଗ ଟୋପି ଟୋପି । ଇଚ୍ଛା ଡାକ୍ତରଖାନାରୁ ଫେରି କହିଲି—ଭାଇନା, ନାନୀ, ଆସ, ଭୁମ ଫଟୋ ନେବା ।

ପ୍ରସାରିତ ବିପୁଳ ବିପଣୀ ମଧ୍ୟରେ ଫଟୋ ବିଭାଗ—ସୁନ୍ଦର ନମୁନା ଫଟୋସବୁ, ପ୍ରାକୃତିକ ଭଙ୍ଗୀର;

**ହସ ନୁହଇ ଚପ**

ଫଟୋଗ୍ରାଫର୍ ଯୁବତୀ, କଳାପ୍ରବଣା । ଆଖିକୁ ଟାଣିନେଇ କେନ୍ଦ୍ରୀଭୂତ କରେ ନିଜ ଉପରେ, ନାଟକୀୟ କୌଶଳ ଓ ହାସ କୌତୁକରେ ଭରା । ମୋ ହାତ,

ପାଦ, ଜାମା, ପ୍ୟାଣ୍ଟ୍ ସଜାଡ଼ିଲା ବେଳେ ତା ଗର୍ଭଦର୍ପଣରେ ମୋ ମୁଖ ପ୍ରତିବିମ୍ବିତ ହେଉଛି କି ନାହିଁ, କୌତୁକରେ ଲକ୍ଷ୍ୟ କରୁଥିଲି ।

ଗଳା ହାରରେ ରତ୍ନଖଚିତ ପଦକଟିଏ; ରୂପସୀ ତାକୁ ଚନ୍ଦ୍ରନାଇ ଦେଲା-ବେଳେ ମନଟା କିପରି ଦୋହଲି ଗଲା ପରି ଲାଗିଲା, ଗାଢ଼ ନାଲି ଓଠରେ ତାରକାସୀ ହସଟିଏ ଫୁଟାଇ ମୋତେ କହିଲା—ମୋ ଆଡ଼କୁ ଚାହିଁ ହସ !

କେଉଁ ସୁନ୍ଦରୀକୁ ଚାହିଁ କେବେ ହସିବାର ସୁଯୋଗ ବା ଦୁର୍ଯୋଗ ଜୀବନରେ ମୋର ଘଟିନାହିଁ, ଯୌବନ କାଳରେ । ସେ ଯୁଗରେ ଏହା ଅନୈତିକ ବିବେଚିତ ହେଉଥିଲା, ଏବେ ଯୌବନକୁ ବିଗ୍‌ବଳୟରେ ପକାଇ ବହୁ ଦୂରକୁ ଆଗେଇ ଆସିଛି । ଯାହା କିଛି ଯୌବନ ଅଛି, ମୋ ମନରେ । ଚରିତଭ୍ରଷ୍ଟ ହେବାରେ ଏବେ କି ଅଘଟଣ ଘଟିବାର ଭୟ ଅଛି ?

କିନ୍ତୁ ଯୁବତୀ 'ହସ' ବୋଲି କହିଲା କ୍ଷଣି ମୋ ହସ କିଭଳି ଗଲା କାହିଁକି ? ଏ ବିଡ଼ମ୍ବନା ସହିତ ବ୍ୟବସାୟିନୀ ସୁପରିଚିତା । ଏ ପ୍ରତିକୂଳ ପରିବେଶକୁ ଫୁଙ୍କି ଉଡ଼ାଇ ଦେଲା ଭଳି କୌଶଳ ତାକୁ ଜଣାଅଛି । ବାକ୍ସରୁ କମିଆଁ କଲା ପରି ସେ ଗ୍ରୁଟରୁ ଖେଳଣା କୁକୁରଟିଏ ଘେନି ମୋ ଆଡ଼କୁ 'ଓ ଲେ—ଲେ ଲେ' କହି ଚମକି ଆସିଲା, ତା ବିଚିତ୍ର ନାଟକୀୟ ଭଙ୍ଗୀ ଦେଖି ହସି ପକାଇଲି ।

ତାପରେ ମୋ ମନରେ ପ୍ରଶ୍ନ ଉଠିଲା—ସମସ୍ତଙ୍କର କାହିଁକି ହସଭଙ୍ଗୀରେ ଫଟୋ ନଆସିବ ? ଏହା କି ଏକମାତ୍ର ସତ୍ୟ ? ଗାମ୍ଭୀର୍ଯ୍ୟର ମୂଲ୍ୟ ନାହିଁ ? ଜବର-ଦସ୍ତି ହସ ଆଦାୟ ଚେଷ୍ଟା କାହିଁକି ? 'ରଙ୍ଗ ଅଧରେ ମନ୍ଦ ହସ' ଯେଉଁ ଶ୍ରୀକୃଷ୍ଣଙ୍କର ଦିନେ ଥିଲା, ତାହା ଗୀତା ଗାଇଲାବେଳକୁ ଥିଲା କି ?

ଏ ସୁନ୍ଦରୀ ପରିସ୍ଥିତିର ଚାପରେ ପଡ଼ି ମୋତେ ଅନେକ ହସ ଦେଲା; ସେ ସବୁର ସୌନ୍ଦର୍ଯ୍ୟ ମୂଲ୍ୟ ଅକଳନୀ । ବଦଳରେ ବୁଢ଼ା ମୁହଁରେ ଶୁଖିଲା ହସଟିଏ ଆଦାୟ କରିନେଲା ତ ହେଲା କଣ ? ଏବେ ଫଟୋ ପରଖି ଦେଖୁଛି—ସେଟି ପ୍ରାକୃତିକ ହସ ନୁହେଁ, ହସାଭାସ ମାତ୍ର ।

## କେତେ କଥା, କେତେ ଅକଥା

ତା ପରେ ଦୁଇ ଦିନ ବସି ହେଲା; କେତେ ଲୋକ ତ ଘଣ୍ଟା ଘଣ୍ଟା ବସନ୍ତି; ବସିବା ଅଭ୍ୟାସ ଅଛି । କିନ୍ତୁ ଏ ଗୋଟାଏ କି ମଣିଷ ? ତାକୁ ବସି ଆସେ ନାହିଁ ? ସେ ପଢ଼େ, ଲେଖେ ବା ଭାବେ । ବୁଲେ, ଖାଏ ବା ଶୁଏ; ବସି ଜାଣେ ନାହିଁ ।

ଆମେରିକାର ସମ୍ବାଦପତ୍ର ବା ମାଗାଜିନ୍‌ରେ କେତେ କଥା ବାହାରେ, କେତେ ଅକଥା ବା ଅସୁନ୍ଦର କଥା ବି ବାହାରେ । ମୁଁ କେତୋଟି ସାଉଁଟି ରଖିଛି, ମନକୁ ଛୁଇଁଛି ବୋଲି । ସବୁ ଦୃଶ୍ୟ ଦେଖିବା ବା ସବୁ ଲୋକଙ୍କ ସଙ୍ଗେ ମିଶିବା ଜଣେ ଭ୍ରମଣକାରୀ ପକ୍ଷରେ ସମ୍ଭବ ନୁହେଁ; ମୋ ସାଉଁଟା ଗୁଙ୍ଗୁଡ଼ି କାହାଣୀର ଅଙ୍ଗ ବିଶେଷ, ଆମେରିକାସ୍ଥ ଚଳ୍ରା-ଚରିତ୍ର ଜାଣିବାରେ ସାହାଯ୍ୟ କରିବ ।

### ହାଲ୍ଲୋଇନ୍ ପର୍ବ

ହାଲ୍ଲୋଇନ୍ ଆମେରିକାର ଏକ ଲୋକପ୍ରିୟ ପର୍ବ; ଏଠା ବୋଇତି କଖାରୁ ପ୍ରକୃତରେ ଦେଖାସୁନ୍ଦର । ଗାଢ଼ ହଳଦିଆ ଲାଲ୍ ରଙ୍ଗ ଖୁବ୍ ଦୃଷ୍ଟି ଆକର୍ଷଣ କରେ । ତାକୁ ତା ଉପରେ ତା ଉପରେ ରଖି ନାନା ପ୍ରକାରେ ସଜାନ୍ତି ।

ଏ ସାଇର ପିଲା ଆର ସାଇକୁ ହାତୀ, ବାଘ, ଭାଲୁ ବେଶରେ ଯାଇ କୌତୁକାନନ୍ଦ ସୃଷ୍ଟି କରନ୍ତି । ଏ ଉତ୍ସବ ସଖ୍ୟ ବୃଦ୍ଧି କରେ ।

ହାଲ୍ଲୋଇନ୍ ଦୋକାନ ଅଛି, ଏଠି ବହୁ ମୁଖା ମିଳେ—ଅପ୍‌ସରୀ, ଭୂତ, ଡାହାଣୀ, ଋଷି, ସର୍କସ୍ କ୍ଲାଉନ୍, ଜଳଦସ୍ୟୁ, ଅସ୍ତ୍ରଶସ୍ତ୍ରଧାରୀ ଅସୁର, ରାଜକନ୍ୟା, ରାଜଦୂତ, ରାଜରାଣୀ, ଆରବୀ ସେଖ୍, କ୍ଲିଓପାଟ୍ରା, ଅନ୍ତଃପୁରର କଞ୍ଚୁକୀ, ରବିନ୍ ହୁଡ୍ ଇତ୍ୟାଦି । ଏହିପରି ବହୁ ସୁନ୍ଦର, କୁତ୍ସିତ ମୁଖା ଓ ବୃଦ୍ଧ, ବିକଳାଙ୍ଗଙ୍କ ବେଶ ପିନ୍ଧି ପିଲାମାନେ କୌତୁକର ଏକ ଲଘୁ ବାତାବରଣ ସୃଷ୍ଟି କରନ୍ତି ।

### କଲମ୍ବସ୍ ଡେ

୧୪୯୨ ଖ୍ରୀଷ୍ଟାବ୍ଦରେ କଲମ୍ବସ୍ ଆମେରିକା ଆବିଷ୍କାର କରିଥିଲେ । ୧୮୭୨ରୁ 'କଲମ୍ବସ୍ ଡେ' ଆମେରିକାରେ ଏକ ଜାତୀୟ ପର୍ବ ଭାବେ ପାଳିତ ହୋଇ ଆସୁଛି । କଲମ୍ବସ୍ ଆଧୁନିକ ଆମେରିକାର ଇତିହାସ ନିର୍ମାତା; ତାଙ୍କ ସ୍ମୃତି ଦେଶ ପକ୍ଷେ ଅତି ମୂଲ୍ୟବାନ୍ ଓ ତାହା ନାନାଭାବେ ସଂରକ୍ଷିତ ।

### ଉପନିଷଦ ଓ ପିଜ୍ଜା

ଉପନିଷଦରେ ପ୍ରବୀଣ ପଣ୍ଡିତ ଜଣେ ହିନ୍ଦୁ ବ୍ରାହ୍ମଣ ଯୁବକ ମୋ ପଦଧୂଳି ନେଲେ, ଭୋଜନ ପୂର୍ବରୁ ବ୍ରହ୍ମୋପାସନା କଲେ, ତାଙ୍କ ବିଗ୍ରହରେ ଅନ୍ନ ବ୍ରହ୍ମ, ଆତ୍ମା ବ୍ରହ୍ମ, ଜଗତ ବ୍ରହ୍ମମୟ, ତାଙ୍କ ବିନୟ ଭାବ ଓ ନୀତିନିଷ୍ଠା ଦେଖି ମୁଗ୍ଧ ହେଲି ।

ତାପରେ ସେ ପିଜ୍ଜା ଭୋଜନ କଲି—ଟମାଟୋ, ପିଆଜ, ଗୋ ମାଂସରେ ପ୍ରସ୍ତୁତ—ଆମେରିକାର ହୋଟେଲ୍‌ମାନଙ୍କରେ ସୁଲଭ ଚକୁଳିପିଷ୍ଟକାକାର ପିଜ୍ଜା ।

ମୁଣ୍ଡକଟା, ଗୋଟା ଶିଙ୍ଘା ଶୂକର କାଟିକାଟି କେତେକ ଭାରତୀୟ ହିନ୍ଦୁ ଖାଉଥିବା ଦୃଶ୍ୟ ବିକଟ ହେଲେ ବି ସତ୍ୟ । ବିଫ୍ ବା ପର୍କ୍ ଖାଇବାକୁ ମିଳେ ବୋଲି ଚୀନା ହୋଟେଲ୍ ସେମାନଙ୍କ ପକ୍ଷେ ପ୍ରିୟ । ଭାରତରେ ଗୋବଧ ବିରୁଦ୍ଧରେ ସେହିପରି କେତେକ ଦୋମୁହାଁ ଲୋକ ହୁଏତ ହାତ ଟେକୁଥିବେ, ରକ୍ଷଣଶୀଳ ହିନ୍ଦୁଙ୍କ ସହିତ । ଗୋହତ୍ୟା ନିବାରଣ ଧର୍ମ ନା ଗୋରୁଗାଈଙ୍କି ଦାନା ନ ଦେଇ ଶୁଖାଇ ଶୁଖାଇ ମାରିବା ଧର୍ମ ?

## ଡାକ୍ତର ମୁନ୍

ଚନ୍ଦ୍ର ସକଳଙ୍କ; ପ୍ରତି ମଣିପର କିଛି ନା କିଛି ଦୋଷ ଅଛି । ମୁନ୍ ଚରିତ୍ରରେ ବି କିଛି ଥାଇପାରେ ।

ଡ୍ରଗ୍ ପ୍ରେସ୍‌କ୍ରାଇବ୍ କରିବା ଅପରାଧରେ ତାଙ୍କୁ ଅଭିଯୁକ୍ତ କରାଗଲା; ଅଭିଯୋଗକାରୀ ଜଣେ ନାମ୍‌ଜାଦା ସଇତାନ୍ । ପୁଲିସ୍ କଣ ବୁଝିଲା କେଜାଣି, ମୁନ୍‌ଙ୍କୁ ଗିରଫ କଲା, ସମ୍ବାଦପତ୍ରରେ ବଡ଼ ବଡ଼ ଅକ୍ଷରରେ ଏ ସମ୍ବାଦ ପ୍ରକାଶ କରାଗଲା, ଟେଲିଭିଜନ୍‌ରେ ଦେଖାଗଲା; ଡାକ୍ତରଙ୍କ ୨୫ ବର୍ଷର ପ୍ରସିଦ୍ଧି ୨୫ ମିନଟ୍‌ରେ ଚୂର୍‌ମାର୍ ହୋଇଗଲା ।

ଡାକ୍ତର ସମ୍ପୂର୍ଣ୍ଣ ନିରପରାଧ ବୋଲି ଶେଷକୁ ରାୟ ମିଳିଲା । ତାଙ୍କ ସହ-ଯୋଗୀ ଡାକ୍ତରମାନେ ପ୍ରକୃତ ସତ୍ୟ ଜାଣିଥିଲେ ବି ତାଙ୍କ ନିକଟକୁ ରୋଗୀ ପଠାଇଲେ ନାହିଁ । ଏମିତି ବଦ୍‌ନାମ୍ ହୋଇଗଲା ଯେ ରୋଗୀମାନେ ବି ତାଙ୍କ ପାଖ ମାଡ଼ିଲେ ନାହିଁ । ଡାକ୍ତରଙ୍କ ପୂର୍ବ ପ୍ରାକ୍‌ଟିସ୍ ଆଉ ଫେରିଲା ନାହିଁ । କେଉଁ ଜନ୍ମର ପାପରୁ ବା ଭାଗ୍ୟ ଦୋଷରୁ ନିରୀହ ଡାକ୍ତର ଏ ଶାସ୍ତି ଭୋଗ କଲେ ?

ଆମେରିକା ପରି ଅତ୍ୟାଧୁନିକ ଦେଶରେ ବି ଅନ୍ଧାଧୁନିଆଁ ଗଡ଼ଜାତ ରୀତିରେ ଜଣକର ସର୍ବନାଶ ଘଟାଇ ଦିଆଯାଇ ପାରେ । ଯୋଉ ଡାକ୍ତରମାନେ ମୁନ୍‌ଙ୍କ ଭାଗ୍ୟୋଦୟ ସହି ନ ପାରି ଈର୍ଷାଜର୍ଜରିତ ହେଉଥିଲେ, ସେମାନଙ୍କ ଅସୁରହାତ ତାଙ୍କ ପତନ ମୂଳରେ ଥିଲା—କଥା ଅଛି—

'ନଈଁ ପଡ଼ିଥିବ ଯେତିକି ବେଳେ
ବିଧାଏ ମାରିବ ସେତିକି ବେଳେ ।'

## ହାଓ୍ୱାର୍ଡ଼ ହ୍ୟୁଜ୍

ଉଦ୍‌ଯୋଗୀ ପୁରୁଷ ସିଂହ ସେ, ବ୍ୟବସାୟରେ ବିପୁଳ ଧନସମ୍ପତ୍ତିର ଅଧିକାରୀ ହୋଇଛନ୍ତି। ବ୍ୟବସାୟ ପରେ ବ୍ୟବସାୟ ଶାଖା ମେଲିଛି; ଅର୍ଥ ଉପରେ ଅର୍ଥ ଜମିଛି।

ବିଭା ହୋଇଥିଲେ ଦୁଇ ଥର; ସନ୍ତାନ ହେଲେ ନାହିଁ, ଏତେ ଧନ ଅନ୍ତେ କିଏ ଭୋଗ କରିବ ?

କୌଣସି ସାମାଜିକ ବା ସାଂସ୍କୃତିକ ଅନୁଷ୍ଠାନକୁ ଦାନ କରି ଗଲେ ନାହିଁ। ହଠାତ୍ ଦିନେ ତାଙ୍କର ମୃତ୍ୟୁ ହେଲା। ବର୍ତ୍ତମାନ ସମ୍ପତ୍ତିର ଦାବିଦାର ବହୁ— ହ୍ୟୁଜ୍‌ଙ୍କ ଅଚିହ୍ନା, ଅଜଣା, ଆଳିଆ ଲେଖାରେ ବାଳିଆ ବନ୍ଧୁସବୁ—ବହୁ ଜାଲ୍ ଉଇଲ୍, ଦଲିଲ୍ କୋର୍ଟରେ ଦାଖଲ କରିଛନ୍ତି।

ବହୁ ନିଃସନ୍ତାନ ଧନୀ, ଅନ୍ତିମ କାଳ ବହୁ ଦୂରେ, ମନରେ ଗଣ୍ଠି ପେଜି ବସିଥାନ୍ତି; ଦାନ ନାଆଁ ଶୁଣିଲେ ଫିଙ୍ଗିକି ଉଠନ୍ତି—ମତେ କିଏ କଣ ଦେଇଥିଲା କି ? ମୁଁ କାହିଁକି ଦେବି ? କିନ୍ତୁ ମୃତ୍ୟୁ—'ହାବୋଡ଼ି ଯାଏ ସେ ଆଚମ୍ବିତେ ଆସି।'

ଧନ ଅର୍ଜନରେ ଯୋଉ ପ୍ରଚଣ୍ଡ ପ୍ରତିଭାର ସ୍ଫୁରଣ ହୋଇଥିଲା, ତାର ଆଉ କି ମୂଲ୍ୟ ରହିଲା ?

ସଂସାରରେ ଧନ ଅର୍ଜନ ବଡ଼ କଥା ନୁହେଁ, ତାର ଉଚିତ୍ ଓ ଉଚ୍ଚସ୍ତରର ବ୍ୟବହାର ବଡ଼ କଥା। ବ୍ୟବହାର କରି ଜାଣିଲେ ଲୋକ ମହାତ୍ମା ଆସନରେ ବସେ, ନଇଲେ ଚେରି ଛିଡ଼େ, ନାଆଁ ବୁଡ଼ିଯାଏ।

## ଯହିଁରେ ମାରେ, ତହିଁରେ ମରେ

ଡ୍ରଗ୍ ଆମେରିକାର ଏକ ଆତଙ୍କ, ମହାକାଳ। କେତେ ମହାପ୍ରାଣ ଯେ ଏଥିରେ ବିନଷ୍ଟ ହେଉଛନ୍ତି, ତାର ଇୟତ୍ତା ନାହିଁ; ମଦ୍ୟ ଅପେକ୍ଷା ଏହା ଅଧିକ ଭୟଙ୍କର। ମଦ୍ୟ ଖୋଲାମେଲାରେ ବିକ୍ରି ହୁଏ; ଚୋରିରେ ଡ୍ରଗ୍ ବେପାର ଚାଲେ; ଆମେରିକା ପରି ଶକ୍ତିଶାଳୀ ଦେଶ ଏ ବେପାରକୁ ରୋକି ପାରିନାହିଁ।

କ୍ୱିନ୍‌ଟାନା ଜଣେ ବଡ଼ ଡ୍ରଗ୍ ବ୍ୟବସାୟୀ। ଲାଞ୍ଚ ଦେବା ଅପରାଧରେ ୫ ବର୍ଷ, ଡ୍ରଗ୍ ବିକ୍ରୟ ଅପରାଧରେ ୧୮ବର୍ଷ ସେ ଜେଲ୍ ଭୋଗିଲା; ତଥାପି ଚେତା ପଶିଲା ନାହିଁ।

ଜେଲ୍‌ରୁ ଖଲାସ୍ ହେଲା ପରେ ପୁଣି ସେ ଡ୍ରଗ୍ ବେପାର କଲା, ପୁଲିସ୍ ଘେରାଙ୍କ ମଧ୍ୟରେ ସେ ଧରା ପଡ଼ିଥିଲା; ସେତେବେଳକୁ ମୃତ; ସେହି ଗୃହରୁ ଖଣ୍ଡିଏ ପତ୍ରରେ ଲେଖା ଥିଲା—"ଜଗତର ବହୁତ କ୍ଷତି କରିଛି, ଅଧିକ କ୍ଷତି ଘଟାଇବାକୁ ଚାହେଁ ନାହିଁ । ତେଣୁ ଯେଉଁ ଡ୍ରଗ୍‌ରେ ବହୁ ହତ୍ୟା କରିଥିଲି, ସେହି ଡ୍ରଗ୍‌ରେ ମଲି, ମୋ ଜୀବନକୁ ଧିକ୍ ।"

## ହୃତ୍ ଡାକ୍ତର ବାର୍ଣ୍ଣାର୍ଡ କିଣ ଲେଖିଛନ୍ତି ?

ଆଣ୍ଟୁଗଣ୍ଠିବାତ ଯୋଗୁଁ ଅପରେସନ୍ ଓ ହୃତ୍ ଆରୋପଣ କାର୍ଯ୍ୟ ତ୍ୟାଗ କରିଥିଲି । ସୁନ୍ଦରୀ ଝିଅଟିଏ ବିଭା ହେଲାପରେ ମୋ ରୋଗ ଆପେ ଆପେ ଭଲ ହୋଇ ଯାଇଥିଲା, ମୁଁ ପୁଣି ମୋ ପୂର୍ବ ଚିକିତ୍ସା ବ୍ୟବସାୟ କଲି । କିନ୍ତୁ କେତେ ମାସ ପରେ ପତ୍ନୀ ମୋତେ ଛାଡ଼ପତ୍ର ଦେଲା ।

ସନ୍ତୋଷ, ଶାନ୍ତି, ଆନନ୍ଦ ଯୋଗୁଁ ରୋଗ ଭଲ ହୋଇଯାଇଥିଲା । ଦୁଃଖ, ଅତୃପ୍ତି ଅଶାନ୍ତି ଯାବତୀୟ ରୋଗର କାରଣ, ରୋଗରୁ ନିସ୍ତାର ପାଇବ ତ ମନକୁ ଯଥା ସମ୍ଭବ ଜଞ୍ଜାଳ ଓ ଦୁଶ୍ଚିନ୍ତାମୁକ୍ତ ରଖ ।

## ତୁମେ କାହିଁକି ଛାଡ଼ପତ୍ର ଦେଲ ?

ମନୋବୈଜ୍ଞାନିକଙ୍କ ପ୍ରଶ୍ନରେ ଜଣେ ସ୍ତ୍ରୀଲୋକ ଏହି ଉତ୍ତର ଦେଲେ :—

ମୋ ସ୍ୱାମୀ ଶାନ୍ତ, ଶିଷ୍ଟ, ସୁଜନ । କିନ୍ତୁ ମୋ ସୌନ୍ଦର୍ଯ୍ୟକୁ ଥରେ ହେଲେ ପ୍ରଶଂସା କରନ୍ତି ନାହିଁ, କି "ମୁଁ ତୁମକୁ ଭଲପାଏ" ବୋଲି କହନ୍ତି ନାହିଁ, ନିଜର ପୌରୁଷ ବା କ୍ଷମତାର ବିଶେଷତ୍ୱ କେବେ ଦେଖାନ୍ତି ନାହିଁ । ମୋ ରୂପ ବା ଗୁଣର କିଛିହେଲେ ପ୍ରଭାବ ତାଙ୍କ ଉପରେ ଅଛି କି ନାହିଁ ଜାଣିପାରିଲି ନାହିଁ । ସେ ନୀରବ, ଗମ୍ଭୀର ରହନ୍ତି । ଏ ବ୍ୟବହାର ମୋତେ କାଟେ, ମୁଁ ନିତାନ୍ତ ଦୁର୍ବଳ ମଣିଷ, ବୁଝୁଁଛି । କିନ୍ତୁ କିଣ କରିବି ?

ମୋ ପ୍ରତି ଥରେ ଅସୌଜନ୍ୟ ଦେଖାନ୍ତି ନାହିଁ, ଭୁଲ୍ କଲେ ବିରକ୍ତ ହୁଅନ୍ତି ନାହିଁ, ଏ କି ମଣିଷ ? କାଠ ନା ପଥର ? ମତେ ଦିଟା ମାରିଲେ ବରଂ ମୁଁ ସହନ୍ତି; କିନ୍ତୁ ଏତେ ଭଲପଣ ମୋ ପକ୍ଷେ ଅସହ୍ୟ ।

## କୁଆଁରୀ ମାଆ

ନାହିଁନାଡ଼ି କରି ଜନମକଲା ପିଲାକୁ ଭସାଇ ଦେବା, ତାକୁ ଜଣେ ପିଲା-ନ ଥିଲା ବାପ ପାଳି ମଣିଷ କରିବା ପୁରାଣ ଆଉ ଲୋକକାହାଣୀରେ ଜଣାଶୁଣା । ଆଧୁନିକ ଆମେରିକାରେ କୁଆଁରୀ ମାଆ ଏବେ ସେ ରୀତି ଚଳାଇବା ଆଶ୍ଚର୍ଯ୍ୟ ।

କୁମାରୀ ମାଆ ହେବା ଏ ଦେଶରେ ଏକ ଅପରାଧ ନୁହେଁ । ତେବେ ପିଲାକୁ କଉପୁନି ପିନ୍ଧାଇ ଗୋଟିଏ ବାକ୍‌ସରେ ବନ୍ଦ କରି ପରବ୍ୟକ୍ତି ଗୃହଦ୍ୱାରରେ ମାଆ ରଖିଗଲା କାହିଁକି ?

କୁଆଁ କୁଆଁ ଶବ୍ଦ ଶୁଣି ଜଣେ ବାକ୍‌ସଟି ଖୋଲିଲା, ଦେଖିଲା—ମାଆ ତାକୁ ଚଅଁଳ ଶେଯରେ ଶୁଆଇଛି, ନାଆଁ ବି ଟାଇପ୍ କରି ଅଣ୍ଟାରେ ଲଗାଇ ଦେଇଛି । ମମତା ତ୍ରୁଟିନାହିଁ ।

କିନ୍ତୁ ମାତା ସନ୍ତାନର ସାକ୍ଷାତ ସମ୍ଭାବନା ଆଉ ଅଛି କି ? ମାଆ ଏପରି ଅରକ୍ଷିତ ଭାବରେ ଫୋପାଡ଼ି ଦେଇ ଯାଇଥିବାର ଜାଣିଲେ ସନ୍ତାନ ବଡ଼ ହେଲେ ଘୃଣା କରିବ ନାହିଁ ?

କୁନ୍ତୀର ଦୁର୍ବଳତାରୁ ରାଜକୁମାର କର୍ଣ୍ଣ ସୂତପୁତ୍ର ହୋଇଥିଲେ । ଅଙ୍ଗ ଦେଶର ରାଜା କରି ସେହି ମହାବୀରଙ୍କୁ ଉପଯୁକ୍ତ ସମ୍ମାନ ଦେଇଥିଲା ସଖା ଦୁର୍ଯୋଧନ । କୁନ୍ତୀଙ୍କ ପ୍ରତି କର୍ଣ୍ଣଙ୍କର କି ମନୋଭାବ ଥିଲା ? ପଞ୍ଚପାଣ୍ଡବଙ୍କ ପ୍ରତି କର୍ଣ୍ଣଙ୍କର ଈର୍ଷାର ମୂଳ କାରଣ କଣ ?

## ପାଟ୍ରିସିଆ ନୀଲ୍ : ଅଭିନେତ୍ରୀ

ପାଟ୍ରିସିଆ ନୀଲ୍ ଲୋକପ୍ରିୟ ସିନେମା ଷ୍ଟାର୍; ତାର ରୂପଶ୍ରୀ ଓ ଅଭିନୟ ଲୋକଙ୍କୁ ଆନନ୍ଦରେ ଉନ୍ମାଦିତ କରେ ।

ଏ ସଂସାରରେ ଦୁଃଖ ଦୁର୍ବିପାକ କାହାକୁ ଛାଡ଼ିଛି ? ଦିନେ ହଠାତ୍ ତା ମସ୍ତିଷ୍କରୁ ରକ୍ତ କ୍ଷରଣ ହେବା ଫଳରେ ନୀଲ୍ ଅଜ୍ଞାନ ହୋଇ ପଡ଼ିଲା । ଗର୍ଭବତୀ; ପୁଣି ଆଗରୁ ତିନୋଟି ଛୋଟ ପିଲା ଅଛନ୍ତି ।

ମୁଣ୍ଡ ଅପରେସନ୍ ପରେ ତାର ଦକ୍ଷିଣପଟ ପକ୍ଷାଘାତଗ୍ରସ୍ତ ହୋଇ ପଡ଼ିଲା । ଯେଉଁ ମୁଖର ବଚନସ୍ରୋତ ଲକ୍ଷ ଲକ୍ଷ ଲୋକଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥିଲା, ତାହା ଆଉ ଫିଟିଲା ନାହିଁ ।

ଆମେରିକା ପରି ରାଜ୍ୟରେ ଦାମ୍ପତ୍ୟ ଜୀବନ ଅନିଶ୍ଚିତ । ସ୍ୱାମୀ ଏହି ରୁଗ୍‌ଣା ସ୍ତ୍ରୀକୁ ତ୍ୟାଗ କରି ଅନ୍ୟ ସ୍ତ୍ରୀ ବିଭା ହୋଇ ପାରିଥାନ୍ତେ । କିନ୍ତୁ ସେ ତାହା କଲେ ନାହିଁ । କାରଣ ସେ ହୃଦୟବାନ୍, ଏକାନ୍ତ ବିଶ୍ୱସ୍ତ ପ୍ରିୟ ପରମ; କେବଳ ସମ୍ପଦର ନୁହନ୍ତି, ବିପଦର ବନ୍ଧୁ । ତାକୁ ଉଠେଇବା, ବସେଇବା, ଗାଧୋଇ ଦେବା, ଖୁଆଇବା ସବୁ ସେ ନିଜେ କରନ୍ତି, ଯେମିତି କରେ ପିଲେଇଜା

ମାଆ ପିଲାର ସେବା, ସବୁ କାମ ଭିତରେ ପାଟି ଫିଟୁ ନ ଥିବା ସ୍ତ୍ରୀକୁ କଥା କୁହାଇବା ମୁଖ୍ୟ; ମନରେ ତାଙ୍କର ଅସୀମ ଧୈର୍ଯ୍ୟ; ସେ ନିଜର ଖାଦ୍ୟପେୟ ଭୁଲିଥିଲେ; ବିଳାସବ୍ୟସନ ତ୍ୟାଗ କରିଥିଲେ । ଘଣ୍ଟା ଘଣ୍ଟା ସମସ୍ତ ସେ ସ୍ତ୍ରୀସେବା କାର୍ଯ୍ୟରେ ବ୍ୟସ୍ତ କରୁଥିଲେ ।

ତାଙ୍କର ଅସାଧ୍ୟ ସାଧନା ଫଳରେ ପାଟ୍ରିସିଆର ପାଟି ଫିଟିଲା । ମୁଣ୍ଡବାଳ କଅଁଳିଲା । ପୂର୍ବ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଫେରିଆସିଲା ।

ପାଟ୍ରିସିଆର ଅସୁସ୍ଥତା ଲକ୍ଷ ଲକ୍ଷ ଲୋକଙ୍କୁ ବିବ୍ରତ, ବ୍ୟଥିତ କରିଥିଲା । ସୁସ୍ଥ ହେବା ପରେ ଦୃଶ୍ୟଦର୍ଶକରୁ ଦାବୀ ହେଲା—ପାଟ୍ରିସିଆ ନୀଲ୍ । ପୁଣି ସିନେମା କ୍ଷେତ୍ରକୁ ଫେରି ଆସନ୍ତୁ ।

ଆମେରିକାର ସର୍ବଶ୍ରେଷ୍ଠ ଅଭିନେତ୍ରୀ ଭାବରେ ସେ ସମ୍ବର୍ଦ୍ଧିତ ଓ ପୁରସ୍କୃତ ହେଲେ । ସମ୍ବର୍ଦ୍ଧନାର ଉତ୍ତର ଦେବାପାଇଁ ତୁଣ୍ଡ ଖୋଲିବା ମାତ୍ରେ ଲକ୍ଷ ଲକ୍ଷ ଲୋକ ଆନନ୍ଦରେ କରତାଳି ଦେଲେ । କାମେରା କ୍ଲିକ୍ କ୍ଲିକ୍ କରି ଉଠିଲା ।

ପାଟ୍ରିସିଆ କହିଲା—ତିନିଜଣଙ୍କ ଲାଗି ମୁଁ ବଞ୍ଚିଲି—ଭଗବାନ୍, ଡାକ୍ତର ଓ ମୋର ପ୍ରାଣପ୍ରିୟ ସ୍ୱାମୀ । ଆପଣମାନଙ୍କ ସ୍ନେହଶ୍ରଦ୍ଧା ଓ ଶୁଭେଚ୍ଛା ମଧ୍ୟ ମୋ ଦେହରେ ନବଜୀବନର ସଞ୍ଚାର କଲା । ମୁଁ ପୁଣି ଅଭିନୟ କ୍ଷେତ୍ରକୁ ଫେରିବି; କରତାଳି ଆଉ ବନ୍ଦ ହେଲାନାହିଁ ।

ଆନନ୍ଦ ଉଲ୍ଲାସ ମଧ୍ୟରେ ପାଟ୍ରିସିଆ ଘୋଷଣା କଲା—ଭଗବାନ୍ ମୋତେ କାହିଁକି ବଞ୍ଚାଇଲେ ? ଆପଣମାନଙ୍କ ସେବା ଲାଗି; ଆନନ୍ଦ ଦେବା ସର୍ବୋତ୍କୃଷ୍ଟ ସେବା । କବି, କଳାକାର, ଗାୟକ, ଅଭିନେତା ତା ଦିଏ । କିନ୍ତୁ ମୋ ଅର୍ଜିତ ସମସ୍ତ ଅର୍ଥ ଏଣିକି ଲୋକସେବାରେ ବ୍ୟୟିତ ହେବ—ବିଶେଷତଃ ମୋ ଧରଣର ରୋଗୀର ଚିକିତ୍ସାରେ । ମୋ ପରି ଯେଉଁମାନେ ରୋଗ ଭୋଗୁଛନ୍ତି, ଅର୍ଥାଭାବରୁ ଚିକିତ୍ସିତ ହୋଇ ନ ପାରି ଅକାଳେ ମୃତ୍ୟୁବରଣ କରୁଛନ୍ତି, ସେହିମାନଙ୍କ ଚିକିତ୍ସାରେ ଏ ଅର୍ଥ ବ୍ୟୟିତ ହେବ । ଲୋକସେବା ହିଁ ଶ୍ରେଷ୍ଠ ଭଗବତ୍ ପ୍ରାର୍ଥନା ।

ହେଲେ 'କିନ୍ତୁ' ନ ଥିବା ଘଟଣା ସଂସାରରେ ବିରଳ । ସୁସ୍ଥ ହେବାର ମାତ୍ର ୧୫ ବର୍ଷ ପରେ ଏହି ଦମ୍ପତିର ମନ ଫାଟିଲା । ଅପରିମିତ ସମ୍ପଦ ଲାଭ ପରେ ଘୋର ବିପଦରେ ସହାୟକ, ଜୀବନରକ୍ଷାକାରୀ, ଏହି ଅନ୍ତରଙ୍ଗଙ୍କୁ ନୀଲ୍ ଛାଡ଼ପତ୍ର ଦେଲା । ଗାଢ଼ପ୍ରୀତିର ନିବିଡ଼ତା ମଧ୍ୟରୁ ନିଜକୁ ଖସାଇ ନେଇ ପାରିଲା କିପରି ?

ଏକ ଘୃହାଣୀରେ ପ୍ରୀତି ଫୁଟେ, ଆଉ ଘୃହାଣୀରେ ଫାଟେ, କାହିଁକି ଫାଟେ, କିଏ ଫଟାଏ, ତାହା ସମ୍ପୂର୍ଣ୍ଣ ମଣିଷ ବା ଭଗବାନ୍‌ଙ୍କ ଗୋଚର ।

ଏଇ ମୋଟାମୋଟି ଆମେରିକାର ସଂସାର । ଏ ମୁହୂର୍ତ୍ତିର ଆଦର୍ଶ ଆର ମୁହୂର୍ତ୍ତିରେ ଚୂନା ହୋଇଯାଏ । ଏ ଦେଶରେ ସତୀ ସାବିତ୍ରୀ ବା ଦୃଢ଼ ସତ୍ୟବ୍ରତୀ ନାହାନ୍ତି, ଏହା ମଧ୍ୟ କୁହାଯାଇ ପାରିବ ନାହିଁ ।

## ଯାହା ଚକ୍ ଚକ୍ ଦିଶେ

ଯାହା ଚକ୍ ଚକ୍ ଦିଶେ, ତାହା ସୁନା ନୁହେ । ଆମେରିକାର ଐଶ୍ୱର୍ଯ୍ୟ ପୃଥିବୀରେ ସର୍ବାଧିକ । କିନ୍ତୁ ପ୍ରଚଣ୍ଡ ଔଜଲ୍ୟ ଘୋର ତମିସ୍ରକୁ ଦୂର କରିପାରୁନାହିଁ ।

ଆମେରିକା ବୈଜ୍ଞାନିକ ଦୃଷ୍ଟିରୁ ଯେତିକି ଆଗରେ, ଆଧ୍ୟାତ୍ମିକ ଦୃଷ୍ଟିରୁ ସେତିକି ପଛରେ । ଲୋକସଂଖ୍ୟା ବଢ଼ିଛି, କିନ୍ତୁ ତାର ନ'ଗୁଣ ବଢ଼ିଛି ଅପରାଧ । ଏ ଦେଶରେ ସ୍ୱୟଂ ବିଚାରକ ଲାଞ୍ଚ ନେବା ଅସମ୍ଭବ ନୁହେ,କି ଲାଲ୍‌ଫିତା ଦୋଷରୁ ନିରୀହ ଦୀର୍ଘ କାଳ ଶାସ୍ତିଭୋଗ କରିବା ଆଶ୍ଚର୍ଯ୍ୟ ନୁହେ ।

ଉଇଲିୟମ୍ ଡକେଇତି ଅଭିଯୋଗରେ ପନ୍ଦର ମାସ ଅଟକ ବନ୍ଦୀ ହୋଇ ରହିଲା । ଅପରାଧର କୌଣସି ପ୍ରମାଣ ନ ମିଳିବାରୁ ପୁଲିସ୍ କର୍ତ୍ତୃପକ୍ଷ ଖଲାସ୍ ଆଦେଶ ଦେଲେ । କିନ୍ତୁ ସେଟି ଲାଲ୍‌ଫିତା କାରସାଦିରେ ହଜିଗଲା । ଜଣେ ସାମ୍ବାଦିକ ଖୋଳତାଡ଼୍ କରିବାରୁ ଉଇଲିୟମ ଜେଲ୍‌ରୁ ମୁକ୍ତ ହେଲା । ଏ ଦେଶରେ ପୁଲିସ୍‌ର ଅଖଣ୍ଡ କ୍ଷମତା; ତାର ଅପପ୍ରୟୋଗ ମଧ୍ୟ ଏ ଦେଶରେ ଊଣା ନୁହେ ।

ବିନା ବିଚାରରେ ଅନ୍ୟ ଦେଶରେ ଯେପରି, ଏହି ଆଲୋକିତ ଦେଶରେ ସେହିପରି ବହୁବ୍ୟକ୍ତି ଜେଲ୍‌ଦଣ୍ଡ ଭୋଗ କରୁଥାନ୍ତି । ଏହାକୁ ଭାଗ୍ୟଦୋଷ ବୋଲି ଯାଇପାରେ ।

ନାରୀ ହରଣ, ଜବରଦସ୍ତ ଅଳଙ୍କାର ଅପହରଣ ଏକ ନିତ୍ୟନୈମିତ୍ତିକ ଅପରାଧ ।

ବନ୍ଧୁକଧାରୀ ଯୁବକ ଜଣେ ମଟରଚାଳିକା ଯୁବତୀର ଗାଡ଼ି ଅଟକାଇ ଜବରଦସ୍ତି ବସିଲା, ବନ୍ଧୁକ ଦେଖାଇ ଗାଡ଼ି ଚଳାଉଥିବା ଅବସ୍ଥାରେ ସେହି ଯୁବତୀର ଅଳଙ୍କାର ଗୋଟି ଗୋଟି କରି କାଢ଼ିନେଲା, ଅତି ମୂଲ୍ୟବାନ୍ ବିବାହ ହୀରାମୁଦିଟି ମଧ୍ୟ । ସେତିକିରେ ତୁଷ୍ଟ ନ ହୋଇ ତାର ଆକାଉଣ୍ଟ୍‌ରୁ ଟଙ୍କା ଉଠା କରି

ଆଣିବା ଲାଗି ବ୍ୟାଙ୍କ୍‌କୁ ଯିବାକୁ ତାକୁ ବାଧ୍ୟ କଲା । ଗାଡ଼ିରେ ବସି ବ୍ୟାଙ୍କ୍‌ରୁ ଟଙ୍କା ଡ୍ର କରିବା ବ୍ୟବସ୍ଥା ଆମେରିକାରେ ପ୍ରଚଳିତ ଅଛି । ସ୍ତ୍ରୀ ଲୋକ ପ୍ରାଣ ଭୟରେ ଟଙ୍କାତକ ଡ୍ର କରି ତାକୁ ହାତରେ ଦେଲା ।

ତାପରେ ପୁଲିସ୍‌କୁ ଖବର ଦେଲା । ପୁଲିସ୍ ଗୁପ୍ତଚର ଖବର ନେଲେ—ଡକାଇତଠାରୁ ଅଲଙ୍କାର କିଏ କିଣିଲା ? ଖାନ୍‌ତଲାସ୍ ଫଳରେ ଜଣାଲି ଧରା ପଡ଼ିଲା; ତାଠାରୁ ଅଲଙ୍କାର ଉଦ୍ଧାର କରାଗଲା । ସ୍ତ୍ରୀର ସ୍ଥିରବୁଦ୍ଧି ବିଶେଷ ପ୍ରଶଂସିତ ହେଲା ।

## ଟୋୟୋଟା

କଲିକତା ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକଙ୍କ ଆଗେ ସତ୍ୟ କରିଛି-- କାର୍ କିଣିବି ନାହିଁ । ବିଭା ହେବି ନାହିଁ, କିନ୍ତୁ ବରଯାତ୍ରୀ ହୋଇ ଗଲେ ଦୋଷ କଣ ? ଉଦଇରାଙ୍କ ସଙ୍ଗେ ଗଲି କାର୍ କିଣିବାକୁ । ଆଗେ ମେଲାରୁ ଶଗଡ଼ କିଣିଥିଲି । ଏବେ କାର୍ କିଣିବାର ଅନୁଭୂତି ହେଲା । ବାହ୍ମଣ ଶଗଡ଼ର ଦାମ୍ ପଡ଼ିଥିଲା ତିରିଶ ଟଙ୍କା । ଟୋୟୋଟା କାର୍‌ର ଦାମ୍ ହେଲା ପ୍ରାୟ ୧୪ ହଜାର୍ ଡଲାର୍—ଭାରତୀୟ ମୁଦ୍ରାରେ ପ୍ରାୟ ଦେଢ଼ ଲକ୍ଷ ଟଙ୍କାରୁ ଅଧିକ । ଏବେ ଭାରତରେ କାର୍ ମୂଲାଇଲେ ମୋତେ ଅଦା ବେପାରୀ ଜାହାଜ ମୂଲ କରୁଛି ବୋଲି କେହି ହାସ୍ୟ କରିବେ ନାହିଁ ।

ଟୋୟୋଟା ଯାପାନୀ କାର୍; ପାଞ୍ଚୋଟି ସିଟ୍ । ଶୀତାତପ ଓ ରେଡ଼ିଓ ଯନ୍ତ୍ର ଖଞ୍ଜା ।

ଇରା ଗାଡ଼ି ଯନ୍ତ୍ରପାତିର ପ୍ରୟୋଗ ଶିଖିଲା ପରେ କେମିତି ଚାଲୁଛି, ପରଖିଲା । ଘରକୁ ଫେରିବାବେଳେ କହିଲା—ଆମେରିକୀୟ କାର୍ କିଣିଥିଲେ ୨୩ ହଜାର ଡଲାର୍ ପଡ଼ିଥାନ୍ତା, ଯାପାନୀ କାର୍ ମାତ୍ର ଚଉଦ ହଜାର ଡଲାର୍‌ରେ ମିଳିଲା ।

ମୁଁ କହିଲି—ଯାହା ଧରୁ ଧରୁ ଭାଙ୍ଗିଯାଏ, ତାହା ଯାପାନୀ ଖେଳଣା, ଯାହା ପିନ୍ଧୁ ପିନ୍ଧୁ ଚିରିଯାଏ, ତାହା ଯାପାନୀ ଲୁଗା ବୋଲି ପିଲାଦିନେ ଧାରଣା ଥିଲା । ଏବେ ଯାପାନୀ ଜିନିଷ ଉଚ୍ଚ ମର୍ଯ୍ୟାଦା ଓ ଅଳ୍ପ ଦାମ୍ ବହନ କରେ ।

ଇରା କହିଲା—ନିଶ୍ଚିତ । ଏ ଦେଶରେ ଉତ୍ପାଦନ ଖର୍ଚ୍ଚ ଅନେକ ବେଶୀ । ପ୍ରତିଯୋଗିତାରେ ଛିଡ଼ା ହେବାକୁ ହେଲେ ଶସ୍ତା, ସୁନ୍ଦର, ମଜ୍‌ବୁତ୍ ଜିନିଷ ତିଆରି କରିବାକୁ ହେବ । ଯାପାନୀ ଚରିତ୍ର ପରି ଯାପାନୀ କାର୍ ସୁଦୃଢ଼ ।

ଜାତୀୟ ଗୌରବବୋଧ ଉତ୍ପାଦିତ ଦ୍ରବ୍ୟ ସହିତ ଜଡ଼ିତ, ଯାପାନୀ ବିଦେଶରେ ନିଜ ଦେଶର ନାମ ଖରାପ କରିବାକୁ ଚାହେଁ ନାହିଁ ।

ଆମେରିକାରେ ବାରମିଶା ଚଳନ୍ତି । ପ୍ରାଚୁର୍ଯ୍ୟ ମଧ୍ୟରେ ବଢ଼ି ଦୁରଭ୍ୟାସରେ ପଡ଼ି ଧନୀ ଲୋକର ଅବସ୍ଥା ଯାହା ହୁଏ, ଆମେରିକୀୟର ଅବସ୍ଥା ପ୍ରାୟ ସେଇଆ ହୋଇଛି । ଯାପାନୀ ଜୀବନ ପଦେ ପଦେ ସଂଗ୍ରାମଶୀଳ, ତା ବୋଲି ଆମେରିକୀୟ ଜିନିଷରେ କିଛି ଗଳ୍‌ତି ରହୁଛି, ତାହା କହୁନାହିଁ । ଉତ୍ପାଦନ ଖର୍ଚ୍ଚ ଅଧିକ, ତେଣୁ ଦର ଅଧିକ ପଡ଼ୁଛି, ଟିକସ ଦେବା ସତ୍ତ୍ୱେ ବାହାର ଜିନିଷ ଏହା ସହିତ ପ୍ରତିଯୋଗିତାରେ ଛିଡ଼ା ହେବାକୁ ସମର୍ଥ ହେଉଅଛି ।

କାର୍‌ରେ ନିଜେ ଗ୍ୟାସ୍ ଭର୍ତ୍ତି କଲୁ, ଦଶ ହାତ ଦୂରରେ ଏକ ଘରେ ଦାମ୍ ଲେଖି ହୋଇଗଲା ।

ଟୋୟୋଟା ୨୪ ହଜାର ମାଇଲ୍ ଦୌଡ଼ିବାକୁ ସମର୍ଥ ହେବ, କମ୍ପାନୀ ଘୋଷଣା କରିଛି । ପୃଥିବୀର ପରିଧି ୨୫ ହଜାର ମାଇଲ୍ ।

ଡେଙ୍ଗା ମଣିଷଙ୍କ ଲାଗି ଟିକିଏ ଅସୁବିଧା । ଉଠାପକା ରାସ୍ତାରେ ଚାଲିଲେ ଛାତରେ ମୁଣ୍ଡ ବାଜେ । ଗାଡ଼ିରେ ପଶିଲାବେଳେ ଆଗେ ଗୋଡ଼ ନା ମୁଣ୍ଡ ଭର୍ତ୍ତି କରିବ, ମଣିଷ ଦୋଘାଇରେ ପଡ଼େ ।

## ଇଣ୍ଡିୟାନ୍ ଆସୋସିଏସନ୍

ସେଣ୍ଟ ଲୁଇସ୍ ସହରରେ ମାତ୍ର ଏକ ହଜାର ଭାରତୀୟ ଅଛନ୍ତି । ସେଥି ମଧ୍ୟରୁ ମାତ୍ର ୧୪୦ ଜଣ ଆସୋସିଏସନ୍‌ର ସଭ୍ୟ, ଇଏ ସଭାନେତ୍ରୀ ।

କେନ୍ଦ୍ର ସମିତିର ସଭାପତି ଶ୍ରୀ ସାକ୍‌ସେନା ସେଣ୍ଟ ଲୁଇସ୍ ସମିତିର ବାର୍ଷିକ ଉତ୍ସବରେ ସଭାପତି ହୋଇଥିଲେ । ସେ ଭାଷଣରେ କହିଲେ—'ଭାରତ ଆମ ଜନ୍ମ-ଭୂମି, ଆମେରିକା କର୍ମଭୂମି, ଆମେ ଆମେରିକାର ସ୍ଥାୟୀ ବାସିନ୍ଦା ହୋଇଛୁ । ସେ ଦେଶ ପ୍ରତି ଆମର କର୍ତ୍ତବ୍ୟ ରହିଛି । ଭାରତର ସ୍ଥାନ ଏ ଦିଗରେ ଦ୍ୱିତୀୟ । ଆମେରିକା ସହିତ ଆମେ ପାଦ ମିଳାଇ ଚାଲିବା, ଭାରତର ସୁଖଦୁଃଖରେ ଭାଗୀ ହେବା ।'

ମୁଖ୍ୟ ଅତିଥି କହିଲେ—ଆପଣମାନଙ୍କ ଶିକ୍ଷାଦୀକ୍ଷା ଉଚ୍ଚକୋଟିର, ଅର୍ଜନ ପ୍ରଚୁର, ଚଳାଚଳର ମାନ ଉଚ୍ଚ, ଉଚ୍ଚ ଲକ୍ଷ୍ୟରେ ପହଞ୍ଚିବା ଲାଗି ଧନ ଗୋଟିଏ ନିମିତ୍ତ ମାତ୍ର । ଧନକୁ ଯେଉଁମାନେ ଜପାମାଳୀ କରି ଗଡ଼ାଉଥିଲେ, ଜୀବନର ଅର୍ଥ ଧନ ବୋଲି ବୁଝୁଥିଲେ,—ତେଲକମ୍ପାନୀର ମାଲିକ, ଖଣି ମାଲିକ, ବଡ ବଡ଼ କାରଖାନାର ମାଲିକ; ସେମାନଙ୍କ ମଧ୍ୟରୁ କେତେକ ପାଗଳ ହୋଇଛନ୍ତି, କେତେକ ଆତ୍ମହତ୍ୟା କରିଛନ୍ତି କାହିଁକି ?

ଧନ ସୁଖଶାନ୍ତି ଦେଇପାରେନାହିଁ । ଅର୍ଜିତ ସମ୍ପଦରୁ କିଛି ସନ୍ମାର୍ଗରେ ବ୍ୟୟ କରି ଜାଣିଲେ, ପରମାନନ୍ଦ ମିଳେ ।

ଭ୍ରମଣ ପରେ ପ୍ରାଚୀନ ଝାଡ଼ ଆଲୁଅ ତଳେ ସାତଜଣିଆ ଗୋଷ୍ଠୀ କିଛି ନିମନ୍ତ୍ରିତମାନେ ବସିଗଲେ । ଟେବୁଲ ଉପରେ ମଦ୍ୟମବତୀ । ଖାଇସାରି ଫେରିଲା-ବେଳକୁ ବର୍ଷା । କାଚ ପୋଛି ଦେଲେ ବି ଦୂର ଦିଶୁନାହିଁ । ଗାଡ଼ିର ଗତି ଆପେ ଆପେ ଶିଥିଳ, ନିର୍ଦ୍ଦିଷ୍ଟ କେତେ ମାଇଲ୍‌ରେ ଚଳାଇବ, ଇଙ୍ଗିତ ଥିଲେ ବି ।

## ଶେଷ ଦୃଶ୍ୟ

ଭ୍ରମଣ ନାଟକର ଶେଷ ଦୃଶ୍ୟ—'ଡାନିଏଲ୍ ହୋମ୍' । 'ଜିଣିବାକୁ ଆଉ ନାହିଁ ଭୂମିଖଣ୍ଡ' ବୋଲି ବିଜୟୀ ବୀର ଆଲେକ୍‌ଜାଣ୍ଡାର୍ ଗଣ୍ଡ ଅଶ୍ରୁସିକ୍ତ କରି-ଥିଲେ । ସେହିପରି ସେଣ୍ଟ୍‌ଲୁଇସ୍ ସହରରେ ଆଉ ଦେଖିବାକୁ କିଛି ନାହିଁ, ଆମେ ସେଥିଲାଗି ଦୁଃଖ କରୁନାହୁଁ । ଖୁସି । ଦେଖିପାରିଛୁ ।

ଆଉ କିଛି ନ ଦେଖାଇ ପାରିବାର ଗ୍ଳାନି ଇଭା ମନରେ । ଦୂର ଜାଗା ଦେଖିବାକୁ ସମୟ ନାହିଁ, ଭାବି ଭାବି ସେ ନେଲା ଗୋଟିଏ ସ୍ମୃତି ମନ୍ଦିର—ଡାନି-ଏଲ୍ ହୋମ୍ ।

ଓସେସ୍ ନଦୀ କୂଳରେ ଏକ ସୁବିସ୍ତୃତ ସବୁଜ କ୍ଷେତ୍ରରେ ଅବସ୍ଥିତ । ନିକଟରେ ଏକ ଲୋହିତଭାରତୀୟ ଗ୍ରାମ—ଫସଲକ୍ଷେତ, ଘାସପଡ଼ିଆ, ଗୋ ଶୂକର, ଏଠିସେଠି ସରୁ ସରୁ ଚଲା ବାଟ ।

ଆମ ଗାଇଡ଼ଙ୍କ ବୟସ ୭୫ ବର୍ଷ, ଲିଆ ଫୁଟିଲା ପରି କଥା ଛୁଟୁଛି । ଅତି କ୍ଷୁଦ୍ର କ୍ଷୁଦ୍ର ଘଟଣାକୁ ଫେଣେଇଫୁଲେଇ କହୁଛନ୍ତି, ଯେମିତି ଭାରି ଗୋଟାଏ ବଡ଼ କଥା । ଏ ଟେବୁଲ୍‌ଟା କି କାଠର, କେବେ କିଏ ବ୍ୟବହାର କରୁଥିଲା, ବିଚିତ୍ର ଧରଣର ଏକ ଡ୍ରୟର୍ ଭିତରେ ପଇସା ରଖି କିପରି ଚୋରର ଆଖିରେ ଧୂଳି ଦିଆ ଯାଉଥିଲା—ଏମିତି ବହୁ ଲୁଖୁରା କଥା ।

ଜାଣିଶୁଣି ତାଙ୍କ କଥା ପ୍ରତି ମୁଁ ମନଯୋଗୀ ହୋଇ ନ ଥିଲି, କେବଳ ଲକ୍ଷ୍ୟ କରୁଥିଲି ତାଙ୍କୁ; ଏ ବୟସରେ ସେ କେଡ଼େ ସିଧା, କେଡ଼େ କ୍ଷିପ୍ର ତାଙ୍କର ଗତି, କେତେ ଉଜ୍ଜ୍ୱଳ ତାଙ୍କର ମତି ! କି ଗଭୀର ଆତ୍ମବିଶ୍ୱାସ । ଅଥଚ ତାଙ୍କ ଠାରୁ ପାଞ୍ଚବର୍ଷ ସାନ ହୋଇ ନିଜକୁ ବୟସ୍କ ମନେ କରେ କାହିଁକି ? କର୍ତ୍ତବ୍ୟ କର୍ମ କରି ଯାଉଥିଲେ କିଛି ନାହିଁ । ନିଜକୁ ବୁଢ଼ା ବୋଲି ଭାବିଲେ ହିଁ ମଣିଷ ବୁଢ଼ା ହୋଇଯାଏ ।

ଡାନିଏଲ୍ ବ୍ରୋମ୍ ଜଣେ ସ୍ଥାନୀୟ ଗୋରା ନେତା; ଆମେରିକାର ବୀର-ମଣ୍ଡଳୀରେ ତାଙ୍କ ନାମ ଉଲ୍ଲେଖଯୋଗ୍ୟ ନୁହେଁ । ସେ ଲୋହିତଭାରତୀୟଙ୍କୁ ତଡ଼ି ଗୋରା ବସତି ସ୍ଥାପନ କଲେ । ଯେଉଁ ବୃକ୍ଷ ମୂଳରେ ଲୋହିତ ଅପରାଧୀଙ୍କର ବିଚାର ହେଉଥିଲା, ତାର ନାମ ବିଚାରବୃକ୍ଷ । ବୃକ୍ଷଟି ମଲାଣି । ଏବେ ଗଣ୍ଡିଟି ମାତ୍ର ପଡ଼ିଛି । ଜଣେ ହେଲେ ଆଦିବାସୀଙ୍କୁ ଫାଶିକାଠରେ ଝୁଲାଇ ନ ଥିଲେ ବୋଲି ତାଙ୍କୁ ଗୌରବ ଦିଆଯାଏ ।

ଅଷ୍ଟାଦଶ ଶତାବ୍ଦୀରେ ବ୍ୟବହୃତ ବାସନକୁସନ, ଚୌକି ଟେବୁଲ୍, ସିନ୍ଦୁକ ବାକ୍ସ, ଖଟ, ଶେଯ, ମଶାରୀ, ଚୁଲି, କରେଇ, ଲୁହାଖଡ଼ିକା, ସୂର୍ଯ୍ୟଘଡ଼ି ବନ୍ଧୁକ, ବାରୁଦରଖା ଶିଙ୍ଘ ଖୋଳ, ଜର୍ଜ ଓ୍ୱାସିଂଟନ୍ ଓ ତାଙ୍କ ପତ୍ନୀଙ୍କ ଫଟୋ ଦେଖିଲି ।

ଅଖାଡରଙ୍କ ଜାତି । ଇତିହାସ ବାହାରେ ବୀର ଖୋଜି ନ ପାଇ ଜମିଦାର ଡାନିଏଲ୍ ବ୍ରୋମ୍ଙ୍କ ଉପରେ ସୁନାକଳସ ଢ଼ାଳି ଦେଇଛି । ତାଙ୍କ ତିନି ତାଲା ଘରଟି ବୁଲି ଦେଖିବାକୁ ଦୁଇ ଡଲାର୍ ଟିକେଟ୍ ଲାଗିଲା । ଓଡ଼ିଶାର ଏମିତି କେତେ ଜମିଦାର ପ୍ରାସାଦ, ତାର ଇତିହାସ ଓ ସଂସ୍କୃତି ବିଲୋପ ପଥରେ ।

ଏହି ତଥାକଥିତ ସ୍ମୃତି ସ୍ମରଣ କରାଇ ଦିଏ ଭାରତୀୟ ଓ ଉତ୍କଳୀୟ ଜାତୀୟ ବୀରମାନଙ୍କ ବିସ୍ମୃତ ଗାଥା, ମହାବୀର, ବିଦଗ୍ଧ ବିଦ୍ୱାନ୍, ମହାକବି, ମହାଶିଳ୍ପୀ ଓ ଭାସ୍କରଙ୍କ କଥା; କୀର୍ତ୍ତି ଅଛି । କୀର୍ତ୍ତିକାରୀଙ୍କ ନାମ ଅଜଣା । ଭାସ୍କର୍ଯ୍ୟ ଅଛି; ଭାସ୍କର କିଏ ? ପୋଥିଚିତ୍ର, ଭିତ୍ତିଚିତ୍ର ଅଛି, ଶିଳ୍ପୀ କିଏ ? କୀଟଦଷ୍ଟ ମହାକାବ୍ୟର ପାଣ୍ଡୁଲିପି ଅଛି; କବି କିଏ ?

ପଶୁପକ୍ଷୀ ପୂରା ସ୍ୱାଧୀନତା ପାଇଛନ୍ତି ଏଇ ପାହାଡ଼ ତରଙ୍ଗରେ, ନର୍ଭସ୍ୱ-ବର୍ଦ୍ଧିତ ବୃକ୍ଷକୁଞ୍ଜରେ । ବନ୍ୟ ଗୁଲ୍ମ ଗୋଲ୍ଡେନ୍ ରଡ୍ ଯୋଗସ କ୍ଷେତର ଭ୍ରମ ଜନ୍ମାଏ, ରଙ୍ଗୀନ୍ ପତ୍ରଭରା ଗୁଲ୍ମ ଜଙ୍ଗଲରେ ।

ମିସୋରୀ ସ୍ରୋତରେ ସନ୍ଧ୍ୟାରାଗ ରଡରଡ । ପୂର୍ବାଞ୍ଚଳୀ ନାରୀ ପରି ଆମେରି-କାର ନଦୀସବୁ, ସର୍ବାଙ୍ଗଆବୃତ । କିନ୍ତୁ ମିସୋରୀର ଖୋସାରୁ ଓଢ଼ଣାଟି ଖସି ପଡ଼ିଲା ପରି ଲାଗେ, ତାର ଜଳଧାରା ପାର୍ଶ୍ୱବର୍ତ୍ତୀ ବାଲୁକାରାଶି ଦେଖିଲେ ।

ଦେଖୁ ଦେଖୁ ସାତଦିନ କଟିଗଲା । ଲତା ପୁଣି ଜିନିଷପତ୍ର ସଜାଡ଼ି ଲାଗିଲା । ଇଏ କହିଲା—ଏଣ୍ଡିଆନ୍ ଏୟାର୍ ଲାଇନ୍ସ୍ରେ ହାଣ୍ଡବ୍ୟାଗ୍ ବି ଓଜନ କରିବେ ।

ମୁଁ ହସି ହସି କହିଲି—ମୁଁ କ'ଣ ସେଥିଲାଗି ଡରୁଛି ? ମୋ ଭୟ—କାଳେ ମୋତେ ଓଜନ କରିବେ !

ଇରା ହସି କହିଲା—ସେ ଭୟ ନାହିଁ, ବାଙ୍ଗରା, ପତଳା, ଧଳା, କଳା, ହଲଦିଆ ମଣିଷ, ଡେଙ୍ଗା, ମୋଟା ମଣିଷ ପ୍ରତି ଏକା ପ୍ରକାର ବିବେଚନା ।

ଦିଲ୍ଲୀରେ ପଚାରିବେ—ସୁଟ୍‌କେସ୍‌ରେ କ'ଣ ଅଛି ? ଖୋଲିଖୋଲି କହିଦେବା ଭଲ । ଲୁଚେଇବା ଚେଷ୍ଟା କଲେ ଧରାପଡ଼ିଲେ ଶାସ୍ତି କଠୋର ।

ଅବଶ୍ୟ ମୁହଁକୁ ଚାହିଁ ସେମାନେ ଜାଣିଯିବେ—କିଏ ସଚ୍ଚା ବା ନୁହେଁ ।

କହିଲି—ମୁହଁ ଠାରୁ ବଡ଼ ଠକ ସଂସାରରେ ଆଉ ନାହିଁ, ସୁନ୍ଦର ମୁହଁ କଥା ଛାଡ଼, ସେ ତ ଇତିହାସର ମୋଡ଼ ବଦଳାଇ ଦେଇଛି !

**ନିଉ ଅର୍ଲିନ୍‌ସ୍‌ ଯାତ୍ରା**

ଇରା ଆମକୁ ଯଥୋପଯୋଗୀ ପରାମର୍ଶ ଦେଇ ବିଦାୟର ଦିନକ ଆଗରୁ ଲୁଇସିଆନା ରାଜ୍ୟର ନିଉ ଅର୍ଲିନ୍‌ସ୍‌ ଯାତ୍ରା କଲା । ତେଣୁ ଆମେ ତାଠାରୁ ବିଦାୟ ନେଇ ପାରିଲୁ ନାହିଁ, ସେ ଆମଠାରୁ ନେଲା । ଯିବା ଆଗରୁ ଯେ ବଡ଼ ଜାଆ ଲତାର ଗଳାରେ ଚାରି ଭରିର ସୁନାହାରଟିଏ ଲମ୍ବାଇ ଦେଲା ଏବଂ କହିଲା—ଯେତେ ଇଚ୍ଛା ସେତେ ଶାଢ଼ୀ ନେଇଯାଅ । ଏସବୁ ସ୍ନେହର ଦାନ ସ୍ୱରୂପ ବସ୍ତୁ ସଂଖ୍ୟାରେ ମିଳିଛି । ପାର୍ଟିକୁ ଗଲେ କ୍ୱଚିତ୍ ପିନ୍ଧେ, ନୋହିଲେ ନାହିଁ । ଡାକ୍ତରଖାନାରେ ଏ ଡ୍ରେସ୍ ଚଳେନାହିଁ ।

ସ୍ୱଭାବତଃ ଲକ୍ଷଣୀଲା । ଲତା ସେ ସବୁ ଛୁଇଁଲା ନାହିଁ । ସହଜେ ତ ସୁଟ୍‌କେସ୍‌ରେ ଜାଗା ନଥିଲା ।

ନିଷ୍ଠେତନ ବିଦ୍ୟାବିଶାରଦଙ୍କ ସଭା; ରୋଗୀକୁ ସହଜ ଉପାୟରେ ଉଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ କିପରି ଅଜ୍ଞାନ ରଖି ହୁଏ, ରୋଗୀର କିଛି କ୍ଷତି ନ ଘଟେ, ସେ ବିଷୟରେ ଗବେଷଣାର ଅନ୍ତ ନାହିଁ । ତେଣୁ ଆମେରିକା, ଇଉରୋପ ଓ ଭାରତ-ବର୍ଷରେ ଏ ଜାତୀୟ ସଭା ହେଲେ ଉଦୟ, ଇରା ନିଜ ଖର୍ଚ୍ଚରେ ଯାଇ ପ୍ରବନ୍ଧ ପାଠ କରନ୍ତି ଓ ଆଲୋଚନାରେ ଯୋଗ ଦିଅନ୍ତି । ଅତ୍ୟାଧୁନିକଭାବେ ପ୍ରସ୍ତୁତ ହୋଇ ରହିବାକୁ ପ୍ରତ୍ୟେକ ଡାକ୍ତର କର୍ତ୍ତବ୍ୟ ମନେ କରେ ।

ଘରଣୀର ଅନୁପସ୍ଥିତିରେ ଘର ଖାଲି ଖାଲି ଲାଗେ । ଲତା ରାନ୍ଧି ଖୋଇବା କାମଟି ଚଳାଇ ନିଏ । ଗଲାଥଇଲା, ହାନିଲାଭ ଓ ଘରର ସ୍ୱତନ୍ତ୍ର ସ୍ୱାଦ ଗନ୍ଧ ଘରଣୀ ବୁଝେ । ଅନ୍ୟ ଲୋକ ଯେତେ ଆପଣାର ହେଲେ ବି ସେ କାମ କରିପାରେ ନାହିଁ ।

ଇରା ଲତା ଅପେକ୍ଷା ଅଧିକ ଆଧୁନିକା । ଯୁଗୋପଯୋଗୀ ବ୍ୟବହାର କଳାରେ ସୁପ୍ରବୀଣା ।

କିନ୍ତୁ ଲତା ନାଷ୍ଟର ଆଦିମ ବିଦ୍ୟା ରନ୍ଧନରେ ଅଧିକ ପାରଙ୍ଗମା । ଓଡ଼ିଶାର ଗଣ୍ୟମାନ୍ୟଙ୍କ ଚର୍ଚ୍ଚାରେ ସ୍ଥାନୀୟ କେଉଁ ଶିକ୍ଷିତା ତାଙ୍କୁ ବଳିଯିବ ନାହିଁ ।

ଆଜି ଅକ୍ଟୋବର ୧୫ ତାରିଖ, ବାହୁଡ଼ା ଯାତ୍ରା ଦିନ । ଶେଷ ବିଦାୟ ଦେବାକୁ ଆସିଛନ୍ତି ଆମର ଅତି ଆପଣାର, ବିଦଗ୍‌ଧବର ଡକ୍ଟର ଲିଣ୍ଡେଲ୍ । ସେ ସ୍ୱର ଧରି କବିତାଟିଏ ଗାଇଲେ, ଯାହା ଘର ଓ ସ୍ୱଦେଶର ପ୍ରେମାଶ୍ରୁ ମନରେ ଭରିଦେଲା । ତାର ଓଡ଼ିଆ ଅନୁବାଦ ଏଇ—

ସବୁ ମେଘ ହେବ ବୋଲି
ରୂପା ଝିଲମିଲି
ବିଦେଶେ ଶୁଣିବୁ ବୋଲି
ନୀଳ ପକ୍ଷୀ ସ୍ୱର
ଆମେ ଯାଉ ଘର ଛାଡ଼ି ।

ବହୁତ ଆକାଶ ବୁଲି
ଦେଖି ବହୁ ହ୍ରଦ ନଦୀ ପ୍ରପାତ କାନନ
ଫେରୁ ଯେବେ,
ସ୍ଥିର କରୁ ମନେ
ନୀଳ ପକ୍ଷୀ ଅଛି ମାତ୍ର ନିଜର ଗଗନେ !
ଉଡ଼ୁ ଅଛି ତୁମ ଅପେକ୍ଷାରେ
ତୁମ ନିଜ ଦ୍ୱାରେ !

ପୂର୍ବେ ଯାଅ
ପଶ୍ଚିମେ ଯାଅ ବା
ଯାଅ ଅବା ଉତ୍ତର ଦକ୍ଷିଣେ
ଆଶା ଭଙ୍ଗେ ଫେରିବ ଯେ ଦିନେ
ଦେଖିବ ସେ ନୀଳ ପକ୍ଷୀ
ଉଡ଼ୁ ଅଛି ତୁମର ପ୍ରାଙ୍ଗଣେ
ତୁମ ଆଖି ଆଗେ
ଛାଡ଼ିଥିଲ ଯେ ସ୍ଥାନ ବିରାଗେ ।

ସୁଖ ଶାନ୍ତି ନାହିଁ ନାହିଁ
କେଉଁ ବିଦେଶରେ
ଅଛି ମାତ୍ର ନିଜ ନିକେତନେ ।

## ଚବିଶି

### ବାଟ ଶେଷର ଫୁଲ କେତୋଟି

ପ୍ଲେନ୍ ଷ୍ଟେସନ୍‌କୁ ଛାଡ଼ିନେଲା ଏକା ଉଦୟ, ଯେ ବ୍ୟାକୁଳ ହେଉଥିଲା ଭୁଲାଇ କେତେ କଛୁ ଦେଖାଇବାକୁ, କିନ୍ତୁ ଅନୁକୂଳ ଭଙ୍ଗ କରୁଥିଲା ବେତାର ସାଇରେନ୍; କହିଲା—ଯାପାନ ଯାଅ, ଚୀନ୍ ବା ଋଷିଆ ଯାଅ କିମ୍ବା ମଧ୍ୟ ପ୍ରାଚ୍ୟ ଯାଅ, ଲେଖିଲେ ମୁଁ ଡଲାର୍ ବ୍ୟବସ୍ଥା କରିବ ।

କହିଲି— ଆଉ ବୟସ ମୋର କାହିଁ ?

ପାରିବ ପୂଜା ଉପୁଜାଇ ।

ଦେଖି ଯିବାକୁ ଆଉ ଦେହରେ ବଳ କାହିଁ ? ଥରା ହାତରେ ଆଉ ଲେଖିବ କ'ଣ ?

ବହୁତ ଖର୍ଚ୍ଚାନ୍ତ ହେଲୁଣି; ଅନେକ କଷ୍ଟ ସହିଲୁଣି । କୋଉ ଗ୍ଲାନି ଏତେ କରୁଚ ?

"ତୁମ ଜୀବନସଂଗ୍ରାମ ଓ ଘୋର ଅଭାବ ମଧ୍ୟରେ ତୁମେ ଭାବ ପାଉଥିଲ— ସାନଭାଇ ପାଠ ପଢ଼ି ମଣିଷ ହଉ; ମୁଁ ଏବେ ଐଶ୍ୱର୍ଯ୍ୟରେ.....।"

"ଐଶ୍ୱର୍ଯ୍ୟରେ ଅଧିକାଂଶ ଲୋକ ପୂର୍ବ ଦୁରବସ୍ଥା ଭୁଲିଯାନ୍ତି । ତୋର ଠିକ ଠିକ କଥା କେତେ ମନେଅଚ୍ଛ । ଐଶ୍ୱର୍ଯ୍ୟରେ ଉନ୍ମତ୍ତ ହୋଇ ଦାରିଦ୍ର୍ୟ ଦୁଃଖ ବିସ୍ମୃତ ହୋଇନାହୁଁ । ତାହା ହିଁ ତୋତେ ପରମନ ଚହ୍ନିବାରେ ସାହାଯ୍ୟ କରେ, ଅନ୍ୟର ଦୁଃଖଦୁର୍ଦ୍ଦଶାରେ ସାହାଯ୍ୟ କରିବାକୁ ପ୍ରେରଣା ଦିଏ, କଲ୍ୟାଣକର କର୍ମରେ ପ୍ରବର୍ତ୍ତାଏ । ସେଥିଲାଗି ତୁ ମହତ୍ । ଧନ ଓ ଜୀବନ କ୍ଷଣସ୍ଥାୟୀ, ଏହି ମହତ୍ତ୍ୱ ଚିରଜୀବୀ, ସମ୍ମାନୀୟ ।

ଲତା ଆଉ କିଛି କହିପାରିଲା ନାହିଁ, କେବଳ ଲୁହ, ଲୁହ । ଗୋଟାଏ ବେଳେ ଅପରେସନ୍, ଗୋଟାଏ ମିନିଟ୍ ଏପଟ ସେପଟ ହେବାର ନୁହେ । ଉଦୟ ଆମକୁ ଛାଡ଼ିଦେଇ ଗ୍ଲିଗଲା ।

ଜଣେ ଆମେରିକାୟ ଆଗପଟୁ ଆସୁଚି; ସେ ମୋତେ ବାଟ ପାଖେଇବେ ନା ମୁଁ ତାଙ୍କୁ ? ବାଆଁକୁ-ବାଆଁ, ଡାହାଣକୁ ଡ଼ାହାଣ ବୁଝିଥିର ହେବା ପରେ ଦୁଇ ଅଚହ୍ନା ଆମେ ହସାହସି ହୋଇ ଯେଝା ବାଟରେ ଗଲୁ ।

ସେଣ୍ଟ୍‌ଲୁଇସ୍‌ରୁ ନିଉୟର୍କ ଦୁଇ ଘଣ୍ଟାର ବାଟ । ପାନାମ୍‌ରେ ଆମ ଯାତ୍ରା । ପାନାମ୍ ଏୟାର୍ ଷ୍ଟେସନ୍ ପାଖେ ଏୟାର୍ ଇଣ୍ଡିଆ । ଜନପଥଣ ସେଣ୍ଟ୍‌ଲୁଇସ୍‌ରୁ ନିଉଦିଲ୍ଲୀ ବୁକ୍ କରି ହୋଇଥିଲା । କିଛି ଝିନ୍‌ଝଟ୍ ନାହିଁ, ଆମେ ଏୟାର୍ ଇଣ୍ଡିଆ ଷ୍ଟେସନ୍‌କୁ ଗଲୁ । ଟିକେଟ୍ ଚେକ୍‌ହେଲା । ମୁଣ୍ଡ ପିଚ୍ଛା ଛ' ଡଲାର୍ ଯାତ୍ରୀ ଟିକସ୍ ପଡ଼ିଲା । ରାତି ସାଢ଼େ ଆଠରେ ପ୍ଲେନ୍ ଛାଡ଼ିବ । ଉଦକୁ ଫୋନ୍ କଲୁ— ସବୁ ଠିକ୍ ।

ବସି ଘୁମାନ୍ତି କେତେ; ମୋ ଦେହ ସେ ପାଠ ହୁଏନାହିଁ, ବାଆଁରୁ ଡାହାଣକୁ, ଡାହାଣରୁ ବାଆଁକୁ କଡ଼ ଲେଉଟାଇଲି, ଆଗକୁ ପଛକୁ ହୋଇ କେତେବେଳେ ଗୁଇନିଦ ଲାଗିଗଲା । ଆଖି ଖୋଲିଲା ବେଳକୁ ସାମ୍ନାରେ ଦୁଇଟା ଟେଲିଭିଜନ୍ ଚାଲିଛି; ଗୋଟାକରେ ଯୁଦ୍ଧ, ବୋମାବର୍ଷଣ, ଅନ୍ୟଟିରେ ମଧୁର ପ୍ରେମଲୀଳା । ଯାନ ଗର୍ଜନରେ କିଛି ଶୁଭୁନାହିଁ । ସେଥିଲାଗି ପ୍ରତି ସିଟ୍‌ରେ ଇଅର୍ ଫୋନ୍ ବ୍ୟବସ୍ଥା ।

ହଠାତ୍ ଆଲୁଅ ଜଳି ଉଠିଲା; କାହିଁକି ? ବ୍ରେକ୍‌ଫାଷ୍ଟ୍ ! ରାତି ଦୁଇଟାରେ ବ୍ରେକ୍‌ଫାଷ୍ଟ୍ ? ଭୂଗୋଳର କାରସାଦ; ଘଡ଼ି ବଦଳାଇବାକୁ ହେବ । ପଦାକୁ ଲକ୍ଷ୍ୟ କଲାବେଳକୁ ଉଦୟାଭାସ । ଝରକା ଖୋଲିଲି । ଝଲକାଏ କଅଁଳିଆ ଖରା ଯାନ ଭିତରକୁ ପଶି ଆସିଲା । ସମୁଦ୍ର ନାଚୁଛି, ନାଚୁଛି; ପ୍ରତ୍ୟେକ ତରଙ୍ଗ ମସ୍ତକରେ ସୁନା ଜରି ଟୋପି । ଲଣ୍ଡନ ସହର ପାଖାପାଖି; ସମୟ ଆଠଟା ।

ଏୟାର୍ ଇଣ୍ଡିଆ ଜେଟ୍ 'ଚନ୍ଦ୍ରଗୁପ୍ତ' ଭିତର ସଫା ହେବ – ଲଣ୍ଡନରେ ଦେଢ଼ଘଣ୍ଟା ରହଣି । ଓହ୍ଲାଇ ସମସ୍ତଙ୍କୁ ତଳକୁ ଯିବାକୁ ହେବ । ଶୀତର ପ୍ରକୋପ । ଲଣ୍ଡନ ଘନ କୁହୁଡ଼ି ଭିତରେ ଲଟରପଟର ।

ଏୟାର୍‌ପୋର୍ଟ ବିପୁଳ, ବିପଣିଭରା । ସଦା ଗତାୟତ କରୁଥିବା ଜଣେ ବ୍ୟବସାୟୀର ପିଚ୍ଛା ଧରି ଆମେ ଗଲୁ, ମନରେ ପଥହରା ହେବାର ଶଙ୍କା ।

ମଧ୍ୟ ପ୍ରାଚ୍ୟର ମରୁଭୂମି ପଥ । ପ୍ରଚଣ୍ଡ ଖରା । ହଠାତ୍ ଦିନଟା କିଏ ହରଣଚେଲ୍ କରିନେଲା ? ଏବେ ରାତି ।

ଲଣ୍ଡନରୁ ଦିଲ୍ଲୀ ଦଶ ଘଣ୍ଟାର ବାଟ । କିପରି କଟିବ ? ମା'ଆ ସରସ୍ୱତୀଙ୍କି ଡାକି କିଛି କବିତା ଗାରେଇଲି ।

କେତେ ଶଙ୍କା ! ପ୍ରତିଦିନ ଶଙ୍କାର ମେଘ ମନକୁ ଆଚ୍ଛନ୍ନ କରୁଥିଲା, ବ୍ୟସ୍ତ ବିବ୍ରତ କରୁଥିଲା । ବେଳେବେଳେ ସୁଟ୍‌କେସ୍‌ରୁ ଟାଇପ୍‌ରାଇଟର୍, ଇଲେକ୍‌ଟ୍ରୋନିକ୍ ଜିନିଷ କେତୋଟି କାଢ଼ି ଫୋପାଡ଼ି ଦେବାକୁ ମନ ହେଉଥିଲା । ଏ ସବୁ ନ ନେଲେ କ'ଣ କ୍ଷତି ? କାହିଁକି ବୃଥା ଏ ଶଙ୍କା, ମନସ୍ତାପ ? ତା ଅପେକ୍ଷା ତିନିଗୁଣ ଦାମ୍‌ରେ ଭାରତରେ ଜିନିଷ କିଣିଥିଲେ ଏତେ ବାଧି ନ ଥାନ୍ତା ।

୧୭ ତାରିଖ ରାତି ଏଗାରଟାରେ ଦିଲ୍ଲୀରେ ପହଞ୍ଚିଲୁ । ଠେଲା ଗାଡ଼ିରେ ଜିନିଷପତ୍ର ନେଇ ଚେକ୍ ଗେଟ୍‌କୁ ଗଲୁ ।

ଆମ ବାକ୍‌ସ କାହିଁକି ଘଣ୍ଟାଚକଟା ହେଲାନାହିଁ ? ମୋ ଶଙ୍କା, ମାନସିକ ଯନ୍ତ୍ରଣା କଣ କିଛି ମୁଖରେ ପ୍ରତିଫଳିତ ହୋଇନାହିଁ ? ମୁଖଟା ଅଲେଖା କାଗଜ ପରି ତାକୁ ଦିଶିଲା କାହିଁକି ?

ଚେକର୍ ମୋତେ ପଚାରିଲା—କଣ କରନ୍ତି ?

"ଅବସରପ୍ରାପ୍ତ ଅଧ୍ୟାପକ ।"

"କଣ ଆଉ ବାକ୍‌ସରେ ଥିବ ! ଲୁଗାପଟା ତ !"

"କିଛି ସନ୍ଦେହ ହେଲେ ଖୋଲି ଦେଖନ୍ତୁ"—ମୁହଁ ଟାଣ କରି ଏତିକି କହିଦେଲି, ଏଣେ ମନ ଧୁଚୁ ଧୁଚୁ ।

ଚେକର୍ କଣ୍ଠରେ ସରସ୍ୱତୀ ବସିଲେ । ସେ କହିଲା—"ଖୋଲିବା ଦରକାର ନାହିଁ, ଯାନ୍ତୁ ।"

ସେତେବେଳେ ଜଣେ ଗେରୁଆ ପିନ୍ଧା ସାଧୁଙ୍କ ବାକ୍‌ସ ଘଣ୍ଟାଘଣ୍ଟି ଚାଲିଥାଏ । କାରଣ—

"ବେଶ ତ ନୁହେ କେବେ ଗୁଣର ଚିହ୍ନ
ବାହାରେ ସାଧୁବେଶ ଭିତରେ ଭିନ୍ନ ଗୋ ।"

ରାବଣ ଏଇ ବେଶରେ ସୀତାହରଣ କରିଥିଲା; ଏଇ ମୁଖା ପିନ୍ଧି ଚୋର ବିଦେଶରୁ ସୁନା ବିସ୍‌କୁଟ୍, ଘଣ୍ଟା, ଟେପ ରେକର୍ଡର, ବିଭିନ୍ନ ନିଶାଦ୍ରବ୍ୟ ଓ ମାରାତ୍ମକ ଅସ୍ତ୍ର ଆଣେ । ପୁଲିସ୍ ଆଖିରେ ଧୂଳି ଦେବା ପାଇଁ ଛଦ୍ମବେଶ ଆବଶ୍ୟକ ହୁଏ ।

ଚେକର୍‌ଙ୍କୁ ହାର୍ଦ୍ଦିକ ସାଧୁବାଦ ଦେଇ ବିଦାୟ ନେଲି । ରାତି ବାରଟା, ବିଶ୍ରାମକକ୍ଷ ଖାଲି, ଯାତ୍ରୀଙ୍କ ଲାଗି ଉଦ୍ଦିଷ୍ଟ । ଭଡ଼ା ନେଇ କର୍ତ୍ତୀ ଆମକୁ ଦେବା କଥା, କିନ୍ତୁ ମନା କଲେ । କେତେକ ସହକର୍ମିଣୀ ଯୁବତୀ ସେ ସବୁ କକ୍ଷ ଦଖଲ କରି ବସିଛନ୍ତି । ନିରାଶ ହୋଇ ଫେରିଲି । ଲତା ଜିନିଷପତ୍ର ଜଗି ବସିଲା, ମୁଁ

ସ୍ପଦରଖଣ୍ଡି ପକାଇ, କୋର୍ଟଟି ମୁଣ୍ଡରେ ଦେଇ ଗଡ଼ପଡ଼ ହେଲି । ସାମ୍ନାରେ ବହୁଦୋକାନଟିଏ; ବନ୍ଦ ।

'ମାଛି, ଏତେ ରାତରେ ? ପୁଣି ଗଣଗଣିଆଟାଏ !' ସେ ଯେପରିକି କହିଲା—ଆମେ ସଦା ଜାଗ୍ରତ ପ୍ରହରୀ, ଆମର ଦିନରାତି କଣ ? ଆମେ ନ ଥିଲେ ଯାତ୍ରୀ ଶୋଇ ପଡ଼ନ୍ତେ, ଜାଣିଛ ?''

'ଅଶ୍ଳୀଳ ।'

'ଏ ଦିଲ୍ଲୀ—ପ୍ରାଚୀନ ହସ୍ତିନା ପୁରୀ ।' ଏଠି ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଆଉ କେତେ ମାନ୍ୟଗଣ୍ୟ । କେହି ଆମକୁ ଏମିତି ପଦେ କହି ନ ଥିଲେ, ବୁଝିଲ ? ତୁମେ କୋଉ ଶ୍ଳୀଳ ସ୍ଥାନରେ ଶୋଇଛ କି ? ହଉ, ଯେବେ ଆମକୁ ଶୋଧିଲ, ଫଳ ଭୋଗ—ସ୍ଥା କହି ମୋ ନାକ ଭିତରେ ପଶିଗଲା ।

ହିରକ୍ତରେ ସ୍ପପୁଡ଼ାଟାଏ ପକାଇଲି । ନିଜକୁ କାଟିଲି । ମାଛି ଲଛମନ୍ ଝୁ ।

ଏହା ପରେ ଆଖି ବୁଜିଲି । ନିଜର ଶତ୍ରୁ ମୁଁ, ବନ୍ଧୁ ଅମଣିଆଁଙ୍କୁ ମଣ କରିଛି, ଗର୍ବ କରେ । କିନ୍ତୁ ନିଜ ମନକୁ ପାରିନାହିଁ । କିଛି ଭାବିବି ନାହିଁ ଫଇଲ୍ଲ କଲେ କୋଉଠୁ କେତେ ଭାବନା, ଦୁର୍ଭାବନା ମୋତେ ଆକ୍ରାନ୍ତ, ଉତ୍ତପ୍ତ କରେ । ରାତି ଅନିଦ୍ରା ସଙ୍ଗେ ଯୋଡ଼ି ହୋଇ ଦୁଶ୍ଚିନ୍ତା ମୋତେ ଆହତ, ଉତ୍ପୀଡ଼ିତ କରେ ।

ଦେଖୁ ଦେଖୁ ରାସ୍ତା ଫିଟିଗଲା; ଯାତ୍ରୀ ପଥରେ ଆମେ ଶୋଇଛୁ ! କିଏ ଝୁଣ୍ଟିବ, ଚକଟି ପକେଇବ ! କଲିକଲିଆ ହୋଇ ଉଠିଲି ।

ନିହାତି ଭୁଭୁମୁଣ୍ଡା; ମୁହଁଟା ହେଲେ ସଫା କରେ । କିନ୍ତୁ ନୂଆ ଖୁର ସ୍ପକିଲି ନାହିଁ । କାହିଁକି ? ଦେଖିଲିବେଳକୁ ଦିଟା ବ୍ଲେଡ୍ ଏକାବେଳକେ ଲଗାଇ ଦେଇଛି ! ମୁହଁଟା ହାଉ ହାଉ ପୋଡ଼ୁଥାଏ, ଅନିଦ୍ରାରେ ଆଖି ବି ।

ଜିନିଷର ଅଧିକ ଓଜନ ଲାଗି ଏଣ୍ଡିଆନ୍ ଏୟାର୍ ଲାଇନ୍ସ୍‌କୁ ଦୁଇଶ ଟଙ୍କା ଦେବାକୁ ପଡ଼ିଲା ।

୫୦୧ ନମ୍ବର ଫୋକର୍ ପ୍ଲେନ୍ । ଦିଲ୍ଲୀରୁ କଲିକତା ଗୋଟାଏ ଘଣ୍ଟା ମିନିଟ୍‌ରେ ବାହାରିଲା, ପ୍ରାୟ ୩୦ ହଜାର ଫୁଟ୍ ଉପରକୁ ଉଠିଲା । ଏଇ ସବୁ ହିମାଦ୍ରିର ଶୃଙ୍ଗ—ମାଉଣ୍ଟ୍ ଏଭରେଷ୍ଟ, କାଞ୍ଚନଜଙ୍ଘା; ଘନ କୁହୁଡ଼ି ମଧ୍ୟରେ ଶୃଙ୍ଗାଗ୍ରର ଶ୍ୱେତଶ୍ରୀ ମାତ୍ର ଦିଶୁଥାଏ । ତାପରେ ପ୍ଲେନ୍ ଦକ୍ଷିଣ ମୋଡ଼ ନେଲା, ଦମ୍‌ଦମ୍‌ରେ ଓହ୍ଲାଇଲା ।

ମୋ ଜିନିଷପତ୍ର ସିଧା ପଠା ହୋଇଥିଲା ଦିଲ୍ଲୀରୁ ଭୁବନେଶ୍ୱର । ଜଣେ ଭୁକ୍ତଭୋଗୀ ଡରେଇ ଦେଲା—'ବେଳେ ବେଳେ କଲିକତା ଭୁବନେଶ୍ୱର ପ୍ଲେନ୍‌ରେ ନିତା ନ ହୋଇ କଲିକତାରେ ରହିଯାଏ । ବହୁ ଖୋଲ୍‌ତାଡ୍‌ ପରେ ଖବର ଯାଏ—କଲିକତା ଆସି ଜିନିଷପତ୍ର ନେଇଯାଅ ।' ଆଶ୍ଚର୍ଯ୍ୟ, ଏଡ଼େ ଦାୟିତ୍ୱହୀନ ! ଲୋକେ ନିଜର ଦାବୀ ପ୍ରତି ଯେତେ ସଚେତନ, କର୍ତ୍ତବ୍ୟ ପ୍ରତି ସେତେ ନିର୍ବିକାର । କହିଲେ କିଏ ଶୁଣୁଛି ? ଲେଖିଲେ କିଏ ଖାତିର କରୁଛି ? ଦୋଷୀ ଶାସ୍ତି ପାଉ-ନାହିଁ, କୋଉ ବାଟେ ହେଲେ ଖସି ଯାଉଚି । ତେଣୁ କର୍ତ୍ତବ୍ୟ ପ୍ରତି ଏ ଅବହେଳା । ବିଦେଶରେ ସେପରି ଶଙ୍କା ହେଉ ନ ଥିଲା । ଭାରତରେ କାହିଁକି ?

ମନରେ ଦୁଶ୍ଚିନ୍ତା—ସତେ ଯଦି ଜିନିଷ ରହିଯିବ ! କି ଅସୁବିଧା ! ପୁଣି କିଏ ଦୌଡ଼ିବ କଲିକତା ? ଯେତେ ଚେଷ୍ଟା କଲେ ବି ଆଉ କୌଣସି ଦୃଶ୍ୟ ପ୍ରତି ମନଯୋଗୀ ହୋଇ ପାରିଲି ନାହିଁ । ଲତା ବି ବସେଇ ଉଠେଇ ଦେଲା ନାହିଁ—ଯାଅ, ବୁଝ ।

ସମ୍ପୃକ୍ତ ଅଫିସର୍‌ଙ୍କୁ କୁହାବୋଲା କଲି । ତଥାପି ମନରେ ଅବିଶ୍ୱାସ—ଏ ଯୁଗରେ କୁହାବୋଲାରେ କିଛି ହୁଏ ? ମୁଖ୍ୟ କଥାର କିଛି ମୂଲ୍ୟ ଅଛି ?

ଟିକେଟ୍ ଚେକ୍ ହେଲା; ହ୍ୟାଣ୍ଡ୍‌ବ୍ୟାଗ୍ ତଲାସ୍ ହେଲା—କାଳେ ପିସ୍ତଲ୍ ଥିବ ! ପ୍ଲେନ୍ ହାଇଜାକ୍ ହୋଇଯିବ ! ଏ ଯମଦୂତଙ୍କ କବଳରୁ ହାଇଜାକର୍ କିପରି ଖସିଯାଏ ? ବୋଧେ ଏ ଡାଳେ ଡାଳେ ଗଲେ ସେ ପତ୍ରେ ପତ୍ରେ ଯାଉଥିବ ।

ପ୍ଲେନ୍‌ରେ ବସିଲା ପରେ ମନରେ ଟିକିଏ ଶାନ୍ତି ଆସିଲା—ସେଇ ଗଳ୍ପ-ପଢ଼ିଅଛି-ଗୋଟେ ଘଣ୍ଟାରେ ଚଢ଼ାରୁ ମହାନଦୀ-କାଠଯୋଡ଼ି-କୁଆଖାଇ—ଭୁବନେଶ୍ୱର, କିଛି ଅଘଟଣ ନ ଘଟିଲେ । ନା, କିଛି ଘଟିନାହିଁ, ଘଟିବ ନାହିଁ । କେଡ଼େ କେଡ଼େ ଆକାଶରେ ପହଁରି ଆସିଛୁ; ଏଇ ନିଜ ଆକାଶଟି ପହଁରି ପାରିବୁ ନାହିଁ ? ସାରୁ ଭିତରେ ମାରୁ ଅଛି ! କିଏ ଜାଣେ ?

ନାହିଁ ମ, ଏତେ ଶଙ୍କା କରିବାର ନୁହେ । ବ୍ୟୋମଯାତ୍ରା ଏବେ ଏକ ସାଧାରଣ ଯାତ୍ରା; ହଁ, ଆକ୍‌ସିଡେଣ୍ଟ୍ ହୁଏ; କେଉଁଠି ବା ନ ହୁଏ ? ଯାହା ଯୋଗ ଥିବ, ହେବ; ଭାବନା କାହିଁକି ? ମୃତ୍ୟୁ ଯୋଗ ଥିଲେ ଘରେ ଥାଇ ବି ହେବ, ବାଟରେ ଉନ୍ମତ୍ତ ଡ୍ରାଇଭର୍ କବଳରେ ପଡ଼ିଯିବ, ଘାଟରେ ସ୍ନାନ କରୁକରୁ ବୁଡ଼ି ମରିବ, ନିଜ ଲୁଗାରେ ଛନ୍ଦି ହୋଇ ପଡ଼ି ମରିବ ।

ଆମ ଶଙ୍କାକୁ ଫୁତ୍କାର୍‌ରେ ଉଡ଼ାଇ ଦେଇ ପ୍ଲେନ୍ ବଙ୍ଗୋପସାଗରରୁ ମହାନଦୀ ମୁହାଁଣ ବାଟେ କଟକ ଆକାଶ ଛୁଇଁଲା, ତାପରେ ଟିକିଏ ବଙ୍କେଇ ଭୁବନେଶ୍ୱର ପ୍ଲେନ୍ ଷ୍ଟେସନ୍‌ରେ ତଳକୁ ଖସି ଆସି ଚକ୍କର ଦେଲା—ଦିଶିଗଲା ଗଭୀର ଶ୍ୟାମଳ ପରିବେଶରେ ଖଣ୍ଡଗିରିର ଶ୍ୱେତ ସ୍ୱଚ୍ଛ ଜୈନ ମନ୍ଦିରଟି, ପ୍ରାଚୀନ-ତମ ରଙ୍ଗମଞ୍ଚ ଓ ଖାରବେଳ ଶିଳାଲେଖ, ଗୁମ୍ଫାମନ୍ଦିର ଓ କାରୁକାର୍ଯ୍ୟରେ ଅପୂର୍ବ ଉଦୟଗିରି ଓ ବିପରୀତ ଦିଗରେ ଲିଙ୍ଗରାଜ ମନ୍ଦିର ଓ ମଧ୍ୟ ଭାଗରେ ଆଧୁନିକ ସୌଧଭରା ନୂତନ ଭୁବନେଶ୍ୱର ।

ଉପର ବେଳା ତିନଟା; ନିଶୁଣୀରେ ତଳକୁ ଓହ୍ଲାଇଲା ବେଳେ ପ୍ରଥମେ ଆଖିରେ ପଡ଼ିଲା ମଝିଆଁ ପୁଅ ଟିକି, ତାପରେ ପ୍ରତିଭା ରାୟ, ଯେ କ୍ରମାଗତ ଭାବେ ମୋତିମାଳା ଲମ୍ବାଇ ଚାଲିଛନ୍ତି ଉତ୍କଳଭାରତୀଙ୍କ ଗଳାରେ, ଯେ ମଉସାମାଉସୀଙ୍କି ବସାଇଛନ୍ତି ଭକ୍ତିପୂତ ଆସନରେ, ଏହି ଶ୍ରଦ୍ଧାସ୍ପଦାକୁ ଦେଖିବା ମାତ୍ରେ ଆପେ ଆପେ ସ୍ନେହାଶିଷ ଢ଼ାଳି ହୋଇଯାଏ ।

ଭୁବନେଶ୍ୱରର ରଙ୍ଗାମାଟି ଛୁଇଁ ଛୁଇଁ ପ୍ରାଣଟା ଆନନ୍ଦରେ ଫୁଲିଗଲା ପରି ଲାଗିଲା । ବିଶ୍ୱପ୍ରକୃତିକୁ ଭଲ ପାଇଥିଲି, ଯେପରି ମର୍ତ୍ତ୍ୟର ମଣିଷ ଭଲପାଏ ସ୍ୱର୍ଗର ଉର୍ବଶୀକି । ଆଲିଙ୍ଗନ ଲାଗି ହାତ ବଢ଼ାଇଥିଲି, ହାତ ପାଇ ନ ଥିଲି । ସେ ବି ଆଗେଇ ଆସି ନ ଥିଲା ମୋ ଆଡ଼କୁ । ଲାଗୁଥିଲା ଏ ମୋର, ପୁଣି ମୋର ନୁହେଁ ।

ଭୁବନେଶ୍ୱରର ପ୍ରକୃତି କିନ୍ତୁ ଅତି ଆପଣାର ପରି ମୋତେ କୋଳକୁ ନେଲା—ସେଇ କୋଳରେ ମୁଁ ରୋମାଞ୍ଚକର ସ୍ପର୍ଶ ପାଇଲି ମହୋଦଧି ଆଉ ଚିଲିକାର, ମହେନ୍ଦ୍ର ଆଉ ମେଘାସନର, ଡୁଡୁମା ଆଉ ଖଣ୍ଡାଧାରର । ସେମିତି ନେଲା ମୋର ସ୍ନେହୋଚ୍ଛ୍ୱସିତ ଘର, ଯାହା ଘରଣୀ ପଶିବା ମାତ୍ରେ ପୂର୍ଣ୍ଣାଙ୍ଗଶ୍ରୀରେ ହସିଉଠିଲା । ମୋତେ ଆଦରି ନେଲା ମୋ ଟିକି ବଗିଚାର ବନ ରଙ୍ଗିଣି ଗଛଟି, ଯେ ବର୍ଷସାରା ଫୁଲଭରା, ହସ-ହସ-ମୁହଁ ଭଗବାନ୍‌ଙ୍କ ପରି ଦିଶେ, ଯେ ସଦା ସୃଷ୍ଟି-ଶୀଳ ରହିବା ଲାଗି ମୋତେ ପ୍ରେରଣା ଦିଏ, 'ଏ କିପରି ଏତେ ଫୁଟୁଚି', ପଚାରିଲେ – ମୁଁ କହେ – ନିତି ନିତି ମୋ କବିତା ଶୁଣି ସେ ଫୁଟେ, ଏତେ ସୁନ୍ଦର ଦିଶେ ।



# ମୋ ଜୀବନର ଗୋଟିଏ ଅଧ୍ୟାୟ

ପ୍ରଥମେ କୈଫିୟତ୍ ଦିଏଁ, କାହିଁକି ଏ ଅଧ୍ୟାୟଟି ଲେଖିବାକୁ କଲମ ଧାରୁଛି । ଲୋକେ ପଢ଼ନ୍ତି ମହାପୁରୁଷଙ୍କ ଜୀବନଚରିତ ; ସେଥିରେ ଶିକ୍ଷଣୀୟ ଉପାଦାନ ଥାଏ । ଜୀବନ ନିର୍ମାଣ ଲାଗି ପ୍ରେରଣା ମିଳେ ପ୍ରଚୁର, ମୋ ଜୀବନ ନାସ୍ତିବାଚକ । ଏଥିରେ ବିପୁଳ ଜୀବନ ଅନୁଭୂତିର ସ୍ପର୍ଶ ନାହିଁ । ରାଜନୀତିକର ଘଟଣା ବହୁଳତା ନାହିଁ । ସମାଜସେବାର ତତ୍ପରତା ବା ବୈଜ୍ଞାନିକର ପରୀକ୍ଷା-ନିରୀକ୍ଷା ନାହିଁ । ଜ୍ଞାନର ଗରିମା ନାହିଁ ବା ତ୍ୟାଗର ମହିମା ନାହିଁ । ତେଣୁ ଆତ୍ମ-ଚରିତ ନୁହେଁ, ଜୀବନସ୍ମୃତି ନୁହେଁ, ସଂଗ୍ରାମଜୀବନର ସାମାନ୍ୟ ସୂଚନା ମାତ୍ର ଦେଉଅଛି । ମୋ କବିତାର ମରମୀ ପାଠକଙ୍କ ଲାଗି ଏହା ଲୋଡ଼ା ।

ତୁଳସୀ ଦୁଇ ପତ୍ରରୁ ବାସେ, ଉଷାରୁ ଦିବସର ଇଙ୍ଗିତ ମିଳେ । ବାଲ୍ୟ-ଜୀବନରୁ ମୋ ଭବିଷ୍ୟତର କୌଣସି ସୂଚନା ମିଳି ନ ଥିଲା । ମୁଁ ଥିଲି ଗାଆଁର ବହୁ ପିଲାରେ ଜଣେ । ନ ଥିଲା ରୂପର ଚମକ, ନ ଥିଲା ଭେକର ଚାକଚକ୍ୟ, ନ ଥିଲା ବୁଦ୍ଧିର ପ୍ରଖରତା, ଯାହା ପିତାକୁ କରେ ଗର୍ବିତ, ଉଚ୍ଛୁଳାଏ ଜନନୀର ସ୍ନେହ । ନ ଥିଲି କ୍ରୀଡ଼ାପ୍ରିୟ, ଚପଳ କିଶୋର ଦଳର ନେତା । ନ ଥିଲା ତେମନ୍ତ ସାହସିକତା, ଯହିଁରେ ସେ ବଢ଼ିଲା ନଈରେ ପହଁରେ, ଧାପଦଣ୍ଡି ଚୂଳରୁ ପୋଖରୀ ଭିତରକୁ ଓଲଟା ଶୂନ୍ୟ ମାରେ, ତାଳ ଗଛର ଅଗ ଡାଳରେ ଚଢ଼ି କସ୍ୱାଁ ତୋଳେ, ବିଷ ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଏ ।

ସେ ଯୁଗର ସୁନ୍ଦର ଖେଳଣାଟିଏ କିଣିବା ଲାଗି ଘରେ ନ ଥିଲା ବିତ୍ତ; ଅଧିଲିକିଆ ବେଙ୍ଗ ବାଇଦ, ବରଡ଼ା ପତ୍ର ପେଙ୍କାଳି ଥିଲା ମୋର ବାଜା, କନାଢିଆର ଅଦିଆ ବୁଢ଼ା, କଣ୍ଢେଇ, ମାଟିଘୋଡ଼ା ଥିଲା ମୋର ଖେଳଣା ।

ବାସୁଙ୍ଗାରେ ଫୁଲ ଗୁନ୍ଥି ଜୋର ମୁକୁଟ, ଝୋଟରେ ଦାଢ଼ି, ନଡ଼ିଆ ଫୋପଡ଼ାରେ ଖଣ୍ଡା କରି, ମନେ ପଡ଼େ, କରୁଥିଲି ଯାତ ।

ମୁଁ ଥିଲି ପିତାଙ୍କର ଚତୁର୍ଥ ସନ୍ତାନ, ଉପରେ ଦୁଇଟି ଭଉଣୀ, ବଡ଼ ଭାଇ । ପିତାଙ୍କ ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରିବା ଲାଗି ମୋର କିଛି ଗୁଣ ନ ଥିଲା । ବରଂ ପ୍ରତିକୂଳ ଭାବ ପୋଷଣ କରିବାର ହେତୁ ଥିଲା । ମୁଁ ଥିଲି ଭାଇଭଉଣୀଙ୍କ ଭିତରେ ଅସୁନ୍ଦର, ଅପରିଚ୍ଛନ୍ନ । ଗୁରୁଣ୍ଡି ଗୁରୁଣ୍ଡି ଆଣ୍ଠୁରେ ବସିଥିଲା ବାଣ୍ଟି । ବୋଉର ଗେଲବସରିଆ ଭାଷାରେ ମୁଁ ଥିଲି 'ଧୂଳି ଧୂସରିଆ କଳା ହାଣ୍ଡି' । ଚେହେରାରେ ହୁଣ୍ଡା ହେଲେ ବି ପ୍ରକୃତିରେ ଥିଲି ଶାନ୍ତ ।

ସେ କାଳ ସ୍କୁଲ ଥିଲା ଜେଲ, ମାଷ୍ଟ୍ରଙ୍କ ହାତ ସୁଖକୁ ମୋ ପିଠି ଥିଲା ଚଉକସ୍ । ତେଣୁ କାରଣେ ଅକାରଣେ ପଡ଼ୁଥିଲା ତାଲ, ଫଳରେ ମୁଁ ହେଲି 'ଗୁହାଳୀ ଚୋର' । ମାଷ୍ଟ୍ରଙ୍କ କଟୁଆଳବାହିନୀ ବଡ଼ଚାଟଙ୍କ ସେନାପତିତ୍ୱରେ ମୋତେ ହାଣ୍ଡିଶାଳ କଣ, କୁମ୍ଭାର ଖାତ, କିଆବାଡ଼ ମୂଳ, ହିଡ଼ ମୁଣ୍ଡା ପ୍ରଭୃତି ସମ୍ଭବ ଅସମ୍ଭବ ସ୍ଥାନମାନଙ୍କରୁ ଗିରଫ କରି ଶୂନ୍ୟେ ଶୂନ୍ୟେ ଟେକି ମାଷ୍ଟ୍ରଙ୍କ ସାମ୍ନାରେ ଜମା ଦେଉଥିଲେ । ବେତ ବାଡ଼ି ମାଡ଼ରେ ପିଠି ବୋଇତି ଆଳୁ ପରି ଫୁଲି ଯାଉଥିଲା । କେବେ ବସୁଥିଲି 'ଚଉକି', କେବେ 'ମଠିଆ ଶିକୁଳି' ପଡ଼ୁଥିଲି, କେବେ ନାକ ବାଲ ଧରି ଏକ ଗୋଡ଼ିକିଆ ଛିଡ଼ା ହେଉଥିଲି । ହେଲେ ଦିନକର ମାଡ଼ ଭୁଲିବାର ନୁହେଁ । କିଶୋର କାଳପାହାରର ଛକ ଯୌବନର ମାଂସଳ ଦେହରେ ମିଳେଇ ଯାଇଥିବ । କିନ୍ତୁ ମନରେ ଅଜନ୍ତା ରକ୍ତ ନୋଳା ଶରୀରରେ ଶିହରଣ ଆଣୁଛି ।

ସେ ଦିନ ଗୁହାଳୀ ଚୋର ନୁହେଁ, ହୋଇଥିଲି ଅସଲ ଚୋର । କଇଞ୍ଚି କାକୁଡ଼ି ଖୋଜୁ ଖୋଜୁ ଗୋଟିଏ କଣ୍ଟିଆଳି ଆଖିରେ ପଡ଼ିଗଲା, ମାଷ୍ଟ୍ରଙ୍କର ତା' ଉପରେ ନଜର ଥିଲା ବୋଲି ଜାଣେ ନାହିଁ, ଖାଇ ଦେଲି । ସ୍କୁଲକୁ ଆସିଲା କ୍ଷଣି ମାଷ୍ଟ୍ରେ ପିଲଙ୍କୁ ନ ଖୋଜି ଖୋଜିଲେ ସେଇ କାକୁଡ଼ିଟିକୁ, ସାକ୍ଷୀପ୍ରମାଣ ଲୋଡ଼ା ହେଲା ନାହିଁ । ମୁଁ ସେଦିନ 'ଶୂନ୍' ହୋଇ ନିଜକୁ ସୌଭାଗ୍ୟବାନ୍ ମନେ କରିଥିଲି । ଭାଗ୍ୟଫଳ ମିଳିଗଲା, ହେଲା ଜମ୍ପିକ ମାଡ଼ । ମୁଁ ଅଚେତା ହୋଇ ପଡ଼ିଲି ।

କିଛି ଦିନ ପରେ ଏ ମାଷ୍ଟ୍ରଙ୍କର ଅଧଃପତନ ହେଲା । ସେ ଅଫିମ ଖାଉଥିଲେ, ଟଙ୍କା ନଅଣ୍ଟ ହେବାରୁ ଘରୁ ଚୋରି କଲେ, ବାପ ଆକଟ କଲାରୁ ତାଙ୍କୁ ମାଇଲେ । ସେ 'ବାବୁ'ଙ୍କ ଆଗରେ ନାଲିସ୍ କରିବାରୁ ମାଷ୍ଟ୍ରେ ବରଖାସ୍ତ ହେଲେ । କଲିକତା ଯାଇ ମୂଲକାମ କଲେ । ଶ୍ରମ ଅସହ୍ୟ ହେବାରୁ ରୁଗ୍ଣ ହୋଇ ମୃତ୍ୟୁମୁଖରେ ପଡ଼ିଲେ ।

ନୂଆ ମାଷ୍ଟ୍ରଙ୍କ ଅମଳରେ ମାଡ଼ ବୃଷ୍ଟିର ବେଗ ବୃଦ୍ଧି ପାଇଲା । ନୂଆ ନୂଆ ବେତ ବାଡ଼ି ତିଆରି ହୋଇ ଆସିଲା । ଏ ମାଷ୍ଟ୍ରଙ୍କ ମୁଷ୍ଟି ଶକ୍ତି, ଥରେ ରଗଡ଼ା

ଖାଇଲେ ମାସକେ କାନରୁ ଦରଜ ଗ୍ରୁଡ଼େ ନାହିଁ, ବଧାଟିଏ ଖାଇ କେହି ସଙ୍ଗେ ସଙ୍ଗେ କାନ୍ଦ ପାରେ ନାହିଁ । ଯେତେ ମାଡ଼ ସେତେ ପାଠ, ଏ ତତ୍ତ୍ୱରେ ବିଶ୍ୱାସୀ ଲୋକ ସେତେବେଳେ ଗ୍ରାମରେ କମ୍ ନ ଥିଲେ ।

ଏ ମାଷ୍ଟ୍ରଙ୍କର ଦିନକର ଚରିତ ମନେ ପଡ଼ୁଛି । ସେ ପଚାରିଥିଲେ—ମରୁଭୂମିରେ ଶୋଷ ହେଲେ କ'ଣ ପିଇବୁ ? ମୁଁ କହିଲି—ପାଣି କାହୁଁ ପାଇବି ଯେ ପିଇବି ? ମରିବି । 'ମରିବୁ' ? 'ମରିବୁ' ? କହି ମାଷ୍ଟ୍ରେ ଦୁଇଥର ବେତ ସିଁ ସିଁ କରିଦେଲେ । ଡରି ଡରି କହିଲି—ନା, ମରିବି ନାହିଁ, ମାଟି ଖୋଳି ପାଣି କାଢ଼ି ପିଇବି । ମାଷ୍ଟ୍ରଙ୍କ ଆଖି ଡୋଳାକୁ ରକ୍ତ ପିଚ୍କି ଉଠିଲା । ମାଡ଼ ବୃଷ୍ଟିର ତୀବ୍ର ଆଗ୍ରାସ ପାଇଁ ପୁଣି ଉତ୍ତର ଦେଲି—ଆଉ କ'ଣ କରିବି ? ମୁତି ପିଇବି । ପିଲାଏ ଖେଁକିନେ ହସି ଉଠିଲେ । ମାଷ୍ଟ୍ରେ ବି ଚଟକଣା ପକେଇ ଏମିତି ଏକ ଧକ୍କା ଦେଲେ ଯେ ମୁଁ କାନ୍ଥରେ ପିଟି ହୋଇଗଲି । ଥକ୍କା ହୋଇ ଉପରକୁ ଚାହିଁ କହିଲି—ହା ବିଧାତା ।

ଆଉ ଦିନକର କଥା, ସେତେବେଳକୁ ପଲ୍ଲୀକବି ନନ୍ଦକିଶୋର 'ବଡ଼ବାବୁ' । ତାଙ୍କ ନାମରେ ଆତଙ୍କ, ପ୍ରବଳପ୍ରତାପୀ ମାଷ୍ଟ୍ରେ ବି ଗୋଟାପଣେ ଥରୁଥାନ୍ତି । ଆମ ମଙ୍କା ପାତଳ । କାବାକାଠ ହୋଇ ଚାହିଁଥାଉ । ମୋତେ କବି ପଚାରିଲେ—ତୁ ଜାଡ଼ରେ କ'ଣ ? ମୋ ଓଠ ଥରିଲା, ଝାଳରେ ଓଦା ସୁଡ଼ୁବୁଡ଼ୁ ହୋଇ ଗଲି । ତଳକୁ ମୁହଁ ପୋତି ଛିଡ଼ା ହେଲି । ତାପରେ କବି ନିଜ ପ୍ରଶ୍ନର ଉତ୍ତର ଆଉ ଏକ ପ୍ରଶ୍ନରେ ଦେଲେ ; ତୁ କ'ଣ କଣ୍ଡରା ? ମୁଁ 'ହଁ' ଟାଏ ମାରିଦେଲି । ହାସ୍ୟରୋଳରେ ବାତାବରଣ ଟିକିଏ ଲଘୁ ହୋଇଗଲା ।

ଏହାପରେ ଏକ ସ୍କୁଲରେ ମୁଁ ଯେତେ ବର୍ଷ ପଢ଼ିବାର କଥା, ତା' ଠଉଁ ଢେର ବର୍ଷ ଘୁଷୁରିଲି । ଉପରକୁ ଉଠିବାର ଉଦ୍‌ବେଗ ନ ଥିଲା । ମୋ ପୋଥିରେ ଡୋରି ଦିଆଗଲା ।

ଆମ ଘରର ଆର୍ଥିକ ଅବସ୍ଥା ସେତେବେଳେ ଶୋଚନୀୟ । କରଜ ହେତୁ ସାର ଜମି ବନ୍ଧକି ହୋଇଯାଇଥାଏ । ସାତ ମାଣ ମାତ୍ର ଜମି; ନନା ଗାଆଁ ବାଳିକା ସ୍କୁଲର ଶିକ୍ଷକ, ବେତନ ଛ' ଟଙ୍କା ମାତ୍ର । ତା ଉପରେ ସ୍କୁଲ ବାବୁଙ୍କର ଆଖି; ନନା ବଡ଼ କଷ୍ଟରେ ଭାଇନାଙ୍କୁ ପଢ଼ଉଥାନ୍ତି । ମୋ ପଢ଼ିବା କଥା ଉଠୁ ନଥାଏ, ଅର୍ଥାଭାବ ହେତୁରୁ ନୁହେଁ, ବୁଦ୍ଧିର ପ୍ରଖରତା ନାହିଁ ବୋଲି ।

ମୁଁ ହେଲି ଚାଷୀ, ବୁଝିବସିଲେ ଗାଆଁ ଟୋକାଙ୍କ ଭିତରେ ଜଣେ ଭଲ ଚାଷୀ । ହଳ ବାହୁଲି, ତଳି ରୋଇଲି, କଢ଼ି କୋଡ଼ମାଟିଆ ଦେଇ ଶିଖିଲି । ଚାକର

ନ ଆସିଲା ଦିନ ଗାଈ ଚରେଇ ଗଲି । ନିମ୍ନ ମଧ୍ୟବିତ୍ତ ପରିବାରରେ ସାଆନ୍ତ ହୋଇ ବସିଲେ ତ ଚଳେ ନାହିଁ । ଲୋକଙ୍କ ସାଥିରେ ମିଶି ସବୁ କାମ କରିବାକୁ ହୁଏ ।

ଏଇ କାମରେ ହାଡ଼ ମୋର ଶକ୍ତ ହେଲା । ନନା 'ହଂସଦୂତ'ରୁ ଶ୍ଳୋକ ଶିଖେଇଲେ—'ଦୁକୂଲଂ ବିଭ୍ରାଣଂ ଦଳିତ ହରିତାଳଦ୍ୟୁତିହରଂ' । ଫୁଲସଜ୍ଜାରେ ବୋଲିବି. କେହି କହିବ ନାହିଁ—ଅମୁକ ଏଡ଼େ ପଣ୍ଡିତ, କବି, କବିରାଜ, ତାଙ୍କ ପୁଅଟା ନିପଟ ମୂର୍ଖ । ନନା ମତେ ଗୀତଖିଆ ଶିଖେଇଲେ, କୁଣିଆମଇଁଷି ଆସିଲେ ପରିହାସରେ ହେବାକୁ ପଡ଼ିବ ନାହିଁ ବୋଲି । ବୋଉ କନ୍ୟାପାଣି ଖୋଜେଇଲା, ବୋହୂ ହାତରନ୍ଧା ଚାଖିବ ବୋଲି ।

ଯାହାଦଲ ଦିନାକେତେ 'ଗୁରୁ' କରି ନେଲେ, ଭଲ ଢୋଲକ ବଜେଇ ଆସୁଥିଲି ବେଳି । ରଜଘରେ ବିଦ୍ୟା, ନ ପଢ଼ିଲେ ସବୁ ଉଡ଼ିଯାଏ, ଗଲା । ନନା ନିଶ୍ଚିନ୍ତ ହେଲେ, ତାଙ୍କ ଗୃହକାମ ମୁଁ ସମ୍ଭାଳିଲି ବୋଲି ।

ଏମିତି ବନ୍ଧୁ ଜୀବନ ଗଢ଼ିଯାଏ, ମୋ ପକ୍ଷରେ ତାର ବ୍ୟତିକ୍ରମ ହୋଇ ନ ଥାନ୍ତା । କିନ୍ତୁ ବିଧାତାର ଇଚ୍ଛା ଅନ୍ୟରୂପ । ସେ ହସ୍ତକ୍ଷେପ କଲା । ମୋ ଗଡ଼୍ଡ଼ାଳିକା ଜୀବନର ଅବସାନ ହେଲା । ନନା ଦିନେ ମହାଦେବଙ୍କୁ ସ୍ୱପ୍ନ ଦେଖିଲେ —ପୁଅକୁ ଘରେ ବସେଇଛୁ କାହିଁକି ? ପଢ଼ା, ଭଲ ହେବ । ଭାଗ୍ୟକୁ ନନା ସେ ସ୍ୱପ୍ନରେ ବିଶ୍ୱାସ କଲେ, ମୋ ହାତରୁ ଖଡ଼ୁ, ଅନନ୍ତ-ବ୍ରତ, କାନରୁ ନୋଳି କଢ଼ା ହେଲା, ବେକରୁ କଣ୍ଠି କଟାଗଲା । ମହାଦେବଙ୍କ ପାଖେ ଚାରେଟି ପଇସାର ଗଞ୍ଜେଇ ଭୋଗ ହେଲା । ନନା ମୋତେ ଘେନି ଭୁବନେଶ୍ୱର ଯାତ୍ରା କଲେ । ସେଠା ମାଇନର ସ୍କୁଲର ହେଡ଼୍‌ମାଷ୍ଟ୍ରଙ୍କ ନାମ ଦୀନାଥବନ୍ଧୁ ମହାନ୍ତି, ନିଜେ ଦୁଃଖୀ, ଦୁଃଖୀର ଦୁଃଖ ବୁଝନ୍ତି । ସେ ସ୍ୱପ୍ନ କାହାଣୀ ଶୁଣିଲେ, ପଥରେ ମୂକ ଚାହିଁ ଏକ ଆଖିରେ ମୋତେ ଅନେଇଲେ, ଚକ୍ଷୁ ବା ମୁଖରେ କ'ଣ ଦେଖିଲେ କେଜାଣି, କହିଲେ—ସେ ଏଠି ପଢୁ, ଟଙ୍କା କଥା ମୁଁ ବୁଝିବି । ନନା ଘରକୁ ଫେରିଯାଇ ମାସକୁ ଚାଉଳ ପନ୍ଦରସେର ପଠାଇଲେ, ଅଭାବରୁ ସେତକ ମଧ୍ୟ ଠିକ୍ ମତେ ଆସି ପାରିଲା ନାହିଁ ।

ସ୍କୁଲରେ ନାମ ଲେଖା ହେଲା । ମୋତେ କିଛି ପାଠ ଆସିଲା ନାହିଁ । ପ୍ରଥମ ପରୀକ୍ଷାରେ ଅଙ୍କରେ ରହିଲା ଶୂନ୍, ସେଇ ଅନୁକ୍ରମରେ ଅନ୍ୟାନ୍ୟ ବିଷୟରେ । କେତେକ ଶିକ୍ଷକ ଭାବି ନେଲେ—ଏଇଟା ହାତରେ କିଛି ହେବନାହିଁ, ସାଥୀ ପିଲାଏ ଅବଜ୍ଞା କଲେ । ପେଡ଼ିପୋଟଳି ବାନ୍ଧି ଘରକୁ ଯିବା କଥା । କିନ୍ତୁ ହେଡ଼୍‌ମାଷ୍ଟ୍ରେ ଭଗବତ୍ ବିଶ୍ୱାସୀ, ମୋ ପ୍ରତି ଚିର ସହାନୁଭୂତିଶୀଳ । ମୋ ବିଫ-

ଲତାରେ ତାଙ୍କ ବିଶ୍ୱାସ ଟଳିଲା ନାହିଁ । ସେ ମୋ ପଢ଼ାର ଉତ୍ତମ ବ୍ୟବସ୍ଥା କରିଦେଲେ; ଉପର ଶ୍ରେଣୀର ପିଲାମାନେ ମୋତେ ସ୍ୱତମତେ ପଢ଼ାଇଲେ । ବାର୍ଷିକ ପରୀକ୍ଷାର ଫଳ ଭଲ ହେଲା, କ୍ରମେ ଶିକ୍ଷକ ଓ ସହପାଠୀଙ୍କର ଶ୍ରଦ୍ଧା ଆକର୍ଷଣ କରିବାକୁ ମୁଁ ସମର୍ଥ ହେଲି ।

ମାଇନର ପାସ୍ ପରେ ପଢ଼ିବାକୁ ଭାବିବା ମୋ ପକ୍ଷରେ ଅନ୍ୟାୟ । ଉଚ୍ଚାକାଂକ୍ଷା ପୋଷଣ ଲାଗି ସାହସ ମୋର ନ ଥିଲା । ପରିସ୍ଥିତି ସମ୍ପୂର୍ଣ୍ଣ ପ୍ରତିକୂଳ । ବନ୍ଧୁ ବାନ୍ଧବ କି ହିତାକାଂକ୍ଷୀ ଜନ କାହାଠାରୁ କୌଣସି ଉତ୍ସାହ ମିଳିଲା ନାହିଁ । ସ୍ଥିର କଲି—ଚାକିରି କରିବି; ନୂଆ ହୋଇ ଖଇନା ନିମ୍ନ ପ୍ରାଥମିକ ଶିକ୍ଷକ ହୋଇଥାନ୍ତି, ଦରମା ସାତ ଟଙ୍କା । ବର୍ଷେ ଶିକ୍ଷକତା କଲାପରେ ସେ ଟ୍ରେନିଂକୁ ଯାଉଥାନ୍ତି । ତାଙ୍କ ଜାଗାଟି ମିଳିଯିବ ବୋଲି ବଡ଼ ଆଶା କରି ଧାଇଁ ଯାଇଥିଲି । ଭାଗ୍ୟର ଚକ୍ରାନ୍ତରେ ସେ ହେଲାନାହିଁ । କମାପଡ଼ା ନିକଟବର୍ତ୍ତୀ ପାଟପୁର ଗ୍ରାମରେ ଟିଉସନ୍ ମାଷ୍ଟର ହୋଇ ରହିଲି, ବେତନ କେବଳ ଭୋଜନ । ସେ ଗ୍ରାମରେ ନିମ୍ନ ପ୍ରାଥମିକ ଦ୍ୱିତୀୟ ଶିକ୍ଷକ ପଦଟି ଖାଲି ପଡ଼ିଥାଏ । ଏଥିଲାଗି ଦୁଇଜଣ ପ୍ରତି-ଯୋଗୀ । ଗ୍ରାମର ଦଳେ ମୋତେ, ଆଉ ଦଳେ ଅନ୍ୟ ଜଣକୁ ସମର୍ଥନ କରିଥାନ୍ତି । ମୋ ପ୍ରତିଯୋଗୀ ସ୍ଥାନୀୟ, ପ୍ରଭାବଶାଳୀ ବ୍ୟକ୍ତିଙ୍କ ସାହାଯ୍ୟରେ ସେ ବିଜୟୀ ହେଲେ । ପରାଜୟ ହିଁ ମୋ ଜୀବନର ମଙ୍ଗ ବୁଲାଇ ଦେଲା ।

ଯାହାଙ୍କ ଘରେ ଟିଉସନ୍ କରୁଥିଲି ତାଙ୍କ ନାମ ଜଗନ୍ନାଥ ରଥ । କମା-ପଡ଼ା ମାଇନର ସ୍କୁଲର ପ୍ରଧାନ ଶିକ୍ଷକ । ସେ ବର୍ଷ ଅଷ୍ଟମ ନବମ ଶ୍ରେଣୀ ଖୋଲି ହୋଇଥାଏ । ନୂଆ ହାଇସ୍କୁଲକୁ ଛାତ୍ର ମିଳୁ ନ ଥାନ୍ତି । ଶ୍ରୀ ରଥ ମୋ ନାମଟି ଲେଖାଇ ଦେଲେ । ମୋ ଆନନ୍ଦ କହିଲେ ନ ସରେ । ବେଶୀ ଆନନ୍ଦିତ ହେଲି-ଯେତେବେଳେ ଦେଖିଲି—ମୋ ସମାସ୍କନ୍ଧ ଛାତ୍ର ଜଣେ ହେଲେ ଶ୍ରେଣୀରେ ନାହିଁ, ସବୁ ଗୋଟାଗୋଟି, ଗୋଦାମରଦ୍ଦି । ପ୍ରଶ୍ନଟି ବୁଲି ବୁଲି ସବା ଶେଷରେ ମୋ ଉପରେ ପଡ଼େ, ମୁଁ ଯଥାର୍ଥ ଉତ୍ତର ଦେଇ ଶିକ୍ଷକଙ୍କ ସନ୍ତୋଷ ବିଧାନ କରେ । ଏହିପରି ସ୍କୁଲରେ ମୋ ଆସନ ଦୃଢ଼ ହେଲା । ସେହି ବର୍ଷ ନୂଆ ହୋଇ କବିତା ଲେଖା ଆରମ୍ଭ କଲି—ପ୍ରଥମ କବିତା ଭକ୍ତକବି ମଧୁସୂଦନଙ୍କ 'ଆସଇ ବସନ୍ତ ଶିଶିର ଅନ୍ତେ' ଛନ୍ଦରେ । ସେ ୧୯୩୧ ମସିହା କଥା ।

କୋଉଠୁଁ କେଜାଣି 'ରାଧାନାଥ ଗ୍ରନ୍ଥାବଳୀ' ଖଣ୍ଡିଏ ମୋ ହାତରେ ପଡ଼ି-ଥାଏ, ବିନା ଗୁରୁରେ ଏହି ଗ୍ରନ୍ଥ ବାରମ୍ବାର ପଢ଼ୁଥାଏ । ଏହା ହିଁ ମୋ ଅନ୍ତରରେ ଖେଳାଇଲା ପ୍ରଥମ ଭାବର ଜୁଆର, ଶିଖାଇଲା ପ୍ରକୃତିପ୍ରେମ । ଗୁରୁଗମ୍ଭୀର ହୋଇ ବୁଲୁଥିଲି କୁଶଭଦ୍ରା ନଦୀ ତଟରେ, ବସୁଥିଲି ମନ୍ଦିର ଦେହଳୀରେ, ଶ୍ମଶାନରେ ବା

ନିର୍ଜନ କୋଠାମାନଙ୍କରେ । ନାନା ଦୁଃଖ ଭିତରେ କବିତା ଲେଖା ହିଁ ବଡ଼ ଉପ-ଭୋଗ ଥିଲା—ଏବେ ଦିନେ ଘରେ ପୁରୁଣା ପେଡ଼ି ପେଟରା ଅଣ୍ଡାଳୁ ଅଣ୍ଡାଳୁ ନବମ ଶ୍ରେଣୀରେ ଲିଖିତ ଖଣ୍ଡିଏ କାବ୍ୟ ପାଇଲି । ଅପୂର୍ଣ୍ଣ । ନାମ 'ଲାବଣ୍ୟ କୁସୁମ' । ପ୍ରଥମରୁ ଖଣ୍ଡ କବିତା ପରିବର୍ତ୍ତେ କାବ୍ୟ ଲେଖୁଥିଲି, ଏହା ହିଁ ତାର ପ୍ରମାଣ । ସେ କାଳର ପଦ୍ୟ ଓ ଗଦ୍ୟଶୈଳୀର ନମୁନା ପାଠକମାନଙ୍କୁ ଦେବାପାଇଁ ମୋତେ ସୁବର୍ଣ୍ଣ ସୁଯୋଗ ମିଳିଗଲା । କାବ୍ୟଖଣ୍ଡି ଆମ ସ୍କୁଲର ସଂସ୍କୃତ ପଣ୍ଡିତ ହରିହର ମିଶ୍ରଙ୍କୁ ସଂଶୋଧନ ଲାଗି ଅର୍ପିତ ହୋଇଅଛି—'ଆଜି ମୋର ଗୋଟିଏ ଆନନ୍ଦର ଦିବସ । ଆଜି ମୋର ହୃଦୟରେ ଗୋଟିଏ ଆନନ୍ଦସାଗର ନିର୍ମିତ । କାରଣ ମୁଁ କପୋଳକଳ୍ପିତ, ସୁନୀଳ ନିର୍ମଳ ଗଗନରେ ଅର୍ଦ୍ଧନିମୀଳିତ ତାରକା ସଦୃଶ, ସାହିତ୍ୟ ସୁଗନ୍ଧ ବୃକ୍ଷବିଶିଷ୍ଟ ବିପିନରେ କ୍ଷୁଦ୍ର, ଅସୁବାସିତ ସୁମନ ସଦୃଶ, ସିକତାମୟ, ପ୍ରକାଣ୍ଡ ସାହିତ୍ୟ ମରୁସ୍ଥଳୀରେ ଅଦୃଷ୍ଟ ରେଣୁ ସଦୃଶ, ପ୍ରକାଣ୍ଡ ଓ ଅନନ୍ତ ସାହିତ୍ୟ ନୀରନିଧିରେ କ୍ଷୁଦ୍ର ମୀନ ସଦୃଶ ଏହି 'ଲାବଣ୍ୟ କୁସୁମ' କାବ୍ୟ ଖଣ୍ଡିକ ସାହିତ୍ୟ ଅନୁରାଗୀ, ବିଦ୍ୟୋତ୍ସାହୀ ଶ୍ରୀ ହରିହର ମିଶ୍ରଙ୍କ ଚରଣ କମଳରେ ସଂଶୋଧନ ନିମିତ୍ତ ଅର୍ପଣ କରୁଅଛି ।' ତା ୧୦-୧୦-୧୯୩୨

ମୋର ପାଠକ ଓ ସହପାଠୀମାନଙ୍କ ଲାଗି ଖଣ୍ଡିଏ ଆବେଦନ ପତ୍ର ମଧ୍ୟ ଏଥିରେ ସନ୍ନିବିଷ୍ଟ ହୋଇଅଛି—"ପ୍ରାବୃଟ କାଳରେ ଅମାଅନ୍ଧକାରିତ ବିଭା-ବରୀରେ ସସାଗରା ଧରାରେ ଜ୍ୟୋତିରିଙ୍ଗଣ ସଦୃଶ ଏହି କପୋଳକଳ୍ପିତ, ଚିର ଆଶାପୋଷିତ, ଏହି 'ଲାବଣ୍ୟକୁସୁମ' କାବ୍ୟଖଣ୍ଡିକ ସମାପ୍ତ କରିଥିବାରୁ ଆଜି ମୋ ହୃଦୟରେ ଆନନ୍ଦ କଲ୍ଲୋଳ ଖେଳି ଉଠୁଛି । ମାତ୍ର ସମସ୍ତ ହୃଦୟରେ ଖେଳିବ ନାହିଁ । ସୁଲଳିତ ଲେଖା ପାଠ କଲେ ସାଧାରଣତଃ ବାଳକମାନେ ବିଷ୍ଣୁପଦରେ ଉପବିଷ୍ଟ ହୋଇ ସ୍ୱର୍ଗସୁଧା ପାନ କଲା ପରି ବୋଧ କରନ୍ତି । ମାତ୍ର ଏହା ତାର ବିପରୀତ । ଏହା ମୋର ପ୍ରଥମ କାବ୍ୟ ହୋଇଥିବାରୁ, ଲେଖାରେ ବିଶେଷ ଅଧ୍ୟବ-ସାୟିତ ନ ହୋଇଥିବାରୁ ସୁଶ୍ରାବ୍ୟ ହେଲା ପରି ବୋଧ ହେଉନାହିଁ । ମୁଁ ସାହିତ୍ୟ-ନୀରନିଧିରେ ପ୍ରବେଶ କରିନାହିଁ । ସାହିତ୍ୟାର୍ଣ୍ଣବ ପୁଳିନସ୍ଥ ରଜ ମୁକ୍ତା ସଂଗ୍ରହ କରିବାକୁ ସମର୍ଥ ହୋଇନାହିଁ । ମୁଁ ଏହା ଲେଖିବା ସମୟରେ କୌଣସି ନିର୍ଜନ ସ୍ଥାନରେ ବସି ଲେଖି ନାହିଁ । ତେଣୁ ଭାବନାସ୍ରୋତରେ ଅନେକ ବାଧା ନିକ୍ଷିପ୍ତ । ମୁଁ ଅଳ୍ପ ପୁସ୍ତକ ପାଠ କରିଥିବାରୁ ବହୁତ ଭାବ ସଂଗ୍ରହ କରି ପାରିନାହିଁ । ତେଣୁ ଏହା ଭାବାଳଙ୍କାରରେ ଅଳଙ୍କୃତ ହୋଇ ନାହିଁ । ଏହି କବିତାରେ କିଛି ବିଶେଷତ୍ୱ ନ ଥିବାରୁ କବିତାର କର୍ତ୍ତା କିଏ କେହି ଭାବିବ ନାହିଁ । ଏଣୁ ପାଠକମାନଙ୍କୁ ଅନୁରୋଧ କରେ, ସେମାନେ ଏହା ପାଠକରି ଉପହାସ କରିବେ ନାହିଁ ।"

ପ୍ରାପ୍ତ ଖାତା ଖଣ୍ଡିକରେ ଦୁଇଟି ମାତ୍ର ସର୍ଗ ଲିଖିତ ହୋଇଅଛି, 'ବଙ୍ଗଳାଶ୍ରୀ' ରାଗରେ ରଚିତ । ପ୍ରସଙ୍ଗ ରାଜା ବୀରସେନଙ୍କ କନ୍ୟା ସହିତ ରାଜା ସୁଦର୍ଶନଙ୍କ ପୁତ୍ର ବିଦ୍ୟାଧରର ବିବାହ । ବିଦ୍ୟାଧର ଅଲ୍ପାୟୁ; ତାର ବିପ୍ଳ ଘାଟି ଅଛି । ଅମଙ୍ଗଳମାନଙ୍କର ଫଳାଫଳରୁ ଶୁଣି କନ୍ୟାମଣି ସ୍ୱାମୀଙ୍କୁ ସମସ୍ତ ସଙ୍କଟରୁ ଉଦ୍ଧାର କରିଅଛି । ସେ ଦଂଶନ କରିବାକୁ ଆସୁଥିବା ସର୍ପକୁ ବିନାଶ କରିଅଛି, ପିତାଙ୍କୁ କହି ମେଘନାଦ ପାଚେରୀ ଭଙ୍ଗାଇଛି । ଦୈବଶକ୍ତି ଏଥିରେ ତାର ସହାୟକ ହୋଇଅଛି ।

ଏକ ଦିଗରେ ରାଧାନାଥଙ୍କ କାବ୍ୟ, ଅନ୍ୟ ଦିଗରେ ଲୋକକାହାଣୀର ପ୍ରଭାବ ଏହି କାବ୍ୟ ଉପରେ ପଡ଼ିଅଛି । ପ୍ରକୃତି ବର୍ଣ୍ଣନାରେ ନିଜତ୍ୱ ଫୁଟିଛି, ନିମ୍ନରେ କେତୋଟି ଉଦ୍ଧୃତି ଦିଆଗଲା, କାବ୍ୟର ବିକାଶଧାରା ଦେଖିବାରେ ଏହା ଆଲୋକପାତ କରିବ ।

ଉଷା—

ଦିନମଣି ସ୍ୱର୍ଣ୍ଣ ଆଉଜି ମରୀଚ ପଡ଼ୁଣ ଥିଲି ନଗରେ ।
ଚୁମ୍ବନ ଛଳରେ କହି ଦେଇଗଲେ କାଲି ଆସିବେ ସେଠାରେ ।
ମୃଦୁମନ୍ଦ ବହେ ଦକ୍ଷିଣା ପବନ ପଡ଼େ ବାଳାରୁଣ କର
ବଡ଼ ବୃକ୍ଷ ଦେଖି କନକ ଗୁଆଣି କରୁଛି ସେ ଦିବାକର ।
'ଉଠଲେ' 'ଉଠଲେ' ବୋଲି ଏକ ପକ୍ଷୀ ଡାକିଲା ସବୁ ଦୁଆରେ
ମଧୁପର ସ୍ତ୍ରୋତ ଭାସିଗଲେ ଏକ ଶଙ୍ଖ ବଜାଇ ସୁସ୍ୱରେ ।
ଏହି ଶଙ୍ଖ ଶୁଣି ମନ ଯ୍ୱା ପାଞ୍ଚିଲା ସତେ କି ଭ୍ରମରଗଣ
ବାଦ୍ୟ ଶବଦେ କମ୍ପାଇ ମେଦିନୀ ବାହାରିଲେ କରି ରଣ ।
ସେ ପୁଷ୍ପ ଲମ୍ପଟ ଏହିକ୍ଷଣି ଯାଇ ଆରମ୍ଭି ଘୋର ସମର
ମଧୁ ଧନ ଯେତେ ଆଣିବେ ବୁହାଇ ଖାଲି କରିଣ ଅମାର ।
ପ୍ରଭାତୁ ଉଠିଣ ଡ଼ାକୁଚି କୁକ୍‌କୁଟ 'ରଖ, ରଖ ନାରାୟଣ'
କୁମ୍ଭାଟୁଆ ଭଟ ଗମ୍ଭୀର ସ୍ୱରରେ କରଇ ସ୍ତବ ପଠନ ।
ବନସ୍ପତି ଡାଳେ ରାବେ କଳକଣ୍ଠ କୁହୁ କୁହୁ କୁହୁ କୁହୁ
ମୋ ଗୀତ ଶୁଣୁନା, ମୋ ଗୀତ ଶୁଣୁନା ଉଁ ଉଁ ଉଁ ଉଁ ଉଁ ଉଁ ।

ସନ୍ଧ୍ୟା—

ସେ କାଳେ ବାରୁଣୀ କାନ୍ତ ଦିନମଣି କୋଳ କରି ନେଉଥିଲେ
କଳା ବାରିବାହେ ଦିଗବଳୟରୁ ବସ୍ତୁପୋତ ଗୁଡ଼ୁଥିଲେ ।

ପ୍ରଭାତୀ ସାମ୍ରାଜ୍ଞୀ ସୃଷ୍ଟି ଘନ ଧନ ପାଇ ଭାବେ ଏହା ମନ୍ଦ
'ଉଦ୍ଧାଇ ଉଦ୍ଧାଇ ପୃଷ୍ଠ ଦେଉଥିଲେ ଲୁହା କି ହୋଇବ ସୁନା' ?
ପ୍ରଦୋଷେ ଅରୁଣ କିରଣସମୂହ ପଡ଼ୁଥିଲା ମହୀରୁହେ
ଗୁରୁ ଚନ୍ଦ୍ରାତପ ଟାଣିଥିଲା କିବା ଶାଖୀ ଶ୍ୟାମଳିତ ଦେହେ !
ବୃକ୍ଷ ଭେଦ କରି ଆଦିତ୍ୟ କିରଣ ପଡ଼ୁଥିଲା ଭୂମି ପରେ
ତରଳିତ ହେମ ତାଙ୍କୁ ଖାଲୁ କିବା ଗଳି ପଡ଼ୁଛି ମଝାରେ !
ସନ୍ଧ୍ୟାବଧୂଙ୍କର ଆଗମନ ବାର୍ତ୍ତା ଘରେ ଘରେ ଦେବା ପାଇଁ
କାକଳି ନାଗରୀ ବଜାଇ ବିହଗେ ମେଦିନୀ ଦେଲେ କମ୍ପାଇ ।

ପୁଷ୍ପ ବିଦାୟ—

ନେଉଛନ୍ତି ଶେଷ ବିଦାୟ ପାଦପୁଁ, ନିଅନ୍ତି ଯଥା ଦୁଃଖିତେ
କିରାଳ ପାଶରେ ପାଇବାକୁ ଫାଶି ପିତାମାତାଠାରୁ ପୁତ୍ରେ ।

ବୃକ୍ଷର ପୁଷ୍ପକ୍ଷେପ—

ପୁରୁଣା ମଳିନ ସୁଗନ୍ଧବିହୀନ ପ୍ରସୂନାଲଙ୍କାରମାନ ।
କାଢ଼ି ଫିଙ୍ଗି ଦେଲା, ଫିଙ୍ଗିଦ୍ୟନ୍ତି ଯଥା ନିର୍ଦ୍ଧନ ପାଇଲେ ଧନ ।

ପୁଷ୍ପ ସହିତ ପବନର ସ୍ୱାର୍ଥ ବନ୍ଧନମସ୍ତ—

ସମୀରକୁ କାଲି ଦେବ ବୋଲି କହେ ସୁମନ ଗନ୍ଧ ବିଭବ
ସେ ପ୍ରକୃତିରାଣୀ, ଗନ୍ଧବହ ଯଦି କଲ୍ଲୋଳରେ ଦୋଳାଇବ ।

ଚନ୍ଦ୍ରଙ୍କ ଗର୍ବର ଖର୍ବତା—

ଶର୍ବରୀର ଅବ୍ଧି ମୁକୁରରେ ନିଜ ପ୍ରତିବିମ୍ବ ଦେଖୁଛନ୍ତି
ତାଙ୍କ ପଟାନ୍ତର କିଏ ଅଛି ବୋଲି ଚତୁର୍ଦ୍ଦିଗକୁ ଚାହାନ୍ତି ।
ନିଜ ସୌମ୍ୟ ପ୍ରତିବିମ୍ବ ଦେଖି ଶଶୀ ଗର୍ବ ମଦମତ୍ତ ହେଲେ
ଗରବ ଗଞ୍ଜନ ଜଳଦ ଖଣ୍ଡିଏ ଆସି ଚନ୍ଦ୍ରେ ଆଚ୍ଛାଦିଲେ ।

ବିବାହ ଶୋଭାରେ ଭ୍ରମରର ଭ୍ରମ ଓ ନୈରାଶ୍ୟ—

ଆଲୋକର ମାଳା ଦେଖିଣ ମଧୁପେ ଭାବନ୍ତି ରବି ଉଦିଲେ
ପ୍ରଭାତ କୁସୁମ ମଧୁପାନ ଆଶେ କିମ୍ପା ସେମାନେ ନ ଗଲେ ।
ଏତେ ଭାବି ଅଳିକୁଳନ୍ତି ପଡ଼ନ୍ତି କାଗଜ ରଚିତ ପୁଷ୍ପେ
ଏ ପୁଷ୍ପୁଁ ସେ ପୁଷ୍ପେ ଉଡ଼ିଯାନ୍ତି ମଧୁ ନ ପାଇ କାହିଁ ମଧୁପେ ।
ଜୀବନର ସୁଖ ଦୁଃଖର ଚିତ୍ର ମଧ୍ୟ ଅରୁଚିକର ହୋଇନାହିଁ ।

କନ୍ୟାର ଭାବୀ ବିପଦ ଦେଖି ରାଜ ପିତାଙ୍କ ଦୁଃଖ—

ଜାଣୁ ଜାଣୁ ତୋତେ ସରିତର ସ୍ରୋତେ ଦେବି ମୁଁ କେମନ୍ତେ ଭସାଇ ?
ଜାଣୁ ଜାଣୁ ତୋତେ ମୃତ୍ୟୁ ବୈଶ୍ୱାନରେ ଦେବି ଅବା କେମନ୍ତେ ଫେଇ ?
କୋମଳ ବଲ୍ଲରୀ ଉତ୍ପାଟନ କରି କେମନ୍ତେ ରଖେ ସୌର କରେ ?
ଜାଣୁ ଜାଣୁ କେମନ୍ତେ ଝଡ଼ ଦରିଆରେ ନାବ ମୁଁ ମେଲିବି କରେ ?
ଜାଣୁ ଜାଣୁ ତୋତେ ରକ୍ତାକ୍ତ କେଶରୀ ମୁଖେ ଦେବି କେମନ୍ତେ ପେଲି ?
ବୋଲିବେଟି ପ୍ରଜା ଏ ଅଧମ ରାଜା ଜାଣୁଁ କିସ ବିଏ କରି ।

ନାୟିକାର ଦର୍ଶନ ପୂର୍ବରୁ ନାୟକ ମନରେ ଅକଳ୍ପନୀୟ ଆନନ୍ଦ—

ଆଜି କିମ୍ପା ମୋତେ ପ୍ରାକୃତିକ ଦୃଶ୍ୟ ଦିଶୁଛି ଏତେ ଲାବଣ୍ୟ ?
ପୁଷ୍ପମାନେ ସର୍ବେ ବିକଶିତ ହୋଇ ହସନ୍ତି ଗନ୍ଧି ଆନନ ।
ଲାବଣ୍ୟଲହରୀ ଖେଳୁଅଛି କିମ୍ପା ଆଜି ସର୍ବ ଉପବନେ ?
କୁରଙ୍ଗସମୂହ କନକ ସଦୃଶ ଦିଶେ କିମ୍ପା ମୋ ନୟନେ ?
ଆଜି କିମ୍ପା ମୋର ହୃଦୟସାଗରେ ଖେଳେ ଅପୂର୍ବ ଲହରୀ ?
ଆଜି କିମ୍ପା ମୋର ହୃଦୟ ଗଗନେ ହିମାଂଶୁ ଖେଳେ ଭଉଁରୀ ?

ଏମିତି କାବ୍ୟ ପରେ କାବ୍ୟ ଲେଖି ଯାଉଥିଲି । ଦିନେ ହଠାତ୍ ମୋ ସ୍ୱପ୍ନ ଭାଙ୍ଗିଲା । ମୋ ପିତୃ ବିୟୋଗ ହେଲା, ମାତ୍ର ୫୬ ବର୍ଷ ବୟସରେ । ବଡ଼ ନିରାଶ୍ରୟ ଅନୁଭବ କଲି, ମନରେ ଘୋର ବୈରାଗ୍ୟ ଆସିଲା । 'ମହାଯାତ୍ରା' ଓ 'ଦରବାର' ପାଠ ଏହି ବୈରାଗ୍ୟକୁ ଇନ୍ଧନ ଯୋଗାଇଥିଲା । କିଛିଦିନ ସନ୍ନ୍ୟାସୀ ହୋଇ ଯାଇ-ଥିଲି । ନିଗମାନନ୍ଦ ପରମହଂସଙ୍କ ଶିଷ୍ୟ ହୋଇ ଗ୍ରୀଷ୍ମଛୁଟିଟି କଟାଇଥିଲି । ପଢ଼ାପଢ଼ିରୁ ମନ ଛାଡ଼ିଯାଇଥିଲା । ଏଇ ସମୟରେ ଲେଖିଥିଲି 'ଜୀବନ କାକଳି' 'ଦରବାର' ଛନ୍ଦରେ, ଢଙ୍ଗରେ ବି । ବର୍ଷକ ପରେ ଚିତ୍ତ ଶାନ୍ତ ହେଲା । ୧୯୩୫ରେ ମୁଁ ମାଟ୍ରିକ ଘାଟିଟି ପାର୍ ହେଲି ।

ଆଉ ଅଧିକ ପଢ଼ିବାକୁ ମନ ନ ଥିଲା, ଜୀବନସଂଗ୍ରାମକୁ ଡରୁଥିଲି ବୋଲି ନୁହେଁ, କବିତା ଲେଖିବାକୁ ପ୍ରଚୁର ଅବସର ପାଇବି ବୋଲି । କବିଟି କେଡ଼େ ଦୟନୀୟ ଜୀବ, ଏଥିରୁ ଅନୁମାନ କରାଯାଇପାରେ । ଅଧିକ ଦୟନୀୟ ହୁଏ, ଯେତେବେଳେ କାବ୍ୟ ଶୁଣାଇବାକୁ ବସେ, ବନ୍ଧୁ କାର୍ଯ୍ୟାନ୍ତର ବାହାନାରେ ମୋ କବଳରୁ ଖସି ପଳାଏ ।

ପାସ୍ ପରେ ଭାଇନା କହିଲେ—ଢେର୍ ହେଲାଣି, ଚାକିରୀ କର । କହିବା ସ୍ୱାଭାବିକ, ତାଙ୍କ ଉପରେ ସଂସାରର ଚାପ କମ୍ ପଡ଼ୁ ନଥିଲା । କିନ୍ତୁ ମଧୁବାବୁ ମୋ

କାବ୍ୟର ଆସ୍ୱାଦ ପାଇଥିଲେ । ସେ କହିଲେ—ପଢ । ଏ ମଧୁବାବୁ ହେଉଛନ୍ତି କମାପଡ଼ା ହାଇ ଇଂରେଜୀ ବିଦ୍ୟାଳୟର ପ୍ରତିଷ୍ଠାତା, ସେ କାଳର ଜଣେ ନିଷ୍ଠାପର, ସଚ୍ଚୋଟ ସରକାରୀ କର୍ମଚାରୀ, ନାମଜାଦା ସାହିତ୍ୟିକ । 'ନୀଳାଚଳ' କାବ୍ୟ ତାଙ୍କର ରଚନା ।

ମଧୁବାବୁଙ୍କର ଖଣ୍ଡିଏ ପତ୍ର ଘେନି ମୁଁ କଟକ ଗଲି । ଫଳରେ ଟିଉସନ-ଟିଏ ମିଳିଗଲା । ରେଭେନ୍‌ସାରେ ନାମ ଲେଖାଇଲି । ବହିପତ୍ର ନ ଥାଏ, ତେଣୁ ଦି ଓଳି ଟିଉସନ୍ ସନ୍ଧ୍ୟାରେ ଟିକିଏ ଅବସର ମିଳିଲେ କବିତା ଲେଖିବସେ । କେହି କେହି କହନ୍ତି—କବିତା ଲେଖା ଗୋଟାଏ ନିଶା, କବି ନିଶାଖୋର, କିନ୍ତୁ ମୋ ପକ୍ଷରେ ଏ ଗୋଟିଏ ବ୍ୟାଧି, ମୁଁ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଲି । କବିତା ଲେଖି ନିଜର ଯାହା କ୍ଷତି କରିଛି, ତାର ତୁଳନା ନାହିଁ । ବସ୍ତୁତଃ ଏହା ମୋର ପଢ଼ାର ପ୍ରଧାନ ଅନ୍ତରାୟ ହୋଇଥିଲା । ପାଠାଗାର ସଙ୍ଗେ ମୋର ସମ୍ପର୍କ ନ ଥିଲା । ପାଠ୍ୟ ବହି ବି ପଢ଼ି ନ ଥିଲି । ସୁଯୋଗ ନ ପାଇ କୂପମଣ୍ଡୁକ ହେବା ଗୋଟାଏ କଥା, ସାଗର ଭିତରେ ବାସ କରି ଗର୍ତ୍ତରେ ପଶିବା ଅନ୍ୟ କଥା । ଓଡ଼ିଶାର କଲିକତା କଟକ ନଗରରେ ମୋର ଏଇ ଦୁର୍ଦ୍ଦଶା ହୋଇଥିଲା । ବାସ୍ତବିକ, ମାନସିକ ଭାବରେ ମୁଁ ଥିଲି ଗୋଟିଏ ପଙ୍ଗୁ । ଆଧୁନିକ ସାହିତ୍ୟ ସହିତ ମୋର କୌଣସି ସମ୍ପର୍କ ନ ଥିଲା । କେତେଜଣ ହିତଭାଗୀଙ୍କ ସହିତ ପ୍ରତିଦିନ ଦରଫୁଟା ଭାତ, ଡାଲି ପାଣି ଖାଇ ୩ ମାଇଲ୍ ଦୌଡ଼ିବାକୁ ହୁଏ, ତଳ ତେଲେଙ୍ଗା ବଜାରରୁ କଲେଜ୍ । ଶ୍ରେଣୀର ସବା ପଛ ବେଞ୍ଚରେ ବସେ, ତେଙ୍ଗା ପିଲାଙ୍କ ପଛରେ, ଘୁମାଇବାକୁ ସୁବିଧା ହେବ ବୋଲି । ଅଧ୍ୟାପକ ଭାଗବତ ଗାଇ ଚାଲିଥାନ୍ତି । ମୋ କାନରେ କିଛି ପଶେ ନାହିଁ ।

ଏଇ ସମୟରେ ମୋର ଚରମ ଦୁର୍ଦ୍ଦଶା ଉପସ୍ଥିତ ହେଲା । ଯାହାଙ୍କ ଘରେ ଟିଉସନ୍ କରୁଥିଲି, ହଠାତ୍ ତାଙ୍କର ବଦଳି ହେଲା । କଟକ ସହରରେ ମୋର ସେପରି ଚିହ୍ନା କେହି ନାହିଁ । ଗୋଟାଏ ମେସ୍‌କୁ କବ୍‌ଜା ଚାବିହୀନ ଟ୍ରଙ୍କ୍‌ଟି ଘେନି ଚାଲି ଆସିଲି । ମେସ୍‌ର ବାସିନ୍ଦା କିରାଣି । ମାନ୍ଧାତା ଅମଳର ଗୋଟାଏ ଘରେ ମେସ୍ ଚାଲୁଥାଏ । ସେ ଘରେ ଗୋଟିଏ ଅବ୍ୟବହୃତ କୋଠରି ଥାଏ । ଝରକା ନାହିଁ, କଣକୁ ଛୋଟ ଦରଜାଟିଏ । ଦିନ ଦିପହରେ ସେ ଘରେ କଟିକଟିଆ ଅନ୍ଧାର ଘୋଟିଥାଏ । ଲଣ୍ଠନଟି କମା ହୋଇ ଘର କଣରେ ଥାଏ, ବର୍ଷା ତେଜ ଦିନରେ ବେଳେ ବେଳେ ପଡ଼େ । ବିନା ଭଡ଼ାରେ ମୋତେ କୋଠରିଟି ମିଳିଲା । ବୃକ୍ଷ ମୂଳ ବା ରାସ୍ତା କଡ଼ ଅପେକ୍ଷା ଯଥେଷ୍ଟ ଭଲ । କିନ୍ତୁ ହାଓ୍ୱା ଖାଇ ମଣିଷ ବଞ୍ଚେ ନାହିଁ । ମୁଢ଼ି ପାଣିରେ ମୋର ଦୁଇଦିନ ଚଳିଲା, ତେଣିକି ପାଦ ଅଚଳ

ହେଲା । ପଢ଼ା ଛାଡ଼ି ଘରକୁ ଚାଲିଯିବାକୁ ବସିଛୁ, ଏଇ ସମୟରେ ଟିଉସନ୍‌ଟିଏ ମିଳିଗଲା । ବିଧାତାର ଆଶୀର୍ବାଦ । ନିଜ ଅର୍ଜନରେ ଚଳି ଏଇ ସମୟରେ ଭାଇକୁ ପଢ଼ାଉଥିଲି । ପରୀକ୍ଷା ପୂର୍ବରୁ ଅଳ୍ପ କିଛି ଦିନ ପଢ଼ି କୌଣସି ମତେ ଆଇ. ଏ ଟା ପାସ୍ କଲି ।

ଏଇ ସମୟରେ ଗୋଟିଏ ଘଟଣା, ବୋଲି—ଦୁର୍ଘଟଣା, ମୋର ମନେ ପଡ଼େ । ସେ ଦିନର ଅଶ୍ରୁରେ ଅଦ୍ୟାପି ସେ ବେଦନା ଜଳୁଚି, ଆମରଣ ନିଭିବ ନାହିଁ । ଦୁଃସ୍ଥ ଅବସ୍ଥାର ଚୂଡ଼ାନ୍ତ ସ୍ତରରେ ମୁଁ ପହଞ୍ଚିଥିଲି । ସାମାନ୍ୟ ଖଣ୍ଡିଏ କାମିଜ କିଣିବା ଲାଗି ମୋର ସମ୍ବଳ ନ ଥିଲା । ଚାଦରଖଣ୍ଡିଏ କାନ୍ଧରେ ପକାଇ ଯାଇଥିଲି ବୋଲି ଡ୍ରିଲ୍ ମାଷ୍ଟ୍ରେ ମୋତେ ଲାଇନ୍‌ରୁ ବାହାର କରି ଦେଇଥିଲେ । ସେଭଳି ଆଇନ୍ ନ ଥିଲା । କିନ୍ତୁ ପ୍ରତିକାର ଲାଗି ମୋର ସାହସ କୁଳେଇଲା ନାହିଁ । ଯେ ହେଉ ସୁସଜ୍ଜିତ ଅଧ୍ୟାପକ, ସୁବସ୍ତ୍ର ପରିହିତ ଧନୀ ଛାତ୍ରଙ୍କଠାରୁ ମୁଁ ଦୂରେଇ ରହୁଥିଲି ।

ଆଇ. ଏ. ପରୀକ୍ଷା ଦେଇ ସାରି ବଜାରକୁ ଆସିଛୁ, ହାତରୁ କାଳି ଶୁଖି ନାହିଁ । ଦୈବାତ୍ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସଙ୍ଗେ ସାକ୍ଷାତ ହେଲା । ବାଣ-ପୁରରେ ନୂଆ ହାଇସ୍କୁଲ ହେଉଥାଏ, ଶିକ୍ଷକ ମିଳୁ ନ ଥାନ୍ତି, ପଣ୍ଡିତଜୀ ମୋତେ ୨୫ଟଙ୍କା ଦରମାରେ ନିଯୁକ୍ତ କଲେ । ମୁଁ ଗ୍ରୀଷ୍ମ ଛୁଟି ପର୍ଯ୍ୟନ୍ତ ବାଣପୁରରେ ରହି-ଥିଲି । ସର୍ପିଳ ସାଳିଆ, କ୍ରୀଡ଼ା-ଶୈଳ ଘଣ୍ଟଶିଳା, ଅସ୍ତଗିରି ଭାଲେରି, ରହସ୍ୟାଚ୍ଛନ୍ନ ସୋଳରି, ଲାସ୍ୟମୟୀ ଚିଲିକା ମୋ ଉପରେ ମୋହାଚ୍ଛନ୍ନ ପ୍ରଭାବ ବିସ୍ତାର କରିଥିଲା । ଗୋଦାବରୀଶ ସତ୍ୟବାଦୀ ଛାଡ଼ିଥିଲେ, ତାର ଆଦର୍ଶ ଛାଡ଼ି ନ ଥିଲେ । ନାଗେଶ୍ୱର ଓ ଆମ୍ରକୁଞ୍ଜରେ କ୍ଲାସ ହେଉଥିଲା । ଅନ୍ୟ କିଛି ଆଦର୍ଶ ଅବଲମ୍ବିତ ହେଉଥିବା କଥା ମନେ ନାହିଁ । ଫଳରେ ଅନ୍ୟ ସାଧାରଣ ବିଦ୍ୟାଳୟ ପରି ବାଣପୁର ବିଦ୍ୟାଳୟ ହୋଇଗଲା ।

ବାଣପୁରରେ ୩ମାସ ରହିଥିଲି । ସଞ୍ଚିତ ଅର୍ଥରେ ରେଭେନ୍‌ସା କଲେଜରେ ବି. ଏ. ରେ ନାମ ଲେଖାଇଲି । ଟିଉସନ୍ ମାର୍କେଟରେ ମୋର ପ୍ରତିଷ୍ଠା ହୋଇ-ଥିଲା । ସହଜରେ ମିଳିଗଲା ।

ସଚ୍ଚି ରାଉତରାୟ ଓ ବିନୋଦ ନାୟକ ମୋର ପଢ଼ା ସାଥୀ । ସଚ୍ଚି ସେତେବେଳକୁ ଓଡ଼ିଶାର ବଡ଼ କବି, ନୂଆ ଯୁଗର ପୂନାଦି ପକାଉଥାଏ, ସେ ଛାତ୍ରନେତା, 'ସହକାର'ର ସହକାରୀ ସମ୍ପାଦକ; ତାର ଲମ୍ବା ଲମ୍ବା କବିତା

'ସହକାର'ର ପୃଷ୍ଠା ମଣ୍ଡନ କରୁଥାଏ । ବିନୋଦ ମଧ୍ୟ ପ୍ରତି ମାସରେ ନୂଆ ପ୍ରତିଷ୍ଠା ଅର୍ଜନ କରୁଥାଏ । ତାଙ୍କ ସଙ୍ଗେ ସାଥୀ ହେବାର ଯୋଗ୍ୟତା ମୋର ନ ଥାଏ । ମୁଁ ରାଧାନାଥ ଗଙ୍ଗାଧରଙ୍କ ପ୍ରଭାବରୁ ମୁକ୍ତ ପାଇ ନ ଥାଏ, ବିଶ୍ୱ ସାହିତ୍ୟ ଅଧ୍ୟୟନ ତ ଦୂରର କଥା, ରବୀନ୍ଦ୍ରନାଥଙ୍କର କୌଣସି କବିତା ପୁସ୍ତକ ମୋ ହାତରେ ପଡ଼ି ନ ଥାଏ । ରବୀନ୍ଦ୍ର କବିତା ନ ପଢ଼ି ସେତେବେଳେ କବି ହେବା ଦୁରାଶା ମାତ୍ର । ଓଡ଼ିଶାରେ କମ୍ୟୁନିଷ୍ଟ ଭାବଧାରାର ପ୍ରଥମ ପଦକ୍ଷେପ କାଳ । ବିପ୍ଳବ-କବିତା ନ ଲେଖିଲେ ପତ୍ରିକାରେ ସ୍ଥାନ ପାଇବା କଷ୍ଟକର । ପ୍ରକୃତରେ ବିପ୍ଳବୀ ନୋହିଲେ ବି ବିପ୍ଳବୀ ହେବାକୁ ହେଲା । ଛଦ୍ମ ବିପ୍ଳବୀର 'କଏଦୀ' କବିତାଟି ଜ୍ୟେଷ୍ଠ ୧୩୪୫ 'ସହକାର' ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ହେଲା । ଏଥିରେ ଉପଧାମିଳନ ଲାଗି ପ୍ରୟାସ କରି ମୁଁ ପ୍ରାୟ ସଫଳ ହୋଇଛି, ମାତ୍ର ମାତ୍ରାବୃତ୍ତ ଭୁଲ୍ ମାତ୍ରା ଅତିକ୍ରମ କରିଛି । ଏ ଭଳି କବିତା ପ୍ରକାଶ କରିଛନ୍ତି, ସମ୍ପାଦକଙ୍କର ଉଦାରତା କହିବାକୁ ହେବ । ଏ ମୋର ପ୍ରଥମ ପ୍ରକାଶିତ କବିତା ।

ବ୍ରିଟିସ୍ କାରାଗାରରେ ବନ୍ଦୀ ଦେଶପ୍ରେମୀଙ୍କ ଉଦ୍ଦେଶ୍ୟରେ ଲିଖିତ । ଯୁଗୋପଯୋଗୀ ବିଷୟକୁ ବାଦ୍ ଦେଲେ ଶିଳ୍ପ—ଦୃଷ୍ଟିରୁ ଏହା ମାଟ୍ରିକ୍ ଶ୍ରେଣୀର କବିତା ଅପେକ୍ଷା ଉନ୍ନତତର ବୋଧ ହେଉ ନାହିଁ । କେତୋଟି ପଦ ଉଦ୍ଧାର କଲେ ଅବାନ୍ତର ହେବ ନାହିଁ ।

### ଭାରତ ଭାଗ୍ୟ ତାରା

ତୁମ ଯୋଗୁଁ ଆଜ ବହେ ଭାରତରେ ନବ ଜୀବନର ଧାରା
କୋଟି ପ୍ରାଣେ ଆଜ ଛୁଟେ ଅହର୍ନିଶ ଦେଶ ପ୍ରେମିକର ଉତ୍ସ
ମଣିଲ କଏଦୀ ଦେଶ ସେବା ଆଗେ ନିଜ ପ୍ରାଣ ଅତି ତୁଚ୍ଛ ।
ତୁମର ଦୀପ୍ତ ଦହନ୍ତ ଜଳାଇ ହୃଦ ମନ୍ଦିର ଚୂଳେ
ସ୍ୱାଧୀନର ଶତ ଜାଗ୍ରତ ଢେଉ ଜାଗିଲା ମନର ମୂଳେ ।

× × × ×

ଅନ୍ଧାର କାରଗଡ଼େ ପୁଷ୍ପମାଳା ସମ ନେଲ ନିଜ କରେ ବରି
ଆସୁରୀ ବଜ୍ର ଶୃଙ୍ଖଳା ଶତ ହସି ହସି ଧୀର ପରି ।
କୋମଳ ଶିରୀଷ ତଳ୍ପ ଅମ୍ବର ଚୁମ୍ବିତ ଚନ୍ଦ୍ରଶାଳା
ତେଜିଲ ଆମୋଦ ରହ ସମ୍ପଦ ସ୍ୱାଧୀନ ଉଦ୍ୟାନ ମାଳା ।

ନବ ପ୍ରଣୟିନୀ ଅଧର ବିମ୍ବେ ଚୁମ୍ବନ ନାହିଁ ଢାଳି
ଘେନିନାହିଁ ଗଳେ ନବ ପ୍ରଣୟର ବନ୍ଦନା ଫୁଲ ମାଳ ।
ଘେନିନାହିଁ ମାତା ପିତା ସ୍ନେହର ସେ ଆଶିଷ କୁସୁମ ବୃଷ୍ଟି
ଛିନ୍ନ କରିଲ ମମତାର ଡୋରି ତ୍ୟାଗ-ଯାଗେ ତବ ତୁଷ୍ଟି ।

× × × ×

ମୁକ୍ତ ତମେରେ ବନ୍ଧନ ସାଥେ ସ୍ୱାଧୀନ ଆକାଶ ପରି
ଜାତି ଜଡ଼ ପିଣ୍ଡେ ବୁହାଇଲ ପ୍ରାଣ ମୁକ୍ତ ଜଳଧାର ସରି ।
ଜାତିର ମୁକୁଟ ଶିର ସ୍ୱିର ତୁମେ ଜାତୀୟ ପ୍ରେରଣାଧାରି
ଭୁଲିବନି ଜାତି ଦେଶ ପାଇଁ ତୁମେ ବରି ନେଇଥିଲ କାରି ।'

୧୯୩୯ ରେ ମୁଁ ବି. ଏ. ପାସ୍ କଲି, ଆକୃତିର ବିଶାଳତା ଦେଖି ପୁଲିସ୍ ହେବା ଲାଗି କେତେକ ଅଧ୍ୟାପକ ପରାମର୍ଶ ଦେଇଥିଲେ । ମନସ୍ତତ୍ତ୍ୱବିତ୍ ନୁହନ୍ତି ସେମାନେ । ମନର ସମ୍ବାଦ ନ ଜାଣି ଏପରି ଉପରଠାଉରିଆ ଉପଦେଶ ଦେବାର ସାର୍ଥକତା ନ ଥିଲା କିଛି । ବୃତ୍ତି ଲାଗି ମନୋବୃତ୍ତିକୁ ବଳି ଦେବାର ପାତ୍ର ନ ଥିଲି ମୁଁ । ଦୁଃଖ ସହିବାର ଅଭ୍ୟାସ ଥିଲା, ବାଧା ବିଘ୍ନର ସମ୍ମୁଖୀନ ହେବାର ସାହସ ଥିଲା । ଅନ୍ତରରେ ଥିଲା ଦୃଢ଼ ଜିଦ୍—କିଛି ହେବ, କିଛି କରିବ । 'ତେଣୁ ମନୋବୃତ୍ତିର ପ୍ରତିକୂଳ ଗୋଟାଏ ସାହସ ପାଲିସ୍ ମାନି ନେବା ଲାଗି କେବେ ପ୍ରଲୋଭିତ ହୋଇ ନାହିଁ ।

ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ ହୋଇ ନ ଥାଏ । ଶୂନ୍ୟ ହସ୍ତରେ କିନ୍ତୁ ସାହସ ମନରେ ମୁଁ କଲିକତା ଯାତ୍ରା କଲି । ବ୍ରଜବନ୍ଧୁ ନୈଶବିଦ୍ୟାଳୟର ପ୍ରଧାନ ଶିକ୍ଷକ ଚାକିରିଟି ମୋତେ ମିଳିଗଲା । ମାସିକ ବେତନ ଦଶ ଟଙ୍କା । ଏହାରି ମଧ୍ୟରେ ଖାଦ୍ୟପେୟାଦି ଯାବତୀୟ ଖର୍ଚ୍ଚ ତୁଲାଇବାକୁ ପଡ଼ିଲା । ନୈଶ ବିଦ୍ୟାଳୟର ଗୃହ ଦିଗମ୍ବର (ସ୍ୱନାମଧନ୍ୟ ସାହିତ୍ୟିକ)ଙ୍କ ଚେଷ୍ଟାରେ ରହିବା ଲାଗି ମୋତେ ଗ୍ରେଟ କୋଠରିଟିଏ ମିଳିଗଲା । ସେହି କୋଠରିର ସାମ୍ନା ଗୃହରେ ପ୍ରବାସୀ ଉତ୍କଳ ସାହିତ୍ୟ ପରିଷଦ୍‌ର ପ୍ରଥମ ବୈଠକ ବସିଲା, ରୀତିମତେ ଚାଲିଲା । ରବିବାର ଦିନ ନୈଶବିଦ୍ୟାଳୟରେ ମଧ୍ୟ ରୀତିମତେ ସାହିତ୍ୟ ସଭା ହେଉ ଥାଏ । ଏବେ କଲିକତାରେ ଯେଉଁ କେତେ ଜଣ ନାମଜାଦା ସାହିତ୍ୟିକ ବାହାରିଛନ୍ତି, ସେମାନେ ଉଣା ଅଧିକେ ସେଇ ପ୍ରଚେଷ୍ଟାର ଫଳ ।

ପ୍ରଥମେ କଲିକତାରେ ମୁଁ ବୃହତ୍ତର ଜୀବନର ଆସ୍ୱାଦ ଲାଭ କଲି । କଲେଜ ଆଲୋଚନା ସଭାରେ ପାଟିରୁ ଛେପ ଶୁଖି ଯାଉଥିଲା । କଲିକତାରେ ପାଦ ଦେଉଁ

ହେଉଁ ହେଲ ଜଣେ ବକ୍ତା । ଅବାନ୍ତର ବକିଲେ ଅଗ୍ରାହ୍ୟ ହେବାର ଆଶଙ୍କା ନ ଥାଏ, ଏମିତି ଶ୍ରୋତା । ଶ୍ରୋତାକୁ ସୃଷ୍ଟି ବକ୍ତା । ବକ୍ତା ହେଉଁ ହେଉଁ ନେତା । ଡାକରା ଆସିଲା ନାନା ଆଡ଼ୁ—ପାଠାଗାର ଉନ୍ମୋଚନ, ନୈଶ ବିଦ୍ୟାଳୟ ଉଦ୍‌ଘାଟନ, ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଲାଗି 'ବାହିନୀ' ସଙ୍ଗଠନ ଇତ୍ୟାଦି । ସେବା ଅପେକ୍ଷା ନାମ କମେଇବାର ଭାବ ଥାଏ ଏଥିରେ ବେଶୀ । ଓଡ଼ିଶାର ଏବି ନେତା-ମାନେ ମୋତେ ନ ଧରିଲେ ନୁହେଁ; ମୁଁ ନ ଗଲେ ସଭା ଯେମିତିକି ଅଚଳ ! କେତେ ଆଦର ଅଭ୍ୟର୍ଥନା, ପୁଷ୍ପମାଳା, ନେତା ହେବାର ଲୋଭ ମୋର ଅଳ୍ପ ନ ଥିଲା, ଯଦି ବା ଗୁଣ ନ ଥିଲା । ନିଜ ଅବସ୍ଥାକୁ ଦୃଷ୍ଟି ଦିନେ ଭାବିଲି ଯେ ନିର୍ଦ୍ଧନ ପକ୍ଷରେ ନେତାଗିରି ଏକ ଅବ୍ୟାପାର । ସେଥିରେ ନିଜତ୍ୱ ରଖି ଚଳିବା ଅସମ୍ଭବ ।

ପ୍ରତ୍ୟାଖ୍ୟାନ କଲି ସମସ୍ତ ନିମନ୍ତ୍ରଣ । ଛ'ମାସ କାଳ ବିଶ୍ୱବିଦ୍ୟାଳୟର ପାଠାଗାରରେ ଜାଣ ସମାଧିସ୍ଥ ହୋଇଥିଲି । ସକାଳେ ଯାଏ, ସନ୍ଧ୍ୟା ସାତଟାରେ ଫେରେ । ଏଇ ଅଧ୍ୟବସାୟ ଫଳରେ ଏମ୍. ଏ. ରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି । ଆଧୁନିକ ଭାରତୀୟ ଭାଷା ବିଭାଗରେ ସର୍ବୋଚ୍ଚ ନମ୍ବର ରଖି ତିନୋଟି ସ୍ୱର୍ଣ୍ଣ ମୁଦ୍ରା ଓ ଦୁଇଶତ ଟଙ୍କା ପୁରସ୍କାର ପ୍ରାପ୍ତ ହେଲି ।

କିନ୍ତୁ ଏଇ ପୁରସ୍କାରରୁ ଅଧିକ ମୂଲ୍ୟବାନ୍ ଥିଲା ନାନା ସ୍ତରରେ କଲିକତା ଜୀବନର ଅନୁଭୂତି; ତପ୍ତ କଟାହରେ ଜଳ ବିନ୍ଦୁ ପରି ସେ ଅର୍ଥ କେଉଁଆଡ଼େ ଗଲା, ସ୍ୱର୍ଣ୍ଣ ମୁଦ୍ରାରେ ଗଢ଼ା ହେଲା ଅଳଙ୍କାର । ରହିଲା କେବଳ ଅନୁଭୂତି କବିତାରେ ଜୀବନ୍ତ ହୋଇ । ବୁଦ୍ଧିଜୀବୀ ହୋଇ ନୁହେ, ଭାବଜୀବୀ ହୋଇ ହେଲି ପ୍ରକୃତରେ ସୁଖୀ । ସଂସାରରେ ସୃଷ୍ଟିମୁଖୀ ଜୀବନରୁ ଅଧିକ ସୁଖକର କିଛି ନାହିଁ ।



# କୁନାଦାସଙ୍କ ଡାଇରି

କୁନା ଦାସଙ୍କ ଘୂର ପୂର ପାଞ୍ଚ ପଶିଲା । ହାତ ଥୁରୁଥୁରୁ, ମନ ଖୁଜୁ ବୁଜୁ । ଅକ୍ଷର ବୋଲି ଯାହା ଲେଖନ୍ତି ହାଣ୍ଡି ଆଟିକା । ଚଞ୍ଚଳ ମତି, ସଦା ଖେଳକୁ ଗତି । ଏଥିକୁ ସେ କେମିତି ନିଜ ଡାଇରି ଲେଖିବେ ? ବୁଲି ଗଲାବେଳେ, ଖାଇଲା ବେଳେ, ପଢ଼ିବା ବେଳେ ସେ କେତେ ଦାମୀ କଥା କହନ୍ତି । ବନ ଫୁଲ ପରି ଝଡ଼ି ନଷ୍ଟ ହୋଇଯାଏ । ଯେହେତୁ ଦାସଙ୍କର ଷ୍ଟେନୋ ନାହିଁ, ସାମ୍ବାଦିକର, ଶିଶୁ ପ୍ରତି, ଶିଶୁ ସାହିତ୍ୟ ପ୍ରତି ଖାତିର ନାହିଁ । ମୁଁ ନୁହେଁ ଷ୍ଟେନୋ, ନୁହେଁ ସାମ୍ବାଦିକ । ଟିପାଖାତା, ଝରଣା କଲମ ପକେଟରେ ଘେନି ବୁଲିବାର ଅଭ୍ୟାସ ମୋର ନାହିଁ । କଉତୁକିଆ କଥା ଶୁଣି ପରେ ଲେଖିବି ବୋଇଲେ ଜଞ୍ଜାଳିଆ ମନେ ରହେ ନାହିଁ । ଏମିତି କାବ୍ୟୋପଯୋଗୀ କେତେ ଉପାଦାନ ହଜୁଛି । ଅବସର ବେଳେ ଯାହି ଟିପାଟିପି କରିଥିଲି, ଗୁନ୍ଥି ଦେଲି, ହଜିବା ଆଶଙ୍କାରେ । ସ୍ୱାକୁ ଡାଇରି ବା ଟିପ୍ପଣୀ ଯାହା କୁହ, ଆପତ୍ତି ନାହିଁ ।

ତାଙ୍କ ମୂଲ୍ୟବାନ୍ କଥା ଆଗରୁ ସାଇତି ନ ରଖିଥିବାରୁ, ବୁଝୁଚ, ସାହିତ୍ୟର ଢେର୍ କ୍ଷତି ହେଲା । ହେଲେ ମୋତେ ଲଗା ନାହିଁ । ଦାସେ ଡାଇରି ଲେଖା ବାବତକୁ ମୋତେ ଫଟା ପାହୁଲାଟାଏ ବି ଦିଅନ୍ତି ନାହିଁ । ବିନା ପଇସାରେ ଲେଖିବା ଯୁଗ ଆଉ ଅଛି କି ? ଏଇ ଡାଇରି ବାବତକୁ କେହି ଧନ୍ୟବାଦଟିଏ ଦେବ ନାହିଁ, ଏମିତିକି ଦାସେ ବି । ତା ମାନେ ଏ ଗୋଟିଏ ଚମ୍ପୁକୁଟା କାମ । ଦୁଃଖ ନାହିଁ । ଲେଖାର ଅସଲ ଦାମ୍ ଆନନ୍ଦ । ଦାପ ତେଜିଲେ ହାତ ଚକ୍‌କଣ, ବିନା ଫାଇଦାରେ କିଏ କେଉଁଥିରେ ହାତ ଦିଏ ?

ଭାବୁଛ, ମୁଁ ତାଙ୍କ ବାଲ୍ୟ ଡାଇରି ଲେଖିବାକୁ ଯୋଗ୍ୟ କି ନୁହେଁ ? କେଉଁ ଯୋଗ୍ୟତର ବ୍ୟକ୍ତିଠାରୁ ଛଡ଼ାଇ ଆଣି ମୁଁ ଏ କାର୍ଯ୍ୟ କରୁଛି ? ଭଲ ହେଲେ ଦାସେ କବଜାଗିର ଖଞ୍ଜିଦେବେ ନାହିଁ, ନ ହେଲେ ଘୂକସିରୁ ବରଖାସ୍ତ କରି ଦେବେ ନାହିଁ । ବୁଝିଲେ ଆଜ୍ଞା, ଏ କାମ ମାଗଣାକୁ ମହରଗ ।

ନିଜ ଜୀବନ-ଚରିତ ଲେଖିବାର କ୍ଷମତା ଥିଲେ ଦାସେ ଗୁଡ଼ାଏ ଅବାନ୍ତର କଥା ଲେଖିଆନ୍ତେ, ବନେଇଚୂନେଇ ଫେଣେଇ ଫୁଲେଇ । ଲୋକେ ଜାଣନ୍ତୁ— ତୁଳସୀ ଦୁଇପତ୍ରରୁ ବାସେ, କେଶରୀ ଶାବକ ଆତ୍ମ ପରିଚୟ ଦିଏ ଗର୍ଜନରେ । ଓଳିଆରୁ ପଡ଼ି ଗଜା, ଗୋଟାପଣେ ତୁଳସୀ । ହଲିଲା ପାଣିକି ଗୋଡ଼ ବଢ଼ାନ୍ତି

ନାହିଁ । ବାଳଖିଲ୍ୟ ଋଷି । ଏ ଆତ୍ମ-ଚରିତ କାହାକୁ ସତ, କାହାକୁ ମିଛ । କାଣ୍ଡି ଯାଇ କେତେ ଫାଣ୍ଡି ଅବଶିଷ୍ଟ ରହିଥାନ୍ତା, ତା ମା'ଗଙ୍ଗେଙ୍କୁ ଗୋଚର । ତାଙ୍କୁ ଏ ଆପଦରୁ ମୁଁ ରକ୍ଷା କରିବି, ସତ୍ ସତ୍ କଥା ଲେଖିବି । ଯେହେତୁ ସତ କହିଲେ ଏଠି ସହଯ୍ରେ ଫକଲ ସଲମ୍ ବଜେଇବାକୁ ପଡ଼ିବ ନାହିଁ । ମିଥ୍ୟା କହିଲେ ବି ଲଫା ନାହିଁ । ଏ ଡାଏରି ଦାସଙ୍କ ମନଲଖି ନୋହିପାରେ । ତାଙ୍କର ଉତ୍ତର—ଆହେ ଦାସେ, ଆମର ତ ଭେଲା ବୁଡ଼ିଛି । କଣା ହେଉ, କୁଜା ହେଉ ମାମୁଁ ଟିଏ ତୁମର ଥାଉ, ଥାଉ । ଦାସେ ଯେତେବେଳେ ବଡ଼ ହେବେ, ବିଜ୍ଞ ହେବେ, ବହିପତ୍ର ଘାଣ୍ଟୁ ଘଣ୍ଟୁ ପିଲାଦିନର ଏ ଟିପ୍ପଣୀଟିକି ଦେଖିବେ, ନିଶ୍ଚେ ହସିବେ, କହିବେ —ମୁଁ କେବେ ଏମିତି ନ ଥିଲି । ବାପା ତ ଆମର କବି, ବାଇ ଲାଗିଲେ ଗୁଡ଼େ ଏମିତି ଫାନ୍ଦଫାନ୍ଦ ଲେଖନ୍ତି । କିଛି ତ ବେପାର ନ ଥିଲା । ଗୁଡ଼େ ଏମିତି ଆଳ-ମାଳକା ଘାଣ୍ଟୁଥିଲେ; ଆଉ କଣ ?

ବାଲ୍ୟ ଜୀବନର କଥା କୈଶୋରରେ, କୈଶୋର କଥା ଯୌବନରେ, ଯୌବନର ବିଳାସ ବାର୍ଦ୍ଧକ୍ୟରେ ମିଥ୍ୟା ବୋଧ ହୁଏ । ହେଲେ ବି ଦିନେ ଏହା ଅବିସମ୍ବାଦିତ ସତ୍ୟ ଥିଲା । ଗୋଟିଏ ମଣ୍ଡା କାଇଞ୍ଚ, ପେଣ୍ଟାଏ ନଡ଼କୋଳି, ଖଣ୍ଡେ ରଙ୍ଗ କାଗଜ ମୁଣି, ଗୋଟିଏ ଝୁମୁଝୁମୁକା କି ବେଙ୍ଗି-ବାଇଦ, ପୁଞ୍ଜେ ବାଲି-ଗିଚଡ଼ା କି ବଉଳ-କୋଳି ମଞ୍ଜି, ଗୋଟାଏ ବରଡ଼ାପତ୍ର ପେଙ୍କାଳି କି କଅାପତ୍ର ଚକ୍ରବତ୍ତି ଏଇ ବଡ଼, ଜୀବନର ଗୋଗ୍ରୁଏ ନୋଟ୍, ଗଦାଏ ତମସୁକ କି ଆଞ୍ଜୁଳାଏ ଅସରପି ଅପେକ୍ଷା ଯେ ଅଧିକ ଥିଲା, ଏହା ନିଗୂଢ଼ ସତ୍ୟ ।

'ପା-ପା' 'ବୋ-ବୋ' ଉଚ୍ଚାରଣ ଦିନରୁ ଦରୋଟି ପୁଣି ନିଗୂଢ଼ କଥା କହିବା, ଗୀତ ଗାଇବା ପର୍ଯ୍ୟନ୍ତ କଥାଭଙ୍ଗୀ, ଲୀଳାଖେଳା, ଗ୍ୱାଲଚଲଣ ଲକ୍ଷ୍ୟ କରେ, କାରଣ ମୋ ଜୀବନ ଉପରେ ଏହାର ପ୍ରଭାବ ଅଳ୍ପ ନୁହେଁ । ସେ କେତେ-ବେଳେ କବି, କେତେବେଳେ ଚିତ୍ରକର, କେତେବେଳେ ଇଞ୍ଜିନିଅର୍, କେତେ-ବେଳେ ଖିଅଳୀ ରାଜଚକ୍ରବର୍ତ୍ତୀ, ପୁଣି କେତେବେଳେ ବେଦନ-ମୁଖର ସର୍ବହରା । କେତେବେଳେ ଦୋକାନଦାର୍, ଓଜନ କରୁଛନ୍ତି ଚିନି ଲୁଣ; କେତେବେଳେ ସୂପକାର, ରାନ୍ଧୁଛନ୍ତି ମିଛିମିଛିକା ଭାତ । କେତେବେଳେ ବାଣୁଆ, ତୁଣ୍ଡରେ 'ହୁ' ଶବ୍ଦ କରି ମାରୁଛନ୍ତି ବାଣ, କେତେବେଳେ ଫିଲ୍ଡମାର୍ଶାଲ୍, କରୁଛନ୍ତି ଯୁଦ୍ଧ । କେତେବେଳେ ନାବିକର ଗାମ୍ଭୀର୍ଯ୍ୟରେ ଗୁଡ଼ଉଛନ୍ତି କାଗଜର ଡଙ୍ଗା, କେବେ ଉଦ୍ୟାନକୁ ପାରିଧି କରି ଯାଇ ଧରୁଛନ୍ତି ପ୍ରଜାପତି, କେତେବେଳେ ଏକାନ୍ତ ମାତୃଭକ୍ତ, କଣ୍ଢେଇ ଧରି ତା ଲାଙ୍ଗୁଡ଼ରେ ବାନ୍ଧୁଛନ୍ତି ଝିଙ୍କର, 'କଣ୍ଢେଇ ଧରଣ ମାଆ ମରଣ' ଜାଣି ବି । କେବେ ଭ୍ରମର ପରି କର୍ଣ୍ଣିକାରରୁ ମଧୁ ଶୋଷିଛନ୍ତି, କେବେ

ମୁଖରେ ମାଖିଛନ୍ତି କୁଙ୍କୁମର ରେଣୁ, ପିଲାଙ୍କ ସୁଆଙ୍ଗରେ ଯୋଗ ଦେଇ । ସେ ସର୍ପକୁ ନ ଡରି ବଣରେ ବୁଲିଛନ୍ତି, ସର୍ଦ୍ଦିକୁ ନ ଡରି ବର୍ଷାରେ ତିନ୍ତିଛନ୍ତି, କେବେ କେବେ ଡାଳିମାକୁଡ଼ି ଖେଳି ଶାଖାମୃଗ ସଙ୍ଗେ ପ୍ରତିଯୋଗିତା କରିଛନ୍ତି, ସେ ବାଲିରେ ଗରବର କୁଡ଼ିଆ ତିଆରି କରିଛନ୍ତି, ପଥରରେ ପଥର ଖଞ୍ଜି ବଉଦେଉଳ ଗଢ଼ିଛନ୍ତି । ଏମିତି କୁନା ଦାସଙ୍କର କେତେ ଅଭିନୟ; କେତେ କୀର୍ତ୍ତି । ଏ ସବୁ ଭିତରେ ଶ୍ମପଲ୍ଲବସ୍ମୃତ ବୃଦ୍ଧ, ବିଳାସନିମଗ୍ନ ଯୁବକ, ଏ ଜୀବନରୁ ସଦ୍ୟାଗତ କିଶୋର ହଜିଲା ଜୀବନର ସନ୍ଧାନ ପାଇବେ । ମହାତ୍ମା କୁନାଦାସ ଯେ କୋଟି କୋଟି ଓଡ଼ିଆ ଶିଶୁର ପ୍ରତୀକ, ଏହା ନିଃସନ୍ଦେହ ।

ଏବେ କିଛି ଦିନ ହେଲା ଦାସଙ୍କ ମନୋବୃତ୍ତି ବଦଳିଛି । ମାନେ ଦାସେ କେତେ ପରିମାଣରେ ଆଧୁନିକ ହୋଇ ପଡ଼ିଛନ୍ତି, ମଫସଲୀ ଖେଳ, ମେଳ, ରୁଚିରୁ କିଛିଟା ଦୂରେଇ ଯାଇଛନ୍ତି । ଯା ମୂଳରେ ଆମେରିକାର କେତେକ ଛବି—ପତ୍ରିକା ଓ ଖେଳଣାର ହାତ ଅଛି । ପୃଥିବୀର ପାହାଡ଼, ବନ, ସମୁଦ୍ର, ହ୍ରଦ, ନଦୀ, ଉଦ୍ୟାନ, ବରଫସ୍ରୋତ, ଅଗ୍ନ୍ୟୁତ୍ପାତ, ଜଳପ୍ରପାତ, ମନ୍ଦିର, ଗୀର୍ଜା, ମସଜିଦ୍, ଆଟମ୍‌ବୋମା ବିସ୍ଫୋରଣ, ରେଡ଼ିଓ, ଛପାକଳ, ଚଟକଳ, ଫୋନ୍, ମଟର, ରେଳଗାଡ଼ି, ଟ୍ରାମ୍, ଟ୍ୟାଙ୍କ୍, ଉଡ଼ାଜାହାଜ; ବନ୍ଧୁକ ପ୍ରଭୃତି ବହୁ ଆଧୁନିକ ଜିନିଷ ପିଲାଙ୍କ ସଂସ୍କରଣରେ ପାଇଛନ୍ତି । ତେଣୁ ଅଦିଆ ବୁଢ଼ା, ବେଙ୍ଗିବାଇଦ, ସଖୀ-କୁଣ୍ଡେଇ ରାଜ୍ୟରୁ ତାଙ୍କ ମନ ଫେରିଛି । ସେ କହୁଛନ୍ତି—ମୁଁ ଟ୍ୟାଙ୍କ୍ ଚଳାଇବି, ଉଡ଼ାଜାହାଜର ବସାଇ ବୁଢ଼ୀ ଆଈକି ଆମେରିକାରେ ବୁଲାଇ ଆଣିବି, ବନ୍ଧୁକରେ ଯୁଦ୍ଧ କରିବି । ଛାତିରେ ହାତ ମାରି ବୋଲୁଛନ୍ତି—

ନୂଆ ଭାରତର ସ୍ୱାଧୀନ ପିଲା ମୁଁ ସ୍ୱାଧୀନ ପିଲା
ସ୍ୱାଧୀନ ରକତେ ଫୁଲି ଫୁଲି ଉଠେ ସ୍ୱାଧୀନ ଶିରା ।

ହାତେ ଝଲମଲ
ବନ୍ଧୁକ ପିସ୍ତଲ
ଫର ଫର ଫର
ଉଡ଼େ ଶରତର
ପତାକା ମୋହର ଦେଖରେ ଭଲା ।

ଦାସେ ହୋଇଛନ୍ତି ବୀରବାଳକ । ସେ ଅଧିକାର ତାକୁ ବଡ଼ ବଢ଼ିଆ ଦେଇଛନ୍ତି । ବୀର ହେବା ବ୍ରିଟିସ୍ ଅମଳରେ ଏକ ଅପରାଧ ଥିଲା, ଏବେ ହୋଇଛି ଗୌରବ, ସାହସୀ ସୈନିକ 'ମହାବୀର ଚକ୍ର' ପାଉଛି, ଖୋଦ୍ ରାଷ୍ଟ୍ରପତିଙ୍କ

ହାତରୁ । ତେଣୁ ବୀର ହେବା ଇଚ୍ଛାକାଂକ୍ଷାରେ କିଛି ଅବାସ୍ତବିକତା ନାହିଁ । କିନ୍ତୁ ସେ ତାଙ୍କର ନିଷ୍ଠା ରଖି ପାରନ୍ତି ନାହିଁ । ଦିନରେ ମହାବୀର, ରାତିରେ ହୁଅନ୍ତି ରଣ କ୍ଷେତ୍ରରୁ ପଳାତକ ସୈନିକ । ପୁରୁଣା ଯୁଗର ଲୋକମାନଙ୍କ ଅନ୍ଧାର ଗୁଡ଼ୁଗୁଡ଼ି ମଧ୍ୟରେ କେତେ କ ଅଦ୍ଭୁତ ଜୀବ ତାଙ୍କ ମନରେ ବସା ବାନ୍ଧିଛନ୍ତି, କାହାଣୀର ଭୂତ, ପ୍ରେତ, ଅସୁର ଅସୁରୁଣୀ, ବାଘ ଭାଲୁ ରାତିରେ ଜୀବନ୍ୟାସ ପାନ୍ତି । ଦାସେ ଚମକନ୍ତି, ବଲବଲାନ୍ତି. ପ୍ରତ୍ୟକ୍ଷେ ଦେଖିଛୁ । ଯେତେ ଗୁପ୍ତ ଦମ୍ଭବାଜ ହେଲେ ବି ଏଥିରୁ ଗୋଟାଏ ହାବୁଡ଼ରେ ପଡ଼ିଲେ ରକତ ପାଣି ଫାଟିଯିବ, ସେ କଥା କହୁ-ନାହିଁ ଯେ ଦାସେ ମିଛକୁ ଡରନ୍ତି, ରୁଷି ବସନ୍ତି । ସେ ଯାହା ଭାବନ୍ତୁ, ସବୁ କଥା ସଫା ସଫା କହିଯିବୁ ।

ଦାସଙ୍କ ଚରିତ୍ର ବିଷୟରେ ଗୋଟେ ଅଧେ କଥା କହିଲେ କିଛି ଅପ୍ରାସଙ୍ଗିକ ହେବ ନାହିଁ । ହେଲେ ଦୁଃଖ ନାହିଁ । କାରଣ ମୋ ପ୍ରସଙ୍ଗଟି ମୂଳରୁ ଅପ୍ରସଙ୍ଗ ।

ସେ ଭାରି ଏକଜିଦିଆ, ଯେମିତି ମହାତ୍ମା ଗାନ୍ଧୀ । ଯାହା ଧରିଥିବେ ସେଇଆ । ପାପଲାପାପଲି କଲେ କୋଉ କାମ କରେଇ ନ ହେବ, ନୁହେଁ । କିନ୍ତୁ ଜିଦ୍ ଧରିଲେ ସେ ଜିଦ୍ ଧରନ୍ତି । ଫାଟି-ଫୁଟି ଗଲେ ନ ହୁଏ । ଗାଳି ନିଷ୍ଫଳ । ମାଡ଼ ଦେଲେ ଜିଦ୍ ଆହୁରି ବଢ଼େ ।

ଦାସେ ଜଣେ ପହିଲା ନମ୍ବର ଗପୁଡ଼ି । ଶୋଇବା ବେଳ ଛଡ଼ା ସବୁବେଳେ କଥାର ସୁଅ ଛୁଟିଥାଏ । ଯେମିତି ଆମ ଦେଶର ନେତାଙ୍କ ଭାଷଣ । ସେଥିରେ ଯେ ବାଧା ଦିଏ, ସେ ବ୍ୟକ୍ତିଦ୍ରୋହୀ । ଏଠି ବ୍ୟକ୍ତି ଜାତିର ପ୍ରତୀକ, ସେ ହିସାବରେ ଜାତି-ଦ୍ରୋହୀ ହୁଏ । ନେତାଙ୍କ ବକ୍ତୃତା, ପିଲାଙ୍କ ଗୁଲୁଗୁଲୁ କଥା କିଛିବେଳ ଭଲ ଲାଗେ, ସବୁବେଳେ ନୁହେଁ ।

ଦାସେ ପ୍ରତିହିଂସାପ୍ରିୟ, କିନ୍ତୁ ହିଟଲର୍‌ଙ୍କ ପରି ନିଷ୍ଠୁର ନୁହନ୍ତି । ଗୋଟିଏ ମାଡ଼କୁ ତିନୋଟିରେ ଶୁଝିଲେ ତାଙ୍କ ରାଗ ମରେ, କିନ୍ତୁ ଶତ୍ରୁ ଦେଶରୁ ଅଧେ ମାରିନେଲେ ବି ହିଟ୍‌ଲର୍‌ଙ୍କ ରାଗ ସରେ ନାହିଁ । ଦାସଙ୍କ ନିଷ୍ଠୁରତା ସଙ୍ଗେ ଉଦାରତା କିପରି ମିଶି ରହିଛି, ତଳ ଦୃଷ୍ଟାନ୍ତରୁ ଜଣାଯିବ । ବୋଉ ମାଡ଼ ଦେଲେ ସେ ବାପାଙ୍କ ଆଗେ ନାଲିସ୍ କରନ୍ତି, ବାପା କେଣ୍ଟା ବିଷୟର କରିବା ଆଗରୁ ନିଜେ ରାୟଟା ଦେଇ ପକାନ୍ତି—ବାପା, ବୋଉକୁ ତଡ଼ି ଦିଅ । ଦୁର୍ବଳତାରୁ ହେଉ ବା ଯାହା ହେଉ, ବିଚାରକ ଏ କ୍ଷେତ୍ରରେ ରାୟଟା ଗ୍ରହଣ କରନ୍ତି, ଯେହେତୁ ବାଲାଦପି ସୁଭାଷିତଂ ଗ୍ରାହ୍ୟଂ । କିନ୍ତୁ ଏ ବିଚାରର ମଙ୍ଗ ଦାସେ ସ୍ଥିର ରଖିପାରନ୍ତି ନାହିଁ । କ୍ଷଣକେ ବିପରୀତ ହୁଏ । ବୋଉକୁ ତଡ଼ି ବାଡ଼ିଆଡ଼େ ଘୁଞ୍ଚାଇଲାବେଳେ ସେ

କରୁଣାକାତର କଣ୍ଠରେ ଡାକ ପକାନ୍ତି—ବାପା, ବୋଉକୁ ଘେନି ଆସ, ବାଇଆ ଖାଇଯିବ ! ବାପା ବୋଉକୁ ମିଛିମିଛିକା ମାଇଲେ, ବୋଉ ପଟକୁ ଆଉଜି କହନ୍ତି, ବୋଉ, ବାପାଙ୍କୁ ଜେଲ୍‌ରେ ଭର୍ତ୍ତି କରିଦେ, ତାଙ୍କ ଉପରକୁ ଆଟମ୍‌ବୋମା ଫୋପାଡ଼ିଦେ ।

ଦାସେ ଚଗଲା । ଗ୍ରାମ୍ୟ ଶବ୍ଦରେ ହାତ ଦିଅନ୍ତି, କହିଲେ ଅବଶ୍ୟ ଟିକିଏ ଅଧିକା ହେବ । ଡାଇରି ଲେଖା ନାଆଁରେ ବଦନାମ୍ ପ୍ରତ୍ନତାକୁ ପ୍ରଶ୍ରୟ ଦେବ ନାହିଁ, ଚଗଲା କହିଦେଲେ ତ ହେବ ନାହିଁ, ପ୍ରମାଣ ? ପ୍ରମାଣ ଦିହରେ, ମୁଣ୍ଡରେ । ପାଦ ଦ'ଟା ଆଣ୍ଠୁ ପର୍ଯ୍ୟନ୍ତ ଧୂଳିଆ, ପାଦରେ କଣ୍ଟା ପଶି ମାଛ ଆଖି ହୋଇଛି । ଦିହଯାକ ରାମ୍ପୁଡ଼ା ରାମ୍ପୁଡ଼ା, ଫର୍ଣ୍ଣିଆଖାବରି ଚନ୍ଦା, ମୁଣ୍ଡ ଠାଏ ଦୁଇଠା କଣା ହୋଇ ଭଲ ହେଲା ପରେ ଚନ୍ଦା ହୋଇ ରହିଛି । ଅଥଚ ପା, ଘଣ୍ଟାକେ ଦଶ କଚଡ଼ା ପଡ଼ନ୍ତି । ବୁଝାଇଲେ ଭଲ ପିଲା ପରି ବସି ବୁଝନ୍ତି, ମୁହୂର୍ତ୍ତକେ ଯଥା ପୂର୍ବଂ ତଥା ପରଂ ।

ଯେତେ କହିଲେ ଭାଗବତ
ସ୍ଥିର ନ ହୁଏ ମୋର ଚିତ୍ତ ।

ଏଇ ଦୁଷ୍ଟାମିକୁ କେହି କେହି ଭାବ ଚତୁରତାର ପୂର୍ବାଭାସ ବୋଲି କହନ୍ତି । ଏହି ମନୋବିଜ୍ଞାନବିତ୍‌ଙ୍କୁ ପଚାରେ—ଶିଷ୍ଟାମି କାହାର ପୂର୍ବାଭାସ ?

ଦାସେ ବଡ଼ ପ୍ରଶଂସାପ୍ରିୟ । ସଂସାରରେ କେଉଁ ବଡ଼ଲୋକ ଏହି ଦୋଷରୁ ମୁକ୍ତ ? ରାଜ ଦରବାରରେ ବନ୍ଦୀ ଚାଟୁକାର, ମନ୍ତ୍ରୀ ଦରବାରରେ ତତୋଧିକ । ପ୍ରଶଂସା କବିର ଉତ୍ତେଜକ, ନେତାର ପ୍ରତ୍ତେଦକ । ଭଗବାନ୍‌ଙ୍କଠାରେ ଏଇ ଗୋଟିଏ ଦୁର୍ବଳତା ଅଛି ବା ଭକ୍ତେ ଯୋଡ଼ିଛନ୍ତି ଅସଂଖ୍ୟ ସ୍ତୁତି-ଗୀତ । ଏହା ସହିତ ଭାଟ-ଗୀତ ବା ମନ୍ତ୍ରୀଙ୍କ ଅଭିନନ୍ଦନ-ପତ୍ର ମିଳାଇ ପଢ଼ି ପାରନ୍ତି । ଭାଟ, ଭକ୍ତ, ଚେଲା, ହାଁଜୀ ଏକ ପର୍ଯ୍ୟାୟବାଚୀ । ଦାସେ ସମାଲୋଚନା ସହି ପାରନ୍ତି ନାହିଁ । ତା ସହିବାର ସ୍ପୋର୍ଟସ୍‌ମ୍ୟାନ୍ ମନୋଭାବ କେତେ ଜଣଙ୍କର ଅଛି ? ମରମ କହିଲେ ଗରମ ହୁଅନ୍ତି ବେଶୀ, ଥଣ୍ଡା ମିଜାଜରେ ଆତ୍ମ-ସଂଶୋଧନ କରନ୍ତି ଅତି ଅଳ୍ପ ଲୋକ ।

ଥରେ ଅଧେ ସାହିତ୍ୟସଭାରେ କବିତା ଆବୃତ୍ତି କରି ଦାସଙ୍କ ନାମ ସମ୍ବାଦପତ୍ରରେ ବାହାରିଛି । ଦାସେ ନିଜ ନାମଟାକୁ ବାରମ୍ବାର ପଢ଼ନ୍ତି । ପହିଲି ଲେଖା ବାହାରିଲାବେଳେ ନିଜ ନାମକୁ ଛପା ଅକ୍ଷରରେ ବାରମ୍ବାର ପଢ଼ିବା ଦୁର୍ବଳତା କେଉଁ ଲେଖକର ନଥାଏ ? ଯେତେ ଦୂର ଜାଣୁ, ଦାସେ କବି ବା

ଲେଖକ ନୁହନ୍ତି । କିନ୍ତୁ ସେ ଏତକ ସହଜରେ ମାନି ନେବାକୁ ପ୍ରସ୍ତୁତ ନୁହନ୍ତି । ଗମ୍ଭୀର ଭାବରେ ବସି କବିତା ଲେଖିବାକୁ ହୁଏ, ଗୋଳମାଳ କଲେ ପଦ ପଇଟେ ନାହିଁ । ଶୁଣି ସେ ଏତକ ଅଭିନୟ କରନ୍ତି । କାଗଜରେ ଗୁଡ଼ାଏ ଗାର ପଡ଼େ । ଆରେ କ'ଣ ଲେଖିଛୁ ପଢ଼ିଲୁ ? ଦାସେ ପଢ଼ନ୍ତି—

ବଗ ଯାଇଥିଲା ବଗ ବଣକୁ ଲୋ ବଗୁଲି କାଟଇ ବେଣା
କୁଆ ଚେଢ଼ପୋ ମାଇଲା ବାଟୁଳି ଛିଡ଼ିଗଲା ଦୁଇ ଡେଣା
ମୋ ବଗୁଲି କାନ୍ଦେନା ଲୋ,
ତୋ ମାଆ କାଲି ଆସିବ ସିନା ?

'ହଇରେ ବାହାପିଆ, କୋଉଠି କବିତା ଲେଖିଛୁ, କାହିଁ ?' ଦାସେ ହସି ହସି କହନ୍ତି— ହେଇଟା ପରା କବିତା ?

ଦାସେ ଭାରି ଗଳ୍ପପ୍ରିୟ; ଏଇଟା ତାଙ୍କର ବୈଶିଷ୍ଟ୍ୟ ନୁହେଁ । ସବୁ ପିଲା ଗଳ୍ପ ଭଲ ପାନ୍ତି । ତେବେ ଅନ୍ୟମାନଙ୍କ ଭଳି ସେ ଜଣେ ଉଦାସୀନ ଶ୍ରୋତା ନୁହନ୍ତି, ସଚେତନ, ସୁଚତୁର ଗଳ୍ପ ସମାଲୋଚକ । ଟାଙ୍ଗରୁ ଶିରା କାଟି ବସନ୍ତି । 'କଲୁରୀ ବେଣ୍ଟ' କଥାରେ ଅଛି—ମାମୁଁଘର କଟୁରୀରେ ଗ୍ରେଟେ ଦେବ, ଢ଼ାଳିଲେ କଲରା ଗଛ ବଢ଼ିଯାଏ, ଫୁଲ ଫୁଟିଯାଏ, ଫଳ ଫଳିଯାଏ । ଦାସେ କହନ୍ତି ବାପା, ତୁମେ ଆମ କଖାରୁ ଗଛକୁ ସେମିତି ଉଗ୍ରଉ ନାହଁ କାହିଁକି ? ସେ ପୁଣି ପଗ୍ଚରନ୍ତି—କୁଆ କଣ କଥା କହେ ? ସେ କେମିତି କୂଅକୁ ପାଣି ମାଗିଲା ? —ଦେ କୂଅ, ଦେ ପାଣି, ଧୁଏ ଅଣ୍ଟ, ଧାଇଁ ଧାଇଁ ଖାଏ କଲୁରୀ ବେଣ୍ଟ । ଗଛରେ କ'ଣ ମଣ୍ଡା ପିଠା ଫଳେ ? ବୋଉ ଗଛରୁ ତୋଳି ନ ଆଣି ଘରେ ପିଠା କରୁଛି କାହିଁକି ? ସେ କହେ—ରଜା ପୁଅ ଯୋଉ ମନ୍ତ୍ର କରିଦେଲାକ୍ଷଣି କୁହୁଡ଼ି ହୋଇ-ଗଲା, ଗୋଡ଼ି ପକାଇ ଦେଲାକ୍ଷଣି ପାହାଡ଼ ହୋଇଗଲା, ଅଙ୍ଗାର ପକେଇ ଦେଲା କ୍ଷଣି ନିଆଁ ଜଳି ଉଠିଲା, ବାପା ମତେ ସେଇ ମନ୍ତ୍ର ଶିଖାଇ ଦିଅ । ମତେ ଗୋଟିଏ ମନପବନ ଡଙ୍ଗା କିଣି ଦିଅ, ଯାହାକୁ ମାଡ଼ିଲେ ପାହୁଣ୍ଡକେ କୋଣେ ଯାଇ ପାରିବ । ମୁଁ କହେ—ଆରେ, ଏସବୁ ଗପ । ଦାସେ ପଗ୍ଚରନ୍ତି—ଗପ କ'ଣ ମିଛ ? ତମେ ମିଛ କହ, ବାପା ?

ସବୁବେଳେ ଦାସଙ୍କ ମୁହଁରେ କିଛି ନା କିଛି ପ୍ରଶ୍ନ, ଏକ ନୁହେଁ, ଦୁଇ ନୁହେଁ, ସହସ୍ର । ଉଦିଲାବେଳେ ସୂର୍ଯ୍ୟ କାହିଁକି ଲାଲ୍ ଦିଶନ୍ତି ? ଅସ୍ତ ହୋଇ ସେ କୁଆଡ଼େ ଯାନ୍ତି ? ବର୍ଷା ହେଲେ ନଈ କାହିଁକି ଓଦା ହୋଇ ଯାନ୍ତି ନାହିଁ ? ଆମେ ଗ୍ଲଲେ ଜହ୍ନମାମୁଁ କାହିଁକି ଆମ ସଙ୍ଗେ ସଙ୍ଗେ ଯାଏ ? ଆକାଶ କାହିଁକି ନେଳୀ

ହୁଏ ? ବଜୁଲି ବର୍ଷାରେ ନିଭଯାଏ ନାହିଁ କାହିଁକି ? ଆଲୁଅ ପାଖକୁ ଗଲେ ଛାଇ ତ ଛୋଟ ହୋଇଯାଏ, ପୁଣି ଦୂରକୁ ଗଲେ କପରି ବଡ଼ ହୋଇଯାଏ ? ଖଣ୍ଡି ଆଭୂତ ଦେହରେ ଏତେ ବଳ କେମିତି ହେଲା ? ସେ କ'ଣ ବେଶୀ ଦୁଧ ପିଏ ? ପ୍ରଜାପତିର ପକ୍ଷୀ ଅଛି, ଚଢ଼େଇର ପକ୍ଷୀ ଅଛି, ମଣିଷର ପକ୍ଷୀ ନାହିଁ କାହିଁକି ? ଗଛକୁ ଗଛରେ ଡର ମାଡ଼େ ନାହିଁ କାହିଁକି ? କୁକୁଡ଼ା ମୁଣ୍ଡରେ ମନ୍ଦାର ଫୁଲ ଫୁଟିଛି କେମିତି ? ସଞ୍ଜ ମେଘ ଦେଖି କହେ, ବାପା, ଆକାଶରେ କିଏ ନିଆଁ ଲଗାଇ ଦେଲା ? ଆକାଶ ତ ପୋଡ଼ି ଯିବ, ଆଉ ଜହ୍ନମାମୁଁ ଉଇଁବ କେମିତି ? ଏମିତି ସେ ଅନବରତ ପ୍ରଶ୍ନ ପଚାରେ । ପଚାରି ପଚାରି ଆକ୍ରାନ୍ତ କରେ । ବେଳେବେଳେ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ନ ପାରି ପାଠ ଆୟୁ ନଥିବା ଅବଧାନଙ୍କ ପରି କହେ—ବଡ଼ ହେଲେ ପଢ଼ିବୁ । ପ୍ରଶ୍ନର ପୁନରୁକ୍ତିରେ ବେଳେ-ବେଳେ ବିରକ୍ତିରେ ଉତ୍ତର ଦିଏ । ଏଇଟା କି ଫୁଲ ? ପ୍ରଫୁଲ୍ଲ । ଏଇଟା କି ଗାଡ଼ି ? ଅଗାଡ଼ି । ଏଇଟା କି ପୋଲ ? ମର୍କୋପୋଲୋ । ଏଇଟା କି ପନି ? ଚଟିପନି । ଏଇଟା କି କାଠ ? ତେନ୍ତୁଳି ମାଠ ଇତ୍ୟାଦି ।

ରେଳଗାଡ଼ି ଦେଖିବା ଦାସଙ୍କର ଗୋଟିଏ ନିଶା, କି ଗାଡ଼ି କୋଉଠୁ ଆସୁଛି, କୁଆଡ଼େ ଯାଉଛି, କେମିତି ଚାଲେ, କାହିଁକି ଛେଇ ଛେଇ ଶବ୍ଦ କରେ, ସରୁ ଲାଇନରୁ ଚାକି ତଳକୁ ଖସିଯାଏ ନାହିଁ କାହିଁକି ? ଏମିତି କେତେ ପ୍ରଶ୍ନ କରେ । ଘରକୁ ଆସି ସମୁଦାୟ ଘରକୁ ଗୋଟିଏ ରେଳଗାଡ଼ି ବୋଲି କଳ୍ପନା କରେ । ବିଜୁଳିବତି ଗାଡ଼ିର ଆଲୁଅ, ଝରକା ଗାଡ଼ି ଝରକା, ଚଉକି ଟ୍ରେଲ ବସିବା ଜାଗା, ତୁଣ୍ଡରେ କହେ—ସି—ସି—ସି, ଛେଇ ଗୁଳ୍ ଗୁଳ୍, ଛେଇ ଗୁଳ୍ ଗୁଳ୍ । ବେଳେବେଳେ ଦିଆସିଲିକୁ ଦିଆସିଲି ଯୋଖି ଗାଡ଼ି କରେ, ଫୁଲ ହୁଏ ଆଲୁଅ, ଖଣ୍ଡିଏ କାଠି ଧୂଆଁ ନଳ । ତୁଣ୍ଡରେ ସିଟି ଦେଇ ପଛରୁ ଠେଲେ, ଗାଡ଼ି ଖେଳ ତାର ନିତ୍ୟ ନୈମିତ୍ତିକ ଖେଳ ।

ଷ୍ଟିଭେନ୍‌ସନ୍‌ଙ୍କ ପରି ସେ ଭାତକୁ ପାହାଡ଼, ଡାଲିକି ନଈ, ଶାଗକୁ ଜଙ୍ଗଲ କଳ୍ପନା କରେ, ଗୋଲ୍ ଲମ୍ବା ଚକିଆକୁ ଟିଫିନ କ୍ୟାରିୟର ମନେ କରି ଜଳଖିଆ ଦେବା ନାଆଁରେ ତୁଚ୍ଛା ହାତଟା ଆମକୁ ଦିଏ । ଏଇଟି ଟିକି ଭଉଣୀ ଗୁଣ୍ଡା, ଏଇଟି ନାଲି ସୂର୍ଯ୍ୟ ଗୁଣ୍ଡା, ଏଇଟି ଦେଢ଼ଉଇ ଗୁଣ୍ଡା, ଏଇଟି ବାପା ଗୁଣ୍ଡା, ଏଇଟି ଅଜା ଗୁଣ୍ଡା କହି ଗୁଣ୍ଡା ବୋଲିଦେଲେ ସେ ଖାଏ । ଏ ଗୋଟିଏ ପାରମ୍ପରିକ ଗୀତ, ବୋଉ ଶିଖାଇଛନ୍ତି ।

ଛବି ଦେଖା, ଛବି ଅଙ୍କା କୁନାର ଗୋଟିଏ ବିଳାସ, ହୁଏତ ଶାନ୍ତି-ନିକେତନର ପ୍ରଭାବ ଏ । କାଛ, ଚଟାଣ, ଖାତା ଯୋଉଠି ଦେଖିବ କଚ୍ଛ ଅଙ୍କନ ।

ଏ ଛବି ଏକାନ୍ତ ମୌଳିକ । ପୃଥିବୀର କୌଣସି ଆକୃତି ସହିତ ଏହାର ସାମଞ୍ଜସ୍ୟ ନାହିଁ । ଭଗବାନଙ୍କ ସୃଷ୍ଟିରେ କାହା ସହିତ ହୁଏତ ନ ଥିବ । ସବୁ ପ୍ରତୀକାପ୍ଟ; ସୃଷ୍ଟିଛଡ଼ା । ଏହାହିଁ ଶିଳ୍ପୀର ଗୌରବ । କୁନା ଶିଳ୍ପୀ ହେବ ? ନା ଏ ଗ୍ରାହକହୀନ ଦେଶରେ ବଡ଼ ଦୁଃଖ ପାଇବ ସେ । ଡ୍ରଇଁ ମାଷ୍ଟର ! କଳାରେ ବିଶାରଦ ହୋଇ କଳାପଟାରେ ଅଙ୍କ ବାଇଗଣ ଆଙ୍କିବ ?

କୁନାର ପ୍ରକୃତିପ୍ରେମ, କୌତୁକ କଥାରୁ କବିତାର ଆସ୍ୱାଦ ମିଳେ । ବୋଧ ହୁଏ, କଣେ କବି ହେବ । ଜୀବନଯାକ ମରି ମଲା ପରେ ଅମର ହେବ ? ଆରେ ନା, ନା, ଏ କବିତାର ଯୁଗ ନୁହେଁ; ଅନାଦରରେ, ଅନାହାରରେ ହଂସା ଉଡ଼ିଯିବ ।

କଳ କବ୍‌ଜା ପ୍ରତି ଅଦ୍ଭୁତ ଆଗ୍ରହ, କୁନା ଇଞ୍ଜିନିୟର ହେବ ? ନଦୀ ଯୋଜନା କାର୍ଯ୍ୟକାରୀ ହେଉଛି, ଆହୁରି ହେବ । ରାସ୍ତା, ଘାଟ, କଳକାରଖାନାରେ ଭାରତର ରୂପାନ୍ତର ହେବ । ପ୍ରତିଭାର ହାତ ନବଭାରତ ନିର୍ମାଣରେ ଲାଗୁ, କୁନା ଇଞ୍ଜିନିୟର ହେଉ ।

ଇଞ୍ଜିନିୟର, ଡାକ୍ତର, ଓକିଲ, ବ୍ୟବସାୟୀ । ଉପାର୍ଜନର ବହୁ ପନ୍ଥା ପଡ଼ିଛି । ସେ ଯାହା ହେବ ହେଉ, ଦୁଃଖ ନାହିଁ । ମଣିଷ ହେଉ । ଏଥିମଧ୍ୟରୁ କିଛି ନୋହୁ ପଛେ ମଣିଷ ହେଉ । ତାଇରୀର ଉପସଂହାରରେ କୁନାର ଗୋଟିଏ ଖେଳଣା ହଜା କାହାଣୀ କହିବି । ତାମି କୁନାର ସାନ ଭଉଣୀ । ଯା ସଙ୍ଗେ ସେ ଆଉ ଦୁଇଟି ନାଆଁ ଦେଇଛି—ଗଦର ପିଟି, ମୁଁଷିଏଁ । ନିରର୍ଥକ । ପ୍ରଥମଟି ଅସୁନ୍ଦର ସହିତ ସାମଞ୍ଜସ୍ୟର ସୂଚନା ଦେଉଛି, ଦ୍ୱିତୀୟଟି ଫରାସୀ ନାମ ପରି ଶୁଭୁଛି । ଛାନ ଯାହାର ଅଛି 'ତାମି', ତାକ ନାମକୁ ରୁଚିକର । ଆମେ କୁନାର ଏଇ ସୃଷ୍ଟିଶକ୍ତିକୁ ସମ୍ମାନ ଦେଇଛୁ । ତାମି ଉଇଁଲା ଦିନୁ ସ୍ନେହ ଦ ଧାରୀ ହୋଇ ବୋହୁଛି । ତାମି ଏ ଯୁଗର ଝିଅ, ଅଧେ ସ୍ନେହ ନ୍ୟାଯ୍ୟତଃ ତାର ପ୍ରାପ୍ୟ । କୁନା କୋଳଛଡ଼ା ହୋଇନାହିଁ, ତାମି କୋଳରେ ଲଗିଲା । ଏ ଦାଉଘାତ ସହିବାର ଧୈର୍ଯ୍ୟ ତାର ନାହିଁ । ତାର ଈର୍ଷା—ମୋ ବାପାକୁ କାହିଁକି ସେ 'ବାପା' ବୋଲି ଡାକିବ ? ତାକୁ ଚିମୁଟି କହାଏ, ଖେଳାଉ ଖେଳାଉ ଗୁପୁଡ଼ାଟାଏ ମାରେ । ତାମି କାନ୍ଦେ—କାନ୍ଦେ । କାନ୍ଦରେ ଦୁର୍ବୋଧ ଭାଷାରେ ନାଲିସ କରେ —ବୋଉ ଭାଇନା ମୋତେ ମାଇଲା । ଦାସଙ୍କ ପିଠିରେ କିଛି ଉତ୍ତମ ମଧ୍ୟମ ହେଲା ପରେ ଫଳ ହୁଏ ଓଲଟା । ସେ ବେଶୀ ମାରେ । ତା ଖେଳନା ଧଇଲେ ମାରେ, ବହି ଛୁଇଁଲେ

ମାରେ । ଫେର୍ ମନ ହେଲେ କାଖାଏ, ହସାଏ, ଖେଳାଏ, ନଚାଏ, ଗେଲ କରେ ।

ତାନୀ ହଠାତ୍ ଦିନକ ଜରରେ ମରିଗଲା । ତାକୁ ସକାଳୁ ନ ଦେଖି କୁନା ବାଉଳା ହୋଇଗଲା, ଅସଂଖ୍ୟ ଜାପାନୀ ସଖୀ କଣ୍ଢେଇ ମଧ୍ୟରେ ସେ ଥିଲା ତାର ପ୍ରଧାନ ଖେଳଣା । ତାକୁ ଦେଖି ଗୁରୁଣ୍ଡି ଗୁରୁଣ୍ଡି ଦଉଡ଼ି ଆସୁଥିଲା—ଲାଲ୍ ଗୁଲୁ ଗୁଲୁ ମାଢ଼ିରେ ଦରଫୁଟା ଲିଆ ପରି ଦିଓଟି ଦାନ୍ତ, ଦ୍ଵିତୀୟା ଚନ୍ଦ୍ରମା ପରି ସେଥିରେ କଅଁଳ ହସ । ଖାଲି ଏତିକି ଉପହାର ଦେବା ଲାଗି ଦଶମାସ ଗର୍ଭ କଷ୍ଟ ସହି ସେ ପୃଥିବୀକୁ ଆସିଥିଲା । କୁନା ଏବେ ନିଃସଙ୍ଗ, ଗମ୍ଭୀର, ତା ଖେଳର ଉତ୍ସମୁଖ ହଠାତ୍ ଯେପରିକି ଶୁଖିଗଲା, ନିଭିଗଲା ତା ଉତ୍ସବମନ୍ଦିରର ଦୀପାବଳୀ ।

—o—

# ପରିଚୟ

ନାମ ମନେ ରଖିବାରେ ଯେଉଁମାନେ ଅଧମ, ମୁଁ ସେମାନଙ୍କ ଶିରୋମଣି । ନାମ-ନ ଜଣା ବନ୍ଧୁଙ୍କୁ ଦେଖିଲେ ବଡ଼ ଶଙ୍କାଗ୍ରସ୍ତ ହୁଏ, କିନ୍ତୁ ସୌଜନ୍ୟର ଆବରଣ ମଧ୍ୟରେ ଆତ୍ମଗୋପନ କରି ଯେପରିକି ଆକସ୍ମିକ ବିପଦରୁ ରକ୍ଷା ପାଏ । ହସେ, ଯେପରି ପରିଚିତ ବନ୍ଧୁଙ୍କ ସଙ୍ଗେ ହୃଦୟ ଖୋଲି ହସିବାର କଥା । ପ୍ରାଣକୁ ସରଳ ଓ ହୃଦୟକୁ ସାବଲୀଳ କରେ । ଡୁବାଳୀ ସମୁଦ୍ରରୁ ମୁକ୍ତା ଆହରଣ କଲି ପରି କୁଶଳ ପ୍ରଶ୍ନ ଛଳରେ ଯଦି ବନ୍ଧୁଙ୍କ ପରିଚୟ, ପରିବେଶ, ଗତି ପ୍ରଗତିରୁ ନାମଟା ଠଉରାଇ ହୁଏ, ତେବେ ଇଉରେକା ! ନୋହିଲେ ତାଙ୍କୁ ଏମିତି ହସଖୁସି, ଦରଦ ଦମାକରେ ବିଦାୟ ଦିଏ, ଯେମିତି ଧାରଣା ହେବ—ମୋତେ ତାଙ୍କ ନାମଧାମ ବିକାଶ, ବିଜୟ ସବୁ ଜଣା !

କିନ୍ତୁ ଏକା କୌଶଳ ସବୁ ପରିସ୍ଥିତିରେ ଚଳେନାହିଁ । ଦୁର୍ବଳତାକୁ ଘୋଡ଼େଇବାକୁ ଚେଷ୍ଟା କଲେ ତାହା ସ୍ପଷ୍ଟତର ହୁଏ । ଦିନେ ସେଇଆ ହେଲା । ମୋର ପ୍ରିୟତମ ବନ୍ଧୁଙ୍କ ସହିତ ଜଣେ ମହାପୁରୁଷଙ୍କୁ ଭେଟିବାକୁ ଯାଇ ଦୈବାତ୍ ଜଣେ ଦରଚିହ୍ନା କଲେଜ ବନ୍ଧୁଙ୍କ ହାବୁଡ଼ରେ ପଡ଼ିଗଲି । ହସଖୁସିର ଚକ୍କାର ଚମକ ପରେ ସାଥୀ ବନ୍ଧୁ କହିଲେ,—ଭାଇ, ଆମକୁ ପରିଚିତ କରେଇଦିଅ । ଏ କର୍ତ୍ତବ୍ୟରେ ଆଗରୁ ସଚେତନ ହେବାର ଥିଲା । ବାସ୍ତବିକ୍ ମୁଁ ଭଦ୍ରତା ରକ୍ଷା କରିନାହିଁ । ପହିଲେ ସାଥୀ ବନ୍ଧୁଙ୍କୁ ଚିହ୍ନାଇଲି, ତାପରେ ମୁଣ୍ଡ ନଇଁଗଲା । ଆଃ, ମନେ ପଡ଼ୁନାହିଁ, ନାମଟା ଜିଭ ଅଗରେ ଅଟକିଛି । ରାମ, ଶ୍ୟାମ, ଗୋବିନ୍ଦ, ଗୋପାଳ ? ଏଗୁଡ଼ାକ ନିତାନ୍ତ ପୁରୁଣା ନାମ । ରାଧୁ, ମଧୁ, ସିନ୍ଧୁ, ବନ୍ଧୁ ? କେଡ଼େ ମରହଟ୍ଟୀ ଲୋକଟାଏ ମ ମୁଁ ? ବନ୍ଧୁ ମୋର କେଡ଼େ ଆଧୁନିକ । କିଶୋର-କୁମାର, ଦୀଲିପ, ଦୀପକ ? ନାଃ, ଏମିତି ଦିନଯାକ ଜପିଲେ ବି ନାମଟା ଆସିବ ନାହିଁ । ମନ ଭିତରୁ ବିଲକୁଲ୍ ନିଶ୍ଚିହ୍ନ ହୋଇ ଯାଇଛି । ବାଆଁରେଇ ଅନ୍ୟ କଥା ପକେଇଲି । ସାଥୀ ବନ୍ଧୁ ଗମ୍ଭୀର ହୋଇ କହିଲେ—ଏମିତି ଅଧାପନ୍ତରିଆ ପରିଚୟ କରେଇବା କ'ଣ ଠିକ୍ ? କଥା ସରିଗଲାରେ ! ଆଚ୍ଛା ଲୋକ ତ ଇଏ ! ଦେଖୁଛନ୍ତି ଚନ୍ଦନ, ପୋଛୁଛନ୍ତି କାଠ ! ଲଜ୍ଜାରେ ମୁଁ କେଡ଼େ ଛୋଟ ହୋଇ ଯାଇଥାଏ । ଆତ୍ମମର୍ଯ୍ୟାଦା ଉପରେ ବାଧା ଆସିଲା ବୋଧହୁଏ । କଲେଜ ବନ୍ଧୁ ପଞ୍ଚମକୁ ଉଠିଲେ । ଭାରି ବଡ଼ଲୋକ ତ, ମୋ ନାମ ସୁଦ୍ଧା ମନେ ରଖିନାହାନ୍ତି ? ତାପରେ ଅବିରାମ ଗତିରେ କ୍ରୂର ବାକ୍ୟବାଣରେ ମୋତେ ଜର୍ଜରିତ କରିବାକୁ

ଲାଗିଲେ । ହୃଦୟଟି ଯେପରିକି ରକ୍ତାକ୍ତ ହୋଇଗଲା ! ଅବଶ୍ୟ ଏ ପରିସ୍ଥିତିରେ ସେ ଯଦି ଆଗଭର ହୋଇ ନିଜକୁ ପରିଚିତ କରେଇ ଦେଇଥାନ୍ତେ, ତାଙ୍କ ଖୋଲାଆଡ଼ ମନୋଭାବର, ଉଦାରତାର ଭୂରି ଭୂରି ପ୍ରଶଂସା କରିଥାନ୍ତି । ତା ନୋହିଲା ।

ଥରେ ଅଧେ ଜୋଡ଼ାଘାଟକୁ ବୁଲିଯାଇ ଜଳର କଲୋଚ୍ଛ୍ୱାସ ସହିତ ତାଙ୍କର ଗୋଧୂଳି ରାଗିଣୀ ଶୁଣିଛି । କ୍ଲାସ୍‌କୁ ଗଲାବେଳେ ବହୁ ବାର ନମସ୍କାର ବିନିମୟ ହୋଇଅଛି । ସେ କେବେ ମୋର ଅନ୍ତରଙ୍ଗ ନ ଥିଲେ । ବୋଧହୁଏ ସେ ମୁଖରେ କିଛି ଆକର୍ଷଣୀ ଶକ୍ତି ଥିଲା । ବହୁ ସ୍ମିତ, ନୋଧିତକ୍ତ, ଗମ୍ଭୀର, ଛବିଳ ମୁଖର ଅରଣ୍ୟରେ ତା ଏବେ ବି ନିଭି ନାହିଁ । ମୁଁ ତାଙ୍କୁ କେବେ ସୁଖ ପାଇନାହିଁ । କିମ୍ବା ସେଥିଲାଗି ଅବକାଶ ପାଇନାହିଁ, ତାଙ୍କ ସହିତ କେବେ ସୁଖଦୁଃଖ ହୋଇନାହିଁ କିମ୍ବା ସେଭଳି ବିଶ୍ରମ୍ଭାଳାପର ପାଣି ସେ ନ ଥିଲେ । ମୋ ମନ—ମନ୍ଦିରର ବାହାରେ ଜଣେ ସାଧାରଣ ଆଗନ୍ତୁକ, ଦେଖିଲେ ପଚ୍ଚରନ୍ତି—ଭଲ ଅଛ ? ଭଲ ନ ଥିଲେ ବି ଅଭ୍ୟସ୍ତ ବିଦ୍ୟା ପ୍ରଭାବରେ ହଁ ଭଣିଦିଏ । ଏଇ ମାମୁଲି ଭାବରେ ମୁଁ ତାଙ୍କୁ କୁଶଳ ପ୍ରଶ୍ନ ପଚ୍ଚରେ । ନ ଥିଲା ନିବିଡ଼ ବନ୍ଧୁତା, ନିରାଟ ଶତ୍ରୁତା । ତଥାପି ସେ ମୁଖଟି କାହିଁକି ମୋର ମୁଖସ୍ଥ ହୋଇ ଯାଇଛି ।

ମୋତେ ବାରମ୍ବାର ଶିରବିଦ୍ଧ ହେବାର ଦେଖି ସାଥୀ ବନ୍ଧୁ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । କହିଲେ—ନାମ ମନେ ରଖିବାଟା କ'ଣ ମଣିଷର ଉତ୍କୃଷ୍ଟ ପରିଚୟ ? ଏପରି ଶତଶତ ନାମ ମନରେ ପଶୁଛି, ତାର ଚାପରେ ପୁରୁଣା ନାମସବୁ ଉଭେଇ ଯାଉଛି । କଳହ କରି ଆପଣ ଶତଶତ ମନରେ ନାମଲିପି ଖୋଦନ କରିବେ ? ଯାହା ଜୀବନରେ କୌଣସି ମହତ୍ତ୍ୱର ଲକ୍ଷ୍ୟ ନାହିଁ, ସେ ଏପରି ସାମାନ୍ୟ କଥାରେ କଳହ କରେ । ଏପରି ଅନୁଦାର ବ୍ୟକ୍ତି ସହିତ ପରିଚିତ ହେବା ଲାଗି ମୋର ତିଳେ ମାତ୍ର ଲୋଭ ନାହିଁ । ବନ୍ଧୁମାନେ ମନେ ରଖିବା ଭଳି କି କାର୍ଯ୍ୟ ଆପଣ କରିଛନ୍ତି ? ଯେଉଁ ନାମ ପଛରେ କୌଣସି ବ୍ୟକ୍ତିତ୍ୱ ବୈଭବ ନାହିଁ, ମହତ୍ତ୍ୱ ମହିମା ନାହିଁ, ସେ ନାମ ଏକ କିରଣଶୂନ୍ୟ ଦିବସଚନ୍ଦ୍ର । ସେ ମନେ ରଖି ନାହାନ୍ତି, କାରଣ ଏ ନାମଟି ତାଙ୍କର ଓ ତାଙ୍କ ପରି ସହସ୍ରଙ୍କର ସମ୍ପୂର୍ଣ୍ଣ ଅନୁପଯୋଗୀ । ଏଥିରେ ଲଜ୍ଜିତ ନ ହୋଇ ତାଙ୍କୁ ଅଭିଯୁକ୍ତ କରିବା, ଔଦ୍ଧତ୍ୟର ଏକ ପରିଭାଷା ଛଡ଼ା ଆଉ କ'ଣ ହୋଇ ପାରେ ? ବନ୍ଧୁ ମୋତେ ଟାଣି ନେଇ ଅନ୍ୟତ୍ର ଚାଲିଲେ ।

ଧୂସରତମ ଅତୀତର ସାଥୀ, ସ୍ୱପ୍ନ ଯୁଗର ବନ୍ଧୁ, ଏକା ସାଙ୍ଗରେ ବାଲିଘର ତୋଳିଛୁ, ଖେଳିଛୁ ଡୁଡୁ, ବୋହୂଚ୍ଛୋରି, ଡାଳିମାକୁଡ଼, ଡାବଲପୁଅ; ଶୀତ ଦିନେ

ନଆଁ ପୋହଁନ୍ତି, ଖରାଦିନେ ପାଣିରେ ବୁଡ଼ନ୍ତି । ମଗ୍ନମନ ହୋଇ ନାଚନ୍ତି, କାନ୍ଦି ହସନ୍ତି । କାହାଣୀ ଯୁଗର ରଙ୍ଗୀନ୍ କୁହୁଡ଼ିରେ ଦିଶନ୍ତି ସେଇ ସ୍ୱପ୍ନସାଥୀ, ଅନ୍ତରଙ୍ଗ ବନ୍ଧୁ । ପ୍ରତିଯୋଗିତା, ସ୍ୱାର୍ଥ, ଈର୍ଷା ସେତେବେଳେ ଦୂରେଇ ଦେଇ ନ ଥିଲା । ଅର୍ଥ, କ୍ଷମତା ହୋଇ ନ ଥିଲା ଅନ୍ତରାୟ । ଜୀବନ ଥିଲା ଅକ୍ଷୁଣ୍ଣ, ଅଖଣ୍ଡ, ସୌହାର୍ଦ୍ଦ୍ୟ, ଜୀବନ୍ତ । ଆଜି ଏମାନଙ୍କୁ ହରେଇ ଜୀବନର ଯଥା ସର୍ବସ୍ୱ ହରାଇଛି । ମୋର ଅନ୍ତରତମ ବନ୍ଧୁ ସଂସାରରୁ ଚିରବିଦାୟ ନେଇଛି । ଥିଲା ଏତେ ସରଳ ଯେ ଗଛରେ ଫୁଲ ହୋଇ ଫୁଟିବାକୁ ଯୋଗ୍ୟ । ଜଣେ ଦୁରାରୋଗ୍ୟ ଯକ୍ଷ୍ମା ରୋଗରେ ପୀଡ଼ିତ, ଜଣେ ଦୁଇଟି ଗୋଦର ଗୋଡ଼ ଘେନି ଅଚଳ, ଜଣେ କଲିକତାର ଚଟକଳରେ ପଶିଛି, ଜଣେ ହୋଇଛି ସୂପକାର । ଜଣେ ଆସାମର ଚା' ବଗିଚାରେ ଯୌବନର ଶେଷାଂଶ ଝଡ଼େଇ ଦେଉଛି, ଜଣେ ହୋଇଛି ନିତାନ୍ତ ଅପ୍ରିୟ ସାହୁକାର । କର୍ମକ୍ଷେତ୍ର ସମସ୍ତଙ୍କୁ ଦୂରେଇ ଦେଇଛି । ଅନ୍ତରାୟ ଆଣିଛି ଉଚ୍ଚାସନ । ସଂକୋଚ ପ୍ରୀତି ସମ୍ଭାଷଣରେ ଆଣିଛି ବାଧା । ଜୀବନର ଏଇ ବିକଟତା ସ୍ମରଣ କରେଇ ଦିଏ ସେଇ ଉଜ୍ଜ୍ୱଳ ଅତୀତକୁ, ଯେତେବେଳେ ପରିଚିତ ସାଥୀ ମାନେ ପ୍ରାଣର ଦୋସର ଥିଲେ ।

ପରେ ଜୀବନରେ କେତେ ସଖା, ସାଥୀ ଯୁଟିଛନ୍ତି—ଯେପରି ବହୁ ଉଦ୍ୟାନରୁ ଆହରିତ ଗୋଟିଏ ପୁଷ୍ପମାଳା । ଏ ମାଳା ଛିଣ୍ଡିଛି । କିଏ କେଉଁଆଡ଼େ ଜନତାର ସମୁଦ୍ରରେ ହଜି ଯାଇଛନ୍ତି । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଚେହେରା ବଦଳିଛି, କଣ୍ଠ-ସ୍ୱର ବଦଳିଛି । ତେଣୁ ବାଟ ଭାଙ୍ଗି ଯାଇଛି । ମୋ ଅନ୍ତରର ପରିଚିତ କିଶୋର, ଚିରକିଶୋର, ତାର କ୍ଷୟ ନାହିଁ, ବୃଦ୍ଧି ନାହିଁ । ସେ ଏକ ଚିରନ୍ତନ ସତ୍ୟ । ତା ନିକଟରେ ଯୌବନର ପୂର୍ଣ୍ଣାଙ୍ଗ ରୂପ ମିଥ୍ୟା । ଏହି କିଶୋରର ହସଖୁସି, ଖେଳମେଳ ଅନ୍ତରରେ ଛପି ହୋଇ ରହିଛି, ଚିତ୍ତର ଏ ଲିପି ଯେପରିକି ଲିଭିବାର ନୁହେଁ ।

ହାଇସ୍କୁଲ ବିଶେଷତଃ କଲେଜ ଜୀବନରେ ବିବିଧ ପୁସ୍ତକ ଅଧ୍ୟୟନ, ସଭାସମିତି, ଥିଏଟର ସିନେମା ପ୍ରଭୃତି ନାନା ଦିଗରେ ମନ ବିକ୍ଷିପ୍ତ ହୋଇ ପଡ଼େ । ତେଣୁ ସୌଖ୍ୟ କରିବାର ସକ୍ କିଛିତ୍ ଊଣା ପଡ଼ିଯାଏ । ଅଧିକାଂଶ ପାନଖିଆ, କୁଶଳ—ପ୍ରଶ୍ନ ପଚରା ବନ୍ଧୁ—ପରିଚୟ ଗୁକ୍ଷୁଦ୍ର, ଆନ୍ତରିକ ନୁହେଁ । ଏ ସୌଖ୍ୟ ସୌଜନ୍ୟ ମଧ୍ୟରେ ସୀମିତ ।

ଯେଉଁମାନେ ମୋ ବ୍ୟଥାରେ ସମବ୍ୟଥୀ ଥିଲେ, ଶଯ୍ୟାଗତ ହେଲେ ନିଦ୍ରା ତ୍ୟାଗ କରି ସେବାଶୁଶ୍ରୂଷା କରୁଥିଲେ, ମୋ ମନରେ ଫୁଲ ଫୁଟିଲେ ଯେଉଁମାନଙ୍କ

ଅନ୍ତର ପୁରଭିତ ହେଉଥିଲା, ଯେଉଁମାନଙ୍କ ଚରିତ୍ର ମହତ୍ତ୍ୱ ଆଉ ଦକ୍ଷତା ମୋତେ ଚକିତ ଚମତ୍କୃତ କରୁଥିଲା, ସେମାନଙ୍କ ସଂଖ୍ୟା ଅତି ଅଳ୍ପ, ଆମେ ଥିଲୁ ବନ୍ଧୁଦେଶୀ, ଏକପ୍ରାଣ, ରକ୍ତସମ୍ପର୍କୀୟ ନୋହୁ, ପ୍ରାଣସମ୍ପର୍କୀୟ, ଶଉଚରେ ଦରିଦ୍ର, ମନରେ ସମୃଦ୍ଧ । ଆଜି କର୍ମକ୍ଷେତ୍ରରେ ବିଚ୍ଛିନ୍ନ ହେଲେହେଁ ଏମାନେ ଅନ୍ତରରେ ଚିରପରିଚିତ ହୋଇ ରହିଛନ୍ତି ।

କର୍ମକ୍ଷେତ୍ରରେ ଆଜି ବହୁ ବ୍ୟକ୍ତି ପରିଚିତ । ଅସଲି ବନ୍ଧୁଙ୍କ ଅପେକ୍ଷା ନକଲି ବନ୍ଧୁଙ୍କ ସଂଖ୍ୟା ବେଶୀ । ଏହି ତଥାକଥିତମାନେ ସୌଭାଗ୍ୟରେ ଈର୍ଷୀ, ଦୁର୍ଭାଗ୍ୟରେ ଆପାତ ଦୁଃଖୀ; ଆତ୍ମଶ୍ଳାଘୀ, ପରନିନ୍ଦା ଚର୍ଚ୍ଚାରେ ମହାପଣ୍ଡିତ; ପରଦୋଷ ସନ୍ଧାନରେ ଗବେଷକ, ପରନିନ୍ଦାଗାନରେ ବାଚଦୁକ, ପରୋକ୍ଷରେ କାର୍ଯ୍ୟହନ୍ତା, ପ୍ରତ୍ୟକ୍ଷରେ ପ୍ରିୟବାଦୀ ଏହି ବନ୍ଧୁନାମୀ, ସ୍ୱାର୍ଥକାମ ବ୍ୟକ୍ତିମାନେ ନିଜର ଅକର୍ମଣ୍ୟତାକୁ ଘୋଡ଼େଇବା ଲାଗି ପରଚର୍ଚ୍ଚାକୁ ପ୍ରଧାନ ଉପାୟ ରୂପେ ଧରିଥାନ୍ତି, ଲାଭ ଥିଲେ ଏମାନେ ମାଂସଲୋଲୁପ ଗୃଧ୍ର ପରି ଖେଞ୍ଚ ଖେଞ୍ଚ ହାଣିଥାନ୍ତି, ଲାଭ ନ ଥିଲେ ବି ସର୍ପ ପରି ଦଂଶନ କରନ୍ତି । ଏମାନେ ପ୍ରକୃତରେ ଅପରିଚିତରୁ ହୀନତର ।

ଧନୀ, କ୍ଷମତାଶାଳୀ ବ୍ୟକ୍ତିଙ୍କ ସହ ପରିଚୟ ଆପଦକୁ ଭରସା । ଏହା କେତେ ଦୂର ସତ୍ୟ, ଅନେକେ ଜୀବନରେ ହୃଦୟଙ୍ଗମ କରିଥିବେ । ନୈରାଶ୍ୟ ଓ ଆତ୍ମଗ୍ଲାନି ଅଧିକାଂଶ କ୍ଷେତ୍ରରେ ଫଳେ । ବିଭ୍ରାନ୍ତିକର ମୋହ ଭାଙ୍ଗେ । ବଞ୍ଚନାରେ ନିଷ୍ଫଳ କ୍ରୋଧ ଆସେ । ପରିଚୟର ପ୍ରେରଣା ଏ କ୍ଷେତ୍ରରେ ଦୁଇ ଦିଗରୁ ଆସି ନ ଥାଏ । ଆସନର ଅସମାନତା ଏହାର ହେତୁ । ଜଣକ ପକ୍ଷରେ ଏହା ଅର୍ଥମୂଳକ, ଆଉ ଜଣକ ପକ୍ଷରେ ଅପ୍ରାସଙ୍ଗିକ । ତେଣୁ ବୈଫଲ୍ୟ ଅନିବାର୍ଯ୍ୟ, ଉକ୍ତି ଅଭିଜ୍ଞତାରୁ କହୁଛି । ଜଣେ ହାକିମଙ୍କ ସଙ୍ଗେ ଥରେ ଭେଟିବାକୁ ଗଲି, ଅବଶ୍ୟ ଦୈନ୍ୟର ଦାଇନ ଘେନି ନୁହେଁ । ବାଲ୍ୟକାଳରୁ ସେ ପରିଚିତ; ବାରମ୍ବାର ସାକ୍ଷାତରେ ପରିଚୟ ନିବିଡ଼ଭୂତ ହୋଇଅଛି । ସ୍ୱକର୍ମକ୍ଷେତ୍ରରେ ଉନ୍ନତି କରି ସେ ବଡ଼ ହୋଇ ଅଛନ୍ତି, ମୁଁ ବି ସୋପାନ ପରେ ସୋପାନ ଅତିକ୍ରମ କରି ଚାଲିଛି । ଏବେ ହାକିମ ଗୋଟିଏ ନୂଆ ଗାଦି ପାଇଛନ୍ତି । ଶ୍ରଦ୍ଧା, ଶୁଭେଚ୍ଛା ମୋର ଦେୟ । କିନ୍ତୁ ସାକ୍ଷାତ୍ ମାତ୍ରେ ବୁଭୁକ୍ଷୁ ବ୍ୟାଘ୍ର ପରି ଗର୍ଜି ଗର୍ଜି ସେ ଆସି ମୋ ଉପରେ ଝାମ୍ପି ପଡ଼ିଲେ । ନିତାନ୍ତ ଅତର୍କିତ ଆକ୍ରମଣ । ଦି ମାତ୍ରଣ ପଚେଇ ଗଲି । ନୂଆ ଗାଦିରେ ହାକିମଙ୍କ ମିଜ୍ଜାସ୍ ବଦଳି ଯାଇଛି । ଏବେ ନ ରାଗିଲେ ସେ କଥା କହନ୍ତି ନାହିଁ । କଥା କହିଲେ ଖଣ୍ଡେ ପଟ୍ଟେ ତାଣ୍ଡବ ଦେଖାନ୍ତି । ମୋ ପରି ଅଧୀନସ୍ଥ ଲୋକର ମୌଖିକ

ଶୁଭେଚ୍ଛା ତାଙ୍କର ଗ୍ରାହ୍ୟ ନୁହେଁ । ଦାସିଆ ବାଉରିର ନଡ଼ିଆକୁ ଜଗନ୍ନାଥଙ୍କ ପରି ଗ୍ରାହକ ହେଲେ ସିନା ହେବ !

ଢ଼େର ଢ଼େର ବଡ଼ଲୋକଙ୍କ ମଟରଗାଡ଼ି ତାଙ୍କ ଦୁଆରକୁ ଆସୁଛି । କେତେ ଆଦରଅଭ୍ୟର୍ଥନା, କେତେ ପ୍ରୀତ୍ୟୁପହାର, କେତେ ଭଜନ ଜଣାଣ, କେତେ ଷୋଡ଼ଶୋପଚାରରେ ପୂଜା । ନଧ୍ୂମ ଭୁତମୁଣ୍ଡା ହୋଇ ରୁକ୍ଷା ହାତରେ ମୁଁ ଯାଇଛି । ଶ୍ରୀଷ୍ଟାନ ନମସ୍କାରଟାଏ ଜଣାଇଛି । ଏଥିରେ ପୁଣି ତାଙ୍କ ସମୟ ନଷ୍ଟ କରିଛି । ରାଗିବାରେ ତ ଯଥେଷ୍ଟ ଯୁକ୍ତି ଅଛି । କଳା ସାହେବ, ସ୍ୱାଙ୍କର ଦମାକ୍ ଜେଟ୍ ବିମାନ ପରି ଆକାଶରେ ଉଡ଼ୁଛି । ଲାଲ୍ ଆଖିରେ କ୍ଷମତା ହୁତ୍ ହୁତ୍ ହୋଇ ଜଳୁଛି । ସାକ୍ଷାତେ ପୋଡ଼ି ପକାଇବେ ! ନିଜକୁ ଧିକ୍କାର କରି ପଳାଇ ଆସିଲି ।

ତହିଁ ଆରଦିନ ହାକିମଙ୍କୁ ମୋର ସମସ୍ତ ପୁସ୍ତକ ଉପହାର ଦେଲି, ଜଣାଇଲି—ପ୍ରକୃତ କ୍ଷମତା ଆସନରେ ନାହିଁ, ବସନ ଭୂଷଣର ଘଟାଟୋପରେ ନାହିଁ, ଏ ଭଳି କୃତତ୍ୱରେ ଅଛି । ଏ କୃତତ୍ୱ ତାଙ୍କର ନାହିଁ, ଗାଦିର ତେରଦିନିଆଁ ଯମ ସେ । ସେ ନ ଦେଲେ ବି ଦେଶବାସୀ ଶ୍ରଦ୍ଧା ଦେଉଛନ୍ତି, ତାଙ୍କ କର୍ମୀଙ୍କ ତଥାକଥିତ କୁର୍ଣ୍ଣିସ୍‌ଠାରୁ ରମ୍ୟତର ଭାବରେ । ସେ ପୁସ୍ତକର ପୃଷ୍ଠା ଓଲଟାଉ-ଥିବାବେଳେ କହିଲି—ଆଜ୍ଞା, ଆପଣଙ୍କ ନିକଟକୁ ବହୁଲୋକ ଆସନ୍ତି । ମୋ ପାଖକୁ ଅଳ୍ପ ହେଉନ୍ତୁ ପଛକେ, ଆସନ୍ତି । ଏଣିକି ଯେ ଆସିବ, ତା ଉପରେ ରାଗିବ । ପଚାରିଲେ କହିବ—ମୌଳିକ ଶିକ୍ଷା ଏ, ମହା ମସ୍ତିଷ୍କରୁ ବାହାରିଛି, ଅବଶ୍ୟ ଅନୁକରଣୀୟ—'ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।' ହାକିମ ଗତକାଲିର ବ୍ୟବହାର ଲାଗି ଅନୁଶୋଚନା କରୁଥିଲେ, କି ନୂତନ ଆକ୍ରମଣ ଲାଗି ଅଧରକୁ ଶାଣିତ କରୁଥିଲେ ଜାଣେ ନାହିଁ । ଚାଲି ଆସିଲି ।

ଏବେ ସେଇ ହାକିମ ଘରେ ବସିଛନ୍ତି, ହାକିମୀ ଯିବା ସଙ୍ଗେ ସଙ୍ଗେ ୧୮୬୨ ମୁଦ୍ରା ପରି ଅଚଳ । ବିଦ୍ୟାର ସାଧନା ନାହିଁ, କେହି ବିଜ୍ଞାନ ବା ସାହିତ୍ୟ ସଭାକୁ ଡାକିବ । ଲୋକକଲ୍ୟାଣକର କାର୍ଯ୍ୟରେ କେବେ ଯୋଗ ଦେଇ ନାହାନ୍ତି, ଗ୍ରାମବାସୀଙ୍କି ତୃଣବତ୍ ମନେକରି ଆସିଛନ୍ତି । କିଏ ପଚାରିବ କାହିଁକି ? ଏବେ ଥରେ ଦେଖା ହୋଇଥିଲା; ମିଜାଜ୍ ବରଫ ପରି ଶୀତଳ, ଦୀର୍ଘାଳାପ କରିବାକୁ ବ୍ୟଗ୍ର ହୋଇ ଅଗ୍ରସର ହେଲେ । କିନ୍ତୁ ମୋର ଅବସର କାହିଁ ?

ଏମିତି ବହୁ ପରିଚୟ ଅଛି, ଶ୍ରୀ ବା ସୌରଭ ନ ଥାଏ । ଗୌରବାନ୍ୱିତ ହେବାର କୌଣସି ହେତୁ ନାହିଁ । ଯେଉଁ ପରିଚୟରେ ଅନ୍ତରର ନିବିଡ଼ ଯୋଗ

ନାହିଁ, ତାହା ପ୍ରକୃତରେ ଅପରିଚୟ । ତଥାପି ଜୀବନକୁ ସଚଳ ରଖିବା ଲାଗି ଏଭଳି ପରିଚୟକୁ ନିତାନ୍ତ ଅସ୍ୱୀକାର କରିହେବ ନାହିଁ ।

ବିବାହାଦି ବନ୍ଧୁତାରେ ଯେଉଁ ପରିଚୟ, ତାହା କ୍ୱଚିତ୍ ସ୍ୱାର୍ଥର ସୀମା ଅତିକ୍ରମ କରିଥାଏ । ବ୍ୟବସାୟୀର ଆଶ୍ଚର୍ଯ୍ୟ ଆଦର ଅଭ୍ୟର୍ଥନା ଏକ ବ୍ୟବସାୟୀ କାଇଦା, ଗରାଖଙ୍କୁ ଆକର୍ଷଣ କରିବାର ଗୋଟିଏ କୌଶଳ । ଜୀବନବୀମା ଏଜେଣ୍ଟ୍ ଉପରେ ପଡ଼ି ପରିଚୟ ଜମାଏ । ଭଗବାନ୍ ନ କରନ୍ତୁ, ଯଦି କିଛି······କୃତାନ୍ତଙ୍କୁ ଥରେ ଯଜମାନର ସମକ୍ଷରେ ନ ନଚାଇ ସେ ଛାଡ଼େ ନାହିଁ । ପାଖରୁ ଗଲେ ଯାହି । ଗାଡ଼ିରେ ଦେଖା ପରିଚୟ ଗାଡ଼ିରୁ ଓହ୍ଲାଇଲେ ଲୋପ ପାଏ । ଓକିଲଙ୍କ ସହିତ ପରିଚୟ ପର ହସ୍ତଗତ ଧନ । ଡାକ୍ତରଙ୍କ ସହିତ ପରିଚୟ ଭବିଷ୍ୟତ ଯୁଦ୍ଧ ଲାଗି ଏକ ଦୁର୍ଗ ନିର୍ମାଣ । ତାଙ୍କର ଶତ୍ରୁ ନାହାନ୍ତି ନୁହେଁ, ପ୍ରକାଶ୍ୟରେ ହେବାକୁ କେହି ସାହସ କରନ୍ତି ନାହିଁ । କାରଣ ସମସ୍ତ ପଡ଼େ, ଯେତେବେଳେ ତାଙ୍କ ହାତେ ଜୀବନ ସମର୍ପି ଦେବାକୁ ହୁଏ । ରୋଗୀ ମରିଗଲେ ଶୋକ କୋଳାହଳରେ ଡାକ୍ତର ନଗଦ ଫି ଛାଡ଼ିଯିବାର ଦୃଷ୍ଟାନ୍ତ ନିତାନ୍ତ ବିରଳ ନୁହେଁ ।

ବୈଜ୍ଞାନିକ, ଦାର୍ଶନିକ, ସେବକ, ନେତା, ସାହିତ୍ୟିକ ପ୍ରଭୃତି ଦେଶର ବରେଣ୍ୟ । ସେମାନଙ୍କ ସହିତ ପରିଚୟ ଏକ ସୌଭାଗ୍ୟ । ଏଥିରେ ମନ ଶିକ୍ଷିତ ହୁଏ, ପ୍ରାଣ ମହତ୍ କର୍ମରେ ଦୀକ୍ଷିତ ହୁଏ, ପରିଚିତ ଯଥାର୍ଥରେ ଗୌରବାନ୍ୱିତ ଅନୁଭବ କରେ । ଏହା ତାର ଆତ୍ମୋନ୍ନତିର ପାଥେୟ । ମନୁଷ୍ୟର ପ୍ରକୃତ ପରିଚୟ ସେ ନିଜେ । ଆଜୀବନ ସାଧନାରେ କାଳ ବକ୍ଷରେ ଯେ ନିଜ ମହତ୍ ଆତ୍ମାର ଶାଶ୍ୱତ ଲିପି ଲେଖି ଯାଇନାହିଁ, ସେ ପରିଚିତ ହୋଇ ବି ଚିର ଅପରିଚିତ ।



# ତପସ୍ୱୀ

ନଗରର କବି, ନେତା, ସୁଧୀ, ସେବକ ଆମ ଚକ୍ଷୁରେ ବଡ଼ ହୋଇ ଦିଶନ୍ତି । କିନ୍ତୁ ଦୁଇ ଚକ୍ଷୁର ସାର୍ଥକତା ଲାଗି ଗୋଟିଏ ଅନ୍ୟ ଦିଗକୁ ପ୍ରସାରିତ ହେବା ଦରକାର । ଭାରତୀୟ ଜନତାର ଅଧିକାଂଶ ପଲ୍ଲୀରେ, ଭାରତୀୟ ସଂସ୍କୃତିର କର୍ଣ୍ଣଧାର କେବଳ ନଗରରେ ନାହାନ୍ତି; ଲୋକକବି ମନକୁ ସରସ ରଖନ୍ତି, ଲୋକ-ସୁଧୀ ଦିଅନ୍ତି ସୁଚିନ୍ତିତ ପରାମର୍ଶ, ଲୋକନେତା ନିୟନ୍ତ୍ରଣ କରନ୍ତି ଜୀବନର ଗତି, ଲୋକସେବକ ବତାଇ ଦିଅନ୍ତି ପର ଲାଗି ପ୍ରାଣ ଢାଳିବାର ସ୍ପୃହା । ଏମିତି ପଲ୍ଲୀର ଜୀବନଯାତ୍ରା ଚାଲେ ।

ଏ ଜୀବନଚରିତ ନୁହେଁ, ସାମାନ୍ୟ ସଙ୍କେତ, ତିନୋଟି ମହତ୍ ପ୍ରାଣର; ଏମିତି ପଲ୍ଲୀର କେଉଁ କୋଣରେ କେତେ ପ୍ରଦୀପ ନିଭି ଯାଇଛି, ଆଲୋକ ସଂଗ୍ରହର ଉଦ୍ୟମ ନାହିଁ । ଏ ଏକ ଜାତୀୟ କ୍ଷତି । ଜୀବନ ଜୀବନର ଭିତ୍ତି, ଜୀବନ ଜୀବନର ଲକ୍ଷ୍ୟ । ଏଇ ବିଶ୍ୱାସରେ ଉପହାର ଦେଉଛି 'ତପସ୍ୱୀ' ।

ତିନୋଟି ଦେହ, ଗୋଟିଏ ଆତ୍ମା; ସମବୟସ୍କ ନୁହନ୍ତି, ସମାସ୍କନ୍ଧ ନୁହନ୍ତି, ଆକୃତି-ପ୍ରକୃତିରେ ଭିନ୍ନ । ତଥାପି ଏକାନ୍ତ ଅନ୍ତରଙ୍ଗ । ଯାହା କରନ୍ତି, ବିଚାର-ବିଚାର ହୋଇ । ଦିଗ୍‌ବିଜୟରେ ଗଲେ ଯାନ୍ତି ତିନିଜଣଯାକ । ପିଲାଦିନେ ଦେଖିଛୁ ସେମାନଙ୍କର କୀର୍ତ୍ତିଉଜ୍ଜ୍ୱଳ ମୁଖ, ଦେଖିଛୁ ଚିତାଭସ୍ମ । ସେମାନେ ଥିଲେ ମଣିଷ ପରି ମଣିଷ; ଗଲେ, ଦେବତା ଯେପରି ଦେଉଳ ଛାଡ଼ିଗଲେ ।

ଏବେ ଆମ ଗ୍ରାମରେ ବହୁ ଲୋକଗହଳି, ତଥାପି ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଲାଗେ । ବଗିଚା ଯାଇଛି ଭାଜି, ପୋତି ହୋଇ ପଡ଼ିଛି ପୋଖରୀ, ଠାକୁରେ ରହୁ-ଛନ୍ତି ଅପାଣିଆ । ସେ କାଳର ପାଟୁଆ ଯାତ୍ରାମେଳ ଆଉ ନାହିଁ, ପଣା ସଦାନ୍ତିଙ୍କ ଶୁଣାଯାଏ ଦରଭୁଲା ଗୀତ । ପାଟୁଆ ଗାୟକ ହୋଇଛି କମ୍ୟୁନିଷ୍ଟ୍ ନେତା । ଗାଆଁ ମେଲଣ ପଡ଼ିଆରେ କଦଳୀ ପଡ଼ିଛି, ଫୁଲ୍ ବଗିଚାରେ ଲଗା ହୋଇଛି ଚାକୁଣ୍ଡା । କେତେ ପଟ ଫଟା ଝାଞ୍ଜ, ଗିନି, କରଣଛଡ଼ା, ଚମଡ଼ାଗୁଲା ମୃଦଙ୍ଗ ପଡ଼ିଛି ଠାକୁରଙ୍କ ପଛପଟେ । ଗୀତ ଗାଉ ଗାଉ ଭାବରେ ବିଭୋଳ ହୋଇ ଯେଉଁ କୀର୍ତ୍ତନଗାୟକ ଅଚେତା ହୋଇ ପଡ଼ିଯାଉଥିଲା, ସେ ହୋଇଛି ଗାଆଁ ଟାଉଟର, ଅତ୍ୟାଚାରୀର ପରାମର୍ଶଦାତା । ତେଣୁ ବର୍ଷା ତାହାଙ୍କର ସ୍ୱର ମାଧୁର୍ଯ୍ୟ ଭିତରେ ଆଜି ଉଜ୍ଜ୍ୱଳତର

ମୂର୍ତ୍ତିରେ ଦେଖାଯାନ୍ତି ତିନି—ବୀର ମହାନ୍ତି, ରାମ ମହାନ୍ତି, ମୋ ନନା ଚନ୍ଦ୍ରମଣି ଦାଶ (ଡାକନାମ ମାଗୁଣି) । ବୀରମହାନ୍ତି, ଗୋରା ତକତକ, ମୁଣ୍ଡ ଚନ୍ଦା ଚାରିପାଖେ କାଶଫୁଲର ଘେରଟିଏ । ରାମ ମହାନ୍ତିଙ୍କର ସାବନାବଦ୍ଧ, ବଉଲଦାଢ଼ି, ଲଣ୍ଡିତ ମୁଣ୍ଡ । ମୋ ନନା ସେ ଅଞ୍ଚଳର ଦୀର୍ଘତମ ପୁରୁଷ, ଆଜାନୁଲମ୍ବିତ ବାହୁ, ଚାଲିଗଲେ ରାସ୍ତା ପୂରିଯାଏ । ସେମାନଙ୍କ ଭିତରେ ବୀରମହାନ୍ତି ବୟୋଜ୍ୟେଷ୍ଠ, ମୋ ନନା କନିଷ୍ଠ ।

ଗାଆଁର ଜୀବନ ସ୍ୱାର୍ଥଜୀବନ । ନିଜ ଘରଦ୍ୱାର, ଜମିବାଡ଼ି ଦେଖୁ ଦେଖୁ ଜୀବନ ଯାଏ । ଯୋଗିବାଗ ଶ୍ମଶାନର ଗୋଟିଏ କୂଇ ଗାତରେ ସହସ୍ରେ ଲୋକ ପୋଡ଼ା ହୋଇଥିବା କଥା ଜାଣେ । ଭସ୍ମ ଉଡ଼ିଯାଏ । ମୁଣ୍ଡର ଖପୁରି, ହାତର ଭଙ୍ଗା ହାଡ଼, ଏ କାହାର ? କିଏ ଚିହ୍ନିବ ? ସମସ୍ତେ ଯାଇଛନ୍ତି, ସେ କାଳର ଯେ କଣେ ଅଧେ ଦୋହଲୁଛନ୍ତି, ଯିବେ । ମନେ ରଖିବାର କିଛି କିଛି ସଦ୍‌ଗୁଣ ହୁଏତ ଥିଲା, ବହୁ କୀର୍ତ୍ତିକାରି ବିସ୍ମୃତ ହେବା ସ୍ଥଳେ ଅଖ୍ୟାତ ଉଖାଉ ଏଇ ସାଧାରଣଙ୍କୁ ମନେ ରଖୁଛି କିଏ ? କିନ୍ତୁ ତିନି ପ୍ରାତଃସ୍ମରଣୀୟ । ସ୍ୱାର୍ଥରେ ପରମାର୍ଥକୁ ବଡ଼ କରି ଦେଖି ସେମାନେ ସାଧାରଣରେ ଅସାଧାରଣ ହୋଇଥିଲେ ।

ତିନିଙ୍କ ମଧ୍ୟରେ ବୀରମହାନ୍ତି ଅଧିକ ଅଗ୍ରଗାମୀ, ଆକ୍ରମଣଶୀଳ, ଚତୁର । ସେ ସରଳ ଭଗବଦ୍‌ଭକ୍ତ, ପୁଣି କୁଟିଳ ଟାଉଟର । ଭଗବାନ୍‌ଙ୍କ ନାମରେ ସେ ଉନ୍ମତ୍ତ, ପ୍ରୀତି-ପ୍ରଦ, ଏଣେ ମାଲିମକଦମାଖୋର୍, ଅତ୍ୟାଚାରୀର ଖାଦିପ୍ରଦ । ରାଜାର ଖିଆଲ ତାଙ୍କର, ପୁଣି ମନ୍ତ୍ରୀର ବୁଦ୍ଧି । କାର୍ଯ୍ୟ ତାଙ୍କର ସଂକଳ୍ପକୁ ଅନୁସରଣ କରେ । ଯାହା ଜିଦ୍ ଧରନ୍ତି, କରନ୍ତି । ଅତ୍ୟାଚାରୀକ ଜବତ୍ କରିବା, ଦୀନ ଦୁଃଖୀକ ସାହାପକ୍ଷ ହେବା ଓ କୂପଖନନ, ରାସ୍ତା ନିର୍ମାଣ ଆଦି ମୁଖ୍ୟତଃ ତାଙ୍କ ଜିଦ୍‌ର ପରିସର ଭିତରେ ଆସେ । ଯେ ଶରଣ ପଶେ, କଳେ ବଳେ କୌଶଳେ ତାକୁ ରକ୍ଷା କରନ୍ତି । ଅବଧାନେ ଚାଟକୁ ଦଣ୍ଡ ଦେଲା ଭଳି ସେ ଲୋକ ସମକ୍ଷରେ ଅପରାଧୀ ଧନୀକ ଏକଗୋଡ଼ିକିଆ ଛିଡ଼ା କରାନ୍ତି, ନାକବାଲ ଧରାନ୍ତି । ତାଙ୍କ ବାକ୍-ଚାତୁରୀ ଚମତ୍କାର । ନ୍ୟାୟନିଶାପରେ ସେ ଦିଅନ୍ତି ରାୟ; ଅଦ୍ଭୁତ ତେଜସ୍ୱୀ ପୁରୁଷ, ମୁଖକୁ ଚାହିଁଦେଲେ ଆଖି ନଇଁଯାଏ । କେହି ଅଙ୍ଗୁଳି ଉତ୍ତୋଳନ କରିବାକୁ ସାହସ କରେନାହିଁ । ବାସି ଓଳିକ ଦାନା ନାହିଁ । ଦୁଆରେ ଦଳ ଦଳ ଅତିଥି—ପରମାର୍ଥୀ, ଜ୍ଞାନୀ, ଉଚ୍ଚ କର୍ମଚାରୀ । ମୁକ୍ତହସ୍ତ । କାଲି ଯାହାହେବ ହେଉ, ଆଜି ମାନ ରହୁ । ବାସନ ବନ୍ଧା ପଡ଼ିଦେଲେ ବେଳେ ଅତିଥି ଚର୍ଚ୍ଚା ହୁଏ । କେହି ବୁଝିପାରିବନାହିଁ ତାଙ୍କର ଦାରିଦ୍ର୍ୟ । ଆଚମ୍ବିତେ କୁଆଡୁ କେତେ କଣ ଆସି ପହଞ୍ଚିଯାଏ ।

ତାଙ୍କ ଯଶ ଦିଗ୍‌ଦିଗନ୍ତ ବ୍ୟାପି ଯାଇଥିଲା । ସେ ସମଗ୍ର ପୁରୀଜିଲାରେ କଟକ ଜିଲାର କେତେକାଂଶରେ ପରିଚିତ ଥିଲେ । ପାଠ ବୋଇଲେ ଖଡ଼ିପାଠ, ବ୍ୟୁତ୍ପତ୍ତି ବି ନ ଥିଲା । ଶୁଣାଶୁଣିରେ ଯାହାକିଛି ଶାସ୍ତ୍ରଜ୍ଞାନ । ମାତ୍ର ଏତିକି ପୁଞ୍ଜିରେ ସେ ଲେଖିଲେ କୀର୍ତ୍ତନଗୀତ, ଗଢ଼ିଲେ ସଙ୍କୀର୍ତ୍ତନମଣ୍ଡଳୀ, ଗ୍ରାମେ ଗ୍ରାମେ ଏଇ ନୂତନ ଚୈତନ୍ୟଙ୍କର ଆବିର୍ଭାବ ହେଲା । ଝାଞ୍ଜ ଦିପଟ ଧରି ନିଜ ଗୀତ ବୋଲି ନାଚୁ ନାଚୁ ସେ ଅସ୍ତିତ୍ୱ ଭୁଲି ଯାଉଥିଲେ । ସେଇ ଦେଲା ତାଙ୍କୁ ପ୍ରତିଷ୍ଠା, ଗ୍ରାମେ ଗ୍ରାମେ ଆଦରଅଭ୍ୟର୍ଥନା; ସେ ବୁଲିଲେ ପଟୁଆର ହେଲା । କଥା କହିଲେ ଲୋକେ ଉତ୍କର୍ଣ୍ଣ ହୋଇ ଶୁଣିଲେ, ଗୀତ ଗାଇଲେ ଲୋକେ ପାଗଳ ହେଲେ । ସେ କୀର୍ତ୍ତନଗୀତରେ ଆଣିଥିଲେ ସଂସ୍କାର । ତାଙ୍କ ଖାଣ୍ଟି ଓଡ଼ିଆ ଗୀତ ଲୋକଙ୍କ ମନକୁ ଖୁବ୍ ପାଇଥିଲା । ତାଙ୍କ ଘରକୁ ଭରଣ ଭରଣ ଚାଉଳ, ଡାଲି, ପନିପରିବା ବୋହି ଆସୁଥିଲା । ସବୁ ଖରଚ ହେଉଥିଲା ମଚ୍ଛବରେ । ବାଲଙ୍ଗା ମେଳଣରେ ଦେଖିଛି ପାହାଡ଼ ପ୍ରମାଣେ ଅନ୍ନ, ହଣ୍ଡା ହଣ୍ଡା ଡାଲି, ତରକାରି, ଦହିକଞ୍ଜି, ପତ୍ର ପକେଇ ବସିଯାନ୍ତି କୋଉଠୁ କୋଉଯାଏ ଲୋକ, ଆଖି ପାଏନାହିଁ । ସାତଦିନ ସପ୍ତା ବସିଲା ପରେ ମେଳଣ ହୁଏ ଏଇ ମଚ୍ଛବ ହେଉଥିଲା । ଯେ ପହଞ୍ଚୁଥିଲା ସେ ଖାଉ-ଥିଲା । ବହୁ ଦୂରାଗତ ଶତ ଶତ କୀର୍ତ୍ତନମଣ୍ଡଳୀର ଝାଞ୍ଜ ମୃଦଙ୍ଗ ନାଦରେ ସତେ କି ସମୁଦ୍ର ଉଚ୍ଛୁଳୁ ଥିଲା ।

ସେ ଆମ ଅଞ୍ଚଳରେ ସ୍ତ୍ରୀ ଶିକ୍ଷାର ପ୍ରବର୍ତ୍ତକ, ଆମ ଗ୍ରାମର ବାଳିକା ସ୍କୁଲ ପୁରୀ ଜିଲାର ଗୋଟିଏ ପ୍ରାଚୀନତମ ଅନୁଷ୍ଠାନ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏଇ ସ୍କୁଲର ପୁନାଦି ପଡ଼ିଥିଲା । ପକେଇଥିଲେ ସାରମହାନ୍ତି, ଅଦ୍ଭୁତ ତାଙ୍କର ସାହସ । ଝିଅ ଜନମ ଚୂଲି ମୁଣ୍ଡକୁ । ପଢ଼ିଲେ ଚରିତ୍ର ଭ୍ରଷ୍ଟ ହେବ, ଶାଶୂ ଶ୍ୱଶୁରଙ୍କୁ ମାନିବେ ନାହିଁ; ଏଇ ଥିଲା ବଦ୍ଧମୂଳ ଧାରଣା । ସାରମହାନ୍ତି ବୁଝେଇଲେ, ଯେ ନ ବୁଝିଲା ତାକୁ ଧମକେଇଲେ, ଏମିତି ବାଳିକାମାନଙ୍କୁ ସ୍କୁଲକୁ ଅଣାଗଲା ।

ସ୍କୁଲ ପ୍ରତି ସରକାରୀ ଦୃଷ୍ଟି ଆକର୍ଷଣ କରିବା ଲାଗି ସେ ବିଚିତ୍ର ପନ୍ଥା ଧରୁ-ଥିଲେ । ରାସ୍ତା ଉପରେ ଛିଡ଼ାହୋଇ କୋଣାର୍କଗାମୀ ମଟରଗାଡ଼ିସବୁ ଅଟକାଉ ଥିଲେ । ପଡ଼ୁଥାଏ କୁରୁଚି, ମେଜ, ତା ଉପରେ ବିଛା ହୋଇଥାଏ ପାଟଖଦି, ଥୁଆ ହୋଇଥାଏ ପାଚିଲା କଦଳୀ, ଛୁଆ ପଇଡ଼ । ବୁଲୁଥାଏ ସଙ୍କୀର୍ତ୍ତନ, ଫୁଲହାର ଧରି ଛିଡ଼ା ହୋଇଥାନ୍ତି ଦୁଇଟି ସୁବେଶିନୀ ବାଳିକା । ସାହେବଙ୍କ ମଟର ଅଟକିଯାଏ, ଠାରରେ କଥାଭାଷା ଚାଲେ । ସେ ଏହିପରି ବଡ଼ ବଡ଼ ଭାରତୀୟ ହାକିମଙ୍କୁ ନେଇ ଦେଖାନ୍ତି ବାଳିକା ସ୍କୁଲ । ସେମାନେ ପାଆନ୍ତି ପରିଚୟ, ଉଦାର ବ୍ୟବହାର, କଳନ୍ତି ମହତ୍ତ୍ୱ ଅନ୍ତରର ଗଭୀରତା, କଲ୍ୟାଣକାରୀ ମନର ଅଗ୍ରଦୃଷ୍ଟି । ଲେଖିଯାନ୍ତି ସୁନ୍ଦର

ଅଭିମତ । ଫଳରେ ସରକାରୀ ଗ୍ରାଣ୍ଟ୍ ମିଳେ, ଅନୁଷ୍ଠାନ ନ. ପ୍ରା. ସ୍କୁଲକୁ ଉନ୍ନୀତ ହୁଏ ।

ଚର ହରଲପ, ଅକ୍ଲାନ୍ତ କର୍ମୀ, ଲୋକଙ୍କ ଉପରେ ତାଙ୍କର ପ୍ରଭାବ ଅପରି-ସୀମ ଥିଲା । ମଣିଷ ମନର ଯାଦୁକର ସେ । ତାଙ୍କ ବ୍ୟକ୍ତିତ୍ୱର ଚୁମ୍ବକ ଶକ୍ତି ଥିଲା । ଶତ ସହସ୍ର ବ୍ୟକ୍ତି ମନର ଅର୍ଘ୍ୟ ଢାଳି ଦେଇ ଯାଉଥିଲେ ତାଙ୍କ ପାଦ ତଳେ । ସେ ଯଥାର୍ଥରେ ଲୋକନେତା ।

ଜୀବନ ପରି ତାଙ୍କର ମୃତ୍ୟୁ ଅଦ୍ଭୁତ । ଦିନେ ହଠାତ୍ କହିଲେ—ମୁଁ ଆଜି ମରିବି । ମୁଖରେ ଭୀତି ନାହିଁ, ପୃଥିବୀ ଛାଡ଼ିଯିବାରେ ଶୋଚନା ନାହିଁ । ସୁସ୍ଥ, ସବଳ ମଣିଷ, ମରିବେ ? ମହାନ୍ତ ଆସି ଆଶ୍ରମ ଚୌକୀରେ ବସିଲେ, କହିଲେ—ଶିଷ୍ୟ-ମାନଙ୍କୁ ଡକାଅ, ଭାଗବତ ପଢ, କୀର୍ତ୍ତନ କର । କୀର୍ତ୍ତନ ଯେତେବେଳେ ଜମିଲା, ଦେଖାଗଲା ଯେ ସେ ଆଉ ଇହଧାମରେ ନାହାନ୍ତି । କିନ୍ତୁ ଜୀବନ୍ତ ପରି ମୁଖମଣ୍ଡଳ ପ୍ରଶାନ୍ତ, ଜଣାଉଛି କିଛି ଯେପରିକି ଘଟିନାହିଁ ! ସବୁ ଶୁଭ୍ର, ସବୁ କମ୍ର, ଜୀବନ ମୃତ୍ୟୁ, ଏକ ବୃନ୍ତର ଦୁଇ ପୁଷ୍ପ ।

ରାମଚନ୍ଦ୍ର ମହାନ୍ତ ହୀର ମହାନ୍ତଙ୍କ ଭାଇ । ସେ ସୌନ୍ଦର୍ଯ୍ୟପ୍ରିୟ । ସେ ବଟା-ନିଷ୍ଟ୍, ନୁହନ୍ତି, ବୃକ୍ଷପ୍ରେମୀ । ଗ୍ରାମକୁ ସୌନ୍ଦର୍ଯ୍ୟରେ ଫୁଟାଇବାରେ ତାଙ୍କର ଆନନ୍ଦ । ଅନ୍ତରରେ ହରିନାମ, ବାହାରେ ତାଙ୍କର ପୁଷ୍ପୋଦ୍ୟାନ । ଆମ ଗ୍ରାମ ସମଗ୍ର ପୁରୀ ଜିଲାରେ ଗୋଟିଏ ଉଦ୍ୟାନ-ଗ୍ରାମ ଥିଲା । ଉଦ୍ୟାନ ଏଇ ରାମ ମହାନ୍ତଙ୍କ କୀର୍ତ୍ତି । ପଥ ପାର୍ଶ୍ୱରେ ବୃକ୍ଷ ଲଗେଇବା ତାଙ୍କର ଗୋଟିଏ ବିଳାସ ଥିଲା । କରବୀର, କଣ୍ଟୀଳାର, ମନ୍ଦାର, ଗୋଡ଼ିବାଣ, କଞ୍ଚନ, କୃଷ୍ଣଚୂଡ଼ା, ବନ୍ଧୁବଧ ବାକ୍ସ ଗଛ ରାସ୍ତା ଧାରେ ଧାରେ ଲାଗିଥିଲା । ମାଣେ ମାଣେ ଜମିରେ ମଣ୍ଡା ଆଉ ମାଣିକଗନ୍ଧ ଗେଣ୍ଡୁ କୁସୁମର ଚାଷ ହେଉଥିଲା । ପର୍ବ ବା ମେଳଣବେଳେ ପାଞ୍ଚ ଦଶ କୋଶ ଦୂରରୁ ଆସି ଲୋକେ ବେଡା ବେଡା ଫୁଲ ତୋଳି ନେଉଥିଲେ । କୁସୁମର ସୁବା-ସରେ, ପ୍ରଜାପତିଙ୍କ ବିଚିତ୍ର ରୂପ ଲୀଳାରେ, ମଧୁମକ୍ଷିକାଙ୍କ ଗୁଞ୍ଜନରେ ପ୍ରାଣ ପୁରି ଉଠୁଥିଲା ।

ରାତି ପହରେ ଥାଉଁ ଉଠି ମହାନ୍ତ କୂଅରୁ ପ୍ରାୟ ୩୦୦ ଯୋଡ଼ା ପାଣି କାଢି ଗଛବୃଛରେ ଦେଉଥିଲେ, ତାଙ୍କ 'ହରିବୋଲ' କୋଶେ ଦୂରକୁ ଶୁଭୁଥିଲା, ସେହି ବୈତାଳିକ ଶୁଣି ଲୋକଙ୍କର ନିଦ୍ରାଭଙ୍ଗ ହେଉଥିଲା । ପ୍ରକୃତି ତାଙ୍କର ପ୍ରାଣରୁ ପ୍ରିୟତର ଥିଲା । ମନୁଷ୍ୟ ଯେପରି, ବୃକ୍ଷ ସେହିପରି; ଦେହରୁ ହାତଟାଏ ଓପାଡ଼ି ଦେଲେ ମଣିଷକୁ ଯେପରି ବାଧେ, ଡାଳ ଭାଙ୍ଗି ଦେଲେ କି ହାଣି ଦେଲେ ବୃକ୍ଷକୁ

ସେହିପରି ବାଧେ । ଆତ୍ମସୁଖ ପାଇଁ ଆମେ ବୃକ୍ଷ ଉପରେ ଅତ୍ୟାଚାର କରୁଁ । ନିତାନ୍ତ ଆବଶ୍ୟକ ନ ହେଲେ ବୃକ୍ଷର ଡାଳ ଭାଙ୍ଗିବା ଅପରାଧ । ସେ ଲୋକଙ୍କୁ ଏହିପରି ବୁଝେଇ ବଗିଚାକୁ ଅକ୍ଷୁଣ୍ଣ ରଖିଥିଲେ ।

ସେ ଜଣେ ସମାଜ ସଂସ୍କାରକ ଥିଲେ । ଆମ ଗ୍ରାମରେ ପଦ୍ମାଲେ ସେ ଚୁଟି କାଟିଥିଲେ । ଚୌକିରେ ବସିଲେ ଖୀରସ୍ରାବ ହୋଇଯିବ ବୋଲି ଯୋଉ ଧାରଣା ପ୍ରଚଳିତ ଥିଲା, ସେ ତାହା ବଦଳାଇ ଥିଲେ । କଟକରୁ ଚୌକିଟିଏ କିଣି ଆଣି ସେ ପଦ୍ମାଲେ ବସିଥିଲେ । ପଦ୍ମାଲେ ଆମ ଗ୍ରାମର ସବୁ ଜାତିର ପଂକ୍ତିଭୋଜନ ସେ କରାଇଥିଲେ । ବ୍ରାହ୍ମଣ, ପ୍ରଧାନ, ମୁଦୁଲି, ତେଲିଙ୍ଗାବୀ, ଏକା ପଂକ୍ତିରେ ଭୋଜନ କରିବା ସେ କାଳର ଗୋଟିଏ ଅପ୍ରତ୍ୟାଶିତ ଘଟଣା । ମହାତ୍ମା ଗାନ୍ଧୀଙ୍କ ହରିଜନ ଆନ୍ଦୋଳନର ୫୦ ବର୍ଷ ଆଗରୁ ସେ ଏ ଦିଗରେ କର୍ମତତ୍ପର ହୋଇଥିଲେ ।

ତାଙ୍କର ଭଗବତ୍ ବିଶ୍ୱାସ ବିଚିତ୍ର । ଦେହରେ ନାମାବଳୀ ଛିତା କୁଟେଇଲେ ଠାକୁରେ ପ୍ରସନ୍ନ ହେବେ, କାଳଦଣ୍ଡରୁ ନିସ୍ତାର ମିଳିବ ବୋଲି ସେ ବିଶ୍ୱାସ କରୁଥିଲେ । ସେ ସର୍ବାଙ୍ଗ 'ହରେକୃଷ୍ଣ ହରେନାମ, ନିତାଇ ଗୌର ରାଧେଶ୍ୟାମ,' 'ମଧୁସୂଦନ', 'ଚିନ୍ତାମଣି', 'ରାଧେଶ୍ୟାମ', ଆଦି ଛିତାରେ 'ହରିବୋଲ' ଛିତା କୁଟେଇଥିଲେ । ତା ଛଡ଼ା ଦେହରେ ନାନା ଛାପା ମାରୁଥିଲେ, ସେଥି ମଧ୍ୟରେ 'ହରି ମନ୍ଦିର' ଛିତା ପ୍ରଧାନ । କାହା କଥା ତାଙ୍କ ମନୋମତ ହେଲେ ସେ 'ଜୟ ଭଗବତ ବାସୁଦେବ' କହି ନମସ୍କାର କରୁଥିଲେ । ସେ ପ୍ରତିଦିନ ସ୍ନାନ ପରେ ବିଷ୍ଣୁ ସହସ୍ର ନାମ ଆବୃତ୍ତି କରୁଥିଲେ । ସେ ପ୍ରତିଦିନ ଅଧ୍ୟାୟେ ଭାଗବତ ପାଠ କରୁଥିଲେ । ବିଭିନ୍ନ ଅଞ୍ଚଳରେ ବୁଲି ବୁଲି ଅପାଣିଆ ଠାକୁର ଠାକୁରାଣୀଙ୍କୁ ଫୁଲପାଣି ଦେଉଥିଲେ । ନିଜେ ବହୁ ଠାକୁର ବସେଇ ଥିଲେ । 'ଜୀବେ ଦୟା, ନାମେ ଭକ୍ତି' ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଯେତେ ବୁଲା ଗୋରୁ ବାନ୍ଧି ଆଣି ସେ ମୋହୁଁ ଥିଲେ, କୁଟା ଘାସ ଖୋଉଥିଲେ । ତୃଷାର୍ତ୍ତ ପଥିକଙ୍କ ଲାଗି ଦୁଆରେ ମହାର୍ଦ୍ଧ ତୋରାଣି ଭର୍ତ୍ତି ରଖୁଥିଲେ ।

ସେ କାର୍ତ୍ତିକ ମାସରେ ହବିଷ୍ୟ କରୁଥିଲେ । ପ୍ରତିଦିନ ତିନି ମାଇଲ ଦୂର ଯାଇ ଭାର୍ଗବୀ ନଦୀରେ ସ୍ନାନ କରି ଆସୁଥିଲେ । ଗାଆଁର ହବିଷ୍ୟାଳୀ ବିଧବାମାନଙ୍କ ଦୁଆରେ ସାରୁ, କଦଳୀ ଆଦି ପରିବା ଦେଇ ଆସୁଥିଲେ ।

ବେଳେବେଳେ ତାଙ୍କ ଭଗବତ୍ ଭକ୍ତି ପ୍ରଚଳିତ ପରମ୍ପରା ବିରୋଧୀ ହେଉଥିଲା । ସେ ନମିଲ୍ଲ ବୁଣି ତା ଉପରେ ବସି ଜଗନ୍ନାଥ ଦାସଙ୍କ ଭାଗବତ ପୋଥି ଗୋଡ଼ରେ ବାନ୍ଧି ସପ୍ତା ପଢ଼ୁଥିଲେ । ଠାକୁରଙ୍କୁ ଶୁଖୁଆ, ମାଛ ଭୋଗ ଦେଉ-

ଥିଲେ । ତାଙ୍କର ଦୀକ୍ଷା ନ ଥିଲା, ଗୁରୁ ନ ଥିଲେ । ଆଚରଣରୁ ବୋଧହୁଏ, ସେ ଅଘୋରୀପନ୍ଥୀ ଥିଲେ । 'ସୋଽହଂ ।' ଏ ବିଶ୍ୱାସ ତାଙ୍କର ଏତେ ଦୃଢ଼ ଥିଲା ଯେ ସେ ସଙ୍କୀର୍ତ୍ତନ ପଟୁଆରରେ ବିମାନରେ ବସି ଠାକୁରଙ୍କ ପରି ମେଳଣକୁ ଯାଉଥିଲେ, ଦେବତାଙ୍କ ପରି ଫୁଲ ଚନ୍ଦନ ବେଶ ହେଉଥିଲେ । ଅନ୍ୟ ଦିଅଁଙ୍କ ପରି ତାଙ୍କୁ ପୂଜା ଆଳତି କରିଯାଉଥିଲା ।

ସପ୍ତା, ଅଷ୍ଟ ପ୍ରହରୀ ଓ ଚବିଶ ପ୍ରହରୀରେ ସେ ଉନ୍ମତ୍ତ ରହୁଥିଲେ । ପୁରୀ, ସତ୍ୟବାଦୀ, ଭୁବନେଶ୍ୱର, ଖଣ୍ଡଗିରି ପ୍ରଭୃତି ତୀର୍ଥକ୍ଷେତ୍ରରେ, ବଳଙ୍ଗା, ହରିରାଜପୁର ଓ କାମୁଡୋଳ ମେଳଣରେ ସେ ବୁଲି ବୁଲି ସପ୍ତା କରୁଥିଲେ । କେବେ ପୋଖରୀ ମଝିରେ ଦୀପଦାଣ୍ଡି ବାନ୍ଧି, କେବେ ବୃକ୍ଷ ଉପରେ ମଞ୍ଚାବାନ୍ଧି, ଶ୍ମଶାନରେ ଖଟ ପକାଇ, ମାଘ ମାସ ଶୀତରେ ବେକଯାଏ ପାଣିରେ ପଶି ସେ ସପ୍ତା ବୋଲୁଥିଲେ । ସେ ଜଣକୁ କନେଷ୍ଟବଲ କରି ସଜେଇ ତା ହାତେ ଜଣକେ ଦୁଆରେ ନୋଟିସ୍ ଟାଙ୍ଗୁଲାଇ ଦେଇ ଆସୁଥିଲେ । ଏଥିରୁ ଗୃହସ୍ଥ ବୁଝୁଥିଲା ଯେ ତା ଦୁଆରେ ସପ୍ତା ହେବ । ସେ ସମସ୍ତ ଆୟୋଜନ କରୁଥିଲା ।

ଜମିବାଡ଼ି ପ୍ରତି ତାଙ୍କର ଦୃଷ୍ଟି ନ ଥିଲା । ଅର୍ଥାଭାବ ହେଲେ ଜମି ବିକି ସେ ବ୍ୟୟ ନିର୍ବାହ କରୁଥିଲେ । ସରଳ ଜୀବନ, ମହତ୍ତ୍ୱ ଚିନ୍ତା, ସତ୍‌କାର୍ଯ୍ୟ ତାଙ୍କର ବ୍ରତ ଥିଲା, ଲୋକସେବା ତାଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା । ଦୁଇଟି ଖଡ଼ିକାମୁଠା ଦୁଇ ହାତରେ ଧରି ସେ ସମସ୍ତଗ୍ରାମ ବୁଲାଉ ଥିଲେ ।

ତାଙ୍କର ସ୍କୁଲ ଶିକ୍ଷା ସାମାନ୍ୟ ଥିଲେ ବି ଶିକ୍ଷାର ମହତ୍ତ୍ୱ ଉଦ୍ଦେଶ୍ୟ ଜୀବନରେ ହୃଦୟଙ୍ଗମ କରି ପାରିଥିଲେ । ଶ୍ରୀମଦ୍ ଭାଗବତ ତାଙ୍କର ମୁଖସ୍ଥ ଥିଲା, ସେଥିରୁ ବହୁ ଉଦ୍ଧୃତି ଦେଇ ସେ ଲୋକଙ୍କ ଦୃଷ୍ଟି ଆଧ୍ୟାତ୍ମିକ ଦିଗକୁ ଆକର୍ଷଣ କରୁଥିଲେ । ଲୋକସେବକ ହିସାବରେ ସେ ଚିର ସ୍ମରଣୀୟ ।

ଏଇ ଦୁଇଜଣଙ୍କ ମସ୍ତିଷ୍କ ଥିଲେ ମୋ ନନା, ନାନା ଶାସ୍ତ୍ରରେ ସୁପଣ୍ଡିତ; କାବ୍ୟ କବିତାରେ ସୁରସିକ । ସେ ଏଇ ଦୁଇ ସମାଜ ସଂସ୍କାରକଙ୍କ ପୃଷ୍ଠଭୂମିରେ ରହି ଆବଶ୍ୟକ ବେଳେ ଜାତି, ଧର୍ମ ଓ ସମାଜର ଉଚିତ ଅନୁଚିତ କ୍ରିୟା ସମ୍ପର୍କରେ ଶାସ୍ତ୍ରୋକ୍ତ ଉଦ୍ଧାର କରୁଥିଲେ । ଫଳରେ ସଂସ୍କାରବିରୋଧୀଙ୍କ ମୁଖ ବନ୍ଦ ହୋଇ ଯାଉଥିଲା । ଦ୍ୱିଗୁଣ ଉତ୍ସାହରେ ସେ ଦୁହେଁ ସଂସ୍କାର କାର୍ଯ୍ୟରେ ଅଗ୍ରସର ହେଉଥିଲେ ।

ଦୀର୍ଘତମ ଶରୀରରେ ତାଙ୍କର ପ୍ରଚଣ୍ଡ ଶକ୍ତି ଥିଲେ ବି ସେ ଚିର ଅହିଂସ୍ର ଥିଲେ । ଖଳ ବା ଟାଉଟରକୁ ଦେଖିଲେ ବାଟ କାଟି ଯାଉଥିଲେ । ସେ ଅନୁଷ୍ଠାନକୁ

ଜୀବନରେ ପରମାର୍ଥୀ ନ ଥିଲେ, ଅଗ୍ରଗାମୀ ସଂସ୍କାରକ ବି ନ ଥିଲେ । ସେ ଥିଲେ ସଂସାରୀ, ସଂସ୍କାର କର୍ମରେ ସହଯୋଗୀ, ସଙ୍ଗୀତ ବୈଠକରେ ବାଦକ, କୃଷି-କ୍ଷେତ୍ରରେ ପ୍ରବୀଣ କୃଷକ, ସଭାରେ ପଣ୍ଡିତ, କବି ପୁଣି କବିରାଜ ।

ବିଦ୍ୟା ବୋଇଲେ ଅବଧାନଙ୍କ ଚାହାଳୀରେ ତାଙ୍କର ଅକ୍ଷର ପରିଚୟ ମାତ୍ର ହୋଇଥିଲା । ସେ ସାତକ ଯାଏ ପଣିକିଆ ପଢ଼ିଥିଲେ । ଏମିତି ଜଣେ ସାଧାରଣ ସଂସାରୀ ଗୃହସ୍ଥ ପରି ଚାଲୁ ଚାଲୁ ବୁଢ଼ା ହୋଇ ଯାଇଥାନ୍ତେ । କିନ୍ତୁ ବିଧିର ନିର୍ଦ୍ଦେଶ ଭିନ୍ନ । ତାଙ୍କ ଗତାନୁଗତିକ ଜୀବନଧାରା ବଦଳିଲା, ବୀର ମହାରାଜଙ୍କ ହସ୍ତକ୍ଷେପରେ, ନବ ପ୍ରତିଷ୍ଠିତ ବାଳିକା ସ୍କୁଲକୁ ଶିକ୍ଷକ ମିଳୁ ନଥାନ୍ତି । ସେ ନନାଙ୍କୁ ମାଷ୍ଟ୍ର କଲେ, ନନା ପଢ଼େଇବେ କଣ ? ଆଗେ ପଢ଼ିଲେ । ସ୍ମୃତିଶକ୍ତି ତାଙ୍କର ପ୍ରଖର ଥିଲା, ଯାହା ପଢ଼ିଲେ ମନେ ରହିଲା । ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ ଓ ପଞ୍ଚସଖା ସାହିତ୍ୟରେ ସେ ବ୍ୟୁତ୍ପତ୍ତି ଲାଭ କଲେ, ଅମରକୋଷ ମୁଖସ୍ଥ କଲେ, ବିନା ଗୁରୁରେ ମେଘଦୂତ, ହଂସଦୂତ, ମହାନାଟକ, ଭଗବଦ୍ଗୀତା ପ୍ରଭୃତି ଅଧ୍ୟୟନ କଲେ । ଦେଖୁଁ ଦେଖୁଁ ହେଲେ ସେ ଖଣ୍ଡ ମଣ୍ଡଳରେ ଜଣେ ପଣ୍ଡିତ । ବ୍ରତ ଫୁଲସଭାବେଳେ ବା ସୁଧୀଜନଙ୍କ ସହିତ ଆଳାପରେ ତାଙ୍କ ବିଦ୍ୟାର ଗମ୍ଭୀରତା ଜଣା ପଡୁଥିଲା ।

କିନ୍ତୁ ପ୍ରକୃତ ପ୍ରତିଷ୍ଠା ତାଙ୍କର ହେଲା କବିତ୍ୱ ଯୋଗୁଁ, ତାଙ୍କ କବିତ୍ୱ ଶକ୍ତି-ଲାଭ କାହାଣୀ ସେ କେତେକ ବିଶ୍ୱସ୍ତ ବନ୍ଧୁଙ୍କୁ କହି ଯାଇଛନ୍ତି । ସେ ଗୁରୁବାର ଦିନ ଦୁର୍ଗା ମନ୍ତ୍ର ଜପୁଥିଲେ । ଦିନେ ତାଙ୍କୁ ପ୍ରସନ୍ନ ହୋଇ ଦୁର୍ଗା ସ୍ୱପ୍ନରେ କହିଲେ —ଗୀତ ! ତାପରେ ତାଙ୍କ ବୁଦ୍ଧି ନିର୍ମଳ ହେଲା, କବିତ୍ୱ ସ୍ଫୁରିଲା, କେବେ ଆମ୍ବ ତୋଟାରେ, କେବେ ପୁଷ୍କରଣୀ ତଟରେ, କେବେ ମନ୍ଦିରର ପୃଷ୍ଠ ଦେଶରେ ବସି ସେ ଗୀତ ଲେଖନ୍ତି । ଗୀତ ଲେଖିଲାବେଳେ ତାଙ୍କ କଲମ ଅତି ଦ୍ରୁତ ଗତିରେ ଚାଲେ, ସତେ ଯେପରି କିଏ ଲେଖାଇ ଦେଉଛି । ଘଣ୍ଟାକେ ପୁରାଏ ପଡ଼ାବନ୍ଧିଆ ଗୀତ ସେ ଲେଖିଯାନ୍ତି—ମଧ୍ୟଯୁଗୀୟ ସାହିତ୍ୟରେ ବ୍ୟୁତ୍ପତ୍ତି ଆସିବା ପରେ ସେ ଅର୍ଥବନ୍ଧିଆ ଗୀତ ଲେଖିଲେ । ଏକବିଧ, ଦ୍ୱିବିଧ, ତ୍ରିବିଧରୁ ଏକାଦଶ ବିଧିରେ ଯାଇ ଗୀତ ପହଞ୍ଚିଲା, ଅର୍ଥାତ୍ ଗୋଟିଏ ଗୋଟିଏ ପଦରୁ ଏଗାରଟି ଲେଖାଏଁ ଅର୍ଥ ବାହାରିଲା । ଅର୍ଥବନ୍ଧିଆ ଗୀତ ପାଲା ଗାଆଣ ନେଲେ । ପଡ଼ା ବନ୍ଧିଆ ଗୀତ ଶିଖିବ କିଏ ? ସେ ସେଇ ସାଇ ଆଡ଼କୁ ଦୃଷ୍ଟି ପକେଇଲେ । କିନ୍ତୁ ସମସ୍ତେ ତ— ସକାଳୁ ଉଠିଲେ ଲଙ୍ଗଳେ ଯାଆନ୍ତି ତୋରଣି ହେମକାକର, ଶ୍ରୀଅକ୍ଷର ବିରୁଣେଇ ପର୍ବତ ।

• ସେ ବାଡ଼ି କଦଳୀ କଅଁଶରେ ଖଣ୍ଡେ କୁଡ଼ିଆ କଲେ । ସେଇ ହେଲା ପୁରୀ ଜିଲ୍ଲାରେ ଭୋଇମାନଙ୍କର ପ୍ରଥମ ନୈଶ ବିଦ୍ୟାଳୟ । ଆଲୁବିନ୍ଧା ମହାଦେବ ଦେଖା ଏକାବେଳକେ ହେଲା ପରି କଦଳୀ ଜଗା, ପାଠ ପଢ଼ା ଏକାଦିନକେ ଗ୍ଲେଲା । ଅକ୍ଷର ପରିଚୟ ହେଲା ପରେ ନନା ଗୋଟିଏ ପାଲୁଆ ଦଳ ଗଢ଼ିଲେ । ଗାଆଁର ମଙ୍ଗଳା ଠାକୁରାଣୀ ହେଲେ ପାଲୁଆଙ୍କ ଇଷ୍ଟଦେବୀ, ଗାଆଁ ପୋଖରୀରେ 'ପାଣି ଛୋଲା' ହେଲା । ମଙ୍ଗଳାଙ୍କ ଘରେ ଘଟ ବସିଲା । ପ୍ରଚଳିତ ଢୋଲ ପରିବର୍ତ୍ତେ ନନା ପାଲୁଆଙ୍କୁ ଖୋଳ ଧରେଇଲେ; ଝିମ୍ପଟା, ମହ୍ଲାର ଛାନ୍ଦ ଚଉପଦୀ ଆଦି ବିବିଧ ଅର୍ଥବନ୍ଧୀ ଗୀତ ଶିକ୍ଷା ଦେଲେ । ଆମ ଗାଆଁ ପାଲୁଆ ସେ ଅଞ୍ଚଳରେ ସର୍ବଶ୍ରେଷ୍ଠ ଗାୟକଦଳ ହେଲା, ବାହାରେ ଜୟବାନା ଉଡ଼େଇ ଫେରିଲା, ବିପକ୍ଷ ଦଳ ଯାହା ପ୍ରଶ୍ନ ପଚାରନ୍ତି, କବି ସଙ୍ଗେ ସଙ୍ଗେ ତାହା ଗୀତରେ ଲେଖି ଗାୟକଙ୍କୁ ଶିଖାଇ ଦିଅନ୍ତି । ଏହାହିଁ ବିଜୟର ଗୁପ୍ତ ରହସ୍ୟ ।

ଆମ ଗ୍ରାମ ଦେଖାଦେଖି ଆଖ ପାଖ ଅଞ୍ଚଳର ଭୋଇମାନେ କହିଲେ— ଆମେ ପଢ଼ିବୁ, ପାଲୁଆ କରିବୁ । ଦେଖୁ ଦେଖୁ ଚାରି ପାଞ୍ଚୋଟି ନୈଶ ବିଦ୍ୟାଳୟ ଖୋଲିଗଲା । ସେ କାଳରେ ଏ କଳ୍ପନା ଅତି ଦୁର୍ଲ୍ଲଭ । ନନା ସନ୍ଧ୍ୟାରେ ଗଣ୍ଡେ ଖାଇ ଦେଇ ହାତକେ ନିଆଁ ହୁଳା, ହାତକେ ଠେଙ୍ଗା ଧରି ପାଠ ପଢ଼େଇ ବା ଗୀତ ଶିଖେଇଯାନ୍ତି, ରାତି ଅଧିକୁ ଫେରନ୍ତି । ସେ ବାବଦକୁ ସେ ପଇସାଟିଏ ନିଅନ୍ତି ନାହିଁ, ଦେବାର ସାମର୍ଥ୍ୟ ବି ଲୋକମାନଙ୍କର ନ ଥାଏ । ସେମାନେ ଶ୍ରମ ଦାନ କରନ୍ତି । ବିନା ମଜୁରୀରେ ଆମ ବିଲ ବାଛି ଦିଅନ୍ତି ବା ଧାନ କାଟି ଦିଅନ୍ତି । କେତେବେଳେ ବୋଝେ ସାରୁ, ଗୋଟେ କଖାରୁ, କାନ୍ଦିଏ କଦଳୀ, ପୁଞ୍ଜେ ମାଛ ବା କେରିଏ ଙ୍ଗଡ଼ା ଆଣି ଦୁଆରେ ଦେଇଯାନ୍ତି । ଆମର କେବେ ତରକାରୀ କଷ୍ଟ ହୁଏ ନାହିଁ । ଏହିପରି ବହୁ ଦୂରବର୍ତ୍ତୀ ଗ୍ରାମରେ ସେ ପାଲୁଆ ଦଳ ଗଠନ କରିଥିଲେ । ଯଥାର୍ଥ ଲୋକଶିକ୍ଷକ ଓ ଲୋକକବି ଭାବରେ ପ୍ରତିଷ୍ଠିତ ହୋଇଥିଲେ । ସେ ପାଲୁଆ ଦଳ ଭାଙ୍ଗି ଯାଇଛି, ନନାଙ୍କ ହାତ ଲେଖା ପାଣ୍ଡୁଲିପି ଛିଣ୍ଡିଗଲାଣି । ଗାୟକଙ୍କ ଭିତରୁ କେତେକ ସଂସାର ଛାଡ଼ି ଗଲେଣି, ଯେ ଜଣେ ଅଧେ ବୁଢ଼ା ଅଛନ୍ତି, ପ୍ରାୟ ନନାଙ୍କ ଗୀତ ଭୁଲି ଗଲେଣି । ପାଠକଙ୍କ ଅବଗତି ନିମନ୍ତେ ସେ କାଳର ଜଣେ ଗାୟକ କେଲା ଭୋଇଠାରୁ ସଂଗୃହୀତ ଗୋଟିଏ ଗୀତ ଏଠି ଉଦ୍ଧାର କଲି ।

**ବସନ୍ତ ରାସ**

ଶୁଣ ସୁଜ୍ଞଜନେ ଏହୁ ବସନ୍ତ ରାସ
ଶୁଣିଲେ ପୂର୍ବର ପାତକାଦି କ୍ଷୟ, ପାଇବ ସର୍ବେ ବୈକୁଣ୍ଠରେ ବାସ । ( ଘୋଷା )

ବୃନ୍ଦାବନ କି ଶୋଭାବନ
ଦହୁଅଛୁ ବିରହୀ ମନ
କନ୍ଦର୍ପ ସୃଜନ;
କନକଦଣ୍ଡ ଯେ କେତକୀ ହୋଇଲା, ରଙ୍ଗଶାଢ଼ୀ ଯେ ପାଟଳି ବନ୍ଧୁଷ । ୧ ।

ଶଙ୍ଖ ଭେରୀ ମଧୁକରର
ମନ୍ଦ ମନ୍ଦ ବହେ ସମୀର
କୋକନଦର;
କୋକିଳ ଯେ ମନ୍ତ୍ରୀ, କୁରଙ୍ଗ ତଗର, ନାଗେଶ୍ୱର ପୁଷ୍ପ ଅଛେ ସରସ । ୨ ।

ସୈନ୍ୟ କୋଲାହଳ ବୃକ୍ଷର
ନବ ପଲ୍ଲବ ଯେ ବସ୍ତ୍ର
କି ମନୋହର;
ଶୁକଙ୍କର ଧ୍ୱନି ଯେ ତେଲିଙ୍ଗି ବାଜା କମ୍ପି ଯାଉଅଛି ବିପିନଦେଶ । ୩ ।

ନୂପୁରର ଆୟୁଧ ତହିଁ
ସୁନାର ଯେ ନଳୀ ହୁଅଇ
ଶୁଣ ଜନେ ହିଁ;
ମଲ୍ଲୀକଢ଼ ଗୁଳି ଅଗ୍ନି ସ୍ଫୂର୍ତ୍ତି ତେଜ, ବିରହୀ ପ୍ରାଣକୁ କରିବ ନାଶ । ୪ ।

କଥା ବଡ଼ ସରସ ହେଲା
ରଜାଠାରୁ ପଟା ପାଇଲା
କି ସୁଖେ ମଜ୍ଜିଲା;
ରସିକ ହୃଦସ୍ଥ କଂଥାରି ହୋଇଲା, କଣ୍ଟକ ହେବ ଲଙ୍ଗଳର ଈଷ । ୫ ।

ଅଶନ ହେ କାମୀଙ୍କ ବିଷ
ଗଦ ହେଲା ଫୁଲର ବାସ
ବୁଝି ଭବିଷ୍ୟ;
ବୋଲେ ଚନ୍ଦ୍ରାମଣି, ମୁଁ ଅଟେ ଅଜ୍ଞାନ, ଦୟା କରିଥିବ ହେ ପୀତବାସ । ୬ ।

ସେତେବେଳେ ଘରେ ଘରେ ରୋଗ, କିନ୍ତୁ ଚିକିତ୍ସକ ନ ଥିଲେ । କିଏ ରୋଗଶଯ୍ୟାରେ ଦୀର୍ଘକାଳ ଗଡ଼ି ଗଡ଼ି ହଉଥିଲା, କିଏ ବା ନିସ୍ସହାୟ ଭାବରେ ମୃତ୍ୟୁ ମୁଖରେ ପଡ଼ୁଥିଲା ।

'ଦଣ୍ଡେ ନିମିଷେ ଥିଲେ ପ୍ରାଣ, ନେଇ ନ ପାରେ ଜନ୍ତୁଗଣ'

ଏଇ ବିଶ୍ୱାସ ଦୃଢ଼ ଥିଲା । ଆୟୁର୍ବଳ ଥିଲେ ଔଷଧ ଲୋଡ଼ା ନାହିଁ, ନ ଥିଲେ ଔଷଧ ଦେଇ ଲାଭ କ'ଣ ? ଚିକିତ୍ସାରେ ବ୍ୟୟକୁ ଲୋକେ ସବୁଠାରୁ ବଡ଼ ଅପବ୍ୟୟ ମନେ କରୁଥିଲେ । ଜ୍ୱରଗ୍ରସ୍ତର ମୃତ୍ୟୁରେ ବିଚଳିତ ହୋଇ ନନା କବିରାଜି ଶିଖିଲେ । ମନୁଷ୍ୟର ଶ୍ରେଷ୍ଠ ଉପକାରକ ଚିକିତ୍ସକ । ନନା ଚିକିତ୍ସା ଜରିଆରେ ପରୋପକାରର ପରମ ସୁଯୋଗ ଲାଭ କରିଥିଲେ । ଆୟ ପ୍ରତି ତାଙ୍କର ଦୃଷ୍ଟି ନ ଥିଲା । ଆରୋଗ୍ୟ ହେବା ପରେ ପଦେ ଧୃଷ୍ଟେ ଯେ ଯାହା ଦେଉଥିଲା; ନ ଦେଲେ ବି ଦୁଃଖ ନାହିଁ । ଔଷଧ ଖର୍ଚ୍ଚ ନ ଉଠିବାରୁ ସେ ଦୂର ଦୂରାନ୍ତର ଗ୍ରାମକୁ ଯାଇ ହରିଡ଼ା, ବାହାଡା, ଅଁଳା, ଭାଳିଆ, ନାନା ଛେଲି, ଚେରମୂଳାଦି ସଂଗ୍ରହ କରୁଥିଲେ ।

ଯେତେବେଳେ ସ୍ୱତଃପ୍ରବୃତ୍ତ ହୋଇ ସ୍କୁଲକୁ ପିଲାମାନେ ଆସୁ ନ ଥିଲେ । ଦ୍ୱାରେ ଦ୍ୱାରେ ବୁଲି ବୁଲି ମାଷ୍ଟ୍ରେ ପିଲା ସଂଗ୍ରହ କରୁଥିଲେ । ଅବଧାନଙ୍କଠାରୁ ଆଉ କିଛି ନ ହେଉ, ଚୌକିବସା, ମଚ୍ଚିଆ ଶିକୁଳି ପଡ଼ିବା, ଏକଗୋଡ଼ିଆ ଛିଡ଼ା ହେବା ପ୍ରଭୃତି ଅମାନୁଷିକ ଦଣ୍ଡବିଦ୍ୟା ଇଂରେଜୀ ପଢୁଆ ମାଷ୍ଟ୍ରମାନେ ହାସଲ କରି ସ୍କୁଲରେ ଚଳାଉଥିଲେ । ପିଲାଙ୍କ ଭିତରେ ପୁଣି ବାଳିକାଙ୍କ କଥା ତ ଅଲଗା । ସେମାନଙ୍କ ସ୍କୁଲ ଆସିବାର ଆବଶ୍ୟକତା ମୋଟେ ଅନୁଭୂତ ହେଉ ନ ଥିଲା । ଏଇ ଅବସ୍ଥାରେ ନନା ବାଉରି ବା ପଠାଣ ପିଲାଙ୍କୁ ବୁଝେଇ ମଣେଇ ବାଖେଇ, କାନ୍ଧରେ ବସେଇ ନେଇ ଆସୁଥିଲେ । ଶିକ୍ଷାକ୍ଷେତ୍ରରେ ସେ ଜାତିଭେଦ ମାନୁ ନ ଥିଲେ । ଆମ ଗୃହରୁ ଅସ୍ପୃଶ୍ୟତା ଦୂର ହୋଇ ଯାଇଥିଲା । ହରିଜନ ଆନ୍ଦୋଳନର ବହୁ ପୂର୍ବ କଥା ଏ ।

ନନା ମାତ୍ର ୫୨ ବର୍ଷ ବୟସରେ ଇହଧାମ ତ୍ୟାଗ କରିଥିଲେ । ( ଜନ୍ମ ୧୮୮୨—ମୃତ୍ୟୁ ୧୯୩୪ )

ଜୀବନ କାଳରେ ନାଗରିକର ଦୃଷ୍ଟି ପଡ଼ିନାହିଁ, ମୃତ୍ୟୁରେ ଶୋକସମ୍ବାଦ ବାହାରିନାହିଁ; ଶୋକସଭା ହୋଇନାହିଁ ଗ୍ରାମରେ; କେହି ଲେଖିନାହିଁ ଜୀବନଚରିତ, ପଦେ ଅଶ୍ରୁଉଚ୍ଛୁଳା ଗୀତ । ତଥାପି ମନକୁ ମନକୁ ଆସି ସେମାନେ ମୂର୍ତ୍ତି ହୋଇଛନ୍ତି । ଅଗଣିତ ମନ ହିଁ ସେମାନଙ୍କର ଖଟୁଲି, ସ୍ତୁତି ନିତ୍ୟ ସ୍ମରଣ, ଅର୍ଘ୍ୟ ପ୍ରୀତିଃ ନମସ୍କାର ।



# ଶେଷ ଦେଖା

ସଂସାରେ ଯେ କରଇ ଆଶ
ଧାଏଁ ସିନା ସେ ତୁମ୍ଭ ପାଶ
ସକଳ ଭରସା ଯାର ତୁଟିଲଣି
କସ ବୋଲି ତାକୁ ଡରାଇବ ହେ ?
ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ
ଯାହା ଦେଇଥିଲ ସବୁ ତ ନେଲଣି
ଆଉ ଏବେ କଅ ଛଡ଼ାଇବ ହେ ?'

ଛଡ଼ାଇ ନେବାକୁ ଗଣ୍ଠିରେ ଧନ ନାହିଁ, ଦେହରେ ସ୍ୱାସ୍ଥ୍ୟଶ୍ରୀ ନାହିଁ, ମନରେ ଆଶା ଭରସା ନାହିଁ । ଯାହା ତଳକୁ ଆଉ ନାହିଁ, କବିଙ୍କ ଏହ ଅବସ୍ଥାନ ସେହ ସୋପାନରେ । ଏ ଅବସ୍ଥାରେ ଲୋକ ପାଗଳ ହୁଏ କମ୍ବା ଆତ୍ମହତ୍ୟା କରେ । କନ୍ତୁ କବ ସ୍ୱର୍ଗ ପଡ଼ିବାର ପାଦ ନୁହନ୍ତ, ନିଜକୁ ଢଳେ ଢଳେ ସ୍ୱର୍ଗ ଅନ୍ତର୍ଲୋକ ଗଢ଼ିବାରେ ହିଁ ତାଙ୍କର ଆନନ୍ଦ । ମାହା ଜଗତର ଘୋର ବିପଦ ଭିତରେ ଗଣ୍ୟ, କବିର ତାହାହିଁ ଶ୍ରେଷ୍ଠ ସମ୍ପଦ । ଯୋଉ ସହଷ୍ଣୁତା ବଳରେ ମନୁଷ୍ୟ ସଂସ୍କୃତ ଗଢ଼ିଛ, ସଭ୍ୟତା ଗଢ଼ିଛ, ତା'ର ସ୍ୱର ଏ କବିତା ଭିତରେ ଆମେ ଶୁଣୁ । ସବହରା ଅନ୍ତରର ପ୍ରତୀକ ବାଣୀ ଗୋଟିଏ ସଙ୍ଗୀତରେ ଏମିତ କେହ ଶୁଣେଇ ନ ଥିଲ । ଦ କୋଟିର ଯୁଗଯୁଗାନ୍ତ ଲୁହକୁ କେତୋଟି ଅକ୍ଷର ଭିତରେ ଏମିତ କେହ ଠୁଳ କରିପାରି ନଥିଲ । ଏ ଗୋଟାଏ ଦୁର୍ବିନୀତ, ଦୁର୍ବିପାକରେ ଅନବନତ ଜାତର ମର୍ମବାଣୀ । ଏପରି ଗୋଟିଏ କବିତା ଲେଖି କବି ଅମର ହୋଇପାରେ । ଏହା ଶୁଣି ମୁଁ କବିଙ୍କ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲ ।

ଲେଖା ପଢ଼ିଲା ପରେ ଲେଖକକୁ ଦେଖିବା ଲାଗି ସ୍ୱାର ମନ ହୁଏ । ଅନେକ ସମୟରେ ତାର ବକୃତ ଚେହେରା ଦେଖି ଶ୍ରଦ୍ଧା କମିଯାଏ, ବିଶ୍ୱାସ ହୁଏ ନାହିଁ ଯେ ଏଡ଼େ ଚମତ୍କାର ଲେଖାର ଲେଖକ ଜଣେ ଆକାରରେ କୁତ୍ସିତ ବ୍ୟକ୍ତ । ସେତେ-ବେଳେ ଏତକ ସାଧାରଣ ଜ୍ଞାନ ହୁଏ ନାହିଁ ଯେ ଲେଖା ଆକୃତରୁ ଝରେ ନାହିଁ, ପ୍ରାଣରୁ ଝରେ । ଗୃହକୁଷ୍ଟ ପରିଚୟ ନୁହେଁ, ସେହ ପ୍ରାଣର ପରିଚୟ ହିଁ ସ୍ଥାୟୀ ଓ ସବଶେଷ ପରିଚୟ । ମୁଁ ସେହ ଦଳରୁ ଜଣେ, ଯେ ନଦୀ ସ୍ନାନରେ ସନ୍ତୁଷ୍ଟ ନ ହୋଇ ନଦୀର ଉତ୍ପତ୍ତି ସ୍ଥଳ ଖୋଜିବାକୁ ଯାଏ । ବହୁ ପତ୍ରପତ୍ରିକାରେ ଦେଖିଥିଲ

ଲକ୍ଷ୍ମୀକାନ୍ତଙ୍କର ଚିନ୍ମୟ ମୂର୍ତ୍ତି । କିନ୍ତୁ ସେଥିରେ ମୋର ଚିତ୍ତ ତୃପ୍ତି ଲାଭ କରି ନଥିଲା । 'ଏହା କେବଳ ମୃଣ୍ମୟର ମୃଣ୍ମୟ ପ୍ରତି ଆକର୍ଷଣ ନୁହେଁ—ଆହୁରି କିଛି, ଯାହାର ଥଳକୂଳ ଏବେ ପାଇନାହିଁ ।

ନଅଙ୍କ, ମଡ଼କ, ମହାମାରି, ବନ୍ୟା ଭିତରେ ଯେତେବେଳେ ଏ ଜାତିର ଆଖିରୁ ଲୁହ ଶୁଖୁ ନଥିଲା, ହତାଶା ହାହାକାରରେ ଯେତେବେଳେ ଏ ଜାତିର ଯୁଗ ଯୁଗର ସଞ୍ଚିତ ସାଧନା ଭାଙ୍ଗି ପଡ଼ୁଥିଲା, ତା ସହିତ ସମତାଳ ଦେଇ ଭାଙ୍ଗି ପଡ଼ୁଥିଲା ଏକ ଉନ୍ନତ ଶିକ୍ଷିତ ଜାତିର ମନ, ସେତିକିବେଳେ ତା ମୁଖରେ ଏକ ସୂକ୍ଷ୍ମ ହସର ରେଖା ଆଙ୍କି ଦେଇଥିଲେ କବି ଲକ୍ଷ୍ମୀକାନ୍ତ ମହାପାତ୍ର । ଏଇ ହସରେ ଥିଲା ଗଭୀର ଆତ୍ମପ୍ରତ୍ୟୟ—କେବଳ ହାସ୍ୟାସ୍ପଦ ହେବାକୁ ଆମେ ଜନ୍ମ ହୋଇନାହୁଁ, ହସିବା ଅଧିକାର ମଧ୍ୟ ଆମର ଅଛି । ଆମେ ପଛକୁ ଚାହିଁ ତୃପ୍ତିର ହସ ହସିବୁ, ସେଥିରୁ ପାଇବୁ ଆଗକୁ ଚାଲିବାର ପ୍ରେରଣା । ଆମେ ଯାହା କରିଛୁ, ସେଥିରେ ଯୁଗ ଯୁଗ ଲାଗି ଗର୍ବ କରିବାର ଯଥେଷ୍ଟ ଅଛି; ଯାହା କରିବୁ, ପଛର ଗୌରବକୁ ଯେମିତି ମଳିନ କରିବୁ । ଜାତିର ଘୋର ଦୁର୍ଦ୍ଦିନରେ ସେ ଶୁଣାଇଥିଲେ ଆଶାର ସଙ୍ଗୀତ, ଜାଗରଣର ଏକ ଶାଣିତ ଶପଥ । କବିତା, ସଙ୍ଗୀତ, ଉପନ୍ୟାସ, ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଓ ବିବିଧ ବ୍ୟଙ୍ଗ ରଚନାରେ ଛୁଟିଥିଲା ତାଙ୍କ ପ୍ରାଣର ବହୁମୁଖୀ ଧାରା । ସେହି ସ୍ରଷ୍ଟା ଲକ୍ଷ୍ମୀକାନ୍ତଙ୍କୁ ଥରେ ଦେଖିବା ଲାଗି ମନ ଉଚ୍ଛନ୍ନ ହେଉଥାଏ, କିନ୍ତୁ ସୁଯୋଗ ଯୁଟେ ନାହିଁ ।

ଭଦ୍ରକର ସଂସ୍କୃତିସପ୍ତାହରେ ଯୋଗ ଦେବାକୁ ଯାଇ ଥରେ ତାଙ୍କୁ ଭେଟିବା ସୁଯୋଗ ମିଳିଲା । ଫଗୁଣ ମାସ, ଶିମିଳି ଗଛରୁ ଅବିର ଉଡ଼ିଯାଉଛି ପଳାଶକୁ, ଆମ୍ବ ବଉଳ ଗହଳରେ ଦୁଇଟି କୋକିଳଙ୍କର ସଙ୍ଗୀତପ୍ରତିଯୋଗିତା ଚାଲିଛି । ବନ୍ଧୁ ଦେଖାଇଦେଲେ—ଏଇ କବି ଲକ୍ଷ୍ମୀକାନ୍ତଙ୍କ ଘର—ଗୋଟିଏ ଛୋଟ ଦୋମହଲା କୋଠା । ସିଡ଼ି ଉପରେ ସିଡ଼ି ପାରି ହୋଇ ଉପରକୁ ଗଲି । ଖଟର ବହଳ ଗଦି ଉପରେ ଅସ୍ଥି କେତେ ଖଣ୍ଡ, ଅଣ୍ଟା ନଡ଼ିକି ପଡ଼ିଛି, ପେଟ ମିଶିଛି କଙ୍କାଳରେ, ହାତ ସରୁ ସୂତାଖିଅ । ପ୍ରତ୍ୟଙ୍ଗମାନଙ୍କର ଅଙ୍ଗ ସହିତ ଯେପରିକି ଆଉ କିଛି ହେଲେ ଯୋଗାଯୋଗ ନାହିଁ । ଏଇ କବି ! କ'ଣ ଦେଖିବାକୁ ଆସିଲି ?

ଭଙ୍ଗା ମୋର ଡଙ୍ଗା ଖଣ୍ଡିକ ଯାଉଛି ଖସି
କେଉଁ ଅଜଣା ଗାଇକେ କସ ମନାସି
ରତ ରତ ହେଉଛି ବେଳ
ଦରିଆରେ ନ ଦିଶେ କୂଳ
ମିଶିଯିବ କାଶି ଅନ୍ଧାରେ ମନ ଉଦାସୀ ।

ଦେହରେ ସିନା କିଛି ନାହିଁ, ମୁହଁରେ ସ୍ନେହ ଓ ଶ୍ରୀର ଅପୂର୍ବ ସମୃଦ୍ଧି ପୂରି ରହିଛି, ନିଷ୍ପ୍ରଭ ଆଖିକି ଲକ୍ଷ୍ୟ କଲେ ଏକ ଜ୍ୟୋତିର ଆଭାସ ମିଳେ, ଯାହା ସାଧାରଣ ଚକ୍ଷୁରେ ଦୁର୍ଲଭ—ତାଙ୍କ ଆଜୀବନ ସାଧନାର ସିଦ୍ଧି । ନୈରାଶ୍ୟ ବା ଅବସାଦ ନାହିଁ, ମଧୁର ପ୍ରସନ୍ନତା । ନମସ୍କାରଟିଏ କରି ପାଖରେ ବସିଲି, ମୋତେ ଦେଖି ତାଙ୍କର ହୃଦୟର ଦିକୂଳ ଯେପରିକି ଉଚ୍ଛୁଳି ଉଠିଲା । କହିଲେ, "ତୁମର ଢେର୍ ଢେର୍ ଲେଖା ପଢ଼ିଛି । କେବେ ଦେଖି ନଥିଲି । ଏ ଘାଟିରୁ ଉତୁରିଲା ପରି ଲାଗୁ ନାହିଁ । ଯାହା ଖାଉଛି, ତୋଟି ତେଇଁ ପେଟକୁ ଯାଉ ନାହିଁ, ହୋଇପାରେ ଏ ତୁମର ଶେଷ ଦେଖା ।"

ତାଙ୍କ ଦେହ ଅବସ୍ଥାକୁ ଚାହିଁ ଆଶା ବିଶ୍ୱାସ ଫେରନ୍ତୁ ନ ଆସିଲେ ବି କହିଲି, "ଗ୍ରନ୍ଥାବଳୀ ଛପା ସରିବ, ଆପଣ ଦେଖିଯିବେ ।"

"କେତେ କାମ ତ ବାକି ରହିଲା । କୋଉ କାମଟା ଶେଷ କଲି ? ମନ ଯାହା କରିବାକୁ ଚାହିଁଲା, ଦେହ ତା ବିରୁଦ୍ଧରେ ଛିଡ଼ା ହେଲା । ଏଇ ଦେହ ଓ ମନର ସଂଗ୍ରାମ ଭିତରେ ଯାହା କିଛି କରିଛି, ସେ ସବୁ ଏବେ ବି ଆଲୁଅ ଦେଖିଲା ନାହିଁ । ମୁଁ ଜୀବନରେ କାହାକୁ ନିରାଶ ବାଣୀ ଶୁଣାଇ ନାହିଁ—କିନ୍ତୁ......."

"ଆପଣଙ୍କ ନିରାଶା ଯେ ଏକ ଅଭିଶାପ । ଆପଣ ଅବହେଳିତ, କିନ୍ତୁ ଏ ଦେଶରେ ଅବହେଳିତଙ୍କ ସଂଖ୍ୟା ଶତକଡ଼ା ଅନେଶ୍ୱତ । ଆପଣଙ୍କ ତ୍ୟାଗ ଉପରେ ଛିଡ଼ା ହୋଇ ଏ ଜାତି ଆଗେଇବା ଲାଗି ବଳ ପାଇବ । ଆପଣ ବହୁ କଣ୍ଟକରେ କ୍ଷତବିକ୍ଷତ ହୋଇ ଶତ ଶତ ଆଗାମୀ ସାଧକମାନଙ୍କ ପଥ ନିଷ୍କଣ୍ଟକ କରିଛନ୍ତି । ଆପଣ ହିଁ ଚନ୍ଦ୍ରଭାଗା ଗର୍ଭର ପାଷାଣ, ତା'ରି ଉପରେ ଛିଡ଼ା ହେବ ପୃଥିବୀର ଗୌରବ-ମୁକୁଟ କୋଣାର୍କ । ତାର ଭିତ୍ତି ସମ୍ଭାଳିବ ଆପାତ ଦୁର୍ବଳ, କିନ୍ତୁ ଦଧୀଚିର ମେରୁ ପରି ଶକ୍ତିମାନ୍ ଆପଣଙ୍କ ଶହୀଦ୍ ଅସ୍ଥି । ଆପଣ ଜୀବନସାରା କାନ୍ଦିଛନ୍ତି, କିନ୍ତୁ ଫୁଲର ଫସଲରେ ଉତ୍କଳକୁ ହସାଇଛନ୍ତି । ଏକଥା ଲୋକେ ଏବେ ବି ଜାଣନ୍ତି ନାହିଁ; ଶିକ୍ଷିତ ଲୋକେ ଜାଣିଲେ ବି ମନରେ ଧେନନ୍ତି ନାହିଁ; ଭାବବେ ନାହିଁ ଯେ ଭବିଷ୍ୟତ ଆପଣଙ୍କୁ ଚିହ୍ନିବ ନାହିଁ । ଗୁଣର, ସାଧନାର, ବିଦ୍ୟାର ଆଦର ଦିନେ ଅବଶ୍ୟ ଏ ଦେଶରେ ହେବ । ଆପଣ ମଣିଷ ହୋଇ ଆସିଥିଲେ, ମଣିଷ ହୋଇ ଯିବେ, ଏ ଦେହ ନଶ୍ୱର, କିନ୍ତୁ କବି ହୋଇ ରହିବେ ।"

"ମୋ ମନରେ କିନ୍ତୁ ଦୁଃଖ ରହିଗଲା । ଏ ପ୍ରଦେଶର ଲୋକେ ନିଜକୁ ଚିହ୍ନିଲେ ନାହିଁ, ନିଜ ଦେଶର କଳା ଭାସ୍କର୍ଯ୍ୟକୁ ବୁଝିଲେ ନାହିଁ, ସାହିତ୍ୟ ସଙ୍ଗୀତକୁ

ଆଦର କରି ଶିଖିଲେ ନାହିଁ । ଓଡ଼ିଆର ଆତ୍ମଧର୍ମ ବିକଶିତ ହେଉନାହିଁ କାହିଁକି ? ନବ ନବ ଉଦ୍ୟମରେ ଜାତୀୟ ପ୍ରାଣ ପ୍ରକାଶ ପାଇଲେ ସିନା ଖୁସି ଲାଗେ । କଳାପ୍ରାଣ ଓଡ଼ିଆ, ସାହିତ୍ୟିକ ଓଡ଼ିଆ, ସଙ୍ଗଠକ ଓଡ଼ିଆ, ବୀର ଓଡ଼ିଆ ପୃଥିବୀର ଯେ କୌଣସି ପ୍ରାନ୍ତରେ ନିଜ ନିଜ ନିଜର ମହତ୍ତ୍ୱପୂର୍ଣ୍ଣ ପରିଚୟ ଦେଲେ ସିନା ହୁଅନ୍ତା, ମୁଁ କି ଆଶାରେ ଶେଷ ନିଃଶ୍ୱାସ ତ୍ୟାଗ କରିବି ?"

ଲକ୍ଷ୍ମୀକାନ୍ତଙ୍କ ତେଜୋଦୀପ୍ତ ମୁଖ ଦେଖି ଭୁଲି ଯାଉଥିଲି ଯେ ସେ ରୋଗୀ । ବାକ୍ ସ୍ପଷ୍ଟ, ସ୍ୱର ତୀକ୍ଷ୍ଣ, ସାବଲୀଳ, ଆଖିରେ ଦିବ୍ୟ ଦୀପ୍ତି ।

ମୁଁ ତାଙ୍କ କଥାର ଉତ୍ତର ଦେଇ ପାରିଲି ନାହିଁ, ଜାଗ୍ରତ ଉତ୍କଳ ଦେଉ । ବେଶୀ କଥା କହିବାକୁ ଡାକ୍ତର ମନା କରିଛନ୍ତି । ଲକ୍ଷ୍ମୀକାନ୍ତ ତା ମାନିବାକୁ ନାରାଜ । ଆଉ କିଛି ଅଧିକ ଶୁଣିବାକୁ ଲୋଭ ଥିଲେ ବି ମୁଁ ବିଦାୟ ମାଗିଲି । ସେ ତାଙ୍କ କମ୍ପିତ, ସ୍ଥବିର ହସ୍ତରେ ମୋତେ ଆଲିଙ୍ଗନ କରି ଝରଝର ଅଶ୍ରୁ ବୃଷ୍ଟି କରିବାକୁ ଲାଗିଲେ ।

ଆଶା ନିରାଶାର ସଂଗ୍ରାମ ଭିତରେ ସେଦିନ ଫେରିଲି । ଫଗୁଣ ମଧ୍ୟାହ୍ନ ଅଶ୍ରୁ ଛଳ ଛଳ ଫିକା ଗୋଧୂଳି ପରି ବିବର୍ଣ୍ଣ ଦିଶୁଥିଲା । ବିଦାୟ ଘେନି ଆସିଲା ବେଳେ କବିଙ୍କର ପଦେ ସଙ୍ଗୀତ ମନେ ପଡ଼ିଲା—'ହେ ମତେ ବାଇଆ କର ।' ଅର୍ଥାତ୍ ଘୋର ପ୍ରତିକୂଳ ପରିବେଶ ମଧ୍ୟରେ ବି ମୁଁ ଯେପରି ସଂସ୍କୃତି ପ୍ରତି ବୀତଶ୍ରଦ୍ଧ ନ ହୁଏ ! ସମୟ ବା ସୁଯୋଗ ମିଳୁନାହିଁ ବୋଲି ବାହାନା ନ କରେ ! ହେ ପ୍ରଭୁ, ସଂସ୍କୃତି ଲାଗି, ସାହିତ୍ୟ ଲାଗି ମୋତେ ବାଇଆ କରିଦେ !

ଅଳ୍ପ କେତୋଟି ଦିନ ଯାଇଛି; ଦାରୁଣ ଦୁଃସମ୍ବାଦ ପାଇଲି । ବୁଝିଲି, କବିଙ୍କ ସହିତ ତାହା ମୋର ପହିଲି ଦେଖା ନୁହେଁ, ଶେଷ ଦେଖା ।



# ଡଷ୍ଟୋଭସ୍କି

ଲେଖାରୁ ପାଠକ ଲେଖକକୁ ବୁଝନ୍ତି, ଭଲ ପାନ୍ତି ବା ଘୃଣା କରନ୍ତି । କିନ୍ତୁ ଲେଖାରେ ଲେଖକର ସ୍ୱରୂପ ସଙ୍ଗେ ଚଳନ୍ତି ଜୀବନର ରୂପ ଖାପ ଖାଏ ନାହିଁ । ସେ ହତାଶ ହୁଏ, ଭାବେ—'କହନ୍ତି ଯେତେ, ନୁହନ୍ତି ତେତେ' । 'ବାଡ଼ି ବାଇଗଣ ପୋଥି ବାଇଗଣ ସମାନ ନୁହେଁ ।' ଡଷ୍ଟୋଭସ୍କିଙ୍କ ସାହିତ୍ୟର ପ୍ରେମୀ, ଭକ୍ତ, ପୂଜାହାରୀ, ପୁରୋହିତ ଜଗତରେ ବହୁ । ତାଙ୍କ ଜୀବନର ଦରଦୀ ଦୋସର କିଏ ? ସାହିତ୍ୟରୁ କଣ ତାଙ୍କ ଜୀବନ ଭିନ୍ନ ?

ମହାତ୍ମାର ମହିମାନ୍ୱିତ ଧାରଣା ପରିସର ମଧ୍ୟରେ ସେ ଆସନ୍ତି ନାହିଁ । ଦୋଷ ଦୁର୍ବଳତାର ଆଧାର ଜଣେ ସାଧାରଣ ମଣିଷ ହୋଇ ସେ ରହିଛନ୍ତି, ସେଇଆ ହୋଇ ରହିବେ ଚିରକାଳ ।

ବିପଦ ତାଙ୍କର ଅସ୍ଥିପଞ୍ଜର ଦୋହଲାଇ ଦେଇଛି, କିନ୍ତୁ ଶିକ୍ଷା ଦେଇ ପାରି ନାହିଁ । ଦୁଃଖ ହୋଇ ପାରିନାହିଁ ତାଙ୍କର ଦୀକ୍ଷା ଗୁରୁ । ନିପୀଡ଼ନ, ନିଷ୍ପେଷଣର ପ୍ରତୀକ ଜୀବନ ତାଙ୍କର ଗୋଟିଏ ତପ୍ତ କଟାହ । ସେଥିରେ ନିରୀହ ପରି ସେ ଛଟପଟ ହୋଇଛନ୍ତି, ଉଦ୍ଧାର ପାଇବା ଲାଗି ପ୍ରୟାସ କରି ନାହାନ୍ତି । ବାହାର ଆଖିକି ତାଙ୍କ ଜୀବନ ଜୀବନ୍ତ ମରଣ, କିନ୍ତୁ ତାଙ୍କ ସୃଷ୍ଟିଶକ୍ତିକି ଏହାହିଁ କରିଛି ଉଦ୍ଦୀପ୍ତ । ଅନ୍ତର୍ଲୋକରେ ଏଇ ଜୀବନ ସଙ୍ଗେ ତାଙ୍କର ନାହିଁ ବିରୋଧ, ନାହିଁ ବିକ୍ଷୋଭ । ତପସ୍ୱୀର ସାଧନା ତହିଁରେ ଅବ୍ୟାହତ ରହିଛି ।

ଡଷ୍ଟୋଭସ୍କି ସୁଖ ସୌଖୀନ ଜୀବନର ପୂଜାହାରୀ ନୁହନ୍ତି, ନୁହନ୍ତି ଜଣେ ରାଜପଥଯାତ୍ରୀ, ରୁଟିନବନ୍ଧା ଲେଖକ ଜୀବନରେ ତାଙ୍କର ଯୋଜନା ନାହିଁ, ନାହିଁ ସ୍ଥିର ଲକ୍ଷ୍ୟରେ ସାବଲୀଳ ଗତି, ନାହିଁ ପ୍ରଚୁର ପ୍ରସ୍ତୁତି । ଅଧ୍ୟୟନ ଲାଗି ବିପୁଳ ଜୀବନର ଗଣି ଗଣି ପୃଷ୍ଠା ସେ ଓଲଟାଇ ନାହାନ୍ତି । କଠୋର, ନିର୍ମମ ବାସ୍ତବର ସମ୍ମୁଖୀନ ହୋଇ ସେ ବୁଝିଛନ୍ତି ଜୀବନକୁ, ଜଣେ ମଣିଷ ହୋଇ; ସେ ମଣିଷରୁ ହୋଇଛନ୍ତି କଳାକାର । ଝଡ଼ ପରି ଉଚ୍ଛୃଙ୍ଖଳ, ବନ୍ୟା ପରି ଅପ୍ରତିହତ ଡଷ୍ଟୋ ବହୁ ଆଘାତ ସହିଛନ୍ତି, କେବେ ଭାଜି ପଡ଼ି ନାହାନ୍ତି । ଦୁଃଖ ଆଘାତରେ ଶାଣିତ ତାଙ୍କର ଦୃଷ୍ଟି ହୋଇଛି ଅନ୍ତର୍ମୁଖୀ । ସେ ନିଜକୁ ଝାସ ଦେଇ ଯେଉଁ ଜଗତକୁ ପାଇଛନ୍ତି, ତାହା ତାଙ୍କ ଅନ୍ତର୍ଲୋକରେ ହୋଇଛି ମହତ୍ତର । ତେଣୁ ସାହିତ୍ୟ ତାଙ୍କ ଜୀବନରୁ ଭିନ୍ନ ନୁହେଁ, ଯାହା ଆପାତ ଦୃଷ୍ଟିରେ ଦିଶେ ।

• ରେନାସେଁ ଓ ମାନବତାବାଦ ପହିଲେ ୟୁରୋପୀୟ ସଂସ୍କୃତିକି ଧର୍ମ-ନିରପେକ୍ଷ କରିଥିଲା, ମନକୁ କରିଥିଲା ଯୁକ୍ତିମୁଖୀ, ହେତୁବାଦୀ, ତା ପରେ ବ୍ୟକ୍ତିତ୍ୱବାଦର ବିକାଶ ହୋଇ ବ୍ୟକ୍ତି ସଙ୍ଗେ ବ୍ୟକ୍ତିର ପ୍ରତିଯୋଗିତା ଲାଗିଲା; ଲାଗିଗଲା ସମର୍ଥଙ୍କ ସଙ୍ଗେ ସମସ୍ତଙ୍କର ଘୋର ଯୁଦ୍ଧ । ଏହି ପ୍ରତିଯୋଗିତା ଶୀର୍ଷତମ ଚୂଡ଼ା ସ୍ପର୍ଶ କଲା ପୁଞ୍ଜିବାଦୀ ସମାଜରେ । ତାପରେ ବ୍ୟକ୍ତିବାଦ ପରିଣତ ହେଲା ଜାତିବାଦରେ । ଆତ୍ମପ୍ରତିଷ୍ଠା ଲାଗି ଜାତି ଜାତି ମଧ୍ୟରେ ଲାଗିଗଲା ପରସ୍ପରଧ୍ୱଂସୀ ଘୋର ଯୁଦ୍ଧ । ସେଥିରୁ ଆତ୍ମରକ୍ଷା ଲାଗି ଜନ୍ମ ଲଭ କଲା ଆନ୍ତର୍ଜାତିକତା । ଡଷ୍ଟୋଭସ୍କି ପ୍ରାଚୀନ ଧର୍ମ ଓ ଆଧୁନିକ ସାମ୍ୟବାଦର ସନ୍ଧିସ୍ଥଳରେ ଜନ୍ମ ଲଭ କରିଥିଲେ ।

୧୮୨୧ ମସିହା ଅକ୍ଟୋବର ୩୦ ତାରିଖ, ଡଷ୍ଟୋଭସ୍କି ଜନ୍ମ ହେଲେ ଦରିଦ୍ରଙ୍କ ଲାଗି ନିର୍ମିତ ଗୋଟିଏ ଡାକ୍ତରଖାନାରେ । ତାଙ୍କ ପିତା ସେଠି ଜଣେ ଅଧସ୍ତନ କର୍ମଚାରୀ ଥିଲେ । ସେଇ ଡାକ୍ତରଖାନା ଭିତରେ ତାଙ୍କୁ ସାଧାରଣ ବାସ-ଗୃହଟିଏ ମିଳିଥିଲା । ଫଳରେ ଡଷ୍ଟୋ ଆବାଲ୍ୟ ରୋଗୀଙ୍କ ଗହଣରେ ବଢ଼ିଥିଲେ, ରୋଗବ୍ୟାଧି, ଦୁଃଖ ହାହାକାର ତାଙ୍କ ମନକୁ ବିକଟାଳ କରି ଗଢ଼ିଥିଲା ।

ତାଙ୍କ ପିତାଙ୍କର ସେ ଭଲ ଜମି ବା ଜମା ନ ଥିଲା । ରୋଜଗାରରୁ ଅତି-ସାମାନ୍ୟ ସଞ୍ଚୟ କରି ସେ କିଛି ଜମିବାଡ଼ି କିଣିଥିଲେ । କିନ୍ତୁ ତାଙ୍କୁ ଭୋଗ ହେଲା ନାହିଁ । ମଦ୍ୟପାନ ତାଙ୍କର ଗୋଟିଏ ବଡ଼ ଦୋଷ । ସେତେବେଳେ ସେ ଭଲମନ୍ଦ ବିବେଚନା ଶକ୍ତି ହରାଇ ବସୁଥିଲେ । ଜମିରେ ନିଯୁକ୍ତ ଦାସମାନଙ୍କ ପ୍ରତି ଥରେ ସେ ଏଭଳି ନିର୍ଦ୍ଦୟ ବ୍ୟବହାର କଲେ ଯେ ଉତ୍ତ୍ୟକ୍ତ ହୋଇ ସେମାନେ ତାଙ୍କୁ ହତ୍ୟା କଲେ ।

ବହୁ ଦୁଃଖକଷ୍ଟ ସହି ଡଷ୍ଟୋ ମସ୍କୋରେ ପଢ଼ିଲେ, ତାପରେ ପେଟରସବର୍ଗ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲେ । ଅଳସ, କ୍ଲବ ଚିନ୍ତାରେ ପଶ୍ଚାତ୍-ଗାମୀ ଧନୀ ପଢ଼ା ସାଥୀଙ୍କ ସହିତ ସେ ମିଶି ପାରିଲେ ନାହିଁ । ବସି ବସି ଭାବୁଥିଲେ; କିନ୍ତୁ ଭାବନାରେ ଆନନ୍ଦ ମିଳଇ କାହିଁ ? ସମସ୍ୟା କଟିଲା ନାହିଁ । ଏକାକିତ୍ୱ ଦୁଃସହ ହେଲା । ତେଣୁ ସେ ପଢ଼ାରେ ମନୋନିବେଶ କଲେ । ଏତିକିବେଳେ ସେ ଗୋଗୋଲ, ପୁଷ୍କିନ୍, ବାଲ୍‌ଜାକ୍, ହଫ୍‌କିନ୍‌ସ୍, ଭିକ୍ଟରହ୍ୟୁଗୋ, ଡିକେନସ ପ୍ରଭୃତିଙ୍କ ଗ୍ରନ୍ଥ ଅଧ୍ୟୟନର ସୁଯୋଗ ପାଇଥିଲେ । ଶୈଶବରୁ ନଗରରେ ବାସ କରି ନଗରଜୀବନର ବିସ୍ତୃତ ଚିତ୍ରଣ ଲାଗି ସେ ପ୍ରଚୁର ଅଭିଜ୍ଞତା ଅର୍ଜନ କରିଥିଲେ ।

'ଦରିଦ୍ର ଲୋକସାଧାରଣ' ତାଙ୍କର ପ୍ରଥମ ଉପନ୍ୟାସ । ଜଣେ କିରାଣୀ ସହିତ ଅନାଥା ବାଳିକାର ପ୍ରେମ ଏହାର ଉପଜୀବ୍ୟ । ରୁଷିଆରେ ସାହିତ୍ୟିକ-

ଭାବରେ ସେ ସର୍ବସାମାନ୍ୟ ପରିଚିତ ଥିଲେ, ଏହି ଗ୍ରନ୍ଥ ରଚନା ଫଳରେ ସେ ପ୍ରତିଷ୍ଠିତ ହେଲେ । ତାଙ୍କ ଲେଖନୀ ଦ୍ରୁତତର ଗତିରେ ଚାଲିଲା ।

ଅଦୃଷ୍ଟର ପରିହାସ, ତାଙ୍କର ଜୀବନର ମଙ୍ଗ ହଠାତ୍ ବୁଲିଗଲା । ରାଜଦ୍ରୋହ ଅଭିଯୋଗରେ ସେ ୧୮୪୯ ଏପ୍ରେଲ ୨୩ତାରିଖରେ ବନ୍ଦୀ ହେଲେ । ତାଙ୍କୁ ଅନ୍ଧକାରମୟ କାରାଗୃହରେ ନିକ୍ଷେପ କରାଗଲା । ବିଚାର ଅତି ସଂକ୍ଷିପ୍ତ । ୨୦ ଜଣ ବିଦ୍ରୋହୀଙ୍କ ସହିତ ତାଙ୍କୁ ଫାଶି ହୁକୁମ ହେଲା । ସେକାଳ ଘଟଣା ସଂପର୍କରେ ଡଷ୍ଟୋ ତାଙ୍କ ଭାଇଙ୍କ ପାଖକୁ ଖଣ୍ଡିଏ ପତ୍ରରେ ଲେଖିଛନ୍ତି, ତାହା ଯେତିକି ଲୋମହର୍ଷଣକାରୀ; କରୁଣ, ସେତିକି ହର୍ଷୋଦ୍ଦୀପକ । ସେ ଲେଖିଛନ୍ତି —ଆଜି ଡିସେମ୍ବର ୨୨ ତାରିଖ, ଆମକୁ ଗୋଟିଏ ଚତୁଷ୍କୋଣକୁ ନିଆଗଲା । ମୃତ୍ୟୁ ଆଦେଶପତ୍ର ପଢ଼ାଗଲା । ଶେଷ ଚୁମ୍ବନ ଲାଗି କ୍ରସ୍ ବୁଲେଇ ନିଆହେଲା । ଭାଗ୍ୟକୁ ମୁଁ ଦ୍ୱିତୀୟ ଗୋଷ୍ଠୀରେ ଥିଲି । ଗୋଟିଏ ମୁହୂର୍ତ୍ତ ମାତ୍ର । ସବୁ ଶେଷ ହୋଇ-ଯାଇଥାନ୍ତା । ହଠାତ୍ ମୃତ୍ୟୁଦଣ୍ଡରୁ ଅବ୍ୟାହତି ଆଦେଶ ଆସିଲା ସମ୍ରାଟଙ୍କଠାରୁ । ଅନ୍ୟମାନଙ୍କ ସହିତ ବନ୍ଦୀଭାବରେ ମୁଁ ସାଇବେରିଆକୁ ପ୍ରେରିତ ହେଲି ।

ସାଇବେରିଆ ଜୀବନ ତାଙ୍କର ଅତି ଦୁଃଖମୟ । ପରିଧେୟ ମେଷଚର୍ମ, ଶଯ୍ୟାରର ଆବରଣ ମଧ୍ୟ ସେଇ । ପଦ ଅନାବୃତ୍ତ, ଅନୁଭବ-ଶକ୍ତି ତାଙ୍କର ଲୋପ ପାଇଥିଲା, ଦୁଃସହ ଶୀତ, ଗବାକ୍ଷରେ ଜମିଥିଲା ବରଫ, ଛାତରୁ ଗଳୁଥିଲା ବରଫ ପାଣି । ଦୁର୍ଗନ୍ଧଭରା ଅନ୍ଧକାର । ଦିନେ ନୁହେଁ, ମାସେ ନୁହେଁ, ଚାରି ବର୍ଷ ତାଙ୍କୁ ଏହି କାରାଗାରରେ କାଳ କଟେଇବାକୁ ପଡ଼ିଥିଲା । ସାଥୀ ତାଙ୍କର ଆତତାୟୀ, ଡାକୁ । ହାତରେ ଖଣ୍ଡିଏ ବାଇବେଲ୍, ଫାଶିଖୁଣ୍ଟରେ ଚଢ଼ିବା ଆଗରୁ ଜଣେ କରୁଣାମୟୀ ନାରୀ ତାଙ୍କୁ ଏଖଣ୍ଡି ଉପହାର ଦେଇଥିଲେ । ଉତ୍କଟ ମାନସିକ ଯନ୍ତ୍ରଣାରେ ଉଦାସୀନ, ନୀରବତା ତାଙ୍କର ଏକମାତ୍ର ପନ୍ଥା ଥିଲା । ଏହି ଭୟାବହ ଘଟଣା ତାଙ୍କ ଭଲମନ୍ଦ, ସୁଖ ଦୁଃଖର ପାରମ୍ପରିକ ଧାରଣାକୁ ଓଲଟ୍‌ପାଲଟ କରିଦେଲା ।

ଭଗବାନ୍‌ଙ୍କ ସୃଷ୍ଟିରେ ସୁଖ ବା ଦୁଃଖ, କାହାର ଉପାଦେୟତା ଅଧିକ, କହିବା ଦୁଷ୍କର । ଡଷ୍ଟୋଙ୍କ ଜୀବନର ଦୁଃଖ ବ୍ୟର୍ଥ ହୋଇ ନାହିଁ, ତାଙ୍କ କୃତିତ୍ୱ-ଲାଭର ପରମ ସହାୟକ ହୋଇଅଛି । ଅପରାଧୀଙ୍କ ସହ ବାସ ମଧ୍ୟ ବିଫଳ ହୋଇ ନାହିଁ । ଜୀବନ୍ତ ମନ ଅଧ୍ୟୟନର ଏଭଳି ସୁଯୋଗ କ୍ୱଚିତ୍ ଲେଖକଙ୍କ ଭାଗ୍ୟରେ ମିଳେ । ଅପରାଧୀଙ୍କ ମନୋବିଜ୍ଞାନ ଫୁଟାଇବାରେ ଡଷ୍ଟୋଙ୍କ ସମକକ୍ଷ ଲେଖକ ପୃଥିବୀରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମୁକ୍ତି ପରେ ସେ ସୈନ୍ୟବିଭାଗରେ ଚାକିରି କଲେ, ଚାକିରି ଛାଡ଼ିଦେଇ 'ପେଟରସ୍ ବର୍ଗ ଆସିଲେ । ଏଠି ତାଙ୍କର ନୂତନ ସାହିତ୍ୟିକ ଜୀବନର ସୂତ୍ରପାତ ହେଲା । ପତ୍ରିକା ବାହାର କରିବାର ଝୁଙ୍କ୍ ବହୁ ସାହିତ୍ୟିକଙ୍କର ହୁଏ, କିନ୍ତୁ ଚଳାଇବା ଲାଗି ପ୍ରଚୁର ବ୍ୟବସାୟ ବୁଦ୍ଧି ନଥାଏ । ଫଳରେ ପତ୍ରିକା ତ ବନ୍ଦ ହୁଏ, ସାହିତ୍ୟିକ ବି ଦେବାଳିଆ ହୁଅନ୍ତି । ଡଷ୍ଟୋଙ୍କ ଜୀବନରେ ଏହାହିଁ ଘଟିଥିଲା ।

୧୮୬୧ ଖ୍ରୀଷ୍ଟାବ୍ଦରେ ସେ ଭାଇ ମାଇକେଲ୍‌ଙ୍କ ସଙ୍ଗେ ମିଶି ବ୍ରେମିଆ (କାଳ) ବୋଲି ଖଣ୍ଡିଏ ପତ୍ରିକା ବାହାର କଲେ । ଏଥିରେ 'ଆହତ ଓ ଅବମାନିତ', 'ମୃତ ପରିବାରର ବିବରଣୀ' ଉପନ୍ୟାସ ଦୁଇଟି ପ୍ରକାଶିତ ହୋଇଥିଲା । ଦୁଇ ବର୍ଷ ପରେ ଏହି ପତ୍ରିକାଟି ବନ୍ଦ ହୋଇଗଲା । ତାଙ୍କର ଚେଷ୍ଟା ଅଦମ୍ୟ । ୧୮୬୪ ରେ ସେ 'Epokha' ବୋଲି ଆଉ ଗୋଟିଏ ପତ୍ରିକା ପ୍ରକାଶ କଲେ । ଏଥିରେ ସେ ଦେବାଳିଆ ହେଲେ । ଘୋର ମନସ୍ତାପରେ ସେ 'ପାତାଳ ପୁରର ସନ୍ଦେଶ' ଉପନ୍ୟାସ ରଚନା କଲେ । ନାନା ଯନ୍ତ୍ରଣାରେ ଉତ୍ପୀଡ଼ିତ ଆତ୍ମାର ଚିତ୍ର ଏଥିରେ ପ୍ରକାଶ ପାଇଅଛି । ଆଦର୍ଶ ବ୍ୟାହତ, ଉଚ୍ଚାକାଂକ୍ଷା ବିପର୍ଯ୍ୟସ୍ତ ହେବାରୁ ନାୟକ ବ୍ୟଙ୍ଗ ଦୃଷ୍ଟିରେ ଏ ଜଗତକୁ ଦେଖିଛି । ତାର ଘୋର ବିପର୍ଯ୍ୟୟ ମଧ୍ୟରେ ପତ୍ନୀ ଜୀବନର ସାଥୀ ତାକୁ ଘୃଣା ଦୃଷ୍ଟିରେ ଦେଖିଛି । ତାର ଏକମାତ୍ର ସହାୟ ଜଣେ ବେଶ୍ୟା । ତା ପ୍ରତି ସେ ନିଷ୍ଠୁର ଆଚରଣ କରିଛି । ଶେଷକୁ ସେ ନିଜ ପ୍ରତି ନିଷ୍ଠୁର ହୋଇଅଛି; ସୁନ୍ଦର, ସୁଯୋଗ୍ୟ ଜୀବନ ଯାପନ କରିବାର ପ୍ରବଳ ଇଚ୍ଛା ଏଥିରେ ପ୍ରକଟିତ ।

ଦୁଃଖ ଯେତେବେଳେ ଆସେ, ତାର ସଖାସୋଦର ଘେନିଆସେ, ପୀଡ଼ିତକୁ ତଳିତଳାନ୍ତ ନ କରିବା ପର୍ଯ୍ୟନ୍ତ ଶାନ୍ତ ହୁଏ ନାହିଁ । 'Epokha'ରେ ଦେବାଳିଆ ହେବା ପରେ ଡଷ୍ଟୋଙ୍କର ସ୍ତ୍ରୀ ବିୟୋଗ ଘଟିଲା, ଭ୍ରାତା ମଧ୍ୟ ତାଙ୍କୁ ଅସହାୟ ଭାବରେ ଛାଡ଼ି ଦେଇ ଗଲା । ବୋଝ ଉପରେ ନଳିତା ବିଡ଼ା ପରି ଭାଇର ପରିବାର ପୋଷଣ ଭାର ଆସି ମୁଣ୍ଡ ଉପରେ ପଡ଼ିଲା । କପର୍ଦ୍ଦକଶୂନ୍ୟ ହୋଇ ଡଷ୍ଟୋ ଦୀର୍ଘଶ୍ୱାସ ପକେଇବାକୁ ଲାଗିଲେ ।

ଆପଦବିପଦରେ ଅତି ଅପ୍ରତ୍ୟାଶିତ ଭାବରେ କରୁଣାର ଧାରା ବୋହି-ଆସେ । ଜଣେ ରୁଷୀୟ ପୁରୋହିତ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କୁ ଏ ବିପଦରେ ସହାୟକ ହୋଇଥିଲେ । ତାପରେ ରୁଷୀୟ ପତ୍ରିକା 'ଅଗ୍ରଦୂତ' ତାଙ୍କୁ 'ଦୋଷ ଓ ଦଣ୍ଡ' ଉପନ୍ୟାସ ଲାଗି ୩୦୦ ରୁବଲ୍ ପାରିଶ୍ରମିକ ଦେଲା । ଏହି ପତ୍ରିକାରେ ଡଷ୍ଟୋଙ୍କର ୪ ଖଣ୍ଡ ଉପନ୍ୟାସ ପ୍ରକାଶ ପାଇଥିଲା ।

'ଦୋଷ ଓ ଦଣ୍ଡ' ତାଙ୍କୁ ସାହିତ୍ୟକ୍ଷେତ୍ରରେ ସୁପ୍ରତିଷ୍ଠିତ କଲା, କିନ୍ତୁ ଋଣମୁକ୍ତ କରିପାରିଲା ନାହିଁ । ସେ ଗୋଟିଏ ସାଇଲକ୍‌ର କବଳରେ ପଡ଼ିଥିଲେ, ଅଗ୍ରୀମ କିଛି ଟଙ୍କା ଆଣି ଖଣ୍ଡିଏ ଉପନ୍ୟାସ ଦେବେ ବୋଲି କବାବ ଦେଇଥିଲେ । ସେ ଦାବୀ କଲା—ଯଦି କବାବମତେ ସଙ୍ଗେ ସଙ୍ଗେ ଖଣ୍ଡେ ଉପନ୍ୟାସ ଲେଖି ନ ଦିଅ, ଭବିଷ୍ୟତରେ ଯେତେ ଉପନ୍ୟାସ ଲେଖିବ, ତା ଉପରେ ମୋର ପୂର୍ଣ୍ଣ ସ୍ୱତ୍ୱ ରହିବ । ରୟାଲ୍‌ଟି ବାବଦକୁ ତୁମକୁ ଗୋଟାଏ ପଇସା ପାହୁଲା ଦିଆଯିବ ନାହିଁ ।

ଏହିପରି ଗୋଟିଏ ମାରାତ୍ମକ ଚୁକ୍ତିପତ୍ରରେ ଡଷ୍ଟୋ ବାଧ୍ୟ ହୋଇ ସନ୍ତକ କଲେ । ଦୁରବସ୍ଥାରେ ପଡ଼ି ମଣିଷ ଏହିପରି ନିଜକୁ ବନ୍ଧା ଦିଏ । ଲେଖିବା ଛଡ଼ା ଗତ୍ୟନ୍ତର ନ ଥିଲା । ସେ 'ଜୁଆଖେଳାଳି' ବୋଲି ଖଣ୍ଡିଏ ଉପନ୍ୟାସ ଡାକ-ଦେଲେ । ଅନ୍ନା ଗ୍ରିଗୋରି ଏଭନା ବୋଲି ଜଣେ ମହିଳା ଲେଖିଲେ । ଏହି ମହିଳାଙ୍କ ସଙ୍ଗେ ତାଙ୍କର ପ୍ରେମ ଓ ବିବାହ ହୋଇଥିଲା ।

ମୁଖ୍ୟତଃ ଦୁଇଟି ସମ୍ପର୍କରୁ ବ୍ୟକ୍ତି ଚରିତ୍ରର ଦୃଢ଼ତା ବା ଦୁର୍ବଳତା ଜଣା-ପଡ଼େ—କାଞ୍ଚନ ଆଉ କାମିନୀ । ଡ଼ଷ୍ଟୋ କାଞ୍ଚନର ସ୍ୱପ୍ନ କେବେ ଦେଖି ନାହାନ୍ତି । ତାଙ୍କ ରୋଜଗାର ନିୟମିତ ନୁହେଁ, ସାମୟିକ । ଦେଖି ଶୁଣି ଖର୍ଚ୍ଚ କରିଥିଲେ ହୁଏତ ସେ ବିକଟ ଦାରିଦ୍ର୍ୟ ଓ ଲାଞ୍ଛନାର ସମ୍ମୁଖୀନ ହୋଇ ନ ଥାନ୍ତେ । କିନ୍ତୁ ତାଙ୍କ ଜାତକରେ ସ୍ଥା ନଥିଲା । ସେ ନିତାନ୍ତ ଅପରିଣାମଦର୍ଶୀ ଓ ଅମିତବ୍ୟୟୀ ଥିଲେ । ଯାହି ଦି ପଇସା ଲେଖାରୁ ପାଉଥିଲେ, ମଦ ବା ଜୁଆ ଖେଳରେ ଉଡ଼ାଇ ଦେଉଥିଲେ ।

ନାରୀ ସହିତ ସମ୍ପର୍କରେ ତାଙ୍କର ଚରମ ଦୁର୍ବଳତା ପ୍ରକାଶ ପାଇଥିଲା । ଏ କ୍ଷେତ୍ରରେ ପୋଖତ ବିଚାରବୁଦ୍ଧି ନୁହେଁ, ସାମୟିକ ଯୌନ ଉତ୍ତେଜନା ହିଁ ତାଙ୍କର ନିୟାମକ ଥିଲା, ଫଳରେ ସହଧର୍ମିଣୀ ନୁହେଁ, ସମ୍ପଦସଙ୍ଗିନୀ ବା ସାମୟିକ ଆମୋଦଦାୟିନୀ ସେ ପାଇଥିଲେ ।

ପହିଲେ ସେ ଜଣେ ଶୁଲ୍‌କ ଅଫିସରଙ୍କ ସ୍ତ୍ରୀଙ୍କ ସଙ୍ଗେ ପ୍ରେମ କଲେ । ସେ ଅଧିକବୟସ୍କା, ଦାୟିତ୍ୱହୀନା, ଅତି ନିଷ୍ଠୁରା । ତାଙ୍କ ସ୍ୱାମୀ ସ୍ଥାନାନ୍ତରିତ ହୋଇ ମୃତ୍ୟୁ-ଶଯ୍ୟାରେ ପଡ଼ିଥିବା ବେଳେ ସେ ନୂତନ ପ୍ରଣୟୀର ଅନୁସନ୍ଧାନରେ ଥିଲେ । ଡଷ୍ଟୋ ତାଙ୍କର ବହୁ ପ୍ରେମିକଙ୍କ ମଧ୍ୟରୁ ଜଣେ ।

ତାପରେ ସେ ସୁସ୍ଲୋଭାଙ୍କ ସଙ୍ଗେ ପ୍ରେମ କଲେ । ସେ ଜଣେ ଫରାସୀ ମହିଳା, ଯେପରି ବଦ୍‌ଖିଆଲୀ, ସେହିପରି ନିଷ୍ଠୁରା । ପ୍ରଣୟୀ ତ ଦୂରର କଥା, ସେ ଡଷ୍ଟୋଙ୍କୁ ଜଣେ ମଣିଷ ହିସାବରେ ପାସଙ୍ଗରେ ପକାଉ ନ ଥିଲେ । ସେ ୧୮୬୪

ମସିହାରେ ଡାଇରୀରେ ଲେଖିଛନ୍ତି—ମୁଁ ତଷ୍ଟୋଙ୍କୁ ଘୃଣା କରେ, ସେ ମୋ ଅନ୍ତରର ସମସ୍ତ ବିଶ୍ୱାସ ନାଶ କରିଛନ୍ତି । ସେ ମୋତେ କେବଳ ବିରକ୍ତ କରନ୍ତି, ତର୍କ କଲେ ଆମେ ବିଚ୍ଛିନ୍ନ ହେଉ ।

ହେଲେହେଁ ସାରା ଜୀବନ ତଷ୍ଟୋଙ୍କ ଉପରେ ଏହି ମହିଳାଙ୍କର ମୋହମୟ ପ୍ରଭାବ ଥିଲା । ଉଭୟେ ବିଚ୍ଛିନ୍ନ ହେଉଥିଲେ, ପୁଣି ନିବିଡ଼ଭାବରେ ମିଳିତ ହେବା ଲାଗି । ତଷ୍ଟୋଙ୍କ ସହିତ ପ୍ରେମ ପରେ ସେ ଜଣେ ପ୍ରସିଦ୍ଧ ସାହିତ୍ୟିକ ଓ ଯୌନ ବିଜ୍ଞାନବିତ୍‌ଙ୍କୁ ବିଭା ହୋଇଥିଲେ । ତାଙ୍କୁ ଛାଡ଼ି ପୁଣି ତଷ୍ଟୋଙ୍କ ସହିତ ମିଳିତ ହେଲେ । ସୁଖର ସାଥୀ ସେ; ଜୁଆଖେଳରେ ସର୍ବସ୍ୱ ହରାଇ ତଷ୍ଟୋ ଯେତେବେଳେ ଦାରିଦ୍ର୍ୟର ଭିକାରୀ ହେଲେ, ସୁସ୍ଲୋଭା ତାଙ୍କୁ କ୍ଷୁଧା ଓ ନୈରାଶ୍ୟରେ ଛାଡ଼ି ଦେଇ ପ୍ୟାରିସ୍ ଚାଲିଗଲେ । ତଥାପି ତଷ୍ଟୋ ମୋହମୁକ୍ତ ହେଲେ ନାହିଁ, ଏହି ନାରୀଙ୍କ ନିକଟକୁ ସେ ପତ୍ର ଲେଖିଲେ—ଚା' ମୋର ଏକମାତ୍ର ଖାଦ୍ୟ ହୋଇଅଛି । ଚା' ଛଡ଼ା ହୋଟେଲ ମ୍ୟାନେଜର ମୋତେ କିଛି ଦେଉନାହିଁ । ଅବସ୍ଥା କହିଲେ ନ ସରେ । କିଛି ପାଇଲେ ମୁଁ ଏ ହୋଟେଲ ଛାଡ଼ିଯିବି ।

ମାର୍ଥା ବ୍ରାଉନ୍ ଆଉ ତାଙ୍କର ପରବର୍ତ୍ତୀ ପ୍ରେମିକା । ସେ ଜଣେ ନାବିକର ସ୍ତ୍ରୀ । ତଷ୍ଟୋ ପ୍ରେମରେ ଉନ୍ମତ୍ତ ହେଲେବି ଏହି ମହିଳା ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲେ ।

ତାଙ୍କର ଶେଷ ପ୍ରେମିକା ଆନ୍ନା ଗ୍ରିଗୋରୀ ଏଭ୍‌ନା । ସେ ସାଧ୍ୱୀ, ସେବା-ବ୍ରତା । ଶେଷ ଜୀବନ ପର୍ଯ୍ୟନ୍ତ ବିଶ୍ୱସ୍ତା ରହିଥିଲେ । କିନ୍ତୁ ତଷ୍ଟୋଙ୍କ ଚରିତ୍ର ବିଚିତ୍ର; ଏହି ନାରୀଙ୍କ ପ୍ରତି ତାଙ୍କର ସମ୍ପୂର୍ଣ୍ଣ ଅନୁରକ୍ତି ନ ଥିଲା । ସୁସ୍ଲୋଭାଙ୍କ ସହିତ ପତ୍ର ବିନିମୟ ଅକ୍ଷୁଣ୍ଣ ଥିଲା । ଏହି ନାରୀଙ୍କର ଧୈର୍ଯ୍ୟ ଅପରିସୀମ; ପ୍ରେମ ବଳରେ ଶେଷରେ ସେ ତଷ୍ଟୋଙ୍କୁ ଜୟ କରିଥିଲେ, କିନ୍ତୁ ତାଙ୍କୁ ଚିର ସଂଯତ ରଖି ପାରିଲେ ନାହିଁ । ପ୍ରକୃତି ନୈବ ମୁଚ୍ୟତେ । ଦୁର୍ବଳମନା, ଅସଂଯତ, ଅପବ୍ୟୟୀ ତଷ୍ଟୋ ଜର୍ମାନୀ ଯାଇ ପୁଣି ଜୁଆ ଖେଳିଲେ, ସର୍ବସ୍ୱ ହରାଇଲେ, ସ୍ତ୍ରୀଙ୍କର ଅଳଙ୍କାରପତ୍ର ବନ୍ଧା ପକାଇଲେ, କେହି ବିଶ୍ୱାସ କରିବ ନାହିଁ, ଯେ ସାଇବେରିଆର ଫାଶି ଖୁଣ୍ଟରୁ ଜୀବନ ଘେନି ଫେରିଛି, ସେ ଏପରି ଦାୟିତ୍ୱହୀନ, କଦାଚାରୀ ହୋଇପାରେ । ଶେଷକୁ ଏହି ପାଷାଣୀର ବି ଧୈର୍ଯ୍ୟଚ୍ୟୁତି ଘଟିଲା ।

ଏହି ଦୁରବସ୍ଥାରେ ପଡ଼ି ସେ ପ୍ରକାଶକଙ୍କ ନିକଟକୁ ଯେଉଁ ପତ୍ର ଲେଖିଥିଲେ, ତାହା ଯେ କୌଣସି ଆତ୍ମମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତି ପକ୍ଷରେ ନିତାନ୍ତ ଗ୍ଲାନିକର । ପତ୍ରର ସାରମର୍ମ ଏହି—ଉପାସରେ ରହି ମୁଁ କଣ ଲେଖିବି ? ପେଟ ପାଇଁ ଶେଷକୁ

ମୋ ପେଣ୍ଟଲୁନ୍ ଓ ମୋ ସ୍ତ୍ରୀଙ୍କର ଶେଷ ପଶମଲୁଗା ଖଣ୍ଡି ବନ୍ଧା ଦେବାକୁ ହେଲା । ତା'ପରେ ହେଲା ଘୋର ବରଫବୃଷ୍ଟି ।

ଏହି ସମୟରେ ତାଙ୍କ ପୁଅର ମୃତ୍ୟୁ ଘଟିଲା । ଜୀବନର ଶେଷ ମୁହଁରେ ମୂର୍ଚ୍ଛାରୋଗ ତାଙ୍କ ଉପରେ ଘନ ଘନ ଦାଉ ସାଧିବାକୁ ଲାଗିଲା । ଘୋର ଦାରିଦ୍ର୍ୟର ଜ୍ୱାଳାରେ ସେ ଛଟପଟ ହେଲେ । ତଥାପି ଦିନେ ହେଲେ ସେ ଅଭିଜାତର ଦ୍ୱାରସ୍ଥ ହୋଇ ନ ଥିଲେ ।

ସେ ବଡ଼ ତୀକ୍ଷ୍ଣମୁଖ ଥିଲେ । ଅନ୍ୟାୟ ଦେଖିଲେ ମୁହେଁ ମୁହେଁ ପଦସ୍ଥ ବ୍ୟକ୍ତିଙ୍କର କଡ଼ା ସମାଲୋଚନା କରୁଥିଲେ । ଫଳରେ ବହୁ ବିଶିଷ୍ଟ ଲୋକ ତାଙ୍କଠାରୁ ଦୂରେଇ ଯାଉଥିଲେ । କିଛି ବ୍ୟକ୍ତିଗତ ସୁବିଧା ହାସଲ କରିବା ଲାଗି ସେ ଅତ୍ୟାଚାରୀ ସହିତ କୌଣସି ସାଲିସ୍ ମାନି ନେଇ ନାହାନ୍ତି ।

ଡଷ୍ଟୋଇଙ୍କ ମହତ୍ତ୍ୱ ଏହି ଯେ ଘୋର ପ୍ରତିକୂଳ ପରିସ୍ଥିତିରେ ସେ ସାହିତ୍ୟ-ସାଧନାକୁ ଅବ୍ୟାହତ ରଖି ପାରିଥିଲେ । 'ମୂର୍ଖ', 'ଚିରନ୍ତନ ସ୍ୱାମୀ', 'କଞ୍ଚା ଯୌବନ' ପ୍ରଭୃତି କେତେକ ଉପନ୍ୟାସ ତାଙ୍କ ଶେଷ ଜୀବନରେ ପ୍ରକାଶିତ ହୋଇଥିଲା । 'କରମାଜୋଭ୍‌ର ଭ୍ରାତୃବୃନ୍ଦ' ତାଙ୍କର ଶ୍ରେଷ୍ଠ କୃତି ।

ଶେଷ ଜୀବନରେ ସେ ସ୍ୱଦେଶକୁ ଫେରି ଆସିଲେ । ସ୍ତ୍ରୀଙ୍କ ଯତ୍ନରେ ତାଙ୍କ ଆର୍ଥିକ ଅବସ୍ଥା ସୁଧୁରିଲା, ତାଙ୍କ ଭାଗ୍ୟ ବଦଳିଲା । ତାଙ୍କ ପ୍ରଭାବ ବିସ୍ତୃତ ହେଲା, ଯଶର ସୌରଭ ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା । ମାନସିକ ସଂଗ୍ରାମ ସଙ୍କଟରେ ବହୁ ଲୋକ ତାଙ୍କର ପରାମର୍ଶ ନେଲେ ।

ଏହି ଅବସ୍ଥାରେ ଜଣେ ରୁଷୀୟ ଲେଖକ ତାଙ୍କ ସମ୍ପର୍କରେ ଲେଖିଛନ୍ତି—ଷାଠିଏ ବର୍ଷର ଦୁଃଖ ଶୋକ ସତେ କି ତାଙ୍କ ଦେହରେ ଛାପି ହୋଇ ରହିଛି । ବୟସ ଭାରରେ ଯେତେ ନୁହେଁ, ଅତି ଦୁଃଖରେ ହିଁ ସେ ଅବନତ ହୋଇଛନ୍ତି ।

୧୮୮୧ ମସିହା ଜାନୁୟାରୀ ୨୮ ତାରିଖରେ ସେ ଇହଲୀଳା ସମ୍ବରଣ କଲେ । 'ଲେଖକର ପତ୍ରିକା' ତାଙ୍କର ଶେଷ ଲେଖା । ଏହା ଶେଷ ହୋଇନାହିଁ ।

ଡଷ୍ଟୋଭସ୍କିଙ୍କ ବ୍ୟକ୍ତିତ୍ୱ ଜଟିଳ, ଦୁର୍ବୋଧ । ତେଣୁ ତାଙ୍କ ବିଷୟରେ ନାନା ମୁନିଙ୍କର ନାନା ମତ; ବେଳେବେଳେ ଏହା ପରସ୍ପର ବିରୋଧୀ ।

ଷ୍ଟ୍ରାଖୋଭ୍ ଲେଖିଛନ୍ତି—ସେ ହିଂସ୍ରକ, ସଇତାନ୍, ପାପୀ, କିନ୍ତୁ ବୁଦ୍ଧିମାନ୍, ମୋ ସମକ୍ଷରେ ସେ ନିଜ ଚାକର ପ୍ରତି ଦୁର୍ବ୍ୟବହାର କରିଥିଲେ । ଚାକର ଉତ୍ତ୍ୟକ୍ତ

ହୋଇ କହିଥିଲେ—ବିବେଚନା କରିବାର କଥା ଯେ ମୁଁ ଜଣେ ରକ୍ତ ମାଂସର ମନୁଷ୍ୟ !

ସେ ଆଘାତ କରନ୍ତି, ପ୍ରତିପକ୍ଷର ଆଘାତରୁ ଆତ୍ମରକ୍ଷା ଲାଗି, ସେ ନିଜର ପାପ କେବେ ସ୍ୱୀକାର କରି ନାହାନ୍ତି, ବରଂ ନିଷ୍ଠୁର ଆଚରଣରେ ଆନନ୍ଦ ଅନୁଭବ କରିଥାନ୍ତି ।

ଟ୍ରୁଗେନିଭ୍ କହିଛନ୍ତି—ଜୀବନରେ ଯେତେ ଲୋକ ଦେଖିଛି, ଡଷ୍ଟୋ ସବୁଠାରୁ ସଇତାନ୍ ଖ୍ରୀଷ୍ଟିଆନ୍ । ତାଙ୍କ ସ୍ତ୍ରୀ ମତ ଦିଅନ୍ତି—ପୃଥିବୀରେ ସବୁଠାରୁ ସେ ପବିତ୍ରତମ ।

ମନସ୍ତତ୍ତ୍ୱବିତ୍ ସିଗ୍‌ମଣ୍ଡ ଫ୍ରଏଡ଼୍ କହିଛନ୍ତି—ନିଜ ଘୃଣିତ ପିତାଙ୍କ ବିନାଶ କରିବା ଲାଗି ଡଷ୍ଟୋଙ୍କର ଗୋପନ ଇଚ୍ଛା ଥିବ । ଦାସମାନଙ୍କ ଦ୍ୱାରା ତାଙ୍କ ପିତା ନିହତ ହେବାପରେ ଅବଚେତନ ମନର ସେହି ଇଚ୍ଛା ଅପରାଧୀ ମନୋଭାବରେ ପରିଣତ ହୋଇଥିବ । ତେଣୁ ସ୍ୱଇଚ୍ଛାରେ ସେ ନାନା ଦୁଃଖ, ଅପମାନ, ଦୁର୍ଭାଗ୍ୟ ବରଣ କରିଥିବେ । ପ୍ରକୃତରେ ଏହି ଅକୁଣ୍ଠ ଦୁଃଖବରଣ ତାଙ୍କ ମନକୁ ଲଘୁ କରୁଥିଲା, ସୃଷ୍ଟିଶକ୍ତିକ କ୍ଷୁଭିତ କରୁଥିଲା । ଧ୍ୱଂସ ମନୋବୃତ୍ତି ଫଳରେ ସେ ବହୁ ଅନିଷ୍ଟ ଘଟାଇଥାନ୍ତେ; କିନ୍ତୁ ସ୍ୱତଃ ଦୁଃଖବରଣ ତାଙ୍କୁ ଏଥିରେ ଅବ୍ୟାହତି ଦେଲା ।

ଡଷ୍ଟୋଙ୍କ ଚରିତ୍ର ବିଷୟରେ ଯିଏ ଯାହା ଲେଖନ୍ତୁ, ଗୋଟିଏ ବିଷୟରେ ସମସ୍ତେ ଏକମତ ଯେ ସେ ନୀଳକଣ୍ଠ, ଦୁନିଆର ଯାବତୀୟ ଗରଳ ପାନକରି ବଞ୍ଚିଛନ୍ତି, ଅମୃତର ସନ୍ଧାନ, ତାଙ୍କ ଜୀବନର ବାଣୀ—ଦୁଃଖ ବିପଦ ବିରୁଦ୍ଧରେ ଅକ୍ଳାନ୍ତ ସଂଗ୍ରାମ ଓ ଅକ୍ଷୟ ସିଦ୍ଧି ଲାଭରେ ପ୍ରକୃତ ପୁରୁଷକାର ପ୍ରକାଶିତ ହୁଏ । ତାହାହିଁ ଦୁର୍ଗତ ଜୀବନର ଆଲୋକବର୍ତ୍ତିକା ।



# ମେଦିନୀପୁରର ଗୋଟିଏ ଗ୍ରାମ

ଉଚ୍ଚ ବାଲିବନ୍ତ, ବହଳ ଅଭ୍ରକଣା ଝଲସାଇ ଦେଉଛି ଆଖି । ଗଜା ଝାଉଁଗଛ କିଛି ଦୂରରେ, ନାହିଁ ଗୁଞ୍ଜା, ନାହିଁ ମର୍ମର । ଦୀଘା ସମୁଦ୍ର କୂଳେ କୂଳେ ଆମେ ଧାଇଁଛୁ, ସିନେମା ସୁଟିଂ ଦେଖି । ଲାବଣ୍ୟମୟୀ ସାବିତ୍ରୀ ଚାଟାର୍ଜି ଖେଳୁଛନ୍ତି ବାଲିବନ୍ତ ତଳେ, ହେମାଦ୍ରି ପାଦ ଦେଶରେ ପାର୍ବତୀଙ୍କ ପରି । ଡଗା ଡଗା ଆଖିରେ ସାଥୀ ଚନ୍ଦ୍ରରଞ୍ଜନ ପିଇ ଯାଉଛି ସେ ଶ୍ରୀ । ସୁଟିଂ ଶେଷ ହୋଇଯାଇଛି । ଦ ପହର ଖରାକୁ ଏ ବିଫଳତା ବଡ଼ ବାଧିଲା । ଚନ୍ଦ୍ରକୁ ଗାଳି ଦେଲି । ସେ ଯୁବକୀୟ ଉଚ୍ଛ୍ୱାସରେ ଗପି ଚାଲିଲା । ସିନେମା ନକ୍ଷତ୍ରଙ୍କ ଶ୍ରୀ, ଅଭିନୟ ପଟୁତା, କେଉଁ ଚିତ୍ରରେ କାହାର ଅଭିନୟ କେତେ ସଫଳ ହୋଇଛି । ସିନେମାର ଜଣେ କାର-ପଟଦାର୍ ସେ । କ୍ଷମା ଦେଲି, ରୋମାନ୍ସର ବୟସ ତାର, ସ୍ୱପ୍ନାଚ୍ଛନ୍ନ ଆଖିରେ ପୃଥିବୀକୁ ଦେଖୁଛି । ଦେଖୁ । ରାଗି ଲାଭ କ'ଣ ? ସ୍ୱପ୍ନ ମୋର ମରିନାହିଁ, ଚନ୍ଦ୍ର ଲୁହେଁ, ସେଇ ଆଣିଛି ମୋତେ ଟାଣି । ମନରୁ କିଛି ଭଲ କାଢ଼ିବାକୁ ଚେଷ୍ଟା କଲି । ମସ୍ତଚକାର ଜଞ୍ଜିର ଝାପ୍‌ସାରେ ଗୋଟିଏ ଦୁଇଟି ନୌକାର ଶବ୍ଦ । ଧୀବର କୂଳେ କୂଳେ ଭିଡ଼ୁଛନ୍ତି ଜାଲ, ଚାଲି ଦେଉଛି ଚକ୍‌କର, ଛଞ୍ଚାଣ ଝାମ୍ପୁଛି । ମଗରକଣ୍ଟା, କଇଁଚ ଖୋଳପା, ସମୁଦ୍ରବେଙ୍ଗ, ଗୁଡ଼କଙ୍କ, ଲମ୍ବା କଆ, ଝାଉଁ । ବାଆଁ ପଟେ ଝାଉଁର ମର୍ମର, ଡାହାଣ ପଟେ ଢେଉର କଳକଳ । ଦେଖି ଜାଣିଲେ ଦଣେ ଶ୍ରୀ, ଗମ୍ଭୀରରୁ ଗମ୍ଭୀରତର । ଧ୍ୟାନସ୍ଥ ହେବାକୁ ଲୋଭ ହୁଏ, ଧରା ଦେଲା ପରି ଲାଗେ ସୁନାର ସେଇ ହଳଦୀବସନ୍ତ—କବିତା ।

ହଠାତ୍ କ୍ଲିପ୍ । ଅଟକେଇବା ? ହାତ ଦେଖାଇ ଦେଲୁ । ମହଲା ? ସାବିତ୍ରୀ, ଚନ୍ଦ୍ରାବତୀ ? ଭୁଲ୍ ହେଲା ? ଡ୍ରାଇଭର ଇଙ୍ଗିତ ଦେଲା—ବସ । ଚନ୍ଦ୍ର ଧୀରେ ଧୀରେ କହିଲା—ଏ ମନ ଭାବୁଥାଇ ଯାହା ! ମୁଁ କହିଲି—ଦେହରୁ ମନ ଅଧିକ ସୁନ୍ଦର, ନାସ୍ତି ନକ୍ଷତ୍ର ହେଲେ ବି ତାର ଦୟା ଗୁଣ ଲୋପ ପାଏ ନାହିଁ ।

ଦେଖୁ ଦେଖୁ ଦୀଘା ହୋଟେଲରେ ପଶିଲେ ସାବିତ୍ରୀ, ଚନ୍ଦ୍ରାବତୀ, ଆମେ ପଶିଲୁ ବସ୍‌ରେ, ଓହ୍ଲେଇଲୁ ଗୋଟାଏ ଅପନ୍ତରା ଗହ୍ୱରରେ । ଚତୁରା ବର ଉପରେ ଓହ୍ଲେଇଛି ଗୋଧୂଳି, ବଣା ସ୍ୱପ୍ନ, ହଜା ସ୍ମୃତି, ଲୁପ୍ତ ରୋମାଞ୍ଚ, କେତେ କ'ଣ ଭାସେ ତାର ଶାଖାରେ । ତା ପଛରେ ଆମର ଉଦ୍ଦିଷ୍ଟ ଗ୍ରାମ । କଟା ଧାନର ପୋପର ମୂଳ, ଫଟା ଭୂଇଁ, ନୂଆ ଦୂବ ଟେକି ଦେଉଛି, ମାଡ଼ୁଛି ମୁଠି ଶାଗ ।

ମୁହଁ ସଞ୍ଜକୁ ପହଞ୍ଚିଲୁ 'ଖାଲସିହଙ୍ଗା' ଗ୍ରାମରେ । ଦୁଆରେ ଡାକବାମାନେ ଲଣ୍ଠନ ଅ।ସିଗଲା, ଗୋଡ଼ ଧୋଇବାକୁ ପାଣି, କୋଣ୍ଡେ ହାତ ଲମ୍ବର ଦୁଇଟା ସପ ମଶିଣା ପଡ଼ ହେଲା, ତା ଉପରେ ତୂଳା ଶେଯ, ବିଛଣା ଚାଦର, ମାଣ୍ଡି । ଆସିଗଲା ଜଳଖିଆ, ଗୁ' ପାନ, ସିଗାରେଟ୍ । ସମସ୍ତ ଗୃହ ଚଞ୍ଚଳ ହୋଇ ଉଠିଲା ।

ଅପରିଚିତଠାରୁ ଏତେ ଆତିଥ୍ୟ ନେବାକୁ ଟିକି କୁଣ୍ଠିତ ହେବି । ଏଥିରୁ ନିରସ୍ତ ହେବାକୁ କହିବାରୁ ଗୃହସ୍ୱାମୀ ଘୋଷାଲବାବୁ ଗାଇଲେ—

ଆଜି ମୋହର ଭାଗ୍ୟ ଦେଖ
ଦେଖିଲି ବନ୍ଧୁଜନ ମୁଖ ।

ମୁଁ ଜଣେ ଗୀତପ୍ରେମୀ ବୋଲି ଗୃହସ୍ୱାମୀ ସମ୍ବାଦ ପାଇଥିଲେ, ଡକାଇ ଥିଲେ ଜଣେ ଦୁଇଜଣ ଓସ୍ତାଦ୍, ରବୀନ୍ଦ୍ର ସଙ୍ଗୀତ ନିପୁଣ । କହିଲି—ମୁଁ ଯୋଉଠି ରବୀନ୍ଦ୍ର ସଙ୍ଗୀତ ଶୁଣୁଛି, ତାଠୁ ଆଉ ଅନ୍ୟତ ଭଲ ଶୁଣିବାର ଆଶା ନାହିଁ । ଡାକ ମଲ୍ଲ ମୁଣ୍ଡି ଆଙ୍କୁ, ଶୁଣିବା ଲୋକଗୀତ । ଘୋଷାଲବାବୁ ମୋ ଖିଆଲୀ ରୁଚିରେ ବିସ୍ମିତ ହେଲେ ବି ଡକାଇଲେ ଶଶୀକ ।

ଶଶୀର ବୟସ ୬୦ ଭିତରେ, ଦଶୁଛି ନିଧୁମ ବୁଢ଼ା । ଦେହରେ ଯତ୍ନର ଆଶ୍ରୟ ନାହିଁ, ମନ ପଡ଼ିଛି ଭାଙ୍ଗି । ଧନ ବୋଇଲେ ତାର ଏଇ ଦେହ, ଜନ ବୋଇଲେ ତାର ଭାରିଯା । ଜମିର ଝିନ୍ ଟିଏ ନାହିଁ କି ପିଲାଙ୍କ ଛିଟା ନାହିଁ । ବନ୍ଧୁ ବୋଇଲେ ରୋଗ, ସେ ଦେହରେ, ପୁଣି ମନରେ ସ୍ୱାମୀ ସ୍ତ୍ରୀ ଦୁହିଁଙ୍କି ଗ୍ରାସ କରିଛି । ଶଶୀ ମୂଲ ଲାଗେନାହିଁ । ଭଲ ଭଲ ଲୋକଙ୍କ ପାଖରେ ବସେ । ଯାହା ଦି ପଇସା ଉପାର୍ଜ୍ଜ କରି ପେଟ ପୋଷେ ।

ସେ ଜଣେ ଭ୍ରମଣକାରୀ; ଅଯୋଧ୍ୟା, ମଥୁରା, କାଶୀ, ବୃନ୍ଦାବନ ଆଦି କେତେ ତୀର୍ଥକ୍ଷେତ୍ରରେ ବୁଲିଛି, ବାକ୍ ଚତୁର । ଗପୁ ଗପୁ ରାତ ପାଏ । ମୁଖରେ ତାର ଅମୃତ । କଥାର ଯାଦୁରେ ବଶ କରେ । କେତେ ଶାସ୍ତ୍ର ପୁରାଣ, କେତେ ଭ୍ରମଣକାହାଣୀ, କେତେ ଢଗଢମାଳି, ଅଭିଜ୍ଞ ବଚନ, କେତେ ସଦୁପଦେଶ । ପିଣ୍ଡାକୁ ଉଠୁ ଉଠୁ ଶଶୀ ଗାଇଲା—

(କ) ପଦ୍ମ ପୁଷ୍ପ ହୋଇ ସେ କସ କରଇ ବାସ ଯେବେ ତାର ନାହିଁ
ବଣମଲ୍ଲୀ ହେଉ, ବାସ ତାର ଥାଉ ଭ୍ରମର ତାହାକୁ ବାଇ ।

(ଖ) ସହର ଭାଙ୍ଗିଲେ ବୃନ୍ଦେ ନ ରହେ ଦୋକାନ
ଧନହୀନ ହେଲେ କେହି ନ କରେ ସମ୍ମାନ

ପ୍ରାଚୀର ଭାଙ୍ଗିଲେ ହୁଏ ଗୌରବରେ ସଦର
କପାଳ ଭାଙ୍ଗିଲେ କେହି ନ କରେ ଆଦର ।

(ଗ) ମତେ କିଏ ନ କରେ ଖାତିର
ବଡ଼ଭାଇ ଥିଲା ହାକିମ ହୁକୁମା ଡିଗିରି ରଖିଛି ହାତର
ଏକ ଭାଇ ମୋର ଓକିଲ
ରବିବାରଦିନ କଚେରି ବନ୍ଦ ହୋଟେଲେ ଉଠାଏ ପତର ।
ମୋର ବଡ଼ଭାଇ ବଡ଼ ଧାର୍ମିକ
ଅଠର ହାଲ ହାଲିଆ ବିକୁଛି ଏକାଦଶୀ ଦିନ ହାଟର ।

(ଘ) ବୋହୂ ଚାଲି ନ ଜାଣଇ ଲୋ ପାଦ କରୁଥାଇ ବଙ୍କା
ଯୋଉଦିନ ବୋହୂ ସଳଖି ଚାଲିବ ଘରେ ପଡ଼ିଯିବ ଡଙ୍କା ।
ଯୋଉଦିନ ବୋହୂ ବାପଘରଠୁଁ ଶଶୁର ଘର ଅଇଲା ।
ଆପଣାର ପତି ସଙ୍ଗ ନ କରଣ ପରକୁ ରସେ ରସାଇଲା ।
ବୋହୂ ଗୋଟିଏ ମୁଁ କରି ଆଣିଥିଲି କାଉନା ଘରର ଝିଅ
ନ ହୁଏ ଲମ୍ପଟୀ ବାଞ୍ଛିକରକଟୀ ଦିନଆଡ଼େ ଦିନ ପୁଅ ।
ପୁଅ ବଧୂ ଯୋଉଦିନ ଏକଯ ହୋଇବେ ଚତୁର୍ବର୍ଗ ଫଳ ପାଇ
ରଘୁ ଅରକ୍ଷିତ ଭରସା କରୁଛି ବୋହୂକୁ ଭେଟିବା ପାଇଁ ।

ଯାତ୍ରାଗୀତ, ଜଣାଣ, ଭଜନ, ଚଉପଦୀ, ଡଗଡ଼ମାଳି, ଲୋକଗୀତ, ଗୋଟିକ ପରେ ଗୋଟିଏ ଶଶୀ ଗାଇ ଚାଲିଲା । କି ସରସ ତାର ଅନ୍ତର । ଏହିପରି ଜଣେ ଜଣେ ରସିକଙ୍କ ଯୋଗୁଁ ସିନା ଗ୍ରାମଜୀବନ ଉପଭୋଗ୍ୟ ହୋଇଛି । ତଥାପି କିଏ ବୁଝେ ତାର ପ୍ରତିଭା ? ଦରିଦ୍ରରେ ଦରିଦ୍ରତମ ସେ ।

ଶଶୀ ମେଦିନୀପୁରୀ ହେଲେ ବି ଖାଣ୍ଟି ଓଡ଼ିଆ କହୁଛି, ଏ ତାର ଦୀର୍ଘ ଓଡ଼ିଶା ଭ୍ରମଣର ଫଳ । ଏଠା ଓଡ଼ିଆ ଭାଷାର ଅବସ୍ଥା ଜାଣିବାକୁ ପ୍ରବଳ ଇଚ୍ଛା ହେଲା । କହିଲି—ଶଶୀ, ସ୍ଥାନୀୟ ଭାଷାରେ ଗୋଟିଏ ଗାଉଁଲି ଗପ କହ । ଶଶୀ କଥାଣିରେ ଆରମ୍ଭିଲା—

ତେନ୍ତୁଳି ଗଛେ ବସା
ବହୂ ଭାଙ୍ଗିଲା କାଂସା
ସେ ବହୂ କାହିଁ ?
ଚାଉଳ ଧୁଇତେ ଯାଇ ।

ସେ ଘୁଡ଼ିଲ କାହିଁ ?
ସାପ ଗଲା ଖାଇ ।
ସେ ସାପ କାହିଁ ?
ବଣର ଭିତରେ ଥାଇ । ଇତ୍ୟାଦି ।

ତାପରେ ଗପଟିଏ କହିଲା ।

ଏକ ବାପେର ତିନ୍ ପୋ ଥାଇଲା । ତାର ମନକେର ବାପ ମରିଯିବାର ଆଗେ ଗଟେ ଉଇଲ କରିଗେଲା । ସେ ଉଇଲେ ଲେଖା ରଇଲା—ଆମାର ତିନ୍ ପୋ'ର ମଧ୍ୟେ ସବ୍‌ଠୁଇ ଯେ ବଡ଼ ବେକୁବ୍ ହିବେ ସେ ଅଧାଅଧି ସମ୍ପତ୍ତି ପାବେ । ବାକି ଅଧେ ଦୁଇ ପୋ ପାବେ । ବାପ ମରିଯାବାର ପର ତାର ତିନି ଟୋକାର ମଧ୍ୟେ ଝଗଡ଼ା ଲଗିଲା । ବଡ଼ କଇଲା—ଆମି ବଡ଼ ବେକୁବ୍ । ମଝିଆ କହିଲା—ଆମି ବଡ଼ ବେକୁବ୍ । ଶ୍ରେଷ୍ଠ କହିଲା—ଆମି ବଡ଼ ବେକୁବ୍ । ଓ ରକମ୍ କଇତେ କଇତେ ଝଗଡ଼ା ହିଇଲା । ଝଗଡ଼ା ହିଇତେ ହିଇତେ ମାରପିଟ୍ । ଗ୍ରାମେର ଲୋକ କଇଲେ ଯେ—ତୋରମାନେ ଝଗଡ଼ା କାଜିଆ କରୁଚୁ କେନି ? ବାପେର ନିସ୍ପତ୍ତା ଇଜମାଲି ଖରଚେ କର । ତାପର ନିସ୍ପତ୍ତିର ପର ଆମାରମାନେ ମେଟମାଟ କରିଦିବା । ମେଟମାଟ କୋନମତେ ହିଇଲାନି । ଅଦାଲତ ଯାଇତେ ହିଇଲା ।

ହାକିମ୍ ପଚ୍ଛରିଲା ବଡ଼ କେ—ତୁଇ ଯେ ବଡ଼ ବେକୁବ୍ ତାର ପ୍ରମାଣ କହି ।

'ହଜୁର୍, ଆମି ଆମର ଶଶୁର ଦୁଆରେ ଥାଇ । ସଇଠି (ସେଠି) ଆମର ଗଟେ ଟୋକା (ପୁଅ) ହିଇଲା, ମା'କେ ମା' କହୁନି, ବାପ୍‌କେ ବାପ୍ କହୁନି, ଆମି ଆମାର ମାଇପର ସଙ୍ଗେ ଯୁକ୍ତି କରିଲି—ଆମି ତୋକେ ମା' କଇ, ତୁଇ ଆମାକେ ବାପ କି, ଓ ରକମ୍ କରିତେ ଟୋକା ମାଆ ବାପ ଡାକତେ ଶିଖିଲା । କିନ୍ତୁ ଆମାର ମାନଙ୍କେର ଅଭ୍ୟାସ ରଇଗେଲା । ହଜୁର୍, ଘର ଅଇଲି । ବାପ କଇଲା—ତୋର-ମାନଙ୍କର ଏ କି ସାତ୍ ? ତୁଇ କନା ଜେନାଘର ଝିକେ ମା' କହୁ, ସେ ତୋକେ ବାପ କଏ । ଆମି ତଖନ ଆଗୁକର କଥାଟା କଇଲି । ତଖନ ବାପ କଇଲା—ତୁଇ ଆମାର ତିନ ପୋ'ର ମଧ୍ୟେ ବଡ଼ ବେକୁବ୍ ।'

ହାକିମ୍ ମଝିଆକେ ପଚରିଲା—ତୋର କି ପ୍ରମାଣ ଦେ । 'ହଜୁର, ଏକଦିନ ଜାଲ ଫେକି କି ଗଟେ କାଙ୍କଡ଼ା ଧର୍‌ଚିଲି । ଆମି କଇଲି—ଆମି ଖାବା, ଆମର ମାଇପ କଇଲା—ଆମି ଖାବା, ଦୁଇ ଲୋକ ଝଗଡ଼ା ହିଇଲା । ନିଅମ କର୍‌ଲି କି ଦୁଇ ଲୋକ କଥା ବନ୍ଦ କରିଦିବା ଆସ୍ତୁ, ଯେ ଆଗୁଟେର କଇବ,

ସେ କାଙ୍କଡ଼ା ଖାଇତେ ପାରେନି । ରାତ୍ରେ ଘରେ ଶୁବାର ସମୟ ନିୟମ ଥାଇଲା ।
ଯେ ଆମି କବାଟ ବନ୍ଧ କରି ଶୁବ । ଆମି ତ ଆଗେ ରାତି କି ଶୁଇଗଲି । ଆମର
ମାଇପର ତ କବାଟ ବନ୍ଧ କର୍‌ବାର୍ କଥା ନାହିଁ । ସେ ବି ଆସି ଶୁଇ ଗେଲା ।
କବାଟ ଆଲ୍‌ଗା, ତିନ ଲୋକ ଚୋର ଆଇସି କି ଘରେ ପଶ୍‌ଲା । ଆମି ସତର
(ଜାଗ୍ରତ) ଅଛୁ, ସବ ଦେଖିଛି ।

ହାକିମ୍ କହିଲା—ତୁଇ ଉଠିପଡ଼ି କି ଧେଡ଼େଇ ଦେଲୁନି ଚୋର୍ ? 'ଆମି
କଥା କହିନେ ଯେ କାଙ୍କଡ଼ ଖାଇତେ ପାରନି ।' ତିନ ଲୋକ ଚୋର ଚାରିଟି
ମୋଟ ବାନ୍ଧ୍‌ଲା । ବାନ୍ଧି କି ଭାବିଲା ଯେ ଆମାର ତ ତିନ ଲୋକ, ମୋଟ ଚାରିଟିୟା ।
ଆର ଗଟେ ମୋଟ କେ ଲି ଯାବେ ? ଘରେର ଭିତରେ ଘୂରତେ ଦେଖତେ ପାଇଲା
ଆମାକେ—କେ ଶାଲା ଶୁଇଚୁ ରେ ? କହି କି ହିଡ଼୍ ହିଡ଼୍ କରି ଟାନିଆନି ଏକ
ଲାଥ୍ ଦିଲା, ଘଡ଼େ—ଶାଲା ମୋଟ ଲିଚଲ୍ । ହଜୁର୍ ତଖନ୍ ବି କଥା କହିନି ।
ଘରେ ପହଞ୍ଚି କି କହିଲା—ପକା ଶାଲା ଏଠି ମୋଟ । ଆମି ମୋଟ ପକେଇ ଦିତେ
ତିନଟା ଲାଥ୍ ମାରି କହିଲା—ଯା ଶାଲା, ଚାଲି ଯା । ତା ହେଲେ ଆମି ତ ବଡ଼
ବେକୁବ୍ ହଇଲି, ହଜୁର, ଆମାକେ ଅର୍ଦ୍ଧେକ ସମ୍ପତ୍ତି ଦିଆହେଉ ।'

ତାରପର ଚୋଟ ପୋ'କେ ହାକିମ୍ ପଚାରିଲା—ତୋର କଥାକା 'ହଜୁର,
ଆମର ଦୁ ମାଇପ । ଆମାର ଗଟେ ନିୟମ ଥାଏ—ଶୁବାର ସମୟ ଆମି ମସଣାୟ
ଶୁବା, ଦୁ ମାଇପ ଦୁ ପାଶେ ଶୁତବେ । ଦୁଟା ହାତ ଦୁଇ ଲୋକେର ଉପରେ ଲଦି
ଶୁଇତେ ହବେ । ହାତ ଉଠିଇ ଲିସ୍ଥା ଚଲବେନି । ବାରମାସିଆ ଭୂଡ଼ଭୁଡ଼ି
ହୁକାରେ ନିଆଁ ତୁଲିକି ଦିଲା । ନଳଟା ଆମାର ମୁଖେ ଲଗେଇ ଦି ଗେଲା । ଆମି
ଟପକା ( ତମାଖୁ ) ଖାଇତେ ଖାଇତେ ଗଟେ କାଶି ଉଠିଲା । କାଶି ପକେଇତେ
ଟିକା ନିଆଁ ଉଡ଼ିକି କପାଳେ ପଡ଼ିଗଲା । ଆମାର କପାଳ ପୁଡ଼ିଗେଲା । ଆମାର ଦି
ହାତ ଉଠବାର କୋନୋ ଉପାୟ ନାହିଁ, ହଜୁର, ଦି ଧାନ ଗାତ ହଛେ । ଆମି
ସବ୍ ଚେୟେ ବଡ଼ ବେକୁବ୍ ।'

ହାକିମ୍ କହିଲେ—ତିନଟା ଯୁକ୍ତି ସମାନ, ତବେ ସମ୍ପତ୍ତି ତିନ୍ ଲୋକ
ସମାନ ଭାଗ କରି ଲେ ।

ଗପଟି କହିସାରି ଶଶୀ ଇତସ୍ତତଃ ହେଲା, କି ଗୋଟାଏ ତୀବ୍ର ବେଦନା
ତା ମୁଖରେ ଫୁଟି ଉଠିଲା । କଥା କ'ଣ ? ଶଶୀ କହିଲା—ବାବୁ, ଶୀତ
ଦିବସରେ ଭୁଲି ଯାଇଥିଲି ଗୃହର ଦୁର୍ଦ୍ଦଶା, ଶ୍ୱଶୁରଙ୍କୁ ପକ୍ଷାଘାତ, ଗଲେ ପଥ୍ୟ
ବାନ୍ଧିବ, ଔଷଧ ଦେବ । କାବା ହୋଇ ତା ମୁହଁକୁ ଚାହିଁ ରହିଲି ।

ଶଶୀ ପୁଣି କହିଲା—ମୋ ପାପର ପ୍ରାୟଶ୍ଚିତ୍ତ ଅଧେ କରୁଚି ଭାଗ୍ୟ। ତାର ଏଇ ଭୋଗ । ମୋର ଗୋଦର, ମୋ କପାଳ ପୋଡ଼ି ଯାଇଛି, ବାବୁ, ପୋଡ଼ି ଦେଇଛି ମୁଁ । ଭାଗ୍ୟ ଦୋଷରୁ ନୁହେଁ, ହାତେ ହାତେ ଆମ ଘନ ଭୋଗ ମୁଁ ଅର୍ଜିଛି । କଥା ଅଛି—

ଆପଣା କଲା କର୍ମମାନ
ଆଗୁଁ ହୋଇବ ସାବଧାନ ।

ସମସ୍ତେ ଭାଗ୍ୟ ଉପରେ ଦୋଷ ଢାଳନ୍ତି, ଶଶୀ ଦେଖୁଛି ନିଜର ଦୋଷ । ଲୋକେ ବିଧାତା ଉପରେ ଦୋଷ ଦେଇ ନିଶ୍ଚିନ୍ତ ଜଣାଯାନ୍ତି, ଶଶୀ ଅଶାନ୍ତ । ନିଜ କର୍ମର ସଦ୍ୟ ଫଳ ଏଇ ଜନ୍ମରେ ଭୋଗ କରୁଛି ବୋଲି ତାର ବିଶ୍ୱାସ । ଅନୁତାପର ଦହନଜ୍ୱାଳାରେ ସେ ଦଗ୍ଧ—କହିଲା—ଦୁର୍ଯୋଧନର ଜାନୁ ଭଗ୍ନ ହେଲା, ମୋର ଗୋଦର ଗୋଡ଼ ! ପଚାରିଲି—ଶଶୀ, କାହିଁକି ଏପରି କହୁଚ ?

ଶଶୀ କହିଲା—ଯୁଆନ୍ ବୟସ, ସେତେବେଳେ ରକ୍ତ ଗରମ୍, ଖଲାବାଡ଼ି ସୀମା ଘେନି ଦଦା ସଙ୍ଗେ ଲାଗିଲା ଝିଙ୍କାପଟା କଳି । ଦଦାକୁ ମୋଡ଼ିମାଡ଼ି ତଳେ କଚାଡ଼ି ଦେଇ ମୁଁ ତା ଛାତିରେ ବସିଲି—ତା ମୁଣ୍ଡକୁ ଲକ୍ଷ୍ୟକରି ଉଠାଇଲି ପାଦ, ଏକା ଗୋଇଠାକେ ଛତୁ କରିଦେବ ।

ଦଦା ଆଖିରେ ନିଆଁ ହୁଳା ଜଳେଇ କହିଲା—ତୋ ଗୋଡ଼ ଗୋଦର ହୋଇଯାଉ; ବର୍ଷେ ହୋଇନାହିଁ; ସତକୁ ସତ ଅଭିଶାପ ଫଳିଗଲା । ଏତକ କହି କାନ୍ଦି କାନ୍ଦି ଶଶୀ ଅନ୍ଧକାରରେ ମିଶିଗଲା ।

ପଦେ ଆଶ୍ୱାସନା ଶୁଣେଇବାକୁ ମୋ ଜିଭ ଲେଉଟିଲା ନାହିଁ, କି କାରୁଣ୍ୟ ମନରେ ଉଚ୍ଛୁଳିଲା । କି ଦରିଦ୍ର, କି ଦୁଃଖମୟ, କି ସମୃଦ୍ଧ ପୁଣି ସୁନ୍ଦର ଏଇ ଜୀବନ ।

ସକାଳୁ ଉଠି ଯେଉଁଠି ବୁଲିଆସିଲି ରାଖାଲବାବୁଙ୍କ ବଗିଚାରେ । କର୍ମନିଷ୍ଠ ବୁଦ୍ଧିର, ଦୁଇଟି ଶ୍ରମଶୀଳ ହାତର କୀର୍ତ୍ତି । ଷୋଳବଘା ଜମିର ଏଇ ବଗିଚା । ପୁଷ୍ପ ସୌନ୍ଦର୍ଯ୍ୟରୁଚିର, ଫଳ ପ୍ରୟୋଜନବୁଦ୍ଧିର ପରିଚୟ ଦିଏ । ଗୋଟିଏ ଦିଗରେ କଲମୀ ଆମ୍ବ, ଲିଚୁ, ସପେଟା, ଗୋଲାପ ଜାମୁ, ନାରକେଳ, ଅନ୍ୟ ଦିଗରେ କୋଶଲାଶାଗ, ଲଙ୍କା, ଧନିଆଁ, ପାନମହୁରି, କଲରା, କୋବି, ଆଳୁ, କଖାରୁ । ଦୁଇଟି ପୋଖରୀରେ ମାଛଚାଷ ହୁଏ । ପରିବାରଟି ଆତ୍ମନିର୍ଭରଶୀଳ । ଲୁଗାପଟା, ପାନଗୁଆ, ମସଲାମଦଲି ଛଡ଼ା ଆଉ କିଛି କିଣା ହୁଏ ନାହିଁ । ଗୋ ସେବାକୁ ରାଖାଲବାବୁ ପରମଧର୍ମ ମନେ କରିଥାନ୍ତି ।

ତାଙ୍କର ଦ୍ୱିତୀୟ ପତ୍ନୀ କିରଣମୟୀଙ୍କ ବୟସ ତ୍ରିଶ ବର୍ଷ ମଧ୍ୟରେ । ସୁନ୍ଦରୀ, ସେବାପରାୟଣା, ସ୍ନେହମୟୀ । କିନ୍ତୁ ତାଙ୍କର ସ୍ୱାସ୍ଥ୍ୟ, କ୍ଷୀଣ ପ୍ରତିପଦ୍ ଚନ୍ଦ୍ର ଲେଖା ପରି ମୁହୂର୍ତ୍ତିକେ ଅସ୍ତ ହୋଇଯାଏ । ସାମାନ୍ୟ ମାତ୍ରା ବଦଳାଇ ଦେଲେ ସେ କାନ୍ଦିଲା ପରି ଜଣାଯାନ୍ତେ । କି ଅବ୍ୟକ୍ତ ବେଦନା ତାଙ୍କ ପ୍ରାଣରେ ? ରାଖାଲ ବାବୁ ଓ ତାଙ୍କ ମଧ୍ୟରେ ବୟସର ୨୫ ବର୍ଷ ତାରତମ୍ୟ । ତିନି ପୁତ୍ର ଓ ଗୋଟିଏ କନ୍ୟାର ଜନନୀ । ୨୦ ବର୍ଷ ଘର ସଂସାର କଲେଣି । ରାଖାଲବାବୁ ଦେବପ୍ରତିମ ଲୋକ, ତେଣୁ ବିବାହ ଦୁଃଖ ତାଙ୍କର ବଡ଼ ଦୁଃଖ ହୋଇ ନ ଥିବ । ସପତ୍ନୀର ପୁତ୍ର ଭିନେ ହୋଇ ଖାଉଛି । ଯେ ହେଲେ ବାରୁଛି ତାଙ୍କ ଦୋଷ । ମନ ଚିହ୍ନି ଖାଇବାକୁ ଦେଲା ନାହିଁ, ସ୍ୱାନଲଭ ବୁଝିଲା ନାହିଁ, ଦେଖେଇ ଦେଖେଇ ଯେ ହେଲେ କହୁଛି । କିଏ କାହିଁକି ବୁଝିବ ଭିତର ରହସ୍ୟ ?

କିରଣମୟୀ ଉଦର କିଶୋର ବୟସରେ ଗୀତ ଗାଇବାର ଭାରି ସକ୍ ଥିଲା । ବଧୂ ହୋଇ ଆସିଲେ ବି ସେ ଗୀତବୋଲା ଅଭ୍ୟାସ ଛାଡ଼ି ପାରିଲା ନାହିଁ । ଭାତ ରାନ୍ଧିଲାବେଳେ, ପଣିବା କାଟିଲା ବେଳେ ସେ ଗୁଣୁ ଗୁଣୁ ସ୍ୱରରେ ଗୀତ ଗାନ୍ତି । ଏହା ରକ୍ଷଣଶୀଳ ଶ୍ୱଶୁରଙ୍କ ହୃଦୟରେ ଯାଏ ନାହିଁ । ଦିନେ ସେ ରାଗିଯାଇ କହିଲେ—ଏଇଟା କି ଘର ? କଣ ଗୋଟାଏ ଆଖେଡ଼ା ହେଉଛି ?

ଏ କଥା ଶୁଣି ବୋହୂ କାଠ ହୋଇଗଲେ, ସଶବ୍ଦ କାନ୍ଦିବାକୁ ବି ତାଙ୍କର ସାହସ ହେଲା ନାହିଁ । ପୋଖରୀରେ ଗାଧୋଉଥିଲା ବେଳେ ମୁହଁରେ ଲୁଗା ଦେଇ ସେ ବେଳେବେଳେ ଗୀତ ବୋଲୁଥିଲେ, ଜାଣି କାନ୍ଦିଲେ । ସେହି ଦିନୁଁ ଉଦର କଣ ଗୋଟାଏ ରୋଗ ବାହାରି ପଡ଼ିଛି ।

ରାଖାଲବାବୁଙ୍କ ବଡ଼ ପୁଅ, ପୃଥୁଳ ଉଦର, ପ୍ରଚୁର ଚର୍ବି ଭାରରେ ଅଚଳ । ଖାଇବା, ଶୋଇବା ତାଙ୍କର ମୁଖ୍ୟ କାର୍ଯ୍ୟ, କଳହ ସାମୟିକ ବିନୋଦନ ।

ରାଖାଲବାବୁ ଉଦାସୀନ ପ୍ରକୃତିର ଲୋକ, ଭଗବତ୍-ବିଶ୍ୱାସୀ । ବିନା ଈଶ୍ୱରେଚ୍ଛାରେ ପୃଥିବୀରେ ପତ୍ରଟିଏ ବି ହଲେ ନାହିଁ । ଅପଦାର୍ଥ ପୁତ୍ର ସ୍ୱତନ୍ତ୍ର ହୋଇ ରହୁ, ହୁଏତ ତାଙ୍କର ଇଚ୍ଛା । ମନେ ମନେ ସେ କଷ୍ଟ ପାଉଥିବେ । କିନ୍ତୁ ବାହାରେ ସେ ନିର୍ବାତ, ନିଷ୍କମ୍ପ ପ୍ରଦୀପ ପରି ସ୍ଥିର, ଶାନ୍ତ ।

ପ୍ରଧାନଶିକ୍ଷକଙ୍କ ନିମନ୍ତ୍ରଣ କ୍ରମେ ଖାଲ୍‌ସିଆଙ୍ଗା ସ୍କୁଲ ଦେଖି ଯାଇଥିଲି । ସ୍କୁଲଟି ନୂତନ, ଛାତ୍ରସଂଖ୍ୟା ତ୍ରିଶ । ଏ ଜିଲାରେ ଶିକ୍ଷା ପ୍ରତି ଲୋକଙ୍କର ଅଭୂତ

ଆଗ୍ରହ ଅଛି । ପ୍ରାୟ ପ୍ରତି ତିନି ମାଇଲରେ ଗୋଟିଏ ଲେଖାଁଏ ହାଇସ୍କୁଲ ଅଛି । ଅଧିକାଂଶ ଅନୁଷ୍ଠାନ ଜନସାଧାରଣଙ୍କ ଉଦ୍ୟମରେ ସଙ୍ଗଠିତ ହୋଇଅଛି । ସ୍କୁଲର ଅଧିକାଂଶ ଛାତ୍ର ଓଡ଼ିଆ । ଓଡ଼ିଆ ମାଧ୍ୟମରେ ଶିକ୍ଷା ଦେବାର ପ୍ରଶ୍ନ ଉଠିନାହିଁ । ଓଡ଼ିଆ ଭାଷା ଶିଖିବାର ଓ ଓଡ଼ିଆ ହୋଇ ରହିବାର ଆଗ୍ରହ ମରିଯାଇଛି । ଓଡ଼ିଆ ବଙ୍ଗାଳୀ ହେବାକୁ ଗୌରବଜନକ ମନେ କରେ । ଓଡ଼ିଶାର ଇତିହାସ ବା ଓଡ଼ିଆ-ସାହିତ୍ୟ ସମ୍ପର୍କରେ ଶିକ୍ଷକମାନଙ୍କର ବି କୌଣସି ଧାରଣା ନାହିଁ । ବଙ୍କିମ, ଶରତ ରବୀନ୍ଦ୍ରଙ୍କ ବିଷୟରେ ଉତ୍ତର ଦେବାକୁ ଛାତ୍ର ଆଗଭର । ରାଧାନାଥ, ଫକୀରମୋହନ, ଗଙ୍ଗାଧରଙ୍କ ନାମ ପର୍ଯ୍ୟନ୍ତ ଶୁଣି ନାହାନ୍ତି, ଶୁଣିବା ଲାଗି ଖୁବ୍ ଗୋଟିଏ ଆଗ୍ରହ ମଧ୍ୟ ନାହିଁ । ଓଡ଼ିଆରେ ଏହି ସ୍କୁଲରେ ମୁଁ ବକ୍ତୃତା ଦେଇଥିଲି ।

କାନ୍ଥି ନୀହାର ପ୍ରେସ୍‌ରେ ବଙ୍ଗଳା ଅକ୍ଷରରେ ଓଡ଼ିଆ ବହି ଛପା ହୋଇ ବିକ୍ରୀ ହେଉଥିଲା । ତାର ସଂଖ୍ୟା ଏବେ ଊଣା ହୋଇ ଆସିଲାଣି । ମେଦିନୀପୁରର ଲୋକ ନୂଆ ଇତିହାସ ପଢ଼ିଛନ୍ତି—ଏ ଅଞ୍ଚଳ କେବେ ଓଡ଼ିଶାରେ ନ ଥିଲା, ଓଡ଼ିଶା ପଡ଼ୋଶୀ ପ୍ରଦେଶ ହୋଇଥିବାରୁ ଓଡ଼ିଆ ସଂସ୍କୃତିର ପ୍ରଭାବ ପଡ଼ିଛି ମାତ୍ର । ମେଦିନୀପୁରର ଭାଷା ସ୍ଥାନୀୟ ଶିକ୍ଷିତ ଲୋକଙ୍କ ମତରେ ନୁହେଁ ଓଡ଼ିଆ, ନୁହେଁ ବଙ୍ଗଳା, ଏହା ମେଦିନପୁରୀ ।

ମେଦିନୀପୁରରୁ ଓଡ଼ିଆ ଜାତିସତ୍ତା ପ୍ରାୟ ଲୋପ ପାଇଛି । ମେଦିନୀପୁର ଆମେ ହରେଇଛୁ, ବୋଧେ ହରେଇଛୁ ଚିରଦିନ ଲାଗି । ଓଡ଼ିଆ ସଂସ୍କୃତି ଆସ୍ତେ ଆସ୍ତେ ଲୋପ ପାଉଛି, ବୋଧେ ଆଉ ୨୫ ବର୍ଷ ପରେ ନିଶ୍ଚିହ୍ନ ହୋଇଯିବ ।

ସନ୍ଧ୍ୟାବେଳେ ଖାଲିସିଭଙ୍ଗା ଗ୍ରାମ ଦେଖିଗଲି । ପ୍ରତ୍ୟେକ ଗୃହ ଅନ୍ୟଠାରୁ ଦୂରବର୍ତ୍ତୀ, ସ୍ୱୟଂସମ୍ପୂର୍ଣ୍ଣ । ବଗିଚା, ପୋଖରୀ, ଧାନଖଳା ଏହା ସହିତ ସଂଲଗ୍ନ । ଏହି ଗ୍ରାମର ଲୋକସଂଖ୍ୟା ଛ'ଶହ; ବ୍ରାହ୍ମଣ, କରଣ, ମାହିଷ୍ୟ ପ୍ରଭୃତି ଜାତିର ଲୋକେ ଅଛନ୍ତି । ଏହି ଗ୍ରାମରୁ ତିନିଜଣ ପ୍ରଫେସର, ୫ ଜଣ ଡାକ୍ତର ହୋଇ ଅନ୍ୟତ୍ର ଅଛନ୍ତି । ମାଟ୍ରିକ୍ ସଂଖ୍ୟା ଗଣିବା ଦରକାର ନାହିଁ, ପ୍ରାୟ ଘରେ ଘରେ । ଏଠି ଦୁଇଟି ଚାଉଳ କଲ, ଗୋଟିଏ ତେଲପେଡ଼ା କଲ ଅଛି । ମୂଳା ଚାଷ ଏ ଗ୍ରାମର ଗୋଟିଏ ବଡ଼ ବିଶେଷତ୍ୱ, ଏଠା ଚାଷୀ ସମଗ୍ର ଜିଲ୍ଲାକୁ ମୂଳା ମଞ୍ଜି ଯୋଗାନ୍ତି । ଗ୍ରାମ ଲଗାଏତ୍ ବିରାଟ ଲଙ୍କାଆମ୍ବ ବଗିଚା, ବାଦାମ ଗୋଟିଏ ବଡ଼ ଆୟ । ଅଦୂରରେ ଦେଖିଲି ଗୋଟିଏ ବତୀଘର । ଆଗେ ଏଠି ସମୁଦ୍ର ଥିଲା । ଏବେ ଦୂରକୁ ଘୁଞ୍ଚି ଯାଇଛି, ଯେଉଁଠି ଅତଳ ଜଳରାଶିରେ ପୋତ ଯାତାୟାତ କରୁଥିଲା, ସେଠି ଗମନାଗମନ କରୁଛି ଶକଟ, ସାଇକଲ୍ । ମାଟି ଖୋଳିଲେ ଏବେ

ଜଳଜନ୍ତୁର ଅସ୍ଥି, ପୋତ କାଷ୍ଠର ଭଗ୍ନ ଅଂଶମାନ ମିଳେ । ପ୍ରକୃତିର ଲୀଳା ବିଚିତ୍ର ।

ସନ୍ଧ୍ୟାକୁ 'ଷଠୀ ମଙ୍ଗଳ' ଗାଇବା ଲାଗି ଗାୟକ, ଦୁଇଜଣ ପାଲିଆ ଘେନି ଆସିଲେ । 'ଷଠୀ ମଙ୍ଗଳ' ମେଦିନୀପୁରର ଗୋଟିଏ ପ୍ରଧାନ ବ୍ରତ ଅନୁଷ୍ଠାନ। ଜନ୍ମଦିନ, ଜନ୍ମମାସ, ଅନ୍ନଛୁଆଁ ବା ଏକୋଇଶାରେ ଷଷ୍ଠୀ ପୂଜା ହୁଏ, ଷଠୀମଙ୍ଗଳ ଗୀତ ହୁଏ । ସତ୍ୟନାରାୟଣ ପୂଜା ପରି ଷଠୀମଙ୍ଗଳରେ 'ଗୁଣଦେବ', 'ନଳନୀଳ', 'ରଘୁଚୂଡ଼ାମଣି' 'ପଦ୍ମନକୁମର' ଆଦି ବିଭିନ୍ନ ପାଲି ବୋଲାଯାଏ । ଷଠୀଦେବୀଙ୍କ ମହିମା ଏଥିରେ କୀର୍ତ୍ତିତ ହୋଇଥାଏ । ଗୀତଗୁଡ଼ିକ ଓଡ଼ିଆଭାଷାରେ ରଚିତ, ମଝେ ମଝେ ବଙ୍ଗଳା ଶବ୍ଦର ମିଶ୍ରଣ ଘଟିଛି ।

'ଆମି ଅତି ଶିଶୁମତି କି ବନ୍ଦିବେ ଜାନି ଗୋ
ଯେମନ୍ତ କବିତା ମୋର ତେମନ୍ତ ବାଖାନି ଗୋ ।
ଯାହାର ଜନ୍ୟ ବସିଅଛୁ ଶୁଭେନି ମଙ୍ଗଳ ଗୋ
ତାହାର ଶରୀର ମାଗୋ ରଖିବୁ କୁଶଳ ଗୋ ।
ମା ଆ ବୋଲି ଡାକଲେ 'ଓ' ବୋଲି ଶୁଣିବୁ
ଭାଙ୍ଗିଲି କବିତା ମୋର ଭଗାଇଣ (ସ୍ମରଣ କରାଇବା)
ଦେବୁ ଗୋ ।
ବେନି ଦୁଆର (ଯେ ଦୁଆ ଧରେ)ର କଣ୍ଠେ ବେନି ପାଦ ଦେଇ
ମମ କଣ୍ଠେ ଥାଅ ମା'ଗୋ ପୁଷ୍ଟହାର ହୋଇ । ୬ ।

'ଷଠୀମଙ୍ଗଳ'ର ବିଭିନ୍ନ ବ୍ୟବସାୟୀ ଦଳ ଅଛନ୍ତି । ଗୋଟିଏ ପାଲି ବୋଲୁ ବୋଲୁ ରାତି ପାହିଯାଏ । ମଝିରେ ମଝିରେ ବଙ୍ଗଳା ଓ ହିନ୍ଦୀ ଗୀତ ବୋଲାଯାଏ । ସବୁଠୁଁ ଏଥିରେ କୃପାସିନ୍ଧୁ ମିଶ୍ରଙ୍କର ବେଶୀ ଗୀତ ସ୍ଥାନ ପାଇଛି । ଏ କୃପାସିନ୍ଧୁ ମିଶ୍ର କିଏ ? ମେଦିନୀପୁର ଧୀପାଲ୍ ଗ୍ରାମର ଜଣେ ଯାତ୍ରାକବି, ପାଲିକବି, ଗୃହେ ଗୃହେ ପରିଚିତ, ମୁଖେ ମୁଖେ ତାଙ୍କର ଗୀତ । ଓଡ଼ିଆ ସଂସ୍କୃତିର ସେ ଜଣେ କର୍ଣ୍ଣଧାର । ପ୍ରତିକୂଳ ପରିବେଶ ସଙ୍ଗେ ସଂଗ୍ରାମ କରି ସେ ଏକ ଶତ ବର୍ଷ କାଳ ମେଦିନୀପୁର ଅଞ୍ଚଳରେ ଓଡ଼ିଆ ସଂସ୍କୃତି ଜୀବନ୍ତ ରଖିଥିଲେ, ସେ ପ୍ରାୟ ଏକ ସହସ୍ର ଖଣ୍ଡ ଯାତ୍ରା ନାଟକ ରଚନା କରିଯାଇଛନ୍ତି । ତାଙ୍କ ନାଟକ ଦୀର୍ଘକାଳ ବାଲେଶ୍ୱର ଅଞ୍ଚଳରେ ପ୍ରଚଳିତ ଥିଲା ।

୧୮୩୬ ଖ୍ରୀଷ୍ଟାବ୍ଦରେ ସେ ଜନ୍ମ ଗ୍ରହଣ କରିଥିଲେ, ଗ୍ରାମପାଠଶାଳାରେ ଯାହା କିଛି ପଢ଼ିଥିଲେ । ଆବାଲ୍ୟ ଗୀତ, ନାଟ୍ୟ ପ୍ରତି ତାଙ୍କର ଝୁଙ୍କ୍ ଥିଲା । କେବେ·

କେବେ କୀର୍ତ୍ତନିଆଁ ବା ପାଲି ଦଳରେ ସେ ଯୋଗ ଦେଉଥିଲେ । ଦିନେ ଶ୍ରୀପାଲ୍ ଗ୍ରାମକୁ ପୂର୍ବବଙ୍ଗର ଗୋଟିଏ ଯାତ୍ରାଦଳ ଆସିଲେ ।

କୃପାସିନ୍ଧୁ ସାବରଣ ଜାଗ୍ରତ ରହି ଯାତ୍ରା ଦେଖୁ ଦେଖୁ ଏକ ପ୍ରକାର ବିଭୋଳ ହୋଇ ଗଲେ । ତାଙ୍କ ସ୍ମୃତିଶକ୍ତି ଏତେ ତୀକ୍ଷ୍ଣ ଥିଲା ଯେ ଯାତ୍ରାର ଅଧିକାଂଶ ସଂଳାପ, ଗୀତ ତାଙ୍କର ମନେ ରହିଯାଇଥିଲା । ସେ ତକୁ ଲେଖି ପକାଇ ଗାଆଁ ପିଲାଙ୍କୁ ଏକାଠି କରି ଯାତ୍ରା କଲେ । ଦିନେ ଏହି ଦଳର ଗୁରୁ ଶଙ୍କର ତାଙ୍କ ଯାତ୍ରା ଦେଖି ସ୍ତମ୍ଭିତ ହୋଇଗଲେ । ସେ କୃପାସିନ୍ଧୁଙ୍କୁ ଆଶୀର୍ବାଦ କଲେ, ନାଟକରଚନା ଲାଗି ପ୍ରଥମ ପ୍ରେରଣା ଦେଲେ । ଏହାପରେ ନିଜର ଯାତ୍ରାଦଳ ଗଢିଲେ, ମେଦିନୀପୁର ଓ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଯାତ୍ରା କରି ସୁଖ୍ୟାତି ଅର୍ଜିଲେ । ତାଙ୍କ ନାଟକ ମଧ୍ୟରେ ଲଳିତା ହରଣ, ବାଗାମ୍ବର, ଚନ୍ଦ୍ରାବତୀ ହରଣ, ସଚଳା ହରଣ, ମନୋହର ଫାସ୍ୟାର୍, ମୋହନମୁରଲୀ ପ୍ରଧାନ । ସେ ଶତାଧିକ ବର୍ଷ ବଞ୍ଚିଥିଲେ, ଅଶୀବର୍ଷ ବୟସ ପର୍ଯ୍ୟନ୍ତ ନାଟକ ଲେଖୁଥିଲେ । ଚକ୍ଷୁକୁ ଅଦୃଶ୍ୟ ହେଲାରୁ ନାଟକ ଡାକଲେ । ମୁଁ ତାଙ୍କ ଗୃହରେ ଦୁଇଶତ ପାଣ୍ଡୁଲିପି ଦେଖିଛି । ଅଧିକାଂଶ ଓଡ଼ିଆ ଅକ୍ଷରରେ ଲେଖା, କେତେକର ହରଫ ବଙ୍ଗଳା । ତାଙ୍କ ପୁତ୍ର ବୃଦ୍ଧ ଲକ୍ଷଣ ମିଶ୍ର ବହୁକାଳ ଯାତ୍ରାଦଳ ଚଳାଇଥିଲେ । ଯାତ୍ରାଦଳ ଏବେ ଭାଙ୍ଗିଗଲାଣି । ମିଶ୍ରେ ଦରିଦ୍ର, ଅବହେଳିତ । ତାଙ୍କ କଣ୍ଠ ଏବେ ବି ସୁଲଳିତ ରହିଅଛି । ପିତାଙ୍କ ସଙ୍ଗୀତ ଓ ସଂଳାପ ଗାଇଲା ବେଳେ ସେ ସତେ କି ତାରୁଣ୍ୟ ଫେରପାନ୍ତି ! କେତେ କାଳ ସେ ଜୀର୍ଣ୍ଣଶୀର୍ଣ୍ଣ ପାଣ୍ଡୁଲିପି ରକ୍ଷା କରିବେ ? ସେ ସମସ୍ତ ଛପେଇବା ଲାଗି ଓଡ଼ିଶା ସାହିତ୍ୟ ଏକାଡେମୀ ଯତ୍ନବାନ୍ ହେବା ଉଚିତ । ତଳେ କୃପାସିନ୍ଧୁଙ୍କ ଗୋଟିଏ ଗୀତର ନମୁନା ଦିଆଗଲା ।

ବାଗାନକୁ ଶୋଭା ଦିଶେ ଫୁଲ ଯେ ଫୁଟିଲେ ଗୋ
ଫୁଲକୁ ଯେ ଶୋଭା ଦିଶେ ଭମର ଆଇଲେ ଗୋ
ନାରୀକୁ ଯେ ଶୋଭା ଦିଶେ ଯୁବତୀ ହଇଲେ ଗୋ
ଯୁବତୀକୁ ଶୋଭା ଦିଶେ ପତି ଯେ ରହିଲେ ଗୋ
ଆକାଶେତେ ଚନ୍ଦ୍ର ନାହିଁ କି କରିବେ ତାରା ଗୋ ?
ଯା'ର କୁଲେ (କୋଳେ) ପତି ନାହିଁ ଜୀଅନ୍ତେ ସେ ମାରା ଗୋ ।

ମେଦିନୀପୁରରେ ବୃନ୍ଦାବନ କଟେଇ ମୁଁ ଫେରିଲି । ବାଟେଇ ଦେବା ଲାଗି ଘରେ ଖବର ପକେଇ କାଛି ଆସିଲେ ରାଖାଲବାବୁଙ୍କ ପରିବାର । ରାଖାଲବାବୁଙ୍କ କନ୍ୟା ମୀରା ଦେଖାଇଲା ତାର ଛବି । ଗାଉଁଲି ଝିଅ, କଲିକତା ଦେଖିନାହିଁ, ବଡ଼

ବଡ଼ ଶିଳ୍ପୀଙ୍କ ଛବି ତା ଆଖିରେ ପଡ଼ିନାହିଁ । ବିନା ଗୁରୁରେ ଆଙ୍କିଚି, କେତେ ପଲ୍ଲୀଶ୍ରୀ, ଉଷା, ସନ୍ଧ୍ୟାର ଦୃଶ୍ୟ, କୃଷକର ଧାନକଟା, ଶରତ୍ର ପୁଷ୍କରିଣୀ, ବର୍ଷା ପଲ୍ଲୀ, ସମୁଦ୍ରଗାମୀ ପୋତ, ନୋଳିଆଙ୍କ ମାଛଧରା । ତା ଇଚ୍ଛା—ଶାନ୍ତିନିକେତନ କଳାଭବନରେ ପଢ଼ନ୍ତା । କିନ୍ତୁ ପାସ୍ କରିନାହିଁ ମାଟ୍ରିକ୍, ପିତାଙ୍କର ନାହିଁ ଅର୍ଥ-ବଳ । 'ଉତ୍ପଦ୍ୟନ୍ତେ ବିଲୀୟନ୍ତେ ଦରିଦ୍ରାଣାଂ ମନୋରଥାଃ' ।

ଚିତ୍ତରଞ୍ଜନ ସାହୁ ପଢ଼ିଲେ ସ୍ୱରଚିତ ବଙ୍ଗଳା କବିତା; ଶେଷକୁ କିରଣମୟୀ ଦିଦି ଗାଇଲେ ଗୀତ, ବନ୍ଧୁ ଅନୁରୋଧରେ । ନିଷ୍ଠୁର ଶ୍ୱଶୁର ଜୀବିତ ନାହାନ୍ତି, ଏ ପଲ୍ଲୀର ଅନ୍ତଃପୁର ନୁହେଁ, କାନ୍ଥି ସହର । ଫଟା ହୃଦୟର ପ୍ରତୀକ କଣ୍ଠ ତାଙ୍କର ଯାଇଛି ଫାଟି, ଗାଇ ଗାଇ ସେ କାନ୍ଦିଲେ, ଆମକୁ କନ୍ଦେଇଲେ ।

ବସ୍ ପଡ଼ିଥିଲା । ସମସ୍ତଙ୍କ ଆଖିରେ ଲୁହ । କିଛି ଦେଇନାହିଁ, କାହାର କିଛି ନୁହେଁ । ଖୁବ୍ ଖଟେଇଛି, ଦୁଃଖ ଦେଇଛି । ମୋର ଅନୁଶୋଚନା କରିବା କଥା । ଏମାନେ କାନ୍ଦୁଛନ୍ତି କାହିଁକି ? ବୁଝିଉ ବୁଝିଉ ମୁଁ କାନ୍ଦିଲି । ପଥିକ ମୁଁ, ଗୀତର ଝୁଲିମୁଣି ଧରି ବୁଲେ, ସେଇ ମୁଣିରେ ଏ ଯୋଉ କେତେ ବିନ୍ଦୁ ଅଶ୍ରୁ ସେଦିନ ପଡ଼ିଥିଲା, ଆଜି ଦେଖୁଚି, ତାହା ମୁକ୍ତା ହୋଇଯାଇଛି ।



# ମୁଁ କାହିଁକି ଲେଖେ ?

କାହିଁକି ଲେଖେ, ଏ ପ୍ରଶ୍ନରେ ମୁଁ ନିଜକୁ କେବେ ବିବ୍ରତ କରିନାହିଁ । ଫୁଲ କାହିଁକି ଫୁଟେ, ଶିଶୁ କାହିଁକି ହସେ, ପକ୍ଷୀ କାହିଁକି ଗାଏ, ଏ ପ୍ରଶ୍ନ ମନରେ ଆସିଲେ ଆନନ୍ଦର ଅସଲ ସତ୍ତାଟିକି ହଜିଯାଏ । ଫୁଲର ପାଖୁଡ଼ା ଗଣିବା, ରଙ୍ଗ ବିଶ୍ଳେଷଣ କରିବା ଉଦ୍‌ଭିଦବିଦ୍ୟାବିତ୍‌ର କାର୍ଯ୍ୟ, କବିର ନୁହେଁ । କବି ତତ୍ତ୍ୱାନ୍ୱେଷୀ ନୁହେଁ, ଭାବଗ୍ରାହୀ, ରସଗ୍ରାହୀ । ମୁଁ ଦେଖେ ଫୁଲର ବିନ୍ଦୁଏ କାକରରେ ସିନ୍ଧୁଏ ଶୋଭା; ପବନ ଦୋହଲରେ ତା ଦୋଳି ଖେଳା ଛନ୍ଦକ ସଙ୍ଗେ ତାଳ ଦେଇ ମୋ ହୃଦୟ ନାଚି ଉଠେ । ଆଷାଢ଼ର କୃଷ୍ଣ ମେଘ ମୋ ଆଖିରେ ମାଖି ଦିଏ ନୀଳ ଅଞ୍ଜନ, ଶରତର ସ୍ନିଗ୍ଧ ଚନ୍ଦ୍ରିକା ମୋ ବୁକୁରେ ଲିପିଦିଏ ଶୀତଳ ଚନ୍ଦନ । ଶ୍ୟାମ ଶସ୍ୟର ହିଲ୍ଲୋଳ ପ୍ରାଣକୁ ନବଭାବରେ ଉଚ୍ଛୁଳାଇ ଦିଏ । ଗିରି, ବନ, ନଦୀ, ହ୍ରଦ, ଆକାଶ, ପୃଥିବୀ ମୋର ଏକାନ୍ତ ଆତ୍ମୀୟ, ସେମାନଙ୍କୁ ଦେଖେ ମୋର ବାହାରେ, ଭିତରେ ବି । ଏ କୁଟୁମ୍ବ ବିରାଟ, ବିପୁଳ । ମୋର ସମସ୍ତ ସୃଷ୍ଟି ମୂଳରେ ଏମାନଙ୍କର ସ୍ନେହଳ ସ୍ପର୍ଶ ଥାଏ ।

ରୂପ ରସ ଗନ୍ଧଭରା ବିଶ୍ୱପ୍ରକୃତି, ତାର ଆତ୍ମାସ୍ୱରୂପୀ ମନୁଷ୍ୟ ଓ ତାର ବିଚିତ୍ର ଚରିତ୍ର ମନରେ ଆଲୋଡ଼ନ ସୃଷ୍ଟି କରେ । ମୋ ମନରେ ସେତେବେଳେ କିଏ କହେ ଲେଖ୍ ବୋଲି । ମୁଁ ଲେଖେ । ମନ ଭିତରର ଏଇ ଡାକରେ ମୁଁ ଚମକି ପଡ଼େ । ଏଇ ଡାକ ମୋତେ ଅସ୍ଥିର କରେ, ଆକ୍ରାନ୍ତ କରେ । ଏ ସୌନ୍ଦର୍ଯ୍ୟର ଡ଼ାକ କି ପ୍ରତିଭାର ଡାକ ଜାଣେ ନାହିଁ । ତାକୁ ଏଡ଼ିବା ଶକ୍ତି କାହାର ଅଛି ? ସେ ଅଦ୍ଭୁତ ମାଦକ ନିଶାରେ ଚିତ୍ତ ବିହ୍ୱଳ ହୁଏ, ଇନ୍ଦ୍ରିୟ ବିମୂଢ଼ ହୁଏ । ଭାବର ଜୁଆର ଟଳମଳ ହୁଏ ବୁକୁ ଭିତରେ, ଲେଖନୀ ମୁନରେ ତାହା ହୋଇ-ଯାଏ କବିତା । ଗୋଟିଏ ସରସ, ଶ୍ୟାମଳ ମୁହୂର୍ତ୍ତ ସେ, ସାରା ଜୀବନ ଉପରେ, ଅନନ୍ତ କାଳ ଉପରେ ତାର ପ୍ରଭାବ ବିସ୍ତାର କରେ । ସେତେବେଳେ ଭାବ ବିଦ୍ୟୁତ୍ ପରି ଝଟକି ଉଠେ, ମନରେ ଚମକ, ଶରୀରରେ ପୁଲକ ଆସେ । ମୋର ବର୍ତ୍ତମାନ ସତ୍ତା, ବ୍ୟକ୍ତିଗତ ସୁଖଦୁଃଖ, ତେଲି ଲୁଣର ସଂସାର ଭୁଲିଯାଏ । ମୁଁ ହୁଏ ଆଉ ଜଣେ କିଏ, ମୋ ନାମ ଓ ବେଷ୍ଟନୀରୁ ଭିନ୍ନ, କାଳ ଓ ସ୍ଥାନରୁ ସ୍ୱତନ୍ତ୍ର । କେଉଁ

---

* ୧୯୫୦, 'ଡଗର' ସପ୍ତମ ସଂଖ୍ୟାରେ ପ୍ରକାଶିତ । ଲେଖାରେ କିଛି କିଛି ଅଦଳବଦଳ ହୋଇଛି ।

ବୃହତ୍ତର ବ୍ୟକ୍ତିତ୍ୱର ସତ୍ତା ମୋ ଉପରେ ଆଧିପତ୍ୟ ବିସ୍ତାର କରେ, ମୋତେ ଟାଣି ନେଇଯାଏ ସସୀମରୁ ଅସୀମକୁ, ସାନ୍ତରୁ ଅନନ୍ତକୁ ।

ସୃଷ୍ଟିର ମୁହୂର୍ତ୍ତ ଅମୃତ ମୁହୂର୍ତ୍ତ । ଭଗବାନ ସୃଷ୍ଟି କଲାବେଳେ ହୁଏତ କବିର ଏଇ ମଧୁର ଅନୁଭୂତି ଉପଭୋଗ କରିଥିବେ ।

କଳା ନବବଧୂ, ବଡ଼ ଲାଜକୁଳୀ । ଡାକିଲେ ଆସେ ନାହିଁ; ମନର ପାତଳ ପରଦା ଖୋଲି ଗୋଟିଏ ମାତ୍ର ମୁହୂର୍ତ୍ତ ଦେଖାଦିଏ । ସେ ଖୋଜେ ସ୍ନେହାଦର, ତାର ଅଛି ଆଭିଜାତ୍ୟ ବୋଧ । ଅବଜ୍ଞା କଲେ ଅଭିମାନିନୀ ସେଇ ମୁହୂର୍ତ୍ତରେ ଅନ୍ତର୍ହିତ ହୁଏ । ନେହୁରା ହୋଇ ପଛରେ ଯେତେ ଡାକିଲେ ଫେରେ ନାହିଁ । ତେଣୁ ପ୍ରତିଭାର ଆଳସ୍ୟ ଅକ୍ଷମଣୀୟ ।

ଯେତେବେଳେ ଇଚ୍ଛା, ସେତେବେଳେ ଗଛରେ ଫୁଲ ଫୁଟେ ନାହିଁ କି ମନରେ ଭାବ ଫୁଟେ ନାହିଁ । ତାର ଋତୁ ଅଛି । କଳାର ସେହିପରି ଲଗ୍ନ ଅଛି । ସେ ଲଗ୍ନ ଠିକ୍ କରେ କଳାର ଅଧିଷ୍ଠାତ୍ରୀ । ସେଥିରେ କବିର ହାତ ନାହିଁ । କବି ଇଚ୍ଛା କଲେ ଅଭ୍ୟାସ ଗୁଣରେ ଅଥବା ପ୍ରତିଭା ବଳରେ ପଦ ଯୋଡ଼ି ପଦ୍ୟ ରଚନା କରିପାରେ, କିନ୍ତୁ ସେ କବିତା ହେବ ନାହିଁ । କବିତ୍ୱ ଅଭ୍ୟାସ ବା ପାଣ୍ଡିତ୍ୟର କସରତ ନୁହେଁ । ବ୍ୟୁତ୍ପତ୍ତି ଓ ଅଭ୍ୟାସର ସ୍ଥାନ କାବ୍ୟରେ ଥିଲେ ହେଁ ଏହା ମୁଖ୍ୟତଃ ପ୍ରତିଭାମୂଳକ । ପ୍ରତିଭା ଈଶ୍ୱରଦତ୍ତ ଶକ୍ତି । କବି ଭଗବାନଙ୍କ ସୃଷ୍ଟି-ରହସ୍ୟ ପ୍ରକାଶରେ ସାହାଯ୍ୟ କରେ । ସେ ସୃଷ୍ଟିସୌନ୍ଦର୍ଯ୍ୟର ରସିକ, ଗ୍ରାହକ ଓ ପ୍ରକାଶକ । ସେ ମନର ରସ ଦେଇ ଗଢେ ଏକ ଭାବଜଗତ୍, ଯାହା ଭଗବତସୃଷ୍ଟ ସଂସାରଠାରୁ ସୁନ୍ଦରତର । ଭଗବାନଙ୍କ ନିକଟରେ ଦ୍ୱିତୀୟ ସୃଷ୍ଟିକର୍ତ୍ତା ରୂପେ ବସିବାକୁ ଯୋଗ୍ୟତମ ବ୍ୟକ୍ତି କବି, ଶିଳ୍ପୀ ବା ଭାସ୍କର । ସେ ସୁନ୍ଦରକୁ ସୁନ୍ଦରତର କରେ, ବିଶ୍ୱମାନବ ଓ ପ୍ରକୃତି ମଧ୍ୟରେ ଏକାତ୍ମତା ସ୍ଥାପନ କରେ । ଦୁଃଖଶୋକ, ଲୁହଲହୁକୁ ମହୁରେ ପରିଣତ କରି ଦୁନିଆ ଆଗରେ ବାଢ଼େ ।

ସୃଷ୍ଟିର ଆନନ୍ଦ ଲେଖକର ସବୁଠାରୁ ବଡ଼ ଲାଭ । ଏଇ ଆନନ୍ଦ ମଧ୍ୟରେ ରଚନାର ଅସଲ କାହିଁକି ଆମେ ଖୋଜି ପାଉଁ । ସେଇ ଆନନ୍ଦ ଟିକକ ପାଇଁ କବି ରାତି ରାତି ଜାଗର ଜାଳେ, ସାଂସାରିକ ଦୁଃଖ ଦୁର୍ଦ୍ଦଶାକୁ ଭ୍ରୂକ୍ଷେପ କରେ ନାହିଁ । ଋଷି ବ୍ରହ୍ମ ଦର୍ଶନରେ ଯେଉଁ ଆନନ୍ଦ ପାଏ, ଏ ସେହି ଆନନ୍ଦ । କବିର ଧର୍ମ ଆନନ୍ଦର ଧର୍ମ, କବିର ଦର୍ଶନ ଆନନ୍ଦଦର୍ଶନ । ଏଇ ଆନନ୍ଦ ମଧ୍ୟରେ କବି ତାର ଭଗବାନର ଦର୍ଶନ ପାଏ । ତାର ସାଧନା କାୟାସାଧନା ନୁହେଁ, ରୂପର ସାଧନା । ଧ୍ୟାନଦୃଷ୍ଟିରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳର ସମସ୍ତ ସୌନ୍ଦର୍ଯ୍ୟ ସେ ଅନ୍ତରରେ

ଫୁଲ କରେ, ରସାତ୍ମକ ଭାବରେ ପ୍ରକାଶ କରେ । ତାର ହୃଦୟ ସାରା ଜଗତର ଦର୍ପଣ; ସେ ସମଗ୍ର ମାନବଜାତିର ପ୍ରତିନିଧି । ଦୁନିଆର ଦୁଃଖ ସୁଖ, ଆଶା ନୈରାଶ୍ୟକୁ ସେ ନିଜର କରେ, ନିଜର କରି ସମସ୍ତଙ୍କୁ ବିତରଣ କରେ । ପୀଡ଼ିତ ଲାଗି ଜାଗ୍ରତ କରେ ସହାନୁଭୂତି, ଦୁର୍ବଳଙ୍କୁ ଦିଏ ନୈତିକ ସାହାଯ୍ୟ, ଅତ୍ୟାଚାରିତକୁ ଅସ୍ତ୍ର, ପାଷାଣ୍ଡକୁ ମନୁଷ୍ୟତ୍ୱ ।

ଏକଥା ଏବେ ବୁଝିଛି, ଲେଖୁଛି । ସେତେବେଳେ ଏସବୁ ମନରେ ପଶି ନ ଥିଲା । କବିତାର ସାମାଜିକ ଉପାଦେୟତା କେତେ, ମହତ୍ତ୍ୱ କେଉଁଠି, ଲକ୍ଷ୍ୟ କଣ, କବି କାହିଁକି ଲେଖେ—କିଛି ବୁଝୁ ନଥିଲି । ତେବେ ଆମ ଘର କବିର ଘର ଥିଲା । ମୋ ନନା କବି ଥିଲେ, ସେ ପାଲ୍ଟୁଆ ଆଉ ପାଲାବାଲାଙ୍କ ପାଇଁ ପଢ଼ାବନ୍ଧଆ, ଅର୍ଥବନ୍ଧଆ ଗୀତ ଲେଖୁଥିଲେ । ମୋ ଭାଇନା ସେଇ ପିତୃ ପରମ୍ପରାର ଅଧିକାରୀ ହେଲେ । ପାଲା, ପାଲ୍ଟୁଆ, ଚଇତିଘୋଡ଼ା ଗୀତ, ସଙ୍ଗୀତ, ଗୀତାଭିନୟ ରଚନା କରିବା ସଙ୍ଗେ ସଙ୍ଗେ ସେ ଗୋଟିଏ ଯାତ୍ରା ପାର୍ଟି ଗଢ଼ିଲେ । ଏସବୁର ପ୍ରଭାବ ମୋ ଉପରେ ପଡ଼ି ନ ଥିଲା, ନୁହେଁ । ମୁଁ ବି ଦିନେ ଯାତ୍ରାଗୁରୁ ହେବାର ଉଚ୍ଚାକାଂକ୍ଷା ପୋଷଣ କରି ଢୋଲକ ଆଉ ପଖଉଜରେ ଟିପ ଟାଣିକରୁଥିଲି । କବି ହୋଇ ନନା, ଭାଇନା ଗାଁଗଣ୍ଡାରୁ ଯେଉଁ ମାନସମ୍ମାନ ପାଉଥିଲେ, ତା ଦେଖି ଯେ କୌଣସି ବଡ଼ଲୋକର ଈର୍ଷା ହେବ । ଏଥିରେ ମୋର ଯେ କବି ହେବାର ଲୋଭ ହୋଇ ନଥିବ କିଏ କହିବ ?

କିନ୍ତୁ ମୋର ପରିବେଶ ଭିନ୍ନ ହୋଇଗଲା । ଭାଇନା ମାଇନର ପରେ ପଢ଼ା 'ଇତି' କରିଥିଲେ; ମୁଁ ହାଇସ୍କୁଲରେ ନାମ ଲେଖାଇଲି । ଇଂରେଜୀ ଦୁଇ ଚାରି କ୍ଲାସ ପଢ଼ିଲା ପରେ ନନା, ଭାଇନାଙ୍କ ଧରଣର ଗୀତ ଲେଖିବାକୁ ମୋର ମନ ବଳିଲା ନାହିଁ । ମୁଁ 'ରାଧାନାଥ ଗ୍ରନ୍ଥାବଳୀ', 'ମଧୁସୂଦନ ଗ୍ରନ୍ଥାବଳୀ' ପଢ଼ିଲି, ସେଇ ରୀତିରେ ଲେଖିବାକୁ ଚେଷ୍ଟା କଲି ।

ଆଜକୁ ୨୦ ବର୍ଷ ତଳର କଥା; ମନେ ପଡ଼େ ଧୂସର ଅତୀତର ସେ ଜ୍ୟୋତିର୍ମୟ ମୁହୂର୍ତ୍ତଟି, ଯେତେବେଳେ ମୁଁ ପହିଲେ କବିତା ଲେଖିଲି—ଭାବି ନ ଥିଲି—ଏଇ ମୁହୂର୍ତ୍ତଟି ଜୀବନ୍ତ ହେବ, ମୋର ସାରା ଜୀବନକୁ ଏକ ମହତ ଲକ୍ଷ୍ୟରେ ଟାଣିନେବ; ଏ ମୋତେ ଦୂର ପଥର ଆହ୍ୱାନ ଦେବ, ରୂପକୁମାରୀର ତଡ଼ିତ୍ ଶିଖା ପଛରେ ଦଉଡ଼ାଇ ଦେବ ମୋର ମନକୁ । ଆଜି ଅର୍ଦ୍ଧାକାଶ, ଅର୍ଦ୍ଧ ପୃଥିବୀ ମଧ୍ୟରେ ଛିଡ଼ା ହୋଇ ପଚାରୁଛି—'ଆର୍ କେତେଦୂର ନେଇଯିବେ ମୋରେ ସୁନ୍ଦରୀ ?' ମାନସୀ କଟାକ୍ଷ ଇଙ୍ଗିତରେ ଉତ୍ତର ଦେଉଛି--ଅବସାଦ କାହିଁକି କବି ? ଅନନ୍ତ କାଳ ଲାଗି ଅନନ୍ତ ପଥରେ ଯେ ତୁମର ଗତି; କେହି ପ୍ରକାଶ କରି

ଶେଷ କରି ପାରି ନାହାନ୍ତି । ଆହୁରି ଅଛି ତୁମର ଅପେକ୍ଷା, ତୁମ ପଛରେ ଶତ ସହସ୍ର ଅନାଗତର ଅପେକ୍ଷା ।

ପ୍ରଥମ କବିତା ଲେଖାବେଳେ ମନରେ କୌଣସି ଭାବର ଆବେଗ ଆସି ନଥିଲା । ସୃଷ୍ଟିର ବେଦନା ନଥିଲା କି ଯଶର ପିପାସା ନଥିଲା । ବୋଧେ କେବଳ ଲେଖିବା ପାଇଁ ଲେଖିଲି । ପିଲାଦିନର ସବୁ ଖେଳ ପରି ଏ ବି ଗୋଟାଏ ଖେଳ । ଉପର ପଦ ସଙ୍ଗେ ତଳ ପଦ କିପରି ମିଳୁଛି ଏଇ କୌଶଳ ଜାଣିବାର କୌତୂହଳ ମନରେ ଆସିଥିଲା । କବାଟ କିଳି ଖାତା ପେନ୍‌ସିଲ ଧରି ବସିପଡ଼ିଲି । ଭାବର ବାହାରି ଆସିବାକୁ ଲଜ୍ଜା, ତାକୁ ଅଭ୍ୟର୍ଥନା କରିନେବାକୁ ଭାଷାର ସଙ୍କୋଚ । ଆଶା, ନିରାଶାର ଉତ୍‌ଥାନ ପତନ ମଧ୍ୟରେ ଆତ୍ମଜିଜ୍ଞାସା—'ଏ କ'ଣ ମୋ ଦ୍ୱାରା ହେବ ?' ଯେତେବେଳେ ଏହିପରି ଭାବେ, ଭାବ ଆତ୍ମଗୋପନ କରେ । ପୁଣି ଭାବେ —କେତେ ଲୋକ ତ ଲେଖୁଛନ୍ତି, ମୁଁ ନ ଲେଖି ପାରିବି କାହିଁକି ? ସେତେବେଳେ ଭାବର ପଦଧ୍ୱନି ମନ ଭିତରେ ଶୁଣେ । ଲେଖନୀ ପର୍ଯ୍ୟନ୍ତ ଧୀରେ ଧୀରେ ଆସି ସେ ପୁଣି ଫେରିଯାଏ । ଅପରିଚିତକୁ ଆତ୍ମପରିଚୟ ଦେବାର ସଙ୍କୋଚ ଏ ।

କିଛି କାଳ କାଗଜ ବରବାଦ୍ ହେବା ପରେ ଗୋଟିଏ ପଦ ଅଜାଣତରେ କିପରି ଲେଖି ହୋଇଗଲା । ଲେଖିସାରି ବିଶ୍ୱାସ ହେଲା ନାହିଁ—ମୁଁ ଲେଖିଛି । ସତେ ଯେମିତି କୌଣସି ବୃହତ୍ତର ବ୍ୟକ୍ତିତ୍ୱ ମୋ ହାତ ଧରି ଲେଖାଇ ଦେଲା । ଏ କବିତା ଦିଧାଡ଼ି ଆଜି ମନେ ନାହିଁ—ତଥାପି ଏହା ଯେ ମୋର ସମସ୍ତ ସୃଷ୍ଟିର ମୂଳଦୁଆ, ସ୍ୱୀକାର କରିବାକୁ ହେବ ।

ପଦଟି ଲେଖିସାରିଲା ପରେ ହୃଦୟରେ ଆନନ୍ଦ ଜାଗା ହେଲା ନାହିଁ; ସତେ ଅବା ଘାଇ ଭାଙ୍ଗି ବନ୍ୟା ପରି ବୋହିଯିବ । ଆଜି ମୋର ନୂତନ ପରିଚୟ, ଫୁଲ ଫୁଟିଲେ ଗଛ ନିଜର ଯେଉଁ ପରିଚୟ ଦିଏ । ଆଜି ମୋର ଜନ୍ମଦିନ, ସୁବର୍ଣ୍ଣ କିରଣ ପ୍ରବାହରେ ବାଳସୂର୍ଯ୍ୟର ଜନ୍ମୋତ୍ସବ ପରି ମନୋରମ । ନିଜକୁ ଆଜି ନୂଆ ଭାବରେ ଆବିଷ୍କାର କଲି, ମନ-ସମୁଦ୍ରରେ ନୂତନ ଆମେରିକାର ଆବିଷ୍କାର ଏ । କାଲି ଥିଲି ଅଷ୍ଟମ ଶ୍ରେଣୀର ଜଣେ ନଗଣ୍ୟ ଛାତ୍ର, ଆଜି ଆଶାଆଲୋକରେ ଉଜ୍ଜ୍ୱଳ ଜଣେ କବି ।



# କବିତାର କଥା

ଚୋରି କରିବା ଭଳି ଘରେ କିଛି ସମ୍ପଦ ନ ଥିଲା, ସୁଟ୍‌କେସ୍‌ରେ ନଥିଲା ଚାବି, ଗୃହର ଗୋଟିଏ କୋଣରେ ଗଦା ହୋଇଥିଲା ଆଦ୍ୟ ତାରୁଣ୍ୟରେ ଲିଖିତ ଗଣି ଗଣି କବିତା ଖାତା । ଚୋରର ସୁଟ୍‌କେସ୍‌ଟି ନେଲାନାହିଁ, ତାର ବଦ୍‌ନାମ୍ ହେବ ବୋଲି । ହଁ ଚୋରର ସତ, ଶ୍ରେଷ୍ଠ ଲୋକ ନୁହେଁ । ପେଟ ପୋଷ୍, ନାହିଁ ଦୋଷ୍, ଏ ତାର ବୃତ୍ତିର ନୀତି । ତା ବୋଲି ନ ଥିଲାର ନାକ କାଟି ଘେନିଯିବା ଭଳି ନିର୍ଦ୍ଦୟ ସେ ନୁହେଁ । ତେଣୁ ଘେନିଗଲା ସେଇ ଖାତାଗୁଡ଼ିକ, ଦରିଦ୍ର ଅଧିକାରୀର ଅନାବଶ୍ୟକ କାଗଜ ବିଚାରି । ସବୁ କାର୍ଯ୍ୟରେ ଶ୍ରମ ଅଛି, ଚୋରିରେ ଅଧିକ । ଯେହେତୁ ଏ ଶ୍ରମ ଶଙ୍କିତ । ଖାତା ମୂଲ୍ୟରୁ ପାରିଶ୍ରମିକ ମିଳି ନଥିବ, ସୁନିଶ୍ଚିତ । ବୋଧେ ଲୋକଟା ଚା'ଖୋର । ନୋହିଲେ ବୋଝ ନେବାର କଷ୍ଟ ସ୍ୱୀକାର କରି ନଥାନ୍ତା ।

ମଣିଷ ବର୍ତ୍ତମାନକୁ ଜାଣିବାର ବହୁ ସୁଯୋଗ ପାଏ, କିନ୍ତୁ ବୁଝେ ଅଳ୍ପ । ଯେତେବେଳେ ଦିନଦିନ ଓପାସେ ରହିଥିଲି, ମନେ ପଡ଼େ, ଚିନ୍ତାରେ । ଆଜି ଭାବୁଚି, ଚୋର ବି ଉପକାରୀ । ବହୁ ଅପକବିତାର ଉତ୍ପୀଡ଼ନରୁ ରକ୍ଷା କରିଛି ଉତ୍କଳକୁ । ଭଗବାନ୍‌ଙ୍କ ଆଶୀର୍ବାଦ ଆସେ, କେତେବେଳେ ଧ୍ୱାନ୍ତ ବା କାନ୍ତ ରୂପରେ । ସେଦିନ ଜୀବନର ଅଭ୍ୟୁଦୟ ଆସିଥିଲା, କୁହୁଡ଼ି ଘନଘଟାରେ, ହଠାତ୍ ଚିହ୍ନିପାରି ନଥିଲି । ସେହି ଦିନୁ ନୂତନ ଆକାଶରେ ଉଡ଼ିବାର ପ୍ରୟାସ କଲି । ମନର ପୁଷ୍ପ ବୋଲି ଯାହା ଗଢ଼ିଦେଇଲି, ଏବେ ଦିଶୁଛି, ଶୁଷ୍କ ଶଷ୍ପର ସ୍ତୂପପରି । ବର୍ତ୍ତମାନ ଶିଖରରେ ଛିଡ଼ାହୋଇ ଅତୀତର ସେଇ ପାଣ୍ଡୁଲିପିକି ଅନାଇଲେ ମୂଢ଼ର ଗର୍ବ ଯେତେ ଆସେ, ତା ଅପେକ୍ଷା ବେଶୀ ଆସେ, ଦୃଢ଼ର ଆତ୍ମଗ୍ଲାନି । ଯାହା କରିଛି, ଯେପରିକି କିଛି ନୁହେଁ; ଯାହା କରିବ ତାହାହିଁ ଶ୍ରେଷ୍ଠ କୀର୍ତ୍ତିମନ୍ଦିର ହୋଇ ରହିବ । ଏହାହିଁ ପ୍ରତ୍ୟେକ ପ୍ରଗତିଶୀଳ ଲେଖକର ଅନୁଭୂତି ।

କିନ୍ତୁ କାହିଁ ଆଜି ସେ ମାନସିକ ସ୍ଥିରତା, ଯାହା କବିତାର ମୂଳାଧାର ? କଳାର ସୂକ୍ଷ୍ମତମ ବିନ୍ଦୁରେ କଙ୍କାଳ ଉତ୍ପୀଡ଼ିତ ମନକୁ ଠୁଳ କରିବା ସାଧ୍ୟାତୀତ ହେଉଅଛି, ବହୁ କବିଙ୍କର । ବାହାର ବାତାବରଣରେ ଝଡ଼ର ଗୁମ୍ଫା, ତାର ପକ୍ଷ-ପବନରେ ଆହତ ହୁଏ ନୀରବତା, ଭାଜିଯାଏ ଯୋଗଧ୍ୟାନ । ଋଷି, କବି—ସମାନ ତାଙ୍କର ସାଧନା । ମୁଖର ଜଗତକୁ ଅନ୍ତରରେ ରଖିବ, ଏଣେ ରହିବ ନୀରବ, ନିଶ୍ଚଳ । ସଚେତନ ଅବସ୍ଥାରେ ପରିପାର୍ଶ୍ୱରେ ବୁଡ଼ିରହିବ, ଏ ତାର ପ୍ରସ୍ତୁତି । ପୁଣି ନିଜକୁ

ଦ୍ୱାରଗବାକ୍ଷହୀନ ଗିରିଦୁର୍ଗକୁ ଯେମିତି ଆସିପାରିବ, ଏ ତାର ତପସ୍ୟା । ଏଥିଲାଗି କେତେ କବି କରିଛନ୍ତି କେତେ ଅଭ୍ୟାସ । ଶିଲର୍ ରଖନ୍ତି ଡେସ୍କ୍ ତଳେ ପଚା ଆପଲ୍, ଓ୍ୱାଲଟର୍ ଡେଲା ମେୟାର୍ ଖେଳନ୍ତି ଧୂମର କଳାନାଗୁଣୀ, ଅଡ଼େନ୍ ଖାନ୍ତି କପ୍ ପରେ କପ୍ ଚା', ଷ୍ଟିଫେନ୍ ସ୍ପେଣ୍ଡାର୍ ଶୋଷନ୍ତି କଫି, ପ୍ରତି ଟୋକର ଅବକାଶରେ ସିଗ୍ରେଟ୍, ମାଇକେଲ ମଧୁସୂଦନଙ୍କ ସମକ୍ଷରେ ରଖାହୁଏ ବୋତଲ, ରାଧାନାଥ ସେବା କରନ୍ତି ନସ୍ୟ । ପଚା ଆପଲ୍ ଗନ୍ଧରେ ବା ଧୂମ କୁଣ୍ଡଳୀରେ କବି ଗୋଟିଏ ବାତାବରଣ ସୃଷ୍ଟି କରେ, ଯାହା ବାହାର ଜଗତରୁ ସ୍ୱତନ୍ତ୍ର । ଏହା ମନକୁ ସ୍ଥିର ରଖିବା ଲାଗି ବା ମନର ଭାବକୁ ଧାରା ଦେବା ଲାଗି ଲୋଡ଼ା । ଦୁଃଖର କଥା, ବଦ୍ ହେଉ ବା ସଦ୍ ହେଉ, ମୋର ଏଥିରୁ ଗୋଟିଏ ହେଲେ ଗୁଣ ନାହିଁ, ନାହିଁ ଯୋଗାଭ୍ୟାସ, ନାହିଁ ଭୋଗାଭ୍ୟାସ ।

ଫଳତଃ ବାହାର ବାତାବରଣର ସାମାନ୍ୟ ଉତ୍ତେଜନାରେ ମୁଁ ବିଚଳିତ ହୋଇପଡ଼େ । ସଚେତନ ଥିଲାବେଳେ ଅନୁଭୂତ ହୁଏ ନାହିଁ, ମନକୁ ସ୍ଥିର କଲେ ବହୁଦୂର, ନିକଟ, ସ୍ପଷ୍ଟ ଧ୍ୱନି କର୍ଣ୍ଣରେ ବାଜେ । ଉଠି ଆସୁଥିବା ଭାବ ଅପସରି ଯାଏ । କ୍ରୋଧରେ ଲେଖା କାଟି ପକାଏ, କାଗଜ ଚିରେ ବା କଲମ ଫୋପାଡ଼ିଦିଏ, କାହିଁକି ଏଡ଼େ ଦୁର୍ବଳ ମୁଁ ?

ଅଫିସ୍‌ରେ ଲେଖା ଅବକାଶରେ, କେହି ଭଦ୍ରଲୋକ ଆସେ ସୁଖାଳାପ କରିବାକୁ । କଣ ଲେଖୁଛି ସେଥିପ୍ରତି ସମ୍ଭ୍ରମ ନାହିଁ । ଘରେ ଲେଖେ, ପୁଅର ସେଇ ଖାତା ଆଉ କଲମଟି ଲୋଡ଼ା ହୁଏ । ସେ ମୋର ପରି ଲେଖିବ, ଆଙ୍କିବ, ଅଭୁତ ଉଇଁ । କିଏ କାହା ଜୀବନକୁ ବୁଝେ ବୁଝିବାଭଳି ?

ଭାବିଲି, ଲୁଚି ଲେଖିବି । ବସିଲି ଅଶୋକ ବନରେ । ବନ୍ଦିନୀ ସୀତା ମାସ ମାସ ଧରି କାନ୍ଦିଥିଲେ ଏହିପରି ଏକ ନିକୁଞ୍ଜରେ । ନାମତଃ ଅଶୋକ । ଶୋକ ଦୂର କରିବାର ଶକ୍ତି ତାର ନାହିଁ । ତେଣୁ ସ୍ତ୍ରୀମାନେ ତାକୁ ପଦାଘାତ କରନ୍ତି । ସେ ଅଗ୍ନି କାନ୍ଦେ, ତାକୁ କହନ୍ତି ମଞ୍ଜରୀ ।

ଭାବୁଚି—କଅଣ ଲେଖିବି ? ଦେବ ପ୍ରକୃତିର ଚନ୍ଦ ? ଭଗବାନ୍ ପୃଥିବୀରେ ଯେଉଁ ଅସାମଞ୍ଜସ୍ୟ ସୃଷ୍ଟି କରିଛନ୍ତି, କରିବି ତା ବିରୁଦ୍ଧରେ ବିଦ୍ରୋହ ? ନା, ଏସବୁ କେତେ ଲେଖିଛନ୍ତି, କିଛି ନୂଆ ଲେଖିବି, ନୂଆରେ ପୃଥିବୀର ଅଗ୍ରଗତି ।

ଚାଲିଗଲା କିଏ ସୀମନ୍ତିନୀ ? ପାଦରେ ନୂପୁର ନାହିଁ । ତଥାପି ଯୌବନର କି ଗୋଟାଏ ରଣନ ମନକୁ ଝଂକୃତ କଲା । ନିରଲଙ୍କାରା, ତେଣୁ ଅଙ୍ଗଶ୍ରୀ ଅତ୍ୟୁକ୍ତି-ବର୍ଜିତ ହୋଇଅଛି । ଆଦର କଲା କୃତ୍ରିମ ପୁଷ୍କରିଣୀର ଏଇ କଇଁଫୁଲଟିକୁ, ମୁହଁରେ

ମୁହଁ ଲଗାଇ, ସୂର୍ଯ୍ୟମୁଖୀ ଉପରେ ବୁଲାଇଦେଲି ଆଖିର ଅନୁରାଗ ତୂଳୀ । ଗୋଲାପ ଉପରେ ବୁଲାଇ ଦେଲି ସ୍ପର୍ଶ ଲୋଭାତୁର ହାତ । ସମସ୍ତ ପ୍ରକୃତି ଆଦରରେ ଅଭ୍ୟର୍ଥିତ ହେଲା, ମନୁଷ୍ୟର ଶ୍ରଦ୍ଧାରେ ସବୁ ସୁନ୍ଦର । ମନ ତରଳ ହୋଇ ଆସିଲା, କବିତା ଝରିବ ଝରିବ ହେଲା । ପ୍ଲାଷ୍ଟେଣ୍ଟ୍ ଉପରେ ହାତ ପକେଇଲା ପରି କଲମକୁ ଲଗେଇଲି କାଗଜରେ । କଣ ଲେଖିହେବ ହଉ ।

ଧ୍ୟାନସ୍ଥ ମନରେ ହଠାତ୍ ଚମକ ଆଣି ପହଞ୍ଚିଗଲା ବଗିଚାର ଚନ୍ଦ୍ରା ମାଳୀ । ପାଣି ଗାରକୁ କାନ୍ଧରୁ ଓହ୍ଲେଇ ଥୋଇ ପଚାରିଲା—ବାବୁ, ଏଠି କଣ କରୁଛ ? ଲାଜରା ହୋଇ କହିଲି—ନାଇଁରେ ଏମିତି ଟିକିଏ ବସିଛୁ ।

ମନରେ କାହିଁକି ଏଡ଼େ ଦୁଃଖ ?

ହସିବି କି ରାଗିବି ? ଲଳିତା ଯେମିତିକି ପଚାରୁଛନ୍ତି—'ନୂଆ ନଟ ପଟଳି ମୁକୁଟ ହେ, କାହିଁ କି ଶ୍ରୀଅଙ୍ଗ ସୁଖ ?'

ସେ କଥାର ଶାଖା ପ୍ରଶାଖା ମେଲେଇବା ଆଗରୁ ଚାଲିଗଲି, ମନରେ କ୍ଷତ ଦେଇ । ଋଷିର ଯୋଗ ଭାଙ୍ଗନ୍ତି ଉର୍ବଶୀ, ଆମ ଧ୍ୟାନ ଭାଙ୍ଗୁ ଚି ଯେ ଚନ୍ଦ୍ରା ସେ ।

ଚତୁର୍ଦ୍ଦିଗରେ କୋଳାହଳ, ଗଭୀର ନୀରବତା ଥିବ ଗିରି ଅରଣ୍ୟରେ । କବିତା ଲେଖିବା ଲାଗି କୋଉ କବି ବନବାସୀ ହେଉଛି ? ବାଲ୍ମୀକି ଥିଲେ ଆଗେ ଋଷି, ପରେ କବି । ବ୍ୟାସଦେବ ସେହିପରି । ଗୃହକାରା-ବନ୍ଦୀଙ୍କ ବନବାସ ସୁଖ ଲାଗିବ କେଉଁଠି ? ନିର୍ଜନତାର ନିପୀଡନ ବି କୋଳା-ହଳରୁ ବିକଟତର ହୋଇପାରେ । ନଗରର ଘୋର କୋଳାହଳରେ, କାରଖାନାର ଧୂମ ଅନ୍ଧକାରରେ, ରଣକ୍ଷେତ୍ରର କମାଣ ଗର୍ଜନ ଭିତରେ ଏ ଯୁଗର କବି କବିତା ଲେଖେ । କୋଳାହଳଟାବି, ଭାବୁ ଭାବୁ, ଦିନେ ଆବିଷ୍କାର କଲି—କୋଳାହଳ ବାହାରେ ନାହିଁ, ମୋ ଭିତରେ । ସେଠି ଲାଗିଛି ଭାବ ସହିତ ଅଭାବର ସଂଘର୍ଷ, ପ୍ରୟୋଜନ ଦୁନିଆଁ ସହିତ ସୌନ୍ଦର୍ଯ୍ୟର ପ୍ରତିଯୋଗିତା । ଅନ୍ତର୍ଲୋକର ଆଶ୍ରମ ମୋର ନିରୁଦ୍‌ବିଗ୍ନ ନୁହେଁ । ମୁଁ ନିଜେ ହିଁ ମୋ ଭିତର କୋଳାହଳର ହେତୁ । ବାହାରର କ୍ଷୁଦ୍ର ବୃହତ୍ ବସ୍ତୁ ଆକ୍ରମଣ ଭିତରେ ମନକୁ ଦୁର୍ଭେଦ୍ୟ ଦୁର୍ଗ କରି ପାରିଲେ କବିତା ଲେଖା ସମ୍ଭବ ନୁହେଁ ।

କବିତା ଲେଖାର ଇତିହାସ ଅଛି । ତାରିଖର ବିବରଣୀ ନୁହେଁ, ଏହା ଭାବ ସଂଘର୍ଷ ଓ ପ୍ରକାଶର ଇତିହାସ । କବିତାର ଆଦ୍ୟରୂପ ନିତାନ୍ତ କରୁଣ, ତା ସମାଲୋଚକର ଆଖିରେ ପଡ଼େ ନାହିଁ । ପ୍ରତ୍ୟେକ ଉତ୍କୃଷ୍ଟ କବି ଏହାକୁ ପୁଷ୍ଟିଲ କରେ । ଘଷି ମାଜି ଶାଣଦେଇ ଲାବଣ୍ୟ ଆଣେ ।

ବାସ୍ତବିକ ଏଇ କବିତାଲେଖା କାହାଣୀ ବଡ଼ ଚିତ୍ତାକର୍ଷକ । ନିଜ କବିତା ବିଷୟରେ ସ୍ପେଣ୍ଡର୍ ଏହିପରି ଲେଖିଛନ୍ତି—କବିତା ଲେଖିବାବେଳେ ପଦ୍ମଲେ ମନକୁ ସ୍ଥିର କରିବା ମୋ ପକ୍ଷରେ କାର୍ତିକର ପାଠ । ମୋର ମନ ଅନିର୍ମଳ, ଇଚ୍ଛାଶକ୍ତି ଦୁର୍ବଳ, ଭାବର ଆଧିକ୍ୟରେ ମୁଁ ଆକ୍ରାନ୍ତ । ଗୋଟିଏ କବିତା ଲେଖିଲା-ବେଳେ ଦଶୋଟି କବିତାର ଭାବ ମନରେ ଆସେ । ସେସବୁ ଲେଖେ ନାହିଁ । ଲେଖା କବିତା ଭିତରୁ ମୋର ଶତକରା ଦଶ ପୂର୍ଣ୍ଣାଙ୍ଗ, ବାକୀ ସେମିତି ପଡ଼ିଥାଏ, ଅଧା, ପାଆ କମ୍ବା ଆରମ୍ଭ ମାତ୍ର ହୋଇ । ପୁଣି ମନେହେଲେ କେତେକ ପୂର୍ଣ୍ଣ କରେ, ନୋହିଲେ ନାହିଁ ।

ମୋର ବିଶ୍ୱାସ—Well begun is half done । ପ୍ରଥମ କେତେ ଧାଡ଼ି ଭଲ ହେଲେ ସେଇ ଆନନ୍ଦରେ, ଓ ତଦ୍‌ଜନିତ ବିଶ୍ୱାସରେ କବିତା ଭଲ ହୁଏ—ପ୍ରଥମାଂଶରେ ମନ ସହଜରେ ଧ୍ୟାନସ୍ଥ ହୁଏ ନାହିଁ । ତେଣୁ ବହୁ କଟାକଟି ହୁଏ । ପ୍ରଥମ ଲେଖାରେ କବିତାର କଙ୍କାଳମାତ୍ର ଗଢ଼ା ହୁଏ, ତହିଁରେ ରକ୍ତମାଂସ ଦେବା, ଲାବଣ୍ୟ ଖେଳେଇବା, ଜୀବନ୍ୟାସ ଦେବା ପରବର୍ତ୍ତୀ ଶିଳ୍ପକାର୍ଯ୍ୟ । ଦ୍ୱିତୀୟ ଥର ଲେଖାରେ ଏହା ପ୍ରାୟ ହୋଇଥାଏ । ତୃତୀୟ ଥର ଘଷିମାଜି ଶାଣ ଦେଇ ମୁଁ କବିତା ପ୍ରକାଶ କରେ ।

ରବୀନ୍ଦ୍ର କାବ୍ୟକବିତା ପଢ଼ିଲେ ଧାରଣା ହୁଏ, ଏଥିରେ କେଉଁଠି ହେଲେ ଅପୂର୍ଣ୍ଣତା ନାହିଁ । ପଙ୍‌କ୍ତି ପରେ ପଙ୍‌କ୍ତି ସୁସଜ୍ଜିତ, ସୁନ୍ଦର । ଶିଳ୍ପକର୍ମରେ ତ୍ରୁଟି-ବିଚ୍ୟୁତି ଘଟିନାହିଁ । ମନେହୁଏ, ପ୍ରାକୃତିକଭାବରେ ଏସବୁ ହୋଇଛି । ସାଧାରଣ କବି ଲେଖନ୍ତି, କାଟନ୍ତି, ତାଙ୍କ ଲେଖାରେ କୃତ୍ରିମ ପ୍ରଚେଷ୍ଟା ଅଧିକ । ବିଶ୍ୱକବି ଯାହା ଥରେ ଲେଖନ୍ତି, ବେଦର ଗାର, ଅବଚେତନ ମନରୁ ସେ ଲେଖା ବୋହି-ଆସେ, ଭାବ, ଛନ୍ଦ, ଭାଷା ତେଣୁ ଠିକ୍ ହୋଇ ଆସିଥାଏ । ପ୍ରକୃତରେ ଦେଖିଲେ ରବୀନ୍ଦ୍ରନାଥଙ୍କର ପ୍ରତିଭା ଯେତିକି, ଅଧ୍ୟବସାୟ ତତୋଽଧିକ । ପ୍ରତ୍ୟେକ ପଦ ନିର୍ମାଣରେ ତାଙ୍କର ସଚେତନ ପ୍ରଚେଷ୍ଟା ବିଦ୍ୟମାନ ଥାଏ । ଲେଖନୀର ଦୁର୍ବଳତା ଲୁଚେଇବା ଲାଗି ସେ ପ୍ରାଣପାତ ଉଦ୍ୟମ କରନ୍ତି । ନିଜ ସୃଷ୍ଟିକି ଖଣ୍ଡିତ, ବିକଳାଙ୍ଗ କରି ପାଠକ ହାତରେ ଦେବାରେ ତାଙ୍କର ଗଭୀର ଅତୃପ୍ତି, ତୀବ୍ର ଅସନ୍ତୋଷ । ପ୍ରତ୍ୟେକ ପଦର କାରୁକାର୍ଯ୍ୟ ସମଗ୍ର କବିତାରେ ମହାନ୍ ଆତ୍ମାର କାରିଗରି ଦେଖାଏ, ଶ୍ରେଷ୍ଠ ଶିଳ୍ପୀର ଏଇ ଲକ୍ଷଣ ।

ସ୍ୱତଃସ୍ଫୂର୍ତ୍ତି ବା ପ୍ରାକୃତିକ ଆବେଗରେ କୌଣସି କବିତା ଏକାଥରକେ ଲେଖି ହୋଇଯାଏ ନାହିଁ । ଅନୁଭବୀମାନେ ଏହା ଜାଣନ୍ତି । କଙ୍କାଳର ନିର୍ମାଣ

ପରେ କବିତାକୁ ଶାଣିତ ଓ ସୂକ୍ଷ୍ମ କଳାପୂର୍ଣ୍ଣ କରି ଗଢ଼ିବାକୁ ହୁଏ । ନୂଆ ପଦର ଯୋଗ, ପୁରୁଣା ପଦର ବିୟୋଗ ବି ଘଟିପାରେ । ରବୀନ୍ଦ୍ରଙ୍କ ପ୍ରଥମ ଲେଖା କଟାକଟିରେ ପରିପୂର୍ଣ୍ଣ, ଅପାଠ୍ୟ । ସେ ପ୍ରାୟ ତିନିଥର ଲେଖନ୍ତି, ମାଟିମୂର୍ତ୍ତି ଯେତେ ଭଲ କରିବାର କରିଥାନ୍ତି ।

ସେଲିଙ୍କର ଲେଖାର ପ୍ରବାହ କଙ୍ଗୋ ସ୍ରୋତ ପରି ଦ୍ରୁତଗାମୀ ମନେ ହୁଏ, ପାହାଡ଼ରୁ ପ୍ରପାତ ଗଡ଼ି ଆସୁଛି, ସେ ସାଇଁ ସାଇଁ ଲେଖିଯାନ୍ତି, ସତେ ବା ଭିତରୁ କିଏ ଡାକି ଯାଉଛି ! ସଚେତନ ପ୍ରୟାସକୁ ଅକବିତ୍ୱ କହିଲେ ବି ପ୍ରଥମଥର ଲିଖିତ କବିତାକୁ ସେଲିଙ୍କ ସମାଲୋଚକ ମନ କେବେ ଗ୍ରହଣ କରିନାହିଁ । ସେ ବାରମ୍ବାର ସଂଶୋଧନ କରନ୍ତି, ପୂର୍ଣ୍ଣ ସନ୍ତୋଷ ଆସିବାଯାଏ ଥରକୁ ଥର ଶବ୍ଦ, ପଦ ବା ପଦାଂଶ ବଦଳାଉଥାନ୍ତି ।

କବିବର ରାଧାନାଥ ଲେଖାକୁ ହଠାତ୍ ପ୍ରକାଶ କରିଦେବାର ବିରୋଧୀ । ତାଙ୍କ ମତରେ ରଚନା ବେଳେ କବିର ଆଖି ଗ୍ରସ୍ତାଚ୍ଛନ୍ନ ଥାଏ, ସେ ନିଜର ଦୋଷ ଦୁର୍ବଳତା ଦେଖିପାରେ ନାହିଁ । ଛ'ମାସ ପକାଇ ରଖିଲେ ତ୍ରୁଟି ସହଜରେ ଧରିପଡ଼େ, ସେ ସଂଶୋଧନ କରିବାକୁ ସମର୍ଥ ହୁଏ । ଏ ମତ ସମର୍ଥନଯୋଗ୍ୟ । ସ୍ୱପ୍ନ ଅପସରି ଗଲା ପରେ କବି ହୁଏ ନିଜ କବିତାର ସମାଲୋଚକ । ଯାହାଠାରେ ଏ ସମାଲୋଚନା ପ୍ରବୃତ୍ତି ନାହିଁ, ସେ କେବେ ଜଣେ ଶ୍ରେଷ୍ଠ କବି ହୋଇ ପାରିବ ନାହିଁ ।

ଆକାଶ ଯେପରି ମେଘରେ ଘୋରିହୁଅନ୍ତି, ରୌଦ୍ରରେ ଉଚ୍ଛ୍ୱସିତ, କେତେବେଳେ ବା ଚନ୍ଦ୍ରିକାରେ ଉତ୍ଫୁଲ୍ଲ, ମନୁଷ୍ୟର ମନ ବି ସେହିପରି । କେତେବେଳେ କି ଅବସ୍ଥା ଧାରଣ କରେ, ବୁଝିବା କଷ୍ଟକର । ସମୟ ଆସେ—ଭାବ ପରେ ଭାବ ମନରେ ଝଲସି ଉଠେ । କାହାକୁ ଲେଖିବ ? କାହାକୁ ଛାଡ଼ିବ ? ଅନ୍ୟ ବେଳେ ମନରୁ କବିତା ଦୋହନ କରିବା ଏକାବେଳକେ ଅସମ୍ଭବ ବୋଧହୁଏ । ନିତାନ୍ତ ରୁକ୍ଷ, ନୀରସ, ସେ ଯେପରିକି କେବେ କବିତା ଲେଖିନାହିଁ, ଏଇ ତାର ପ୍ରଥମ ପ୍ରୟାସ । ନିଜ ଶକ୍ତି ଉପରେ ଘୋର ଅବିଶ୍ୱାସ ଆସେ, ଶ୍ରେଷ୍ଠ କବି କାଳିଦାସ ମଧ୍ୟ ଏ ଅବିଶ୍ୱାସ ଆକ୍ରମଣରୁ ରକ୍ଷା ପାଇ ନାହାନ୍ତି । ସେ ଲେଖିଛନ୍ତି—

> "ମନ୍ଦ କବି ଯଶଃ ପ୍ରାର୍ଥୀ
> ଗମିଷ୍ୟାମ୍ୟୁପହାସ୍ୟତାମ୍ ।"

ମୋର ବିଶ୍ୱାସ, କାବ୍ୟ ଅଧ୍ୟୟନ ଏହି ସମୟରେ ଏକାନ୍ତ କାମ୍ୟ । ଭାବ ହିଁ ନିଦ୍ରିତ ଚିତ୍ତକୁ ଜାଗ୍ରତ କରେ, ସୁପ୍ତ କବିତ୍ୱର ଦ୍ୱାର ଉନ୍ମୋଚନ କରିଦିଏ ।

ସ୍ମୃତି କବିର ପ୍ରଧାନ ପୁଞ୍ଜି । ଜୀବନର ମୁଖ୍ୟ ଘଟଣାମାନ ତା ଅବଚେତନ ମନରେ ଦୃଢ଼ ଆସନ ଜମେଇ ଥାଏ, ସହଜରେ ତା ନିଭିଯାଏ ନାହିଁ, ଆମରଣ ସଜୀବ ରହିଥାଏ । କବି ସେଇ ସ୍ମୃତିରୁ ଲେଖେ । ସ୍ମୃତିକୋଷରୁ ବିଷୟ ନ ନେଲେ କବିତା ନୋହିବ, ନୁହେଁ । କିନ୍ତୁ ତା ଯେ କବିର ଭାବକୋଠି, ଏହା ଅସ୍ୱୀକାର କରି ହେବ ନାହିଁ ।

ନ'ବର୍ଷ ବୟସରେ ଦାନ୍ତେ ବିଏଟ୍ରିଶଙ୍କୁ ଦେଖିଥିଲେ । ସେ ଦିନେ ହେଲି ତାଙ୍କ କାବ୍ୟର ପ୍ରଧାନ ନାୟିକା । ତାଙ୍କୁ କେନ୍ଦ୍ର କରି ସେ ରଚନା କଲେ 'Divine Comedy' । ଓ୍ୱାର୍ଡ଼ସ୍‌ୱାର୍ଥ ଓ ନନ୍ଦକିଶୋରଙ୍କ ଅଧିକାଂଶ କବିତା ସ୍ମୃତିମୂଳକ । ତହିଁରୁ ଆମେ କବିଙ୍କ ବାଲ୍ୟ ଓ କୈଶୋର ଅଭିଜ୍ଞତାର ରୋମାଞ୍ଚକର ସ୍ପର୍ଶ ପାଉ । ମୋ 'କଙ୍କାଳର ଲୁହ' ବି କୈଶୋର କାଳର ଘଟଣା ଉପରେ ପ୍ରତିଷ୍ଠିତ ।

କବି ହେବା କାମନା ବହୁ ଲୋକଙ୍କର ଅଛି, କବିଯଶ ଲୋଭନୀୟ, ମରଣଶୀଳର ଅମରତ୍ୱ ଆକାଂକ୍ଷା ନିତାନ୍ତ ସ୍ୱାଭାବିକ ମଧ୍ୟ । ତେଣୁ ଆଦ୍ୟ ତାରୁଣ୍ୟରେ ବହୁ କବି ଦେଖା ଦେଇଥାନ୍ତି । ଟି ଏସ୍. ଏଲିଏଟ୍‌ଙ୍କ ଭାଷାରେ ଏହି ଆକାଂକ୍ଷା ଗୋଟିଏ ଦିଗରୁ ବଡ଼ ବିପଦ୍‌ଜନକ । ଯେ ହେତୁ ଏହା ତଳେ ଅନ୍ୟ ଦ୍ୱାରା ପ୍ରଶଂସିତ ହେବା ବା ଆତ୍ମପ୍ରଶଂସାରେ ମାତାଲ ହେବାର ତୀବ୍ର କାମନା ଲୁକ୍‌କାୟିତ ଥାଏ । ତା ଅପେକ୍ଷା ଭଲ କବିତା ଲେଖିବା ପିପାସା ବରଂ କାମ୍ୟତର ।

ପ୍ରଶଂସା ଭାଗ୍ୟର ମହକ । କେହି ଖୋଜି ତା ପାଏ ନାହିଁ । ସେ ଆପେ ଆପେ ଆସେ । ତେଣୁ 'କର୍ମଣ୍ୟେବାଧିକାରସ୍ତେ' ଆଦର୍ଶରେ କାବ୍ୟ ନିର୍ମାଣରେ ସମସ୍ତ ଶକ୍ତି ନିୟୋଜିତ କରିବା କର୍ତ୍ତବ୍ୟ । କିଏ ସପ୍ତସ୍ୱର୍ଗକୁ ଟେକିଦେଲା, କିଏ ଅନ୍ଧ ନରକକୁ ପେଲିଦେଲା, ଏଥିରେ ବିଚଳିତ ହେଲେ କବି ଲକ୍ଷ୍ୟଭ୍ରଷ୍ଟ ହୁଏ । ବୁଝିବା ଉଚିତ ଯେ ନିର୍ମଳ ସାଧନା କେବେ ବ୍ୟର୍ଥ ହୁଏ ନାହିଁ ।

କେତେ ସହଜରେ ପାଠକ ପତ୍ରିକାରେ କବିତାକୁ ଆଡ଼େଇ ଦେଇଯାଏ । କିଏ କହେ ଅପ୍ରାକୃତିକ, କିଏ କହେ ଦୁର୍ବୋଧ, କିଏ କହେ ପରମ୍ପରା ନାହିଁ, କିଏ କହେ ନାହିଁ ପ୍ରଗତି । କବିର ଶ୍ରମ ପାଠକ ବା ଶ୍ରୋତା ବୁଝିପାରେ ନାହିଁ । ବୁଝେ କେବଳ କବି, ପ୍ରାଚୀନ କବିମାନେ ଏକଥା ଲେଖିଯାଇଛନ୍ତି । ଆଧୁନିକ ଯୁଗର ଜଣେ ଶ୍ରେଷ୍ଠ କବି ସ୍ପେଣ୍ଡର୍ ଲେଖିଛନ୍ତି—

"ମୁଁ ଏଇ ହେତୁରୁ କବିତା ଲେଖିବାକୁ ଡରେ । କବିତା ଗୋଟିଏ ଆପଦପୂର୍ଣ୍ଣ ଭ୍ରମଣ, କଳ୍ପନାକୁ ଠୁଳ କରିବାର ଏକ ଯନ୍ତ୍ରଣାଦାୟକ ଆସ୍ୱାଦ । ଶବ୍ଦ ମାଧ୍ୟମରେ ପ୍ରକାଶ ବଡ଼ କଷ୍ଟକର । ନିର୍ମଳଭାବରେ କିଛି କହିବାକୁ ବହୁଦିନ ଚେଷ୍ଟାକରି ଦେଖିବ—ଯାହା କହୁଛ ଚିତ୍ତାକର୍ଷକ ହୋଇନାହିଁ । ମୋଟଉପରେ ନାନାଭାବରେ ସୀମିତ ବ୍ୟକ୍ତିତ୍ୱ ଉପରେ ବଡ଼ ଚାପ ପଡ଼େ । ଈଶ୍ୱରଙ୍କ ସହିତ କବିଙ୍କୁ ଜାଣି ସଂଗ୍ରାମ କରିବାକୁ ହୁଏ ।"

କବିତାରେ ଆରମ୍ଭ କରିଥାନ୍ତି ଅନେକ, ଶେଷ କରନ୍ତି କେହି କ୍ୱଚିତ୍ । କିଏ ଛାଡ଼ି ଦେଇ ଉପନ୍ୟାସ ବା କ୍ଷୁଦ୍ର ଗଳ୍ପ ଲେଖେ । କିଏ ହୁଏ ସମାଲୋଚକ । କିଏ ଅଫିସ୍ ବା ଗୃହ ଜଞ୍ଜାଳରେ ବୁଡ଼ି ସାହିତ୍ୟକୁ ବିସର୍ଜନ ଦିଏ । ଏଇ ଆଦ୍ୟ ଲେଖକଙ୍କ ମଧ୍ୟରୁ ତାରୁଣ୍ୟରେ କବି, ବାର୍ଦ୍ଧକ୍ୟରେ କବି ହୋଇ ରହନ୍ତି ଶତକରା ଜଣେ । ଯଶର କିଛି ପୁଞ୍ଜି ହୋଇଗଲେ ଅଧିକାଂଶ ଭ୍ରଷ୍ଟ ହୋଇଯାନ୍ତି । ଭ୍ରଷ୍ଟ କବି ମୃତ କବି । ଏବେ ଜୀବନ୍ତ ଥୁଣ୍ଟା ଗଛ । ଅଧିକାଂଶ କବିଙ୍କର ଆୟୁ ଏ ପ୍ରଦେଶରେ କୋଡ଼ିଏ ବର୍ଷରୁ ଅଧିକ ନୁହେଁ । ଅଧିକାଂଶ ଆଦ୍ୟ ବା ମଧ୍ୟ ତାରୁଣ୍ୟର କବିତା । ପୁରୁଖା ପ୍ରବୀଣ ଲେଖନୀର ସ୍ପର୍ଶ ସେଥିରେ କ୍ୱଚିତ୍ ମିଳେ ।

କବିତ୍ୱ ଶକ୍ତିକୁ ଦୁଃସମୟରେ ଲାଳନ କରିବା ଦୁଷ୍କର । ସ୍ନେହାଦର ନ ପାଇଲେ ସେ ମରିଯାଏ । ଈର୍ଷା, ଅହଙ୍କାର, ଦାମ୍ଭିକତା, ଲୋଭ ଆଦି ଯାବତୀୟ କ୍ଷୁଦ୍ରତାରେ ସେ ମରେ । ହୃଦୟ ସଂକୀର୍ଣ୍ଣ ହେଲେ କବିତାର ନିଶ୍ଚିତ ମୃତ୍ୟୁ ଘଟେ । ନାନା ପ୍ରଲୋଭନ ମଧ୍ୟରେ ଅନ୍ତରକୁ ନିର୍ମଳ ରଖିବା ସହଜ ନୁହେଁ । ଅଶୁଦ୍ଧ ଚିତ୍ତ ପଦ୍ମବାସିନୀ ସରସ୍ୱତୀଙ୍କର ଯୋଗ୍ୟ ଆସନ ନୁହେଁ ।

ଅବଶ୍ୟ ପ୍ରୌଢ଼ତା ବା ବାର୍ଦ୍ଧକ୍ୟରେ କବିତ୍ୱର ହ୍ରାସ ଘଟେ । ପ୍ରଗତି ସ୍ରୋତ ସହିତ କବି ଆତ୍ମା ସମ୍ପର୍କ ହରାଏ । ସେ ପଛରେ ପଡ଼ିଯାଏ, ତା କବିତାକୁ ପ୍ରଗତିଶୀଳ ପାଠକ ଆଡ଼େଇ ଦେଇଯାନ୍ତି । ଏହାର ବିପରୀତ ବି ସମ୍ଭବ ହୋଇ-ପାରେ । ଶରୀରରେ ବୃଦ୍ଧ ହୋଇ କବି ମନକୁ ତରୁଣ ରଖିପାରେ, ସବୁ କବିର ସାଧନା ଉପରେ ନିର୍ଭର କରେ । ରବୀନ୍ଦ୍ରନାଥ ଆମରଣ ଏଇ ନିଷ୍ଠା ରଖିଥିଲେ, ପ୍ରଗତି ସଙ୍ଗେ ସମତାଳ ଦେଇ ଗତି କରି ପାରିଥିଲେ ।

କବିତା ଉପଭୋଗ କରନ୍ତି ଅନେକ, ଯେପରି ମଧୁଚକ୍ରର ମଧୁ । କିନ୍ତୁ ତାର ସୃଷ୍ଟି ମୂଳରେ ଯେଉଁ ବେଦନା ନିହିତ, ତାହା କେତେଜଣଙ୍କ ଅନ୍ତରରେ ବାଜେ ? କିଏ ସମ୍ଭ୍ରମରେ ଦିଏ କବିଙ୍କି ନୀରବ ଅବସର ? କିଏ ଶୋଧ କରେ ତାର

ରସର ଋଣ ? କବିର ମର୍ମବାଣୀ ବୁଝିବା ଲାଗି କେତେଜଣଙ୍କର ଧୈର୍ଯ୍ୟ ଥାଏ ? କବିତାର ମୂଳ ଉତ୍ସ ବୁଝିବା ଲାଗି କବିଙ୍କ ଜୀବନକାଳ ମଧ୍ୟରେ କିଏ ବା ଚେଷ୍ଟା କରେ ? ସମାଲୋଚକ ଲେଖେ ନିଜ ମତ, ପଢ଼େନାହିଁ କବିର ମନ, ଶୁଣିପାରେ ନାହିଁ ତା ଅନ୍ତରର ପହ୍ଲ ଗୁଞ୍ଜନ । କହିପାରେ ନାହିଁ କବିତାର ନିମବିକଶିତ କାହାଣୀ । ସ୍ପର୍ଶ କରିପାରେ ନାହିଁ କବି ମନର ବାତାବରଣ, ଯହିଁରେ ପ୍ରକୃତି ମନୁଷ୍ୟ ବା ଭଗବାନ୍ ବିଷୟକ ଧାରଣା ସୁବାସ ପରି ଭାସୁଥାଏ, ନିଏ ଆକ୍ଷରିକ ରୂପ । କବି ଅନ୍ତସ୍ଥଳର ପ୍ରବାହୋନ୍ମୁଖ ଉତ୍ସର ଅନୁସନ୍ଧାନ ପ୍ରତ୍ୟେକ ସମାଲୋଚକର କର୍ତ୍ତବ୍ୟ ।



# ପଲ୍ଲୀ କବିତା ଓ କବି ଗୋଦାବରୀଶ

ଚାଲିଚଳଣରେ, ଆଧୁନିକ ଆଦବ୍ କାଇଦାରେ, ଇଂରେଜୀ ଭାଷାର ସ୍ପଷ୍ଟ ଉଚ୍ଚାରଣରେ, ଶୃଙ୍ଖଳା ଓ ନିୟମାନୁବର୍ତ୍ତିତାରେ, ରୂପବର୍ଣ୍ଣ ଛଟାରେ ଗୋଦାବରୀଶ ସାହେବ । ଯଥାଯଥ ତଥ୍ୟ ପ୍ରକାଶରେ, ବୈଜ୍ଞାନିକ ରୁଚି ଓ ସୌଜନ୍ୟଶୁଚିତାରେ ସେ ଏ ଦେଶରେ ଆଧୁନିକ ସଭ୍ୟତାର ଶ୍ରେଷ୍ଠ ପ୍ରତୀକ । ଆଇନ୍ ଶାସ୍ତ୍ରରେ ଗଭୀର ଅଭିନିବେଶ, ଶାସନ ପରିଚାଳନାରେ ଦକ୍ଷତା, ବ୍ୟବସ୍ଥାସଭାର ବାକ୍‌ପଟୁତା, ଗଣତନ୍ତ୍ରର ସମ୍ମାନ ରକ୍ଷାରେ ରାଜନୀତିକ ତତ୍ପରତା; କୂଟନୀତିକ ମନ୍ତ୍ରଣା ଓ ମନନର ପ୍ରୀତିପ୍ରଦ ଗାମ୍ଭୀର୍ଯ୍ୟ ଦେଖିଲେ କିଏ ବିଶ୍ୱାସ କରିବ, ଗୋଦାବରୀଶ କବି, ପୁଣି ଗାଉଁଲି କବି ? ଶିକ୍ଷାବିତ୍, ସଂସ୍କାରକ, ବିପ୍ଳବୀ—ସେହି ପୁଣି ଜନସାଧାରଣଙ୍କ ସୁଖଦୁଃଖରେ ଆତ୍ମହରା ଲୋକକବି ?

ସାହେବୀ ଢଙ୍ଗରେ ଶାଣିତ ଶିଷ୍ଟାଚାର ଅତିକ୍ରମ କରି ଭିତରେ ପ୍ରବେଶ କଲେ ଆବିଷ୍କୃତ ହୁଏ ଗୋଟିଏ ମନ—ଜାତୀୟତାରେ ଭାରତୀୟ, ଉଦାରତାରେ ବିଶ୍ୱଜନୀନ, କିନ୍ତୁ ଉପାଦାନରେ ଖାଣ୍ଟି ଓଡ଼ିଆ । ରାଜନୀତି ବା କୂଟନୀତିରେ ନୁହେଁ, ସେ ମନ ତାର ଶ୍ରେଷ୍ଠ ଅଭିବ୍ୟକ୍ତି ଦେଇଛି ଲୋକକବିତାରେ । ତାଙ୍କ ପ୍ରାଣର ପରିଧି ଦୂରରୁ ଦୂରକୁ ପ୍ରସାରିତ, କଳନାରେ ଆଣି ହୁଏ ନାହିଁ । କିନ୍ତୁ ତାର କେନ୍ଦ୍ରବିନ୍ଦୁ ସହଜରେ ଧରାପଡ଼େ । ଏହା ଗ୍ରାମରେ, ଭଲେରି, ଯୋଲରି, ମାମୁଁ-ଭଣଜା ବା ଘଣ୍ଟଶିଳାରେ; ସଯୋଇ ବା ଶାଳଆରେ, କାଳଜାଇ ହଜିଥିବା ଶୋକୋଚ୍ଛ୍ୱସିତ ତରଙ୍ଗରେ ବା ନିଷ୍ପେଷଣରେ ନିଭି ଯାଉଥିବା ପଲ୍ଲୀକୁଟୀରର ଭଗ୍ନାବଶେଷରେ । ଗୋଦାବରୀଶ ସଭ୍ୟତାର ବିକାଶ ଚକ୍ଷୁରେ ସହରକୁ ଦେଖିଛନ୍ତି, ତହିଁର ଝଲସ ତାଙ୍କୁ ବିସ୍ମିତ କରିନାହିଁ, କିନ୍ତୁ କବିଚକ୍ଷୁରେ ଦେଖିଛନ୍ତି ଗ୍ରାମକୁ । ତାର ଅଗଣିତ ଦୃଶ୍ୟର ବୈଚିତ୍ର୍ୟ, ରହସ୍ୟର କୁହୁକ ମାଧୁରୀ ତାଙ୍କୁ ବିମୋହିତ କରିଛି । ସେ ସହରକୁ ମନରେ, ଗ୍ରାମକୁ ଅନୁଭବରେ ପାଇଛନ୍ତି । ସେ ସହରରେ ମନୀଷୀ, ଗ୍ରାମରେ କବି । ଆପାତ ବିରୁଦ୍ଧ ବୋଧ ହେଲେହେଁ ଏକ ବ୍ୟକ୍ତିତ୍ୱର ଦୁଇ ଅବତାର ପରସ୍ପରର ପରିପୂରକ ହୋଇଅଛି ।

ଊନବିଂଶ ଶତାବ୍ଦୀର ଶେଷ ପାଦରେ ଲୋକଜୀବନ ଓ ଲୋକସଂସ୍କୃତି ପ୍ରତି ବିଶେଷଭାବେ ଭାରତୀୟ ଦୃଷ୍ଟି ଆକୃଷ୍ଟ ହେଲା । ଏହା 'ଗଣ' ସାହିତ୍ୟ ସଂଗ୍ରହ ଆନ୍ଦୋଳନ ବା ବିଦଗ୍ଧ ଶୈଳୀ ପରିହାର କରି 'ଗଣ' ରୀତିରେ ଲେଖା ଆନ୍ଦୋଳନ । ଜନତାର ନିମ୍ନତମ ସ୍ତର ପର୍ଯ୍ୟନ୍ତ ସାହିତ୍ୟର ବିସ୍ତୃତି; ସାହିତ୍ୟ

କେବଳ ସୁଧୀଜନ ସେବ୍ୟ ନୁହେଁ, ସର୍ବଜନ ଲଭ୍ୟ । ଲିଖିତ ସାହିତ୍ୟ ପରି ମୌଖିକ ସାହିତ୍ୟ ଉପାଦେୟ । ଏହି ଆନ୍ଦୋଳନର ଢେଉ ବାଜିଲା ଓଡ଼ିଶାରେ । ଫକୀରମୋହନ ପଲ୍ଲୀ ପରିବେଶ ଓ ଘଟଣାନିବହକୁ ଉପଜୀବ୍ୟ କରି କେତେକ କ୍ଷୁଦ୍ରଗଳ୍ପ ରଚନା କଲେ, ନନ୍ଦକିଶୋର ପଲ୍ଲୀର ଚଳଣି ସମ୍ପର୍କରେ ଇଂରେଜୀରେ ପ୍ରବନ୍ଧ ଲେଖି ପୁରସ୍କୃତ ହେଲେ, ପରେ ତାକୁ କବିତାପୁଞ୍ଜରେ ରୂପାନ୍ତରିତ କରି 'ପଲ୍ଲୀଚିତ୍ର' ନାମରେ ପ୍ରକାଶ କଲେ । ଏ ଦିଗରେ ଶ୍ରେଷ୍ଠ କୃତି 'ଉତ୍କଳ କାହାଣୀ' । ଏହା କେବଳ ସଙ୍କଳନ ନୁହେଁ, ନୂତନ ସର୍ଜନା । ଏହା ଅବଧାରୀ ରୀତି ବିରୁଦ୍ଧରେ ଏକ ବିପ୍ଲବ, ପଲ୍ଲୀ ଓ ନଗରର ବ୍ୟବଧାନ ଦୂର କରିବାରେ ଏକ ବଳିଷ୍ଠ ମାଇଲ ଖୁଣ୍ଟ ।

ନନ୍ଦକିଶୋର ଓ ଗୋଦାବରୀଶ ଏହି ଆନ୍ଦୋଳନରୁ ଆଲୋକ ସଂଗ୍ରହ କରିଥିଲେ, ଯାହା ସାରାଜୀବନ ଉଭୟଙ୍କ ସାହିତ୍ୟିକ ପଥ ଉଦ୍ଦୀପ୍ତ ରଖିଥିଲା । ନବ ଦୀକ୍ଷାକୁ ଉଭୟ ଗଦ୍ୟ ଓ ପଦ୍ୟରେ ପରୀକ୍ଷା କରିଥିଲେ । ରାଜନୀତିର ବଙ୍କାଢଙ୍କା ବାଟରେ ବୁଲୁବୁଲୁ ଗୋଦାବରୀଶ ପଛରେ ପଡ଼ିଗଲେ । ନନ୍ଦକିଶୋର ହେଲେ 'ପଲ୍ଲୀକବି' । ନନ୍ଦକିଶୋର ପଲ୍ଲୀଗୀତିର ଗୁଣଚିହ୍ନାରି ଗ୍ରାହକ, ଜଣେ ସଂଗ୍ରାହକ । ମାନସମ୍ଭ୍ରମହୀନ ପରିବେଶ ଓ ଦେଶର ଦାରିଦ୍ର୍ୟରେ ସଂକୋଚଶୀଳ ଲୋକଗୀତିକୁ ସେ ପହିଲେ ସାହିତ୍ୟମଞ୍ଚକୁ ଅଭ୍ୟର୍ଥନା କରି ଆଣିଲେ, ଆଦର ଗୌରବ କଲେ, ଚିହ୍ନେଇଲେ ମନେ ରଖିବା ଭଳି ରୂପ ଆଉ ରସରେ । ଏଥିରେ ଗର୍ବିତ ହେଲା ଲୋକଗୀତ, ଗୌରବାନ୍ୱିତ ହେଲା ତାଙ୍କର କବିତା । କେତେ ନୂଆକୁ ଧରି ପୁରୁଣା ହୋଇଗଲେ, କିନ୍ତୁ ସେ ପୁରୁଣାକୁ ଧରି ନୂଆ ପାଇଲେ, ସ୍ୱତନ୍ତ୍ର ବିଭାବର ପ୍ରବର୍ତ୍ତକ କବି ରୂପେ ପରିଚିତ ହେଲେ । ଏତେ କରି ବା ହୋଇ ସେ ଗୋଟାପୁରା ପଲ୍ଲୀକବି ହୋଇପାରିଲେ ନାହିଁ । ତାଙ୍କ କବିତାରୁ ଅଧେ ସହରର, ଅଧେ ପଲ୍ଲୀର, ଅଧେ ସୁଧୀଙ୍କର, ଅଧେ ସାଧାରଣଙ୍କର । କିନ୍ତୁ ଗୋଦାବରୀଶ ସୁଧୀ ହୋଇ ଖାଲି ସୁଧୀଙ୍କର ହୋଇନାହାନ୍ତି, ଲୋକଙ୍କର ହୋଇ ସୁଧୀଙ୍କ ଶ୍ରଦ୍ଧାରୁ ବଞ୍ଚିତ ହୋଇ ନାହାନ୍ତି । ନନ୍ଦକିଶୋରଙ୍କ ପରି ସେ ଲୋକକବିତାକୁ ଆତ୍ମସାତ୍ କରିନାହାନ୍ତି, ଲୋକକବିଙ୍କ ଭାବରେ ଭାବିତ ହୋଇଛନ୍ତି ମାତ୍ର । ଲୋକଙ୍କ କଥା କହିଲା ରୀତି ତାଙ୍କ ଲେଖାର ରୀତି । ତାଙ୍କ କବିତାର ଧାରା ଗୋଟିଏ । ଏହା ଲୋକଗୀତିର ଧାରା । ହୃଦୟର ଉଚ୍ଛ୍ୱାସରୁ ଏହାର ଜନ୍ମ । ମନନରୁ ଯେଉଁ କେତୋଟି କବିତା ରାଧାନାଥୀ ଶୈଳୀରେ ରୂପଲାଭ କରିଛି, ତା ଭାଷା ସାଧୁ, ଦର୍ଶନ ଓ ଦୃଷ୍ଟିଭଙ୍ଗୀରେ ହୁଏତ ଆଧୁନିକ । ହେଲେହେଁ ତହିଁରେ ଅନ୍ତଃସଲିଳା ଫଲ୍‌ଗୁ ପରି ପଲ୍ଲୀର ଧାରା ପ୍ରବାହିତ ।

'ଆଲେଖିକା' ଗାଥାକବିତାର ସଙ୍କଳନ । ରଚିତ ହେଲେହେଁ ଏହା ଲୋକଗାଥାଗୀତିକାର ପାରମ୍ପରିକ ରୂପଭଙ୍ଗୀ ଅନୁସରଣ କରିଅଛି । ଯୋଗୀ, ଭିକାରି ଏହାକୁ ବୀଣା, ଖଞ୍ଜଣି ବଜାଇ ଗାଉ ନାହାନ୍ତି, ମାନେ ଏହାର ଯଥେଷ୍ଟ ପ୍ରଚୁର ହୋଇନାହିଁ; ଲୋକଗାଥା ଗୀତିକା ପରି ଏହାର ଉପଜୀବ୍ୟ କିମ୍ବଦନ୍ତୀ; ଜାତୀୟ ଚେତନା, ପ୍ରସ୍ଥାପକଳ୍ପ ଶୃଙ୍ଖଳା, ବର୍ଣ୍ଣନା ବହୁଳତା, କ୍ୱଚିତ୍ ଗ୍ରିବ ପ୍ରକାଶର ଆଭିଜାତ୍ୟ ବା ଆଡ଼ମ୍ବର ମୌଖିକ ଗୀତରୁ ଏହାକୁ କିଞ୍ଚିତ୍ ଭିନ୍ନ କଲେ ହେଁ ସରଳ ଭଙ୍ଗୀ, ସାବଲୀଳ ଉଚ୍ଛ୍ୱାସ, ପ୍ରାକୃତିକତା, ପୁନରୁକ୍ତି ଓ ଲୋକମୁଖର ଭାଷା ବ୍ୟବହାର ଯୋଗୁଁ ଏହା ପ୍ରାୟ ସେହି ଶ୍ରେଣୀଭୁକ୍ତ ହୋଇଅଛି । ଲୋକପ୍ରିୟ 'ଗୋବିନ୍ଦଚନ୍ଦ୍ର' ଗୀତ ଶୁଣି ସେହି ଗ୍ରଗରେ ଗୁଡ଼ିଏ ଗାଥାଗୀତିକା ଲେଖା ସଂକଳ୍ପ କରିବା କବିଙ୍କ ପକ୍ଷେ ଆଦୌ ବିଚିତ୍ର ନୁହେଁ । 'ବଙ୍ଗଳାଶ୍ରୀ' ଗ୍ରଗ ସୁଧୀ ସାହିତ୍ୟରେ ସୁପ୍ରତିଷ୍ଠିତ ହେଲେ ହେଁ ଯୋଗୀଙ୍କ ଗୀତ ବୋଲିବା ଭଙ୍ଗୀ ତାଙ୍କୁ ମୁଗ୍ଧ କରିଥିବ । ଦ୍ୱିତୀୟ ପାଦରେ ଗୋଟିଏ 'ଲୋ' ଲଗାଇ ଗୋଦାବରୀଶ ଛନ୍ଦର ଆଭିମୁଖ୍ୟ ଯେପରି ବଦଳାଇଲେ, ପଲ୍ଲୀଗୀତର ସଙ୍ଗୀତଧାରା ସ୍ୱକବିତାରେ ବୁହାଇ ଏହାକୁ ସେହିପରି ଲୋକମୁଖୀ କରିଦେଲେ ।

ଗୋଦାବରୀଶଙ୍କ କବିତାରେ ମୁଖ୍ୟତଃ ଦୁଇଟି ବିଭବ । ଗୋଟିଏ ଗୃହ ବା ପରିବାର, ଅନ୍ୟଟି ଗ୍ରାମ ବା ସଂସାର । ଗୃହ, ପରିବାର ବିଷୟକ ବହୁଗୀତ ଲୋକମୁଖରେ ପ୍ରଚଳିତ । 'କାନ୍ଦଣା ଗୀତ'ରୁ ଗୋଟିଏ ଦୃଷ୍ଟାନ୍ତ ଦିଆଗଲା—

ଦୂବ ବଢ଼ୁଥିଲା କାକର ଖାଇ ବୋଉ ଲୋ
ମୁଁ ତ ବଢ଼ୁଥିଲି ତୋ ସ୍ନେହ ପାଇ " "
ଦୂବକୁ କାକର ସହିଲା ନାହିଁ " "
ମୋ ଅଳିଅଳ ତ ରହିଲା ନାହିଁ " "
ବାପ ବୋଲେ ଝିଅ ମୋର ବାର ବରଷର
ବୋଉ ବୋଲେ ଝିଅ ମୋର କୋଳକୁ ସୁନ୍ଦର
ଭାଇ ବୋଲେ ଭଉଣୀ ମୋ ପାଖେ ପାଖେ ଥାଉ
ଭାଉଜ ଡ଼ାହାଣୀ ବୋଲେ ଦୂର ଦେଶେ ଯାଉ
ଭାଉଜ ନୁହଇଁ ସେହି ପର ଘର ଝିଅ
ଟିକିଏ କାନ୍ଦଇ ଟିକେ ପୋଛି ଦିଏ ଲୁହ ।

ଆଧୁନିକ ଯୁଗରେ ଗୃହ, ପରିବାରକୁ ଅବଲମ୍ବନ କରି ଭକ୍ତକବି ମଧୁସୂଦନ ପଦ୍ୟଲେ କବିତା ରଚନା କଲେ । ତାଙ୍କ 'ମୋ ଜନନୀ' କବିତା ଏହାର ପ୍ରକୃଷ୍ଟ

ଦୃଷ୍ଟାନ୍ତ । ଶୈଶବରୁ ଜନନୀ ହରାଇ ସେ କିପରି ଶୋକୋଚ୍ଛ୍ୱସିତ ହୋଇଥିଲେ, ତାହା ଏଥିରେ ବ୍ୟକ୍ତ । ମାତୃହୀନର କରୁଣ ବେଦନା ଏଠି ବ୍ୟକ୍ତିଗତ । କବି ଦୁନିଆର ସୁଖଦୁଃଖକୁ ବ୍ୟକ୍ତିଗତ କରି ପରିବେଷଣ କରେ । ବ୍ୟକ୍ତିଗତ ସୁଖଦୁଃଖକୁ ସାର୍ବଜନୀନ କରିବାର ଶକ୍ତି ଓ ଅଧିକାର ମଧ୍ୟ ତାର ଅଛି ।

'ଅତି ମଳିନ ମୋ ଅଙ୍ଗ ଧୂଳି ଧୂସରିତ ହେ ପୋଛୁଣ ଶ୍ରୀକରେ,
ମା' ମୋର ଆନନ୍ଦମୟୀ ମଧୁର ବଚନ କହି
ଆନନ୍ଦେ ଧରନ୍ତି ମୋତେ ଅମୃତ ବକ୍ଷରେ ହେ ଅମୃତ ବକ୍ଷରେ ।
ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଖ ଜିଣି ହେ ଅତି ସୁଖମୟ
କାହିଁ ପଟାନ୍ତର ତାର, ସ୍ୱର୍ଗ ବିଭବ କି ଛାର,
କାହିଁ ଆଉ ସନ୍ତାନର ସେପରି ଆଶ୍ରୟ ହେ ସେପରି ଆଶ୍ରୟ ?'

ପୃ ୨୩, ଗୁଚ୍ଛମାଳା ।

'ପାଞ୍ଚବର୍ଷ ଦିନୁଁ ମୁହିଁ ଅଟଇ ଅନାଥ ହେ ହରାଇ ଜନନୀ' ।

ଏ ଦୁଃଖ ପ୍ରତି ମାତୃହୀନର ବକ୍ଷରେ କରୁଣତମ ମୂର୍ଚ୍ଛନାରେ ବାଜେ । କିନ୍ତୁ ବ୍ୟକ୍ତିଗତ ଦୁଃଖ ପ୍ରକାଶକୁ ବସ୍ତୁନିଷ୍ଠ ରାଓ କବି ଶିଶୁସୁଲଭ ଓ ଅବାନ୍ତର ମନେ କରି ଶିଶୁ କବିତା ଶ୍ରେଣୀର ଅନ୍ତର୍ଭୁକ୍ତ କରି ଅଛନ୍ତି । ଏହା ଗୀତିକବିତା ଶ୍ରେଣୀର ଅନ୍ତର୍ଭୁକ୍ତ ହେବାରେ କୌଣସି ଅନ୍ତରାୟ ନଥିଲା ।

କିନ୍ତୁ ଗୋଦାବରୀଶଙ୍କର ସଙ୍କୋଚ ନାହିଁ, ଗମ୍ଭୀରତମ ବସ୍ତୁନିଷ୍ଠ କବିତା ପରି ସେ ବ୍ୟକ୍ତିଗତ ଶୋକୋଚ୍ଛ୍ୱାସ ପ୍ରକାଶ କରି ଅଛନ୍ତି ।

'କେଡ଼େ ତୁରା ବିତିଗଲା ସତର ବରଷ
ଆଜି ବୋଉ ପାଳୁଛୁ ମୁଁ ତୋ ଶ୍ରାଦ୍ଧ ଦିବସ
ଦୁଇଦିନ କଟାଇଛୁ ଖାଇ ପୋଡ଼ା ତାଳ
ଆଜି କି ପାଳିଛି ଶିବ କାଳିର କପାଳ ?'

ବିଷୟ ବ୍ୟକ୍ତିଗତ ବା ବିଶ୍ୱଗତ ହେଉ, କବିର ମହତ୍ତ୍ୱ ନୂଆ ଅନୁଭୂତି ପ୍ରକାଶରେ, ତାର ଦୃଷ୍ଟିଭଙ୍ଗୀରେ, ଏହା ଗୋଦାବରୀଶଙ୍କର ବିଶ୍ୱାସ ଥିଲା ।

'ଆହା ମୋର ଗଣ୍ଠିଧନ', 'ବୁଜିଦେଲୁ ଆଖି' କବିତା ଗ୍ରାମ ବା ସଂସାର ଶ୍ରେଣୀର ଅନ୍ତର୍ଗତ । ପରିବାର ପ୍ରତି ସମବେଦନା ଏଥିରେ ବିସ୍ତୃତତର ହୋଇ-ଅଛି । ଗୃହର ପରିଧିକୁ ବିଶ୍ୱମୟ, ସ୍ନେହ ସମବେଦନାକୁ ଅପରିସୀମ କରିବାରେ କବି ଲେଖନୀ ସାର୍ଥକ ହୋଇଅଛି—

'ଉଡ଼ି ଯାଇଅଛ ନଡ଼ା ବତା ନାହିଁ ଚାଳେ
ଏ ଯେ ବର୍ଷକର ଘର ଗ୍ରାମର ବାହାରେ
ପାଞ୍ଚ ବର୍ଷ ଅବା କାନ୍ଥେ ଲୁଣ୍ଡା ନାହିଁ ବାକି
ଅଗଣା ପାହାଚ ପିଣ୍ଡା ପଡ଼ିଅଛି ଭାଜି
ଜନପ୍ରାଣୀ କେବେ ରହିପାରନ୍ତି ସେ ଘରେ ?
ଗାଆଁ ପିଲେ ନ ମାଡ଼ନ୍ତି ପାଖ ଲୋକ ଡରେ ?'

ଯେଉଁ ଗୃହ କବିଙ୍କ ମନର ଆବାସ, ସେ କ'ଣ କବିଙ୍କ ପ୍ରକୃତ ଗୃହ ନୁହେଁ ? ଏ ଗୃହ ମଧ୍ୟରେ ଯେଉଁ ପ୍ରାଣୀ ଅଛି, ସେ କ'ଣ କବିଙ୍କର ପରମ ଆତ୍ମୀୟ ନୁହେଁ ? ଯାହାର କେହି ଆତ୍ମୀୟ ନାହିଁ, ତାର ଆତ୍ମୀୟ କବି । ଯାହା ଲାଗି କାହାର ଆଖିରେ ଲୁହ ନାହିଁ, କବିର ଲେଖନୀ ତାହାରି ଲାଗି କାନ୍ଦେ—କାନ୍ଦେ ଅଶ୍ରୁଠାରୁ ଘନତର ମସୀବିନ୍ଦୁ ଗଡ଼ାଇ ।

ତେଣୁ କବି ଦରିଦ୍ର କାଣିଆ ଲାଗି ସ୍ୱର୍ଗବାସର ବ୍ୟବସ୍ଥା କରି ନାହାନ୍ତି । ସ୍ୱର୍ଗ ଧନିକର ଅଳସ ମନର କଳ୍ପନା । ସତ୍ୟନ୍ୟାୟର ତୁଳାଦଣ୍ଡ ଧର୍ମ ହସ୍ତରେ, ଦାନପୁଣ୍ୟର ଏକଚାଟିଆ ବ୍ୟବସାୟୀ ସେ । ଧନିକର କଳ୍ପନାରେ ଲାଳିତ, ପୁଷ୍ଟ କର୍ତ୍ତୃତ୍ୱରେ ପରିଚାଳିତ ସ୍ୱର୍ଗରେ କ'ଣ କାଣିଆର ଲାଞ୍ଛନା ଊଣା ହେବ ।

ତାଙ୍କ ଲେଖନୀରେ ପଲ୍ଲୀର ପ୍ରେମ ଅଧିକ ଗ୍ରୀଢକର, ସୁଖଦୁଃଖ ଗମ୍ଭୀରତର, ସ୍ନେହ ମଧୁରତର ହୋଇଅଛି । ତାଙ୍କ ଚିତ୍ରମୟ ପଲ୍ଲୀର ବାସିନ୍ଦା ହେବାକୁ କାହାର ଲୋଭ ନ ହେବ ?

ତାଙ୍କ ପ୍ରକୃତି ଇନ୍ଦ୍ରିୟଗ୍ରାହ୍ୟ; ଏହା ଉପାସ୍ୟ, ଉପେକ୍ଷ୍ୟ ନୁହେଁ । ଭାବ ରାଜ୍ୟରେ ପ୍ରବେଶ କରିବା ଲାଗି ପ୍ରେରଣା ଦିଏ ମାତ୍ର । ସ୍ୱତନ୍ତ୍ର ଭୂମିକାରେ ନୁହେଁ, ମାନବିକ ବିକାଶରେ ପ୍ରକୃତି ଦେଖାଦେଇଛି । ଏହା ପରମ୍ପରାର କାବ୍ୟିକ ଅନୁକରଣ ନୁହେଁ । ଆଖିରେ ଦେଖା, ମନରେ ଅଙ୍କା ପ୍ରକୃତି, ଅନୁଭୂତିରେ ରସାଣିତ ହୋଇ ମଧୁଧାରାରେ ନିଃସୃତ ହୋଇଅଛି ।

କବି ମାନବବାଦୀ । କିନ୍ତୁ ମାନବ ମାନେ ତାଙ୍କ ଛନ୍ଦରେ ଧରାଦେଇ ନାହାନ୍ତି । ମହତ୍ତ୍ୱ ବ୍ୟକ୍ତି ହୁଏତ ତାଙ୍କର ଆଦର୍ଶ । ମହତ୍ତ୍ୱ ହେବା ଲାଗି ଯାହାର ସୁଯୋଗ ନାହିଁ, ଅବସର ନାହିଁ, ସେ ତାଙ୍କ କବିତାର ଏକାନ୍ତ ପ୍ରାଣମୟ ବସ୍ତୁ । ତାଙ୍କ ସମବେଦନା ସେଠି ଅଜସ୍ର ଧାରାରେ ଢାଳି ହୋଇ ଯାଇଛି ।



# ଗୋପବନ୍ଧୁ ଓ ଶାନ୍ତିନିକେତନ

ଦୁଇ ଅନୁଷ୍ଠାନର ଲକ୍ଷ୍ୟ ଥିଲା ଏକ – ଚରିତ୍ରବାନ୍, ବ୍ୟକ୍ତିତ୍ୱସମ୍ପନ୍ନ, ସରସ, ସୁନ୍ଦର ମନୁଷ୍ୟ ଗଢ଼ିବା; ମନୁଷ୍ୟ, ଯେ ହେବ ସ୍ୱାଧୀନଚେତା, ଆତ୍ମନିର୍ଭରଶୀଳ, ସତ କହିବାକୁ ଯାହାର ଅନ୍ତରରେ ନଥିବ ଭୟ; ଭାରତୀୟ ତପୋବନର ମହିମାମୟ ଆଦର୍ଶ ଉଭୟ ଉପରେ କାର୍ଯ୍ୟ କରୁଥିଲା । ଶାନ୍ତିନିକେତନ ଓ ସତ୍ୟବାଦୀ ବନ-ବିଦ୍ୟାଳୟ—ଗୋଟିଏ ଜାତୀୟ ଆନ୍ଦୋଳନରୁ ଦୂରରେ ରହି ନାନା ଶାଖାରେ ବିକଶିତ ହୋଇ ଆସୁଥିଲା, ଆଉ ଗୋଟିଏ ବୃହତ୍ତର ଲକ୍ଷ୍ୟରେ ଆତ୍ମୋତ୍ସର୍ଗ କରୁଥିଲା । ତେଣୁ ପ୍ରେରଣା ଲାଗି ଗୋପବନ୍ଧୁ ଶାନ୍ତିନିକେତନ ଆସି ନଥିଲେ । ଶାନ୍ତିନିକେତନ ଓ ବିଶ୍ୱକବିଙ୍କ ଦର୍ଶନ ଲାଗି କୌତୂହଳ ତାଙ୍କ ଅନ୍ତରରେ ବହୁ-କାଳରୁ ଥିଲା ।

ପୃଥିବୀର ବହୁ ନେତା, କବି, ଗାୟକ, ନର୍ତ୍ତକ ଓ ସୁଧୀ ପ୍ରତିବର୍ଷ ଭାରତୀୟ ସଂସ୍କୃତିର ଏହି କେନ୍ଦ୍ରପୀଠକୁ ଆଗମନ କରିଥାନ୍ତି । ଆସିବା ପୂର୍ବରୁ ଖାଦ୍ୟପେୟ ଓ ବାସସ୍ଥାନର ସୁବ୍ୟବସ୍ଥା କରିବା ଲାଗି କର୍ତ୍ତୃପକ୍ଷଙ୍କୁ ଜଣାଇଥାନ୍ତି । ଆଶ୍ରମକୁ ଏପରି ଏକ ପତ୍ରନିର୍ଦ୍ଦେଶ ପଠାଇବା ଗୋପବନ୍ଧୁଙ୍କୁ ଅସଙ୍ଗତ ବୋଧ ହୋଇଥିଲା । ଯାହାର ଜୀବନ ଅଶ୍ରୁ ଆଉ ସ୍ୱେଦରେ ଗଢ଼ା, ସେ କେଉଁ ଅସୁବିଧାକୁ ଭ୍ରୂକ୍ଷେପ କରିବ ? ଲକ୍ଷ ଲକ୍ଷ ଦେଶବାସୀଙ୍କି ଅଶାନ୍ତିରେ ଛାଡ଼ି ଦେଇ ସ୍ୱାର୍ଥପର ଶାନ୍ତିର ସନ୍ଧାନରେ ତ ଗୋପବନ୍ଧୁ ଶାନ୍ତିନିକେତନ ଆସି ନଥିଲେ । ଜଣେ ବ୍ୟକ୍ତି ଅଶାନ୍ତି ଥିବା ପର୍ଯ୍ୟନ୍ତ ତାଙ୍କ ଆତ୍ମା ଏବେ ବି ହୁଏତ ସ୍ୱର୍ଗରେ ଶାନ୍ତି ଲାଭ କରୁ ନଥିବ ।

୧୯୧୮ ମସିହା । ଏହା ଶାନ୍ତିନିକେତନ ପକ୍ଷରେ ଏକ ସ୍ମରଣୀୟ ବର୍ଷ । ବୋଲପୁରରୁ ଖାଲି ପାଦରେ ତିନି ମାଇଲ ବାଟ ଚାଲି ଚାଲି ଆସି ଗୋପବନ୍ଧୁ ଶାନ୍ତିନିକେତନରେ ପହଞ୍ଚିଲେ । ଯଥାର୍ଥ ତପସ୍ୱୀଙ୍କି ଲାଭ କରି ଆଶ୍ରମ ଗୌରବାନ୍ୱିତ ହେଲା । 'ବିନୀତବେଶେନ ତପୋବନଂ ପ୍ରବିଷ୍ଟବ୍ୟଂ' ଏହାହିଁ ପ୍ରାଚୀନ ଆଦର୍ଶ । ନାହିଁ ଆଟୋପ ଆଡ଼ମ୍ବର, ମନ ଶାନ୍ତ, ପ୍ରସନ୍ନ, ମହର୍ଷି ଦେବେନ୍ଦ୍ରନାଥଙ୍କ ସାଧନା କ୍ଷେତ୍ର, ବିଶ୍ୱକବି ରବୀନ୍ଦ୍ରନାଥଙ୍କ ତପସ୍ୟା ତୀର୍ଥ । ଗୋପବନ୍ଧୁ ଦୃଢ଼ ମନ୍ଥର ପଦରେ ଶାଳ ତାଳ ତମାଳ ଆମ୍ବ, ପଳାଶ ବକୁଳ ମାଳତୀ କୃଷ୍ଣଚୂଡ଼ା ବୃକ୍ଷଲତାଦି ଦର୍ଶନ କରି କରି ଗତି କରିବାକୁ ଲାଗିଲେ । ଝରାପତ୍ରର ମର୍ମର ତାଙ୍କ ଅନ୍ତରରେ ଆଣିଲା ଅପୂର୍ବ ଶିହରଣ ! ଜୀବନ ଏଠି ନିର୍ଝରିଣୀ ପରି ସ୍ୱଚ୍ଛନ୍ଦ, କଳ୍ପନା ଏଠି ମେଘ ପରି ମୁକ୍ତ, ସ୍ୱପ୍ନ ଏଠି ଆଡ଼ମ୍ବରମୟ

ଗୋଧୂଳି ଶ୍ରୀ ପରି ରଙ୍ଗୀନ୍; ଉତ୍କଳର ଶ୍ରେଷ୍ଠ ତପସ୍ୱୀ, ଶ୍ରେଷ୍ଠ ସାଧକ ଗଣଦେବତା ମହାପୁରୁଷ ଗୋପବନ୍ଧୁଙ୍କ ମୁହୂର୍ତ୍ତେ ବକ୍ଷରେ ଘେନି ଆମ୍ରକୁଞ୍ଜ, ଶାଳବୀଥି ହସି ଉଠିଲା। ବେଶରେ ଚମକ ନାହିଁ, ଗଢ଼ରେ ଦାମ୍ଭିକତା ନାହିଁ; ଚତୁର୍ଦ୍ଦିଗର ବାୟୁମଣ୍ଡଳ ପରି ସେ ଉନ୍ନତ, ଉଜ୍ଜ୍ୱଳ, ପ୍ରଫୁଲ୍ଲ। ନିଜକୁ ପରିଚିତ କରାଇ ସ୍ୱତନ୍ତ୍ର ସମ୍ମାନ ଦାବୀ କରିବାର ଅଭିଳାଷ ତାଙ୍କର ନ ଥିଲା। ଭାରତର କୋଟି କୋଟି ଲୋକଙ୍କ ପରି ସେ ଜଣେ। ସମସ୍ତଙ୍କ ତଳକୁ ନିଜକୁ ଖସାଇନେଇ ସେ ହେଲେ ସେ ସମୟରେ ଆଶ୍ରମର ସର୍ବଶ୍ରେଷ୍ଠ ମହର୍ଷି। ଯେ ସ୍ୱୟଂସିଦ୍ଧ, ଅଭିନନ୍ଦନ ପୁଷ୍ପ-ବୃଷ୍ଟିରେ ସେ ସମ୍ମାନିତ ହୁଏ ନାହିଁ। ଯେ ସମ୍ମାନ ଦେଖାଏ, ତାର ସମ୍ମାନ ହିଁ ବଢ଼େ।

ଶୀତଦିନ। ପିନ୍ଧା ଖଣ୍ଡିଏ ମୋଟା ଖଦଡ଼ଧୋତି, ଆଣ୍ଠୁ ଲୁଚୁ ନାହିଁ। ମୁଖରେ ସତ୍ୟ, ଶାନ୍ତି ଓ ଶକ୍ତିର ଓଜସ୍ୱିତା, ମହତ୍ତ୍ୱର ଉଚ୍ଛ୍ୱାସ ଓ ଆନନ୍ଦର ସ୍ଫୂର୍ତ୍ତି, ଲଲାଟରେ ମହାନ୍ ସମୁଦ୍ରର ଉଦାରତା, ଗ୍ରୀଷ୍ମାପଥର ପ୍ରଶାନ୍ତ ଦୀପ୍ତି ଉନ୍ନତ ବ୍ୟକ୍ତିତ୍ୱ ଓ ପବିତ୍ର ତ୍ୟାଗନିଷ୍ଠାର ଏହା ଦାନ। ତାଙ୍କର ଗୌରବୋଜ୍ଜ୍ୱଳ ମହତ୍ତ୍ୱ ଶୀତକାଳର ନିଷ୍ପ୍ରଭ ସୂର୍ଯ୍ୟାଲୋକକୁ ଆଲୋକିତ କରିଦେଲା। ସେ ଆସି ଭୋଜନା-ଳୟର ଦ୍ୱାର ଦେଶରେ ଉପସ୍ଥିତ ହେଲେ। ସେତେବେଳକୁ ଖିଆପିଆ ଶେଷ ହେଲାଣି। ଗୃହପାଞ୍ଚଜଣ ପରିବେଷଣୀ ମାତ୍ର ବାକି।

ଭୋଜନାଳୟ ଅତି ଛୋଟ ଥିଲା। ଏକାବେଳକେ ସମସ୍ତ ଗ୍ରାମବାସୀ ଆହାର କରିପାରୁ ନଥିଲେ। ଗୋଟିଏ ଦଳ ଖାଇ ସାରିବା ପରେ ଅନ୍ୟ ଦଳ ଆସୁଥିଲେ। ଘର ବଡ଼ ଅପରିଚ୍ଛନ୍ନ ରହୁଥିଲା। ଗୋପବନ୍ଧୁ ହଠାତ୍ ଭୋଜନାଳୟକୁ ପଶି ଆସି କହିଲେ, "ମୁଁ ଅତିଥି", ଏ ପ୍ରଗଳ୍ଭତାରେ ସମସ୍ତେ ଅବାକ୍; ପାଗଳ ନା କ'ଣ ? କ୍ଷୁଧାର୍ତ୍ତ ହୋଇ ଭୋଜନ କରିବାକୁ ଯିବା ସମୟରେ ଏପରି ଏକ ଅବାଞ୍ଛିତ ଘୋଷଣା କେହି କେହି ହୁଏତ ପସନ୍ଦ କରିପାରିଲେ ନାହିଁ। କେହି କେହି ଏହାକୁ ଘୋର ଅଭଦ୍ରତା ମନେ କଲେ !! କିନ୍ତୁ ମୁଖକୁ ଚାହିଁଦେଲା ମାତ୍ରେ ଭାବାନ୍ତର ଜାତ ହେଲା, ତହିଁରେ ଶିବନ୍ଦୁକସ୍ମୀ ସ୍ମିତ।

ଗୋପବନ୍ଧୁ କାଳ ତିଥି ନ ଦେଖି ଆସିଛନ୍ତି। ଯଥାର୍ଥରେ ସେ ଅତିଥି। ଆଶ୍ରମରେ ଆକସ୍ମିକ ଭାବରେ ଏହିପରି ଅତିଥି ପହଞ୍ଚିଥାନ୍ତି। ମେସ୍ ପରି କେହି ଆଗରୁ ମିଲ୍ ପକାଇ ନଥାଏ। ଗୋପବନ୍ଧୁ ପ୍ରାଚୀନ ବୈଦିକ ସରଳତା ମନରେ ଘେନି ଏଭଳି ସଙ୍କୋଚହୀନ ଘୋଷଣା କରିଥିଲେ। ଆଶ୍ରମର ଗତି ଜାଣିବା ହୁଏତ ତାଙ୍କର ଉଦ୍ଦେଶ୍ୟ ଥିଲା। ଯଥାର୍ଥ ଅତିଥି ସତ୍କାର ନହେଲେ ଦୁର୍ବାସାଙ୍କ ପରି

ଅଭିଶାପ ଦେବା କଳୁଷ ତାଙ୍କର ମନର ସୀମା ସ୍ପର୍ଶ କରି ନ ଥିଲା । ଆଶ୍ରମ ଏକ କଲ୍ୟାଣମୟ ପୀଠ । ଏହା ସାଧାରଣଙ୍କ ଦାନରେ ପ୍ରତିଷ୍ଠିତ । ଏଣୁ ସାଧାରଣଙ୍କ ନେତା ଅସମୟରେ ଆସି ସେଠାରେ ଅତିଥି ହେବା ଦାବୀ ତଳେ ଯଥେଷ୍ଟ ଦୃଢ଼ତା ଅଛି । ଗୋପବନ୍ଧୁ ନିଜ ତପୋବନରେ ଏହିପରି ସତ୍କାରରେ ଅଭ୍ୟସ୍ତ ଥିଲେ । ଲୋକସେବା ତାଙ୍କ ଆଶ୍ରମର ମୂଳ ମନ୍ତ୍ର ଥିଲା । ରୋଗୀ ସେବା ଲାଗି ଔଷଧ ଓ ପଥ୍ୟ ଘେନି ସେ ସଦଳବଳେ ଗ୍ରାମେ ଗ୍ରାମେ ବୁଲୁଥିଲେ ।

ମୁଖର ଉଦାର ଗାମ୍ଭୀର୍ଯ୍ୟ ଓ ଦିବ୍ୟ ସୌଷ୍ଠବ ଦେଖି ସମସ୍ତେ ଦବିଗଲେ । କେହି କିଛି ପଚାରିବାକୁ ସାହସ କଲେ ନାହିଁ । ପରିଚୟ ପଚାରିବା କେବଳ ଅଶିଷ୍ଟତା ନୁହେଁ; ଏହା ଏକ ଦ୍ୱିରୁକ୍ତି । ତାଙ୍କର ପରିଚୟ ସେ ନିଜେ । ଜୀବନର ସଞ୍ଚିତ ପୁଣ୍ୟପ୍ରବାହ ଚକ୍ଷୁ, ମୁଖରେ ଦୀପ୍ତ ।

ସେ ଯେ ସାଧାରଣରେ ଅସାଧାରଣ, ଅଣୁରେ ମହାସ୍ଥାନ୍, ଏହା ଜଣାଯାଉ ଥାଏ । ତାଙ୍କ ମୁଖଶ୍ରୀ ଜାତୀୟ ଜୀବନର ସୂଚୀପତ୍ର, ମହତ୍ତ୍ୱର ଭୂମିକା, ନିଖିଳ କଲ୍ୟାଣର ନୀରବ ବିଜ୍ଞାପନ । ଗୋପବନ୍ଧୁଙ୍କ ମୁଖରେ ଯେଉଁ ବିଶ୍ୱବେଦନାର ସହାନୁଭୂତି, ଅକପଟ ମାଧୁର୍ଯ୍ୟ ଓ ବ୍ୟାପକ ଐଶ୍ୱର୍ଯ୍ୟ ଫୁଟି ଉଠୁଥିଲା, ତାହା ରବୀନ୍ଦ୍ର ଓ ଆଣ୍ଡ୍ରୁଜଙ୍କ ମୁଖ ବ୍ୟତୀତ ଶାନ୍ତିନିକେତନରେ ଅନ୍ୟତ୍ର ଦୁର୍ଲଭ ଥିଲା । ସେଦିନର ପରିବେଷଣକାରୀ ଶିକ୍ଷକ ଓ ଛାତ୍ରମାନେ ସେହି ଜ୍ୟୋତିରେ ଆତ୍ମସମ୍ମୋହିତ ହୋଇଗଲେ ।

କିଛିକାଳ ପରେ ବିଭୂତିଦା (ଶାନ୍ତିନିକେତନର ପ୍ରବୀଣ ଶିକ୍ଷକ) ବିନୀତ ଭାବରେ ଗୋପବନ୍ଧୁଙ୍କୁ ଭୋଜନ ଲାଗି ନିମନ୍ତ୍ରଣ କଲେ । ଗୋପବନ୍ଧୁ କହିଲେ, "ମୁଁ ନିରାମିଷାଶୀ, ଓଳିଏ ଖାଏ, ଏ ଘର ଅତି ଅପରିଚ୍ଛନ୍ନ । ଏଠାରେ ଭୋଜନ କରିବା ଲାଗି ଆତ୍ମା ଡ଼ାକୁ ନାହିଁ ।"

ବିଭୂତିଦା ଗୋପବନ୍ଧୁଙ୍କୁ 'ଗୁରୁପଲ୍ଲୀକି' ନିମନ୍ତ୍ରଣ କରି ନେଇ ହବିଷ୍ୟାନ୍ନ ଆହାର କରାଇଥିଲେ ।

ତତ୍ପରେ ପରିଚୟ ନେବାରେ ଜଣାଗଲା ଯେ ସେ ଉତ୍କଳର ବରେଣ୍ୟ ନେତା ଉତ୍କଳମଣି ଗୋପବନ୍ଧୁ ଦାସ । ଚାରିଆଡ଼େ ଚହଳ ପଡ଼ିଗଲା, ଦଳ ଦଳ ହୋଇ ଶିକ୍ଷକ ଛାତ୍ର ତାଙ୍କ ସହିତ ସାକ୍ଷାତ କରିବା ଲାଗି ଧାଇଁଲେ—ହୃଦୟରେ ବିପୁଳ ସମ୍ମାନ ଓ ଆଗ୍ରହର ଅର୍ଘ୍ୟ ଘେନି । ଶେଷରେ ରବୀନ୍ଦ୍ରଙ୍କ ନିକଟରେ ସମ୍ବାଦ ପହଞ୍ଚିଲା । କବି ତାଙ୍କୁ ଉତ୍ତରାୟଣକୁ ପାଛୋଟି ଘେନିଗଲେ ।

ଦୁଇ ମହାସାଗର ପରି ଦୁଇ ମହା ହୃଦୟର ମିଳନ ହେଲା । ଜଣେ ହିମାଦ୍ରି ପରି ଉତ୍ତୁଙ୍ଗ, ଗମ୍ଭୀର; ବେନି ଚକ୍ଷୁରେ ବିଶ୍ୱର ବିପୁଳ ଆତ୍ମା ବିକଶିତ,

ଆଭିଜାତ୍ୟ ଓ ଜ୍ଞାନ-ଗୌରବ ନିଷ୍ଠାରେ ପ୍ରଦୀପ୍ତ । ଆଉ ଜଣେ ଶିଶୁ ପରି ସରଳ, ଫଳଭରର ନତ ବୃକ୍ଷ ପରି ବିନମ୍ର, ଶ୍ରାବଣ ପରି ଅଶ୍ରୁଧାରାରେ ଉଚ୍ଛ୍ୱସିତ, ପଲ୍ଲୀ ପୁଷ୍ପ ପରି ନିରାଡ଼ମ୍ବର, ପ୍ରଭାତକିରଣ ପରି ସତେଜ । ରବୀନ୍ଦ୍ରନାଥ ଓ ଗୋପବନ୍ଧୁ । ଜଣଙ୍କର କଳ୍ପନା ମୁକ୍ତ ବିହଙ୍ଗ ପରି ଆକାଶରେ କ୍ରୀଡ଼ା କରୁଛି; ଆଉ ଜଣଙ୍କର କଳ୍ପନା ନାହିଁ, ଭାବନା; ସ୍ୱପ୍ନ ନାହିଁ ବାସ୍ତବତା । ମାଟିର କୁଟୀରେ କୁଟୀରେ ଘୂରି ବୁଲୁଛି ତାଙ୍କର ହୃଦୟ, ପୋଛୁଚି କୃଷକର ସ୍ୱେଦ, ବ୍ୟାଧି ପୀଡ଼ିତର ଅଶ୍ରୁ, ଜଣେ କଳ୍ପନାର, ଆଉ ଜଣେ ଜୀବନର କବି ।

- ଏହି ମିଳନବେଳେ ଶିଳ୍ପୀ ନନ୍ଦଲାଲ ବୋଷ, ଦୀନବନ୍ଧୁ ଆଣ୍ଡ୍ରୁଜ୍ ଓ ଦାର୍ଶନିକ କ୍ଷିତିମୋହନ ସେନ୍ ଉପସ୍ଥିତ ଥିଲେ । ଦେବହୃଦୟ ଗୋପବନ୍ଧୁ ସରଳ ଶାନ୍ତ ଆଲାପରେ ସମସ୍ତଙ୍କୁ ମୁଗ୍ଧ କରିଦେଲେ ।

ବିଶ୍ୱକବିଙ୍କ ନିର୍ଦ୍ଦେଶରେ ଶାନ୍ତିନିକେତନରେ ଉତ୍କଳମଣିଙ୍କ ସମ୍ବର୍ଦ୍ଧନା ଲାଗି ଏକ ସଭାର ଆୟୋଜନ ହୋଇଥିଲା । ଗୋପବନ୍ଧୁବାବୁ ବଙ୍ଗଳାରେ ବକ୍ତୃତା ଦେଇଥିଲେ, ସେ ଭଲ ବଙ୍ଗଳା କହିପାରୁଥିଲେ ।

ସେ କହିଲେ, ସତ୍ୟର ବିଭିନ୍ନ ବିଭବରୁ ଓ ବିଭିନ୍ନ ଦୃଷ୍ଟିକୋଣରୁ ମାନବର ମନ ସମୀକ୍ଷା କରିବା, ଅଧ୍ୟୟନ ଓ ଗବେଷଣା ଦ୍ୱାରା ପ୍ରାଚ୍ୟର ବିଭିନ୍ନ ସଂସ୍କୃତିକୁ ପରସ୍ପରର ସମୀପବର୍ତ୍ତୀ କରିବା, ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ସଂଘଟନ କରିବା ଶାନ୍ତିନିକେତନର ଲକ୍ଷ୍ୟ । ଏଠାରେ ଜାତି, ଧର୍ମ ଓ ସଂପ୍ରଦାୟର ଭେଦ ନାହିଁ । ହିନ୍ଦୁ, ବୌଦ୍ଧ, ମୁସଲମାନ, ଖ୍ରୀଷ୍ଟାନ ଓ ଶିଖ୍ ଧର୍ମାବଲମ୍ବୀ ଶିକ୍ଷକ ଓ ଛାତ୍ରମାନେ 'ଶାନ୍ତ ଶିବ, ଅଦ୍ୱୈତ'ଙ୍କୁ ଧ୍ୟାନ କରି ପରସ୍ପର ମଧ୍ୟରେ ଏକାତ୍ମତା ଅନୁଭବ କରୁଅଛନ୍ତି । ସାରା ପୃଥିବୀକୁ ସଂକୀର୍ଣ୍ଣତାରୁ ମୁକ୍ତ କରିବା ଲାଗି ଏହିଭଳି ଅନୁଷ୍ଠାନ ଏକାନ୍ତ ଉପଯୋଗୀ । ଛାତ୍ର ଏଠି ପ୍ରକୃତି କୋଳରେ ଲାଳିତ । ପ୍ରକୃତି ଜୀବନର ଧାତ୍ରୀ, ଶିକ୍ଷୟିତ୍ରୀ । ପକ୍ଷୀର କୂଜନରେ ଯେପରି, କଳକଣ୍ଠ ସଙ୍ଗୀତରେ ସେହିପରି ଏ ସ୍ଥାନ ମୁଖରିତ । ଚିତ୍ରକଳା ଆଉ ସଙ୍ଗୀତ ବ୍ୟକ୍ତିତ୍ୱକୁ ସରସ, ସୁନ୍ଦର, କରି ଗଢ଼ୁଛି । ଶାନ୍ତିନିକେତନ ପ୍ରକୃତରେ ଶାନ୍ତିର ନିକେତନ । କିନ୍ତୁ ଭାରତ ଅମୁକ୍ତ, ଅଶାନ୍ତ ଥିବା ପର୍ଯ୍ୟନ୍ତ ଏଠାରେ ଶାନ୍ତି ବିରାଜିତ ହୋଇପାରିବ ନାହିଁ । ସାରା ଭାରତ ଯେତେବେଳେ ଶାନ୍ତିର ନିକେତନ ହେବ, ସେତେବେଳେ ଏହି ଅନୁଷ୍ଠାନ ଭାରତର ମୁକୁଟମଣି ପରି ଶୋଭା ପାଇବ । ସତ୍ୟବାଦୀ ବନ ବିଦ୍ୟାଳୟ ନାନା କାରଣରୁ ଏହିଭଳି ଏକ ଅନୁଷ୍ଠାନ ହୋଇପାରି ନାହିଁ । ସେଠି ସହଶିକ୍ଷା ନାହିଁ । ଓଡ଼ିଶାର ସାମାଜିକ ପରିବେଶ ଯାହା, ସେଥିରେ ଏହା କରିବା ସମ୍ଭବ ନୁହେଁ । ବିଶ୍ୱକବିଙ୍କ ପ୍ରଭାବ ଓ ପ୍ରତିପତ୍ତି ଫଳରେ ଭାରତ ତଥା ପୃଥିବୀର ବିଭିନ୍ନ ଦେଶରୁ

ଶାନ୍ତିନିକେତନକୁ ହଜାର ହଜାର ଟଙ୍କା ସାହାଯ୍ୟ ଆସୁଛି । ସତ୍ୟବାଦୀ ବନ-ବିଦ୍ୟାଳୟ ଅତ୍ୟଳ୍ପ ବଦାନ୍ୟ ବ୍ୟକ୍ତିଙ୍କ ଅର୍ଥ ସାହାଯ୍ୟ, ଶିକ୍ଷକମାନଙ୍କ ତ୍ୟାଗନିଷ୍ଠା ଓ ସାଧାରଣ ମୁଷ୍ଟିଭିକ୍ଷା ଉପରେ ନିର୍ଭର କରିଅଛି ମାତ୍ର । ଏଠା ପରି ସେଠି ଶିକ୍ଷକ-ଆଉ ଛାତ୍ରଙ୍କ ମଧ୍ୟରେ ନିବିଡ଼ ଆତ୍ମୀୟତା ଅଛି । ଅଧିକନ୍ତୁ ସେଠି ଛାତ୍ରମାନେ ସ୍ୱହସ୍ତରେ ରନ୍ଧନ କରନ୍ତି, ଗ୍ରାମେ ଗ୍ରାମେ ବୁଲି ସେବା କରନ୍ତି ।

ତତ୍ପରେ ସଦ୍‌ଜୀବନ ଯାପନ ଲାଗି ଗୋପବନ୍ଧୁ ଛାତ୍ରଛାତ୍ରୀମାନଙ୍କୁ ଉପଦେଶ ଦେଇଥିଲେ । ଅଳ୍ପ ସମୟ ମଧ୍ୟରେ ବାଳକ ବାଳିକାଙ୍କଠାରୁ ବୃଦ୍ଧ ବୃଦ୍ଧାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସଦ୍‌ବ୍ୟବହାରରେ ଜିଣି ନେଇଥିଲେ । ତତ୍ପରେ ସେ ପାଠଭବନ (ସ୍କୁଲ୍), ଶିକ୍ଷାଭବନ (କଲେଜ), କଳାଭବନ, ସଙ୍ଗୀତଭବନ, ଗ୍ରନ୍ଥାଳୟାଦି ଦେଖି ପରିତୃପ୍ତ ହୋଇଥିଲେ ।

ଉତ୍କଳକୁ ଫେରି ଆସିଲା ପରେ ଶିକ୍ଷାଲାଭ ଲାଗି ନବକୃଷ୍ଣ ଚୌଧୁରୀଙ୍କୁ ଶାନ୍ତିନିକେତନ ପଠାଇଥିଲେ । ସେହି ଦିନଠାରୁ ଓଡ଼ିଆ ଛାତ୍ରଛାତ୍ରୀମାନେ ଶାନ୍ତି-ନିକେତନରେ ଅଧ୍ୟୟନ କରି ଆସୁଛନ୍ତି । ୧୯୪୯ରେ ବିଦ୍ୟାଭବନର ଓଡ଼ିଆ ଗବେଷଣା ବିଭାଗ ଉନ୍ମୋଚିତ ହେଲା । ଏହା ମୂଳରେ ଉତ୍କଳମଣିଙ୍କ ପ୍ରେରଣା, ନିତ୍ୟାନନ୍ଦ କାନୁନ୍‌ଗୋ ଓ ନବକୃଷ୍ଣ ଚୌଧୁରୀଙ୍କ ପ୍ରଚେଷ୍ଟା ବିଦ୍ୟମାନ ।

ବିଦାୟବେଳେ ଗୋପବନ୍ଧୁ ରବୀନ୍ଦ୍ରଙ୍କୁ କହିଥିଲେ—ଆପଣଙ୍କ ଅନୁଷ୍ଠାନ ରାଜରାଜଡ଼ା କାରଖାନା, ମୋ ବିଦ୍ୟାଳୟ ଏକ ଗରିବ ଅନୁଷ୍ଠାନ ।



# ଗାଉଁଲୀ କବି ନନ୍ଦକିଶୋର

ନନ୍ଦକିଶୋର ବାହାରେ ସହରୀ, କିନ୍ତୁ ଭିତରେ ଏକାନ୍ତ ଗାଆଁର, ଗାଉଁଲୀ, ନଗର-ନଗରୀର ବହୁ ରୂପଛବି ଗ୍ରସ୍ତ ହୋଇ ତାଙ୍କ ମନରେ ନିଭି-ଯାଇଛି, ନିଜ ଭିତରେ ଯେ ସୁନ୍ଦର ସରସ ଗାଆଁକୁ ଆବିଷ୍କାର କରିଛନ୍ତି, ନିଜେ ବି ଆବିଷ୍କୃତ ହୋଇଛନ୍ତି । ତାଙ୍କର ପ୍ରତିଭା ବହୁ ବନ ପର୍ବତରେ ପଥହରା ହୋଇ ଶେଷରେ ନିଜର ବିକାଶ ପଥ ଖୋଜି ପାଇଲା ଗାଆଁ ଗୋହିରିର କିଆଫୁଲର ଗନ୍ଧରେ, ବା ଗାଉଁଲୀ କିଶୋରୀଙ୍କ ସରଳ ତରଳ ଛନ୍ଦରେ । ଉତ୍କଳଭାରତୀଙ୍କ କାବ୍ୟ ଉଦ୍ୟାନରେ ନୂତନ ଫୁଲର ମହକ—ଏଇ ଫୁଲକୁ ବନଫୁଲ ବୋଲି ମହାକବିମାନେ ଅବହେଳାରେ ଆଡ଼େଇ ଦେଇଯାଇଥିଲେ । ନନ୍ଦକିଶୋର ନୂଆ କରି ଏହାର ଚାରା ଆଣି ନିଜ ଉଦ୍ୟାନରେ ରୋପିଲେ ।

କବିଙ୍କ କବିତାରେ ଫୁଟି ଉଠେ ତାଙ୍କର ଅପୂର୍ବ ଶିଳ୍ପୀମନ, ତାଙ୍କର ନିରାଡ଼ମ୍ବର ବ୍ୟକ୍ତିତ୍ୱ, ଏହାକୁ ଯେ ପର୍ଯ୍ୟନ୍ତ ବଞ୍ଚାଇଥିଲେ, ବଞ୍ଚିଥିଲା ତାଙ୍କ ଭିତରେ କବିତା । ତାଙ୍କର କବି ମନ ଗାଆଁର ଲାଜକୁଳୀ ଫୁଲ ପରି ସଲଜ୍ଜ, ପଦ୍ମଫୁଲ ପରି ସତେଜ ଓ ପାଣି ଶିଉଳି ପରି ସରଳ । କୃଷ୍ଣପୁର ଗାଆଁର କେତେ ଫୁଲ ଫୁଟି ଝଡ଼ିଗଲାଣି, କିନ୍ତୁ ନନ୍ଦକିଶୋରଙ୍କ ମନ ବଞ୍ଚିଛି ତାଙ୍କ କାବ୍ୟ ଭିତର ଦେଇ ଆମ ଭିତରେ, ବଞ୍ଚିବ ଆମ ଭିତର ଦେଇ ଅନନ୍ତ ଆଗାମୀ ମଧ୍ୟରେ ।

ଫକୀରମୋହନଙ୍କ ଭାଷାରେ ତାଙ୍କ କବିତା ସତେ କି ବିନା ଚିନ୍ତାରେ ଲେଖନୀରୁ ବୋହିଯାଇଛି ! ସେ ଅନାଘ୍ରାତ ପୁଷ୍ପ, ଅଙ୍ଗୁଳି ଦ୍ୱାରା ଅକଳୁଷିତ କିଶଳୟ । ତା ମଧ୍ୟରେ ଚେଷ୍ଟାର କର୍କଶତା ନାହିଁ, ଚିନ୍ତାର କ୍ଳିଷ୍ଟତା ନାହିଁ, ଜ୍ଞାନର ଗାମ୍ଭୀର୍ଯ୍ୟ ନାହିଁ କି ଦର୍ଶନର ଅସ୍ପଷ୍ଟତା ନାହିଁ । କେବଳ ତରଳ ଅନୁ-ଭୂତିର ଅବାରିତ ନିଃସରଣ ଅଛି । ସେଥିରେ ଅଳଙ୍କାରର ଝଙ୍କାର ନାହିଁ, ଆଭିଜାତ୍ୟ ଆଡ଼ମ୍ବର ନାହିଁ, କି କଳ୍ପନାର ଅଯୁକ୍ତି ବିଳାସ ନାହିଁ । ଅଛି ଗ୍ରାମ-ବାଳିକାର ମଧୁର ସ୍ମିତ, ଦୁଃଖୀର ସୁଖମୟ ସ୍ମୃତିର କରୁଣତା, ପ୍ରତିଦିନ ଅନୁଭୂତ ସୁଖଦୁଃଖର ଲୀଳାବିଞ୍ଚିଳୀ । ସେ କବିତା ଗାଉଁଲୀ ଜୀବନରୁ ସ୍ୱତନ୍ତ୍ର ନୁହେଁ, ଏକ ବୃନ୍ତର ଦୁଇଟି ଫୁଲପରି କିଏ ଜୀବନ, କିଏ କବିତା ବାରି ହୁଏନାହିଁ । ଗାଆଁ ମରମରେ ଗୁଞ୍ଜରୁଥିବା ଅସଲ ସ୍ୱରଟିକି ନାଥର କେନ୍ଦରା ନୁହେଁ, ତାଙ୍କ ନିଜର କେନ୍ଦରା ବେଶ୍ ଧରିପାରିଛି । ଓଡ଼ିଶାର ରାଜା ନ ହୋଇ ସେ ରାଜୁତି କରୁଥିଲେ

ସବୁ ଗାଆଁରେ । ଫୁଲେ ଫୁଲେ ବୁଲୁଥିଲା ତାଙ୍କର ମନ, କେତେବେଳେ ବାସ୍ନା ଚଢ଼େଇ ବସାରେ ପଶି ଆଉଁସୁଥିଲା ତାର ଦେହ, କୁଆକୁ ଦେଉଥିଲା ଆଧାର, ସାରୀକୁ ଶିଖାଉଥିଲା କଥା, ଅସମୀ ବେଙ୍ଗ୍‌ଲା ଉପରେ କରୁଥିଲା ଆକଟ, ଚୂଟିଆ ମୂଷା ପ୍ରତି ପ୍ରକାଶୁଥିଲା ଦରଦ । ବନସ୍ତର ଏ ଲତାପତ୍ର, ଏ ଫୁଲଫଳ, ହସ-ଖୁସିରେ ମୁଖର ଏ ଗାଧୁଆଘାଟ, ଏ ମନମତାଣିଆ ଡାଆଣିଆ ଖଗ, ଏ ନାଳ କୁଦୁଡ଼, ରଙ୍ଗ ସାଧବ ବୋହୂ, ଏ ଚିତ୍ର ପ୍ରଜାପତି ସବୁ ତାଙ୍କର ନିଜସ୍ୱ ।

ଗଛଲତା, ଜୀବଜନ୍ତୁ ଓ ମଣିଷ ତାଙ୍କ କାବ୍ୟରେ ଏକାନ୍ନବର୍ତ୍ତୀ ପରିବାରରେ ବାସ କରୁଛନ୍ତି । ସ୍ଥୂଳ ଦୃଷ୍ଟିରେ ସେସବୁ ଭିନ୍ନ । ଯୋଗୀର ବ୍ରହ୍ମମୟ ଦୃଷ୍ଟି ପରି କବିର ରସମୟ ଦୃଷ୍ଟିରେ ସେମାନେ ଏକ—ଅଭିନ୍ନ । ଅନନ୍ତକାଳ ଧରି ଏହି ସଖ୍ୟ, ଏଇ ଘରୋଇ ସମ୍ପର୍କ—ଏଇ ଅନ୍ତରଙ୍ଗତା ଚାଲିଆସିଛି, କବିତା ହେଉଛି ଏ ସମ୍ପର୍କର ଯୋଗସୂତ୍ର ।

ଚୈତ୍ରମାସ ରାତିରେ ଝିଅମାନଙ୍କ ପୁଚିଖେଳ, ବିଲରେ ହଳିଆ ଓ ନଈରେ ନାଉରିଆର ପ୍ରାଣଖୋଲା ଗୀତ, କେଳୁଣୀର ଚିତାକୁଟା, ନାଥର କେନ୍ଦରାବଜା, ବରଷା ରାତିରେ ମଇଁଷିଆଳର ଧୁଡ଼ୁକି ବଜା, ଗାଈଜଗା ଟୋକାଙ୍କର ଡାବଲ-ପୁଆ, ଶଉରୁଣୀଙ୍କର ଜାମୁଡାଳି ନାଚ, କେଳାର ହାବଡ଼ା ଖେଳ, ଲଉଧୁଡ଼ୁକି, କହ୍ଲୀଓଷା ଓ ଖୁଦୁରୁକୁଣୀର ତଅପୋଇ ଗୀତ, ଗ୍ରାମ ଯାତ୍ରାରେ ରଜାରାଣୀ ଓ ଦୁଆରୀଙ୍କ ନୃତ୍ୟ, ମାମଲାଖୋର ମାମଲତକାରଙ୍କ କୃତ୍ୟ, ହାଟ ଦୋକାନ, ପଞ୍ଚାମୃତ ସଭା, କୀର୍ତ୍ତନିଆଙ୍କ ଦୋମିଶା ଭାଷାରେ କୀର୍ତ୍ତନ, ଭାଗବତଟୁଙ୍ଗୀ, ଖଣ୍ଡେଇତଙ୍କ ଲଖବନ୍ଧା, ବ୍ରାହ୍ମଣଙ୍କ ସାଖ୍ୟ ଦର୍ଶନଚର୍ଚ୍ଚା । ସଙ୍ଗେ ଚୂଡ଼ାଦାହ, ପଲ୍ଲୀ ସ୍ତ୍ରୀମାନଙ୍କର କଳହରେ ବୀରତ୍ୱ, ବାଳକର ଉତ୍ପାମି, ଅତ୍ୟାଚାରୀ ଜମିଦାରଙ୍କ ଆଡ଼ମ୍ବର, ସାହୁକାରଙ୍କ କୃପଣତା ପ୍ରଭୃତି କୌଣସି ଜିନିଷ ତାଙ୍କ କବି ଦୃଷ୍ଟିରୁ ବାଦ୍ ପଡ଼ିଯାଇ ନାହିଁ ।

'ନିର୍ଝରିଣୀ', 'ତରଙ୍ଗିଣୀ' ଓ ନାନାବାୟା ଗୀତର ଅନେକ କବିତା ଗାଉଁଲି କବିତା ପରି ବୋଧହୁଏ । କବି ନିଜେ ଲେଖିଛନ୍ତି କି ସଂଗ୍ରହ କରି ନିଜ କବିତାରେ ଲଗାଇଛନ୍ତି, ଜଣାଯାଏ ନାହିଁ । ଢ଼ଗଢମାଳି, ପହଳି, ପ୍ରବଚନ, ଛଟା ଡାକବଚନ, ହଳିଆ, ଶଗଡ଼ିଆ, ନାଉରିଆ ଗୀତ, ପିଲାଙ୍କ ଖେଳ ଗୀତ, ପିଲା ଶୁଆଇବା ଗୀତ, ଦୋଳି ଓ ପୁଚିଖେଳ ଗୀତ, ଓଷାବ୍ରତ ପୂର୍ଣ୍ଣ୍ୟ ପରବର ଗୀତ, ମାଇପିଙ୍କ କାନ୍ଦଣା ତାଙ୍କ ମନ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଅଛି । ସେଉଁଠି ସେ ଏ ପ୍ରଭାବକୁ ସ୍ୱୀକାର କରି କୃଷକ କାନ୍ଧରେ ହାତ ପକାଇ ଚାଲିଛନ୍ତି

ସେଠି ସେ କବି । ଯେଉଁଠି ସେ ଭକ୍ତକବି ସାଜି ରାଧାନାଥ ଓ ମଧୁସୂଦନଙ୍କ ବେଶଭୂଷଣର ଅନୁକରଣ କରିଛନ୍ତି, ସେଠି ସେ କବି ପଦବୀରୁ ବହୁତ ତଳକୁ ଖସି ଆସିଛନ୍ତି । ସେଠାରେ ସେ ହୋଇଛନ୍ତି ଜଣେ ଅନୁକରଣ-ପ୍ରିୟ ସାଧାରଣ ଲେଖକ । ଶର୍ମିଷ୍ଠା ଓ କୃଷ୍ଣକୁମାରୀ ରଚନାରେ କବିଙ୍କର କୌଣସି ନିଜତ୍ୱ ଫୁଟି-ନାହିଁ । ଆତ୍ମପ୍ରତ୍ୟୟ କାବ୍ୟ ରଚନାର ମୂଳମନ୍ତ୍ର, ଉକ୍ତ ରଚନା ଦ୍ୱୟରେ ତାର ଅଭାବ ଦେଖାଯାଏ—ଏଠାରେ ସେ ହୋଇଛନ୍ତି ରାଧାନାଥ ସୌରଚକ୍ରର ଗୋଟିଏ ସାଧାରଣ ଗ୍ରହ—ତାର ଅସ୍ତିତ୍ୱ ଅଛି, ଆଲୋକ ନାହିଁ । ହୃଦୟର ପ୍ରୀତି ନ ଦେଇ ସେ ଦେଇଛନ୍ତି ନୀରସ ନୀତି, ନହେଲେ ପ୍ରଚଣ୍ଡ ଶବ୍ଦର ସ୍ରୋତ । ଅବଧାନ ସାଜି ଅଭିଧାନ ଖୋଲିଛନ୍ତି, ହୃଦୟଉଦ୍ୟାନ ଛାଡ଼ି, କାନନର ଗହନକୁ ଫୁଲ ତୋଳି ଯାଇଛନ୍ତି । ଫୁଲ ତୋଳା ହୋଇନାହିଁ । କ୍ଷତବିକ୍ଷତ ହେବା ହୋଇଛି ସାର । ସୁଗନ୍ଧି ତ ଦୂରର କଥା, ମୋଟରୁ ଗନ୍ଧ ହୋଇନାହିଁ, ବରଂ ଦୁର୍ଗନ୍ଧ । ନନ୍ଦ-କିଶୋରଙ୍କ ଗାଉଁଲି କବିତା ନୂଆ ଆଷାଢ଼ର ପହିଲି ଅସରାରେ କେଶୁରଗଜା ପରି ମାଟି ଭେଦି ଉଠିଛି । ସଫା ଆଲୁଅ, ଖୋଲା ପବନ ପାଇ ବଢ଼ିଛି ସେ । କବି ମିଛରେ ରଜାଙ୍କୁ ଖୋଜି ବୁଲୁଛନ୍ତି । ଜାଣନ୍ତି ନାହିଁ ଯେ ସେ ନିଜେ ରଜା—ଅଗଣିତ ମନରେ ତାଙ୍କର ରାଜୁତି । ରାଜ୍ୟେ ରାଜ୍ୟେ ତାଙ୍କ କୀର୍ତ୍ତିର ଢୋଲଙ୍ଗି ବାଜା ବାଜୁଛି । ସୁରବାଳା ଇନ୍ଦ୍ରଧନୁର ଫାଟକ ଖୋଲି ଗୁହାରୁଛନ୍ତି ।

କବିଙ୍କ ଭାଷା ଲୋକଭାଷା—ଗାଉଁଲି ସ୍ୱଭାବର ଅନୁବର୍ତ୍ତୀ—ସ୍ୱଭାବୋକ୍ତିରେ ପରିପୂର୍ଣ୍ଣ—ପ୍ରାକୃତିକ । ଏହାର ଦୃଢ଼ ବଳିଷ୍ଠତା ଅଛି । କାରଣ ଜନସମାଜର ଗଭୀରତମ ସ୍ତର ଭେଦ କରି ଏହା ଉଠିଛି । କବିତାର ହାଡ଼ ମାଉଁସ ପରି ଢଗ-ଢମାଳି ପ୍ରଭୃତି ମିଶ୍ରି ରହି ତାକୁ ବିଶେଷ ଶକ୍ତି ଦେଇଛି । "ଚିଙ୍କିଶାଳ କଥା ଯାଇ ହେବ ଢେଙ୍କାନାଳେ", "ଗଡ଼ୁଆ ଗଙ୍ଗା ମନ ତତ୍ତ୍ୱ କଲେ", "ଦୁହିତା ଦୁଇ କୁଳକୁ ହିତା ବା ଦୁଇ କୁଳକୁ ପିତା", "ମହତ ଗଲେଟି ଭଲେ ନ ଆସଇ ଆଉ", "ନେଉଳର ତୋରାଣି ଯିବ କହୁଣୀକି ବୋହି", "ଝିଙ୍କିକା ମାରିଣ ବଣି ପୋଷିବା କର୍ମ", "ତେଲିଆ ମୁଣ୍ଡରେ ତେଲ ଢାଳିବା ବିଧି", "ସାହସରେ ମରି, ସାହସେ ଘର ଦୁଆର କରି", "ବାଲୁଆ ନନା, ଘର ପୋଡ଼ିଗଲା ପଛକୁ ଅନା" ପ୍ରଭୃତି ଧମନୀର ରକ୍ତ ପରି ତାଙ୍କ କବିତାରେ ପ୍ରବାହିତ ହେଉଛି । କୌଣସି କୌଣସି ସ୍ଥାନରେ ଲୋକଗୀତକୁ ସେ ନିଜ ଗୀତ ପରି ଲେଖିଯାଇଛନ୍ତି । ଜାଣି କରି ହେଉ ବା ଅଜଣାରେ ହେଉ, ଏହା ଅନୁକୂଳ ଅତିଥି ପରି ପ୍ରବେଶ ଲାଭ କରି ତାଙ୍କ କବିତାର ମାଧୁର୍ଯ୍ୟ ବହୁ ପରିମାଣରେ ବଢ଼ାଇ ଦେଇଛି ।

ପଲଙ୍କେ ଅଇଲା ଗୁଡ଼ ସୁନ୍ଦର ଫରୁଆ
କଏ ଚୋର କରନେଲା ସିନ୍ଦୂର ଫରୁଆ ?
ମୋ ସୁନ୍ଦର ଫରୁଆଟି ନେଲା ରଜାପୁଅ

× × × ×

ରଜାପୁଅ ରହିବ ବୋଲି ଦେଉଳ ତୋଳାଇଲା
ଦେଉଳ ଚୂଳ ପିଠିଯାକ କଉଡ଼ି ମଣ୍ଡାଇଲା
କଡ଼େ କଉଡ଼ି ଊଣା ହେଲା କନ୍ୟା ମୂଲାଇଲା ।
କନ୍ୟା ହାତରେ କାଚଯୋଡ଼ିକ ଝୁଣୁଝୁଣୁ ବାଜେ
ବୋଉ ହାତରେ ସୁନା ପଇଡା ଖଣ୍ଡେ ଦୂରକୁ ସାଜେ ।
(ନାନାବାୟା ଗୀତ)

ବାଡ଼ିତଳେ କ କ ଫୁଲ ଅରୁଆ ମରୁଆ
ବାଡ଼ିଆଡ଼େ ଗୁଡ଼ ଅଇଲା ସିନ୍ଦୂର ଫରୁଆ ।
ସିନ୍ଦୂର ଫରୁଆ ଗୋଟି କୁଆ ଚେଡ଼ିପୋ ନେଲା
କୁଆ ଚେଡ଼ିପୋ ହାତଗୋଡ଼ ଦେଉଳ ତୋଳାଇଲା ।
ଦେଉଳର ଚୂଳପଟେ କଉଡ଼ି ଗଣାଇଲା ।
କଉଡ଼ିରୁ କଡ଼େ ଊଣା ହେବାରୁ ମଇଁଷି ବିକେଇଲା ।

× × × ×

କନିଆର କାଚ ହମୁଠି ଝୁମୁରୁ ଝୁମୁରୁ ବାଜେ
ବରର ପଇତାଟି ତାର ଦୁଧ ସ୍ତନକୁ ସାଜେ ।
"ପଲ୍ଲୀ ଝରଣା" ପୃ ୧୧୯

ଗାଉଁଲି ଗୀତ ଭଙ୍ଗୀରେ ପ୍ରକାଶ କରିବା ନନ୍ଦକିଶୋରଙ୍କ କାବ୍ୟ ସ୍ୱତ୍ୱ । ତାଆର ସହଜ ସରସ ସାବଲୀଳ ପ୍ରବାହ ପଲ୍ଲୀର ଅନ୍ତଃସଲିଳା ଫଲ୍‌ଗୁ ସେ ଗ୍ରହଣ କରିଛନ୍ତି । ଗାଆଁର ହଳିଆ, ନାଉରିଆ, ପାଟୁଆ, ଦଣ୍ଡନାଟୁଆ ତାଙ୍କର ଯଥାର୍ଥ କାବ୍ୟଗୁରୁ, ରାଧାନାଥ ବା ମଧୁସୂଦନ ନୁହନ୍ତି । କାବ୍ୟର ଗମ୍ଭୀର ଗହନ ପରିବେଶ ତ୍ୟାଗ କରି ସେ ଆସି ପହଞ୍ଚିଛନ୍ତି ଗାଆଁରେ, ଯେଉଁଠି ପିଲାଏ ଗୀତ ଗାଉଛନ୍ତି—

ଜହ୍ନିଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା
ଗୁଣ୍ଡୁଚି ମୂଷା କହିଯାଇଛି ଗୁହଳ ମୁଠିଏ ରଖିଥା ।

ଉଡ଼ିଗଲା ରେଣ୍ଡାଳିଆ ପଡ଼ିଗଲା ଗୁଇ
ଆସୁଛନ୍ତି ଗଜାମୁଖ ଖଞ୍ଜଣି ବଜାଇ ।

ଅନେକ ଗାଉଁଲି ଗୀତର ପ୍ରଥମ ଧାଡ଼ି ପରି ନନ୍ଦକିଶୋରଙ୍କ କବିତାର ପ୍ରଥମାଂଶ ଅର୍ଥହୀନ, କିନ୍ତୁ ଶିଶୁର ଦନ୍ତୁରିତ ହସ ପରି ମଧୁର । ଅତି ସହଜରେ ଏହା ମନରେ ଛପି ହୋଇଯାଏ, ଆଉ ଲିଭେନି । ଏଥିରେ ଗଭୀରତା ବା ଗମ୍ଭୀରତା ନାହିଁ, ଚକିତ ଢେଉ ଉପରେ ଚନ୍ଦ୍ରିକାର ଶୃଙ୍ଖଳା ଅଛି । ସଲଗ୍ନତା ନଥିଲେ ହେଁ କୌଣସି ପରିବେଶର ଛବି ଏହା ଚିତ୍ତପଟରେ ଅଙ୍କନ କରେ । ଶତ ଖଣ୍ଡକାବ୍ୟ ମହାକାବ୍ୟ ମାନସଜଗତରୁ ତିରୋହିତ ହୋଇଅଛି, ତାହା ଗଭୀର ଭାବରେ ମନ-ମାଟିରେ ଚେର ଧରି ନଥିଲା ବୋଲି । କିନ୍ତୁ ସେ ନିରର୍ଥକ ସୃଷ୍ଟି ଯୁଗ ଯୁଗ ଧରି ଅବ୍ୟାହତ ଭାବରେ ରହି ଆସିଅଛି ।

"ଉଞ୍ଚ ପରବତ କୁହୁଁକୁହୁଁକା, ତହିଁରେ ବସିଛି ଚିନାମଞ୍ଜିକା
ସାଖି ପଗୃରଲା ଶୁଆରେ କେଉଁ ଦାଣ୍ଡରେ ଯିବା ?
ମାଳିଘର ଖଟୁଲିରେ ଯେ ବାଉଁଶର ପାଚିଆ ।"

କବି ଗାଉଁଲି ଗୀତ ପରି ଗାଉଁଲି କାହାଣୀଗୁଡ଼ିକ ବି କବିତାରେ ରୂପାୟନ କରିଛନ୍ତି । କଥା କହିବା ପୂର୍ବରୁ ବୁଢ଼ୀମାଆ ଯେପରି କହେ—କିସ କଥା—ବେଙ୍ଗୁଲି କଥା ଇତ୍ୟାଦି, କବି ସେହିପରି ଲେଖିଛନ୍ତି—

କିସ୍ କଥା କଥା କିସ୍ ସେ ରାଜାପୁଅର କଥା
ହୁଁ ଭରୁଥିବୁ ଶୁଣିବୁ ହାତେ ରଖିଣ ମଥା ।

ତାପରେ ଆଉ ପଦ୍ୟରେ—ସୁଖ କହିବି କି ଦୁଃଖ କହିବି, ନା ଯାହା ଅଙ୍ଗେ ନିଭେଇଛି ତାହା କହିବି ? କବି ସେହି ଭାବକୁ ଅବିକୃତ ରଖି ବ୍ୟବହାର କରିଛନ୍ତି । ତାପରେ ସାଧବ ପୁଅ କଥା, ବୁଢ଼ୀ ଅସୁରୁଣୀ କଥା, ଚମ୍ପାବତୀ ରାଜକନ୍ୟା କଥା ପଦ୍ୟ ଆକାରରେ ଗାଉଁଲି ଲୋକ କହିବା ଭଙ୍ଗୀରେ ଲେଖି ଯାଇଛନ୍ତି ।

କବିଙ୍କ ନାନାବାୟାର ଶିଶୁ ଏକ ଗାଉଁଲି ଶିଶୁ, ପ୍ରକୃତିର ପିଲା । କୁଆ, ବଣି, ବାୟା, ପାରା, କଜଳପାତିଆ, ପୁଚି, ଚୁଟିଆମୂଷା ପ୍ରତି ତାର ବିଶେଷ ଆଗ୍ରହ, ସେ କୁଆହାତରେ ବିଦେଶୀ ବାପା ପାଖକୁ ଖବର ଦିଏ, ଝିଙ୍ଗୁଡ଼ିଧରି ଛତୁ ତୋଳେ, ବାଇଆ, କୋକମିନାକୁ ଡରେ, ଲିଲ୍ ଗୁଲୁ ଗୁଲୁ ଓଳିପାଣିରେ ଖେଳେ, ଧୋ-

ବାସ୍ନା ଗୀତ ଶୁଣି ଶୁଏ । ପଲ୍ଲୀକବିଙ୍କ ପଲ୍ଲୀକବିତା ଓ ଗାଉଁଲି ଗୀତ, ଶବ୍ଦ-ଯୋଜନା ଓ ବିଷୟବସ୍ତୁ ସଂଯୋଜନା ଦିଗରୁ ପ୍ରାୟ ଏକ ।

ନନ୍ଦକିଶୋର ବର୍ଷାର କବି, ସେ ବର୍ଷାପଲ୍ଲୀର ସକଳ ସୌନ୍ଦର୍ଯ୍ୟ ଓ କର୍ମ-ତତ୍ପରତାରେ ସଂଜୀବିତ, ବାଲ୍ୟସ୍ମୃତିରେ ସୁମଧୁର । କାକୁଡ଼ି, କଖାରୁ ପତରରେ ବର୍ଷାପାଣିର ଟପ୍ ଟପ୍ ଶବ୍ଦ, ବେଙ୍ଗୁଲି ଗୁଣୀର କେଁ କଟର ତାଙ୍କ ଚିତ୍ତରେ ଆଣେ ଶୃଙ୍ଖଳା, ବାହାରେ ବର୍ଷା, ଅନ୍ତରରେ ନିବିଡ଼ କାବ୍ୟରସ । ସେ ନିଜେ ହୁଅନ୍ତି ପଲ୍ଲୀ ରଙ୍ଗମଞ୍ଚର ପ୍ରଧାନ ନାୟକ—ମୁଖେ ମୁଖେ ଦିଅନ୍ତି ବାଣୀ, ପଲ୍ଲୀର ଦ୍ୱିତୀୟ ବିଧାତା ପରି । ଫକୀରମୋହନ ଯେପରି ଗଳ୍ପ ଉପନ୍ୟାସରେ, ନନ୍ଦକିଶୋର ସେହିପରି ପଦ୍ୟରେ ଯଥାର୍ଥ ଗଣସାହିତ୍ୟ ସୃଷ୍ଟି କରି ଯାଇ ଅଛନ୍ତି । ସେ ପଲ୍ଲୀର ପ୍ରକୃତିକୁ ମାନବାୟିତ ଓ ମାନବକୁ ନିଃସର୍ଗାୟିତ କରିଛନ୍ତି, ଜୀବନ ଓ ପ୍ରକୃତିରୁ ସେ ପାଇଛନ୍ତି ବିଷାଦ ଓ ବିଷାଦରୁ ଆନନ୍ଦ । ଏହି ଆନନ୍ଦ ତାଙ୍କ କାବ୍ୟଜୀବନର ଉତ୍ସ ।

●

# ମୁଁ କାହିଁକି ଲେଖକ ହେଲି ?

ଜୀବନର ଶେଷ ଅଧା; ମନ ବୁଢ଼ା, କଲମ ବି ବୁଢ଼ା । ଲେଖି ଲେଖି ଯେତେ କାଗଜ ସାରିଛି, ଅକ୍ଷରର ଗାରେ ଗାରେ ଯେତେ କାଳି ନଗାଡ଼ିଛି, ଘୋରି ଘୋରି ଯେତେ କଲମ ମୁଣ୍ଡା କରିଛି, ଯେତେ ସମୟ ବରବାଦ୍ କରିଛି, ତାର କଳନା କରି ପାରୁନାହିଁ । କାହିଁକି ?

ବାବୁ, ମୋତେ କାହିଁକି ପଚାରୁଛ ? ଡାକ୍ତରକୁ ପଚାରୁ ନାହଁ, ସେ କାହିଁକି ଡାକ୍ତର ହେଲା ? ଇଞ୍ଜିନିୟରକୁ ପଚାରୁ ନାହଁ, ସେ କାହିଁକି ଇଞ୍ଜିନିୟର ହେଲା ? ମନ୍ତ୍ରୀଙ୍କୁ ପଚାରୁନାହଁ ସେ କାହିଁକି ମନ୍ତ୍ରୀ ହେଲେ ? ସବୁହିକୁ ପଚାରୁ-ନାହଁ, ସେ କାହିଁକି ଯାହାର ରଜା ହେଲା ?

ସେମିତି ଡାକୁକୁ ପଚାର, ସେ କାହିଁକି ଡକେଇତ ହେଲା ? ଷଣ୍ଢକୁ ପଚାର, ସେ କାହିଁକି ମାରଣା ହେଲା ? କୁକୁରକୁ ପଚାର, ସେ କାହିଁକି ବାଇଆ ହେଲା ? ଏମାନଙ୍କଠାରୁ କ'ଣ ଉତ୍ତର ପାଇଲ ? ତାପରେ ମୋତେ ପଚାରିବା ଲାଗି ତୁମର ଦାବୀ ଗ୍ରାହ୍ୟ ହେବ । ନଇଲେ ବୁଝିବି, ମୋତେ ଶସ୍ତା ପାଇଲ ବୋଲି ଏମିତି ଗୋଟାଏ ଅଡ଼ୁଆ ପ୍ରଶ୍ନ କରିବାକୁ ସାହସ କରୁଛ । କଉ ବାବୁ, ମୁଁ କ'ଣ ତୁମର ଖାଏ, ତମଠୁ ଧାରେ, ନା ତମ ବାଡ଼ିବାଡ଼ିରେ ପଶୁଛି, ନା ତମ ଦପ୍ତରରେ ଚାକିରି କରିଛି ? କୈଫିୟତ୍ ମାଗିବା ମାତ୍ରେ ତରତର ଦେଇଦେବି !

ମୁଁ କାହାର ନୁହେଁ, ବାବା ! ଗୋଟାପଣେ ମୋ ନିଜର । ମନ ହେଲା ତ ଲେଖିଲି, ନ ହେଲେ କାଗଜ ଚିରି କୁରୁକୁଟା କରି ହାଓ୍ୱାରେ ଉଡ଼ାଇ ଦେଲି । କାଳି ଢାଳିଲି, କଲମକୁ ମୁଣ୍ଡା କଲି; ନ ହେଲେ ଖର୍ଚ୍ଚି ଗୁଣ୍ଡା କଲି । ମନ ହୋଇଥାନ୍ତା ତ ନାଚଥାନ୍ତି, ହସିଖେଳି ଜୀବନଟା କଟେଇ ଦେଇଥାନ୍ତି । ଏ ହେଲା, ସେ ନ ହେଲା ତ କଣ କରିବା ? ଏମିତି କେତେ ପ୍ରକାରର କେତେ ଜୀବନ ଚାଲିଛି ।

ଆରେ ମନ, ତୁ ଯେଡ଼େ ତୋ ପ୍ରଭୁ ତେଡ଼େ । କେଡ଼େ ହୋଇ ତୁ ବ୍ୟାପିଛୁ ଆକାଶ ପାତାଳ, ଭୂବନମଣ୍ଡଳ, ତୋ ପ୍ରଭୁଙ୍କୁ ବି ଘୋଟିଇଚୁ ଚଉଦ ଭୁବନ ସେପାରେ ।

ତୁ ମୋର ପକ୍ଷିରାଜ, ତୁ ଟାଣିଲୁ ତ ମୁଁ ବୁଲିଲି ଗାଆଁରୁ ଗାଆଁ, ଗୋଟିଏ ନୂଆ ଯୁଗର ଚକୁଳିଆ ପଣ୍ଡା ପରି । ସେ କିଛି ନ ମାଗି ବି ବହୁତ ପାଏ । 'ଦେଇଥିଲେ ପାଇ' ବୋଲି ତତ୍ତ୍ୱ ଶୁଣାଏ । ସେଥିରେ ମୁଁ ବିଶ୍ୱାସ କରେ ନାହିଁ, କାରଣ ମୁଁ କାହାକୁ କିଛି ଦେଇନାହିଁ, ସବୁ ପାଇଛି । ପ୍ରକୃତି ନବ ନବ ଦୃଶ୍ୟର ଯବନିକା ମୋ ସାମ୍ନାରେ ଖୋଲି ଦେଇଛି, ରଙ୍ଗୀନ୍ ସନ୍ଧ୍ୟାର; ଚନ୍ଦ୍ରିକା ରଜନୀର, ନିଃଶବ୍ଦ ମଧ୍ୟାହ୍ନର । ମଣିଷର ବାହାର ଚେହେରାର, ଭିତର ଆଟୁଘରର କେତେ ବିଚିତ୍ର ଚିତ୍ରପଟ ଆଙ୍କି ହୋଇଯାଇଛି ମୋର ମନରେ ।

ଭାବି ଭାବି କେତେ ବିନିଦ୍ର ରଜନୀ କଟିଛି, ଲେଖି ଲେଖି ହାତ ଘୋଳା-ବନ୍ଧା କରିଚି, କଦମ୍ ପକାଇ ବୁଲିଲାବେଳେ ଗୋଡ଼ ବେଦମ୍ ହୋଇଚି । ଅଣ୍ଟା ପିଠି ସଳଖିଲା ବେଳକୁ ତୁମେ ପଚାରୁଛ, ମୁଁ କାହିଁକି ଲେଖେ ?

ମୁଁ ନିଜକୁ କେବେ ଏ ପ୍ରଶ୍ନ ପଚାରି ନାହିଁ । ତୁମେ କାହିଁକି ପଚାରୁଚ ? ତୁମେ କ'ଣ ଜାଣ ନାହିଁ ପ୍ରଶ୍ନ ପଚାରିବା କେଡ଼େ ସହଜ, ଉତ୍ତର ଦେବା କେଡ଼େ କଷ୍ଟକର । ପ୍ରଶ୍ନ କରିବାକୁ ସାର୍‌ଙ୍କ ତୁଣ୍ଡ ଖଲଖଲ ; ପ୍ରଶ୍ନଟା ଦେଖୁ ଦେଖୁ ଛାତ୍ରର ମୁଣ୍ଡ କେମିତି ଟଣକି ଉଠେ, ଗୋଡ଼ ଦାଉଁ ଦାଉଁ ପଡ଼େ, ଶୂନ୍ୟ ମନରେ ସେ କେମିତି କଡ଼ ବରଗା ଗଣି ବସେ, ସେକଥା କ'ଣ ପ୍ରଶ୍ନକର୍ତ୍ତାଙ୍କ ଗୋଚର ? ପୁସ୍ତକକୀଟଗୁଡ଼ାକ ସିନା ବହି କୁଣ୍ଢେଇ ବସିଥାନ୍ତି, ଅସଲ ଭଲ ପିଲା ଯେ ଖୋଲା ହାଓ୍ୱାରେ ବୁଲାବୁଲି କରି ସ୍ୱାସ୍ଥ୍ୟ ଜମାନ୍ତି, ସିନେମା ଥିଏଟର ଦେଖି ବଜାର ହାଟରେ ଚକ୍କର ଦେଇ ସାଧାରଣ ଜ୍ଞାନ ହାସଲ କରୁଥାନ୍ତି, ଦରକାର ବେଳେ କର୍ମରେ ଆସିବ ।

ହଇଏ ଗୁଣିଜ୍ଞ ଆପଣେ, ଗୋଟା ରାମାୟଣ ଶୁଣିଲା ପରେ ପଚାରୁଚ— ସୀତା ମାଈ ନା ଅଣ୍ଡିରି ?

ହଇହୋ, ମୋତେ ଚିହ୍ନାଇବା ଲାଗି ଯୋଉ ବାଇଗେଣି କଡ଼ା ପ୍ରଶ୍ନ ପଚାରିଚ, ମୋର ଏତେ ଲେଖାରୁ କ'ଣ ତାର ଜବାବ୍ ପାଇନାହଁ ? ମୁଁ କ'ଣ ମନ କଥା ଆଚ୍ଛାମତେ ଖୋଲି କହି ପାରିନାହିଁ ? ଯଦି ସାତ କାଣ୍ଡ, ଅଠର ପର୍ବ ଲେଖି ଉତ୍ତର ଦେଇ ପାରିନାହୁଁ, ଏବେ ପାରିବି ବୋଲି ଭାବୁଚ କାହିଁକି ?

ଲେଖାଲେଖିକୁ ଏକ ବ୍ୟବସାୟ ବିଚାରିଚ କି ? ଏତେ ଏତେ ଲାଭଜନକ ପନ୍ଥା ଖୋଲା ଥିଲାବେଳେ ଏ ଫୋକ୍‌ମାରି ବେଉସାରେ ପଶିଲି କାହିଁକି ? ଏଥିରେ ତ ମନ୍ଦ କବି ଯଶପ୍ରାର୍ଥୀ ବହୁ, ଯଶ ଲାଭରେ ଈର୍ଷୀ, ଅସହିଷ୍ଣୁ ବହୁ । ଧୂଆଁପତରିଆ, ଗମଛା, ଗୁପ୍‌ଚୁପିଆ ଗନ୍ଧ ବହୁ । କେତେ ଅନର୍ଥରେ ଅର୍ଥପ୍ରାପ୍ତି ଘଟେ କହିବୁ ।

ଗୋଟାକ ପରେ ଗୋଟାଏ ସାମ୍ରାଜ୍ୟ ଜୟ କରୁଥିବା ବେଳେ ପଛଆଡ଼ୁ ଉଇ ଖାଇଯାଏ, ଅଭାବ ପରେ ଅଭାବ ଜମି ଏକ ହାସ୍ୟକର ପାହାଡ଼ ସୃଷ୍ଟି କରେ । ବଗିଚାରେ ଫୁଲ ଫୁଟେ ବହୁତ, ପୋଷଣାହାରୀ ଫଳ ଶୂନ୍ । ବିଜୁଳି ଚମକେ, ଘଡ଼ଘଡ଼ି ମାରେ, ଚଡ଼ଚଡ଼ି ବି ପଡ଼େ ବହୁତ । କିନ୍ତୁ ବାରିପାତ ନାସ୍ତି । ଆହେ ବନ୍ଧୁବର, ଲୋକକଲ୍ୟାଣ ଲାଗି ବହୁ ଚିକ୍କଣିଆ ରାଜପଥ ଖୋଲି ଥିଲାବେଳେ ଏ ଏ ନୁଖୁରାମାଖରା, କଣ୍ଟାଝଣ୍ଟାଭରା ଅବାଟରେ, ଅମଡ଼ାବାଟରେ ଗଲ କାହିଁକି ? ଏମିତି କେତେ ପ୍ରଶ୍ନ ମନରେ ଉଠିବାରୁ ବୋଧେ ଏ ଗଣ୍ଡିଆ ପ୍ରଶ୍ନଟି ପଚାରିଛ । ଗୋଟେ ସିଧାସଳଖ ଉତ୍ତର ପାଇଯିବ, ଭାବିଚ ? 'ଯେଷାକୁ ତେଷା' ବୁଝିଲେ ତମ ତୋଖଡ଼ ପ୍ରଶ୍ନର ମୁଁ ଗୋଟିଏ ଝକୁଟା ଉତ୍ତର ଦେଇପାରନ୍ତି । ହେଲେ କାହିଁକି ? ତରୁରୁ ତୃଣ, ଜୀବରୁ ନିର୍ଜୀବ ମୁଁ କାହାକୁ ଅବଜ୍ଞା କରେ ? ଯଦି କାହାକୁ ନକରେ, ତୁମକୁ କରିବି କାହିଁକି ? ସାହିତ୍ୟରେ ଶିଷ୍ଟର ସ୍ଥାନ ଯେତିକି, ଅଶିଷ୍ଟର ସ୍ଥାନ ତ ତାଠାରୁ ଊଣା ନୁହେଁ ! ତୁମେ ତ ମହତରେ ମହତ, ତୁମେ କାହିଁକି ଅବଜ୍ଞାର ପାତ୍ର ହେବ ?

ବର୍ଷ ପରେ ବର୍ଷ ଲେଖି ଆଙ୍ଗୁଠି ବଣ୍ଡି ହୋଇଗଲେ ବି କେହି ବାସି ମୁହଁରେ ଟିକିଏ ପଚାରେ ନାହିଁ । କଥା ଅଛି—

'ଜିଅନ୍ତେ ନ ଦେଲୁ ତୁଣ୍ଡେ
ଦେଲେ ଦେବୁ ବେଣା ମୁଣ୍ଡେ ।'

ଜିଅନ୍ତେ ଗୋଟିଏ ହେଲେ ଅଭିନନ୍ଦନ ଗ୍ରନ୍ଥ ଦେଇ ସୁଖପଚାରିଟିଏ କରାଯାଏ ନାହିଁ, ମଲ ପରେ ହୁଏ ମହା ଅଡ଼ମ୍ବରରେ ଶୋକସଭା, ଯେତେ କିଛି ଥିଲ ନ ଥିଲ ଗୁଣକୀର୍ତ୍ତନ, ବେଣାମୁଣ୍ଡକୁ ହୁଏତ ସ୍ମରଣିକାଖଣ୍ଡିଏ ମିଳିଥାଏ ।

ବାବୁ, ବହୁତ ବୁଲେଇଲି, ଭୁଲେଇଲି; ମନ ଊଣା କର ନାହିଁ । ତୁମକୁ ସାଧୁବାଦ ଦେବାର କଥା; କୁତ୍ସା ହଉ, କଣା ହଉ, ନାକରା ହଉ କି କାଙ୍କରା ହଉ, ଟ୍ରେପରା ହୋଇ ହଉ, କି ଗମାତରେ ହଉ, ତୁମେ ଗୋଟେ ପ୍ରଶ୍ନ କରିଚ । ଜାଣ, ଭଲ ମାଷ୍ଟ୍ରେ ଛାତ୍ରଙ୍କ ପ୍ରଶ୍ନକୁ ପସନ୍ଦ କରନ୍ତି, ବେଳେବେଳେ ଛାତ୍ର ପ୍ରଶ୍ନଟାଏ ଆସି ପହଞ୍ଚି ଯାଏ । ତାକୁ ବାଆଁରେଇ ବା ବାଗେଇ ଉତ୍ତର ଦେବାକୁ ହୁଏ । ତୁମେ ଛାତ୍ର ନୁହଁ, ପରୀକ୍ଷାରେ ପଡ଼ିବାର ସମ୍ଭାବନା ନ ଥିବା ପ୍ରଶ୍ନ ଛାତ୍ର କ୍ୱଚିତ୍ ପଚାରେ । ତୁମେ ଛାତ୍ର ନୁହଁ, ଛାତ୍ର ମୁଣ୍ଡରେ ଏତେ ଭାରି ଭାବନା ପଶେ ନାହିଁ । ତୁମ ପ୍ରଶ୍ନରେ ତ ସହାବସ୍ଥାନ, ସହମତ, ସହବ୍ରତ, ସମଭାବନା ଓ ସମବେଦନା ପୂରି ରହିଛି । ଠିକ୍ କି ବେଠିକ୍ ଯାହାହେଉ,

ତୁମକୁ ଗୋଟାଏ ଉତ୍ତର ଦେବାକୁ ହେବ । ନହେଲେ ଲେଖକର ଅସୌଜନ୍ୟ, ଲେଖକ ହମ୍‌ବଡ଼ା ବୋଲି ଗୋଟାଏ ଅଭିଯୋଗ ହେବ । ସାହିତ୍ୟିକ ସାମାଜିକ, ସୁଜନ, ସଜ୍ଜନ ନୁହେଁ, ଗୋଟାଏ ଗୋଠଖଣ୍ଡିଆ, ନୁଶୁଛଣା ବୋଲି ଧାରଣା ଜନ୍ମିବ ।

ଖବୁଚ, ମନେ ମନେ ବହୁତ ଗାଳି ଦେବଣି । ହେଲେ ଗୋଟିଏ କଥା ମନେ ରଖ—କଲମଟା ଲଙ୍ଗଳ ନୁହେଁ—ଏ ବହୁତ ଅରମା ଚଷେ, ଧାରେ ଧାରେ ସିଆଡ଼କୁ ଚାହିଁ ଚାଲେ ନାହିଁ, କଣ ବୋଲି କ'ଣ ଗାରେଇ ଯାଏ । ପଦେ ଉତ୍ତର ଦେବ ବୋଲି ମତେ କେତେ ଭୂଆଁ ବୁଲିବାକୁ ହେଲା, କଆ ଗୋହିରୀରେ ପଶି କେତେ ଲହୁଲୁହାଣ ହେବାକୁ ହେଲା ! ଓଃ, ମୁହଁଟାକୁ ବଚକଟିଆ କରୁଚ କାହିଁକି ? ଏତେ ଅଧୈର୍ଯ୍ୟ ହେଲେ ଚଳିବ ? ତୁମେ ଟିକିଏ ସମଧର୍ମୀ ନହେଲେ ମୋର ଉତ୍ତରଟା ପାଣିଧାର ପରି ପୁଙ୍ଗା ବାଲିରେ ପଡ଼ିଯିବ, ବୁଝିଲ ? ହଉ, ଯାହା ତ ହେଲା ହେଲା, ଏବେ ଶୁଣ ମୋ ଉତ୍ତର—ମୁଁ କାହିଁକି ଲେଖେ, ଜାଣେ ନାହିଁ—ମାନେ, ଧାନଟି ଭିତରେ ଚାଉଳଟିଏ ।

ଉତ୍ତରଟା ପାଇ ବୋଧେ ଭାବିଥିବ—ବହ୍ୱାରମ୍ଭଃ ଲଘୁ କ୍ରିୟା, ମାନେ ହାତୀ .....ଫୁସ୍ ।

ଆହେ ବୁଝିଲ, ମୁଁ ଖବିଚାରି କିଛି ହୋଇନାହିଁ । ହଉଁ ହଉଁ ଯାହା ହୋଇଗଲି । ମୁଣ୍ଡରେ କଣ୍ଠାର ମୁକୁଟ ପିନ୍ଧିବାକୁ ହେବ କି ଫୁଲ ପାଖୁଡ଼ା ଝଡ଼ିବ, କିଛି ଜାଣି ନ ଥିଲି । ଅନ୍ଧାମୁନିଆ ମାଡ଼ିଗଲି; ଆବୁଖାବୁଡ଼ିଆ ରାସ୍ତାରେ କଚଡ଼ାର ପଡ଼ାଉଠା ଭିତରେ ବୁଝିଲି, ନୂଆ ବାଟ ଖୋଲିବାରେ ଆନନ୍ଦ ଅଛି । ମତେ ଭଲ ଲାଗିଲା ବୋଲି ମୁଁ ଲେଖକ ହେଲି । କାହିଁକି ଭଲ ଲାଗିଲା ଅବଶ୍ୟ କହିପାରିବି ନାହିଁ ।

ତୁମେ କ'ଣ କହିପାରିବ, ଲମ୍ବୁର ତିକ୍ତତା, ମିଷ୍ଟାନ୍ନର ମଧୁରତା, ଫୁଲର ମହକ, ପ୍ରୀତିର ଦହନ ତୁମକୁ କାହିଁକି ଭଲ ଲାଗେ ?

ଲେଖକ ହେବାର ଏଇ ଅସଲ କଥାଟା ଭଲ ଲାଗିବାରେ ହିଁ ଅଛି । ଯଶ ପ୍ରତିଷ୍ଠା ଲାଭ, ଅର୍ଥ ବା ଅମରତ୍ୱ ଲାଭ ତା ତୁଳନାରେ ନିତାନ୍ତ ଗୌଣ । କେହି ଲୁଖୁରୁ ମୁହଁରେ ନ ପଚାରିଲେ, କେବେ ଯଜ ହଯ ମୁହଁରେ ସଙ୍ଖୁଳି ନ ନେଲେ, କି ଫଟା ପାହୁଲାଟାଏ ନ ମିଳିଲେ ବି ଲେଖକ ଲେଖେ । କାରଣ ସେଥିରେ ପ୍ରାଣର ମୁକ୍ତି, ଆତ୍ମାର ଶାନ୍ତି । ସୃଷ୍ଟିର ଉଲ୍ଲାସ ବା ପୁଲକରେ ପ୍ରାଣର ସବାଂଶ ଫୁଟିଗଲା ପରି ଲାଗେ, ଆଲୋକର ଗୋଟାଏ ଜୁଆର ମନରେ ପଶିଗଲା ପରି

ବୋଧ ହୁଏ । ଫାଟି ପଡ଼ ବା ଫୁଟି ପଡ଼, ଲେଖା ବା ଅଙ୍କା ଭିତରେ ତାହା ସମ୍ଭବ ହୁଏ ।

ପୃଥିବୀର ସବୁ ଦୁଃଖଯନ୍ତ୍ରଣା ଆତ୍ମସ୍ଥ କଲା ପରି ଲାଗେ । ଭାଗି ଭାଗି ମନ, ଢ଼ାଳିଦେଲେ କି ବୋହିଗଲେ ହିଁ ରକ୍ଷା । ଆତ୍ମମୁକ୍ତିରେ ଆତ୍ମରକ୍ଷା ସମ୍ଭବ ।

କବି ବା ଲେଖକ ମୁଣ୍ଡରେ ଏଇ ଦୁଃଖର ବୋଝ ନିଦ ଧିଏ କିଏ ? କେହି ନିଦେ ନାହିଁ, କି କୁହୁକ ବଳରେ ନିଦ ହୋଇଯାଏ ନାହିଁ । ଏ ଲଦିନକୁ ଆପଣା କାନ୍ଧକୁ ଟେକି ନେବା ତାର ପ୍ରକୃତି । ସ୍ୱାଭାବିକ ପରପ୍ରାଣତା ଯୋଗୁଁ ଏପରି ହୁଏ । ଆତ୍ମସୁଖ ବା ଆତ୍ମଦୁଃଖ ଅପେକ୍ଷା ବିଶ୍ୱ ସୁଖଦୁଃଖରେ ସେ ଅଧିକ ପ୍ରେରିତ ଓ ପ୍ରାଣିତ ହୁଏ ।

କେତେ ବୋଝ ବା ଭାର ବୋହିବାର ଶକ୍ତି ତାର ଅଛି, ସେ ଅଟକଳି କରି ବସେ ନାହିଁ କି ନିଜ ଉପରେ କଟକଣା ଜାରି କରେ ନାହିଁ । ସଂସାରର ସବୁ ଦୁଃଖ ତାର । ଦୁଃଖର ଅନ୍ତରଙ୍ଗ ବନ୍ଧୁ ସେ । ଉଦାରଭାବେ ପ୍ରସାରିତ ପ୍ରାଣରେ ଭରିନିଏ ଯାବତୀୟ ଶୋକୋଚ୍ଛ୍ୱାସ ଓ ଅଶ୍ରୁଧାର ।

ପୃଥିବୀରେ ଯେତେ ଘଟଣ ଅଘଟଣ ଘଟେ, ସାମ୍ବାଦିକ ତାକୁ ଲୋକ-ଲୋଚନକୁ ଆଣେ । କିନ୍ତୁ ଲେଖକ ତାକୁ ରସାଳ ରୂପ ଦେଇ ଲୋକ ମନରେ ଏକ ସ୍ଥାୟୀ ଆସନ ଅଧିକାର କରେ । କେହି ପ୍ରେରଣା ଦେଉ ବା ନ ଦେଉ, ପୋଷକତା କରୁ ବା ନକରୁ, ପ୍ରତିଭାରେ ପ୍ରେରିତ ହୋଇ ସେ ଲେଖେ । ବିଶ୍ୱର ଯାବତୀୟ ଜଟିଳ ସମସ୍ୟା ଯତେ କି ତାର ବ୍ୟକ୍ତିଗତ ସମସ୍ୟା । ସବୁ ଘରର ଦୁଃଖ ଯେପରି କି ତାର ଏକାନ୍ତ ଘରୋଇ; ସବୁ ମନକୁ ମନାଇ ଯତେ ଯେପରି ସେ ଆପଣାର କରିଛି ! ପ୍ରାଣର ପ୍ରସାର ତାର ଦିଗ ଦିଗନ୍ତବ୍ୟାପୀ; ଜଣେ କିଛି—ନଥିଲା ସେ, କିନ୍ତୁ ପ୍ରାଣରେ ତାର ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ଭରି ।

ପ୍ରବଳ ଦୁର୍ବଳ ଉପରେ ଅତ୍ୟାଚାର କରେ, ମାଲିକ ମୂଲିଆ ବା ମଜଦୁର ପ୍ରତି କ୍ରୂର ବ୍ୟବହାର କରେ । ନାରୀ ଧର୍ଷିତା ହୁଏ; ଧନୀ ଦରିଦ୍ର ଉପରେ ଅଧିକାର ଜାରି କରେ । ଏ ସବୁର ପ୍ରତିକାର ନ୍ୟାୟାଳୟରେ ହୋଇପାରେ, ନ ପାରେ । କିନ୍ତୁ ଲେଖକ ଭାଷ୍ୟର ଇଙ୍ଗିତ ଦିଏ । ସେ ଜଗତର ବିବେକ; ତାର ବାଣୀ ହିଁ ସର୍ବମାନ୍ୟ ବିବେକ ବା ଈଶ୍ୱରଙ୍କ ବାଣୀ ।

ଯେତେ ସଭ୍ୟ, ଶାଳୀନ ଦିଶିଲେ ବି ପଶୁତା ମଣିଷ ଭିତରେ ଦୃଢ଼ ଆସନ ଜମାଇ ବସିଛି । ଏଇ ପଶୁତାକୁ ହଟାଇ ମାନବତାର ପ୍ରତିଷ୍ଠା କରିବା ଲେଖକର

କାର୍ଯ୍ୟ । ଏଇ ଭାବରେ ଲେଖକ ସଂସ୍କୃତିର ରକ୍ଷକ, ମନୁଷ୍ୟର ଗତିପଥରେ ଅଗ୍ର-ମଶାଲଧାରୀ ।

ଲେଖକ କେବଳ ଜଣେ ଜୀବୀ ନୁହେଁ, ସେ ଜୀବନଜୀବୀ, ଜୀବନର ଯାବତୀୟ ମୂର୍ଚ୍ଛନା ଧରି ରଖେ ତାର ପ୍ରାଣର ବୀଣା, ସେହି ବୀଣା ଯେବେ ପରିପକ୍ୱ ହାତରେ ସ୍ୱାଭାବିକ ଗତିରେ ଝଙ୍କୃତ ହୁଏ । ସେତେବେଳେ ଜୀବନ ଉଦ୍ଦୀପ୍ତ ହୁଏ, ଉନ୍ନତ ମସ୍ତକରେ ଅଗ୍ରଗତି କରେ ।

ପ୍ରଶ୍ନର ଉତ୍ତର ଦେଇପାରିଲି କି ନାହିଁ, ଜାଣେ ନାହିଁ । ନ ଦେଇ ପାରିଲେ ଗ୍ଲାନି ନାହିଁ । ଫେଲ୍ କଲେ କରି, ଭୟ ନାହିଁ, ପାସ୍ କଲେ ଯଦି ବା ଜୀବନସାରା ସୁଖୀ ହୋଇ ଆସିଛି । ଜୀବନର ଶେଷ ଭାଗରେ ବି ପାସ୍ ଫେଲ୍ ଉପରକୁ ମୁଁ ଯାଇ-ପାରିନାହିଁ, ଆଶ୍ଚର୍ଯ୍ୟ, ଗୁରୁଜୀବନ କାହିଁ କେତେ ଦୂରେ ରହିଲେ ବି ।

ଲେଖାଲେଖି ବେଳେ ମୋର ଖିଆଲ ବଡ଼ । ସମ୍ରାଟ ଢଙ୍ଗ୍‌ରେ ମୁଁ ଲେଖେ, ନାନା ଦୁଃଖ ଦାରିଦ୍ର୍ୟ ମଧ୍ୟରେ ତାକୁ ଅକ୍ଷତ, ଅବ୍ୟାହତ, ଅବିଚଳିତ ରଖି । ଧନ କ୍ଷମତାର ମାୟା ମରୀଚିକାରେ କେତେ ଲେଖକ ସେ ଖିଆଲ, ମହତ ବା ନିଜତ୍ୱ ରକ୍ଷା କରିପାରନ୍ତି ନାହିଁ ।

କେହି କେହି ତାକୁ ବନ୍ଧା ପକାନ୍ତି, ସ୍ଥୂଳ ମୂଲ୍ୟରେ ବିକ୍ରୟ କରିଦିଅନ୍ତି । ସ୍ୱାଭିମାନ ବା ଆତ୍ମସ୍ୱାଧୀନତା ରକ୍ଷା କରି ପାରନ୍ତି ନାହିଁ । ବହୁ ଝଡ଼ଝଞ୍ଜା ମଧ୍ୟରେ ମଙ୍ଗ ସମ୍ଭାଳି ନୌକାଟି ସୁରୁଖୁରୁରେ ଚଳାଇନେବା କେତେ କଷ୍ଟସାଧ୍ୟ, ତାହା ଅନୁଭବସିଦ୍ଧ ଲେଖକ ବୁଝେ । ପ୍ରଲୋଭନର ବିଷାକ୍ତ ଜ୍ୱାଳାରେ କେତେ ଅନ୍ଧ ହୋଇ ଯାଆନ୍ତି, କେତେ ମୂର୍ଚ୍ଛିତ ବା ନିଷ୍କ୍ରିୟ ହୋଇ ପଡ଼ନ୍ତି । ସବୁ ଗରଳ ଜୀର୍ଣ୍ଣ କରି ନୀଳକଣ୍ଠ ପରି ପ୍ରଚଣ୍ଡ ଶକ୍ତିଶାଳୀ ହୋଇ ରହିବନ୍ତି ମାତ୍ର ଜଣେ ଅଧେ ସ୍ୱୟଂସିଦ୍ଧ; ମୃତ୍ୟୁଞ୍ଜୟ ସେ, ସର୍ବମାନ୍ୟ ।

ଲେଖକର ଜୀବନ ବଡ଼ କଠୋର ଜୀବନ । ଭୋଗ ବିଳାସରେ, ଆମୋଦ ଆହ୍ଲାଦରେ ସେ ଜୀବନ ଯାପନ କରି ପାରେ ନାହିଁ । ବିଶ୍ୱଜୀବନ ରକ୍ଷା ଲାଗି ସେ ସ୍ୱଜୀବନକୁ ତିଳ ତିଳ ବଳି ଦିଏ । ବହୁ ଉତ୍ପାତ ଦୁର୍ବିପାତରୁ ନିଜକୁ ରକ୍ଷା କରିବା ଲାଗି ସେ ଦୁଃସହ କଠୋରତା ବରଣ କରେ, ମୃଣ୍ମୟ ଜୀବନ ଦେଇ ଲାଭ କରେ ଚିରନ୍ତନ ଜୀବନ ।



# ଖଇରୀ ଚରିତମ୍

ଖଇରୀ ବାଘୁଣୀ ଚରିତ ଏ ସଂସାରରେ କାହାକୁ ଅବିଦିତ ? ଜାତିରେ ବ୍ୟାଘ୍ର, ଉଚ୍ଚ କୁଳକୁ ଶୁଦ୍ଧି ଶୀଳ ଅଛି, ଶରୀର ଥାଟ୍ ଅଛି, ଠାଣି ଅଛି । ତାଙ୍କର ପ୍ରଚଣ୍ଡ ଶକ୍ତି ଅଛି, ନିଃଶବ୍ଦ ଗତିରେ ଗୁରୁ ଗାମ୍ଭୀର୍ଯ୍ୟ ଅଛି । ବନ୍ୟଙ୍କ ନମସ୍ୟ, ଗଣ୍ୟମାନ୍ୟଙ୍କ ମହାମାନ୍ୟ, ଭକ୍ତମାନଙ୍କ ପ୍ରୀତିଭାଜନ । ତାଙ୍କ ଗର୍ଜନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅର୍ଥ ଅଛି, ସ୍ତମ୍ଭୀଭୂତ ହୋଇ ସମସ୍ତେ ମାନି ନିଅନ୍ତି, ମୂଲ୍ୟ ଦିଅନ୍ତି, ଯଥାମାନ୍ୟ ଦୂରତା ବି ରକ୍ଷା କରନ୍ତି ।

ତାଙ୍କ ଆଦ୍ୟ ନିବାସ ଘନ ଅରଣ୍ୟଭରା ଶିମିଳିପାଳ ପର୍ବତମାଳା । ଏବେ ମନୁଷ୍ୟ ସହିତ ତାଙ୍କର ଗାଢ ପ୍ରୀତି, ଖୋଲମେଲରେ ମନମଉଜରେ ସେ ଆତଜାତ ହୁଅନ୍ତି, ହେପାଜତରେ ବଢ଼ନ୍ତି; ଚିଡ଼ିଆଖାନାର ଅର୍ଦ୍ଧଭୁକ୍ତ, ଶୁଷ୍କମୁଖ ଜନ୍ତୁ ପରି ବ୍ୟଙ୍ଗଭାଜନ ନୁହନ୍ତି, ସର୍କସ୍ ଯନ୍ତ୍ରାର ଭୀତତ୍ରସ୍ତ କଏଦୀ ଜନ୍ତୁ ପରି ବିରକ୍ତ ନୁହନ୍ତି । ବ୍ରେକ୍‌ଫାଷ୍ଟ୍‌କୁ ମିଳେ ଦଶ ଲିଟର ଦୁଧ, ପାଞ୍ଚକିଲୋ ବିସ୍କୁଟ୍ । ସେହି ଅନୁକ୍ରମେ ରାଜଯୋଗ୍ୟ ଲଞ୍ଚ୍, ଡିନର୍ ।

ଆଶ୍ରମରେ ମୁନିଋଷିଙ୍କ ତପସ୍ୟା ପ୍ରଭାବରେ ହିଂସ୍ର ଜନ୍ତୁ ଅହିଂସ୍ର ହୁଅନ୍ତି । ଏଠି ତପସ୍ୟା ନାହିଁ । ସ୍ନେହାଦର ଓ ସେବା ପ୍ରୀତିରେ ବ୍ୟାଘ୍ର ଆଦିମ ହିଂସ୍ରତା ଭୁଲିଯାଇଛି । କ୍ଷୁଧା ନ ହେଉଣୁ ଭୋଜନ, ତୂଳିତଳ୍ପରେ ଶୟନ, ପଛେ ପଛେ ଜୀବନୀକାର ବୁଲି ପ୍ରତି ମୁହୂର୍ତ୍ତର ଚରିତ୍ର ଚଳଣି ଟିପୁଛି । ଚୌଦିଗରେ ସ୍ମରଣ ଓ ଶୃଟୁକାର ଘେରି ଫଟୋ ନେଉଛନ୍ତି । ଘୋର ଦୁର୍ଦ୍ଦାନ୍ତ ଜନ୍ତୁ ମାର୍ଜାର ପରି ପୋଷା ମାନିଛି—ସାରା ବିଶ୍ୱର ଏକ ବିସ୍ମୟ ।

ଜୀବନସଂଗ୍ରାମ ନାହିଁ, ପ୍ରତିଯୋଗୀମାନଙ୍କ ସହ ପ୍ରତିଯୋଗିତା ନାହିଁ, କ୍ରୋଧର ହେତୁ ନାହିଁ, ହତ୍ୟାର ପ୍ରୟୋଜନ ନାହିଁ । ଶାନ୍ତ ଶୃଙ୍ଖଳିତ ଜୀବନ ।

ଏଇ ମହାକାୟ ମହାବଳ ଶ୍ରୁର ଏକ ଶ୍ୱାନ ଦଂଶନରେ ପ୍ରାଣ ତ୍ୟାଗ କଲା ! ବିଶ୍ୱର ଏହା ଆହୁରି ଏକ ବିସ୍ମୟ, ବ୍ୟାଘ୍ର ଜାତିର ଅପଖ୍ୟାତି ।

ରଙ୍ଗ ଖଇରିଆ ନୁହେଁ, ତଥାପି ତା ନାମ ଦିଆ ହୋଇଥିଲା ଖଇରୀ, ଯେପରି ଗୌରବର୍ଣ୍ଣ ବ୍ୟକ୍ତିର ନାମ କୃଷ୍ଣ ହୋଇଥାଏ ।

ମୋ ଖଇରୀ ଲୁହେଁ କାଳିଆ, ଲୁହେଁ କଣରୀ, ଧୂସରୀ; ଗାଈଟିଏ । ଅକାଳରେ ମାଲିକାଣୀର ଅନାଦରରେ ସେ ବୁଢ଼ୀ । ବରଡ ଅବସ୍ଥାରେ ସେ କିଛି ହେଲେ ଖାଇବାକୁ ଦେଉନାହିଁ । ଏଠିସେଠି ଆହାର ଖୋଜି ନ ପାଇ ଭୋକ ବିକଳରେ ଅଳିଆଆବର୍ଜନା ଖାଇ ଛେରି ହୋଇ ହୋଇ ତା କଙ୍କାଳ ଗଣି ହେଲି । ଟିକିଏ ପାଣି ଆଶାରେ ଘୁଷୁରି ଘୁଷୁରି ଯାଇ ପୋଖରୀ କୂଳରେ ପଡ଼ିଲା । ଜ୍ୟେଷ୍ଠ ଖରାରେ ପଡ଼ି ଶୁଖି ଶୁଖି ଶୁଖୁଆ ହୋଇଗଲା । ଶେଷକୁ ଶୁଖିଲି କଳା କିଭଟା ପଦାକୁ କାଢ଼ି ଡଙ୍କ ମୋଡ଼ି ଦେଲା । ମଡ଼ା ଉଠାଇବାରେ ଖର୍ଚ୍ଚାନ୍ତ ହେବାକୁ ପଡ଼ିବ ବୋଲି ମାଲିକାଣୀ ମନା କଲା—ଏ ମୋ ଗାଈ ଲୁହେଁ । ପଛ କଥା ମନେପକାଇଲେ ବୁଝାଯାଏ ଯେ ଏ ଭିରି ପୋଷା ମାନିଥିଲା, ଲାଗୁଆଙ୍କ ଦୁଆରକୁ ଯାଇ ସେ ଗାଈ ଦୁହିଁ ଦେଉଥିଲା, ଗାଈବାଛୁରୀ ତା ପଛେ ଗୋଡ଼ାଉଥିଲେ । ଏ ଦୁଆରେ ଲିଟରେ, ସେ ଦୁଆରେ ଅଧଲିଟରେ ଦୁହାଁ ହେବାରେ ତାର ବିରକ୍ତି ନଥିଲା । ପ୍ରାକୃତିକ ଶୀତରେ ସେ ଦ୍ୱାରେ ଦ୍ୱାରେ ବୁଲି ଦୁଧ ଦେଉଥିଲା ।

ଖଇରୀର ଇତିହାସ ମୋଟାମୋଟି ସବୁ ହଡ଼ା ବଳଦ ଓ ବୁଢ଼ୀ ଗାଈଙ୍କର ଇତିହାସ । ଶୁଖିଲି ମାଛି ଗୃହ୍ଣୁ ଗୃହ୍ଣୁ ଜାଅନ୍ତେ ଠେଙ୍ଗ ଉପରେ ବସି ଡ଼ାମରା କୁଆ ହାଣୁଥିଲେ ବି, ମୋଡ଼ା ମୋଡ଼ା ସାତ ଗଣ୍ଠିଆ ଲାଞ୍ଜୁଡ଼ିଟି ଉଠାଇ ମାଛି ଉଡ଼େଇ-ବାକୁ ତାର ବଳ ପାଏ ନାହିଁ । ସେତେବେଳେ କୃଷ୍ଣାପାଣି ଟୋପିଏ ବି କେହି ମୁହଁ ପାଖକୁ ଆଣି ଦିଏ ନାହିଁ । ବୃଦ୍ଧ ବିକଳାଙ୍ଗ ମଣିଷଙ୍କ ଲାଗି କରୁଣା ଆଶ୍ରମ ଖୋଲି ହେଲା ପର ସେମାନଙ୍କ ଲାଗି ଗୋଶାଳାଟିଏ ଖୋଲା ହୁଏ ନାହିଁ । ଏମିତି ତହଳବିକଳ ହୋଇ ମରୁଥିବା ଗାଈଗୋରୁଙ୍କୁ ଜଡ ଜଡ ଦେଖି ଅଭ୍ୟସ୍ତ ଆଖି ଉଦାସୀନ ରହେ । ଅଥଚ ସିଧା ହାଣ ମୁହଁକୁ ନେଲାବେଳକୁ ବହୁ ଧର୍ମାତ୍ମା ଗର୍ଜନ କରି ଉଠନ୍ତି—ଗୋହତ୍ୟା ମହାପାପ ! ଗୋରୁର ଲୋମେ ଲୋମେ କୋଟି କୋଟି ଦେବତା ବାସ କରନ୍ତି ' ଅଥଚ ଭୋକରେ ଶୁଖି ମରୁଥିଲାବେଳେ ଗୋଟିଏ ହେଲେ ଦେବତା ଓହ୍ଲାଇ ଆସି ମୁହଁରେ କେରିଏ କଅଁଳ ଘାସ ବା ଢ଼ୋକେ ପାଣି ଦିଏ ନାହିଁ ।

ହାଣ ମୁହଁରୁ ମୁକୁଳାଇ ଏ ଗୋରୁଗାଈଙ୍କି ବାସ ଓ ଗ୍ରାସ ଯୋଗା ଯିବ କିପରି ? ସହରରେ ଟିକିଏ ହେଲେ ପଦା, ଅପନ୍ତରା ବା ପଡ଼ିଆ ବାଡ଼ି ନାହିଁ । କୋଠା ଉପରେ କୋଠା, ପିଚୁରାସ୍ତା, ଗୋଟିଏ ଶାଗୁଆ ପତ୍ର ହେଲେ କୋଉଠି ନାହିଁ—ଯାହା ଅଛି ରାସ୍ତା ଦଧାରରେ—ସେ ହସ୍ତାନ୍ତ ହସ୍ତାନ୍ତ ଗଛ; ପାଚେରୀ ଘେରା

ହୋଇ ବଗିଚ୍ଚ କିଛି ଅଛି, ଗେଟ୍‌ରେ ତାଲା । ମୁହଁ ବଢ଼େଇବାର ଉପାୟ ନାହିଁ । ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଭିତରେ ସହସ୍ର ସଂଖ୍ୟାରେ ଗୋରୁଗାଈ ମରନ୍ତି । ଏ ନିତିଦିନିଆଁ ଦୁର୍ଘଟଣାରେ ଧର୍ମାତ୍ମାମାନଙ୍କ ଆଖିରୁ କେତେ ଲୁହ ଝରେ ? ଝରିଲେ ବି ତା ପଛରେ ଦାୟିତ୍ୱବୋଧ ନଥିଲେ ଏ କୁମ୍ଭୀର କାନ୍ଦଣାର ମୂଲ୍ୟ କ'ଣ ?

'ଗରଜିଲା ମେଘ ବରଷେ ନାହିଁ', ସେମିତି ସମବେଦନାହୀନ ଶୂନ୍ୟଗର୍ଭ ଗର୍ଜନର କି ମୂଲ୍ୟ ? ଏହା କ'ଣ ସେମାନଙ୍କୁ ଅନାହାର ଓ ଅଖାଦ୍ୟଜନିତ ମୃତ୍ୟୁ ମୁଖରୁ ରକ୍ଷା କରି ପାରିବ ? ଏକାଥରେ ମରିବା ଅପେକ୍ଷା ଆସ୍ତେ ଆସ୍ତେ ମରିବା କପରି ଧର୍ମଭାବର ପୋଷକ, ତାହା ବୁଝିହୁଏ ନାହିଁ । ତୁଣ୍ଡେ ତୁଣ୍ଡେ ଏ ଦେଶର ବହୁ ଧର୍ମ ଚଳଣି । ମିଠା କଥା କହିବାରେ ହାତରୁ ବାଜେ ନାହିଁ; କିନ୍ତୁ ସ୍ୱାର୍ଥହାନି ଘଟୁଥିଲେ କଥାର ରୂପରଙ୍ଗ ବଦଳି ଯାଆନ୍ତି ।

ଅଧିକାଂଶ କଟକୀ ଗାଈଗୋରୁଙ୍କର ସ୍ଥିର ବାସ ବା ଗ୍ରାସ ନାହିଁ; ବାରବୁଲା; ଝଡ଼ବର୍ଷା ହେଲେ ସ୍କୁଲ ପିଣ୍ଡାରେ, ତା ପଦାଡ଼ରେ ଆଶ୍ରୟ ନିଅନ୍ତି, ନୋହିଲେ ପ୍ରକୃତିର ନିପୀଡ଼ନ ନୀରବ ଦୁଃଖରେ ସହନ୍ତି, ନିରାଶ୍ରୟ ଭାବେ ରାସ୍ତା ମଝିରେ ଏକ କରୁଣ ଦୃଶ୍ୟ ହୋଇ ।

ଶିଲ୍ ପ୍ରସାଦର ଘର ସବୁ ନିବୁଜ ହୋଇଥିବା ବେଳେ ଗାଈମାନେ ରାସ୍ତା ଓଗାଳି ଶୁଅନ୍ତି, ବାଟରେ ଘାଟରେ ଜନ୍ମ କରନ୍ତି । ଧର୍ମଭୀରୁ ଗାନ୍ଧିଙ୍କ ପରି ସହସ୍ର ଗାଈ ଖୋଜି ଯାଏ ନାହିଁ କି ତାର କୌଣସି ତତ୍ତ୍ୱ ନିଏ ନାହିଁ । କେବଳ ଜନମ କରିବା ଖବର ପାଇଲେ ସେ ଘରକୁ ଅଡ଼ାଇ ନିଏ, ପେଜ ତୋରାଣି ମୁହେଁ ବା କୁଟାପୁଳେ ଦିଏ । ଦୁଧ ବିକି ଲାଭ ପାଉଥିବା ଯାକେ ଆଦର ଯତ୍ନ; ବରଡ଼ ହେବା ମାତ୍ରେ ଦାଣ୍ଡକୁ ତଡ଼ି ଦିଏ—ଯା, ନିଜ ପେଟ ନିଜେ ପାଳ୍, ପୁଣି ଜନମ କରିବା ଯାକେ । ସେ ଅରକ୍ଷିତାଣୀ ପରି ବଚ୍ ରାସ୍ତାରେ ବୁଲେ । ଓଳେଇ ସ୍ୱଭାବର ହୋଇଥିଲେ କାହା ଫସଲକିଆରି ବରବାଦ୍ କରେ, କାଞ୍ଜିଆ ହୋଦାରେ ପଶେ । ଖାଦ୍ୟାଭାବରୁ ଶୁଖି ଶୁକୁଟା ହେଲା ପରେ ନିଲାମ୍ ହୁଏ । ଏ ସମ୍ବାଦ ମାଲିକକୁ ଗୋଚର ହୁଏ ବା ନ ହୁଏ ।

ଉଦାସିଆଙ୍କୁ ବାଦ୍ ଦେଲେ ଅନ୍ୟମାନେ ରାସ୍ତାରେ ବୁଲି ଛିଣ୍ଡା କାଗଜ, ଅସଣା କନା, ଛିଣ୍ଡା କତରା, ମୁଣ୍ଡି ଗ୍ରୁଞ୍ଜୁଣି, ଅଳିଆମଳିଆ ଗିଳି ଢେଦର ପରି ପେଟଟା ଭର୍ତ୍ତି କରନ୍ତି । ନଇଲେ ବଜାରରେ ବୁଲି ବୁଲି ପୋଚୁ ଆଳୁ, ବାଇଗଣ, କୋବି ପତର ଖାଆନ୍ତି । ଦୋକାନକୁ ମୁହଁ ବଢ଼ାଇଲେ ଥୋମଣିରେ ଠେଙ୍ଗୁଣି ମାଡ଼ ବସେ । ଜନ୍ମରୁ ଉପରଖିଆ, ଉପରମୁହାଁ, ଏମାନେ ଚରି ଜାଣନ୍ତି ନାହିଁ,

ସହରରେ ବରଳ ଘାସ ବା କଞ୍ଚା ପତ୍ରଟିଏ ସାଉଁଟିବା ଲାଗି ଯେଉଁ ଧୈର୍ଯ୍ୟ ଆବଶ୍ୟକ, ତାହା ସେମାନଙ୍କର ନାହିଁ ।

କଟକୀ ଗୋମାହାତ୍ମ୍ୟ ନିଆରା । କଥା ଅଛି—

ପର ବଳଦ ପରଶିଙ୍ଘା
ତା ବୋହୁଥାଏ ନରସିଂହା ।

ଗାଈଙ୍କୁ ଖୋଇବା ଦାୟିତ୍ୱ କଟକର ନରସିଂହାମାନଙ୍କର, ଦୁହିଁବା ଦାୟିତ୍ୱ କେତେଜଣ ସ୍ୱାର୍ଥସର୍ବସ୍ୱ କଟକୀଙ୍କର । କଥା ଅଛି—

'ଭୋଜନଂ ଯତ୍ର କୁତ୍ରାପି ଶୟନଂ ହଟ୍ଟ ମନ୍ଦିରେ
ମରଣଂ ଗୋମତୀ ତୀରେ ଅପରଂ କିଂ ଭବିଷ୍ୟତି ।'

କଟକୀ ଗୋରୁଗାଈଙ୍କ ପ୍ରତି ଏହା ପ୍ରଯୁଜ୍ୟ । ସେମାନେ ଏଠି ସେଠି ଖାଆନ୍ତି, ରାସ୍ତା ଭେକ ଶୁଅନ୍ତି, ଗୋମତୀ ନୁହେଁ, ମହାନଦୀ ବା ନାଳନର୍ଦ୍ଦମା ତୀରେ ମରନ୍ତି ।

ପରଉପରଷିଆଙ୍କର ଉପରଠାଉରିଆ କଥା, ମଉଗଜ ଗୁଲ । କଥାର ଭିତରେ ପଶିବାର ଦକ୍ଷତା ସେମାନଙ୍କର ନ ଥାଏ, କାହା ପ୍ରତି ସମବେଦନା ବି ନ ଥାଏ । ସେମିତି ଉପରମୁହାଁ କଟକୀ ଗାଈ । ସେ ଭିଡ଼ରେ ଧସେଇ ପଶେ, ମଣିଷ ପାଦକୁ ଦଳି ଚକଟି ଗୁଳିଯାଏ, କଣାଲୀଙ୍କ ହାତରୁ ବ୍ୟାଗ୍ ଭିଡ଼ି ନିଏ । ଆହାରରେ କିଛି ବାଧା ଉପୁଜିଲେ, ମଣିଷକୁ ଶିଙ୍ଘରେ ଟେକି କଚାଡ଼ି ଦିଏ । ବଜାରର ପ୍ରକୃତି ତାର ହାଡ଼େ ହାଡ଼େ ପଶିଛି, ଆପେ ବଞ୍ଚିଲେ ବାପର ନାମ, ସେ ବୁଝିଛି । ଅନ୍ୟ କିଏ ମରୁ, ସରୁ ତାର ଭାବନା ନାହିଁ । ସାଆନ୍ତ ବା ସାଆନ୍ତାଣୀଙ୍କର ମଣିଷପଣ ବନ୍ଧକ ଉଠି ଥିଲେ ହେଲେ ଏଇ ଉଦଣ୍ଡୀମାନଙ୍କୁ ମାନବିକ କରିପାର ନାହିଁ, ଯେମିତି ନିବିଡ଼ ସ୍ନେହଶ୍ରଦ୍ଧାଯୁକ୍ତ ଗ୍ରାମରେ ଘଟିଥାଏ, ଗାଈକି ଡାକିଲେ ଗାଈ 'ଓ' କରେ, ଭୋକ ହେଲେ ଖାଇବାକୁ ମାଗେ ।

ଗୁହାଳଯୋଗ୍ୟ ଘରବଖରାକୁ କଟକୀ ଭଡ଼ା ଲଗାଏ । ତାର କେହି ନାହିଁ, ମୁଠାଏ ଆହାରର ଭରସା ନାହିଁ । ଗାଈ ଅନାଥିନୀ ହୋଇ ବୁଲେ । ସହରରେ ନାମକୁ ମାତ୍ର ଗୋଗୋଷ୍ଠ, ପରସ୍ପର ସହିତ ଅସମ୍ପୃକ୍ତ । ବାର ଜାତି ତେର ଗୋଲ ସବୁ । ତେଣୁ କେହି କାହାକୁ ସ୍ନେହରେ ଗୃହେ ନାହିଁ । ବରଂ ଠେଲାଠେଲି, ମରାମରଟା ବେଶୀ ଦେଖାଯାଏ । ଯେଝା ଉଦର ପୂରଣରେ ସେ ବ୍ୟସ୍ତ । ମୂତ୍ର-

ପୃଷ୍ଠପରେ କର୍ଦ୍ଦମାକ୍ତ ରାସ୍ତାକୁ ମେଦାମେଦା ଗୋବରରେ ଏମାନେ ଅଧିକ ଅଗମ୍ୟ କରନ୍ତି । ଯାନବାହନର ଗତି ରୋକି ଶୋଇଲେ ବି କେହି ପାଟି ଫିଟାନ୍ତି ନାହିଁ । ରୋଟଭିକ୍ଷାର୍ଥୀ ଏପରି କେତେ ଅନ୍ୟାୟ ପାର୍ କରୁଥିବାବେଳେ ଏହିଭଳି ଏକ ତୁଚ୍ଛ କାରଣରୁ ସହରର ମୁଣ୍ଡିଆଳମାନଙ୍କର ବିରକ୍ତିଭାଜନ ହେବେ କାହିଁକି ?

ଅଣ୍ଡିରି ବାଛୁରି ଚୂଲର ଚମଡ଼ା ଟିକିଏ ଝୁଲୁଥିଲେ କଟକୀ ସ୍ଥୂଳବୁଦ୍ଧିରେ ବୁଝନ୍ତି—ଏ ଖୋଦ୍ ମହାଦେବଙ୍କର । ବଡ଼ହେଲେ ଏ ହଳ କରିବେ ନାହିଁ, ପାଞ୍ଚଣ ପାହାରଟିଏ ପିଠିରେ ବସାଇବାକୁ କେହି ସାହସ କରିବେ ନାହିଁ । ଏ ଜଣେ ଜବରଦସ୍ତ ଭିକାରି । ଦୁଆର ଆବୋରି ଠିଆହେବେ, ଜମିଦାରଙ୍କ ପିଆଦା ପରି । କିଛି ନ ଖାଇଲେ ଯାଦେ ଚଳିବେ ନାହିଁ । ପେଟ ପୂରିବା ଲାଗି ବହୁତ ଖାଦ୍ୟ ଲୋଡ଼ା । ମହାଦେବଙ୍କ ସୁଖାସନ ଲାଗି ପିଠିଟା ସମତୁଲ ରହିବା ଆବଶ୍ୟକ । ଶିବଙ୍କ ଭୟରେ ଲୋକେ ତାକୁ ଦିଅନ୍ତି । ତଥାପି ପେଟ ପୁରାଇବା ଲାଗି ସେ ସାରାଦିନ ଭିକ୍ଷା ମାଗି ବୁଲୁଥାଏ ।

ସେ ବହୁ ପତ୍ନୀବ୍ରତ । କାମାତ୍ କ୍ରୋଧୋଭିଜାୟତେ । କାମରେ ବାଧା ଉପୁଜିଲେ କ୍ରୋଧ । ଧାବମାନ ରତିଉଚ୍ଛନ୍ନ ବୃଷଭ ଓ ଗୋ ମଧ୍ୟରେ ପଡ଼ିଗଲେ ଜୀବନ ମଣିଷର ଦଫା ଶେଷ ହୋଇଯାଏ । ପ୍ରତି ଗଳିରେ ଦୁଇଚାରିଟା ଏଇ ବେକାର ପ୍ରାଣୀ, ଗୁଣ୍ଡାଙ୍କ ସହିତ ଏମାନେ ସର୍ବଦା ପଥକୁ ଶଙ୍କାସଂକୁଳ କରି ରଖିଥାନ୍ତି ।

ଘୋର ଭିଡ଼ ମଧ୍ୟରେ ବୃଷଭ ଯୁଦ୍ଧ କଟକରେ ଏକ ଅତି ପରିଚିତ ଦୃଶ୍ୟ । ଯୁଦ୍ଧକୁ ଉତ୍ତେଜିତ କରିବାକୁ କଟକରେ ଗଣ୍ଠିକଟା, ପକେଟମାର, ବାରବୁଲା, ବେକାର ଅଛନ୍ତି, ବିନା ଟିକେଟରେ ସେମାନେ ଗୋଟିଏ ଚିତ୍ତାକର୍ଷକ ଦୃଶ୍ୟ ସହରବାସୀଙ୍କୁ ଦେଖାଇ ଦିଅନ୍ତି, ନିରାପଦ ଦୂରତାରେ ଥାଇ ଆନନ୍ଦ ଆହରଣ କରୁଥିବା ଲୋକମାନେ ସେମାନଙ୍କ ପ୍ରତି କୃତଜ୍ଞ ହେବା ଆବଶ୍ୟକ ।

ଏଇ ଦୁର୍ଦ୍ଦାନ୍ତ ଜବରଦସ୍ତ ପ୍ରାଣୀ ପେଟ ପୂରିଲେ ରାସ୍ତା ମଝିରେ ଗୋଡ଼ହାତ ଲମ୍ବାଇ ଶୋଇ ସନ୍ତୋଷରେ ପାକୁଳି କରେ, ଗାଡ଼ି ପେଁ ପାଁକୁ ତାର ବେଖାତିର, ମହାଦେବଙ୍କ ତାଣ୍ଡବ ଡମ୍ବରୁ ତା କାନ ଆବ୍ଦା କରି ଦେଇଛି ।

ରାସ୍ତାକଡ଼ରେ ସବୁ ସମୟରେ ଛେଳି ମେଣ୍ଢା କଟା ହେବା ପ୍ରତି ଯେଉଁ ନଗର ପିତା, ମାତା ଓ ଅଭିଭାବକମାନେ ଆଖି ବୁଜି ଦିଅନ୍ତି, ସେମାନେ ସାମାନ୍ୟ ଗୋ ଉପଦ୍ରବ ପ୍ରତି ଭ୍ରୂକ୍ଷେପ କରିବେ କାହିଁକି ?

କେତେ ଶାସନ ଗଲାଣି । ଗୋ ଉପଦ୍ରବ ଏକ ଅନିବାର୍ଯ୍ୟ ଧର୍ମ ଉପଦ୍ରବ-ଭାବେ କ୍ରମାଗତଭାବେ ଚାଲିଛି । କଟକୀର ମାରାତ୍ମକ ଜୀବନଦର୍ଶନ ନ ବଦଳିବା ଯାଏ ଯାବଚ୍ଚନ୍ଦ୍ରାର୍କେ ଚାଲିଥିବ । ଦର୍ଶିଷ୍ଟ ଭାବେ ପୂଜା ମଣ୍ଡପର ଆଡ଼ମ୍ବର ବଢେ, ସାଇ ସାଇ ମଧ୍ୟରେ ଯୁଦ୍ଧରେ ବହୁ ଶକ୍ତି ବିନିବ୍ୟୟ ହୁଏ । କଟକ ନଗରର ସଙ୍ଗଠନରେ, ଗୋ ସେବାରେ ସେଥିରୁ କାଣିଚାଏ ଯଦି ଲାଗନ୍ତା ! ଗୋ ହିତରେ ଜଗତର ହିତ, ଏ ଗୂଢ଼ତତ୍ତ୍ୱ ଯଦି ମନରେ ପଶି ପାରନ୍ତା, ପର ଅସୁବିଧାରୁ ସୁବିଧା ଉଠାଇବା ଚେଷ୍ଟାରୁ ସେ ନିବୃତ୍ତ ହୁଅନ୍ତା ।

ଖଇରା ବାଘୁଣୀ, ଅନ୍ଧ ଗଧିଆ 'ଭଇନା'କୁ ପୋଷା ମନାଇ ସେମାନଙ୍କ ପିଣ୍ଡ ଅପର୍ଯ୍ୟାପ୍ତ ଅର୍ଥ ଶ୍ରାଦ୍ଧ କରାଯାଇ ଯେଉଁ ମୁହୂର୍ତ୍ତିକ ବିସ୍ମୟ ସୃଷ୍ଟି କରାଯାଇ ଥିଲା, କାଳଗର୍ଭରେ ତାହା ଲୀନ ହୋଇଗଲା; "ଗୋକଲ୍ୟାଣରେ ମନୁଷ୍ୟସମାଜର କଲ୍ୟାଣ" ଏ ପ୍ରାଚୀନ ମହତ୍ ତତ୍ତ୍ୱକୁ ନୂତନ ଭାବରେ ସମଜିଲେ ବହୁ ଖଇରା ଅକାଳ ମୃତ୍ୟୁରୁ ରକ୍ଷା ପାଇଯାନ୍ତେ । ଦୁର୍ବଳ ଭାରତର କ୍ଷୀଣ ଧମନୀରେ ସେହିମାନେ ହିଁ ଅପୂର୍ବ ଶକ୍ତି ଓ ତେଜ ସଞ୍ଚାର କରନ୍ତେ ।



# ଆପଣା ମହତ୍ତ୍ୱ ଆଟପ ରଖି

'ବାବୁ, ଏଡ଼େ କଥା କାହିଁକି କହୁଚ ? ମହତ ସ୍ତେଦେଇବ ନା ଗୁଣିବ, ଖାଇବ ନା ପିନ୍ଧିବ ?

କହୁଚ କ'ଣ ନା—

ସବୁ ଯାଉ, ମହତ ଥାଉ

ମହତ ଗଲେ ନ ମିଳେ ଆଉ ।

ତା ମାନେ ଘର ଯାଉ, ପୋଡ଼ି ଯାଉ, ଭଙ୍ଗି ଯାଉ, ନଇଲେ ଭସି ଯାଉ, ପୁଣି ତୋଳା ହେବ ।

ଧନ ଯାଉ, ହଜି ଯାଉ, ସ୍ତେର କି ଖଣ୍ଡ ନଉ, ଗଣ୍ଠିକଟା କି ଚଣ୍ଡିକଟା ନଉ, କିଏ ଭଣ୍ଡି ନଉ କି ଚଣ୍ଡି ନଉ, ପୁଣି ଅର୍ଜନ କରି ହେବ ।

ଦେହ ଯାଉ, ଭର୍ଜି ଯାଉ, ଶୁଖି ଶୁଖି ବଗିବଲଡା ହଉ, ଚମ ତାଙ୍କୁଣୀରେ ହାଡ଼କଙ୍କାଳ ରହୁ, ଔଷଧମଉଷଧ କଲେ, ପଥ୍ୟପାଚନ କବିରାଧାରରେ ବହୁତ ହେପାଜତ କଲେ, ଫେରି ଆସିବ, ଯୌବନ ବି ଟିକେନକେ ଉକୁଟି ଉଠିବ । ହେଲେ ମହତ ଗଲେ, ତା ମାନେ ଚରିତ୍ର ହରାଇଲେ, ତାମାନେ ମଣିଷପଣକୁ ଜଳାଞ୍ଜଳି ଦେଲେ, ସେ ଆଉ ନ ଫେରେ ନ ଫେରେ ।

ହକ୍ କଥା କହିଲେ ତମ ଭାଷାରେ ମହତ ଯେ ମଣିଷ ନଜେ ସେ । ପ୍ରାଣ ସହିତ ଗୁନ୍ଥାଗୁନ୍ଥି, ଯେମିତି ଡେମ୍ଫ ସଙ୍ଗେ ଫୁଲ, ଫୁଲ ସଙ୍ଗେ ବାସ୍ନା । ଡେମ୍ଫ ଖସିଲେ ଫୁଲ ଆଉ ରହିବ କାହିଁ ? ବାସ୍ନା ଗଲେ ଫୁଲର କି ମୂଲ୍ୟ ? ମାନ ମହତ ହରାଇଲେ ସେମିତି ମଣିଷ ଦ'କଡ଼ାର ହୋଇଯାଏ । ଜନଗଣନା ଭିତରକୁ ଆସିଲେ ବି ପ୍ରାଣ କଳନା ମୂଲ୍ୟମାନରେ ଚଳେଇଯାଏ । ତା ମାନେ ସେ ଗଣଭୁକ୍ତ, ଗଣତରେ ଗଣିତ ମୂଲ୍ୟ ପାଇଲେ ବି ନଗଣ୍ୟ ।

ତମ ଆଖି ଦେଖା ଯାହା ଦେଖୁଚ—ନକଲି; ମନଟା ଦଣ୍ଡିଦାର । ଚଉଳ ଚଉଳ ଜାଗାରୁ ଶିରୁ କାଢ଼ି ବସେ । ଏମିତି ନକ୍ଲିଟାପଣରେ ଖୋଜିଲେ ଏ ପୃଥିବୀରେ କେଉଁଟା ସଚ୍ଚା ମଣିଷ ବାହାରିବେ ?

ବେଶଭୂଷଣ ଟିପ୍‌ଟାପ୍, ଖିଆପିଆ ଧୁମ୍‌ଧାମ୍, ଗୁଜରବାଜର ଆଜ୍ଞାକୁ ଅବଧାନ, ଯାନକୁ ବାହନ, ବାହନକୁ ଲପ୍‌ଟ—ସାଙ୍ଗିକନେ ଉଠାଇ ନେଉଚି ମହଲକୁ ମହଲ ।

ବହୁ ରଙ୍ଗରେ ରଙ୍ଗୀନ୍, ବହୁ ସୁଖରେ ସୌଖୀନ୍ ସେ; ତୁମ ପରଲମଡ଼ା ଆଖିକି ସେ ଦୁଃଖୀ ପରି ଦିଶୁଚି କାହିଁକି ?

ପ୍ରଚୁର ଧନକୁ ତ ଉପଭୋଗ ସାଜେ । ହସଖୁସିର ଜୀବନ ତ ସାର୍ଥକ ଜୀବନ ।

ନୁଖୁରା ମାଖରା, ଅଳିଆ ଅସଜଡ଼ା ଜୀବନ କ'ଣ ଜୀବନକୁ ଲେଖା ?

ଲଜ୍ଜା ଢାଙ୍କିବାକୁ କଉପୁନି ଖଣ୍ଡେ ନାହିଁ, ଖଙ୍କା ପେଟରେ ଖୋଲ-ମେଲରେ ବଡ଼ ଦାଣ୍ଡରେ ପଡ଼ିଚି; ସେ କି ମହତ ରଖିବ ? ତେଣୁ ଯାହା କିଛି ମହତ ଅଛି, ତାହା ବଡ଼ ଲୋକଙ୍କ ପାଖରେ । ମହତ ପ୍ରତି ଆଖି ବୁଜି ଧନ କମାଏ ସେ, ପୁଣି ମହତ୍ତ୍ୱ କର୍ମ କରି ମହତ୍ତ୍ୱ ବଢ଼ାଏ ସେ ।

ଧନ ଜମେଇ ସାରଲେ ସେଥିରୁ କିଛି ପ୍ରାୟଶ୍ଚିତ୍ତ କରି କ'ଣ ମହତ୍ତ୍ୱ ଅର୍ଜନ କରି ହେବ ନାହିଁ ?

ଧର୍ମଶାଳା, ଗୋଶାଳା, ସ୍ୱାସ୍ଥ୍ୟଶାଳା, ଶିକ୍ଷାଶାଳା ଆଦି କରିପାରଲେ ତ ମହତ୍ତ୍ୱ ତାଲିକାରେ ତା ନାମ ପଡ଼ିଲେ ଆସେ ।

ପୂର୍ବ ଇତିହାସ ? ଦେ ଗ୍ରୁଡ଼, ଗ୍ରୁଡ଼; ହରଣ ସମସ୍ତେ ଶିଖିଛନ୍ତି, ସେ କରିଛନ୍ତି ! ଗୁଣିତକରେ ଦୁଃଖୀର ଦୁଃଖ ବଢ଼େ, ତାଙ୍କର ଧନ ବଢ଼େ । ଧନ ବଢ଼ାଇଲେ ବେଳେ କାହା ମୁହଁକୁ ଗ୍ରହିଁଲେ ଚଳେ ନାହିଁ । ସେ ଦୁଇଟି ମୁହଁକୁ ଗ୍ରହିଁଛନ୍ତି ମାତ୍ର—ଲକ୍ଷ୍ମୀ ଆଉ ପେଟ୍ସ ।

ହଇଏ ଆପଣେ, କାହିଁକି ମିଛକୁ ତଉଲି ଗ୍ରୁଲିଛ ଜଣକୁ ଜଣ—କେତେ ଲିଅମିଛ, କେତେ ଜାଲ୍ ଜୁଆଚ୍ଚୋରି, କେତେ ଫିସାଦ କାରସାଦ !

ଅଣ୍ଟରେ ତୁଳା ମେଞ୍ଚାଟାଏ ଦେଇ ଜଳ ଭଣ୍ଡାର ଧାରରେ ବଢ଼ିଆକାଙ୍କଟିଏ ପରି ବସିଥାଅ, ଥାଅ ।

ଦିନ ପରେ ଦିନ ହବିଷ୍ୟ କରି ଗ୍ରଲିଥାଅ, ମୁହଁରେ ଢରଣ ନ ଦେଇ, ଚଳେ ହେଲେ ଜଳ ଗ୍ରହଣ ନ କର । ହବିଷ୍ୟାଳୀଙ୍କର ଆର ଜନ୍ମରେ କ'ଣ ହେଉଥିଲେ ହେଉଥିବ ସିନା, ଏ ଜନ୍ମରେ କ'ଣ ? ସ୍ୱାମୀ ନା ସଂସାର ସୁଖ ଫେରି ଆସେ ?

ହଇଏ ବାବୁ, ବିବେକ ବାଣୀ ମାନି କାର୍ଯ୍ୟ କରିବାରେ ତୁମର ଆନନ୍ଦ, ମାନେ ବିବେକାନନ୍ଦ—ମୋ ଆଡ଼କୁ ଦାନ୍ତ କଟମଟ କରି ଚାହୁଁଚ କାହିଁକି ? ମୁଁ କ'ଣ ବ୍ୟକ୍ତିଗତଭାବରେ ତୁମ ଧନ ଖାଇଚି, ନା ତୁମଠୁ ଧାରିଚି ?

ହଇଏ, ପଇସା ହାତକୁ ଆସିଲା, ପାଟି ଟକ୍ ଟକ୍ ହେଲା, କିଛି ପେଟକୁ ପକେଇ ଦେଲି, ଦେଶ ଆଖିରେ ଧୂଳି ଦେଇ ହାତମୁହଁ ଫେଇ ତ ଚାଲିଛି ସବୁଆଡ଼େ; ମୋ ଉପରେ କଡ଼ରସ କାହିଁକି ? ଭୋଜନବିଦ୍ୟା ନ ଜାଣିଲେ ଭୁଜକୁ କ'ଣ ଟାଣି କରି ହେବ ?

ବହୁତ ଲୋକ ବନଶି ପକାନ୍ତି, ମାଛ ଧରନ୍ତି ଅଳ୍ପ କେତେ ଜଣ । କିଓ, ଖାଇବାଟା କ'ଣ ସହଜ କଥା ? ନେଇ ଆସି ଥୋଇ ନ ଜାଣିଲେ କାଠଗଡ଼ାରେ ଛିଡ଼ା ହେବାକୁ ହେବ । ଜର୍ଜର ଖବରେ ଜାଣ—ମୁଁ ଇଜ୍ଜତ ବୁଡ଼େଇବା ଲାଗି ନୁହେଁ, ଇଜ୍ଜତ ବଢ଼େଇବା ଲାଗି ଖାଉଛି । ତା ମାନେ କୋଠାବାଡ଼ି, ଯାନବାହନ, ଆଡ଼ଡ଼ାଚୌଡ଼ା ଦେଖିଲେ କେହି ସନ୍ଦେହ କରିବ ନାହିଁ ଯେ ଏ ଖାଉଥିବ । ତା ମାନେ ଆକାଶଚୁମ୍ବୀ ମହଲ ଉପରେ ଗୋଟାଏ ଆକାଶ ଖୋବା ମହଲ ନ ଉଠାଇଲେ ଇଜ୍ଜତଟା ଉପରକୁ ଉଠାଇ ହବ କେମିତି ? ଇଜ୍ଜତଟା ଧୋବ ଫର ଫର ହୋଇ ପଦାକୁ ବା ଫୁଟି ଦିଶିବ କେମିତି ?

ଆମେ ବଞ୍ଚିବା ଲାଗି ଖାଉ, ଇଜ୍ଜତ ମହତ କଥା ଭୁଲିଯିବା ଲାଗି ପିଉ ।

ମୁହଁରେ ରୁମାଲ ଦେଇ ହସୁଚ କାହିଁକି ?

ଜାଣିଚ, 'ଆତୁରେ ନିୟମ ନାସ୍ତି', ଶାସ୍ତ୍ର କହେ । ମୋ ଖାଇବାଟା ମୋତେ ବେଆଇନ ନୁହେଁ । ଆତୁରବେଳେ ମୁଁ ଖାଇଛି—ପୁଣି ଖାଇଛି ଯେତିକି, ଖୋଉଛି ତତୋଧିକ । ନର୍ଲୋଭ ଖାବେ ନ ଖୋଇଲେ ସଂସାରର ମୁଖର ମୁଖସବୁ ବନ୍ଦ କରିହେବ କେମିତି ? ଏଇ ସବାଖିଆ ସ୍ବାମୀମାନେ ବେମହତକୁ ମହତ ଦିଅନ୍ତି । ଇତିହାସ, ସାହିତ୍ୟ ସର୍ବତ୍ର ସ୍ବର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯିବେ ସେଇମାନେ, ତୁମେ ଯେତେ ଖିଙ୍କାରି ହେଲେ ହେଉଥାଅ ।

ହଇଏ, ପୁରାଣ ପଣ୍ଡାଏ, କହ ତ ଶୁଣିବା, ତୁମ କଳନାରେ ମହତ କିଏ ?

ସେ କ'ଣ ରକ୍ତ ମାଂସର ଶରୀର ଧରି ଏ ସଂସାରରେ ଆତଯାତ ହୁଏ ? ନା ଏକ ମିଥ୍ୟା ସ୍ୱପ୍ନ, ଅଜବ କଳ୍ପନା ?

ମତେ ଲାଗୁଚି—ସେ ନିବୃତ୍ତିପନ୍ଥୀ, ଉଦାସୀନ, ଅପଦାର୍ଥଟାଏ । ଚରିତଟା କିଏ କାଳେ ହରଣଚାଳ କରି ନେବ, ଏଇ ଭୟରେ ସାରୁପତରେ ବାନ୍ଧି ଗଡ଼ା ଜଗି ବସିଥାଏ ।

ଆଉଁଷି ଣିଆ ଗନ୍ଧ ହେବ ବୋଲି ମାଇପୀ ମହଲରେ ପଶେ ନାହିଁ । ଆଉ ଅଖିରେ ଗୁହିଁବାକୁ ଲୋଭ ହେଲେ ବି ବଦନାମ୍ ଭୟରେ ଆଡ଼େଇ ରହେ । ଆଖିବ୍ରିଣିଆ ପ୍ରବର୍ତ୍ତକ ସେ ଡାହାଣା ପର ଆଖାଏ ନାହିଁ, ଲେଭେଡ଼ା ପର ପାଖାଏ ନାହିଁ । ସେ ବୋଧହୁଏ ଭାବେ—କାଦୁଅ ପଙ୍କରେ ପଶିବ କାହିଁକି ? ଗୋଡ଼ ଧୋଇବ କାହିଁକି ?

ଚରିତ୍ରକୁ ସେ ସାତତାଳ ପାଣି ଚଉଦ ତାଳ ପଙ୍କର ଗେଣ୍ଡାମୁଣ୍ଡିଆ ସାପପେଟର ଶାମୁକା ଭିତରେ ସାଇତି ରଖିଥାଏ ।

ଏ ଶୁଚିବାୟୁଗ୍ରସ୍ତ ମଣିଷ ପାଖରେ ମହତପଣ ରହେ କାହିଁ ? ହଇଏ, ହଜାରେ ବିଧି ନିଷେଧ, କୋକୁଆ ଭୟରେ ଯାହାର ଗ୍ରୁତି ଅନ୍ଧାରିଆ, ସେଥିରେ ମହତପଣ ଲାଗି ଆନ କାହିଁ ? ହଇକରି, ଚରିତ୍ରଟା କ'ଣ ଗୋଟାଏ ପଞ୍ଜୁରୀ ପକ୍ଷୀ, ଟିକିଏ ତାଟି ଖୋଲିଦେଲେ ମାର୍ ଉଡ଼ାଆଁ କରିବ ?

ନିଜକୁ ହରେଇବାର, ହଜେଇବାର ଭୟ କ'ଣ ତା ମନରେ ରାଜତ୍ୱ କରୁଥାଏ ?

ତାର ରାଜାର ବଳ୍ ନାହିଁ ? ପୁଞ୍ଜିପତିର ଦମାକ୍ ନାହିଁ ? ହାକିମ୍‌ର ହୁକୁମ୍ ନାହିଁ ?

ଦୁର୍ଜନ, ଦୁଷ୍ଟଚରିତ୍ର ମେଳରେ ସେ ଭ୍ରମିବାକୁ ଭୟ କରେ ? କୁଚକ୍ରୀ, ଧର୍ମଦ୍ରୋହୀର କ୍ରୂର ଅଭିଯାନ ରୋକିବାକୁ ସାହସ ନାହିଁ ତାର ?

ଯୁବତୀ ହରଣଗ୍ଭଲ୍ ବା ଗଣଧର୍ଷଣ କାହିଁକି ହେଲା ? ଶିକ୍ଷାନୁଷ୍ଠାନ ସାମ୍ନାରେ ମଦ ଦୋକାନ କାହିଁକି ଖୋଲିଲା ? ଲାଞ୍ଚ ଦେଇ କିଏ ଗ୍ଭକିରି ପାଇଲା ? ଇଜ୍ଜତ ଦେଇ କାହାର ପଦୋନ୍ନତି ହେଲା ? ଦେଶକୁ ଚିରାକାଟି, ଲୋକଙ୍କୁ ଗୋଗଛବାଡ଼ିଆ କରି କିଏ ଉପରିସ୍ଥଙ୍କୁ ଟଙ୍କାଛଣି ଧରେଇଲା, ଖଣ୍ଡ, ଡାକୁକୁ ମୋ ଲୋକ ବୋଲି କିଏ ଘଣ୍ଟ ଘୋଡ଼େଇ ରଖିଲା, ବାଟଘାଟରେ କିଏ ଛୁରି ଦେଖାଇଲେ; ଏଥି ଲାଗି ତୁମେ ମୋତେ କାହିଁକି ଦାୟୀ କରୁଛ ?

ଏ ଯୁଗର ସଭ୍ୟତା, ହୋଟେଲ ବା ମୋଟେଲ ସଭ୍ୟତା; କାଲୀ ଗାଈ ପାଇଁକି କ'ଣ ଭିନ୍ନ ଗୋଠ ହେବ ? ସବୁ ଦେଶ ଯୋଉ ବାଟରେ ଯିବେ, ଭାରତ, ଓଡ଼ିଶା ତ ସେଇ ବାଟରେ ଗ୍ଭଲିବେ ! ଯଦି ଜଣେ ଇଜ୍ଜତ ବିକିଲା, ଆଉ ଜଣେ କିଣିଲା, ପିଇପିଇ ଯଦି ଜଣେ ସର୍ବସ୍ୱ ସାରିଲା, ତା ପିଲାକବିଲା ଭିକ ଥାଳି ଧଇଲେ, ହୋଟେଲ ଯଦି ସ୍ୱଗୃହର ମର୍ଯ୍ୟାଦା, ସ୍ୱାସ୍ଥ୍ୟ ଓ ଶାନ୍ତିରେ ଆଞ୍ଚ୍ ଆଣିଲା, ସେଥିଲାଗି ସେଇ ସ୍ୱନିକର୍ମୀ ଦାୟୀ, ଭଲେଇ ହୋଇ ଯେ ବାହାରି ପଡ଼ୁଚି, ସେଇ ମହତମାନେ ଦାୟୀ । ମୋ ମୁଣ୍ଡରେ ତୁଚ୍ଛାକୁ କାହିଁକି ଅଠା ବୋଳୁଚ ?

'କୁହାମୁଣ୍ଡା କପିଳା ଯେତେ ତମେସବୁ । ଗୁଣ୍ଡରେ ଶାଣ ଦେଇ ପାଞ୍ଚ ପଚଶ ସଭାରେ ନୀତ ବଖାଣୁଛ, ଅନୀତର ଗନ୍ଧାଘର ଯେତେ । ତୁମ ହାତରେ ଲଗାମ୍; ଯେମିତ ବାଗେଇବ, ଘୋଡ଼ା ସେମିତ ଦୌଡ଼ିବ ।

ଚରିତ୍ର ତୁମର ଏକ କୌତୁକର ବସ୍ତୁ ହୋଇଛି । ନଜର ଯାହା ନାହିଁ, ଅନ୍ୟର ଗୌରବର ବସ୍ତୁ କର ତୁମେ ତାହା ରଖି ଦେବନାହିଁ । ତେଣୁ ପରର ଇଜ୍ଜତ ବା ମହତକୁ ତୁମେ କନ୍ଦୁକ ପର ଗଡ଼ାଉଛ । ଯେ ଶାସନ ଡୋରି ଧରେ, ସେ ହସ୍ତ ଯଦ ବସ୍ତ୍ର ହରଣ କରେ, ଦେଶର ଦୁର୍ଭାଗ୍ୟ ବୋଲବାକୁ ହେବ । ଯେ ବିଶୃଙ୍ଖଳାର ଅବତାର, ସେ ଦେଶରେ ଶୃଙ୍ଖଳା ରଖିପାରବ କପର ? ସ୍ୱୟଂ ଦୁଷ୍ଟଚରିତ୍ର; ଦେଶର ସଚ୍ଚରିତ୍ରର, ଭଲପଣ, ମହତମାନର ବକାଶ ଘଟାଇ ପାରବ କପର ?

କ'ଣ କହୁଚ ? ଏ ଯୁଗରେ ମହତର କ ମୂଲ୍ୟ ? ମହତ ସବୁ ଯୁଗର, ସବୁ କାଳର । ଦେଶର ମହତ ରକ୍ଷା କରବା ରାଜନୀତର କାର୍ଯ୍ୟ । ସାହିତ୍ୟ ବେମହତକୁ ଶାସ୍ତି ଦେଇ ଜୀବନର ମହତକୁ କହ୍ଲାର ପର ଫୁଟାଇ ରଖେ । ଘୋର ପ୍ରତକୂଳ ପରସ୍ଥିତରେ ଯେ ଇଜ୍ଜତକୁ ରକ୍ଷା କରପାରେ, ସେ ହିଁ ଅଗଣରେ ଗଣ୍ୟ ଓ ସର୍ବମାନ୍ୟ ହୋଇ କାଳକାଳକୁ ରହୁଯାଏ ।

ମହତପଣ ସୁନ୍ଦର, ସୁନ୍ଦର ଯେପର ଉତ୍ତୁଙ୍ଗ ହମାଦ୍ରି । ଚରିତ୍ରର ପରମ ଐଶ୍ୱର୍ଯ୍ୟ, ଯୁଗ ଯୁଗ ତପସ୍ୟାର ସିଦ୍ଧି ଦେଥିରେ ହିଁ ଫୁଟିଥାଏ । ପର୍ଣ୍ଣକୁଟୀର ଅଧିବାସୀ ବଶିଷ୍ଠଙ୍କ ପାଦତଳେ ହୀରାନୀଳା ମଣ୍ଡିତ ରାଜମୁକୁଟ ହିଁ ଲୋଟିଥାଏ । ଆତ୍ମଗର୍ବୀ ଧନକ୍ଷମତା ମଦମତ୍ତ ସେ ଗୌରବର ଅଧିକାରୀ ହୋଇପାରେ ନାହିଁ ।

ଧନ ଅଛ, ଜନ ଅଛ, ମହତ ନାହିଁ; ତାହେଲେ କଛ ନାହିଁ ।

ବହୁତ ନାହିଁ ଭତରେ କୋହିନୂର ପର ଝଟକ ଉଠେ ଭାରତର ମହତ-ପଣ, କାଳ ତାକୁ ମଳନ କର ପାରେନାହିଁ । ତାହାହିଁ ଭାରତର ଜୀବନଦର୍ଶନ । ନାସ୍ତି ମଧ୍ୟରେ ପରମ ଆନନ୍ଦ, ପରମ ଶାନ୍ତ ।

ବେଦର ଯେପର, କଛ ନ ଥିଲାର ମୁହଁରୁ ବାହାରଥିବା ଲୋକବେଦର ବାଣୀ ମଧ୍ୟ ସେହିପର—ହେ ଅମୃତ ପୁତ୍ର, ଉଚ୍ଚତମ ମହଲରେ ଥାଅ ବା ଖୋଲା ଆକାଶ ତଳେ ଘାସ ପଡ଼ିଆରେ, ମାଟି କୁଡ଼ିଆରେ ଥାଅ, ନଜ ମହତ ରଖ, ପାରୁପର୍ଯ୍ୟନ୍ତେ ଦ୍ରୌପଦୀ ପର ତାକୁ ରଖ । ତେଣିକ ନ ପାରଲେ ସୁଦର୍ଶନ ଚକ୍ର ହିଁ ତାହା ରକ୍ଷା କରବ ।



# ସୁବର୍ଣ୍ଣ କଥା କହୁଁ

ସୁବର୍ଣ୍ଣର ବର୍ଣ୍ଣ ନେତ୍ରପ୍ରୀତିକର । ଏହା ଦୁର୍ଲ୍ଲଭ; ବହୁମୂଲ୍ୟ ଧାତୁଭାବେ ଗୃହୀତ ହେବା ପରେ ଯାହା କିଛି ଲୋଭନୀୟ, ମନୋହର ଓ ଅତ୍ୟୁତ୍ତମ, ତାହା ସହିତ କବି ଏହାକୁ ତୁଳନା କରି ଆସିଅଛି । ବୈଦିକ ଯୁଗରୁ ଅଦ୍ୟାବଧି ଊଷା ଓ ପ୍ରଦୋଷ ସୁବର୍ଣ୍ଣ ପରି ଉଦ୍‌ଭାସିତ ହୋଇ ଆସୁଛି । ସୁବର୍ଣ୍ଣ ବିନା ଯେପରିକି ବର୍ଣ୍ଣନା ଅଚଳ । ତଳେ କବିବର ରାଧାନାଥଙ୍କର କେତୋଟି ପଦ ଉଦ୍ଧୃତ ହେଲା—

‘ମଧୁର ଗୋଧୂଳି ସମୟ
ସ୍ୱର୍ଣ୍ଣ କିରଣ ବୋଳା’
‘ଡୁବନ୍ତ ଦିନାନ୍ତେ ତପ୍ତ ହେମ ଛବି
ଦୂର ଦେବାଦ୍ରୀର ଶିରଶୃଙ୍ଗେ ରବି ।’

‘ଭାସମାନ ଚକ୍ର ରବି ବିମ୍ବ ଦେଖି
ଏ ଭାବ ଆସେ ଅନ୍ତରେ
ବିରଞ୍ଚି ରଚିତ ସୁବର୍ଣ୍ଣ ବ୍ରହ୍ମାଣ୍ଡ
ଭାସିଇ କିବା ସାଗରେ ?’

ସନ୍ଧ୍ୟାର ହ୍ରଦ ତରଳ ସୁବର୍ଣ୍ଣରେ ଭରା । ନଦୀରେ ସୁବର୍ଣ୍ଣ ସ୍ରୋତ ପ୍ରବାହିତ । ପକ୍ଷୀର ପକ୍ଷ ଉପରେ ପୀତ ଅସ୍ତାତପ ପତିତ ହେଲେ ସୁବର୍ଣ୍ଣ ମଣ୍ଡିତ ହେଲ ପରି ଦିଶେ । କର୍ଣ୍ଣିକାରର ହେମଗୌର ତନୁ ମନ ମୁଗ୍ଧ କରେ । ବର୍ଣ୍ଣ ପ୍ରକର୍ଷ ସତ୍ତ୍ୱେ କର୍ଣ୍ଣିକାର କବି କାଳିଦାସଙ୍କ ଚିତ୍ତ ହରଣ କରିବାକୁ ସମର୍ଥ ହୋଇ ପାରିନାହିଁ । କାରଣ ଏହା ନିର୍ଗନ୍ଧ । ବିଧାତା ଏ ସଂସାରରେ କାହାକୁ ସର୍ବଗୁଣରେ ଭୂଷିତ କରେ ନାହିଁ ବୋଲି ତାଙ୍କ ବିବେଚନାରେ ଏହା ମଧୁର ସୁରଭିବିହୀନ ହୋଇଅଛି ।

ଲୋକସାଧାରଣରେ ସୁବର୍ଣ୍ଣ ଧାତୁର ବ୍ୟବହାର ବିରଳ; କିନ୍ତୁ କଥନିକାରେ ଏହାର ପ୍ରୟୋଗ ସର୍ବମୟ ।

‘ଆପଣା ସୁନା ତ ଭେଣ୍ଡି
ପର ସାଙ୍ଗେ କିଆଁ ଚୁଟି ଧରାଧରି ?’

'ସୁନା ଚନ୍ଦ୍ରେ ବଣିଆ
ଗୁଣ ଚନ୍ଦ୍ରେ ଗୁଣିଆ ।'

'କହି ହେଉଥାଇ ସିନା
ଡହୁଁାଇ ଡହୁଁାଇ ପୁଟ ଦେଉଥିଲେ
ଲୁହା କି ହୋଇବ ସୁନା ?'

'ସୁନା' ଶବ୍ଦର ବ୍ୟବହାର ବହୁଳ—ସୁନାର ସଂସାର, ସୁନା ସମ୍ପଲ୍, ସୁନା ପୁଅ, ସୁନା ଝିଅ, ସୁନା ବନ୍ଧୁ, ସୁନା ସାଆନ୍ତ; 'ଆଗ, ସୁନା ପାଗ' ଇତ୍ୟାଦି ।

ବହୁ ଝିଅଙ୍କ ନାମ ସୁନା, ସ୍ୱର୍ଣ୍ଣ, କାଞ୍ଚନ, କନକ, ହେମ ।

ରାବଣର ରାଜ୍ୟ ସୁବର୍ଣ୍ଣ ନିର୍ମିତ ବୋଲି ପୁରାଣପ୍ରସିଦ୍ଧ । ମାନଗୋବିନ୍ଦଙ୍କ ଘରେ ସୁବର୍ଣ୍ଣଲକ୍ଷ୍ମୀ ବିରାଜୁଥିଲେ, ତାଙ୍କର ପ୍ରତି ପଦକ୍ଷେପରେ ସ୍ୱର୍ଣ୍ଣ ପଦ୍ମ ଫୁଟି ଉଠୁଥିଲା ।

ଉତ୍କଳର ସମୃଦ୍ଧି କାଳରେ ସାଧବ ପିଲାମାନେ ସୁନାର କୁଲେଇ, ସୁନାର ଶଗଡ଼ ଘେନି ଖେଳା କରୁଥିଲେ । ବଣିକ ଚାରୁଦତ୍ତ ଦରିଦ୍ର ହୋଇଯିବାରୁ ଗେହ୍ଲା ପୁଅକୁ ସୁନାର ଶଗଡ଼ଟିଏ କରି ଦେବାକୁ ଅସମର୍ଥ ହେଲା । ବସନ୍ତସେନାର ମାତୃ-ହୃଦୟ ଏହି କରୁଣ ଦୃଶ୍ୟରେ ବିଗଳିତ ହେଲା । ସେ ସ୍ୱଦେହର ସମସ୍ତ ସୁନା ଅଳଙ୍କାର ସେହି ପୁଅର ଖେଳଣା କାଠ ଶଗଡ଼ରେ ଲଦି ପ୍ରିୟତମ ଚାରୁଦତ୍ତଙ୍କୁ କହି ପଠାଇଲା—ଏହା ଲାଗି ଗୋଟିଏ ସୁନାର ଶଗଡ଼ ଗଢ଼ାଇ ଦିଅ । ଏହା ହିଁ କବି ଶୂଦ୍ରକଙ୍କ ଜଗତପ୍ରସିଦ୍ଧ 'ମୃଚ୍ଛକଟିକ' ନାଟକର ବିଷୟବସ୍ତୁ ।

ସେରେନ୍ଦ୍ରୀ ଝିଅ ତଅପୋଇ ସୁନା ଚାନ୍ଦ ଗଢ଼େଇ ଦେବା ଲାଗି ଜିଦ୍ ଧରିଥିଲା; କିନ୍ତୁ ଏତେ ସୁଖ ଈର୍ଷୀ ଦୈବ ପାଖେ ଅସହ୍ୟ ହେଲା, ସେ ନାନା ବିପ୍ରାତ ଘଟାଇଲା—

'ମାଆ ମଲା ଅଧା ରାତିରେ
ବାପା ମଲା ପୂର୍ବ ରାତିରେ
ଭାଇଏ ବୋଇତ କରି ଗଲେ
ଭାଉଜ ଡ଼ାହାଣୀଏ ଅନେକ ଦୁଃଖ ଦେଲେ ।'

ସୁନା ଘେନି ଲୋକଗଳ୍ପରେ ବହୁ କଳ୍ପନା—ସୁନା ଝିଅ ଗଛ ହୋଇ ସୁନା ଚମ୍ପା ଫୁଟାଉଥିଲା । ଫୁଲ ତୋଳା ସରିବା ପରେ ସେ ଯୋଉ ମଣିଷକୁ ସେହି ମଣିଷରେ ପରିଣତ ହେଉଥିଲା ।

ରାଜାରାଣୀଙ୍କ ପରି ଜୀବନଯାପନ କରିବା ସେକାଳ ସାଧବ ସାଧବାଣୀଙ୍କର ସ୍ୱପ୍ନ ଥିଲା, ସାଧବ ବୋହୂର ମୌଖିକ ଗୀତରେ ତାହା ଫୁଟି ଉଠିଛି—

ଶ୍ୱଶୁର ହୋଇବେ ଗାଆଁ ରାଜନ ଲୋ
ଶାଶୂ ହୋଇଥିବେ ରାଣୀ
ଛ' ଦେଢ଼ଶୁରେ ଛ' ସାଆନ୍ତେ ଲୋ
ଛ' ଜାଆ ସାଆନ୍ତାଣୀ
ମୋ ଗିରସ୍ତ ହବ କନକ ରାଜନ
ମୁଁ ହେବି ପାଟରାଣୀ;
ପୁଅ ହୋଇଥିବ ରାଜକୁମାର ଲୋ
ପୋଥି ଧରି ଗୀତ ଗାଇବ
ଦ୍ୱାରେ ଲଗାଇବ ସୁନା ଟଭ ଗଛ
ନଗି ଧରି ଫଳ ତୋଳିବ ।'

'ଗ୍ରୁମୁଁରେ ଉଭା ଚଣ୍ଡ ସୁବର୍ଣ୍ଣ ବେତ ଧରି', 'ସୁନାର ବନଶି ଧରିଛି, ମିଛେ ମିଛେ ମାଛ ଧରୁଛି', 'ପେଜ ପିଇବୁ କ ରଙ୍କା, ଡ଼ିଙ୍କି ଭରଣ୍ଡି କ ଦେଖା' ଗଳ୍ପରେ ରଙ୍କର କୁଣ୍ଡା ପିଠା ସୁବର୍ଣ୍ଣରେ ପରିଣତ ହେବା ବର୍ଣ୍ଣିତ ହୋଇଅଛି ।

ମନୁଷ୍ୟ ଚିରକାଳ ସୁନାର ସ୍ୱପ୍ନ ଦେଖିଛି, ଇଷ୍ଟଦେବତା ସୁନାଚମ୍ପା ପ୍ରତି ଅଧିକ ଆକୃଷ୍ଟ ବୋଲି ଦେଖାଇ ଆସିଛି । କୁନ୍ତୀଦେବୀ ଶିବ ଶିରରେ ଲକ୍ଷେ ସୁନା ଚମ୍ପା ଚଢ଼ାଇ ସୌଭାଗ୍ୟର ଅଧିକାରିଣୀ ହୋଇଛନ୍ତି ।

କେହି କେହି ଗୋପୀନାଥଙ୍କୁ ସୁନା ପ୍ରଭା, ସୁନା ଛତ୍ର, ଲୋକନାଥଙ୍କୁ ସୁନା ନାଗ ସମର୍ପଣ କରିଥାନ୍ତି, ସାଂସାରିକ ଦୁଃଖର ଅପନୋଦନ ପାଇଁ ।

କେହି କେହି ଭାଗ୍ୟବନ୍ତ ସୁନାରେ ଓଜନ ହୋଇ ସେ ସୁନାକୁ ଦାନ କରି ଦେଇଥାନ୍ତି, ଦୂରାରୋଗ୍ୟ ବ୍ୟାଧିରୁ ଆରୋଗ୍ୟ ଲାଭ ଲାଗି ଓ ଯାବତୀୟ ଦୁର୍ଦ୍ଦଶା ଝାଡ଼ିଝୁଡ଼ି ନେବା ଲାଗି ।

ସୁନା ଜୀବନରେ, ମୃତ୍ୟୁ ପରେ ବି ଏକ ବାଞ୍ଛିତ ମୂଲ୍ୟବାନ୍ ଦ୍ରବ୍ୟ । ଜୀବନ କାଳର ଯାବତୀୟ ପାପର କ୍ଷାଳନ ଲାଗି ସ୍ୱର୍ଣ୍ଣ ଦାନ କରାଯାଏ । ମୃତାହ କିମ୍ବା କାଳରେ ପୁରୋହିତଙ୍କୁ ଭୂମି ସହିତ ସ୍ୱର୍ଣ୍ଣ ଦାନ କରିବାର ବିଧି ପ୍ରଚଳିତ ଅଛି । ଚିହ୍ନଗୁଣି ଆଗରୁ ମୃତଦେହ ଅନୁକୂଳରେ ସୁବର୍ଣ୍ଣ ପକାଇବା ଶାସ୍ତ୍ରସମ୍ମତ ।

ସୁବର୍ଣ୍ଣ ନାଗର ଭୂଷଣ; କାପ, ମଲ୍ଲୀକଢ଼ି, ଗୁପସରି, ମନ୍ଦୁଡ଼ିମାଳ, ମଥାମଣି, ବିନ୍ଦ, ରପୁଣିଆ, ଖଡ଼ୁ, ଚୁଡ଼ି, ଅନନ୍ତବ୍ରତ, ବଟଫଳ, ଦଣ୍ଡି, ନୋଥ, ନୋଲକ, ଗୁଣା, ବଣୁଣ୍ଡି, ନାକୁଲ, ଝୁମ୍ପି, ଚଉଁସାଭୂଣ୍ଡି, କାକର, ଗୋଠ, ପାହୁଡ଼, ପଞ୍ଚମ, ନାକତଣା, ମାଙ୍କେଡ଼ି, ନୋଳି, କେତକୀ, ବାଜୁ, ଚନ୍ଦ୍ରଫାଶିଆ ପ୍ରଭୃତ ସ୍ୱର୍ଣ୍ଣାଳଙ୍କାର ସ୍ତ୍ରୀମାନେ ବ୍ୟବହାର କରି ଆସିଛନ୍ତି । ବର୍ତ୍ତମାନ ଯୁଗରେ ଏହାର ଆକାର ପ୍ରକାର ପରିବର୍ତ୍ତିତ ହୋଇଅଛି, ନୂତନ ଯୋଗ ବା ଘଟିଛି । ମଧ୍ୟଯୁଗୀୟ କବି-ଲେଖନୀ ଏହି ସବୁ ଅଳଙ୍କାର ବର୍ଣ୍ଣନାରେ ମୁଖର ।

"ଫୁଲଗୁଣା ମାଠଗୁଣା କରଇ ବିବେକ ଊଣା
ନାସା ପୁଟକେ ପୁଟକେ ଥାଇ ଝଟକେ ।"

"କର୍ଣ୍ଣେ ସୁନା କର୍ଣ୍ଣମାଳୀ, ମୁକ୍ତାଳେ ହୋଇଛି ଝଳ
ଫଞ୍ଚକୁ ରୁଚିର ଫୁଲ ମାନସ ଭୁଲ
ବିନ୍ଦମାଳୀ ପାଟବ୍ରତ ତାଡ଼ରେ ଭୂଜ ଦୀପିତ
କର୍ମ ଆଦି ଖଡ଼ୁ ବାହୁ ହସ୍ତରେ ଶୋହ ।"

—ଲାବଣ୍ୟବତୀ

'କଳଧଉତ ପଦକୁ ଘେନ କୋଟି ଝୁମ୍ପା ମହା ସୁଖଦାନୀ ।'
'କୁରୁକୁଟର ଯାଇଅଛି ଝଳ କର୍ଣ୍ଣେ ସୁବର୍ଣ୍ଣ ଝଲକ ମାଳୀ ।'

—ରସକଲ୍ଲୋଳ

ବିଦଗ୍ଧ କବିଙ୍କ ପରି ଲୋକକବି ମଧ୍ୟ ପଲ୍ଲିପାଲୀ ବୋହୂକୁ ନାନା ଅଳଙ୍କାରରେ ସଜାଇଛି, ଅବସ୍ଥା ଚକ୍ରରେ ତାହା ସୁନା ବା ରୂପା ହୋଇପାରେ ।

"ଚପୁଲ ଝୁଣ୍ଟିଆ ଲୋ ଦଶ ଆଙ୍ଗୁଠି
ଘାଘୁଡ଼ି ଲାଗିଅଛି ପେଣ୍ଠି କି ପେଣ୍ଠି ।
ଟଙ୍କା ମାଳ ଆଠେଣିଆରେ ହାତ ପୂରିଛି
ଓଳକ ହେଲାବେଳେ ବିରାଜୁ ଅଛି ।
ବଳା ଲୋ ପାଖୁ ତୋର ପାହୁଡ଼ ଅଛି
ମଝିରେ ଘାଘୁଡ଼ି ଲୋ ତୋର ମାନୁଛି ।
ରୂପା ଗୁଞ୍ଜର ପାଖୁ ଅତୁଳ ଅଛି
ମଝିରେ ବଟଫଳ ତୋର ମାନୁଛି ।
ଷୋଳଟଙ୍କିଆ ତାଡ଼ ତୋ ହାତେ ଅଛି
ତନ ଯେ ମାଳେ ବଦ ନଜା ଦେଇଛି ।
ମନ୍ଦରବସା ଗୁଣା ତୋ ନାକେ ଅଛି
କଟକ ନୋଥ ତୋ ଝୁଡ଼ୁଝୁଡ଼ା ଆଣିଛି ।

ଖୋରଧା ଚୂଡ଼ି ତୋର ଆଣ ଦେଇଛୁ
ବାଲସ୍ତୁଡ଼ା ବଣିକି ଦାମ୍ ଆଣିଛୁ ।
ସୁନା ପଦକ ଟାଙ୍କୁ ସୋଳପିଆ ମାଳ
ତୋହର ମାଆ ପାଗ ବଡ଼ ଚତୁର ।
ତଳ ଲୋ କାନେ ତୋର କାନ ବାହୁଲ
ମଲ୍ଲିକଡ଼ି ଲୋ ପଡ଼େ ମୁହଁକୁ ଟଳି ।
ମଝି କାନରେ ତୋର ଚନ୍ଦ୍ରଫାଶିଆ
କଥା ତ କହୁ ପାଗ ସାପେଲୀ ଶୁଆ ।
ଅଲକା ପାଙ୍ଗୁ ତୋର ଏ ମଥାମଣି
ଏଗାର କେଣ୍ଡା ଝୁମ୍ପି ମୁଣ୍ଡରେ ପୁଣି ।"

—ପ. ଗୀ. ସ. ୧ମ ଭାଗ

ନାରୀ ସହିତ ଅଲଙ୍କାରର ସମ୍ପର୍କ ଅବିଚ୍ଛେଦ୍ୟ । ଏହାକୁ ଉପଲକ୍ଷ୍ୟ କରି କବିବର ରାଧାନାଥ ଲେଖିଛନ୍ତି—

'ଅଲଙ୍କାର ଲୋଭ ଏଡ଼ିପାରନ୍ତି କି କେବେ ଅଙ୍ଗନା ?'

ବିବାହ ପୂର୍ବରୁ କିଏ କେତେ ଅଲଙ୍କାର ଦେବେ, କନ୍ୟା ବା ବରପକ୍ଷରୁ ଜବାବ୍ ଦିଆଦେଇ ହୋଇଥାଏ ।

କାଳିଦାସ ଶକୁନ୍ତଳାରେ ଲେଖିଛନ୍ତି—

'କିମବହି ମଧୁରାଣାଂ ମଣ୍ଡନମ୍'... ..

ଅର୍ଥାତ୍ ପ୍ରକୃତ ସୁନ୍ଦରୀ ଅଲଙ୍କାର ପିନ୍ଧିବାର ପ୍ରୟୋଜନ ନାହିଁ । ତଥାପି ତାଙ୍କ ସୌନ୍ଦର୍ଯ୍ୟରାଣୀ ନାୟିକାକୁ ଶ୍ୱଶୁରାଳୟକୁ ଯିବା ଆଗରୁ ଅନସୂୟା ପ୍ରଦତ୍ତ ଅମଳିନ ଅଲଙ୍କାରରେ ସଜାଇଛନ୍ତି ।

ସୀତା ରାଜକନ୍ୟା, ରାଜବଧୂ, ସନ୍ନ୍ୟାସୀ ସ୍ୱାମୀଙ୍କ ସହ ବନଗାମିନୀ, ତଥାପି ସୁବର୍ଣ୍ଣର ମୋହ ସେ ଏଡ଼ି ପାରି ନାହାନ୍ତି । ସେ ସୁବର୍ଣ୍ଣ ହରିଣଟିଏ ଦେଖି ଲୋଭସକ୍ତା ହୋଇଛନ୍ତି, ଯାହା କି ଘୋର ବିପଦର କାରଣ ହୋଇଛି । ହେମାକୃତି ମୃଗ ସୃଷ୍ଟି ଏକ ଅସମ୍ଭବ ମଧ୍ୟରେ ମହା ଅସମ୍ଭବ ଜାଣି ସୁଦ୍ଧା ଭଗବାନ୍ ରାମଚନ୍ଦ୍ର ସୁବର୍ଣ୍ଣ ମୋହଗ୍ରସ୍ତ ହୋଇ ବିପଦକୁ ବରଣ କରି ଆଣିଛନ୍ତି ।

ଯାହାଙ୍କର ସ୍ୱର୍ଣ୍ଣଭଣ୍ଡାର ଅଛି, ସେ ସ୍ୱର୍ଣ୍ଣ ପ୍ରତି ଅଧିକ ଆକୃଷ୍ଟ ହୋଇଛନ୍ତି । ଦୃଷ୍ଟାନ୍ତ ନଳରାଜା । ସେ ରାଜାଙ୍କ ମଧ୍ୟରେ ଆଦର୍ଶ । ସୁନା ହଂସଟି ଦେଖି ଲୋଭସକ୍ତ ହୋଇ ଧରିବାକୁ ଯିବାରୁ ହଂସ ତାଙ୍କୁ ଧିକ୍କାର ବଚନ ଶୁଣାଇଛି—

'ଧିଗିଦ୍ଧଶଂ ତେ ଚରଳଂ ଭବନ୍ତନଃ
ସମୀକ୍ଷ୍ୟ ପଶ୍ଚାନ୍ ମମ ହେମଜଲ୍ପନଃ ।'

ମାଇଦାସ ସ୍ୱର୍ଣ୍ଣପାଗଳ ଥିଲେ; ସୁବର୍ଣ୍ଣ ମୋହରେ ସେ ହିତାହିତ ଜ୍ଞାନ ହରାଇ ବସିଥିଲେ । 'ଯାହା ଛୁଇଁବେ ସୁନା ପାଲଟି ଯିବ' ବୋଲି ସେ ବର ଲାଭ କରିଥିଲେ; ଫଳରେ ଖାଦ୍ୟ, ପାନୀୟ, ଏପରିକି ନିଜ କନ୍ୟା ମଧ୍ୟ ସ୍ୱର୍ଣ୍ଣ ପାଲଟି ଗଲା । ଏହି ସୁବର୍ଣ୍ଣ ହିଁ ଶେଷରେ ତାଙ୍କ କାଳ ହେଲା ।

ସୁବର୍ଣ୍ଣ ଶ୍ରେଷ୍ଠ ସମ୍ପଦ; ଲୋକେ ସଞ୍ଚିତ ଅର୍ଥକୁ ସୁବର୍ଣ୍ଣରେ ପରିଣତ କରି ରଖନ୍ତି । ଧନୀ ଲୋକେ ସୁନାର ଇଟା ଗଢ଼ି, କେହି କେହି ବା ପିତ୍ତଳ ହଣ୍ଡା, ଗରା ବା ଡାଲରେ ସୁନା ମୋହର ଭର୍ତ୍ତି କରି ପୋତି ରଖିଥାନ୍ତି ।

ଦେବ ପିଣ୍ଡୁଳା, ଦେବତାଙ୍କ ଆସନ, ବାସନ, ଆଡ଼େଣି, ଛତ୍ରିବାସର ବେଣ୍ଟ, ପାଲଙ୍କିର ମଗରମୁଖ, ଚଉଦୋଳର କଳସ, ଚନ୍ଦ୍ରାତପ, ଆଳତି ଦାନ, ଧୂପ ଦାନ ସୁବର୍ଣ୍ଣରେ ନିର୍ମିତ ହେଉଥିଲା । ହାତୀ ଦାନ୍ତରେ ସୁନା ଗୁଡ଼ୁଣି କରା ହେଉଥିଲା । ହାତୀ ପିଠିର ହାଉଦାରେ, ଘୋଡ଼ା ପିଠିର ଜିନ୍‌ରେ ସୁନାର ଜରି ମଣ୍ଡନ କରା ହେଉଥିଲା ।

ସୁବର୍ଣ୍ଣ ହିଁ ରଜାଙ୍କର ଶ୍ରେଷ୍ଠ ସମ୍ପଦ । ରାଜମୁକୁଟ, ରାଜପୋଷାକ, ରାଜ ସିଂହାସନ, ରଜାଙ୍କ ଖଣ୍ଡାଖୋଳ, ପାଲଙ୍କି, ମଦ୍ୟପାନ ପାତ୍ର ସୁବର୍ଣ୍ଣରେ ନିର୍ମିତ ହେଉଥିଲା । ପୂର୍ବ କାଳରେ ସୁବର୍ଣ୍ଣ ତିନୋଟି ସ୍ଥାନରେ ମୁଖ୍ୟତଃ ଗଚ୍ଛିତ ଥିଲା— ମନ୍ଦିର, ରାଜକୋଷ ଓ ନାରୀ । ନାରୀ ଗୃହସ୍ଥର ଗୋଟିଏ ବ୍ୟାଙ୍କ୍ । ତାର ସମସ୍ତ ସଞ୍ଚୟ ଅଳଙ୍କାରରେ ରୂପାନ୍ତରିତ ହୋଇ ରହୁଥିଲା । ଅଭାବ ଅନାଟନ ବା କାଳ-ମହାରିର ବେଳେ ସେଥିରୁ କିଛି ମହାଜନ ଦୁଆରେ ବନ୍ଧାଛନ୍ଦା ପକାଇ ଚାଲି ଯାଉଥିଲା । ଚତୁର ସାହୁକାର ମଧ୍ୟ ସ୍ୱର୍ଣ୍ଣାଳଙ୍କାର ବ୍ୟତୀତ ଅନ୍ୟ ଜିନିଷ ବନ୍ଧା ରଖିବାକୁ କୁଣ୍ଠିତ ହେଉଥିଲା ।

ସ୍ୱର୍ଣ୍ଣ ସମ୍ପର୍କରେ ନାନା ଲୋକ-ବିଶ୍ୱାସ ପ୍ରଚଳିତ । ସୂର୍ଯ୍ୟତାପ ଯୋଗୁ ପୃଥିବୀରେ ସୁବର୍ଣ୍ଣ ଜାତ ହୁଏ ବୋଲି କେହି କେହି ବିଶ୍ୱାସ କରନ୍ତି । ଆଉ କାହାର କାହାର ବିଶ୍ୱାସ, ଭୂତଳର ତରଳ ଉଷ୍ମସ୍ରୋତ ଯାହା ସ୍ପର୍ଶରେ ଆସେ, ତାକୁ ସୁବର୍ଣ୍ଣରେ ପରିଣତ କରେ । କାହାର କାହାର ଧାରଣା—ପରଶମଣିର ସ୍ପର୍ଶରେ ଲୌହାଦି ଧାତୁ ସ୍ୱର୍ଣ୍ଣରେ ପରିଣତ ହୁଏ । ଇଷ୍ଟ୍ ଇଣ୍ଡିଜ୍ ଓ ମଧ୍ୟ-ଆମେରିକାରେ ବିଶ୍ୱାସ ଯେ ସୁବର୍ଣ୍ଣ ନିର୍ଜୀବ ନୁହେଁ, ଜୀବନ୍ତ ପରି ଏହାର ଆତ୍ମା ଅଛି । ମଧ୍ୟ-ଆମେରିକାରେ ଉପବାସ ଓ ପ୍ରାର୍ଥନା ପରେ ସ୍ୱର୍ଣ୍ଣ ଖନନ କରାଯାଏ । ପାନାମାରେ

ଚିଣ, ଇଣ୍ଡୀଦିନ୍ତ୍ର ପ୍ରଭୃତି ସୁବର୍ଣ୍ଣ ବିକ୍ରି କରିବା ନିଷେଧ ଅଛି । ସେଠା ଲୋକଙ୍କ ବିଶ୍ୱାସ, ଏହାର ସଂସ୍ପର୍ଶରେ ସୁବର୍ଣ୍ଣର ଆତ୍ମା ଅନ୍ତର୍ହିତ ହୋଇଯାଏ । ବୋର୍ଣ୍ଣିଓର କେତେକ ଆଦିମ ଅଧିବାସୀଙ୍କର ବିଶ୍ୱାସ—ସୁବର୍ଣ୍ଣ ଖନନକାରୀଙ୍କ ଉପରେ ସୁବର୍ଣ୍ଣ ପ୍ରତିଶୋଧ ନିଏ । ଓଡ଼ିଶାରେ ବିଶ୍ୱାସ ପ୍ରଚଳିତ ଯେ ସୁବର୍ଣ୍ଣ ହଜାଇବା ମହା ଦୋଷାବହ । ତେଣୁ ହଜାଇବା ସୁବର୍ଣ୍ଣ ଲାଗି ଯେତେ ଲୁହେଁ, ଲକ୍ଷ୍ମୀ ଛାଡ଼ିବା କିମ୍ବା କୌଣସି ଅଜ୍ଞାତ ଅନିଷ୍ଟ ଶଙ୍କାରେ ଲୋକେ ସେତେ ଚିନ୍ତିତ ଓ ବ୍ୟତିବ୍ୟସ୍ତ ହୁଅନ୍ତି । କେତେକ ଗାଉଁଲି ଲୋକଙ୍କର ବିଶ୍ୱାସ, ସୁବର୍ଣ୍ଣ ବହୁ ପରିମାଣରେ ବହୁକାଳ ସଞ୍ଚିତ ହୋଇ ରହିଲେ ଆକାରବନ୍ତ ଓ ପ୍ରାଣବନ୍ତ ହୁଏ । 'ଯକ୍ଷ' ନାମକ କୌଣସି କାଳ୍ପନିକ ଜୀବ ରୂପ ଧାରଣ କରି ନୈଶବିହାର କରେ । ବେଳେବେଳେ ରନ୍ଧା ନିଆଁ ଦହକୁଥିବା ଚୂଲୀରେ ପଡ଼ିଯାଇ ବୃହତ୍ ସୁବର୍ଣ୍ଣ ଖଣ୍ଡରେ ପରିଣତ ହୁଏ । ସେଭଳି ଭାଗ୍ୟବାନଙ୍କ ଭାଗ୍ୟରେ ଏଭଳି ସୁବର୍ଣ୍ଣ ପ୍ରାପ୍ତି ଘଟିଥାଏ । ସେହି ଲୋଭରେ କେହି କେହି ଚୂଲୀ ଲିଭାନ୍ତି ନାହିଁ । ହୁଏତ ଗୃହଦାହର କାରଣ ହୋଇ ଏହା ସର୍ବନାଶ ଘଟାଏ ।

ଜିଙ୍କ୍, ବ୍ରୋଞ୍ଜ୍, ପିତ୍ତଳ, ରୌପ୍ୟ ଓ ତାମ୍ର ପରି ସୁବର୍ଣ୍ଣର ରଙ୍ଗ ମଳିନ ହୁଏ ନାହିଁ । ଏହାହିଁ ତାର ଏକ ବିଶେଷତ୍ୱ । ଏହିସବୁ ଧାତୁ ମଧ୍ୟରେ ସ୍ୱର୍ଣ୍ଣ କୋମଳତମ । କେବଳ ସ୍ୱର୍ଣ୍ଣରେ କୌଣସି ଅଳଙ୍କାର ନିର୍ମିତ ହୁଏ ନାହିଁ । ସ୍ୱର୍ଣ୍ଣ ସହିତ ତାମ୍ର ମିଶିଲେ ରକ୍ତାଭ ଓ ରୌପ୍ୟ ମିଶିଲେ ମଳିନତର ହୁଏ ।

ପୂର୍ବକାଳରେ ଯେତେ ଯୁଦ୍ଧ ସଂଘଟିତ ହୋଇଯାଇଛି, ତାର ମୂଳ କାରଣ କାମିନୀ କିମ୍ବା କାଞ୍ଚନ । ସ୍ୱର୍ଣ୍ଣ ଅନ୍ୱେଷଣରେ ସଭ୍ୟ ଜାତିମାନେ ଅପ୍ରବେଶ୍ୟ ମରୁଭୂମି ଓ ଦୁର୍ଗମ ଅରଣ୍ୟରେ ପ୍ରବେଶ କରିଛନ୍ତି ଓ ସଭ୍ୟତା ବିସ୍ତାରର ହେତୁ ହୋଇଛନ୍ତି । ପଞ୍ଚଦଶ ଶତାବ୍ଦୀରେ ସ୍ପାନିଆର୍ଡ୍‌ମାନେ ସ୍ୱର୍ଣ୍ଣ ଅନୁସନ୍ଧାନ ଲାଗି ମେକ୍ସିକୋ ଓ ଦକ୍ଷିଣ ଆମେରିକା ଆକ୍ରମଣ କରିଥିଲେ । ୧୮୪୯ରେ ବହୁ ସ୍ୱର୍ଣ୍ଣ ଅନୁସନ୍ଧାନକାରୀ କାଲିଫୋର୍ଣ୍ଣିଆ ଆସିଥିଲେ । ୧୮୫୧ରେ ଅଷ୍ଟ୍ରେଲିଆରେ ଉପନିବେଶ ସ୍ଥାପନ ମୂଳରେ ଏହି କାଞ୍ଚନ ଅନୁସନ୍ଧାନ ହିଁ ରହିଥିଲା । ଦକ୍ଷିଣ ଆଫ୍ରିକାର ଅର୍ଥନୈତିକ ଓ ସାଂସ୍କୃତିକ ବିକାଶ ଲାଗି ସୁବର୍ଣ୍ଣ ଖଣି ଆବିଷ୍କାର ସାହାଯ୍ୟ କରିଅଛି । ଏବେ ଚନ୍ଦ୍ରଲୋକ ଯାତ୍ରା ମୂଳରେ ସୁବର୍ଣ୍ଣ ପିପାସା ଆଂଶିକ ରହିଅଛି । ସ୍ୱର୍ଣ୍ଣ ଉତ୍ପାଦନରେ ଦକ୍ଷିଣ ଆଫ୍ରିକା ପ୍ରଥମ ସ୍ଥାନ ଅଧିକାର କରିଅଛି । ଏଠି ପୃଥିବୀର ପ୍ରାୟ ଅର୍ଦ୍ଧେକ ସ୍ୱର୍ଣ୍ଣ ଉତ୍ପାଦିତ ହୁଏ । ଏ ଦିଗରେ ଦ୍ୱିତୀୟରେ ରୁଷିଆ, ତୃତୀୟରେ କାନାଡ଼ା ଓ ଚତୁର୍ଥରେ ଆମେରିକାର ସ୍ଥାନ ରହିଅଛି ।

ସୁବର୍ଣ୍ଣ ସୁବର୍ଣ୍ଣରେଖା ନଦୀର ରେଣୁରେ, କେଉଁଝରର କେତେକାଂଶ ଓ ଏପରି ପୃଥିବୀର ବହୁସ୍ଥଳରେ ରହିଅଛି । ସମୁଦ୍ର କେବଳ ରତ୍ନାକର ନୁହେଁ, ସ୍ୱର୍ଣ୍ଣାକର ମଧ୍ୟ । କିନ୍ତୁ ଏହାର ଉତ୍ପାଦନ ବିଶେଷ ବ୍ୟୟସାପେକ୍ଷ ।

ମହୀଶୂରର କୋଲାର ଖଣି ଛ'ହଜାର ଫୁଟ ଗଭୀର । ବ୍ରାଜିଲ୍‌ର କୌଣସି କୌଣସି ଖଣି ଆଠହଜାର ଫୁଟ ଗଭୀର । ଆଧୁନିକ ଯନ୍ତ୍ରପାତିର ସାହାଯ୍ୟ ଯୋଗୁ ଏହି ଗଭୀର ଖଣିରୁ ସୁବର୍ଣ୍ଣ ଉତ୍ତୋଳନ ସମ୍ଭବସାଧ୍ୟ ହୋଇଅଛି ।

ଶୁଦ୍ଧ ସୁବର୍ଣ୍ଣ ହଜାର ଭାଗ କମ୍ପା ୨୪ କାରେଟ୍ । ୧୮ ଭାଗ ଶୁଦ୍ଧ ସୁବର୍ଣ୍ଣ ଓ ଛ'ଭାଗ ତମ୍ବା, ନିକେଲ ବା ରୌପ୍ୟ ମିଶିଲେ ୧୮ କାରେଟ୍ ସୁନା ହୁଏ । ଏବେ ଇଂଲଣ୍ଡରେ ୨୨ କାରେଟ୍ ଓ ଆମେରିକାରେ ୧୬ କାରେଟ୍ ସୁନା ବ୍ୟବହୃତ ହୁଏ । ମୁଖ୍ୟତଃ ସ୍ୱର୍ଣ୍ଣ ଏବେ ଦେଶର ଅର୍ଥନୈତିକ ମାନ ନିର୍ଦ୍ଧାରଣ କରୁଅଛି, ଗଚ୍ଛିତ ସ୍ୱର୍ଣ୍ଣର ମୂଲ୍ୟ ଅନୁଯାୟୀ ନୋଟ ଛପା ଯାଉଛି । ପୃଥିବୀର ୫ ସ୍ୱର୍ଣ୍ଣ ବ୍ୟବସାୟ ବାଣିଜ୍ୟରେ ପ୍ରଯୁକ୍ତ ହେଉଅଛି ।

ଏବେ ୧୪ କାରେଟ ସୁନା ଅଳଙ୍କାର-ପଣରେ ବ୍ୟବହାର କରିବା ଲାଗି ଭାରତ ସରକାର ଆଦେଶନାମା ଜାରି କରିଛନ୍ତି । ସୁବର୍ଣ୍ଣର ଯେ ବର୍ଣ୍ଣ ଆଉ ନାହିଁ । ସ୍ୱର୍ଣ୍ଣସ୍ପର୍ଶ, କର୍ଣ୍ଣିକାର ବା ଗୌରାଙ୍ଗୀ ନାରୀର ବର୍ଣ୍ଣକୁ ହୁଏତ ଏହା ସହିତ କେହି ତୁଳନା କରିବେ ନାହିଁ । କିନ୍ତୁ ଏହା ଦ୍ୱାରା ଦେଶର ଓ ନରନାରୀମାନଙ୍କର ମନ ବଦଳି ଯିବ । ଅଳଙ୍କାର ଏ ପ୍ରଗତିଶୀଳ ଯୁଗରେ ନାରୀର ଭୂଷଣ ହେବ ନାହିଁ । ଦେଶପ୍ରୀତି, ବିନମ୍ରତା, ସୌଜନ୍ୟ, ସେବା ତତ୍ପରତା, ପରଦୁଃଖ କାତରତା, ବିଦ୍ୟା ତା'ର ଚିରନ୍ତନ ଭୂଷଣ ହେବ । ନର ସଙ୍ଗେ ସମକକ୍ଷ ହୋଇ ଯାତ୍ରା କରିବାକୁ ହେଲେ ଏଇସବୁ ଦାସତ୍ୱ ବେଡ଼ି, କଳଙ୍କିତ ସମାଜର କଳୁଷିତ ଶୃଙ୍ଖଳ ତ୍ୟାଗ କରିବାକୁ ହେବ । ଅଗ୍ନି ପରୀକ୍ଷାରେ ଶୁଦ୍ଧ ସୁବର୍ଣ୍ଣ ପରି ତାକୁ ଆତ୍ମପରୀକ୍ଷାରେ ଓ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ ।

ସ୍ୱର୍ଣ୍ଣାଳଙ୍କାର ଏ ଯୁଗରେ ଘୋର ବିପଦର କାରଣ ହୋଇଅଛି । ଅଳଙ୍କାର ପରିହିତ ପୂଜିତ ଦେବମୂର୍ତ୍ତି ପକ୍ଷରେ ଯେପରି, ମନୁଷ୍ୟ ପକ୍ଷରେ ସେହିପରି । ନାରୀର ଗଳାରୁ ହାର ଛଡ଼ାଇ ନେବା ବା କାଟିନେବା ଏକ ଦୈନନ୍ଦିନ ଘଟଣା । ଫଳରେ ସେ କୃତ୍ରିମ ଅଳଙ୍କାର ପିନ୍ଧି ବାହାରକୁ ଯାଉଅଛି । ଚୋରର ନଗ୍ନପଦ ପରିସ୍ଥିତିରେ ବି ପ୍ରକୃତ ଅଳଙ୍କାର ପିନ୍ଧିଲେ ରକ୍ଷା ନାହିଁ । ତାଙ୍କର ଲୋଭଦୃଷ୍ଟି ପଡ଼ିଲେ ସେ ତାକୁ କୌଣସି ଉପାୟରେ ହରଣଚାଲ୍ କରିବେ, ପ୍ରତିରୋଧ କଲେ ଜୀବନାଶଙ୍କା ପଦେ ପଦେ । ଏ ଅବସ୍ଥାରେ ବହୁମୂଲ୍ୟ ଅଳଙ୍କାର ବର୍ଜନ ଶ୍ରେୟସ୍କର । କାରଣ ଅଳଙ୍କାର ଏବେ ସୌନ୍ଦର୍ଯ୍ୟ ନୁହେଁ, ଶଙ୍କାହିଁ ବୃଦ୍ଧି କରେ ।



# ଭିକ୍ଷା ନୈବ ଚ ନୈବ ଚ

ଜୀବନ ବଞ୍ଚେଇବାର ସର୍ବଶେଷ ଉପାୟ ଭିକ୍ଷା । ଶେଷ ବାସସ୍ଥାନ ବନ୍ଧଦାଣ୍ଡ ବା ଫୁଟ୍‌ପାଥ୍; ସେଠି କି ସଂସାର ପାତି ହୁଏ । ବରି ଗ୍ରାମରୁ ବାସନ୍ଦ, ବିତାଡ଼ିତ, କନ୍ୟା ପତିତା, ବିତାଡ଼ିତା । ସେଠି ଗଇଁଠାଳ ପଡ଼େ ନାହିଁ, କୌଣସି ସାମାଜିକ କର୍ମକାଣ୍ଡ ମାନିବାକୁ ହୁଏନାହିଁ । ଜନ୍ମ ନିୟନ୍ତ୍ରଣ ଆଇନ୍ ମଧ୍ୟ ତା ପ୍ରତି ଲାଗୁ ହୁଏ ନାହିଁ । ଯେତେ ଇଚ୍ଛା ସେତେ ଛୁଆ ହେଲେବି ଭାବନା ନାହିଁ । ଗୋଡ଼ ଚାଲିଲେ ସେମାନେ ବାପମାଆଙ୍କ ପଚ୍ଛ ଧରି କୁକୁଡ଼ା ଛୁଆ ପରି ଚାଲନ୍ତି । ହେଣ୍ଟାଳ ବା ହମ୍ବାଳ ଭିତରେ ବେଳେବେଳେ କଅଁଳ ସ୍ୱର ଶୁଭେ ଶିଶୁ ଭିକାରିର ।

ଦୁଃଖ କଷ୍ଟ କରି ପେଟ ପୋଷୁଥିବା ବ୍ୟକ୍ତି କାହିଁକି ଭିକାରି ହୁଏ, ଗୋଟିଏ ବ୍ୟଙ୍ଗାତ୍ମକ ଢଙ୍ଗରେ ସେ କାହାଣୀ ବର୍ଣ୍ଣିତ—

'ଆମ୍ଭେ ହୋଇଥିଲୁ କାଶୀ ଦେଶର ଘାଂସି
ବର୍ତ୍ତନ ନ ମିଳି ହେଲୁ ସନ୍ନ୍ୟାସୀ
ଏଇ ଘରକୁ ଏଇ ତାପସୀ
ରନ୍ଧାବଢ଼ା କରି ଭୁଞ୍ଜିବା ବସି ।'

ମାନେ କାଶୀ ନଗରରେ ମୁଁ ଘାସ କାଟି ନିଜ ପେଟ ପୋଷୁଥିଲି । କଣାଲି ଦାମ୍ ନ ଦେବାରୁ ଉପାସ ଶୋକରେ ରହିବାକୁ ହେଲା, ତାପରେ ପେଟ ପୋଷିବାର ସହଜତର ବାଟ ଖୋଜୁ ଖୋଜୁ ବାବାଜୀ ହେଲି, ରନ୍ଧାବଢ଼ା, ଘର ପାଇଟି କରିବା ଲାଗି ମୂର୍ତ୍ତିଏ ମାତା ଜି ଘରକୁ ଆଣିଲି, ଏବେ ଖାଇପିଇ ସୁଖରେ ଅଛି ।

ମୁଣ୍ଡ ଖାଲ ଚୂଣ୍ଡରେ ମାରି ଖଟୁଥିବା ଚାଷୀ କାହିଁକି ବାବାଜୀ ଭେକ ଧରି ଭିକ ମାଗି ବୁଲେ, ତାହା ଗୋଟିଏ ସଂସ୍କୃତ ପ୍ରବଚନରେ ଲିପିବଦ୍ଧ ହୋଇଅଛି—

'ଭଗ୍ନାକୃଷିର୍ଗବଟା ଭବନ୍ତି ।'

ମାଗିବା ଗୋଟିଏ ମାନହାନିକର ବ୍ୟବସ୍ଥା । କଥା ଅଛି—

ଦେବାଠାରୁ ପୁଣ୍ୟ ନାହିଁ
ମାଗିବାଠାରୁ ହୀନ ନାହିଁ,

ଭିକ ଦେଲେ ଧର୍ମ ହୁଏ, ପରଲୋକକୁ ସଙ୍ଗେ ନେଲା ଭଳି କିଛୁ ପୁଞ୍ଜି ସଞ୍ଚିତ ହୋଇ ରହେ, ଏ ବିଶ୍ୱାସ ଯୁଗଯୁଗବ୍ୟାପୀ । ଏହା ଫଳରେ ମଠ ଚାଲେ, ମନ୍ଦିର ଚାଲେ, ଭିକାରିମାନେ ସ୍ୱଚ୍ଛନ୍ଦରେ ହେଉ ପଛେ ବଞ୍ଚିବାର ଗୋଟେ ବାଟ ପାଇଯାନ୍ତି । ଘରୁଆକୁ ଧରି ଧର୍ମ କରେଇବା ଲାଗି ପ୍ରତି ସକାଳେ ମାଡ଼ି ଆସନ୍ତି ଦଳ ଦଳ ଭିକାରି । ଗର୍ଜନ ତର୍ଜନରେ କାନ ଫାଟେ । ଘରଣୀ ଉତ୍ତ୍ୟକ୍ତ ହୋଇ କହନ୍ତି—'ଓଃ ! ଟିକିଏ ବସେଇ ଉଠେଇ ଦେବେ ନାହିଁ, ଶାନ୍ତିରେ ଗଣ୍ଡିଏ ଖୋଇ ଦେବେ ନାହିଁ ।'

ସୁଖୀ ସମାଜ ଉପରେ ଦାରିଦ୍ର୍ୟର ଏ ଏକ ଦୁଃସହ ନିପୀଡ଼ନ । ଉଦରର ଜ୍ୱାଳା ଯନ୍ତ୍ରଣା ଚିତ୍କାର ପ୍ରତି ସ୍ନିଗ୍ଧ ସକାଳର ମଧୁର କାକଳି ମଧ୍ୟରେ ମୁଖରିତ ପ୍ରଥମ ସମ୍ବାଦ । ସମାଜ ସେମାନଙ୍କୁ ଅଶାନ୍ତ ରଖିଛି, ତେଣୁ ସେମାନେ ସମାଜକୁ ଶାନ୍ତିରେ ରଖାଇ ଦେଉ ନାହାନ୍ତି । ମଣିଷର ବିକୃତ, ବୀଭତ୍ସ ଯେତେ ରୂପ, ବିବର୍ଣ୍ଣ, ଛିନ୍ନ ଯେତେ ବେଶଭୂଷା ଭିକାରୀ ପଟୁଆରକୁ ଚାହିଁଦେଲେ ଦିଶିଯାଏ । ଚମତ୍କାର ପ୍ରାକୃତିକ ଦୃଶ୍ୟ ଓ ଗୌରବମୟ ସଂସ୍କୃତି ମଧ୍ୟରେ ଏ ବିରୂପ ଓ ବିକୃତି ଅତ୍ୟନ୍ତ ଭୟଙ୍କର ।

ଭିକାରିଙ୍କୁ ଏଇ କେତୋଟି ଭାଗରେ ବିଭକ୍ତ କରାଯାଇପାରେ—

(କ) ନପୁଂସକ, ଅନ୍ଧ, ଖଞ୍ଜ, ବାମନ; ଯେଉଁ ଦେଶରେ ସୁସ୍ଥ ସବଳ ବହୁ ସଂଖ୍ୟାରେ ବେକାର, ସେଠି ଏମାନଙ୍କୁ ଧନ୍ଦା ଯୋଗା ଯାଉଥିବା ଦୃଷ୍ଟାନ୍ତ ବିରଳ । ଏମାନଙ୍କୁ ବସେଇ ପୋଷିବାକୁ ପରିବାର ଅସମ୍ମତ ବା ଅକ୍ଷମ । ଏମାନଙ୍କ ମଧ୍ୟରୁ ଅଧିକାଂଶ ବିଭା ହୋଇ ସନ୍ତାନସନ୍ତତିଙ୍କର ପିତାମାତା ହୋଇଥାନ୍ତି । ଏହି ପରିତ୍ୟକ୍ତ ବ୍ୟକ୍ତି ତୀର୍ଥସ୍ଥାନରେ ଭିଡ଼ ଜମେଇଥାନ୍ତି, ଗାଁଗଣ୍ଡାରେ ବା ବଜାର ହାଟରେ ଦଳ ଦଳ ହୋଇ ବୁଲୁଥାନ୍ତି । ଅନ୍ଧ ବାଡ଼ିର ଗୋଟିଏ ମୁଣ୍ଡ ଧଇଲେ ପୁଅ ବା ଝିଅ ଅନ୍ୟ ମୁଣ୍ଡ ଧରି ବାଟ କଢ଼େଇ ନିଅନ୍ତି । ବାମନଙ୍କୁ ଟୋକେଇରେ ମୁଣ୍ଡେଇ ବା ଶଗଡ଼ରେ ବସାଇ ହାଟ, ବଜାର ବା ମେଳାରେ ବୁଲାଇବାକୁ ହୁଏ । ସେ ହୁଏ ଏକ ପ୍ରଦର୍ଶନୀ । ଭଗବାନ୍ ବାମନ ଅବତାର ହୋଇ ବଳୀଙ୍କ ପାତାଳକୁ ଚାପିଥିଲେ । ସେଇ ପାରମ୍ପରିକ ଭକ୍ତିଭାବରେ ଉଦ୍‌ବେଳିତ ଲୋକେ ବାମନଙ୍କୁ ଯଥେଷ୍ଟ ସମ୍ମାନ ଦେଇଥାନ୍ତି । ନପୁଂସକମାନେ ନାରୀ ବେଶରେ ନାନା କୌତୁକ କଥାରେ ଲୋକଙ୍କୁ ବିମୋହିତ କରି ଭିକ୍ଷା ମାଗିଥାନ୍ତି ।

(ଖ) ପତିତ ବା ପତିତା—ଗ୍ରାମରେ ଏକଘରକିଆ ହୋଇ ଚଳି ନ ପାରିଲେ ପତିତ ସମାଜ ତ୍ୟାଗ କରେ । ସମାଜରୁ ବିତାଡ଼ିତା ହୋଇ ପତିତା ମୁଣ୍ଡରେ ଓଢ଼ଣାଟିଏ ଦେଇ ବସିଥାଏ, ସଙ୍ଗରେ ଏକାଧିକ ପିଲା ।

(ଗ) ବାବାଜୀ, ମାତାଜୀ—ଯେତେ ସବଳ ହେଲେ ବି କିଛୁ ଅର୍ଜନ କରି ପେଟ ପୋଷିବା ଚେଷ୍ଟା ସେମାନେ କରନ୍ତି ନାହିଁ । 'ପେଟ ପୋଷ୍, ନାହିଁ ଦୋଷ୍' —ମାଗିବାକୁ ଏକ ଦୋଷାବହ କ୍ରିୟା ବୋଲି ସେମାନେ ଭାବନ୍ତି ନାହିଁ । ଲଗି ଖାଇବା ସଂସାରୀର ଧର୍ମ; ସନ୍ନ୍ୟାସୀ ଭିକ୍ଷାଜୀବୀ, ତାର ଭିକ୍ଷାବୃତ୍ତି ଶାସ୍ତ୍ରାନୁମୋଦିତ । ତେଣୁ ତାଙ୍କୁ ମାଗନ୍ତା ବୋଲି କେହି ଭାବନ୍ତି ନାହିଁ । ସେମାନେ ସଂସାର ଛାଡ଼ି ଆସିଥାଆନ୍ତି, କିନ୍ତୁ ସଂସାର ସେମାନଙ୍କୁ ଛାଡ଼େ ନାହିଁ । ଧର୍ମର ବାହ୍ୟଉତ୍ସ୍ୱ ତଳେ ସେମାନେ ବହୁ ଅଧର୍ମ କରିଥାନ୍ତି । ଅଳସ, ଭେକସର୍ବସ୍ୱ । ସହଜଲଭ୍ୟ ଖାଦ୍ୟ ଓ ଅଖଣ୍ଡ ବିଶ୍ରାମ ପ୍ରତି ଆକୃଷ୍ଟ ହୋଇ ବହୁ ଚେଲା ଜୁଟିଥାନ୍ତି । ଦୁରାରୋଗ୍ୟ ରୋଗ ହେଲେ, କାଳ ମନ୍ୱନ୍ତର ପଡ଼ିଲେ, ପେଟ ପୋଷି ନ ପାରିଲେ, ବଂଶ ବୁଡ଼ିଲେ ଲୋକ ବାବାଜୀ ହୁଏ—ତେଣୁ ସେମାନଙ୍କୁ ଅନ୍ଧାରୁ, କନ୍ଧାରୁ, ପେଟ-ବିକଳିଆ, ବଅଁଶମାରୁ—ଏଇ ସ୍ତରଗୁଡ଼ିକରେ ବିଭକ୍ତ କରାଯାଇଛି ।

(ଘ) ମହିମାଯୋଗୀ, ନାଥଯୋଗୀ—ପରିଧାନ କୁମ୍ଭୀପାଟ, କାନ୍ଧରେ ଗେରୁଆ ସ୍କନ୍ଧର, ତାଳ ବରଗଛର ଆଣ୍ଠୀ ଛତା ଟିଏ ଯେଉଁ ଏହି ଜଟାଧାରୀମାନେ ଅନ୍ନଭିକ୍ଷା କରିଥାନ୍ତି । ଅନ୍ୟ ଯୋଗୀମାନଙ୍କ ପରି ଏମାନେ ପରାଙ୍ଗପୁଷ୍ଟ । ପରଉପରେ ଆହାର କରି ଏମାନେ ଧର୍ମ ପ୍ରଚାର କରିଥାନ୍ତି ।

(ଙ) ନାଥଯୋଗୀ - ଭିକ୍ଷା ତାର ପିତୃପିତା ଅମଳର ବୃତ୍ତି । ସେ କାଟି ବା କୁଟି ଖାଏ ନାହିଁ । 'ଯୋଗୀ ଘରେ ଢିଙ୍କି' ଏକ ବ୍ୟଙ୍ଗାତ୍ମକ ବଚନ । ଗଳାରେ ତାର ରୁଦ୍ରାକ୍ଷ ମାଳ, ଦେହରେ, କପାଳରେ ନାନା ପ୍ରକାର ଚିତା, ହାତରେ ଲଉଥାଳ । ଏହା ଶିବଙ୍କ ଥାଳ; ତାର ବିଶ୍ୱାସ । ଏହାକୁ ସେ ଭୋଜନ ପାତ୍ର ଭାବରେ ମଧ୍ୟ ବ୍ୟବହାର କରିଥାଏ ।

ସେମାନେ ଯୋଡ଼ି ଯୋଡ଼ି ହୋଇ ଆସନ୍ତି, ଜଣେ ଗାଥା ଗୀତ ବୋଲେ, ଆଉ ଜଣେ ପାଳି ଧରେ । ଗୋବିନ୍ଦଚନ୍ଦ୍ର, ବଉଳାଗାଈ ଗୀତ, କର୍ଣ୍ଣଙ୍କ ପୁତ୍ର ବଳିଦାନ, ଖୁଲଣାସୁନ୍ଦରୀ ପ୍ରଭୃତି ଗୀତ ସେମାନେ ଗାଇଥାନ୍ତି । ଖଞ୍ଜଣି, ଧୁଡ଼ୁକି ଏକତାରା ବା ବୀଣା ବଜାଇଥାନ୍ତି ।

(ଚ) ଚକୁଳିଆପଣ୍ଡା—ଏମାନେ ଅଧା ଗୃହୀ, ଅଧା ଭିକାରୀ । ସାଧାରଣ ଭିକାରୀ ପରି ଏମାନେ ଅକାଳେ ଅବେଳେ ଭିକ ମାଗି ବୁଲନ୍ତି ନାହିଁ । ଅମାବାସ୍ୟା, ସଂକ୍ରାନ୍ତି, ପୂର୍ଣ୍ଣିମା ତିଥିରେ, ଅ, କା, ମା, ବୈ ଅର୍ଥାତ୍ ଆଷାଢ଼, କାର୍ତ୍ତିକ, ମାଘ, ବୈଶାଖ ଏଇ ଗୁରୁଧର୍ମମାସରେ ଏମାନେ ବୁଲିଥାନ୍ତି—

ଦେଇଥିଲେ ପାଇ
ବୁଣିଥିଲେ ଦାଇ
ପଞ୍ଝିଆ ବାଡ଼ରେ ରେ ଧନ ଚସାଇ ।

ଏହା ଏମାନଙ୍କ ବଚନିକା, କାନ୍ଧରେ ତାଳପତ୍ର ଛତା, ଏମାନେ କାହାକୁ କିଛି ମାଗନ୍ତି ନାହିଁ, ଏମାନଙ୍କୁ ଭିକ୍ଷାଞ୍ଜଳି ଦିଆଯାଏ ନାହିଁ । ଗୃହିଣୀ ବା ଝୋଟେଇରେ ତଣ୍ଡୁଳ ଆଣି ଦେଲେ ସେମାନେ ଗ୍ରହଣ କରନ୍ତି । କାରଣ ସେଦିନର ତନ୍ତ୍ରଭିକ୍ଷାଧାରୀ ପଞ୍ଚପାଣ୍ଡବଙ୍କ ଦାୟାଦ ସେମାନେ ।

(ଛ) ଜାନୁଘଣ୍ଟ ପରଶୁରାମ—ସେ ଜାନୁରେ ଘଣ୍ଟି ବାନ୍ଧି ଦୋହା ଗାଇ ବୁଲିଥାଏ; କାହାକୁ କିଛି ମାଗେ ନାହିଁ । କିନ୍ତୁ ପର୍ଶୁରାମଙ୍କ ପ୍ରତି ପ୍ରୀତିରେ ବା ଭୟରେ ଲୋକେ ଅଞ୍ଜଳରେ ନୁହେଁ, ଗୃହିଣୀ ଝୋଟେଇରେ ଆଣି ଭିକ ଦିଅନ୍ତି । ଚକୁଳିଆ ପରି ସେ ଜଣେ ସମ୍ମାନିତ ଭିକାରୀ ।

(ଜ) ମଙ୍ଗଳା, ଶାରଳା, ଚର୍ଚ୍ଚିକା—ଏମାନଙ୍କ ଚଳନ୍ତି ପ୍ରତିମା ଗୋଟିଏ ଗୋଟିଏ ଗ୍ରେଟ ଚଉଦଳରେ ଆସି ଗାଆଁରେ ବିଜେ ହୁଅନ୍ତି । ଅଙ୍ଗାକେ ଠାକୁରାଣୀ, ଆର ଅଙ୍ଗାରେ ବୋଝ (ଫଟୁଆତ ତଣ୍ଡୁଳ, ଘଣ୍ଟ)—ଏମିତି ଭାରଟିଏ କାନ୍ଧେଇ ପୂଜକ ଆସନ୍ତି । ଦାଣ୍ଡ ଗୋବର ପାଣିରେ ଲୁଣ୍ଡାଏ ଲିପା ହେଲା ପରେ ଠାକୁରାଣୀ ବସନ୍ତି । ପୂଜକ ଘଣ୍ଟ ବଜାଇ ଦେବୀଙ୍କ ଆଗମନ ସୂଚାଇ ଦିଏ ଓ ସ୍ତୁତି ବୋଲେ—

'ଜୟ ତୁ ମଙ୍ଗଳା ମାଗୋ ବିଜେ ହରଚଣ୍ଡୀ......'

ଗୃହିଣୀ, ଝୋଟେଇରେ ଭିକ ନେଇ ଗାଁ ମାଇପେ ଦେବୀଙ୍କ ଆଗେ ଥୁଅନ୍ତି । ପୂଜାରୀ, ମାଳ ବା ରାହୁଲ ଗୁଡିଲ ଅଜାଡ଼ି ନେଇ ପାଦୁକ, ସିନ୍ଦୂର ଟିକିଏ ଟିକିଏ ଦିଅନ୍ତି ।

ଫଣାଟେକା ପିତ୍ତଳ ବା ତମ୍ବା ନାଗ—ଲୋକନାଥ, ଲଡୁବାବା, ଆଖଣ୍ଡଳମଣିଙ୍କ ତମ୍ବା ବା ପିତ୍ତଳ ନାଗ ଫୁଲଭର୍ତ୍ତି ତମ୍ବା ବା ପିତ୍ତଳ ଥାଳୀରେ ମାଳୀର ମୁଣ୍ଡ ଠେକାରେ ବସି ଗାରେ ବିଜେ ହୁଅନ୍ତି । ପିଲାପିଚିକା ଫଣାର ଧରି ତାକୁ ଏଡ଼ି ପାରିବ କିଏ ? ଭକ୍ତିରେ ଯେତେ ନୁହେଁ, ଭୟରେ ପ୍ରଚୁର ଭିକ୍ଷା ଆଦାୟ ହୋଇ ଥାଏ ।

(ଝ) ଘଟପାଟୁଆ—ଶିବପାର୍ବତୀଙ୍କ ଘଟରେ ନାନା ଫୁଲର ଟାହିଆ ମାରି ତାକୁ ମୁଣ୍ଡରେ ଧେଇ ସେ ବିଷୁବ ସଂକ୍ରାନ୍ତି ଦିନ ବା ତା ପୂର୍ବ ସପ୍ତାହରେ ଗାଁ ରାସ୍ତାରେ ଭିକ୍ଷା କରିଥାଏ । ଠାକୁରାଣୀଙ୍କ କାଳସୀ ସମ୍ମାନିତ ଭିକାରୀ ।

(ଞ) ବ୍ରତଭିକ୍ଷୁ—ଥାଳିରେ ସିନ୍ଦୂରଲଗା ନଡ଼ିଆଟିଏ, ଗୁଆଟିଏ, ପଇତା ସଙ୍ଗାଡ଼ିଏ । ବାଳକ ବ୍ରତ ଭିକ୍ଷାକରି ବୁଲେ— ଗରିବ ବ୍ରାହ୍ମଣ ସନ୍ତାନ, ବ୍ରତ ହୋଇ ପାରୁ ନାହିଁ । ବ୍ରତ ନ ହୋଇ ଧର୍ଗ ଭାଳ ଚଢ଼ିବା ବ୍ରାହ୍ମଣକୁଳକୁ ନିନ୍ଦା । ସଂସ୍କାରଶୀଳ ବୈରାଗୀ ମିଶ୍ର ଟଙ୍କାଟିଏ ମାତ୍ର ବ୍ୟୟରେ ବହୁ ବ୍ରାହ୍ମଣ ପିଲାଙ୍କୁ ବ୍ରତ ନେଲେ ବି ଏ ଭିକ୍ଷାରୀତି ବନ୍ଦ ହୋଇନାହିଁ ।

(ଟ) ନ'ଗା ଜମାଉତ—ଏମାନେ ଦଳବାନ୍ଧି ଆସନ୍ତି, ଧନବାନ ଦୁଆରେ ଡେରା ପକାନ୍ତି; ମାଗନ୍ତି ନାହିଁ, ଜୁଲମ କରନ୍ତି । ନଦେଲେ ହିଂସାର ଆଶ୍ରୟ ନିଅନ୍ତି । ଏବେ ସେମାନେ ଓଡ଼ିଶାକୁ କ୍ୱଚିତ୍ ଆସନ୍ତି । ମାସ ମାସ ସେମାନଙ୍କୁ ପୋଷି ପାରିବା ଭଳି ରାଜା ବା ଜମିଦାର ଓଡ଼ିଶାରେ ନାହାନ୍ତି ।

(ଠ) ରୋଗୀ—ଗୋଡ଼ରେ କନାପଟି ବନ୍ଧା । ଆଙ୍ଗୁଠିହୀନ ପଦ୍ମଳରେ ଟିଣ ଗିନା ଟଙ୍ଗେଇ ଛିଣ୍ଡା ନେକଡ଼ା ପିନ୍ଧି କୁଷ୍ଠରୋଗୀ ଦଳଦଳ ହୋଇ ଆସନ୍ତି । ମାଗନ୍ତାଙ୍କ ମଧ୍ୟରେ ଏମାନଙ୍କ ସଂଖ୍ୟା ବେଶୀ । ବାତୁଆ, ଗୋଦରା, ପେଟମରା, ଜଳନ୍ଦ୍ରି ରୋଗୀ ମଧ୍ୟ ଭିକ ମାଗି ଆସନ୍ତି ।

(ଡ) ବୁଢ଼ାବୁଢ଼ୀ—ଘରକୁ ବୋହୂ ଆଇଲା ପରେ ପୁଅ ତା ଶିକ୍ଷାରେ ପଡ଼ି ବେଳେ ବେଳେ ବାପ ମା'ଙ୍କୁ ଭିନ୍ନେ କରିଦିଏ । କର୍ମ କରିବାକୁ ଅସମର୍ଥ । ବାଧ୍ୟ ହୋଇ ସେମାନେ ଭିକ୍ଷାବୃତ୍ତିର ଆଶ୍ରୟ ନିଅନ୍ତି ।

(ଢ) ବାପଛେଉଣ୍ଡ, ମା ଛେଉଣ୍ଡ—ହଇଜାରେ ବେଳେବେଳେ, ବାପ ମା ଉଭୟ ଉଜାଡ଼ିକି ହୋଇ ଯାନ୍ତି । ଯାହା ମାଣେ ଜଣେ ଥାଏ, ତାକୁ ଭାଇଆ ମାଡ଼ି ବସନ୍ତି । ଚୁଙ୍ଗୁଡ଼ି ବାଳୁଙ୍ଗା ଦଳ ଅଥାଡ଼ା ହୋଇ ଭିକ ମାଗି ବୁଲନ୍ତି । ସବୁ ଅନାଥ ଅନାଥିନୀଙ୍କୁ ପାଳପୋଷି ମଣିଷ କରିବା ଲାଗି କୌଣସି ଅନୁଷ୍ଠାନ ଓଡ଼ିଶାରେ ନାହିଁ । ବନ୍ୟା ବାତ୍ୟା ଦୁର୍ଭିକ୍ଷ ଫଳରେ ମଧ୍ୟ ବହୁ ପିଲା ଅନାଥ ହୋଇଥାନ୍ତି । ଈଶ୍ୱର ହିଁ ସେମାନଙ୍କ ଭରସା ।

(ଣ) ବିକୃତ ବୀଭତ୍ସ ରୂପ କିଶୋର— ଭଲ ଭଲ ଘର ପିଲା ବେଳେବେଳେ ଦୁର୍ଭାଗ୍ୟର ଶିକାର ହୋଇଥାନ୍ତି । ସେମାନଙ୍କୁ ଚୋରି କରି ନେଇ ବିକୃତ ବୀଭତ୍ସ ରୂପରେ ବଜାରରେ ଛିଡ଼ା କରେଇ କରୁଣା ଉଦ୍ରେକ କରାଯାଏ କିମ୍ବା ସେମାନଙ୍କୁ ପକେଟମାରୁ, ଚୋରି ଆଦି ବିଦ୍ୟା ଶିଖେଇ ଦିଆହୁଏ । ଭିକ୍ଷା ଗୋଟାଏ ଭାନ ମାତ୍ର ।

(ତ) କେନ୍ଦୁଣୀ— କେନ୍ଦା ଟିକାର କରିଯାଏ । କେନ୍ଦୁଣୀ ଦୁଇ ତିନି ଛୁଆ ଧରି ଗାଆଁକୁ ଭିକ ମାଗି ଆସେ । ଗର୍ଜନରେ କାନ ଫାଟେ । ଗୃହିଣୀ ଶାଢ଼ୀ ବିଦାୟ ଦେଇ ସେଥିରୁ ଅବ୍ୟାହତି ପାଏ ।

(ଥ) ଚୋରୁମନ୍ତ୍ର—ସେ କଥା କହେ ନାହିଁ । ବେକରେ ଗୋଟିଏ ପାଲ ଦଉଡ଼ି ପକାଇ ଆସେ । ପ୍ରାୟଶ୍ଚିତ୍ତ ଲାଗି ହୋମ ଓ ବ୍ରାହ୍ମଣ ଭୋଜନାଦିରେ ବହୁ ବ୍ୟୟ ହୁଏ । ଦରିଦ୍ର ସେ, ସେହି ବ୍ୟୟ ଲାଗି ଅସମର୍ଥ । ତେଣୁ ଭିକ୍ଷା କରେ ।

(ଦ) କର୍ମଚୋରି—କର୍ମ କରିବାକୁ ସେ ଡରେ । ଦୈନିକ ମଜୁରି ଅପେକ୍ଷା ଭିକ୍ଷାରୁ ଅଧିକ ଆୟ ହୁଏ ବୋଲି ସେ ବିଶ୍ୱାସ କରେ । ସବୁବେଳେ କାମ ମିଳେ ନାହିଁ, ଭିକ ସବୁଦିନ ମିଳେ । ଗଣ୍ଡିଛିଣ୍ଡା, ବାରଦୁଆରି, ତେରପନ୍ଦରିଆ ସେ । ବାର ପାଗରେ ଖାଇ ତାକୁ ଘର ରନ୍ଧା ସୁଖ ଲାଗେ ନାହିଁ । ଧର୍ମ-ସନ୍ଦିରରେ ତୀର୍ଥକ୍ଷେତ୍ରରେ, ବାରୁଣୀ ଭିଡ଼ରେ, ଯାନଯାତ୍ରାମାନଙ୍କରେ ଭିକାରି ଧାଡ଼ିରେ ସେ ବସିଥାଏ, ଗାମୁଛା ମେଲିଥାଏ, ଚାଉଳ ବା ପଇସା ସେଥିରେ ପଡ଼େ ।

ପେଟ ଲାଗି ଭିକାରିମାନେ ନାନା ଛଳ ବା ଛନ୍ଦର ଆଶ୍ରୟ ନେଇଥାନ୍ତି । ଦେହରେ ଏପରି କନାପଟି ବାନ୍ଧିଥାନ୍ତି, ଯେ ଦେଖିଲେ ମନେ କରିବ—ଏ ଏକ ଅଚଳ ରୋଗୀ । କେତେକ ଦେହକୁ ଏପରି ରଙ୍ଗେଇଥାନ୍ତି ଯେ ଦୂରରୁ ମନେ ହେବ —ଘାଆ ଦଲ୍‌ଦଲ୍ ହେଉଛି । କିଏ ଗୋଟାଏ କାଠଗଡ଼ ପରି ମୁହଁ ଘୋଡ଼ାଇ ତାତିଲା ବାଲିରେ ପଡ଼ିଥାଏ, କିଏ ବା ବାହୁନା ପକାଉଥାଏ ।

ସରକାରି ହିସାବରୁ ଜଣାଯାଇଛି—ଭାରତରେ ୬୦ ଲକ୍ଷ ଭିକାରି ଅଛନ୍ତି । ସେଥି ମଧ୍ୟରେ ପାଞ୍ଚଲକ୍ଷ ଅନ୍ଧ, ତିନିଲକ୍ଷ ମୂକ, ବଧିର, ଏକଲକ୍ଷ ପାଗଳ, ପଞ୍ଚାଅଶୀ ହଜାର ନପୁଂସକ । କଣେଇ ଭିକାରିଙ୍କ ସଂଖ୍ୟା ଏକ ଲକ୍ଷ ପନ୍ଦର ହଜାର ପାଞ୍ଚ ଶହ । ଭିକାରିମାନେ ସାଧାରଣତଃ ଯାହା ରୋଜଗାର କରନ୍ତି, ତାହା ଜଣେ ମୂଲିଆ ବା ମଜଦୂରର ରୋଜଗାର ଅପେକ୍ଷା ଅଧିକ । ଭାରତୀୟମାନେ ଭିକାରିଙ୍କ ପିଛୁ ଦିନକୁ ହାରାହାରି ଦଶଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି । ସେତିକି ଟଙ୍କରେ ଭିକାରିଙ୍କ ଲାଗି ଆଶ୍ରୟ ବା ଶ୍ରମଭବନ ନିର୍ମିତ ହୋଇ ପାରନ୍ତା ।

ଭାରତରୁ ଭିକ୍ଷାପ୍ରଥା ଉଠାଇବାରେ ହରିଆନା ପ୍ରଦେଶର ନେତୃତ୍ୱ ଚିର-ସ୍ମରଣୀୟ ହୋଇ ରହିବ । ଏ ଏକ ଅତି ସାହସିକ କାର୍ଯ୍ୟ । ସହରଗଳି, ଫୁଟ୍‌ପାଥ୍ ପରିଚ୍ଛନ୍ନ ରଖିବାର ଏ ଏକ ଶ୍ରେଷ୍ଠ ପନ୍ଥା ।

ଅଗଣିତ ସଂଖ୍ୟାର ଶିଶୁ ଜନ୍ମ ହୁଅନ୍ତି ମୁକ୍ତାକାଶ ତଳେ, ଫୁଟ୍‌ପାଥରେ ବା ନର୍ଦ୍ଦମା ଧାରରେ, କିଆବାଡ଼ ମୂଳରୁ ବା ଡଷ୍ଟବିନ୍ ଭିତରୁ ବି ଅଳ୍ପ ଶିଶୁ ଉଦ୍ଧାର କରାଯାଏ ନାହିଁ ।

ଭିକାରିମାନେ ରୋଗ ବିସ୍ତାରର ପ୍ରଧାନ ହେତୁ । ଭିକ୍ଷା-ପ୍ରଥା ଲୋପ ହେଲେ ଗ୍ରାମ ବା ନଗରବାସୀ ସ୍ୱସ୍ତିର ନିଃଶ୍ୱାସ ପକାନ୍ତେ । କିନ୍ତୁ ଏହା ଆଦୌ

ସହଜ ନୁହେଁ । ତଥାକଥିତ ଧର୍ମପ୍ରାଣ ବ୍ୟକ୍ତିଙ୍କ ବାଧା ପଦେ ପଦେ । ସମାଜବାଦୀ, ଅଗ୍ରଗାମୀ ସରକାରଙ୍କର ପ୍ରଥମ କାର୍ଯ୍ୟ, ପରାଙ୍ଗପୁଷ୍ଟ ଅକର୍ମା, ଅନ୍ନଧ୍ୱଂସକାରୀଙ୍କ କବଳରୁ ଦେଶକୁ ରକ୍ଷା କରିବା । ଏହା ଏକ ଧର୍ମକାର୍ଯ୍ୟ । ବିନା ଶ୍ରମରେ ଅନ୍ନାଶନ ଏକ ପାପ । ପଇସାଟିଏ ମାତ୍ର ଦେଇ ଧର୍ମ ବା ପୁଣ୍ୟ ସଞ୍ଚୟର ଏକ ଶସ୍ତା ଓ ସହଜ ପନ୍ଥା ବନ୍ଦ କରିଦେବା ଉଚିତ ।

ପଙ୍ଗୁ, ଲେଉଟ୍ରଣ, ବୃଦ୍ଧ, ବିକଳାଙ୍ଗ ବା ଅନ୍ୟ ଅସମର୍ଥଙ୍କ ଲାଗି ପ୍ରତ୍ୟେକ ନଗର ବା କେନ୍ଦ୍ର ଗ୍ରାମମାନଙ୍କରେ କର୍ମାଶ୍ରମମାନ ନିର୍ମିତ ହୋଇ ଅବସରପ୍ରାପ୍ତ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ହେବା ଆବଶ୍ୟକ ।

ଅର୍ଥାଭାବ ନୁହେଁ, ଅନିଚ୍ଛା ହିଁ ଏ କ୍ଷେତ୍ରରେ ପ୍ରଧାନ ପ୍ରତିବନ୍ଧକ । ନିରାଶ୍ରୟ ରୁଗ୍ଣ ବ୍ୟକ୍ତି ଖାଦ୍ୟାଭାବରେ ଓ ବିନା ଚିକିତ୍ସାରେ ମରିବା ଏକ ନିତ୍ୟନୈମିତ୍ତିକ ବିକଟ ଦୃଶ୍ୟ । ସୁସ୍ଥ, ସବଳ ବ୍ୟକ୍ତି କୌଣସି କର୍ମ ନ କରି ଭିକ୍ଷା ମାଗି ବୁଲିବା ସେହିପରି ଏକ ବୀଭତ୍ସ ଦୃଶ୍ୟ । ସବଳକୁ ଭିକ୍ଷା ଦେବା ପାପ; ପଇସାଟିଏ ମାତ୍ର ଦେଇ ପରଲୋକ ଲାଗି ଯେତିକି ପୁଣ୍ୟ ସଞ୍ଚୟ କରାଯାଏ, ଅନୁଷ୍ଠାନରେ ନିରାଶ୍ରୟ ଲାଗି ସୁବ୍ୟବସ୍ଥା କରିବାରେ ତା ଅପେକ୍ଷା ଅଧିକ ପୁଣ୍ୟ ସଞ୍ଚୟ କରାଯାଇ ପାରିବ ।

ଧର୍ମ ଏକ ଚିନ୍ତା, ଯୁଗୋପଯୋଗୀ ହେବାରେ ହିଁ ତାର ମହତ୍ତ୍ୱ ନିହିତ । ସଂଗଠନ ଓ ସୁପରିଚାଳନା ଉପରେ ତାର ସ୍ଥାୟିତ୍ୱ ନିର୍ଭର କରେ ।

ଧର୍ମ ହୁଏତ ଏକ ବିଜ୍ଞାନ ନୁହେଁ; କିନ୍ତୁ ତାର ଗତି ଓ ଶୃଙ୍ଖଳା ଚିର ବୈଜ୍ଞାନିକ ।



# ମୁଁ ମୁଖ୍ୟମନ୍ତ୍ରୀ ହେଲେ.........

ପ୍ରାଚୀନ ଏଥେନ୍‌ସର ଲୋକେ ଭାବୁଥିଲେ—ଯେ ରାଜନୀତି ପ୍ରତି ଆଗ୍ରହ ପ୍ରକାଶ ନ କରେ, ସେ ଜଣେ ଅନିଷ୍ଟକାରୀ, ଅକର୍ମଣ୍ୟ ଲୋକ । ଯୁଗଯୁଗ ଧରି କବି, ସାହିତ୍ୟିକ, ଐତିହାସିକ, ଦାର୍ଶନିକ ରାଜନୀତିରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରି ଆସିଛନ୍ତି । ଭଗବାନ୍ ଶ୍ରୀକୃଷ୍ଣ ଜଣେ କୂଟନୀତି ବିଶାରଦ । ମହାକବି ବାଲ୍ମୀକି, ବ୍ୟାସ, ମହାଯୋଗୀ ବ୍ରହ୍ମର୍ଷି ବଶିଷ୍ଠ, ବିଜ୍ଞବର ଚାଣକ୍ୟ ରାଜନୀତି ସ୍ରୋତରୁ ନିଜକୁ ବିଚ୍ଛିନ୍ନ ରଖି ପାରିନାହାନ୍ତି, ପ୍ରୟୋଜନ ସ୍ଥଳେ ନିଜ ବିଜ୍ଞତା ବଳରେ ସ୍ରୋତର ଗତିମୁଖ ବଦଳାଇ ଦେଇଛନ୍ତି ।

ପୃଥିବୀ ଅଶାନ୍ତ ରହିଲେ କେହି ଶାନ୍ତିରେ ରହି ନ ପାରେ । ସେହି ଅଶାନ୍ତି ଦୂର କରିବା ଲାଗି ଆବଶ୍ୟକ ହେଲେ ଅତ୍ୟନ୍ତ ଶାନ୍ତିଶିଷ୍ଟ ବ୍ୟକ୍ତି ମଧ୍ୟ ସଂଗ୍ରାମରେ ପ୍ରବୃତ୍ତ ହୋଇଥାଏ ।

ଦେଶରେ ଅରାଜକତା ବ୍ୟାପିଛି, ରାଜନୀତି ନୀତିହୀନ । ଏ ଅବସ୍ଥାରେ ଜଣେ ସାହିତ୍ୟିକ ଉଦାସୀନ କଲମଘୃଷୀ ହୋଇ ବସି ନ ପାରେ । ଆଜିର ଗାଦିନସୀନ କେତେକ ତା ଉପନ୍ୟାସ, ନାଟକ ବା କାବ୍ୟରେ ଶାସ୍ତି ଲଭ କରନ୍ତେ, ଆଶ୍ଚର୍ଯ୍ୟ, ସେମାନେ ହୋଇଛନ୍ତି ଶାସ୍ତା । କଚେରୀ ନ୍ୟାୟ, କାବ୍ୟ ନ୍ୟାୟ ଏବେ ବିପରୀତମୁଖୀ । ଟଙ୍କା ବହୁ ସିଧା ମୁହଁକୁ ବଙ୍କା କରି ଦେଉଛି ।

ବ୍ୟବସ୍ଥାପସଭାର ସଭ୍ୟ ହେବା ଆଗରୁ ରାଜନୀତିକ କହେ—'ହାତୀ ଦେବି, ଘୋଡ଼ା ଦେବି, ମୋ ଧେଁକାଳି ବଜେଇଦେ ।' ତୁଣ୍ଡରେ ଚାଡ଼ବତା ନାହିଁ; ସେ ବାତୁଳ ବଖାଣେ—ଏପା କରିବି, ତେପା କରିବି, କଅଁବଡ଼କୁ ଡେଇଁପଡ଼ିବି !

---

Athenians had begun to think that a man who took no interest in politics was not just a harmless man but a useless man.

If you want to be at peace with yourself, do not mind being at war with the world.

—Maxmular

Scholar Extraordinary, P. 240, N Chaudhury.

ଭମାମାନଙ୍କୁ ଭୂଆଁ ବୁଲେଇବ, କଳାବଜାରକୁ ଧଳା କରିବ, ସ୍ୱାଦୀନମୂର୍ତ୍ତିମାନଙ୍କୁ ନିକଟତମ ଧାପସ୍ତମ୍ଭରେ ଫାଶି ଦେବ ।

ମିଛ ଅନର୍ଗଳ କହିଲେ ସତ ପରି ଲାଗେ । ସେ ଆକାଶରୁ ତୋଳିଆଣି କହେ, ଅଘଟଣ କହେ, ଡମ୍ଫା ପରି କହେ, ଭୋପାଙ୍କ ବୋପା ପରି କହେ, ଦର-ସତିଆ, ତାହାମିଛୁଆଙ୍କ ପରି କହେ, ଯେତେ ଇଚ୍ଛା ସେତେ କହେ; କାରଣ 'ବଚନେ କା ଦରିଦ୍ରତା ?' ହଇଏ ପିଠି ପିନ୍ଧା ଅରକ୍ଷିତ, ଘୃଣ୍ୟ ତ ନରେନ୍ଦ୍ର ! ଆଙ୍ଗୁଠି କାଟି ଲେଖି ଦେଉ ନାହିଁ ତ ? ମରଦ୍‌କ ବାତ୍ ହାତୀକା ଦାନ୍ତ୍ ଏ ନୁହେଁ । ବଚନ ଯେ, ଉଡ଼ା ଚଢ଼େଇ ସେ; କାକଲି ଶୁଣାଇ ଶୂନ୍ୟେ ଶୂନ୍ୟେ ଉଡ଼ିଗଲେ ହେଲା । ଯୋଉଁ ପୁଅ ପରି ବେଲକାଲ ଉଣ୍ଡି ଖୋଦାକୁ ପୁମର ଗୋଦା ବାଟେ ଝସିଗଲେ ଗଲା ।

ଅନୁକୂଳ ମେଜାଜ୍ ସୃଷ୍ଟି କରି ଟେଣ୍ଡର ପକାଇବା ତାର କାର୍ଯ୍ୟ । ଏ ଗୋଟାଏ ବନ୍ଦୀ ଥୋପ । ମାଛଟିକି ଧରି ଚଢ଼େଇ ବା ଖାଳେଇରେ ଭର୍ତ୍ତି କରିପାରିଲେ ହେଲା । ମିଛ କହିଲା କି ମାସ୍ତା କଲା ବା ଜାଲ ଜୁଆଚ୍ଚୋରି କଲା, ସେଟା ଧର୍ତ୍ତବ୍ୟ ଅପରାଧ ଭିତରେ ନୁହେଁ । ନୀତିର ନିକତି ଧରି ଲୋକ ଶିକ୍ଷକ ହୋଇପାରେ, କିନ୍ତୁ କଣ୍ଟ୍ରାକ୍‌ଟରେ ରାଜନୀତିକ ହୋଇପାରିବ ନାହିଁ । ଚାଣକ୍ୟ ଯେଉଁ ନୀତିଶ୍ଳୋକ ଲେଖିଛନ୍ତି, ତାହା ପୋଥିବାଇଗଣ ହୋଇ ରହିଯାଇଛି । ବାସ୍ତବ ପରିସ୍ଥିତିର ସମ୍ମୁଖୀନ ହେଲାବେଳେ ସେ ଜାଣିଶୁଣି ତାକୁ ଏଡ଼ି ଯାଇଛନ୍ତି ।

ତାଙ୍କ ପ୍ରକୃତ ମତ ହେଲା—

ଯେହାକୁ ତେହା
ହାରାମ୍‌ଜାଦାକୁ ଟାଙ୍ଗିଆ ପଶା ।'

ତା ମାନେ ହିଂସ୍ରକୁ ଅହିଂସା ନୀତିରେ ନୁହେଁ, ପ୍ରତିହିଂସା ଦ୍ୱାରା ସେ ଜବ୍ଦ କରିଛନ୍ତି ।

ତମ୍ବି ତୋଫାନ କାଢ଼ୁଥିବା ଏ ଲୋକ ପ୍ରକୃତପକ୍ଷେ 'କହନ୍ତି ଯେଡ଼େ ନୁହନ୍ତି ତେଡ଼େ' । ବିବାହ ଶୋଭାଯାତ୍ରାରେ ପଇସା ବୁଣାଯାଏ, ଶୋକଶୋଭାଯାତ୍ରା ଶବ ପଟୁଆରରେ ବି, କିନ୍ତୁ ଭୋଟ ପ୍ରଚାରରେ ଉଡ଼େ ନୋଟ୍, ଖଣ୍ଡିଆ ଭୂତ ନାଚିଲେ ଶୁଖିଲା ପତ୍ର ଭଳି । ତାମାନେ ଏ ଦରିଓପାସିଆ ଦେଶରେ ଧନ ହିଁ ମର୍ଯ୍ୟାଦା ପାଏ । ଗରିବ ମାଇପ ସମସ୍ତଙ୍କ ଶାଳୀ । ଏ କ୍ଷେତ୍ରରେ କାରବାରୀ ଦଲାଲ୍ କେବଳ ହାତ ଚକ୍‌କଣ କରେ ନାହିଁ; ତା ଗୋଟା ଦେହରୁ ବି ଚକ୍‌କଣ ବୋହି ପଡ଼େ, ବସୁ ବସୁ ମାଛର ଗୋଡ ବି ଖସିପଡ଼େ ।

. ଅଞ୍ଚଳରେ ବା ପ୍ରଦେଶରେ କି କି ହିତକର କାର୍ଯ୍ୟ କରିବେ, ଶ୍ରେଷ୍ଠ ଆଶାସ୍ପ୍ରୀ ଢେଙ୍ଗୁରା ପିଟି ଜଣାଇ ଦିଏ । ସେ ପାର୍ଟିର ମହାନ ଆଦର୍ଶ ବଖାଣେ । ତା ପଛରେ ପାର୍ଟି ଟାକ୍ସି ଟାକୁ କରୁଥାଏ । ସେ ଭଲଭାବେ ଜାଣେ ଯେ ରାଜନୀତି ଗୋଟିଏ ବ୍ୟବସାୟ, ବୋଧହୁଏ । ସବୁଠାରୁ ବେଶୀ ଲାଭଜନକ ବ୍ୟବସାୟ । 'ମେଇ ଆସି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ'—ମୁଖ୍ୟତଃ ଏ ନୀତି ରାଜନୀତି ବ୍ୟବସାୟୀଙ୍କ ପ୍ରତି ପ୍ରଯୁଜ୍ୟ । ତେବେ ଚୋରି ବିଦ୍ୟା ଓ ରାଜନୀତି ବ୍ୟବସାୟ ମଧ୍ୟରେ ଏତିକି ତଫାତ୍—ଚୋରି କରି ଧରା ନ ପଡ଼ିଲେ ମଣିଷ ସୁଖ ସମୃଦ୍ଧିରେ ଗୋଟାଏ ପୁରୁଷ ଚଳି ଯାଇପାରେ । କିନ୍ତୁ ରାଜନୀତିରେ ଚଳାଇ ପାରିଲେ ଚଉଦ ପୁରୁଷ ସୌଭାଗ୍ୟ କୋଳରେ ଗେଲେଇ ଲୁଚେଇ ହୋଇ ଚଳିଯାଇ ପାରିବ ।

ମୁଁ ତ ହସକଥା କିଛି କହୁନାହିଁ । ତୁମେ ବାବୁ, ହସୁଚ କାହିଁକି ?

ଓହୋ ବୁଝିଲି—ତୁମେ କହୁଚ ଗ୍ରାର ଚଉଦ ପୁରୁଷ କ'ଣ, ଚଉଷଠୀ ପୁରୁଷଯାଏ—ମାନେ ଯାବଚ୍ଚନ୍ଦ୍ରାର୍କେ ଲଗି କଳାବେପାରୀ ଛଞ୍ଚି ରଖିଯାନ୍ତି । ମାନେ —ଏ ଦି ଗୋଷ୍ଠୀର 'ଭିତରେ ଭିତରେ ସଲସୁତର ଉପରେ ଉପରେ କଳା ।' 'ଉଞ୍ଚେଇ ଥିବ ମାରିବ ନାହିଁ, ଗୋଡ଼େଇ ଥିବ ଧରିବ ନାହିଁ ।' ପ୍ରଥମ ବେପାରୀ ଜଣକ ଘୋଡ଼ାବେପାର କରେ । ଦ୍ୱିତୀୟ ଜଣକର ବେପାର—ମଣିଷ କିଣାବିକା କରିବା । ହରେଇବା ଜିଣେଇବା, ହରଣଚାଲ୍ କରିବା ବା ବରଣମାଳା ଦେବା । ତା'ର ଯୁକ୍ତିରେ ଶ୍ରେଷ୍ଠ ଚଳେ । ଯୁଆଡ଼େ ବିଜୟର ଆଶା ଦେଖେ, ସେ ସିଆଡ଼କୁ ଢଳେ । ହେଲେ ବାଦୁଡ଼ି ବୋଲି ମୋହର ମାରିଦେବେ ନାହିଁ । ଶୁକ୍ଳପକ୍ଷ ବା କୃଷ୍ଣପକ୍ଷ କାହାରିକି ସେ ଜାଗ୍ରତ କରେ ନାହିଁ । ତା ମାନେ ଅଗସ୍ତି ଦେଲେ ଦାନ— କୋଉଠି ଏକା ଚଳୁନେ ସମୁଦ୍ର ଶୋଷଣ, ଅବାରିତ ବାରି ବର୍ଷଣ, ଆଉ କୋଉଠି 'ଚଞ୍ଚା ଗୁଆ ପୋଗ୍ର ପାନ' । ତା ଅର୍ଥ ଫଳେ ପୁଷ୍ପେ—ଯେତିକିରେ କଡ଼ା ତୁଣ୍ଡକୁ ମିଠା କରି ହେବ, ସେତିକି—ଗ୍ରେକ୍ଠୋକ୍ କଞ୍ଚା ସତ୍ୟଟା ବାନ୍ତି କରି ପକେଇବେ ନାହିଁ । ଆଗକୁ ପଛକୁ ଗ୍ରହିଁ ବଙ୍କେଇ ବୁଲେଇ କହିବେ, ଯହିଁରେ ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।

ଯୋଉ ଦଳର ସଭ୍ୟ ଅଧିକ, ସେ ଦଳରୁ ଜଣେ ନେତା ବା ମୁଖ୍ୟମନ୍ତ୍ରୀ ବଗ୍ଧି ହୁଅନ୍ତି, ନଇଲେ ପୋକଶୁଙ୍ଘା, ତୁଳସୀପତ୍ର, ବଛୁଆତି, ବେଲପତ୍ରି—ଏମିତି ବାରବନ, ଅଗଡ଼ମ୍, ବଗଡ଼ମ୍ ବାରଭାଇ ଆଟେଡ଼ାରୁ ଜଣେ ନେତା ବାହାରି ପଡ଼ନ୍ତି, ଦନାକେତେ ଶରଢ଼ାଗୁଲାଟରେ ଗ୍ରଳନ୍ତି, ତାପରେ ଯ୍ୟାମୁହଁ ସ୍ୱାଡ଼େ, ତା ମୁହଁ ସିଆଡ଼—ଅଗା ବଗା ସଗା, ଠନ୍‌ହେଁ ଠନ ଅଲଗା ।

ଗଦ୍ଦିରେ ବସିବା ଆଗରୁ ଗୋଟିଏ ଲମ୍ବା ଯୋଜନା ତ ଜନତା ଦରବାରରେ ପେସ୍ କରାଯାଇଥାଏ । ସାବାସ୍ ବି ମିଳିଥାଏ । ପାଟମନ୍ତ୍ରୀ ତ ତାଙ୍କ ଥାଟ ଧରି ନାଟ କରିବେ; ଏଥିରେ ଅମତ କାହିଁକି କାହାର ହେବ ? ରାଜନୀତିକ ମନ୍ତ୍ରୀ ଓ ସାହିତ୍ୟିକ ମନ୍ତ୍ରୀଙ୍କ ମଧ୍ୟରେ ତଫାତ୍ ଆପାତତଃ ଏତିକି—ସେ କ'ଣ କରିବେ କହନ୍ତି । ମୁଁ କ'ଣ ନ କରିବି କହିବି ।

ବାବୁ, ସଶବ୍ଦ ଅଟ୍ଟହାସ କାହିଁକି ? ଭବିଷ୍ୟତ କି ମଜେ ହସି ଉଡ଼ାଇ ଦେବ ? ମୁଁ ଏଡ଼େ ହାଲୁକା ବା ପୋଲ ନୁହଁ । ଭବିଷ୍ୟତ କି ସ୍ୱପ୍ନ ଦେଖି ଦେଖି ଯାଙ୍କ ଜୀବନ ଯାଇଛି ! କଳ୍ପନାର ରଙ୍ଗୀନ୍ କୁହୁଡ଼ି ଭରି ଏକ ଟାପୁରେ ଯାଙ୍କ ବାସ । ରୂଢ଼ ବାସ୍ତବତାର ମୁହାଁମୁହିଁ ହେଲେ ଯାଙ୍କ ହାର୍ଟଫେଲ୍ ହୋଇଯିବ । କିଓ, ଏ କ'ଣ ଗୋଟାଏ ଖେଳଘର ଧା ତାମ୍ବା ହୋଇଛି କି ?

କୂଟନୀତିକ ମାୟାବୀ, ତାର ଜାଲ ଦରଗ ଦରଗ ବିସ୍ତୃତ, ସୂକ୍ଷ୍ମରୂପୀ । ସେଥିରେ ସେ ମାଛି, ମଶା, ଏପରିକି ଗଣଗଣିଆ ମାଛି ଓ ଶକ୍ତିଶାଳୀ ବାଘୁଆ ବିରୁଡ଼ିକି ବାନ୍ଧି ପକାଏ । ନର ମାୟା ନାରାୟଣଙ୍କ ଅଗୋଚର ବୋଲି ଯେଉଁ ଲୋକବଚନଟି ପ୍ରଚଳିତ, ତହିଁର ପ୍ରଥମ ଶବ୍ଦ ନର ଅର୍ଥ କୃଷକ ନର, ମଜଦୁର୍ ନର ବା କବି ନର ନୁହେଁ, ଏ ନର ଅର୍ଥ କୂଟନୀତିକ—ସେ ଯାହା ଭାବେ, ତାର ଓଲଟା କହେ, ଯାହା କହେ ତାର ବିପରୀତ କରେ । ତ୍ରିଗୁଣ ରକ୍ତ ଧରି ସେ ମଣିଷକୁ ନଚାଏ, କାନ୍ଦ ମାଡ଼ୁଥିଲେ ହସେ । ପୁଣି ଲୁହ ସରିଗଲେ ଆଖିବାଟେ ରକ୍ତ ଧାରା ବି ବୁହାଇ ଦିଏ । କିଏ ଡାଳେ ଡ଼ାଳେ ଗଲେ ସେ ପତ୍ରେ ପତ୍ରେ ଯାଏ । ସେ 'ପଞ୍ଚତନ୍ତ୍ର'ର ଦୀର୍ଘକର୍ଣ୍ଣ ମୂଷିକ, ତା ବିବରରେ ଶତଦ୍ୱାର । ତାର ଆଦି ପାଇବ ନାହିଁ କି ଅନ୍ତ ପାଇବ ନାହିଁ, ନାଡ଼ି ପାଇବ ନାହିଁ କି ନକ୍ଷତ୍ର ପାଇବ ନାହିଁ ।

ବୁଝିଲ ଦୋସ୍ତ, ତୁମ ଅଭିଷେକ ପରେ ଯେତେ ଗୁହାରି, ଯେତେ ଦାବୀ ଆସେ, ତାକୁ କାଇଦାରେ ଏଡ଼ି ନଗଲେ, ତୁମ ସରକାର ଦେବାଳିଆ ହୋଇଯିବ, ସିଧା ନାହିଁ କରିଦେଲେ ତୁମେ ଅପ୍ରିୟ ହୋଇ ଉଠିବ ।

କୂଟନୀତିର ଗୋଟିଏ ସ୍ୱତନ୍ତ୍ର ଭାଷା ଅଛି । ତାକୁ ଆୟତ୍ତ ନ କଲେ ଅବସ୍ଥା ଅଠାଠିକ୍ ହୋଇଉଠିବ । ଦରଖାସ୍ତଟା ଗ୍ରହଣ କରିବାକୁ ପଡ଼େ ବା ଅଧେ ଶୁଣିଦେବା ମାତ୍ରେ ମୃଦୁ ହସ ହସିଦେଇ କହିବ—ସମସ୍ୟାଟା ବୁଝିଗଲି —ଦେଖିବା, ବୁଝିବା, ବିଚାର କରିବା । ଏଥିରେ ଜଟିଳ ଦେବାକୁ ପଡ଼ିଲା ନାହିଁ, ଅଥଚ ସାକ୍ଷାତକାରୀ ବୁଝିଲା—ମୁଖ୍ୟମନ୍ତ୍ରୀ ତା କଥା ଧୈର୍ଯ୍ୟଧରି ଶୁଣିଲେ, ତାକୁ ବୁଝିଗଲେ—ଗଧଙ୍କୁ ସିନା ବହୁତ ବୁଝାଇବାକୁ ପଡ଼େ !

ତୁମେ ସରଳ ସାହିତ୍ୟିକ କର୍ମୀ ଆହା ବରିଗି କବି ହିଁ ଏ ! ସବୁ ସର୍ବ ବାଁଧ ଯାଏ । ତୁମେ ଏସବୁ ପାରିବ ? ତୁମେ କାନରେ କଲମଟା ଖୋସିଥିଲେ ବଡ଼ ଶୋଭାକାର ହେଁଶେ, ମାଟି ଚଟାଣରେ ବସି ଆଲମାଲକା ଗାଉଥିଲେ ବି ଆମେ ତୁମକୁ କବିସୂର୍ଯ୍ୟ, କବିଚନ୍ଦ୍ର, କବିସମ୍ରାଟ କହୁ । ସିଂହାସନରେ ବସିଲେ କ'ଣ ଅଧିକ ହେବ ?

କିଏ କହିଲେ ? କଲମ ଘୋରି ଘୋରି ମୋ ଜୀବନ ଯିବ ? ରାଜଦଣ୍ଡ ଧରାଇ ଦେବା ପରୀକ୍ଷା ଥରେମାତ୍ର ପ୍ରାର୍ଥନୀୟ । କବିର ହୃଦୟ ଅଛି, ସେ ଲୋକଙ୍କ ଦୁଃଖ ବୁଝେ । କ୍ଷମତା ପାଇଲେ ସେ ପ୍ରତିକାର କରିନପାରିବ କାହିଁକି ? ନଈକୂଳି ଗାଁଆଁ ଗଣ୍ଡା ଭସାଇ ନେଲାବେଳେ ଦଳେ ଗିରିପଥୁଆ ନାଚ ନାଚନ୍ତେ କାହିଁକି ? ଲୋକଙ୍କ ବିପତ୍ତିରୁ ସମ୍ପତ୍ତି ଗୁଣ୍ଡି ନଥନ୍ତେ କାହିଁକି ?

ଜଣେ ରଜା ବଡ଼ ଦେଉଳ ଗଢି ନାଆଁ କଲେ । ଜଣେ ଭୂତମୁଖୀ ହୋଟେଲଟାଏ ଗଢ଼ି ନାଆଁ ପକାନ୍ତେ କାହିଁକି ? ବର୍ଷ ଥାଉଁ ଥାଉଁ କଏ ନଜ ଜୁଇ ଗାଡ ଖୋଳେ, ସମାଧି ମନ୍ଦିର ତୋଳେ ?

ସେ ଯୋଗୀ ମୁଖ୍ୟମନ୍ତ୍ରୀ କହି ତ ତୋଳ ପିଟୁଚ । କହିଲ ଦେଖି ସେ ଭୂତଙ୍କ ଭିତରୁ କାହା ପଛରେ ପିଠା ଲାଗି ନାହିଁ, କାହା ମୁଣ୍ଡରେ କେନ୍ଦୁପଙ୍କ ଅଠା ବୋଳା ହୋଇନାହିଁ ? କେତେ ବଡ଼ ବଡ଼ ଭ ଫସର ଫାଟିଗଲେ । ତୁମ ଆଖିରେ ସ୍ଲେଟ, କଲ୍ଗୁ ସବୁ ଯୁଗ ଓ ସବୁ କାଳ ପାଇଁ ବଡ଼ ଜଣେ କବିଙ୍କୁ ପରଖି ଦେଖ ।

ସିନେମା ନକ୍ଷତ୍ର ତ ମୁଖ୍ୟମନ୍ତ୍ରୀ ହେଲେ । ରଙ୍ଗମଞ୍ଚର ନାଟଆ ଗୋଟା ଦେଶକୁ ରଙ୍ଗମଞ୍ଚ କରି ନୃତ୍ୟ କଲେ । ତାଙ୍କୁ 'ଅତି ଅଳ୍ପକୁ କ ନାଚସ୍ୱା ଯାସ୍ୱ' ବୋଲି କହିବାକୁ ତୁମ ତୁଣ୍ଡ ଲେଉଟିଲା କି ? ସେମିତି କେତେ ପହଲମାନ, ଫିଲ୍ଡ ମାର୍ଶାଲ, ଏମିତି କି ସାଧାରଣ ସୈନିକ ବି ଶାସନଡ଼ୋରୀ ମୁରୁଖୁରେ ଚଳାଇ ନେଇଛନ୍ତି । କବି ବେଳକୁ କାହିଁକି ଏତେ ଫିଡ଼ୁକୁଛ ?

ଜାଣ, ଜଣେ ସାହିତ୍ୟିକଙ୍କୁ ମୁଖ୍ୟମନ୍ତ୍ରୀ କଲେ ଲୋକଙ୍କ ଦୁଃଖ ପାଣି ପରି ବୋହିଯିବ ! ଲୋକଙ୍କ ଦୁଃଖ ଦାରିଦ୍ର୍ୟ ଯେଉଁ ନେ ଗୋଟାକୁ ଗୋଟା ମାଦଳାପାଞ୍ଜି ଲେଖା ହେଉଛି, ଆଉ ହେବ ନାହିଁ ।

'ସାହିତ୍ୟିକ ଆଜୀବନ ଆଦର୍ଶବାଦୀ । ସୁଯୋଗ ମିଳିଲେ ସେ ଆଦର୍ଶକୁ କିଛି ହେଲେ ବାସ୍ତବ କରିବ । କେବଳ ମନୋରଞ୍ଜନ ନୁହେଁ, ଲୋକଚରିତ୍ର ଗଢ଼ିବା

ସାହିତ୍ୟିକର କାର୍ଯ୍ୟ । ସେ ମନକୁ ଉଚ୍ଚ କରେ, ସଙ୍କୀର୍ଣ୍ଣକୁ ମହତ କରେ, ସ୍ବଷ୍ଟି ଉପରେ ଯେଉଁ ପ୍ରକୃତ ଶୋଭା ବନ୍ଧ ହୋଇ ପଡ଼ିଛି, ତାକୁ ଉପଭୋଗ କରି ଶିଖାଏ । ଜଡ଼ର ସୌନ୍ଦର୍ଯ୍ୟଚକ୍ଷୁ ଖୋଲି ଦେଇପାରେ, ରୁଚି ଉନ୍ନତ କରେ, ଅନ୍ଧାରରୁ ଆଲୋକକୁ ନେଇଯାଏ । ପଡ଼ୋଶୀ ଭାଇକୁ ଏପରିକି ଭଗାରିକୁ ଭଲ ପାଇ ଶିଖାଏ । ଭଲ ମଣିଷ ହେବା ପାଇଁ ବାଟ କଢ଼ାଇ ନିଏ । ଅଚାନ୍ଧା କଞ୍ଚା ମଣିଷରୁ ଯେ ସିଂହାସନକୁ ଉଠିଆସିଛି; ଏକ ଅନାକାଂକ୍ଷିତ ଜନ୍ମ ପରି, ସେ କୋଡ଼େ ଯେତିକି, ମାଡ଼େ ସେତିକି । ପୂର୍ବବର୍ତ୍ତୀଙ୍କ ଭଲ କାମକୁ ସେ ଫୁର୍କି ଉଡ଼ାଇ ଦିଏ, ସତେ ଯେମିତି ଭଲ କାମ କରିବାକୁ ସେ ଏକା ଜନ୍ମ ହୋଇଛି, ତମ୍ବା ମୁଣ୍ଡ ବାନ୍ଧି ଗାଦିରେ ବସିଛି, ଗାଦିକୁ ଚିରନ୍ତନ କରିବା ଲାଗି ସବୁମନ୍ତ୍ରେ ଚେଷ୍ଟା ଚଳାଇଛି—ଜଣେ ସାହିତ୍ୟିକକୁ ସେ ଦି ପଇସାରେ ଖାତିର କରେ ନାହିଁ । ସତେ ଯେମିତି ଦେଶ ଗଠନ ଲାଗି ତାର କିଛି ହେଲେ ଦାନ ନାହିଁ—ପାଗଳ; ବେକାର !

ତେଣୁ ଆଦର୍ଶ ଭାବ ଓ ବାସ୍ତବ କର୍ମ ଏ ଦେଶରେ ଏକମୁଖୀ ନୁହେଁ । ଗୋଟେ ପୂର୍ବକୁ ଗଲେ ଆଉ ଗୋଟାଏ ପଶ୍ଚିମକୁ ଗଲେ ।

ମୁଁ ମୁଖ୍ୟମନ୍ତ୍ରୀ ହେଲେ କ'ଣ ନ କରିବି ତାଲିକାଟିଏ ଦେବି, ଲେଖିଥିଲି, ଏବେ ଦେଖୁଛି—ଅକର୍ମ, ଅପକର୍ମ ଓ ଅକୀର୍ତ୍ତିର ସୀମା ନାହିଁ, କାଣ୍ଡେ ରାମାୟଣ ଓ ପର୍ବେ ମହାଭାରତ ହୋଇଯିବ । ମୁଁ କାହାର ଖୁଣ ବାଛିବି ନାହିଁ । ଏହା ମଣ୍ଡିକାଙ୍କର କାର୍ଯ୍ୟ ।

ଜଣେ ମୁଖ୍ୟମନ୍ତ୍ରୀ ହେଲେ ଆଗବାଲାର ସଦ୍‌ଗୁଣ ତା ଆଖିରେ ପଡ଼େ ନାହିଁ । ଅଗଣିତ ଦୁର୍ନୀତି, ଦୁରାଚାରର କମ୍ବଳଟିଏ ସେ ଦେଶ ଆଗରେ ମେଲି ଦିଏ, ମାମୁଁ ଘରେ ଠୁକ ଦେବା ଲାଗି କମିଶନ୍‌ଟାଏ ବସାଏ, ଯାହାକି ଅଳ୍ପଦିନେ ଫସର ଫାଟି ଯାଏ ।

ଗୋଟାଏ ତୁଳସୀ ବୁଦା ପରି ନିଜେ ଚଉରାରେ ବସେ, ଜଗନ୍ନାଥଙ୍କ ପରି ପବିତ୍ର ଭାବରେ ରଥଯାତ୍ରା କରେ, ଦେଶଯାକ ବୁଲି ବୁଲି ତୀର୍ଥବାରି ଛିଞ୍ଚେ । ଯାହା କହେ, ଶିକ୍ଷଣୀୟ । ଏଇ ମହାତ୍ମା ଯାହା କହନ୍ତି, ଅବଶ୍ୟ କରଣୀୟ ।

କେତେ କାଳ ପରେ ତାଙ୍କର ଅସଲ ରୂପ ବାହାରେ । ତାପରେ ଗୋଟା ଦିହ ବୁଡ଼ାଇ ଦେଖାଦିଏ ଗୋଟାଏ ଆଁ, ଯୋଉଥିରେ ଗୋପପୁରର ସବୁ ଦୁଧ ଦହି ଭରିଲେ ବି ପୂରେନାହିଁ । ତାପରେ ଏଠି ଆଁ, ସେଠି ଆଁ, ସବୁଠି ଆଁ । ଏ ସବାଖିଆଦଳ କୋଉଠି ଥିଲେ କରେ ?

"ଦଅଳ୍କୁ ଖାଇ
ଖଟୁଲି ଖାଇ
ଆହୁରି ପଚାରୁଛନ୍ତି ପୂଜାରୀ କାହିଁ ?"

ମୁଁ କ'ଣ କରିବି, ସେ ତାଲିକା ବି ଦେବିନାହିଁ । ଯାହା କରିବି ନୀରବ ଭାବରେ କରିବି । ତେବେ କିଛି କରିବା ଆଗରୁ ବିଷବୃକ୍ଷଟି ଓପାଡ଼ି ଦେବି, ଯାହା କି ସବୁ ଅନର୍ଥ ଓ ଅଶାନ୍ତିର କାରଣ । ଭୃତ ଗୋଟିଏ ଚପିଲେ ଯାହା, ହାଣ୍ଡିକଯାକ ଚକଟିଲେ ସେଇଆ । ଏଇ ଗୋଟିକରୁ ମୋ ସତ୍‌କର୍ମର ଧାରା ବୁଝିପାରିବ ।

ହଇଏ, ଲୋକସଙ୍ଗୀତର ଧାରା ଆଜି ଶୁଖାଇ ଦେଲା କିଏ ? ଗ୍ରାମ ଅଞ୍ଚଳରେ ଖଣ୍ଡ ବିଖଣ୍ଡିତ, ନିଶାରେ ଟଳମଳ, ବିପର୍ଯ୍ୟସ୍ତ, ଶ୍ରୀହୀନ, ପାଶବ, ଦୃପ୍ତ । ସରଳ ସୁନ୍ଦର ଏସବୁ ମଣିଷଙ୍କୁ ଏତେ ତଳକୁ ଖସାଇଦେଲା କିଏ ?

ଘରେ ପଛେ ହାଣ୍ଡି ମାକଡ଼ଚାନ୍ଦ ମାରୁ, ମାଇପ ନାକରେ ଲମ୍ବିକାଠି ପିନ୍ଧୁ, ପିଲାଛୁଆ କଉପୁନୀ ମାରି ଭୋକ ବିକଳରେ ଦାଣ୍ଡରେ ଗଡ଼ୁ ଥାନ୍ତୁ, ତାକୁ ଲାଜ ମାଡ଼େ ନାହିଁ । ସେ ନିଶା ଖାଏ । ରୋଗରେ ପିଲା ସଢ଼ିଲେ ବି ସେ ନିଶା ଛାଡ଼ିପାରେନାହିଁ, ଶେଷ ନିଃଶ୍ୱାସ ସଙ୍ଗେ ହିଁ ନିଶା ଛାଡ଼େ । ନିଶା ଜାତିର ଯାବତୀୟ ଦୁର୍ଗତିର କାରଣ ।

ସ୍ୱାଧୀନତା ସଂଗ୍ରାମୀମାନେ ବହୁ ଦୁଃଖକଷ୍ଟ ବରଣ କରି ତାକୁ ଛଡ଼ାଇଥିଲେ । ତାଙ୍କର ସୁଶିକ୍ଷିତ, ସୁଯୋଗ୍ୟ ଦାୟାଦମାନେ ତାକୁ କୋଉ ମୁହଁରେ ବଢ଼ାଉଛ ? ଯୋଉ ଦେଶରେ ପାଣି ଟୋପେ ନ ପାଇ ଲୋକେ କାଦୁଅ ପିଇ ମରନ୍ତି, ସେଠି କି ସାହସରେ ତୁମେ ଦ୍ୱାରେ ଦ୍ୱାରେ ହଳାହଳ ପହଞ୍ଚାଇ ଦେଉଛ ? ଜାତୀୟ ଆୟ ବଢ଼ାଇବା ଆଳ କଣ ଏହି ନରନାରାୟଣମାନଙ୍କର କାଳ ନୁହେଁ ? ନିଶା ଖାଇବେ, ପଇସା ନ ପାଇଲେ ଚୋରି କରିବେ, ଡାକୁଗିରି କରିବେ, ସାମାଜିକ ସୁଜନ ଅସାମାଜିକ ଦୁର୍ଜନ ହୋଇ ଘରେ ଘରେ କଳାକନା ବୁଲାଇବେ, ଜୁଆଘର ପୂରେଇବେ । ଗୋଟାଏ ହରଣଚାଲ୍ ବା ଧର୍ଷଣ ପ୍ରୟାସ ଲାଗି ତ ରାମାୟଣ, ମହାଭାରତ ଯୁଦ୍ଧ ଲାଗି ଭାରତକୁ ବୀରଶୂନ୍ୟ କରିଦେଲା, ଏବେ ତୁମ ରାଜ୍ୟରେ ଯେତିକି ଧର୍ଷଣ ଚାଲିଛି, ତାର ପରିଣାମ କଣ ? ଆଧ୍ୟାତ୍ମିକ ଉନ୍ନତି କଣ ତୁମ କର୍ମଯୋଜନାର ଅନ୍ତର୍ଭୁକ୍ତ ନୁହେଁ ? ତା ବିନା ଦେଶୋନ୍ନତି ଏକ ବିଡ଼ମ୍ବନା । ତୁମ ଯୋଜନାର ଶେଷଫଳ—'ବାପପୁଅ ଦୁହେଁ ରାତି ଅନିଦ୍ରା, ମୁଗୁରି ପଛ ମେଲା !'

ମୁଁ ମୁଖ୍ୟମନ୍ତ୍ରୀ ହେଲେ ମୋର ପ୍ରଥମ କାର୍ଯ୍ୟ ହେବ—ଏଇ ଖେଚର, ଭୂଚର, ନିଶାଚରମାନଙ୍କର କାଣ୍ଡ କାରଖାନା ବନ୍ଦ କରିବା । ତାପରେ ହିତ ଓ ମନୋହର ପନ୍ଥାରେ ମୁଁ ଲୋକଙ୍କୁ ବିଦ୍ୟାଖୋର୍, ଆବିଷ୍କାର ବା ଉଦ୍‌ଭାବନ-ଖୋର୍, ସାହିତ୍ୟ ସଙ୍ଗୀତ କଳା ବା ନୃତ୍ୟଖୋର୍ କରିବି ।

ରାଜା, ଜମିଦାର ଭୋଗବିଳାସୀ, ଆପଣାସୁଖୀ ହେଲେ ବୋଲି ତାଙ୍କୁ ତଡ଼ିଲ । ସ୍ୱାଧୀନତାସଂଗ୍ରାମ କାଳର ତ୍ୟାଗପୂତ ମନ୍ତ୍ର ଭୁଲିଯାଇ ତୁମେ ଆଜି କି ସାହସରେ ବ୍ୟକ୍ତିଗତ ସମ୍ପତ୍ତି ବଢ଼ାଇ ଚାଲିଛ ? କିଏ ନିଃସ୍ୱ, ମୋହମୁକ୍ତ ହୋଇପାରୁ ନାହିଁ ? ଉପର ଯିନା ସନ୍ମାର୍ଗର ଦିଶାରି ହୁଅନ୍ତି, ସେ ପଥଭ୍ରାନ୍ତ-ମାନଙ୍କୁ ବିଭ୍ରାନ୍ତ କରୁଛ ।

ପରକୁ ଯେ ଆପଣାର କରେ, ଲୋଡ଼ା ପଡ଼ିଲେ ଦେଶ ଲାଗି ଜୀବନ ଉତ୍ସର୍ଗ କରେ, ସେ ଯିନା ନେତା । କାଳେ କାଳେ ଯୁଗେ ଯୁଗେ ଏହି ସନାତନ ମଣିଷଟିର ବାଣୀ ଲୋକେ ବେଦବାଣୀ ପରି ମାନନ୍ତି, ମାଟି ଆସ୍ଥାନରୁ ତାଙ୍କୁ ଦେବତାର ସିଂହାସନ ଚଢ଼ାଇ ଦିଅନ୍ତି ।

ଅମଡ଼ା ମାଡ଼ିଯିବା ତ କଲମର ସ୍ୱଭାବ । ହଳଆ ଗୋଟେ ସିଆରକୁ ଗୁହିଁ ଆଉ ଗୋଟେ ସିଆର କାଟେ । କଲମର ପ୍ରକୃତ, କନ୍ତୁ, ଚିଙ୍କିଶାଳ କଥା କହୁଁ କହୁଁ ଢେଙ୍କାନାଳକୁ ମାଡ଼ିଯିବା । କାହାର କକଣ ସେ ମାନେ ନାହିଁ । ମୁହଁରେ ତୁଣ୍ଡି ବାନ୍ଧିଲେ, ତା ମୁହଁରୁ ନିଆଁ ବାହାରେ ।

ତୁମ ପୋଷା ପଞ୍ଜୁରୀ କବି ସେ ନୁହେଁ । କ୍ଷମତାକୁ, ଧନକୁ ଡରନ୍ତି ସମସ୍ତେ, କିନ୍ତୁ ସତ୍ କବିର କଲମ କାହାକୁ ଭୟ କରେନାହିଁ । ପାଶୁପତ ପରି ଅମୋଘ ।

ଗୋଟାଏ କବି ନିକାଲି ଦେଲେ, କି ତା ଲୁହ ବା ନିଆଁର ଫସଲକୁ ଉଜାଡ଼ିଦେଲେ କିମ୍ବା ତା କଲମଟି ଚୁର୍‌ମାର୍ କରିଦେଲେ ସେ ଅଧ୍ୟାୟ ଶେଷ ହୋଇ ଯାଏନାହିଁ । ତାପରେ କବିର ଅକ୍ଷୟବୀର୍ଯ୍ୟବାହିନୀ ବାହାରନ୍ତି, ସେମାନଙ୍କ ପଛରେ ଅକ୍ଷୟ ତୂଣୀର ।

●

# ଗପର ଗପ, ଦ୍ୱିତୀୟ ପର୍ବ

ଗ୍ରନ୍ଥାବଳୀ, ତୃତୀୟ ଖଣ୍ଡରେ 'ହସକାନ୍ଦର ଗପ'ର ଦ୍ୱିତୀୟ ଓ ବର୍ଦ୍ଧିତ ସଂସ୍କରଣ; ଗୋଟିଏ ବଡ଼ ଓ କେତୋଟି ଚୂନା ଚୂନା ଗପ ଏଥିରେ ସ୍ଥାନିତ, ସବୁ ୧୯୮୫ରେ ଲେଖା । ଚୂନା ଗପ ବିଷୟରେ ଯେଉଁ ପଦେ ଲେଖିଛି—

ଚଳନ୍ତ ବାଦଲରେ ଟିକ ଟିକ ବିଜୁଳି ଚମକି ଉଠି ଲିଭିଯାଏ, ପଛରେ ତାର ଦୃଷ୍ଟିଆକର୍ଷଣକାରୀ ଘଡ଼ଘଡ଼ି ବା ଚଡ଼ଚଡ଼ି ନଥାଏ, କିନ୍ତୁ ମୋ ସୃଷ୍ଟି-ଫସଲର ଅପାଳକ ରାଜ୍ୟକୁ ସେ ଲକ୍ଷେ ଟଙ୍କା ।

ଯୋଉ ଚୂନା ଚୂନା ଘଟଣା କାନରେ ବାଜେ, ତାକୁ ସାଉଁଟା ଗୁଙ୍ଗୁଡ଼ିରୁ ବଡ଼ ବଡ଼ ଗଳ୍ପକାର କାଢ଼ି ଫିଙ୍ଗି ଦିଅନ୍ତି, କିନ୍ତୁ ମୁଁ ପାରେ ନାହିଁ । ତାକୁ ଚଟ୍‌ପଟ୍ ରୂପ ଦିଏ, କାରଣ, ଏସବୁ ଜୀବନର ଜ୍ୱଳନ୍ତ ଅଗ୍ନିକଣା, ଆଦୌ ଅବହେଳାର ନୁହେଁ, ମନର ରଞ୍ଜକରେ ଲାଗିବା ମାତ୍ରେ ଧରେ ।

୧୫ । ୧୧ । ୮୫ — ଲେଖକ

କଟକ

# ଗପର ଗପ

ଗପ ଯେମିତି, ଗପର ଗପ ସେମିତି । ଦେଉଳଲକୁ ଗ୍ଭହିଁ ମୁକୁଶିଆଳ, ତେଲୁଣିକ ଗ୍ଭହିଁ ସରୁ ଚକୁଳି । ମୁକୁଶିଆଳ ଦେଉଳକୁ ବଳି ଯାଏନ, ଚକୁଳି ତେଲୁଣିରୁ ବଡ଼ ହୁଏନ । ଯୋଉଠି ମୂଳଦେଉଳର ଝୋପାଟିଏ ଖସୁପଡ଼ି ନାହିଁ, ସେଠି ମୁକଶିଆଳର ରହିବ କାହିଁକି ? ସେ ଯେମିତି ଯାହା ତାହା, ସ୍ବାଦ ବି ସେମିତି ଗତଗୋଚର ନାହିଁ । କେହି ଯେପରି ନବ୍ରଣ ହୋଇ ନ କହେ—'ଗପ ତ ଗପ, ତାର ପୁଣି ଗପ ! ମଲ୍ଲୀ ତଂପ ଲେ !'

ମନର ଓର୍ ମାନ୍ ମେଣ୍ଟାଇବା କଥା । ମନର ଚସ୍ୱଭୂଇଁର ସୀମାସରହଦ କାହିଁ ? ତେଣୁ ଅନଧିକାରଚର୍ଚ୍ଚା ହୋଇଗଲା, ଓଲେଇ ଗାଈ ଗୋଦା ମେଲି ବା ବାଡ ଠେଲି ଉଦା ଖାଇଗଲା ବୋଲି ବଡ଼ ମଠର ଗପଗୋସେଇଁମାନେ ଯେପରି ନାକସିଟ୍କା ନ ମାରନ୍ତି !

ସତ କହିଲେ ମୁଁ କାହା ବଲମ୍ ବା କଲମ ଅର୍ଜିତ ଇଲାକା ମାଡ଼ି ବସି ନାହିଁ । ଚକା ଆକାଳି ଭୂଇଁରେ ଛତା ପୋତି ବସିଛି ମାତ୍ର । ଯୋଉମାନେ 'ଆଖି ନାହିଁ, କାନ ନାଇଁ, ବାଜଗଲେ ମୋର ଦୋଷ୍ ନାହିଁ' ବୋଲି ଜଲନ୍ତା ବନାଟି ବୁଲଉଛନ୍ତି, ଗୋଟିଏ ଝୁଲି ଯେପରି ମୋ ତାଲପତ୍ର ଛତାଟି ଉପରେ ନ ପଡ଼େ ! ଓଡ଼ାମୋଡ଼ା ପକାଇ ରହିଲି, ଲକ୍ଷ୍ମଣଙ୍କ ଶରର ଗଣ୍ଡିଗାର ଅପେକ୍ଷା ଏହାର ମହିମା ଅଳ୍ପ ନାହିଁ ।

ଆରେ ବାବୁ, କଟମଟ କରି ଗ୍ଭହୁଁଚ କାହିଁକି ? ମୁଁ କଣ ତୁମ ମାଲମସଲା ହରଣଗ୍ଭଲ୍ କରିଛି ? ଚଢ଼େଇ ଧରିବା' ଲାଗି ପିତୃଅର୍ଜିତ ବା ସ୍ୱୋପାର୍ଜିତ ତୁମ ଡ଼ିହରେ ଫାନ୍ଦ ବସାଇଛି ? ଚଢ଼େଇ ତ ଆପେ ଆପେ ଆସି ମୋ ପାଚୁଲିରେ ବସିଲା, ଗୁଡ ଧସାଇ ମନ ଭିତରେ ପଶିଲା, ମୁଁ କଣ କରିବି ? ତାପରେ ମୁଁ ତାକୁ ପାଳିଲେ ପୋଷିଲେ, ନାଁ—ଡାକ୍ କଲେ କାହାର କଣ ଗଲା ?

କେତେବେଳେ କାହାର ପ୍ରାଣଚପୁଡ଼ା, ଚସନଗିଡ଼ା ହସ ଆଖିରେ ଲାଖିଛି, କଲଜାକଟା, ଗୁଡଫଟା ଲୁହ ବା ମୋ ଆଖିରେ ଲୁହ ହୋଇ ଯାଇଚି । ଜାଣିଶୁଣି ତ କିଛି କରିନାହିଁ । ସେ ଯଦି କବିତା ବା ପ୍ରବନ୍ଧ ନ ହୋଇ ଗପ ହୋଇଗଲା, ମୁଁ କଣ କରିବି ?

ଦିଅଁ ଗଢ଼ିଚ, କି ମାକଡ଼ ଗଢ଼ିଚ ଜାଣେନାହିଁ । ବଡ଼ ଦେଉଳ ଗଢ଼ୁ ଗଢ଼ୁ ଯେବେ ଉଇ-ହୁଙ୍କାଟାଏ ହୋଇଗଲି—କାହିଁକି କହିବା, କପାଳରେ ସିନା କର ଲହିବା ! ଶିଳ୍ପୀର ଦୁର୍ଭାଗ୍ୟ ସେ । ଗାଳି ତ ଅର୍ଜିଚ; 'ମନ ଭରିଣ କର ଗାଳି' ଦିଅ ମୋତେ ବା ମୋ ଇଷ୍ଟକୁ ! ଖୋଲି ପଡ଼ିଆରେ ପିଲି ଦେଇ ଡାହାଣୀ ଚରୁଗୁଣୀଙ୍କ କି ଡ଼ର ? ପିଲିଖାଇ ଡାହାଣୀ, ବାଞ୍ଛୀକରକଟୀଙ୍କି, ଯାହା ମୋର ଭୟ । ସେମାନେ କଣ ନାହିଁ କଣ କହନ୍ତି; ଗର୍ଭବେଦନା ତ ବୁଝନ୍ତି ନାହିଁ, ନେଖେଇଫୁଲିଗୁଡ଼ାକ । ମୁହ ନ ଥାଇ ମିଛରେ ଗୋଡ଼କୁ କମୁଡ଼ୁଥାନ୍ତି । କେଜାଣି ଦିନାଟାଏ ମାରନେବେ । ଶୁଝିଲରେ ବାଳଅା ପିଟା ଢଙ୍ଗ ଗୁଡ଼, ଗୁଡ଼ ।

ନୂଆ ବୋଲି ମୁଁ କାହିଁକି କ୍ଷମା ଆଶା କରିବ ? ଶିଳ୍ପରାଜ୍ୟରେ ନୂଆ ପୁରୁଣା କଣ ? ମାପକାଠି ତ ଗୋଟିଏ । କୋଉ ସରକାର ଲାକପୋଇ ପହିଞ୍ଚ ଗଲେ ଲୁଆମାନେ ତାକୁ ପାଗ୍ରେଟି ନଅନ୍ତି, ନା ଲହୁଲୁହାଣ କରନ୍ତି ? ସମବ୍ୟବ-ସାୟୀଙ୍କଠାରୁ ସଦ୍ୟ ବ୍ୟବସାୟୀ ଏଇ ଅନୁଦାର ଚରମ ଦୁର୍ବ୍ୟବହାର ପାଇଲେ ବି ଦବିଯିବ ନାହିଁ ।

କାରଣ ଯୋଉଁ ଡେଣାରେ ଉଡ଼ିବାକୁ ସାହସ କରିଚ, ସେ ମୋ ନିଜର । ସୁନ୍ଦର ଦିଶିବ ବୋଲି ସେଥିରେ ମୟୂରପୁଚ୍ଛ ମୁଁ ଖଞ୍ଜିନାହିଁ । ଆଗେ ଜୀବନ, ପରେ ଗପ—ଏସବୁ ଜୀବନଗପ । ଏଥିରେ ମେଦ ନାହିଁ, କଳ୍ପନାର କ୍ଳେଦ ନାହିଁ, କିଛି ହେଲେ ଆଡ଼ପଡା, ଗୁଡଫୁଲି ବଡ଼ପଣ ନାହିଁ । ଏ ଖୋଦ ଜୀବନ ବା ସ୍ୱୟଂ ଖୋଦା । ଏ ବା ସେ ତୁମ ଦୁଆରେ ଡାକିଲେ ତୁମେ କଣ 'ଓ' ନ କରି ରହିପାରିବ ?

କଟକ — କୃଷ୍ଣବିହାରୀ ଦାଶ

ତା ୨୧-୧୦-୭୮

# ହେଲେନ୍

ଯେଉଁମାନେ କୁକୁରକୁ କୋଳରେ ବସାନ୍ତି, ମଟରରେ ସାଙ୍ଗରେ ଘେନି ବୁଲନ୍ତି, ଅଫିସ୍ ଫେରନ୍ତି ଆରାମଚୌକିରେ ବସି ତାର ଲୀଳାଖେଳା ଉପଭୋଗ କରନ୍ତି, ସେମାନଙ୍କ ମଧ୍ୟରେ ମୁଁ ନାହିଁ, ଯଦି ବା ତାର ପ୍ରଭୁଭକ୍ତି, ବିଶ୍ୱସ୍ତତା ଓ କୃତଜ୍ଞତା ପ୍ରଭୃତି ଗୁଣରେ ମୁଁ ମୁଗ୍ଧ । ବୁଲା କୁକୁର ଦେଖିଲେ ମୁଁ ଡରେ । ତାର ସ୍ୱଜାତିହିଂସ୍ରତା ଓ କଳହପ୍ରିୟତାକୁ ଘୃଣା କରେ ।

ଆମ ହରିଶଙ୍କରବାବୁଙ୍କୁ ଏକା ଆପଣ କାହିଁକି, ନିଖିଳ ଉତ୍କଳର ଯେତେ ଶ୍ୱାନଭକ୍ତ ଅଛନ୍ତି, ସମସ୍ତେ ଜାଣିଥିବେ । ଭୂଭାରତର ଶ୍ୱାନସାହିତ୍ୟରେ ସେ ଜଣେ ସିଦ୍ଧ ପୁରୁଷ । ଥିସିସ୍ ଲେଖିଥିଲେ ସେ ଡି ଫିଲ୍ ବା ଡି. ଲିଟ୍ ଡିଗ୍ରୀ ଭୂଷିତ ହୋଇଥାନ୍ତେ, କେଉଁ ନାମ୍‌ଜାଦା ବିଶ୍ୱବିଦ୍ୟାଳୟରେ ଶ୍ୱାନସାହିତ୍ୟ ଅଧ୍ୟାପନା ଲାଗି ମୁଖ୍ୟ ଅଧ୍ୟାପକ ଭାବେ ନିଯୁକ୍ତି ପାଇଥାନ୍ତେ । କିନ୍ତୁ ଦୁଃଖର ବିଷୟ, ପୃଥିବୀରେ ଯେତେ ଧର୍ମଚକ୍ର, ପାଠଚକ୍ର, ଶାଠଚକ୍ର ଅଛି, କେଉଁଠି ଶ୍ୱାନସାହିତ୍ୟର ଚର୍ଚ୍ଚା ହୁଏ ନାହିଁ ।

ବେଶୀ ପୋଷିବାକୁ ବଳ ନାହିଁ । ତାଙ୍କର ଗୋଟିଏ ମାତ୍ର କୁକୁରୀ—ନାଆଁ ଦେଇଛନ୍ତି 'ହେଲେନ୍' । ତା ଲାଗି ଦିନକୁ ଶହେ ମାଉଁସ ଖଣ୍ଡା, ଅଢ଼େଇଣ ଦୁଧ ଲାଗୁଆ । ଶୀତ ଦିନେ ଖଟ ଉପରେ ତୂଳା ଶେଯ ପଡ଼େ; କୁକୁରୀ ଗରମ ଜାମା, ମାଙ୍କଡ଼ଟୋପି ପିନ୍ଧି ଶୁଏ । ବେକରେ କଉଡ଼ି ଆଉ ଘାଗୁଡ଼ି ମାଳଟିଏ । ଦଉଡ଼ିଲେ ଝୁମୁରୁ ଝୁମୁରୁ ବାଜେ । ବାବୁ ଅଫିସ୍‌ରୁ ଫେରିଲେ ଦୁଇ ଗୋଡ଼ ଟେକି ସେ ପହିଲେ ଅଭ୍ୟର୍ଥନା ଜଣାଏ । ଅଚିହ୍ନା, ଅଜଣାଙ୍କୁ ଫାଟକ ଡିଆଁଇ ଦିଏ ନାହିଁ । ପିଲାମାନଙ୍କର ବହୁ ଖେଳଣା ମଧ୍ୟରେ ସେ ଗୋଟିଏ—ଜୀବନ୍ତ ।

ସେଦିନ ହରିଶଙ୍କରବାବୁ ହେଲେନ୍‌ର ଭାରି ପ୍ରଶଂସା କରୁଥିଲେ—ଡାହାଣୀ ପରି ପାଟିକି ଲହିଁ ବସେ ନାହିଁ; ଯେତେ ଲୋଭନୀୟ ଦିଶୁଥିଲେ ବି ଖାଦ୍ୟ ପଦାର୍ଥରେ ମୁହଁ ମାରେ ନାହିଁ । ଭାରି ବୁଦ୍ଧି; ମୁହଁକୁ ଲହିଁ ଦେବା ମାତ୍ରେ ମନର ଭାବ ବୁଝିପାରେ । ପଶୁ ହୋଇ ଏତେ ମାନବତା ହାସଲ କରିଛି କିଏ ? ଜଗତରେ କେଉଁ ପଶୁର ରୁଚି ଏତେ ଉନ୍ନତ, ଚରିତ୍ର ଏତେ ପବିତ୍ର ?

'ଆଜ୍ଞା, ପଶୁର ଗୋଟାଏ ଚରିତ୍ର କଣ ? ବେଳ ପଡ଼ିଲେ ଅସଲ ରୂପ ତାର ବାହାରେ । ହାଣ୍ଡିଶାଳରେ ପଶି ହାଣ୍ଡି ମାରି କରେ ସେଇ, ତୁଳସୀ ଚଉରା ଦେଖିଲେ ଗୋଡ଼ ଟେକେ ସେଇ; ଠାକୁର ଦେବତାଙ୍କ ପ୍ରତି ବି ତାର ମାନ୍ୟ ନାହିଁ । ଏଠି ସେଠି ପଡ଼ିଥିବା ଖଇଖିଆ ବୈଦ୍ୟନାଥମାନଙ୍କୁ ସେ ଅନ୍ତ୍ରାଦ ଦିଏ । କ୍ଷମାଶୀଳ ଦେବାଧିଦେବ ପଶୁଜନ୍ତୁର ଏ ଦୁରଭ୍ୟାସକୁ ଧରନ୍ତି ନାହିଁ ବୋଲି ସିନା, ନଇଲେ ତ ଭସ୍ମ କରି ଦିଅନ୍ତେ !

ନାସ୍ତିକମାନେ କହନ୍ତି ଟାଉଟର; ନଇଲେ ପରମବ୍ରହ୍ମଜ୍ଞାନୀ ଜଣେ ବ୍ୟକ୍ତି; ସେ ସ୍ନାନ ଶୌଚ ପରେ ଧ୍ୟାନରେ ବସିଥିବା ବେଳେ ହୁଙ୍କା କି ଗଛବୁଦା କଣ ବଗ୍ରଚିଲି କେଜାଣି, ତାଙ୍କୁ ପୁଣି ଥରେ ଗାଧୋଇ ଦେଲି । 'ଉମ୍ଭ ପ୍ରସ୍ରବଣ ହଠାତ୍ କେଉଁଠୁ ଅଜାଡ଼ି ହୋଇ ପଡ଼ିଲା ?' ଚମକି ପଡ଼ି ପଛକୁ ଅନାଇଲା ବେଳକୁ ଚମ୍ପଟ୍ । ଯେମିତି ବୋଧ ତାଙ୍କର ଜାତ ହୋଇଥିଲା, ଛ ମାସ ମାମୁଁଘରେ ନ ପୂରେଇ ସେ କଣ ଗୁଡ଼ିଥାନ୍ତେ ? କିନ୍ତୁ ତା ଲଜ୍ଜା ପାଇଲେ ନାହିଁ । ଆପଣ ହସିଲେ କଣ ହେବ, ଏ ତ ଗୋଟିଏ କରୁଣାନ୍ତ ନାଟକ !

ବଜାରିଗୁଡ଼ାକ; ଶ୍ଳୀଳତା ନାହିଁ କି ଶାଳୀନତା ନାହିଁ । ବଡ଼ ବଜାରରେ ଯାବତୀୟ ଅପକର୍ମ କରନ୍ତି ସେଇମାନେ । ଅଶ୍ଳୀଳତା ଅପରାଧରେ ସେମାନଙ୍କୁ ଗିରଫ କଲେ କଣ ଅନ୍ୟାୟ ହେବ ? ପୁଅଝିଅଙ୍କୁ ଧରି ଆପଣ ଆଖି ନ ବୁଜି ଯାଇ ପାରିବେ ? ସ୍ରେଟ ପୁଅଟି ତ ଆପଣଙ୍କୁ କେତେ ପ୍ରଶ୍ନ ପଚାରିବ !

ସେଥିଲାଗି ରାଗି କେତୁଟାଙ୍କ ଟାଙ୍ଗ ସ୍ରେଟା କରି ଗୁଡ଼ିଛି ମୁଁ । କେତୁଟାଙ୍କ ବେକରେ ଭଙ୍ଗା ଗୁଡ଼ବଣା ଫାନ୍ଦ ଗଳେଇ ଦେଇଛି । ଲାଞ୍ଜରେ ତାଳପୋଟକା ବାନ୍ଧି ନିଆଁ ଲଗେଇ ଦେଇଛି । ରଜା, ଜମିଦାରଙ୍କ ପରି ଅତ୍ୟାଚାର କରିବାକୁ ମରଜି ଆସିଲେ ମୁଁ ଭୂଲକୁକୁରଙ୍କ ପାଖେ ପହଞ୍ଚିଯାଏ । ଯାହା ଇଚ୍ଛା ତା କଲେ ବି କେହି କିଛି କହନ୍ତି ନାହିଁ । ଏମିତି କରେ ବୋଲି ମୋ ମନରେ କେବେ ଅନୁତାପ ଆସେ ନାହିଁ; ଭାବେ ଠିକ୍ କରିଛି, ଶହେବାର ଠିକ୍ କରିଛି ।

ତାକୁ ଦେଖିଲେ ମୋ ମନରେ ତିଳାର୍ଦ୍ଧ ଦୟା ଆସେ ନାହିଁ । କାହିଁକି ଆସିବ ? ଦୟାମାୟାର ମୂଲ୍ୟ କଣ ସେ ଦିଏ ? କଥା ଅଛି—

ଉପରୋଧ କଲି କୁକୁରକୁ
କୁକୁର ମୂତିଲା ଉପରକୁ ।

ସେଇଟା ବଡ଼ ନେଭେଡ଼ା ଆଜ୍ଞା । ଟିକିଏ କଣ ଖାଇବାକୁ ଦେଇଦେଲେ ପଛେ ପଛେ ଗୋଡ଼ାଇଥାଏ । ଖୋସାମଦିଆଙ୍କୁ ତେଣୁ କୁକୁର ସଙ୍ଗେ ଆଧୁନିକ ଓଡ଼ିଆ ଜାତିର ପିତା ମଧୁବାବୁ ତୁଳନା କରିଛନ୍ତି—

"ଖୋଷାମଦିଆର କୁକୁର ପ୍ରକୃତି
ଅଇଁଠା ପତରେ ଧ୍ୟାନ !"

କବିବର ରାଧାନାଥ କୋଉ ଭଲ କଥା ଲେଖିଛନ୍ତି ଯେ !

ଅଇଁଠା ଗୋଇଠା ଭୋଗୀ
ସେହି ଶ୍ୱାନ ପ୍ରାୟେ
ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ ।

ଓଡ଼ିଶାରେ ଗୋମାତାକୁ ଅବହେଳା କରି ଯେତେବେଳେ ନୂଆ ଇଂରେଜପଢ଼ୁଆ ବାବୁମାନଙ୍କ ମନରେ କୁକୁର ପାଳନ ନିଶା ଲାଗି ଆସୁଥିଲା, ରାଧାନାଥ କଲମ ମୁନରେ ଦେଇଥିଲେ ଗୋଟେ କେଞ୍ଚା—

ତପ୍ତ ବୈତରଣୀ ହେବ ପରା ପାରି
ସେହି ଶ୍ୱାନଙ୍କର ହୋଇ ପୁଚ୍ଛଧାରୀ !

ସମାଜକଲ୍ୟାଣକାମୀ କବି ସେମାନେ । କୁକୁରର ତାଦୃଶ ଦୁଷ୍ଟ ବୃତ୍ତି ବିଷୟରେ ଅବହିତ ହୋଇ ନ ଥିଲେ କାହିଁକି ଏପରି ଲେଖିଥାନ୍ତେ ?

ଯେତେ ବିଶ୍ୱସ୍ତ ବୋଲି କହନ୍ତୁ ନା କାହିଁକି, ପୁଳାଏ ମାଉଁସ ପକାଇ ଦେଲେ ତା ବୁଦ୍ଧି ବାଉଳା ହୋଇଯାଏ । ଚୋର ଆଗମ୍ୟରେ ଚେଷ୍ଟା କରେ । ଆଜିର ଦୁନିଆ ତ ଲାଞ୍ଚଖୋର । ପଶୁଜନ୍ତୁକୁ ମୁଁ ସେଥିଲାଗି ସମାଲୋଚନା କରୁନାହିଁ ଯେ କଥାକୁ କହୁଛି ।

ଟିକିଏ ମୁଣ୍ଡ ବିଗିଡ଼ିଲେ ସେ ମଣିଷର ଅଶେଷ କ୍ଷତି କରେ । ଆଜ୍ଞା ଜାଣନ୍ତି—ବାୟା କୁକୁରଙ୍କ କବଳରେ ପଡ଼ି ଭାରତବର୍ଷରେ ବର୍ଷକେ କେତେ ମରନ୍ତି ? ପଚିଶ ହଜାର ! କେମିତି ବାୟା ନ ହେବେ ଯେ ! ଜୀବଜଗତରେ ତାଠାରୁ ବଳି ଅସହାୟ, ସର୍ବହରା ଆଉ କିଏ ଅଛି ? ଅନାହାର ଓ ବ୍ୟାଧିରେ ଛଟପଟ ହୋଇ ସେ ମରେ । କୁକୁରୀ ନିଜ ମୃତ ଶିଶୁର ମାଂସ ଭକ୍ଷଣ କରେ, ଯେମିତି ନଅଙ୍କରେ ମଣିଷ କରେ ।

ଆଜ୍ଞା, ରାସ୍ତା ଅବରୋଧ କରି ଶୋଇବାର କି ଅଧିକାର ଅଛି ତାର ? ଏଇଟା କଣ ଆଶ୍ରମ ନା ସେ ଗୋଟାଏ ଆଶ୍ରମମୃଗ ? ମଣିଷ ଅବଶ୍ୟ ରାସ୍ତାକୁ ଘର ମଡ଼ାଇଲେ, ରାସ୍ତାରେ ଇଟା ପଥର ଗଦାଇଲେ କି ଅଚଳନ୍ତୀ ଟ୍ରକ୍ ଥୋଇ ବାଟ ବନ୍ଦ କଲେ ମୁଁ କିଛି କହେ ନାହିଁ । କାରଣ 'ମଣିଷ ଦେହେ ଦିବ୍ୟ ଜ୍ଞାନ' ! ଦିନେ ନା ଦିନେ ତାର ବୁଦ୍ଧି ଫିଟିବ । ତା ବୋଲି ଏଟା କାହିଁକି ସେମିତି କରିବ ?

ଡ୍ରାଇଭରର ମାତଲାମିର ପ୍ରଥମ ଶିକାର କିଏ ? ଷ୍ଟେସନ ପାଖରେ ବୁଦ୍ଧି-ବିବେକ ହରାଇ ଏଣେତେଣେ ଦୌଡ଼ୁଥିବା ବେଳେ ଛୁଆ ଦି ସ୍ବରେଟାଙ୍କୁ ଟ୍ରକ୍ ଚଟଣି ପରି ବାଟି ଦେଇଗଲେ ବୃଦ୍ଧଙ୍କର ଏଇ ଜନ୍ମସ୍ଥାନରେ କାହାର ମୁଣ୍ଡ ବଥାଏ ? ଅଥଚ ଗୋଟାଏ ମଣିଷ ପିଲା ଦେହରେ ମଟର ହାଓ୍ବା ଟିକିଏ ବାଜିଗଲେ ଦେଖରେ ବାପା ! ଜଗତ ପରି କୁଆଡ଼େ ବ୍ରହ୍ମମୟ । ଭାରତୀୟ ଋଷିର ରନ୍ଧ୍ରେ ରନ୍ଧ୍ରେ କୁଆଡ଼େ ବ୍ରହ୍ମଦର୍ଶନ କରେ । ନା ଏ କେବଳ ପୋଥି ବାଇଗଣ ?

ଫୁଟନ୍ତା ଗରମ ପାଣି ଫିଙ୍ଗାଯାଏ କାହା ଉପରକୁ ? ମଣିଷ ନିଷ୍ଠୁରତାର ନିର୍ଲଜ୍ଜ ସଙ୍କେତ ଦେଖାଇ ସେ ହତଭାଗ୍ୟ ବୁଲୁଥାଏ ।

ତାକୁ ଦେଖିବାମାତ୍ରେ କୋଉ ବଗୁଲିଆ ପିଲା ମନରେ ଢେଲା ବା ଫୋପଡ଼ ମାରିବାର ପ୍ରେରଣା ନ ଆସେ ?

ଭଗବାନ୍ ପରି ମଣିଷ ସୃଷ୍ଟି କଲାମାତ୍ରେ ତା ଲାଗି ଆହାର ଖଞ୍ଜି ରଖନ୍ତି ? କଣ ଏଇ ଅମେଧ, ଉଚ୍ଛିଷ୍ଟ, ଆବର୍ଜନା ?

ମଣିଷର ପରି କୋଉଠି ଦେହରକ୍ଷୀ ଯେ ! ନର୍ଦ୍ଦମା ସ୍ରୋତରେ ଭାସି ଯାଉଥିବା ବେଳେ କିଏ ତାକୁ ଉଦ୍ଧାର କରେ ?

ସରକାର ପରି ବିଶ୍ୱସ୍ତତା, ସାହସିକତା, ପ୍ରଭୁଭକ୍ତି ଲାଗି ପୁରସ୍କାର ଦିଅନ୍ତି ! ଏ ପର୍ଯ୍ୟନ୍ତ କେତେ ଜଣ କୁକୁର ସେ ପୁରସ୍କାର ଲାଗି ଯୋଗ୍ୟ ବିବେଚିତ ହୋଇଛନ୍ତି ?

ଲୋକସ୍ଥାନ ଏଇ ନିଅଙ୍ଗି ଆମାନଙ୍କୁ ନର୍ଦ୍ଦମା ବସ୍ତି ଧାରରେ ଆହାର ଖୁଣ୍ଟି ଖାଇବାର ଦେଖିଛନ୍ତି ? ଆରେ ଏମିତି ଛୁ-ଛୁକର ଜୀବନ ଯେନ ବଞ୍ଚିବା ଅପେକ୍ଷା ମରିଯିବା କୋଟିଗୁଣେ ଭଲ । ସଦାଶୟ ମ୍ୟୁନିସପାଲିଟିର କରୁଣାପ୍ରାଣ ଦୂତମାନେ ଏଇ ହତଭାଗ୍ୟମାନଙ୍କୁ ଦୁଃଖକଷ୍ଟରୁ ମୁକ୍ତି ଦେବା ଇଚ୍ଛାରେ ଛକ ଛକ ବେଳରେ ଫାଶ ଗଲେଇବା ଦେଖିଛନ୍ତି ? ଦେଖିଛନ୍ତି ସେଇ ଜାଲଗାଡ଼ି ଯେଉଁଥିରେ ଭର୍ତ୍ତିକରି ଏମାନଙ୍କୁ ଶୂଳିଆ ପଦାକୁ ନିଆଯାଏ ? ଅତି ରୁଗ୍ଣ ସଙ୍ଗେ ଅତି ସୁସ୍ଥ ଜାଲି ବାଟେ ମୁହଁ ଗଳାଇ କି କରୁଣ ଦୃଷ୍ଟିରେ ଚାହିଁଥାନ୍ତି ? କାହା ମନରେ ଦୟାପଦ ଆସେ ? ରାମଙ୍କ ଦୂତ ତ ନୁହନ୍ତି, ଗଣେଶଙ୍କ ବାହନ !

ଏଇ ବେକାର, ବୃଦ୍ଧ, ରୁଗ୍ଣ ଦୁସ୍ଥମାନଙ୍କ ଲାଗି ଗୋଟିଏ ଧର୍ମଶାଳା ବା ଅନାଥାଶ୍ରମ ଖୋଲିବା କଥା କିଏ ଚିନ୍ତା କରେ କି ?

ନା, ନା, ଏମାନଙ୍କୁ ଏକଦମ୍ ଖତମ୍ କରିଦେଲେ କଣ ଲୋକସାନ୍ ହୁଅନ୍ତା ?

ବଜାରା, ଛତରା, କୁଳ ନାହିଁ କି କୌଳୀନ୍ୟ ନାହିଁ, ଜାତି ନାହିଁ କି ଗୋତ୍ର ନାହିଁ । ବାର ବର୍ଷ ଲଗି ସଳଖିଲେ ବି ସେମାନଙ୍କ ଲାଙ୍ଗୁଡ଼ ଯୋଉ ବଙ୍କାକୁ ସେଇ ବଙ୍କା । ଅନାହାରରେ ଶତ ସଂଖ୍ୟାରେ ଗଡ଼ି ମଲେ ବି ଖାଦ୍ୟମନ୍ତ୍ରୀ ବା ସ୍ୱାସ୍ଥ୍ୟମନ୍ତ୍ରୀ ବିଚଳିତ ହୁଅନ୍ତି ନାହିଁ । ବ୍ୟବସ୍ଥାସଭାରେ ପ୍ରଶ୍ନ ହୁଏନାହିଁ । ଗଣ୍ଡା ଗଣ୍ଡା ରାସ୍ତା ପାଖରେ ଧକେଇଥିଲେ ବି ପଶୁଡାକ୍ତର ଆଡ଼ ଆଖିରେ ଚାହାଁନ୍ତି ନାହିଁ । ଜୀବ-ଜନ୍ତୁ ସଂରକ୍ଷଣ, ନିଷ୍ଠୁରତା ନିବାରଣ ଆଇନର ବାହାରେ ଏମାନେ ।

'ସ୍ୱଜାତି ପରହିଂସ୍ରକ' କଥାଟା ବାହାରିଛି ଏମାନଙ୍କ ଗତିରୀତିରୁ । ନା, ନା, ଏମାନଙ୍କୁ ନିପାତ କର, ବିନାଶ କରିଦିଅ ।

ହରିଶଙ୍କରବାବୁ କହିଲେ—କଣ ? କୁକୁର ବଂଶ ବିଲୋପ ଆପଣ ଚାହୁଁଛନ୍ତି ? ବଡ଼ ଦୁଃଖର ବିଷୟ ଏ । ଜାଣନ୍ତି, କୁକୁର ଆମ ରାସ୍ତା-ଘାଟର ସ୍ୱୟଂ ନିଯୁକ୍ତ ପୁଲିସ୍ ! ବିନା ଦରମାରେ ରାତି ଅନିଦ୍ରା ହୋଇ ସେ ଜଗେ, ଚିର କର୍ତ୍ତବ୍ୟନିଷ୍ଠ ।

ଚୋର ଧରିବାରେ ଅଦ୍ଭୁତ କ୍ଷମତା ତାର ଅଛି । ରକ୍ତଲଗା ଲୁଗା ଶୁଙ୍ଘି ଦେଇ ନରହତ୍ୟାକାରୀକୁ ନିର୍ଭୁଲ ଭାବେ ଧରିପାରେ ସେ । ଚମତ୍କାର ଘ୍ରାଣଶକ୍ତି । ଅବଶ୍ୟ ଏ ଦେଶୀଗୁଡ଼ାଙ୍କ ହାତରେ ଖଡ଼ା ଶିଙ୍ଗ ନାହିଁ ।

ଆପଣ କୁକୁର ଦେଖିବେ ତ ଇଉରୋପ ଯାନ୍ତୁ, ତହୁଁ ବଳି ତହୁଁ ବଳି । ରୁଷିଆର ବୋରଜୋଇ— ଚେପ୍ଟା ମୁଣ୍ଡ, ଲମ୍ବା ବାଳ, ଲଟ୍‌କା କାନ; ଜର୍ମାନୀ ପିନ୍‌ଶ୍ଚେର୍, ଡୋଭରମ୍ୟାନ୍, ଫରାସୀ ବ୍ରାଏଡ଼୍, ସ୍କଟ୍‌ଲାଣ୍ଡର କୋଲି, ଇଂରେଜୀ ଗ୍ରେହାଉଣ୍ଡ୍, ଆଇର୍‌ଲାଣ୍ଡର ଉଲ୍‌ଫଡ଼ଗ୍, ନରଓ୍ୱେର ଏଲ୍କ୍ ହାଉଣ୍ଡ୍; ଏସିଆରେ ଦେଖିବେ ତ ଦେଖନ୍ତୁ ସାମୋୟେଡ଼୍ କିମ୍ବା ଚାଓ । ଦ୍ରୁତଗତି, ଶିକାରରେ ସୁଦକ୍ଷ । ନଇଲେ ଦେଖନ୍ତୁ ଆରବ, ପାରସ୍ୟ ଓ ଆଫଗାନିସ୍ଥାନର ଗ୍ରେହାଉଣ୍ଡ୍ ଜାତୀୟ ସାଲୁକି; ଘ୍ରାଣଶକ୍ତି ପ୍ରବଳ । 'ଧ' କହିଲେ ଯାଇ ବାଘକୁ ମାଡ଼ି ବସିବ । ନଇଲେ ଆପଣ ଫ୍ରେଞ୍ଚ ଟୟ ବୁଲ୍‌ଡଗ୍, ଇଂରେଜୀ ହ୍ୱିପେଟ୍, ଜର୍ମାନୀ ଫକ୍‌ସହାଉଣ୍ଡ୍ କିମ୍ବା ବାସେଟ୍ ହାଉଣ୍ଡ୍ ଦେଖନ୍ତୁ; ମୋଟେ ବାର ଚଉଦ ଇଞ୍ଚ ଉଚ୍ଚା, ଦେଖିବାକୁ ବଡ଼ କଉତୁକିଆ, କୋଳରେ ନଚାଅ, କାନ୍ଧରେ ବସାଅ । କିନ୍ତୁ ଏ ବଣୁଆ କୁକୁର ଅଲକ୍ଷଣା କଣ ତାକୁ ରଖେଇ ଦେବେ ? ଆରେ ବାବୁ, ସେ ତ ଆପଣା ବାଟେ ବାଟେ ଯାଉଛି, ତୁମର କଣ କରୁଛି ?

ମନେ ମନେ ସେଦିନ ଖୁବ୍ ରାଗିଲି—ଯେତେବେଳେ ଶୁଣିବ, ଖାଲି କୁକୁର କଥା, କୁକୁର ଯାଙ୍କର ଗୋତ୍ର, କୁକୁର ଯାଙ୍କର ଇଷ୍ଟଦେବତା । ତାଙ୍କ

ମତରେ ବେଦ, ଉପନିଷଦ୍, ପୁରାଣଯୁଗ କୋଉଠି ଥିଲା ଠାକୁରଙ୍କ ଯୁଗ; ଗୋରୁ-ଗାଈଙ୍କ ଯୁଗ; ନନ୍ଦିନୀ, କାମଧେନୁ, ସୁରଭି ଲୋଡ଼ା ହେଉଥିଲା । ଘିଅ ନ ହେଲେ ଯଜ୍ଞ ଅଚଳ । ଏଟା ହେଲା କୁକୁରଙ୍କ ଯୁଗ, ଯେହେତୁ ଏ ଯୁଗରେ ଚୋର ବେଶୀ; ଚୋର ଧରିବାରେ ମଣିଷ ଅପେକ୍ଷା କୁକୁରର ଦକ୍ଷତା ଅଧିକ । ଡେଙ୍ଗୁ ଚୋରୀ, ଡ଼କେଇତି, ନରହତ୍ୟା ଧରିବା ଲାଗି ପୁଲିସ୍ ନେଉଛି ଏମାନଙ୍କ ସାହାଯ୍ୟ । ଏମିତି କେତେ କଥା ଶୁଣି ଶୁଣି କାର୍ଯ୍ୟବାହାନାରେ ସେଦିନ ହରିଶଙ୍କର ବାବୁଙ୍କଠାରୁ ଖସି ଆସିଲି ।

ମାସକ ପରେ ପୁଣି ଦେଖା; ସାମାନ୍ୟ ଉପକ୍ରମ ପରେ ହରିଶଙ୍କରବାବୁ ପୁଣି ଶ୍ୱାନସାହିତ୍ୟରେ ଉମଙ୍ଗିତ ହୋଇ ପଡ଼ିଲେ—ଏଇ 'ଲାଇକା' ଯେ ଜ୍ୟୋତିର୍ଲୋକ ଭ୍ରମଣ କରି ଫେରି ଆସିଛି । ଏହା କୌଣସି ନିର୍ଦ୍ଦିଷ୍ଟ କୁକୁରର ନାମ ନୁହେଁ । ଗୋଟିଏ ଜାତିସ୍ଥ କୁକୁରକୁ ସାଇବେରିଆରେ 'ଲାଇକା' କହନ୍ତି । ମଣିଷ ଆଗରୁ ଏଇ କୁକୁର ଚନ୍ଦ୍ରଲୋକରେ ପାଦ ପକେଇଲା । କୁକୁର ଜାତି ପକ୍ଷରେ ଏ କମ୍ ଗୌରବମୟ ବିଷୟ ନୁହେଁ । ଚନ୍ଦ୍ର କଣ ମାଇ ହୋଇ ଗଲା ? ସୁନ୍ଦରୀମାନଙ୍କ ମୁଖ ସହିତ ଆଉ କଣ ତାକୁ ଉପମା ଦେବେ ନାହିଁ ?

ଶଶକ ହାରିଥିଲା, ତାର ମୃତ୍ୟୁର କଳଙ୍କ ଘେନି ଚନ୍ଦ୍ର ବୋଲାଇଲା ଶଶାଙ୍କ । କୁକୁର ଜିଣିଲା । ଏଇ ବିଜୟ ଘେନି ଚନ୍ଦ୍ର ନିଶ୍ଚୟ ଗୋଟିଏ ନୂତନ ନାମ ଗ୍ରହଣ କରିବ । —ଧରନ୍ତୁ ଶ୍ୱାନାଙ୍କ ବା ସେହିପରି କିଛି; ହୁଏତ ଏହା ଆପଣଙ୍କ ସାହିତ୍ୟିକ ସମର୍ଥନ ଲାଭ କରି ନ ପାରେ; ଚନ୍ଦ୍ରଙ୍କୁ ଏହାଠାରୁ ଭଲ ନାମଟିଏ ଦେବାରେ କି ଅନ୍ତରାୟ ଅଛି ?

କୁକୁର ପ୍ରତି ଆମର ପ୍ରୀତି ଅର୍ବାଚୀନ ନୁହେଁ; କୁକୁରର ମହତ୍ତ୍ୱ ଶାସ୍ତ୍ରାନୁମୋଦିତ । ବେଦର "ସରମା"କୁ କିଏ ନ ଜାଣେ ? ଗୀତାରେ ଅଛି—ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ । ବେଦ କଣ କୁକୁରର ଗୁଣ କୀର୍ତ୍ତନ କରି ଅପବିତ୍ର ହୋଇ ଯାଇଛି ? ପ୍ରାଚୀନ ଯୁଗରେ ଜୀବ ହିସାବରେ ସେ ଭଲ ପ୍ରତିଷ୍ଠା ନ ଥିଲେ ବେବିଲୋନୀୟ ମନ୍ଦିର ଓ ମିଶରର ପିରାମିଡ଼୍‌ମାନଙ୍କରେ କୁକୁରର ମୂର୍ତ୍ତି ଖୋଦିତ ହୋଇଥାନ୍ତା କାହିଁକି ?

ବିଦ୍ୟାର୍ଥୀର ପଞ୍ଚ ଲକ୍ଷଣ ମଧ୍ୟରୁ ଗୋଟିଏ କୁକୁରଠାରେ ନିହିତ; କୁକୁର ଛୁଇ—କୁକୁରଠାରୁ ମାଂସ ଛଡ଼ାଇବାର ବୋକାମି କିମ୍ବା ଷଣ୍ଢକୁ କୁଟା ଖାଇବାକୁ ଛାଡ଼ି ନ ଦେବାର ସ୍ୱାର୍ଥପରତା ଅଜବ ଗଳ୍ପ, ଆଜ୍ଞା ! ମଣିଷ ଲାଗି କୁକୁର ପରି କିଏ ଆଉ ଜାନ୍ ଦେଇପାରେ ? ନିଉଫାଉଣ୍ଡ୍‌ଲ୍ୟାଣ୍ଡ୍‌ର ଓ୍ୱାଟର୍ ଡଗ୍ ବୁଡ଼ି ଯାଉଥିବା ଲୋକଙ୍କୁ ଉଦ୍ଧାର କରି କୂଳକୁ ଘେନି ଆସେ ।

ଏଇ କୁକୁରକୁ ଜନ୍ତୁ ବୋଲି ଭାବୁଛନ୍ତି ଯିଏ, ଏ ପ୍ରେମର ମହତ୍ତ୍ୱ ବୁଝେ । ଆମେରିକା ଲେଡ୍‌ହଡ୍‌ଭାଇରାଭାଷ୍ଟୀଙ୍କର ଗୋଟିଏ ଗଳ୍ପ ଶୁଣିଛନ୍ତି ? କୁକୁରଟିଏ, ସେ ଦିନରେ କୁକୁର ଥାଏ, କିନ୍ତୁ ରାତିରେ ମଣିଷ ହୋଇଯାଏ । ଗୋଟିଏ ଝିଅ ସହିତ ତାର ପ୍ରେମ ହେଲା । ତାର ଯେତେ ଛୁଆ ଜନ୍ମ ହେଲେ, ସବୁ କୁକୁର । ମଣିଷ-ଜାତିକି ଏ ବଡ଼ ନିନ୍ଦା । ଜ୍ଞାତି-କୁଟୁମ୍ବ ତାକୁ ଛାଡ଼ି ପଳାଇ ଗଲେ । କୁକୁର ସବୁଦିନ ଚମଡ଼ା ଖୋଳକୁ ଭୂଇଁରେ ରଖି ଯାଧାଏ । ଦିନେ ତାର ଚତୁର ପ୍ରେମିକା ସେଇ ଚମଡ଼ାକୁ ପୋଡ଼ି ଦେଲା, ତାପରେ କୁକୁର ମଣିଷ ହୋଇ ରହିଲା । ଏଥିରୁ ବୁଝାଯାଏ, ଏ କୁକୁର ଭିତରେ ମଣିଷ ଅଛି, ଦେବତା ଅଛନ୍ତି । ଏ ଘୃଣ୍ୟ ନୁହେଁ, ଅସ୍ପୃଶ୍ୟ ନୁହେଁ ।

ଇଷ୍ଟୋନିଆଙ୍କ ଗଳ୍ପରେ ଅର୍ଦ୍ଧ-ମନୁଷ୍ୟ ଅର୍ଦ୍ଧ-କୁକୁର—ମାନେ ଆମର ଯେପରି ନବଗୁଞ୍ଜର ମୂର୍ତ୍ତି, ସେପରି ଏକ ଜୀବନ୍ତ ପ୍ରାଣୀର କଳ୍ପନା କରାଯାଇଛି । କୁକୁରର ସେପରି ବୈଶିଷ୍ଟ୍ୟ ନ ଥିଲେ ଇଥେଲ୍ ଉଇଣ୍ଡରଙ୍କ ପରି ଜଣେ ବିଶ୍ୱପ୍ରସିଦ୍ଧ ଶ୍ୱାନଅନୁରାଗୀ ବ୍ୟକ୍ତି ନିଜ କୁକୁର ନାମରେ ସ୍ୱୋପାର୍ଜିତ ସମ୍ପତ୍ତିରୁ ମାସିକ ବ୍ୟୟ ୨୫୦ ଡଲର୍ ଉଇଲ୍ କରି ଯାଇଥାନ୍ତେ ? ପ୍ରିୟ କୁକୁରର ମୃତ୍ୟୁ ବିଚ୍ଛେଦ ସହି ନ ପାରି ମି. ଜନ୍ ଆତ୍ମହତ୍ୟା କରିଥାନ୍ତେ ?"

"ଥାଉ, ଥାଉ, 'ପ୍ରାପ୍ତେ ସନ୍ନିହିତେ ମରଣେ ନହି ନହି ରକ୍ଷତି କୁକ୍‌କୁର କରଣେ' । ଯେତେ କହିଲେ ବି କୁକୁର ଠାକୁର ହୋଇଯିବ ନାହିଁ । ଆପଣଙ୍କୁ ନିର୍ବାଣ କି ମୋକ୍ଷ ଦେବ ନାହିଁ; ଧର୍ମ, ସଂସ୍କୃତି, ସାହିତ୍ୟ କିଛି ନାହିଁ । ଆପଣ ଖାଲି କୁକୁର କଥା ଜଳ୍ପୁଛନ୍ତି !"

ହରିଶଙ୍କରବାବୁ ମୋ କଟାକ୍ଷରେ ଦବି ନ ଯାଇ କହିଲେ—ସେଥିରେ ସବୁ ଅଛି ଆଜ୍ଞା; ଧର୍ମ ? ଧର୍ମ ତ ଯୁଧିଷ୍ଠିରଙ୍କ ପଛରେ କୁକୁର ହୋଇ ଗୋଡ଼ାଇ-ଥିଲେ; ମହାକାବ୍ୟ 'ମହାଯାତ୍ରା' ପଢ଼ନ୍ତୁ । କୁକୁରର ବିଶ୍ୱସ୍ତତା, ଆଜ୍ଞାନୁବର୍ତ୍ତିତା, ସ୍ମୃତିଶକ୍ତି ଘେନି ବହୁତ ଗଳ୍ପ ଲେଖାଯାଇଛି । ଦେଖନ୍ତୁ ନାହାନ୍ତି ପରମ ଭକ୍ତ, ଶ୍ରେଷ୍ଠ ନୀତିଶିକ୍ଷକ, ଗୁରୁଗମ୍ଭୀର କବି ମଧୁସୂଦନ ପିଲଙ୍କୁ ମୂଳରୁ ଉପନିଷଦ୍ ବାଣୀ ନ ଶିଖାଇ କଣ ଶିଖାଉଛନ୍ତି ?

'ଭୁ ଭୁ କରି ଡାକିଲି ମୁହିଁ
ଦଉଡ଼ି ଅଇଲୁ କୁକୁର ତୁହି ।'
'ଆରେ ଆରେ ପୋଷା କୋକ
ତତେ କି କରୁଚି ଭୋକ ?'

"କୁକୁରସାହିତ୍ୟ, କୁକୁରସଂସ୍କୃତି ଏହି ମନୁଷ୍ୟର କୁଳ ଉଦ୍ଧାର କରିବ, ଚତୁର୍ବର୍ଗ ଫଳ ସାଧନ କରିବ ! ଆଟମ୍ ବୋମାରୁ ରକ୍ଷା କରିବ ? ଆଉ ଆପଣଙ୍କ ଦୁଆର ମାଡ଼ିବ ନାହିଁ; ମଣିଷର ଆଉ କିଛି ବ୍ୟବସାୟ ନାହିଁ ? ମୁହେଁ ମୁହେଁ ସେଦିନ ବତେଇ ଦେଇ ଆସିଲି ସିନା, ମନରେ କଷ୍ଟ ହେଲା; ପ୍ରତି ଲୋକର କିଛି ନା କିଛି ବିନୋଦନ ଥାଏ । ସେହିପରି ହରିବାବୁଙ୍କର କୁକୁର ପ୍ରୀତି; ନିଜ ପୁତ୍ର-କନ୍ୟା-ମାନଙ୍କର ଚରିତ୍ର ବିରୁଦ୍ଧରେ କହିଲେ ସେ ସହିପାରନ୍ତି । କିନ୍ତୁ କୁକୁର ବିରୁଦ୍ଧରେ କହିଲେ ମୋଟେ ସହିବେ ନାହିଁ । କୁକୁରୀ ତାଙ୍କର ଅତି ଅଳିଲୀ, ଗେଲବସରୀ କନ୍ୟାଟିଏ । ତା ଚରିତ୍ର ବିଷୟରେ ସେ ମନରେ ଉଚ୍ଚ ଧାରଣା ପୋଷଣ କରନ୍ତି । ତା ବିରୁଦ୍ଧରେ କହିବା ଅର୍ଥ ଜୀବଜଗତ ପ୍ରତି ମନୁଷ୍ୟର ଗଭୀର ଆସ୍ଥା ଓ ସ୍ନେହ ପ୍ରୀତି ଉପରେ କୁଠାରାଘାତ । ଆଦିମଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ କୁକୁର ହୋଇ ରହିଛି ଆମର ବିଶ୍ୱସ୍ତ ଜ୍ଞାତି । ତେଣୁ ତାକୁ ଭଲ ପାଇବାରେ ଅନ୍ଧତା ନାହିଁ । ସ୍ୱତଃସ୍ଫୂର୍ତ୍ତି ଓ ସାବଲୀଳ ଏ ଶ୍ରଦ୍ଧା ।

ଏ ମଧ୍ୟରେ ଚାରି ପାଞ୍ଚ ମାସ ଗଲାଣି, ହରିଶଙ୍କରବାବୁଙ୍କର ଘରକୁ ଯିବାର ଆକାଙ୍କ୍ଷା କେବେ ହୋଇ ନାହିଁ । ସେଦିନ ବଜାରଗହଳି ଭିତରେ ହଠାତ୍ ମୁହାଁମୁହିଁ ହୋଇଗଲୁ । ଖସିବାର ବାଟ ନାହିଁ, ସେ ବି ସ୍ଥାନ-କାଳ ବିବେଚନାରେ ମାମୁଲି ନମସ୍କାର ହୋଇ ଛୁଟି ଦେବାର ପାତ୍ର ନୁହନ୍ତି । ମୋ ହାତ ଧରି ଏକ ଜନବିରଳ ସ୍ଥାନକୁ ଝିଙ୍କି ନେଇ କହିଲେ—ଟିକିଏ କଥା ଅଛି ।

ବଚାରିଲି—କି କଥା ? ବେଙ୍ଗୁଲୀ କଥା; କି ବେଙ୍ଗୁଲୀ ? କାଠବେଙ୍ଗୁଲୀ, ସେଇ କୁକୁର କଥା ତ କହିବେ, ଆଉ କଣ ?

ହରିଶଙ୍କରବାବୁ ଟିକିଏ ହସି କହିଲେ—ହଁ, ଠିକ୍ ଅନୁମାନ କରିଛନ୍ତି; କିନ୍ତୁ ସେ କଣ ଆଉ ଅଛି ?

'ମହାପ୍ରଭୁ, ମରିଯାଉ', ମନେ ମନେ ବିଚାରିଲି, କିନ୍ତୁ ପଚାରିଲି—କଣ ପଳାଇ ଗଲା ? ଦୁଧ, ମାଛ, ମାଂସ ତାକୁ ଗନ୍ଧେଇଲା ? ଏତେ ସ୍ନେହ ଶ୍ରଦ୍ଧାର ମୂଲ୍ୟ ଗୋଟାଏ ପଶୁ କଣ ବୁଝିବ ? କାହା ପ୍ରକୃତି କିଏ ଛାଡ଼ିଲାଣି ?

'ନା, ମୁଁ ତଡ଼ିଦେଲି !!'

'ଏ କି ଅଦ୍ଭୁତ ଖିଆଲ ! ଜୀବର ଜୀବନ ଘେନି ଏ କି ଖେଳ ! ଜୀବ ପ୍ରତି ନିର୍ଦ୍ଦୟତା ଅପରାଧରେ ଆପଣ ଦଣ୍ଡାର୍ହ; ଆଶ୍ଚର୍ଯ୍ୟ, ଆପଣ ତାକୁ ତଡ଼ି ଦେଇ ପାରିଲେ ?'

'ତା ଚରିତ୍ର ଖରାପ !'

'ପଶୁଠାରୁ ମାନବତା ଆଶା କଲେ ଏହିପରି ଅନୁତପ୍ତ ହେବାକୁ ହୁଏ ।'

'ଶରତ୍ ଋତୁ, କିଛି ଗୋଟାଏ ଉନ୍ମାଦନା ହୁଏତ ମନରେ ଆସିଲା । ଦିନେ ହଠାତ୍ କୁଆଡ଼େ ଚାଲିଗଲା, ବହୁ ଖୋଜାଖୋଜି ପରେ ସନ୍ଧାନ ମିଳିଲା । ଗୋଟାଏ ବଜାରି ବୁଲା କୁକୁର ସଙ୍ଗେ...... । ମନରେ କ୍ରୋଧର ଗୋଟାଏ ଉତ୍ତପ୍ତ ସ୍ରୋତ ବହିଗଲା; କରୁଣ ଦୃଷ୍ଟିରେ ମୋ ଆଡ଼କୁ ଚାହିଁଦେଇ ସେ ଆଖି ବୁଜି ଦେଲା । ମୁଁ ତାକୁ ଡାକିଲି ନାହିଁ । ତିନି ଦିନ ପରେ ସେ ବଳେ ବଳେ ଆସିଲା, କିନ୍ତୁ ସଂକୋଚରେ ଘରକୁ ପଶିଗଲା ନାହିଁ, ସାମ୍ନାକୁ ଆସିବାର ସାହସ ନାହିଁ । ଆଖିରେ ଅପରାଧୀ ଭାବ, କ୍ଷମାର ଯାଚନା । ହତାଶାକ ପାଞ୍ଚ ଘେରି ବୁଲିଲା—କେହି ଡାକିବ ଭାବି ।

କିନ୍ତୁ ତାକୁ ଅସ୍ତବ୍ୟସ୍ତ, ବିକ୍ଷତ, ଅପରିଚ୍ଛନ୍ନ ଦେଖି ମୋ ହୃଦୟରେ ନିଆଁ ଚରିଗଲା ଯେମିତି; କହିଲି—ଯା ଛିଡ଼ାଗି ଯା ।

ସେ ଲଜ୍ଜା-ସଂକୋଚରେ ଯେପରି କେତେ ଶ୍ରେଷ୍ଠ ହୋଇ ପାଚେରିରେ ଲାଖିଗଲା । ମୁଁ କିନ୍ତୁ ଦୃଢ଼ସଂକଳ୍ପ, ପୂର୍ବ ସ୍ନେହ-ମମତାକୁ ପଛକୁ ଫିଙ୍ଗିଦେଇ ପୁଣି କହିଲି—ତୋ ମୁହଁ ମତେ ଜହର ପରି ଲାଗୁଛି । କହୁଚି—ପଳା ଏଠୁ । ହେଲେନ୍ ମୁଣ୍ଡ ନୁଆଁଇଁ ଦେଲା—ଭୁଲ୍ ଟାଏ କରି ପକାଇଛି, କ୍ଷମା ଦିଅ ଆଜ୍ଞା ।

ଖୁବ୍ ଗୋଟାଏ ଗର୍ଜନ କରି କହିଲି—ଯାଉଚୁ ନା, ଦେଖିବୁ ଏଇଲେ ? ଏ କାଠ ଫାଳିଆରେ ତୋ ମୁଣ୍ଡ ଛିଚୁ କରିଦେବି !

ମୋ ଜିଦ୍ ଦେଖି ହେଲେନ୍ କାନ୍ଦ ମୁହଁରେ ଆସ୍ତେ ଗେଟ୍ ପାରିହେଲା—ତାପରେ ଏକମୁହାଁ ଚାଲିଲା । ଫେରିଲା ।

ମୁଁ କହିଲି—ମଣିଷ ତ ପଦେ ପଦେ ଏମିତି ଭୁଲ୍ କରେ, ସେ ତ ଗୋଟାଏ ଜନ୍ତୁ !

'ତା ବୋଲି ଏଇ ଛିତରଙ୍କ ପାଖେ ପଶିବ; ଏ ସ୍ପାନିଏଲ୍ ଜାତିସ୍ପ, ଜାଣ ରାଜକେମା, ସ୍ପାର ଗୋଟାଏ କୌଲୀନ୍ୟ ଜ୍ଞାନ ନାହିଁ ? ଆମ ବାର ବର୍ଷର ତପସ୍ୟାକୁ ଗୋଟାଏ ଦିନରେ ଶୁଖୁଆ ପୋଡ଼ାରେ ଶେଷ କରି ଦେଲା ! ପିଲାଏ ଏ କଥା ଜାଣିଲେ......ଛିଃ ।'

'ମଣିଷ ପରି ଜୀବଜନ୍ତୁର ମଧ୍ୟ ଆସଙ୍ଗଲିପ୍ସା ଅଛି । ସେ ଦିଗରେ ଆପଣ କେବେ ଚିନ୍ତା କରିଛନ୍ତି କି ? ସେ ଚିରକୁମାରୀ ହୋଇ ରହିବ, ସତୀତ୍ୱର ପତାକା ଉଡ଼ାଇ ? ମୁନି କନ୍ୟା କିନା ! ଗୋଟାଏ ଜନ୍ତୁଠାରୁ ସବୁ ଆପଣ ଆଶା କରି ପାରନ୍ତି, କିନ୍ତୁ ଜଣେ ବିବେକୀ ମାନବଠାରୁ ସେଇ ଜନ୍ତୁ କିଛି ଆଶା କରିପାରିବ

ନାହିଁ ? ମିସ୍ ହେଲେନ୍‌ଙ୍କ ମନର ଗୋପନ ରହସ୍ୟ ବୁଝିବାକୁ ଆପଣ କେବେ ଚେଷ୍ଟା କରିଛନ୍ତି ? ସେହି ବଙ୍ଗଳାରେ ସେ ଚାଟିଆ କାମୁଡ଼ନ୍ତା ନାହିଁ ତ ଆଉ କଣ କରନ୍ତା ?

ହରବାବୁ ମୋ ପ୍ରଶ୍ନର ଉତ୍ତର ନ ଦେଇ ନୀରବରେ ଚାଲିଗଲେ । କୁକୁରର ପ୍ରଣୟୀ କୁଳୀନ କି ଅକୁଳୀନ, ପ୍ରେମ ଜାତିଭେଦ ମାନେ କି ନାହିଁ, କୁକୁରର କର୍ମରେ ପାପ କେତେ ଭାଗ୍, ପୁଣ୍ୟ କେତେ ଭାଗ୍ ଭାବିବାର ଆଗ୍ରହ ବା ଅବସର ମୋର ନ ଥିଲା । ମନେ ମନେ ଖୁସି ହେଲି—କଣ୍ଟା ଗଲା ! ଆଉ ହରବାବୁଙ୍କ ଘରେ କୁକୁର ଚର୍ଚ୍ଚା ହେବ ନାହିଁ ।

ପୁଣି ପ୍ରାୟ ବର୍ଷକ ପରେ ଦେଖା, ଏଥର ଷ୍ଟେସନରେ । ଏକା ଗାଡ଼ିରେ ଯିବାର କଥା । ଭାବିଲି—ଏଥର କଥାବାର୍ତ୍ତା ଭିନ୍ନ ମାର୍ଗରେ ଗତି କରିବ—ପାକିସ୍ଥାନର ଭାରତ ଆକ୍ରମଣ, ବ୍ୟବସାୟୀଙ୍କ ଜାତିବିରୋଧୀ କାର୍ଯ୍ୟ, ରାଜନୀତି, ଅର୍ଥନୀତି ବା ସାହିତ୍ୟ । କିନ୍ତୁ ହରବାବୁ ମତେ ଦେଖିଲାମାତ୍ରେ ହସି ହସି କହିଲେ—ପେନ୍ନ ଆସିଲା ଆଜ୍ଞା, ମାଆ-ପୁଅ-ଝିଅ ସମସ୍ତଙ୍କୁ, ଆଦର ସନମାନରେ ।

'ତା ମାନେ ? କାହା କଥା ଆପଣ କହୁଛନ୍ତି ?'

ଆମ ହେଲେନ୍ ମ, ମନେ ଥିବ ଅବଶ୍ୟ; ମୁଁ ଛାଡ଼ିଦେବା ମାତ୍ରେ ସେ ରାସ୍ତାରେ ସିଧା ସିଧା ଚାଲିଲା, ଚାରି ପାଞ୍ଚ କୋଶ ଗଲା ପରେ ଗୋଟାଏ ଗାଆଁ ମୁଣ୍ଡରେ ତାକୁ ବୁଲା କୁକୁର ବେଢ଼ିଲେ; ଅଚିହ୍ନା, ଅଜଣା, ଜାତି ମଧ୍ୟ ଭିନ୍ନ । ଦାନ୍ତ ଦେଖାଇ ସମସ୍ତେ ଏକାବେଳକେ ପ୍ରଶ୍ନ କଲେ—କାହା ଅନୁମତିରେ ଆମ ଇଲାକାରେ ପଶିଲୁ ? ଜାଣ ନାହିଁ କି ଆମର ପ୍ରତାପ ? ଅସୁର-ଅସୁରୁଣୀଙ୍କ ମେଳରେ ସୀତାଦେବୀଙ୍କ ପରି ନୀରବରେ ହେଲେନ୍ ଛିଡ଼ା ହୋଇଥାଏ; ବଣୁଆଁ ଦାନ୍ତ ଦେଖାଇ ବୁଲା କୁକୁର ପାଖକୁ ଲାଗି ଲାଗି ଆସୁଥାନ୍ତି—କିଏ ତୁମ ପିଠରେ ପଡ଼ିବ ? କିଏ ସେ ? ଇଷ୍ଟ ସୁମରଣ କର ।

ନରନାରାୟଣବାବୁ ଏଇ ନାଟକୀୟ ସଂଗ୍ରାମ ଦୃଶ୍ୟ ମଧ୍ୟରେ ହଠାତ୍ ପହଞ୍ଚି ଯାଇ ଖଣ୍ଡେ ଡାଙ୍ଗ ଉଠାଇ କହିଲେ—'ଛିଃ, ଏଡ଼େ ଭୀରୁ, ଅବଳାଟିଏ, ଗୋଟାକୁ ଏତେ ବେଢ଼ିଚ ?

ଆହା, ପୋଷା କୁକୁରଟିଏ କାହାର, ଫିଟି ଆସିଚ । ଏମିତି ବୁଲିଲେ ତାକୁ କୁରୁକୁଟା କରି ଖାଇଯିବେ ତାର ଜ୍ଞାତି କୁଟୁମ୍ବ ।

ନରନାରାୟଣବାବୁ ଆଦରଯତ୍ନରେ ତାକୁ ପାଳିଲେ; ଯଥା ସମୟରେ ଦୁଇଟି ଛୁଆ ଜନ୍ମ ହେଲେ, ଗୋଟିଏ ଅଣ୍ଡିରା, ଗୋଟିଏ ମାଈ । 'ଦୁଇଟି ସନ୍ତାନ ଯଥେଷ୍ଟ', ସରକାରଙ୍କର ଏଇ ନିର୍ଦ୍ଦେଶ ମାନି ବୋଧ ହୁଏ ।

ଏଣେ ଆମ ଘରେ କାହାରି ମନରେ ସୁଖ ନ ଥାଏ । ଜ୍ୟେଷ୍ଠ ପୁଅ ବାବୁଲି ସବୁଠାରୁ ଜୁଲୁର ହେଉଥାଏ ବେଶୀ; ସମସ୍ତେ ମନେ ମନେ ଅଭିଯୁକ୍ତ କରୁଥାନ୍ତି ମତେ, କିନ୍ତୁ କେହି ତୁଣ୍ଡ ଫିଟାଇ କିଛି କହିପାରୁ ନ ଥାନ୍ତି ।

ସେ ଥିଲା ଆମ ପାରିବାରିକ ସ୍ନେହପ୍ରୀତିର ଯୋଗସୂତ୍ର, କର୍ତ୍ତବ୍ୟ-ନିଷ୍ଠାର ଆଦର୍ଶ । ସେ ଚାଲିଯିବା ଦ୍ୱାରା ସବୁ ଯେପରିକି ଶିଥିଳ ହୋଇ ଯାଇଛି । ଆନନ୍ଦର ଧାରା ଶୁଖି ଯାଇଛି ।

ବନ୍ଧୁବାନ୍ଧବମାନଙ୍କ ପାଖକୁ ଖବର ପଠାଇଲି । ଅଫିସ୍‌ରୁ ଫେରି ପ୍ରତିଦିନ ଘଣ୍ଟାଏ ଦିଘଣ୍ଟା ଖୋଜି ବୁଲିଲି; ପତ୍ତା ମିଳିଲା ନାହିଁ । ଶେଷକୁ ସମ୍ବାଦ-ପତ୍ରରେ ବିଜ୍ଞାପନ ଦେଲି—ଉଚ୍ଚତା ଚାରିଫୁଟ, ଓଜନ ଚାଳିଶ ପାଉଣ୍ଡ, ବର୍ଣ୍ଣ ଧଳା, ସ୍ପାନିଏଲ ଜାତୀୟ କୁକୁର ହଜିଛି । ଖୋଜି ଆଣି ଦେଲେ ସମସ୍ତ ବ୍ୟୟ ବହନ କରିବି । ସମ୍ବାଦ ଦେଲେ ଚିରକୃତଜ୍ଞ ରହିବି ।

ସେଦିନ ନରନାରାୟଣବାବୁଙ୍କ ପତ୍ର ପାଇ ଚାକରକୁ ନେଇ ଗଲି । ଯେତେ ଡାକିଲେ ବି ପାଖକୁ ଆସିଲା ନାହିଁ ହେଲେନ୍; ନରନାରାୟଣ ବାବୁଙ୍କ ପାଦରେ ଗୁଡ଼େଇ ତୁଡ଼େଇ ହେଉଥାଏ; ଜଣାଇଦେବାକୁ ଚାହୁଁଥାଏ—ମୁଁ କୃତଘ୍ନ ନୁହେଁ, ତୁମେ ମୋ ଜୀବନ ବଞ୍ଚେଇଛ, ଠାଇଁ ଦେଇଛ, କେତେ ଦିନ ହେଲା ତୁମ ନିମକ୍ ଖାଉଛି । ହୁଅନ୍ତୁ ପଛକେ ପୂର୍ବ ସାଥୀ, ତୁମ ବିନାନୁମତିରେ ଯିବି ନାହିଁ । କିନ୍ତୁ .....

ସେ ମୋର ପୁରାତନ ପ୍ରଭୁ, ପିଲାଟି ଦିନରୁ ବଢ଼େଇ ଥିଲେ, ରୋଗରେ ଔଷଧ ଦେଇ ବଞ୍ଚେଇଥିଲେ, ପୁଅ ଝିଅଙ୍କଠୁ ଅଧିକ କରିଥିଲେ । କିଛି ଭୁଲିନାହିଁ ଆଜ୍ଞା । ହେଲେ ବି ଧାର୍‌ତା, ଜଣକର ଦାନା ଖାଉଛି । ବିନା ହୁକୁମ୍‌ରେ ପାଦେ ଆଗେଇବାର ଜୁ ନାହିଁ । ସେ ନରନାରାୟଣ ବାବୁଙ୍କ ମୁହଁକୁ ଚାହିଁଥାଏ—କ'ଣ ଛାଡ଼ିବ ନା ନାହିଁ ?

ନରନାରାୟଣବାବୁ ହୁକୁମ୍ ଦେଲେ—ଯା, ଏଥର ଯା, ମୋ କଥା ଟିକିଏ ମନେ ପକାଇବୁ !

ହେଲେନ୍ ଆସି ହରଶଙ୍କରବାବୁଙ୍କ ପାଦତଳେ ଲୋଟିଗଲା—ଏତେ ଦିନେ ଛମା କରିଛ ? ପାଖେଟି ନେବାକୁ ଆସିଛ, ମୋ ମନରେ କ୍ରୋଧ ନାହିଁ, ତିଳେ ହେଲେ ତୁମ ପାଖେ ଅଭିମାନ ନାହିଁ ।

ହରିବାବୁ ଆଖି ବୁଜି ଭାବବିହ୍ୱଳ ହୋଇ ଗପି ଚାଲିଛନ୍ତି ହେଲେନ୍ କଥା । କେତେବେଳୁ ଯାଏ ଗପିଥିବେ କେଜାଣି । ତାଙ୍କ ଧ୍ୟାନ ନ ଭାଙ୍ଗି ନୀରବ ନମ-ସ୍କାରଟିଏ କରି ଉଦ୍ଦିଷ୍ଟ ଷ୍ଟେସନରେ ମୁଁ ଓହ୍ଲାଇ ଗଲି ।

●

# କଙ୍କାଳର ସ୍ମୃତିଲିପି

ପଦ୍ମପଲାଶଲୋଚନ, ଅର୍ଦ୍ଧଚନ୍ଦ୍ର ଲଲାଟ, ଚନ୍ଦ୍ରମୁଖ, ବିମ୍ବାଧର, ଗୋଲାପ ଗଣ୍ଡ, ମୃଣାଳବାହୁ, ଚମ୍ପକାଙ୍ଗୁଳି—ଜୀବନ ଓ ଯୌବନକୁ ଘେନି ତ କାବ୍ୟ ! ଏ ତ ଗୋଟାଏ କଙ୍କାଳ—ଉଲଗ୍ନ, ନିରଳଙ୍କାର; କାହାର ଗେଲବସର ପୁଅ ସେ ଥିଲା, କାହାର ଅଲିଅଳି କନ୍ୟା ? କାହାର ପ୍ରିୟପତ୍ନୀ ? ତ୍ୟାଗନିଷ୍ଠ ତରୁଣ ନା ସ୍ୱରୂପସୀ ତରୁଣୀ ? ନାଗରିକ ନା ଗ୍ରାମୀଣ ? ମୂଲିଆ ନା ମଜଦୁର୍ ? କୃଷକ ନା କବି ? ସୁଶିକ୍ଷିତ ନା ଗଣ୍ଡମୂର୍ଖ ? ବିଦଗ୍ଧ ନା ବାବଦୂକ ? ନର୍ତ୍ତକୀ, ଅଭିନେତ୍ରୀ, ନା ସୁଗାୟିକା ? ଏ ଘଟପାଟୁଆ ନା ଦଣ୍ଡନାଟୁଆ ? ଟାଉଟର, ମକଦ୍ଦମାଖୋର୍ ନା ନିତାନ୍ତ ସରଳ, ଉଦାସୀ, ସାଧାରଣରେ ଅତି ସାଧାରଣ ? ବହୁକୁଟୁମ୍ବୀ ଦୁଃଖୀ, ନା ଧନୀ, ନିରପତ୍ୟ ? କିଏ ସେ ? ଚିହ୍ନିବାର କିଛି ହେଲେ ଉପାୟ ନାହିଁ ।

କଙ୍କାଳ ସେ, ସେଇ ତାର ପରିଚୟ, ରୂପହୀନ, ନିର୍ଗୁଣ ସେ । ସତ୍ କି ଅସତ୍ ଥିଲା, ଜ୍ଞାନୀ କି ଗୌରବବାନ୍ ଥିଲା, ପରକୁ ଆପଣାର କରି ଜୀବନ ବିତାଇ ଥିଲା, କି ସ୍ୱାର୍ଥ ଚିନ୍ତାରେ ପରମାର୍ଥ ବିସ୍ମୃତ ହୋଇଥିଲା; ଜାଣିବାର କିଛିହେଲେ ବାଟ ନାହିଁ । କେତେ ଜମିଜମାର ମାଲିକ ଥିଲା ସେ ? କାହାର ଜମିଦାର, ମହାଜନ, କାହାର ବା ଖାତକ ? ମର୍ତ୍ତ୍ୟମଣ୍ଡଳରେ କେଉଁଠି ତାର ବାସସ୍ଥାନ ଥିଲା ? କୁଟୀରରେ ନା ସୌଧରେ ? ତରୁତୃଣଭରା କାକଳିଝଙ୍କୃତ ପଲ୍ଲୀରେ, ନା ଯାନବାହାନ ଗର୍ଜିତ ଭିଡ଼ାକ୍ରାନ୍ତ ନଗରରେ ? କାହାର ଅଭିଭାବକ, ଗୁରୁ ବା ପଡ଼ୋଶୀ ଥିଲା ସେ ? କାହାର ମହାପ୍ରସାଦ ବନ୍ଧୁ, ଜ୍ଞାତି କୁଟୁମ୍ବ, ସମୁଦି ବା ଶ୍ୱଶୁର ? ଶଳା ବା ସୋଦର ! ନାମହୀନ, ସଂଜ୍ଞାହୀନ, ଗୋତ୍ରହୀନ । ମୃତ୍ୟୁ ତାର ମାନବିକ ପରିଚୟକୁ ନିଶ୍ଚିହ୍ନ କରି ଦେଇଛି । ପୃଥିବୀର ଡୋରି ଛିଣ୍ଡିଛି; ନବ ଜନ୍ମରେ ନୂତନ ସମ୍ପର୍କ ଗଢ଼ି ଉଠିନାହିଁ । ପ୍ରେତ ତାର ନିଃସଙ୍ଗ, ମ୍ରିୟମାଣ—ଘୂରିବୁଲୁଛି ମଶାଣିରୁ ମଶାଣି; ଗୃହରୁ କେଦାର; ଯେଉଁଠି ତାର ଆକର୍ଷଣୀୟ କିଛି ଥିଲା । ଦେହ ଲୋପ ପାଇଛି; ବାସନା ପୂରି ନଥିଲା ତାର; ସେଇ ତାକୁ ବୁଲାଉଛି ହୁଏତ !

ଅଳ୍ପଦିନ ତଳେ ହୁଏତ ତାର ଶୁଦ୍ଧିକ୍ରିୟା ହୋଇଥିବ । ଦୁଆରେ ଘଟ ବସିଥିବ; ଭୋଜକୁ କେତେ କିଏ ଖୋଜା ଲୋଡ଼ା ହୋଇ ଆସିଥିବେ । ଗାଆଁ

ମୁଣ୍ଡରେ ପୁଅ ବେଲକଥା ଦେଇ ଆସିଥିବ । ପାଗ୍ ହାଣ୍ଡି ସେଇଠି ଜଲଜଲା ହାଣ୍ଡି ପାଳିଟି ଥିବ । ଜ୍ଞାତି-କୁଟୁମ୍ବ ପିଠାଭାତ ଖାଇଥିବେ ।

'ଘର ଘରଣୀ ଦେହ କଲାଉଥିବେ
ଘଟ ଛୁଟିଲେ ତଡେ ଭୂତ ବୋଲିବେ'।

କଥା ସତ ଫଳିଥିବ । କାନ୍ଧ ଗ୍ଭଲ ବାଡେଇ ତାକୁ ତଡ଼ିଥିବେ । ଧାର-ଉଧାରରେ ସରୁ ବା ମରୁ; ବ୍ରାହ୍ମଣଭୋଜନ ବା ଭାଇଭାତ ଦେବାକୁ ପଡ଼ିଥିବ । ବନ୍ଧୁ-କୁଟୁମ୍ବଙ୍କୁ, ପୁରୋହିତଙ୍କୁ ନୂଆ ଲୁଗା ପିନ୍ଧେଇବାକୁ ହୋଇଥିବ । ବନ୍ଧୁ ବାନ୍ଧବଙ୍କ ଘରୁ ଭାର ଥୋର ଲମ୍ବିଥିବ—ଅଙ୍ଗାଏ ବସାଦହି, ଅଙ୍ଗାଏ କଞ୍ଚାଚୁଡ଼ା, ଅଙ୍ଗାଏ ହୁଡୁମ୍ବ, ଅଙ୍ଗାଏ ଚୁଡ଼ାପୁଆ ବା ଗୁଡ଼ ଖଇ; ଭାରେ ଦୁଧ, ଭାରେ ପାଚିଲା କଦଳୀ; ଭାରେ ମହାପ୍ରସାଦ କମ୍ବା ଭାରେ ଗଜା ବନ୍ଧଳ ଓ ଖମ୍ବ ଆଳୁ । ମହାଜନମାନେ ମହାପ୍ରସାଦ ପାଇ ବଦାଙ୍କ ନେଇ ଲମ୍ବ ହୋଇ ଶୋଇଥିବା ପୁଅ ମୁଣ୍ଡରେ ପଦରଜ ଝାଡ଼ି କଲ୍ୟାଣ କରି ଯାଇଥିବେ । ଧାର ଧାର ଲୁହ ଭିତରେ ଅଦେଖା ଟୋପାଟିଏ ଲୁହ ଢାଳି ନ ପାରି ବଦାୟ ନେଇଥିବ । ଗାଈ ଶୀତଳାଇ ପୁଅ ତାର ଅସ୍ଥିକୁ ଘଡ଼ିରେ ପୁରାଇ ପୋତି ଦେଇଥିବ, ପରେ ଗଙ୍ଗାରେ ପକାଇବା ଲାଗି ।

ବାଲିରେ ବୁଲିଲେ ପୁଅ ସଙ୍ଗେ ଭେଟଣା ହେବ; ତୋଟାବାଡ଼ିରେ ରହିଲେ ପିଲାଏ ଡରିବେ; ଏ ବାଲିବାଡ଼ି ତାର କେତେ ପ୍ରିୟ ଥିଲା । ଆଜି ତାର କିଛି କରିବାର ନାହିଁ; ଭୋକ ପଡ଼ିଲେ କମ୍ବା ହିଡ଼ ଭାଙ୍ଗି ପାଣି ବୋହିଗଲେ ସେ ଜଳ ଜଳ ଗ୍ଭହିଁଥିବ; ଧୋଇ ମରୁଡ଼ି ହେଲେ କି ବତାଶରେ ପଲ୍ଲ ଉଡ଼ିଗଲେ ସେ ବ୍ୟସ୍ତବିକଳ ହେଉଥିବ; ଘରେ କୋଳଖ ପଶିଲେ କି ଡକେଇତି ହେଲେ ସେ କଳବଳ ଛଟପଟ ହେଉଥିବ । କିନ୍ତୁ ତାର କରିବା ଲାଗି କିଛି ନ ଥିବ । ଅଦେଖା ସେ ଗୃହହୀନ; ବନ୍ଧୁକୁଟୁମ୍ବହୀନ; ଶ୍ରାଦ୍ଧରେ ତାର ପ୍ରାପ୍ୟ ମୁଠାଏ ପିଣ୍ଡ । ବଡ଼ବଡ଼ିଆ ଡକା ଦିନ ଟିକିଏ ଆଲୁଅ । ଅନ୍ଧାରରେ ଆସି ସେ ଆଲୁଅରେ ପ୍ରେତଲୋକକୁ ଫେରି ଯାଇଥିବ । ଗୟାରେ ଶେଷ ପିଣ୍ଡ ଦାନ ପରେ ସେ ହୋଇଥିବ ବସୁମୁକ୍ତ । ଜୀବନରୁ ମୃତ୍ୟୁ, ପ୍ରେତଲୋକରୁ ଜୀବନ୍ତ ଲୋକ ବହୁତ ଦୂରେଇ ଯାଇଥିବ । ଜୀବନ ସହିତ ତାର ଲୁଚକାଳି ଖେଳ ଏହିପରି ଶେଷ ହୋଇଥିବ ।

ଏବେ ଗୋଟାଏ ଯନ୍ତ୍ର ସେ; ଆଧିବ୍ୟାଧି, ଦୁଶ୍ଚିନ୍ତାଜଞ୍ଜାଳହୀନ; ପୂତନିର୍ମଳ ଗୋଟାଏ ଗୁଞ୍ଜ; ଛିନ୍ନ ବିଚ୍ଛିନ୍ନ; ଇତସ୍ତତଃ ବିକ୍ଷିପ୍ତ ଅସ୍ଥିକୁ ତୁଏତ ସଂଲଗ୍ନ କରି ହୋଇଛି । ପ୍ରଫେସର ଶିକ୍ଷା ଦେଉଛନ୍ତି—କେଉଁଠି କେଉଁ ଅସ୍ଥି; କେଉଁ ଶିରା ପ୍ରଶିରାର ଅସ୍ତିତ୍ୱ; କେଉଁଠି କେଉଁ ରୋଗ ହୁଏ; କିପରି ବ୍ୟାପେ; କେଉଁଠି

କିପରି ଅସ୍ତ୍ରୋପଚାର କରିବାକୁ ହୁଏ । ମୃତ୍ୟୁ ଜୀବନକୁ ଦେଇଛି ଏଇ ଦକ୍ଷିଣା । ଅଭିଜ୍ଞତାରୁ ଶିଖାଇବ; ଅନୁଭୂତିରୁ ମର୍ମଜ୍ଞାନ ଦେବ । ଚିକିତ୍ସା ଓ ଅସ୍ତ୍ରୋପଚାରର ଶହୁଲପାଲ ହେବ ଏଠି । ମୃତ୍ୟୁ ଅପ୍ରୟୋଜନୀୟ ନୁହେଁ । ଜୀବନ୍ତ ଓ ଜୀବନର ପରିପୂରକ ସେ; ଭୂମିକା । ଜୀବନର ସମୀକ୍ଷା ଲାଗି ପ୍ରେକ୍ଷାଗାରର ପରୀକ୍ଷିତ ଦ୍ରବ୍ୟ ପରି ମୃତ୍ୟୁର ଆତ୍ମଦାନ ଏକାନ୍ତ ମହନୀୟ । ମୃତ୍ୟୁ ଜୀବନର ବୈତାଳିକ; ସଂହାର ସୃଷ୍ଟିର ସଂବାହକ ।

ଧନେ କୁଟୁମ୍ବ ପୋଷଣରେ ତାର ପ୍ରୟୋଜନୀୟ ଭୂମିକା ଥିଲା । କିନ୍ତୁ ସାମାଜିକ ବା ସାଂସ୍କୃତିକ କାର୍ଯ୍ୟରେ ଥିଲା ସେ ନିତାନ୍ତ ଅଦରକାରୀ । ଏବେ ତା ବିନା ଆନାଟମି ବା ଫିଜିଓଲଜି ଶିକ୍ଷାଦାନ ଅସମ୍ଭବ । ପ୍ରଫେସରଙ୍କ ହାତବାରିସି ସେ; ଛାତ୍ରମାନଙ୍କ ପରୀକ୍ଷାର୍ଣ୍ଣବର କର୍ଣ୍ଣଧାର । ସେତେବେଳେ ଡାକ୍ତରଖାନାରେ ଏଇ କଙ୍କାଳଟାକୁ ଦେଖି କେତେ କଣ ଭାବି ଯାଉଥିଲି—ଏହାର ମୁଖ ନାହିଁ; କିନ୍ତୁ ଏତେ ମୁଖର କିପରି ସେ ? ଚକ୍ଷୁହୀନ, କିନ୍ତୁ ମୋର ଅନ୍ତରକୁ ନିରେଖି ନିରେଖି କିପରି ଦେଖୁଛି ସେ ? ନିରନ୍ଧ୍ର; କିନ୍ତୁ ମୋର ମନର ଭାବନାକୁ ସତେ ଯେପରି ପଢ଼ି ପାରୁଛି ସେ ।

ଭାବୁ ଭାବୁ କେତେବେଳେ ମୋତେ ଛାଇ ନିଦ ଲାଗି ଆସିଲା ଜାଣେନାହିଁ । ସ୍ୱପ୍ନରେ ମନ ବ୍ୟାତୁର ହୋଇ ଉଠୁଥିଲାବେଳେ ସେଇ କଙ୍କାଳ ଯେପରିକି ମୋତେ ପଚାରିଲା—ଚିହ୍ନି ପାରୁ ନାହାନ୍ତି ! ମୋଠାରେ ଜୀବନର କି ସଙ୍କେତ ଅଛି ଯେ ଆପଣ ଚିହ୍ନିବେ ! ନାମହୀନ, ଧାମହୀନ, ଆକୃତିହୀନ; ମୋ ପଛରେ ସବୁ କାହାଣୀ; ସାଙ୍ଗସାଥୀ ଭୁଲିଯାଇଛନ୍ତି; ମୋ ଆଗର ସବୁ ସ୍ୱପ୍ନ କଳ୍ପନା ଅପସରି ଯାଇଛି ।

'ଆମେ ପରା ଗୋଟିଏ କୋଠରିରେ ଥିଲେ—ଆପଣଙ୍କ ବେଡ୍ ନମ୍ବର ୧, ମୋ ବେଡ୍ ନମ୍ବର ୩ । ଆପଣ ଶ୍ୱାସ ରୋଗୀ; ପ୍ରସିଦ୍ଧ କବି; ତେଣୁ ଆପଣଙ୍କ ପାଖେ ଡାକ୍ତର ଓ ବହୁ ବିଶିଷ୍ଟ ଲୋକ ଭିଡ଼ ଜମେଇଥାନ୍ତି । ମୋ ପାଖରେ ତ ଜାଣ ଗୋଟିଏ କ୍ଲାସ୍ ହୁଏ । ଷ୍ଟେଥୋସ୍କୋପ୍ କାନ୍ଧରେ ପକାଇ ବଡ଼ ଡାକ୍ତରଙ୍କ ଲେକ୍ଚର ସତେ ଯେପରି ଛାତ୍ରଛାତ୍ରୀମାନେ ପିଇ ଯାଉଥାନ୍ତି । ବ୍ରଜେନ୍ଦ୍ର ଆମ ଦୁହିଁଙ୍କୁ ଅପରେସନ୍ କରିଥିଲେ । ମୋର ସାତଘଣ୍ଟାର ଅପରେସନ୍ । ଅତି ଜଟିଳ—କାନ୍ସରକୁ ଏଣେ ହଳଦିଆ କାମଳ; ଶରୀର ରକ୍ତହୀନ; ବୟସ ୫୦ରୁ ଊର୍ଦ୍ଧ୍ୱ; ମୃତ୍ୟୁ ସୁନିଶ୍ଚିତ—ଦରିଦ୍ରକୁ କର୍କଟ ରୋଗ ଧରିବାର ସିଧାସଳଖ ଅର୍ଥ ଏଇଆ । କିନ୍ତୁ ଡାକ୍ତର ଖୁସୀ ପରି ନଲଠା । ଚିକିତ୍ସା କରିବା ତାର କର୍ତ୍ତବ୍ୟ; ଯେପରି କୃଷି କରିବା କୃଷକର କର୍ମ । ଫସଲ ହେବ କି ନାହିଁ; ରୋଗୀ ବଞ୍ଚିବ କି ନାହିଁ କୃଷକ

ବା ଡାକ୍ତର କହି ଦେଇ ନ ପାରନ୍ତି । ପୁଣି ରୋଗର ପରୀକ୍ଷାନିରୀକ୍ଷା ଲାଗି ବହୁ ଦେହ ଲୋଡ଼ା ପଡ଼େ । ମୂଷିକ; ରାବିଟ୍ ବା ମର୍କଟର ଦେହ ପରି ଦରିଦ୍ରର ଦେହ । ପୁଣି କଥା ଅଛି—

ଉପାୟ କର......

ବଞ୍ଚେଇବା ଲାଗି ଚେଷ୍ଟା କରୁ କରୁ ମରଗଲେ ଦୁଃଖ ନାହିଁ । କିନ୍ତୁ ନିଶ୍ଚେଷ୍ଟ ହୋଇ ମରବାକୁ ଦେବା ଅଧମତା ।

ଏଇ ଅପରେସନ୍ ସଫଳ ହେଲେ ମୂଲ୍ୟବାନ୍ ଶ୍ରୀଅଙ୍ଗମାନଙ୍କରେ ଅପରେସନ୍ ଛୁରି ଲାଗିବ । ଡାକ୍ତରଙ୍କ ସାହସ, ପ୍ରତିଷ୍ଠା ବଢ଼ିବ; ହୁଏତ ଜଗତ୍ ବିଖ୍ୟାତ ହୋଇଯିବେ ସେ । ଦିଗେ ଦିଗେ ତାଙ୍କୁ ଡାକରା ପଡ଼ିବ । ଲକ୍ଷ୍ମୀ ସୁପ୍ରସନ୍ନା ହେବେ ।

ସାତ ଘଣ୍ଟା କାଳ ଟେବୁଲ୍‌ରେ ପକାଇ ମୋତେ ଅପରେସନ୍ କରା ହୋଇଥିଲା । ଖାଇବା ଲାଗି ଡାକ୍ତରଙ୍କୁ ଅବସର କାହିଁ ? ଅପରେସନ୍ ବେଳେ ତାଙ୍କ ପାଟିରେ ରସଗୋଲା, ସନ୍ଦେଶ ମଡ଼ା ହୋଇଥିଲା; କଫି ପିଆଇ ଦିଆ ହୋଇ ଥିଲା । ଡାକ୍ତର; ପ୍ରକୃତରେ ମହାଯୋଗୀ ସେ । ଅସୀମ ତାଙ୍କର ଧୈର୍ଯ୍ୟ, କଷ୍ଟ-ସହିଷ୍ଣୁତା; ଉଦ୍ୟମ ଜୀବନମୂର୍ଚ୍ଛା; ସାହସ ଅକଳନ୍ତି । ଯେପରି ସମବେଦନାପ୍ରବଣ ମାନବ, ସେହିପରି ସୁକୌଶଳୀ ବିଜ୍ଞାନୀ ସେ ।

ଅପରେସନ୍ ତାଙ୍କ କାର୍ଯ୍ୟର ପ୍ରଥମ ଅଧ୍ୟାୟ; ଦ୍ୱିତୀୟ ପର୍ଯ୍ୟାୟରେ ବହୁ ଡାକ୍ତର ବିଫଳ ହୋଇଥାନ୍ତି । କାରଣ ଚିକିତ୍ସା ଲାଗି ଡାକ୍ତରୀ ବିଦ୍ୟା ଯଥେଷ୍ଟ ନୁହେଁ; ପଦେ ପଦେ ମାନବିକତା ଆବଶ୍ୟକ ହୋଇଥାଏ ।

ମୋ ଅପରେସନ୍ ଲାଗି ଡାକ୍ତର ବ୍ରଜେନ୍ଦ୍ର ରକ୍ତଚାନ୍ଦା କରି ବୁଲିଥିଲେ । ଅନେକ ବୋତଲ ରକ୍ତ ଦିଆ ନ ଗଲେ ରୋଗୀ ବଞ୍ଚିବ ନାହିଁ । ଧନୀ ରୋଗୀ, ଧନୀ ଲୋକ, ଦାନବୀର, ସ୍ୱନାମଧନ୍ୟମାନଙ୍କଠାରୁ ବ୍ରଜବାବୁ ବୋତଲ ବୋତଲ ରକ୍ତ, ଡେକାଡ୍ରନ ଇଞ୍ଜେକ୍ସନ୍ ଚାନ୍ଦା କରି ଆଣିଥିଲେ । ସହକାରୀ ଡାକ୍ତର, ହାଉସ୍-ସର୍ଜନ, ନର୍ସ, ବେହେରା ସମସ୍ତଙ୍କର ମୋ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଥିଲା । ମୁଖ୍ୟ ଡାକ୍ତରଙ୍କ କଡ଼ା ନଜର ଯୋଗୁଁ, ନିଜ ଓ୍ୱାର୍ଡ଼ରେ ଦୃଢ଼ ଶୃଙ୍ଖଳା ରକ୍ଷା କରିବାକୁ ଚେଷ୍ଟିତ ଥିଲେ ଡାକ୍ତର । ନର୍ସ ଇଞ୍ଜେକ୍ସନ ପରେ ଇଞ୍ଜେକ୍ସନ ଫୋଡ଼ି ଚାଲିଥିଲେ, ଦେହ ଜଡ଼ ପାଲଟି ଯାଇଥିଲା । ଭୀଷ୍ମଙ୍କ ଶରଶଯ୍ୟାର ଅନୁଭବ ହୋଇଥିଲା ମୋର । ଏଣେ ଗ୍ଲୁକୋଜ, ତେଣେ ଅକ୍ସିଜେନ୍ । ଡାକ୍ତର ମୋ ଲାଗି ନିଜର ପକେଟଶୂନ୍ୟ କରିଥିଲେ, ଅସହାୟ ପ୍ରତି ଯେତିକି ସମବେଦନା, ଆତ୍ମପ୍ରତିଷ୍ଠା ଲାଗି ସେତିକି ବ୍ୟାକୁଳତା ଥିଲା ତାଙ୍କର ।

ଆଜି ସୁଖ କି ଦୁଃଖ ମୋତେ ସ୍ପର୍ଶ କରୁନାହିଁ । କିନ୍ତୁ କେତେଦିନ ତଳର ଡାକ୍ତରଖାନାର ସେଇ ଜୀବନ, ଆଃ ! ସେଭଳି ଦୁର୍ଭାଗ୍ୟ ନ ପଡ଼ିଲେ କିଏ ହସ୍ପିଟାଲକୁ ଆସେ ? ଡାକ୍ତର; ଦୁଃଖକଷ୍ଟ ଦେଖି ସେଥିପ୍ରତି ଉଦାସୀନ ସେ । ରୋଗୀର ବିକଳ ଚିତ୍କାର ତାର କାନରେ ବାଜେ ନାହିଁ । ସମ୍ମୁଖରେ କରାଳ ମୃତ୍ୟୁ, କିନ୍ତୁ ସେ ବିଚଳିତ ନୁହେଁ । ରୋଗବ୍ୟାଧିର ଯନ୍ତ୍ରଣା, ମୁମୂର୍ଷୁର ହାହାକାର ମଧ୍ୟରେ ନିର୍ଲ୍ଲଜ୍ଜ ପ୍ରେମଲୀଳା, ତରୁଣ ଡାକ୍ତର, ତରୁଣୀ ନର୍ସ—ଅନାସକ୍ତ ରାତ୍ରିର ଗମ୍ଭୀର ନିର୍ଜନତାକୁ ନଷ୍ଟ କରି ଦିଅନ୍ତି ସେମାନେ । ବେଦନାତୁରର ଚିତ୍କାର, ସୁସ୍ଥଙ୍କର କୋଳାହଳ, ମାଳିମାନଙ୍କର ମାନଭଞ୍ଜନ, ଜଗୁଆଳି କୁକୁରର ଗର୍ଜନ ମଧ୍ୟରେ ବନ୍ଧୁ ନିଦ୍ରାହୀନ ରଜନୀ ବିତିଯାଏ । ବନ୍ଧୁ ନାସ୍ତିବାଚକ ମଧ୍ୟରେ ରୋଗୀର ଜୀବନ ମରଣ ସଂଗ୍ରାମ ଚାଲିଥାଏ । ଶେଯରେ ମଶାରି ନାହିଁ, କଳରେ ଜଳ ନାହିଁ, ଷ୍ଟୋଭ୍‌ରେ କିରୋସିନି ନାହିଁ, ଷ୍ଟୋର୍‌ରେ ଔଷଧ ନାହିଁ, ବେହେରାର ସଙ୍କୋଚ ନାହିଁ, ନର୍ସର ଲଜ୍ଜା ନାହିଁ, ଜୀବିକା ଅର୍ଜନରେ ମାନବିକତା ନାହିଁ । କେବଳ ମାର୍ଜାର ଏଠି ସୁସ୍ଥତମ । ସମସ୍ତଙ୍କ ପ୍ରତି ସମଦର୍ଶୀ । ରୋଗୀଙ୍କ ଦିଗ୍‌ଧି ପାଉଁରୁଟି ଉପରେ ତାର ଆଖି, କୌଶଳୀ ଯନ୍ତ୍ରୀ ପରି ବାକ୍‌ସଟି ଖୋଲି ସେ ନେଇ ଯାଏ—କେବଳ କଲ୍ୟାଣ କାମନାରେ, ବହ୍ୱାହାରରେ ରୋଗୀର ରୋଗ ବଢ଼ିବ ବୋଲି । ସେହିପରି ସମବେଦନାଶୀଳ ଡାକ୍ତର ଓ ବେହେରା । ବେହେରା ବଧିର, ରୋଗୀର ଆହାର ଉପରେ ତାର ଆଖି, ଔଷଧ ଉପରେ ଡାକ୍ତରର ଶ୍ୟେନ ଦୃଷ୍ଟି ।

ପଦାରେ ଗଦା ଗଦା ଆବର୍ଜନା—ବାନ୍ତି; ମଳମୂତ୍ର, ନର୍ଦ୍ଦମା ଜଳ, ଫମ୍ପା ପଇଡ଼, ଫଳଚୋପା, ଛେପ ଖଙ୍କାର ବୃଷ୍ଟି । ବଡ଼ ଅସହ୍ୟ ଏ ଜୀବନ ।

ଏଇ ଫୋଡ଼ାଫୋଡ଼ି ଜଞ୍ଜାଳ କୋଳାହଳ ମଧ୍ୟରେ ମୁଁ ପାଞ୍ଚଦିନ ବଞ୍ଚିଥିଲି । ଷଷ୍ଠଦିନ ଡାକ୍ତର, ଡାକ୍ତରାଣୀ, ନର୍ସ, ଗ୍ରୁପ, ହାଉସ୍ ସର୍ଜନ୍ ମହାବିନାଶକ ଶୈଳିକୁ ବିଣରୋକି କରିଗଲେ । ସେଦିନ ସେମାନଙ୍କ ଆନନ୍ଦର ଗୁଞ୍ଜନ ଧ୍ୱନି ମଧ୍ୟରେ ଚିତ୍ତ ମୋର ଶଙ୍କାଶୀଳ ହୋଇଉଠିଲି, 'କଳ୍ପନା ମୃତ୍ୟୁ କାଳ ଆଇ'—ସତେ ସେଦିନ ଭଗବାନ୍ ଡାକ୍ତରଖାନା ଗ୍ରୁଡ଼ିଗଲେ, ଡାକିଲେ କେହି ଶୁଣନ୍ତି ନାହିଁ, ଦେଖି ବି କେହି କିଛି ଦେଖନ୍ତି ନାହିଁ । ଅକ୍‌ସିଜେନ୍ ସରିଲା, ସଂଜ୍ଞା ମୋର ଲୋପ ହୋଇ ଆସିଲା ।

ସତ୍ୟୁ ମୁଣ୍ଡପାଖେ ବସି ପ୍ରଳାପ କରୁଥାଏ—ବିକଟ ଦାରିଦ୍ର୍ୟର କାହାଣୀ, ଯାହା ମୁଣ୍ଡକୁ ପାଗଳ କରିଥାଏ, ମୃତ୍ୟୁକୁ ନିକଟେଇ ଆଣେ । ହଇରେ, ତୁ ତ ଏଠି ଏମିତ ପଡ଼ି ରହିଲୁ ; କରଜ ଶୁଝା ହେବ କେମିତି ? ଘରେ ବଢ଼ିଲି ଝିଅ, କେମିତି ତାକୁ ହାତକୁ ଦିହାତ କରିବୁ ? ସବୁ ଅଳଙ୍କାରପତ୍ର, ବାସନକୁସନ ତ

ବନ୍ଧା ପଡ଼ିଚ, ମୁକୁଳା ହେବ କେମିତି ? ଧାନ ତ ଧୋଇ ଯାଇଚ୍ଛ, ଦୁହାଁଳ ଗାଈ ଛଡ଼େଇଲଣି, ପିଲାଏ ଏବେ ଚଳିବେ କେମିତି ?'

ଏସବୁ ଶୁଣିବା ଅପେକ୍ଷା ମରିବା ଭଲ । କେତେବେଳେ ମୋର ଚେତା ବୁଡ଼ିଗଲା ଜାଣେ ନାହିଁ । ଡାକ୍ତର ଆସି ବହୁ ଫୋଡ଼ାଫୋଡ଼ି କରିଥିବେ; ଯମ ଆଉ ଡାକ୍ତରଙ୍କ ମଧ୍ୟରେ ବହୁ ଟଣାଓଟରା ଲାଗି ଯାଇଥିବ । ଶେଷକୁ ଯମର ଜୟ ଜୟକାର । ପ୍ରଫେସରଙ୍କ ବାରବର୍ଷର ତପସ୍ୟା ଗୋଟିଏ ଦିନର ଶୁଖୁଆ ପୋଡ଼ାରେ ଶେଷ ହୋଇଗଲା । ପ୍ରେତ ରୂପରେ ମୁଁ ବୁଲୁଥାଏ, ଶୁଣୁଥାଏ ପୁଅର ବ୍ୟାକୁଳ କ୍ରନ୍ଦନ, ଆଶ୍ୱାସନା ଦେବାର ଉପାୟ ଦିଶୁ ନଥାଏ ।

ପାଖ ରୋଗୀମାନଙ୍କ ଅଶାନ୍ତି, ମୁର୍ଦ୍ଦାର ପାଖରେ ଶୋଇଚ; ପାଟିକି ଆହାର ପାଣିଏ ନେବେ କିପରି ? ବହୁ ଆପତ୍ତି ଅଭିଯୋଗ ପରେ ଲାଲ୍ କମ୍ବଲଟି ମୁହଁରେ ଘୋଡ଼ାଇ ଦେଇ ବେହେରାମାନେ ମୋ ଖଟଟି ଟିଙ୍ଗିନେଲେ ବାହାର ବାରଣ୍ଡାକୁ, ଖଟ ଚାରିପଟେ ପରଦା ବେଢ଼ାଇ ଦିଆହେଲା । ବାରଣ୍ଡାରେ ଦିପହର ପର୍ଯ୍ୟନ୍ତ ଶବଟି ପଡ଼ି ରହିଲା । ମେହେନ୍ତରଙ୍କ ହାତେ ଟିଙ୍ଗା ହୋଇ ପଦାକୁ ଗଲା, କିନ୍ତୁ ମଶାଣିକି ନିଆ ହେଲା ନାହିଁ । ଗାଆଁରୁ ଭାଇମାନେ ଆସି କୋକେଇ ବାନ୍ଧିଲେ, ଖାନ୍‌ନଗରକୁ ବୋହିନେବେ । ବଡ ବେହେରା ମୁଁ, ଦେଖୁଥାଏ ସବୁ ରଙ୍ଗ । ଡାକ୍ତରଖାନାର ବେହେରାମାନେ ଅଡ଼ି ବସିଲେ—ପଇସା ନ ଦେଲେ ମଡ଼ା ଛାଡ଼ିବୁ ନାହିଁ । ଏଇ ଦୁରବସ୍ଥାରେ ଲୁହ ପୋଛୁ ପୋଛୁ ପୁଅ ଦୁଇଟଙ୍କା ଦେଲା ।

ମଡ଼ା ପୋଡ଼ିବା ଲାଗି ହାତରେ ତ ଗୋଟିଏ ପଇସା ନାହିଁ । ମାଲ ଭାଇମାନେ ମୋତେ ଖାନ୍‌ନଗରରେ ଫିଙ୍ଗି ଦେଇ ଆସିଲେ, ନାମକୁ ମାତ୍ର ଖୋଳ ମୁର୍ଦ୍ଦାର ଉପରେ ଗଣ୍ଡିଏ ମାଟି ଘୋଡ଼ାଇ ଦେଇଥିଲେ । ସେମାନେ ମଶାଣିରୁ ଯାଉଁ ନ ଯାଉଁ କୁଆ, କୁକୁର, ବିଲୁଆ, ଶାଗୁଣା ଆସି ଝାମ୍ପି ପଡ଼ିଲେ । କିନ୍ତୁ ମୁର୍ଦ୍ଦାରକୁ ଖଣ୍ଡିଆଖାବରା କରିବା ଆଗରୁ ମେହେନ୍ତରମାନେ ପହଞ୍ଚି ଯାଇଥିଲେ, ହାତରେ ଚିତାଉଞ୍ଚ ଠେଙ୍ଗା । ଠେଙ୍ଗା ଦେଖି ତାର ଅର୍ଥ ବୁଝି ବିଲୁଆ କୁକୁର କିଆଗୋହିରି ଭିତରେ ଛପିଗଲେ, ଶାଗୁଣା ଉଡ଼ିଯାଇ ବରଗଛ ଉପରେ ବସିଲେ ।

ମେହେନ୍ତରମାନେ ବଡ ବେହେରାକୁ ଆନାଟମି ଡ଼ିପାର୍ଟମେଣ୍ଟକୁ ଘେନି ଗଲେ—ଦାମ୍ ଦେଢ଼ଶ ଟଙ୍କା ! ବଡ ବେହେରା ଜୀବନ କାଳରେ ଗାଈଟାକୁ ବିକିଥିଲା ଟ୩୦ ଙ୍କା ଦାମ୍‌ରେ, କିନ୍ତୁ ଏବେ ତାର ନିଜର ମୁର୍ଦ୍ଦାର ବିକ୍ରୀ ହେଲା

୧୫୦ ଟଙ୍କାରେ । ପ୍ରତିବାଦ କରିବାକୁ କେହି ନାହିଁ । ବିଲୁଆ, ଶାଗୁଣା ଅବଶ୍ୟ ଅଭିଶାପ ବର୍ଷିଥିବେ ।

କଟାକଟି, ଶିଝାଶିଝି, ଯୋଡ଼ାଯୋଡି ପରେ ମୋର ନବ କଳେବର ହେଲା, ଡାକ୍ତରଖାନା ହେଲା ମୋର ଚିର ବନ୍ଦୀଘର । ଡଃ ବ୍ରଜେନ୍ଦ୍ର ମୋତେ ଚିହ୍ନିପାରୁ ନାହାନ୍ତି, ଆମ ଓ୍ୱାର୍ଡ଼ର ସେଇ ନର୍ସ ମୋତେ ଚିହ୍ନିପାରୁ ନାହିଁ । ତଥ୍ୟ ଶିକ୍ଷା ଦେଉଛି; କାହାକୁ ଜଣକୁ ହେଲେ ସତ୍ୟ ଶିକ୍ଷା ଦେଇପାରି ନାହିଁ—

'ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମମନ୍ଦିରମ୍
ଶେଷାଃ ସ୍ଥିରତ୍ୱମିଚ୍ଛନ୍ତି କିମାଶ୍ଚର୍ଯମତଃପରମ୍ ।

ଏଇ କଲେଜରୁ ଡ଼ାକ୍ତର ବାହାରୁଛନ୍ତି, ମଣିଷ ଉଠୁରୁ ନାହାନ୍ତି । ଦୁଃଖୀ ଦରିଦ୍ର ଚିକିତ୍ସାର ମୂଲ୍ୟ ଦେଇ ନପାରି ମରୁଛି । ଡାକ୍ତରର ଦୃଷ୍ଟି ପୁଞ୍ଜିପତିର ଦୃଷ୍ଟି ପରି ରକ୍ତଶୋଷୀ, ବହୁଜୀବନଜୀବୀ ହୋଇଛି ।

ମୋର ନିଦ ଭାଙ୍ଗିଗଲା—ଆଖି ଆଗରେ ଗହଳି ଗହଳି ଆଖି; ଭୟଙ୍କର ଦୃଶ୍ୟସବୁ—ବଣ୍ଟ ବେହେରା—ତାର ଚେହେରା ଉପରେ ଦିଶୁଛି ନଟ ବେହେରା, ଭଜନା ଭୋଇ, ରୁଧୁଆ ବାରିକ, ସାଧୁଆ ମଲିକ, ହଗୁରା ପଧାନର ଗ୍ରୀବ; ଏଇ ମୁହୂର୍ତ୍ତରେ କେତେ ପ୍ରାଣର ଶେଷ ନିଶ୍ୱାସ ବହୁଛି ମୋର ଗ୍ରୀବରେ ଏକ ଦୀର୍ଘଶ୍ୱାସ ହୋଇ ।

ଯାହାକୁ ପରଖି ଡାକ୍ତର କହୁଛନ୍ତି ଏ ଏକ ରୋଗ, ଦୁରାରୋଗ୍ୟ ଶ୍ୱାସ ରୋଗ । ମନୋବୈଜ୍ଞାନିକ କହନ୍ତି—ବ୍ୟାଧିର ମୂଳ ଆଧିରେ—କିନ୍ତୁ ଆଧିର ମୂଳ କେଉଁଠି ? ବଣ୍ଟ ବେହେରା, ହଣ୍ଟ ସୋଇଁ, ଅନନ୍ତା ମାଝି ଏହାର ଉତ୍ତର ଦେଇ ପାରିବେ ।



# ସୁପ୍ରୀତିର ଜାତକ

ଝିଅ ସୁପ୍ରୀତି ହେଲା ତାଙ୍କର ମାଆ । ଘରେ ପଶିଲେ ମାଆ, ଷ୍ଟେଥୋ-ସ୍କୋପ୍‌ଟା ଆଣ୍, ପାନଡ଼ବାଟା ଆଣ୍ ; ପାଣି ଗିଲାସେ ଆଣ୍ । ମାଆ—ମାଆ—ମାଆ । ମାଆମୟ ହୋଇଗଲା ଡାକ୍ତର ସୁରେନ୍ ଚୌଧୁରୀଙ୍କ ଜୀବନ—ଉପରେ ଈଶ୍ୱର, ଭୂତଳେ ମାଆ— ଜୀବନର ଯଷ୍ଟି ସେ ।

ଡାକ୍ତର ସୁରେନ୍ ପେନ୍‌ସନ୍ ଭୋଗୀ, ବୃଦ୍ଧ, ଏବେ ବୃଦ୍ଧତର ହୋଇ-ଥିଲେ ସ୍ତ୍ରୀଙ୍କ ମୃତ୍ୟୁ ଯୋଗୁଁ । ସ୍ତ୍ରୀ କିନ୍ତୁ ତାଙ୍କୁ ସେବାକରିବା ଅବସ୍ଥାରେ ନଥିଲେ । ଓଲଟି ସେ ନିଜେ କରୁଥିଲେ ସ୍ତ୍ରୀଙ୍କର ସେବା । ପକ୍ଷାଘାତ ରୋଗୀ, ପ୍ରାୟ ଅଚଳ, ଖିନେଇ ଖିନେଇ ପଦେ ପଦେ କଥା ମାତ୍ର କହୁଥିଲେ । ଏକାନ୍ତ ଏକୁଟିଆ ବୋଲି ଭାବିବାକୁ ସ୍ତ୍ରୀକୁ ସେ କେବେ ଅବସର ଦେଇ ନ ଥିଲେ । ସ୍ତ୍ରୀ ଜୀବନସାରା ତାଙ୍କର ସେବା କରିଥିଲା, ଏବେ ସେ କରୁଛନ୍ତି ସ୍ତ୍ରୀଙ୍କର ସେବା । ସେ ଗାଧୋଇ ଦିଅନ୍ତି, ଖୋଇ ଦିଅନ୍ତି, ବିଛଣା ପାରି ଶୁଆଇ ଦିଅନ୍ତି, ଝାଡ଼ା ପରିସ୍ରା କରାନ୍ତି, ଦାଣ୍ଡ ଦୁଆରେ ଟିକିଏ ଟିକିଏ ଚଲାନ୍ତି, ଖବରକାଗଜ, ଧର୍ମପୁସ୍ତକ ପଢ଼ି ଶୁଣାନ୍ତି । ଏ ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ଥିଲା । ଏଥିଲାଗି ତିଳାର୍ଦ୍ଧେ ବିରକ୍ତି ସେ ପ୍ରକାଶ କରୁ-ନଥିଲେ, ତାଙ୍କର ବିଶ୍ୱାସ ଥିଲା—ଧର୍ମକାର୍ଯ୍ୟ ଆରମ୍ଭ କରାଯାଏ ପହିଲେ ଘରେ, ପରେ ବାହାରେ । ପତିସେବା ପତିବ୍ରତା ପତ୍ନୀଙ୍କ ଧର୍ମକାର୍ଯ୍ୟ, ପତ୍ନୀସେବା ସନ୍ତ ସ୍ୱାମୀର ଧର୍ମ କାର୍ଯ୍ୟ । ସମାଜସେବା, ଦେଶସେବା, 'ଜାତିସେବା, ବିଶ୍ୱସେବା ପରବର୍ତ୍ତୀ କାର୍ଯ୍ୟ । ଦଶବର୍ଷ ଅକ୍ଲାନ୍ତ ଚିକିତ୍ସା, ସେବାଶୁଶ୍ରୂଷା ପରେ ସ୍ତ୍ରୀ ସରୋଜିନୀ ଦେବୀ ଆଖି ବୁଜିଲେ; ଅବଶ୍ୟ ପତି କୋଳରେ, ପରମ ତୃପ୍ତିରେ । ସୁରେନ୍ ଲୁହ ଗଡ଼ାଉ ଗଡ଼ାଉ କହିଲେ—'ବିଧିରହୋ ବଲବାନ୍ ଇତି ମେ ମତିଃ' ।

ସ୍ତ୍ରୀ ସେବା ଥିଲା ତାଙ୍କର ମୁଖ୍ୟ ଅବଲମ୍ବନ । ଏବେ ହାତ ଲାଗିଲା ଖାଲି ଖାଲି, ମନ ଆହୁରି ଖାଲି । ପ୍ରେମର ସେଇ ଖାଲି ଜାଗାକୁ କିଛିହେଲେ ପୂର୍ତ୍ତିକରେ ବାତ୍ସଲ୍ୟ । ସୁପ୍ରୀତିର ମାଆ ମାଆ ଡାକ ସେ ବହୁତ ଆରାମ୍ ପାନ୍ତି; କିଛି ଆନନ୍ଦ ପାନ୍ତି ଦେବପୂଜାରୁ । ସୁପ୍ରୀତି ଫୁଲ ତୋଳିଆଣି ଦିଏ, ଧୂପଦୀପ, ଭୋଗରାଗ ସଜାଡ଼ି ଦିଏ ।

ଲୋକେ କହନ୍ତି—ଡାକ୍ତରବାବୁ ନିଜେ ତ ଦେବତା । ପୂଜା କରନ୍ତି ପୁଣି କେଉଁ ଦେବତାକୁ ?

ରୋଗୀମାନେ ତାଙ୍କୁ ଦେବତାଙ୍କ ଖଟୁଲିରେ ହିଁ ବସାଇଥାନ୍ତି ।

ଅଖଣ୍ଡ ବିଶ୍ୱାସ ତାଙ୍କ ଉପରେ । ସୁରେନ୍‌ବାବୁ ଡାକ୍ତର ନୁହନ୍ତି, ଯାଦୁକର । ସେ ଛୁଇଁଦେଲେ କୁଆଡ଼େ ରୋଗ ଭଲ ହୋଇଯାଏ ।

ଘରେ କରୁଣ, କିନ୍ତୁ ପବିତ୍ର ବାତାବରଣ । ଏହାର ପ୍ରଭାବ କାହିଁ ? ଦେବତା ପରି ବାପଙ୍କୁ ବଡ଼ପୁଅ ପଶ୍ଚରେ ନାହିଁ କାହିଁକି ? ସାନପୁଅ ବି ଦୂରେଇ ରହିଛି କାହିଁକି ?

ଲୋକେ କହନ୍ତି, ଏ ସ୍ୱାର୍ଥପର ଯୁଗ । ପୁଅ ବୁଢ଼ାବାପଠାରୁ ଭିନେ ହୁଏ । ଯାହା ଫୁସ୍ ଫୁସ୍ କରି କାନରେ କୁହେ ବୋହୂ, ତାହାହିଁ ହୁଏ ବେଦର ଗାର । ଆଜିକାଲିକା ପିଲା ମାଇପିବୋଲା । କିଛି ନିଜତ୍ୱ ନାହିଁ, ପୁରୁଷକାର ବି ନାହିଁ । ଗୋଟେ ଆଡ଼େ ଆଖି ତାର, ଗୋଟେ ଆଡ଼େ କାନ—ଏକବାଗିଆ !

ତାର ସଂସାର ଅର୍ଥ ନିଜର ଘର; ଘର ଅର୍ଥ ନିଜେ, ସ୍ତ୍ରୀ ଆଉ ପିଲା । କାମ ଅର୍ଥ—ଅର୍ଥ ଉପାର୍ଜନ । ବ୍ୟୟ କେବଳ ନିଜ ପାଇଁ, ପିଲାପିଚକାଙ୍କ ପାଇଁ । ଦୋଷୀ କିଏ ? ବାପ ମାଆ । ସାନ ଭାଇ ? ସେ ନିଜ କଥା ବୁଝୁ । ଭଉଣୀ ? ପୈତୃକ ସମ୍ପତ୍ତିରୁ ଭାଗ ନେଇ ବିଦା ହଉ ।

ଏସବୁ ଉପରଠାଉରିଆ କଥା । ଭିତରେ ଲୋକେ ପଶନ୍ତି ନାହିଁ । ଆରେ ବାବୁ, ଯାର ଚେର କୋଉଠି ଅଛି ଖୋଜ, ନା ଆମକୁ ବେଳ କାହିଁ ? ନିଜକଥା ତ ଅଠାଠିକ୍ । ତାହେଲେ କହୁଛ କାହିଁକି ? ନିକିହି ରହି ହେଉ ନାହିଁ ବୋଲି, ଆଜି ତାଙ୍କ ଘରେ ହେଲା । କାଲି ଆମ ଘରେ ସେ କଥା ନ ଘଟିବ କାହିଁକି ?

ସୁରେନ୍‌ବାବୁ ପୁଅମାନଙ୍କୁ ପାଠ ପଢ଼େଇ ମଣିଷ କରିବାକୁ ସବୁମନ୍ତେ ଚେଷ୍ଟା କରିଥିଲେ । ବଡ଼ଟି ଡାକ୍ତର ହେଲା । ସାନ ଗେଲବସର, ଦରପାଠୁଆ ହୋଇ ରହିଗଲା । କିନ୍ତୁ ତାର ସାଧାରଣ ବୁଦ୍ଧି ଭଲ, ନିଜ ଶିଙ୍ଘରେ ମାଟିତାଡ଼ି ଏବେ ନିଜେ ଘର କରିଛି ।

ଡାକ୍ତରବାବୁ ପୁଅମାନଙ୍କ କଥା ବହୁତ ଭାବନ୍ତି । ସେମାନେ ଦୂରେଇ ରହିବା ଫଳରେ ଭବିଷ୍ୟତ ଭରସା ତୁଟିଗଲା ବୋଲି ମନେକରନ୍ତି । ଏବେ ସୁପ୍ରୀତି ଭରସା—ମାଆ ମାଆ ଡାକରେ ସବୁ ଭୁଲି ହୋଇଯାଏ । କିନ୍ତୁ ପୁଅମାନଙ୍କ ଦେହରେ ଚିଆଁ ଲାଗେ । ଭଉଣୀ କାଲି ପରଘରି ହେବ; ସେ ହେଲା ସବୁ; ଆମେ କିଛି ନୋହୁଁ । ହଉ ନ ହେଲା ତ ନାହିଁ, ନାହିଁ । ଆମେ ଆଉ କାହିଁକି ରହିବୁ ? ଆମର ଏଠି କ'ଣ ଅଛି ?

ଏକାନ୍ତ ସ୍ନେହଶୀଳ ବାପଟିଏ, ବାଳୁତ ପରି ମାଆ, ମାଆ ଡ଼ାକୁଚି । ସୁପ୍ରୀତିର ଗୁଡ଼ ତରଳି ଯାଏ, ମନପ୍ରାଣ ଦେଇ ବାପର ସେବା କରେ । ବାପା

ନିଃଦିନର ସେବକଗାରିତକ ଯିଏ ଆଗରେ ଅକାତ୍ତ ଦିଅନ୍ତି । ଯିଏ ମନଇଚ୍ଛା ଖର୍ଚ୍ଚ କରେ, କେହି କୌଣସି କଥାରେ ରୋକିବାକୁ ନାହିଁ, ଆକଟିବାକୁ ନାହିଁ ।

'ବାପା, ଆଜି କ'ଣ ରୋଷେଇ ହେବ ?'

'ମାଆ, ତୋ ଇଚ୍ଛା ଯାହା କରିବୁ କର ।'

'ବାପା, ଆଜି ଟିକଏ ସିନେମା ଯିବି ।'

'ହଉ ତୋ ଇଚ୍ଛା ।'

'ବାପା, ଆଜି ଜଣେ ବାନ୍ଧବୀର ଜନ୍ମଦିନ । ରାତିରେ ଫେରିବାକୁ ଡେରି ହେବ ! ଯିବି ?'

'ଯା ମାଆ, ବେଳାବେଳି ଫେରିବାକୁ ଚେଷ୍ଟା କରିବୁ ।'

ସୁପ୍ରୀତିର ସ୍ୱାଧୀନତାର ଡୋରୀ ଲମ୍ବି ଲମ୍ବି ଗଲା; ସ୍ୱୀରେନ୍ ବାବୁଙ୍କ ହାତରୁ କେତେବେଳେ ଖସିଗଲା ସେ ଜାଣିପାରିଲେ ନାହିଁ । 'ଈଶ୍ୱରେଚ୍ଛା ବଳୀୟସୀ', 'ଯାହା କରିବେ ସାଇଁ', ଏ ତାଙ୍କର ଧ୍ରୁବ ବିଶ୍ୱାସ ।

କାଳିମା ଦାନ୍ତମାଡ଼ିକି ବି କଳା କରିଦେଇଥିଲା । ସୁପ୍ରୀତି ହସିଲେ ହସର ଏକ ଲହରୀ ପରି ଦିଶେ; ନିକଟେଇବାର ଶକ୍ତି ତାର ନାହିଁ, ବରଂ ଦୂରେଇ ଦିଏ; ତା ହାବୁଡ଼ରୁ ଯୁବକ ଖସି ପଳାଇବାକୁ ଚେଷ୍ଟା କରେ । ସୁପ୍ରୀତି ପ୍ରୀତିରେ ଜଣକୁ ହେଲେ ବାନ୍ଧି ଆଣିପାରିଲା ନାହିଁ ।

ସଙ୍ଗିନୀମାନେ ଗୋଟି ଗୋଟି ଖସିଗଲେ, ନିଜର ଅକର୍ମଣ୍ୟତାର ବ୍ୟଥା ସୁପ୍ରୀତିକୁ ନିପୀଡ଼ିତ କରିବାକୁ ଲାଗିଲା । ସରଳା, ସରଳରେଖା ପରି ଚେହେରା, ରେଳବାଡ଼ିରେ ଯେମିତିକି ଯୋଡ଼ା ହୋଇଛି ମୁହଁ; ସେ ବାହା ହେଲା ଜଣେ ଇଞ୍ଜିନିଅରଙ୍କୁ । ରଶ୍ମି; ଓଡ଼ଗାଲୀ, ତାର ହାତଗଣ୍ଠି ପଡ଼ିଲା ଜଣେ କାନଡ଼ାଗଟି ସହିତ । କୃଷ୍ଣା ଆମେରିକା ଗଲା । ତାର ବାହାଘର ହେଲା ଜଣେ ରାଷ୍ଟ୍ରଦୂତଙ୍କ ପୁଅ ସହିତ ହିନ୍ଦୁ ମତରେ । ରେଖା ହାକିମାଣୀ ହେଲା; ସେ ପଡ଼ିଲା ଜଣେ ଆଇ. ଏ. ଏସ. ହାତରେ । ନର୍ତ୍ତକୀ ଅମ୍ବିକା ଢଳିପଡ଼ିଲା ଜଣେ ସିନେମାଷ୍ଟାର୍ ଉପରକୁ— ଫସାଣିର ଅଭିନୟ କରୁ କରୁ ନାୟକର ଗୃହିଣୀ ସ୍ଥାନ ଅଧିକାର କଲା ସେ । ସଦ୍ୟ ଏସ୍ପାରହୋଷ୍ଟେସ୍ ହୋଇଯାଇଥିବା ସୁନ୍ଦରୀ ଶିବା ବାହା ହେଲା ଜଣେ ଲେଫ୍‌ଟେନାଣ୍ଟଙ୍କୁ । କୋଦମୀ ସିପ୍ରା, ଯେ ହାତୁଣୀ ପରି ଚାଲେ, ବାଡ଼ି ମାରିଲା ପରି କଥା କହେ, ତା ଉପରେ ବି ପଡ଼ିଗଲା ବାଡ଼ୁଅପାଣି । ସେ ବାହା ହେଲା ଜଣେ ଦେଶପୂଜ୍ୟ ନେତାଙ୍କୁ । ସୁପ୍ରୀତି ଶୂନ୍ୟକୁ ଚାହେଁ । ତା କପାଳଟା କ'ଣ ଏଡ଼େ ପୋଡ଼ା ? ହେଲା ଏବେ ରୂପ ନାହିଁ, ଯୌବନ ତ ଅଛି । ଧନ ତ ଅଛି । ବାପାଙ୍କର

ସୁନାମ, ମାନସମ୍ଭ୍ରମ ତ ଅଛି । ଲୋକେ ଏତେ 'ଅଛି'କୁ ନ ଦେଖି 'ନାହିଁ' ଆଡ଼କୁ କାହିଁକି ଏତେ ଗୃହ୍ୟାନ୍ତି ?

ବୋଧହୁଏ କିଛି ତ୍ରୁଟି ରହୁଛି ତାର । ହୁଏତ ଆକର୍ଷଣରେ କଳା ଜଣା ନାହିଁ । ସୁପ୍ରୀତି କଣ୍ଠକୁ କୋମଳତର କଲା । ଆବଶ୍ୟକ ଥାଉ ବା ନଥାଉ, ସାହାଯ୍ୟ କରିବାକୁ ତତ୍ପର ହେଲା, ବେଶପ୍ରସାଧନ ବଢ଼ାଇଲା । ପୁଅ ପିଲାଙ୍କ ସଙ୍ଗେ ଦୂରଦୂରାନ୍ତରକୁ ବୁଲିଗଲା, ସନ୍ଧ୍ୟାପରେ ଫେରିଲା, ଧଗେ ଧଗେ ମେଲିଲା ତାର ମାୟାଜାଲ । ଖାଲୋଇ ଝାଡ଼ି ଦେଖିଲା—ପଡ଼ିଚି ମାତ୍ର ମୀନଟିଏ—ରମାସ୍ୱାମୀ—ଜଣେ ସ୍କୁଲ୍ ଶିକ୍ଷକ ।

ପରିଚୟରେ ପଡ଼ିଲା, ଜାଣିଲା ଯେତେବେଳେ ସେ ବିବାହିତ । କିନ୍ତୁ ଅନେକ ଦୂର ଆଗେଇ ଯାଇଥିଲା ସେ; ଫେରନ୍ତା କିପରି ? ନଜର ହୋଇ ଆଉ କଣ ତାର ଥିଲା ?

ଶିକାର କାଳେ ଖସି ପଳାଇବ ଏଇ ଥିଲା ତାର ଭାବନା, ଖାପଚରେ ପଡ଼ିଥିବା ଜନ୍ତୁକୁ କଲେବଲେ କୌଶଳେ ଯାବୁଡ଼ି ଧରି ରଖିବାର କାମନା ତାକୁ ବ୍ୟସ୍ତ ବିକଳ କରିପକାଉଥିଲା । ସେ କରିଥିଲା ଆତ୍ମସମର୍ପଣ—ସବୁ ପଛେ ଯାଉ—ବହୁ କଷ୍ଟାର୍ଜିତ ଧନ ତାର ନଜର ହେଉ ।

ରମାସ୍ୱାମୀ କିଶୋର କାଳରେ ବିବାହିତା ପତ୍ନୀକୁ ଭୁଲିଯାଇଥିଲା । ତାକୁ କର୍ମକ୍ଷେତ୍ରକୁ କେବେ ଆଣି ନ ଥିଲା; ତା ସହିତ ପତ୍ରିକ ସମ୍ପର୍କ ମଧ୍ୟ ରଖି ନଥିଲା; ସମ୍ପୂର୍ଣ୍ଣରୂପେ ଭୁଲିଯାଇଥିଲା ନିରକ୍ଷର ଗ୍ରାମ୍ୟ ବାଳିକାକୁ, ଯେ କସ୍ମିନ୍‌କାଳେ ସହ-ଧର୍ମିଣୀ ହୋଇ ନ ପାରେ । ଯେ ଦୂରେଇ ଯିବାକୁ ଚାହୁଁଥିଲା, ଦୂର କରିବାକୁ ସୁବିଧା ସୁଯୋଗ ତାକୁ ମିଳିଗଲା । ସୁପ୍ରୀତି ଧନୀକନ୍ୟା, ରୂପର ଅଭାବ ପୂର୍ଣ୍ଣ କରିଦେବ ଗୁଣ, ବର୍ଣ୍ଣର ଅଭାବ ପୂର୍ଣ୍ଣ କରିବ ଶିକ୍ଷିତାର ଆଙ୍ଗିକ ଓ ଆତ୍ମିକ କଳା । ଯାବତୀୟ ଅଭାବ ପୂର୍ଣ୍ଣ କରିଦେବ ଧନ । ଆରେ, ଏ ଯୁଗରେ ଧନ ଥିଲେ ଆଉ ନାହିଁ କ'ଣ ?

ସୁପ୍ରୀତିର ଆଖି ଆଗରେ ହୁଏତ ନାଚି ଉଠିଥିଲା ଗ୍ରାମାଞ୍ଚଳର ଗୋଟିଏ ଝିଅ । ଦୁଆର ଓଳଉଚି, ବାସନ ମାଜୁଚି, ଆକାଶକୁ ଚାହିଁ ଚାହିଁ ଲୁହ ଗଡଉଚି, ମନରେ ଦରଦ—ବିଚରା !

ପରମୁହୂର୍ତ୍ତରେ ସୁପ୍ରୀତି ଭିତରୁ ଗର୍ଜି ଉଠିଲା ଦାମ୍ଭିକତା—କାହା କଥାରୁ ମତେ କଣ ମିଳିବ ? କାହା ଧନ ମୁଁ ଜବର ଦଖଲ କରିନାହିଁ । ପ୍ରତିଯୋଗିତାର ଯୁଗ ଏ । ସେଇ ଦୌଡ଼ରେ ଯିଏ ଜୟୀ ହେବ, ସିଏ ହିଁ ତିଷ୍ଠିବ । ନପାରିଲା ପୋଡ଼ିଜଳି ପାଉଁଶ ହୋଇଯାଉ ।

ସୁପ୍ରୀତି ବାପାକୁ ଜଣାଇଲା ଜଣେ ମାଉସୀ ଜରିଆରେ । ହୀରେନ୍‌ବାବୁ ବ୍ୟସ୍ତ, ବିଚଳିତ ହେଲେ । ବିବାହିତ ସଦ୍ୟ କନ୍ୟାକୁ ବିଭାଦେବେ କିପରି ? ନ ହେଲା ପଛକେ ନାହିଁ—ସେ ନିଜ ଝିଅକୁ ବୁଡ଼େଇ ମାରିବେ ନାହିଁ, ଆଉ ଗୋଟିଏ ଝିଅର ବି ସର୍ବନାଶ କରିବେ ନାହିଁ ।

ସୁପ୍ରୀତି ନାନା ସୂତ୍ରରେ ବାପାଙ୍କୁ ବୁଝେଇବା ଚେଷ୍ଟା କଲା; ଓକିଲ ପରାମର୍ଶ ବି କରାଗଲା । ସମ୍ବାଦପତ୍ରରେ ନୋଟିସ୍ ଦିଆଗଲା । ସ୍ୱାମୀକି ଯଦି ଅକ୍ତିଆରରେ ରଖି ନ ପାରିଲା, ସେଥିପାଇଁ ସ୍ତ୍ରୀ ଦାୟୀ । ମୋର ଭାବନାର କାରଣ କ'ଣ ଅଛି ?

ନିର୍ଦ୍ଦିଷ୍ଟ ତାରିଖ ମଧ୍ୟରେ ଜବାବ ନ ଦେଲେ ଗ୍ରମାସ୍ୱାର ସ୍ତ୍ରୀ ଜୀବିତ ନାହିଁ ବୋଲି ଧରାଯିବ । ମଫସଲୀ ଆଫିସରେ ନୋଟିସ ପଡ଼ିଲା •କି ନାହିଁ ଭଗବାନଙ୍କୁ ଗୋଚର । ଜବାବ୍ ନ ମିଳିବା ତ ସ୍ୱାଭାବିକ କଥା । ହୁଏତ ଜୀବିତକୁ ମୃତଭାବେ ଗଣାଗଲା, ଅସତ୍ୟକୁ ସତ୍ୟଭାବେ ଗ୍ରହଣ କରାଗଲା । ବହୁ ପ୍ରବଞ୍ଚନାରେ ହୀରେନ୍ ବାବୁ ରାଜି ହୋଇଗଲେ ।

ହୀରେନ୍‌ବାବୁଙ୍କ ଏକମାତ୍ର କନ୍ୟାର ବିବାହ; ପ୍ରିୟ ଲୋକମାନେ ଜୋର୍-ସୋର୍‌ରେ ଆୟୋଜନରେ ଲାଗିଗଲେ । ଡାକ୍ତରବାବୁ କାହାର ଅସମୟରେ ବା ଛିଡ଼ା ହୋଇନାହାନ୍ତି ? ଗଦା ହୋଇଗଲା ଉପହାରର ଏକ ପାହାଡ଼—ଶାଢ଼ୀ, ଅଲଙ୍କାର, ରେଡ଼ିଓଗ୍ରାମ୍, ଷ୍ଟୋଭ୍, ଷ୍ଟେନ୍‌ଲେସ୍‌ଷ୍ଟିଲ୍‌ବାସନ, ଟିସେଟ୍, କୁକର୍, ବହି; ଛବି ଇତ୍ୟାଦି । ଡାକ୍ତରବାବୁ ଏଇ ବିବାହରେ ଖର୍ଚ୍ଚ କଲେ ପ୍ରାୟ ୨୫ ହଜାର ଟଙ୍କା ।

ସୁପ୍ରୀତି ହୀରେନ୍‌ବାବୁଙ୍କ ଶୋକୋଚ୍ଛ୍ୱାସ ମଧ୍ୟରେ ଗଲା ଖଡ଼ଗପୁର, ସ୍ୱାମୀର କର୍ମସ୍ଥାନ । ସଙ୍ଗରେ ଗଲା ନାହିଁ ଭାଇ । ଏ ବିବାହରେ ତାର ସମ୍ମତି ନ ଥିଲା ।

ଏ ଗୋଟିଏ ବସ୍ତି, ଦାଣ୍ଡରେ ବାଡ଼ିଆଡ଼େ ପୋଖରୀ ପାଣି । ଟିଣ ଗୁଡର ଦୁଇ ବଖରା ଘର, ପିଣ୍ଡାରେ ରୋଷେଇ । ବାଡ଼ପଟେ କଚ୍ଚା ପାଇଖାନା । ଚାରିପଟେ କୁଲି, ମିସ୍ତ୍ରୀ, ମଜୁରିଆ, ଡ୍ରାଇଭର । ଏ ପରିସ୍ଥିତିରେ ସୁପ୍ରୀତିର ନିଃଶ୍ୱାସ ବନ୍ଦ ହୋଇଗଲା ଯେପରି କି । କାନ୍ଥାରରେ ପଡ଼ିଲା ପରି ତାକୁ ଲାଗିଲା ।

ହାତ ଖୋଲି ଖର୍ଚ୍ଚ କରି ଆସିଛି । ସ୍ୱାମୀର ଦରମା ୧୫ଦିନକୁ ବି ଅଣ୍ଟିଲା ନାହିଁ । ଚିଠି ଉପରେ ଚିଠି—'ବାପା, ପାଞ୍ଚଶ ଟଙ୍କା ପଠାଅ, ବାପା ତିନିଶ ଟଙ୍କା ପଠାଅ ।'

'ମାଆଙ୍କୁ କଷ୍ଟ ହେଉଥିବ । ଅଳ୍ପ ଆୟୁରେ ଚଳି ପାରୁନଥିବ । ତା ବୋଉ ଥିଲେ କେତେ କଣ ଅଳି କରି ନେଇଥାନ୍ତା ।' ଧୀରେନ୍‌ବାବୁ ସଙ୍ଗେ ସଙ୍ଗେ ଟଙ୍କା ପଠାଇ ଦିଅନ୍ତି ।

ସୁପ୍ରୀତି ଘରକୁ ଫେରିଲା ବର୍ଷକ ପରେ । ସଂସାର ସମ୍ପର୍କରେ ରଙ୍ଗୀନ୍ ସ୍ୱପ୍ନ ତାର ଭାଙ୍ଗି ଯାଇଛି । ମନ ମରିଯାଇଛି । ସଂସାର ପରିଚାଳନା ସମ୍ପର୍କରେ କିଛି ମନୋମାଳିନ୍ୟ ? କିଛି ଦାମ୍ପତ୍ୟ କଳହ ? ଦୁଃଖ ଓ ନୈରାଶ୍ୟରେ ଭୁଷୁଡ଼ି ପଡ଼ିଲା ପରି ଦିଶୁଥିଲା ସୁପ୍ରୀତି । କିଏ ସୁଖୀ ? ଯେ ବିଭା ହୁଅନ୍ତି ନା ଯେ ନ ହୁଅନ୍ତି ? ଏ କ'ଣ ସତେ ଏକ ଦିଲ୍ଲୀକା ଲଡ଼ୁ ? ଯେ ଖା'ନ୍ତି ପସ୍ତାନ୍ତି, ଯେ ନଖା'ନ୍ତି ପସ୍ତାନ୍ତି ।

ସୁପ୍ରୀତି ଦିନେ ନପାଇ ପସ୍ତାଇ ଥିଲା, ସହପାଠିନୀ, ସଙ୍ଗିନୀମାନଙ୍କ ଭାଗ୍ୟରେ ଈର୍ଷା କରିଥିଲା । ଆଜି ବର ପାଇ ପସ୍ତାଇଲା; ବର ତା ମନଲାଖି ହେଲା ନାହିଁ । ରୁଚି ଖାପ୍ ଖାଇଲା ନାହିଁ, ଶଗଡ଼ର ଦୁଇଟିଯାକ ଚକ ସମାନଭାବେ ସରିରେ ଗଲା ନାହିଁ । ଆରେ ବିଧାତା, କାହିଁକି ଏମିତି ହେଲା ? ସ୍ୱୟମ୍ବର ସଭାରେ ବାଛି ଜଣକ ଗଳାରେ ମାଳ ଦେବା ପ୍ରଶ୍ନ କୋଉଠି ଉଠିଥିଲା ? ଖୋଜି ଖୋଜି ଯୋଉଠି ପାଇଲା ସେ ବରଟିଏ ବାଛି ନେଲା ? ଭୁଲ୍ ହେଲା କେଉଁଠି ? ସେ ଯୁବତୀଟିଏ, ଅବିବାହିତା ହୋଇ କ'ଣ ଚିରକାଳ ରହିଥାନ୍ତା ? କାମନାବାସନା ଚରିତାର୍ଥ କରିବାର ଆଉ ଅଧିକ ସମ୍ମାନଜନକ ପନ୍ଥା କଣ ଥିଲା ? କିନ୍ତୁ ପ୍ରଭୁ, ଏ କ'ଣ ହେଲା ? ଆମ୍ବ ଖୋଜୁଥିଲି, ମିଳିଲା ମୋତେ ଆମ୍ବଡ଼ା ?

କଥା ଅଛି—'ଏଥ ସୁମରି ପିତା ଘର ଯିବୁ ଆଉ ଅଯୋଧ୍ୟାକୁ ମନ ନ କରିବୁ,' ପିତୃଗୃହର ଦରଜା ତ ଖୋଲା, ସେଠି ଭାଇ ନାହିଁ ଯେ ଆକଟ କରିବ । ଭାଉଜ ନାହିଁ ଯେ ଈର୍ଷା କରିବ । ଧୀରେନ୍‌ବାବୁ ଦୁଃଖିତ ହେଲେ । ନିଜ ଝିଅକୁ କ'ଣ ଆଉ ଫୋପାଡ଼ି ଦେବେ ? ପୁଣି ଶୁଣାଗଲା ସେଇ ମାଆ ମାଆ ଡାକ । ସାଇ ପଡ଼ିଶା ମନେ ମନେ ପ୍ରଶ୍ନ କରନ୍ତି—ସ୍ନେହ ନା ଦୁର୍ବଳତା ଏ ? କିନ୍ତୁ ଡାକ୍ତର-ବାବୁଙ୍କୁ ଡରିସି କେହି କିଛି କହିପାରନ୍ତି ନାହିଁ ।

ମୁହଁରେ କଥା କହନ୍ତି, ମନେ ମନେ ଚିଡ଼ନ୍ତି । ସୁପ୍ରୀତି କାହା ସଙ୍ଗେ କେତେ କାଳ ଆଳାପ କରିବ ? ଘର ଖାଇ ଗୋଡ଼ାଏ । ବହି ଖୋଲେ, ପୃଷ୍ଠା ଓଲଟାଏ । ମନ ଲାଗେ ନାହିଁ । ଗୋଟାକ ପରେ ଗୋଟାଏ ବହି ଖୋଲୁଥାଏ, ଫିଙ୍ଗୁଥାଏ । କି ଉପନ୍ୟାସ ସବୁ ଲେଖିଛନ୍ତି ଲେଖକ ? ଗୋଟିଏ ହେଲେ ସୁପ୍ରୀତିର ମନ ରଞ୍ଜାଇ ପାରୁନାହିଁ ।

ସିନେମା ? ସେ ଏକ ମାଦକ, ବଡ଼ ଉତ୍ତେଜକ, ଉନ୍ମାଦକ । ପ୍ରେମ ସମ୍ପର୍କୀୟ ସିନେମା ଦେଖା ସୁପ୍ରୀତିର ଏକ ନିଶା—ପ୍ରାୟ ନିତି ସିନେମା ଦେଖେ, ଦଶା ବା ଦୋହା ଧରେ । ସେଇ ନିଶାରେ ଘାରି ହୁଏ । କେଡ଼େ ଉଜ୍ଜ୍ୱଳ, ସୁନ୍ଦର ସଂସାର ସବୁ । କେତେ ପ୍ରୀତି, କେତେ ସମ୍ପଦ, କେତେ ସୌଭାଗ୍ୟ, କେତେ ସୁଖ ଏ ସଂସାରରେ ପୂରି ରହିଛି ? ସୁପ୍ରୀତିର ଶିରପ୍ରଶିରା ପୁଣି ଝାଙ୍କି ଉଠିଲା । ସେ କେତେ ସୁନ୍ଦର ସୁନ୍ଦର ନାୟକର ସ୍ୱପ୍ନ ଦେଖିଲା—'ଚେତି ଚତୁସ୍ତ୍ରି ଗୁହିଁଲା ନାହିଁ ନାଶେ ପାଶେ ନାହିଁ ଦିବ୍ୟ ତରୁଣ !'

ମୋଡ଼ାମୋଡ଼ି ହୋଇ ପଡ଼ିଥିବା ମନର କଳ୍ପନା ପୁଣି ଆଗେଇଲା—ମେଘ ମହଲରେ ତୋଳିଲା ସୁବର୍ଣ୍ଣ ସୌଧ ।

ସୁପ୍ରୀତି ଖୋଜିଲା ନୂଆ ନୂଆ ବନ୍ଧୁ । କେଉଁ ସୁଯୋଗ ବା ଦୁର୍ଯୋଗରେ ଜୁଟିଲା ଆସି ହରସ୍, ତଳର ତଳ ସାନଭାଇ ପରି ହେବ, ବୟସରେ ୧୦ ବର୍ଷ ସାନ । ଆଶ୍ଚର୍ଯ୍ୟଭାବେ ତା ସହିତ ଗଢ଼ିଉଠିଲା ବନ୍ଧୁତା, ଘନିଷ୍ଠତା । ସାଧାରଣ କଥାଭାଷା, ନିତ୍ୟଭ୍ରମଣ, ତାପରେ ପ୍ରାତରାଶ ଓ ଭୋଜନ ଲାଗି ନିମନ୍ତ୍ରଣ । ହୁଏତ ବୃଷ୍ଟିପାତ ବା ବାତ୍ୟା—ରାତିକ ଲାଗି ରହିଣି, ତାପରେ ନିତ୍ୟ ରହଣି । ଉଦଗ୍ର କାମନା ଜାଳି ଉଠିଥିଲା ସୁପ୍ରୀତିର ମନରେ—ଅତି ଉତ୍କଟ ମଦ ପରି ଗ୍ରାସ କରିଥିଲା ତାର କଳାତ୍ମକ ସୃଷ୍ଟି, ରୁଚି, ସୌଜନ୍ୟ ସମ୍ଭ୍ରମ । ବାହାରେ ପିତୃଭକ୍ତିର ଏକ ଖୋଳପା ବଳିତ ଭାବେ କାର୍ଯ୍ୟ କରି ଯାଉଥିଲା, ନିଜର ଦୁର୍ବଳତାକୁ ଘୋଡ଼ାଇବା ଲାଗି ଅତି କୃତ୍ରିମ ମାୟାର ଆଶ୍ରୟ ନେଇଥିଲା ସୁପ୍ରୀତି । ଭଳେଇ ହେଉଥିଲା, ଭଳେଇ ଦେଇଥିଲା ପିତୃଗୃହର ଆଗନ୍ତୁକମାନଙ୍କୁ ।

ସୁପ୍ରୀତି ଭଙ୍ଗା ସଂସାରକୁ ପୁଣି ନୂଆ ଭିଟାମାଟି ଉପରେ ଗଢ଼ିବାକୁ ଚେଷ୍ଟା କଲା । ପୁଣି ଉଠିଲା ବିବାହର ପ୍ରଶ୍ନ । ଡାକ୍ତରବାବୁ ବର୍ତ୍ତମାନ ଦୋଛାଇରେ —ସାମାଜିକ ସଙ୍କୋଚ, ଏଣେ କନ୍ୟାପ୍ରତି ଏକାନ୍ତ ମମତା । ମମତା ହିଁ ଶେଷରେ ଜୟୀ ହେଲା । ଲୁକ୍‌କାୟିତ ଭାବେ ବିବାହର ଆୟୋଜନ ଚାଲିଥିବାବେଳେ ଏ କି ବଜ୍ରପାତ ?

ଅଳଙ୍କାର ବାକ୍‌ସ କିଏ ନେଲା ? ହରସ୍ କାହିଁ ? କହିଲେ କୁଳ କୁଟୁମ୍ବକୁ ଲାଜ । କାହାକୁ କହିବେ ? ଚୋରକୁ ତ ଡାକି ଆଣି ନିଜ ଝିଅ ଘରେ ପୂରେଇଛ । ଇଜ୍ଜତକୁ ଦ'କଡ଼ାର କରିଛ ! ଡାକ୍ତରବାବୁ ମନ ମାରି ରହିଲେ ।

ସୁପ୍ରୀତିର ଆଖିର ଲୁହ ପାଣିରେ ପଶିଲା । ମନେ ମନେ ସଙ୍କଳ୍ପ କଲା— ସଂସାର ? ଆଉ ନାରେ ନା ! କାହିଁକି ଏ ବନ୍ଧନ ? କାହିଁକି ଏ ମିଛମାୟା ?

ଦେବେ ଦ୍ୱିଜେ ସୁପ୍ରୀତର ଭକ୍ତି ବଢ଼ିଲା । ପାହାନ୍ତିଆରୁ ଗାଧୋଇ ପାଧୋଇ ଦେବତାଙ୍କ ପାଦରେ ଲୁହଓଦା ଫୁଲ ଦେଲା, ଆଖିବୁଜି ବସି ପ୍ରାର୍ଥନା କଲା ।

ସାଦାସିଧା ଖଣ୍ଡିଏ ପିନ୍ଧଲା, ପ୍ରାୟ ସବୁ ଅଳଙ୍କାର ଶୀତଳେଇ ଦେଲା । ମୁହଁରେ ପାଉଡ଼ର ଟିକିଏ ସୁଦ୍ଧା ମାଖିଲା ନାହିଁ; ମିଞ୍ଜି ମିଞ୍ଜି ଜଳୁଥିବା ପରି ଲାଗୁଥିଲା ତାର ଜୀବନ ।

ସୁପ୍ରୀତ ମଝିରେ ମଝିରେ ଗୋଟିଏ ଆଶ୍ରମକୁ ଯାଇ ଧର୍ମଚର୍ଚ୍ଚା ଶୁଣୁଥିଲା— ମୋହମାୟା କପରି ବିସର୍ଜନ ଦେବାକୁ ହେବ, ସତ୍‌ମାର୍ଗରେ କପରି ଜୀବନ ଚଳାଇବାକୁ ହେବ, ଭଗବାନ୍‌ଙ୍କ ପାଦରେ କପରି ଆତ୍ମସମର୍ପଣ କରିବାକୁ ହେବ । ରାଧାକୃଷ୍ଣଙ୍କ ବିଗ୍ରହ ସାମ୍ନାରେ ଏକ ପିଣ୍ଡି ଉପରେ ଏ ଧର୍ମଚର୍ଚ୍ଚା ହେଉଥାଏ ।

ସାଧୁବେଶଧାରୀ ଅସାଧୁ ବନ୍ଧୁ; ଚଲମ ଟାଣି ଆସିଥାନ୍ତି, ଢୁଳାଉଥାନ୍ତି ସବୁ । ସେମାନଙ୍କ ମଧ୍ୟରେ ଜଣେ ଗେରୁଆ ଭେକଧାରୀ ଅନ୍ୟମନସ୍କ; ତାର ଦୃଷ୍ଟି ସୁପ୍ରୀତ ଉପରେ ଆବଦ୍ଧ । ଆଖିରେ ଆଖିରେ ଦୁହିଁଙ୍କର କଣ କଥାହୋଇ ଜୀବନର ଏକ ଜଟିଳ ସମସ୍ୟାର ସତେ କି ସମାଧାନ ହୋଇଗଲା !

ସୁପ୍ରୀତ ଯାଇଥିଲା ଏକ ସନ୍ନ୍ୟାସିନୀ ହୋଇ; ଫେରିଲା ଉଦଗ୍ର କାମନାର ଏକ କାମିନୀ ହୋଇ । ସବୁ ସଂକଳ୍ପ କ୍ଷଣକେ କୁଆଡ଼େ ପାଣି ଫାଟିଗଲା । ହାଡ଼ ଶରୀରଖଣ୍ଡ, ସେସବୁ ସତେ ଯେପରି ଖାଲି କାମନାରେ ଗଢ଼ା; ରକ୍ତ, ସେ ଯେପରିକି କାମନାର ଏକ ତରଳ ସ୍ରୋତ । ଆଖି, ମୁଖ ସର୍ବାଙ୍ଗ ତୀବ୍ର କାମ ଆଉ କାମନା ।

ଦାଢ଼ି କାଟି ଗେରୁଆ ବଦଳରେ କୁଞ୍ଚ ଧୋତି ଆଉ ସିଲ୍‌କ ପଞ୍ଜାବୀ ପିନ୍ଧି ବାବା ଦିନେ ଆସି ଦୁଆରେ ହାଜର ହୋଇଗଲେ । ବିବାହ ! ସେ କ'ଣ ଲୁଗା ବଦଳା କାମ ପରି ଏଡ଼େ ସହଜ ?

ଡାକ୍ତର ନୀରବ, ଗମ୍ଭୀର । ପଦେହେଲେ କଥା ତାଙ୍କ ପାଟିରୁ ବାହାରିଲା ନାହିଁ । ପ୍ରତିବାଦର ଏକ ପ୍ରଚଣ୍ଡ ମୂର୍ତ୍ତି ।

ସୁପ୍ରୀତ ଘର ଛାଡ଼ି ଚାଲିଗଲା; ରେଜିଷ୍ଟ୍ରି ବିବାହ କରି ଦିନେ ସ୍ୱାମୀଙ୍କୁ ଘେନି ଆଶୀର୍ବାଦ ଲାଗି ପିତୃଗୃହରେ ଆସି ପହଞ୍ଚିଗଲା । ହରେନ୍‌ବାବୁ ସ୍ତମ୍ଭିତ । ମାଆ ବୋଲି ଡାକିବାକୁ ତାଙ୍କ ଜିଭ ଲେଉଟିଲା ନାହିଁ । ତାଙ୍କ ଜୀବନର ଏକ ଓଲଟା ଜୀବନ, ବିପରୀତ ସ୍ରୋତ, ବିପରୀତ ଗତି ।

ଏଇ ପରିସ୍ଥିତିରେ ହଠାତ୍ କୁଆଡ଼ୁ ଝଡ଼ ପରି ଛୁଟି ଆସିଲା ସୁରେନ୍; ହରେନ୍‌ବାବୁଙ୍କ ବଡ଼ପୁଅ, ସୁପ୍ରୀତକୁ ଚାପୁଡ଼ାଟାଏ ପକାଇ କହିଲା—ବାପାଙ୍କ

ନାଁ ପକେଇଲୁ; ତୋ ଲାଗି ଆମେ ଘରଦ୍ୱାର ଛାଡ଼ିଲୁ। ଏବେ ସମାଜରେ ମୁଣ୍ଡ ଟେକି ଚାଲିବୁ ନା ନାହିଁ ? ପୋଡ଼ିପୋଡ଼ି ଯାଇଛି ଥିଲୁ, ଏବେ କୋଉ ସାହସରେ ଆସି ଘରେ ପଶୁଛୁ ?

ଏ ମାଡ଼ଗାଳି ଦେଖି ବାବାଜୀ ପଳାଇବାକୁ ବାଟ ପାଇଲେ ନାହିଁ; ଗଲେ ଯେ ଗଲେ; ଆଉ ତାଙ୍କର ପତ୍ତା ମିଳିଲା ନାହିଁ।

ସୁପ୍ରୀତି କ୍ରୋଧରେ ଥର ଥର ଯାଇ ଥାନାରେ ଡାଇରି କଲା। ପୁଲିସ୍ ସୁରେନ୍‌କୁ ନେଇ ହାଜତରେ ପୂରେଇଲା—ସାବାଳିକା ଯୁବତୀ ନିଜ ଇଚ୍ଛାରେ ରେଜିଷ୍ଟ୍ରି ବିବାହ କରିବା ବେଆଇନ୍ ନୁହେଁ। ତାକୁ ଏପରି ଭାବେ ଶାସନ କରିବାର କି ଅଧିକାର ଅଛି ତୁମର ?

ସ୍ୱରେନ୍ ବାବୁ ରାତି ବାରଟା ବେଳେ ଥାନାକୁ ଯାଇ ପୁଅକୁ ମୁକୁଳେଇ ଆଣିଲେ। ସୁରେନ୍ ଘରକୁ ନ ଫେରି ସିଧାସଳଖ କର୍ମକ୍ଷେତ୍ରକୁ ଚାଲିଗଲା।

ଏବେ ପିତା, କନ୍ୟା ଉଭୟେ ନିରାଶ୍ରୟ; ଡାକ୍ତର ରୁଗ୍ଣ, ବୃଦ୍ଧ। ମୁହଁ ଲୁଚାଇବାକୁ ଏଇ ବିଶାଳ ପୃଥିବୀରେ ସୁପ୍ରୀତି ଲାଗି କି ସ୍ଥାନ ନାହିଁ ? ଡୁବୁଥିବା ଦୁଇଜଣ ପରସ୍ପରକୁ ଆଶ୍ରା କଲା ପରି ଏବେ ସ୍ୱରେନ୍‌ବାବୁ ଆଉ ସୁପ୍ରୀତି। ଡାକ୍ତରବାବୁଙ୍କ ଘରେ ପୂର୍ବପରି ଏବେ ମାଆ ମାଆ ଡାକ ଶୁଭୁଛି।

ସୁପ୍ରୀତିର ପୁଅଟିଏ, ବାପାର ନାଁ କହୁଛି, ବୁଢ଼ାବାପାର ନାଁ କହୁଛି—ଗୋରା ତକ୍ ତକ୍ ପିଲାଟିଏ, ମୁଣ୍ଡରେ ଢାଳ ଚୁନ୍ଦିକଳା। ହସୁଛି ନିଷ୍କଳଙ୍କ ହସ। ସୁପ୍ରୀତିର ମାଆଟିଏ ହେବାର ସଂଗ୍ରାମ ସାର୍ଥକ ରୂପ ପାଇଛି ତା'ରି ଭିତରେ—ଏତିକି ମାତ୍ର ଆଲୋକ ଶିଖା ଘୋର ଅନ୍ଧକାର ମଧ୍ୟରେ।

ନୀତି ଅନୀତି, ପାପ ପୁଣ୍ୟ, ସାମାଜିକ ଅସାମାଜିକ ଗାଥାର ସଙ୍କେତ ସେ ହସରେ କିଛି ନାହିଁ, ଅଛି ଯାହାକିଛି ନିର୍ମଳ, ସୁନ୍ଦର।

ପିଲାଟିର ହସ ସଙ୍ଗେ ହସ ମିଶାଇ ସୁପ୍ରୀତି କହୁଛି—ମୋ ଜାତକରେ ସ୍ୱାମୀ ସୁଖ ନାହିଁ, ଭ୍ରାତୃସୁଖ ନାହିଁ; ସୁଖ ବୋଲି କିଛି ଯଦି ଅଛି, ଅଛି ଏଇ ଚାନ୍ଦ ମୁହଁଟିର ହସରେ। ତାକୁ କୋଳରେ ଯାକିଦେଲେ ଭୁଲିଯାଏ ସଂସାରର ଯେତେ କିଛି ଗ୍ଲାନି, ଦୁଃଖ, ଅପବାଦ।

ବାପାକୁ ପଥ୍ୟ ଖୁଆଏ, ଔଷଧ ଦିଏ, ପୁଅକୁ ଖୁଆଇ ପିଆଇ ଶୁଆଇ ଦିଏ; ମୋତେ କିନ୍ତୁ ନିଦ ହୁଏ ନାହିଁ। ଦେଖୁଛି ଏଇ ତୁମ୍, ଯ୍ୟାକୁ ଖାଇ ଘୁମଉଥାଏ ସାରା ରାତି, ପୁଅର ଜାନ୍ଦରେ ହିଁ ମୋର ନିଶା ଛାଡ଼େ।

●

# ମୁଁ କାଚ ପିନ୍ଧିବି କାଚ

'କେଡ଼େ ଅଲକ୍ଷଣା କଥା ! ଗୋଟାଏ ହାତରେ କାଚ ! ଆଉ ହାତଟା ଲଙ୍ଗଳା ! ନାରଣିଆ ମା' ଏ କ'ଣ କରୁଚୁମ ? ଲୋକେ କ'ଣ କହିବେ ?' ସଖୀ ବୋଉ ମୁହଁ ଶୁଖେଇ କହିଲା ।

ଏ କଥା ଶୁଣି ନାରଣିଆ ମା' ଆଖି ଡବ୍ରଟି ଘୂରିଲା, ତା ନାକ ଫୁଲିଲା, ଓଠ ଥରିଲା, ସେ ଗର୍ଜିଉଠିଲା—'କ'ଣ କହିଲ ? ମୁଁ ଗୋଟାଏ ହାତରେ କାଚ ପିନ୍ଧିଲି କି ମୋଟେ ନ ପିନ୍ଧିଲି; ତୁମ ଆଖିରେ କାହିଁକି ଶୁଖୁଆ କଣ୍ଟା ମାଡ଼ି ହୋଇ ଯାଉଛି ?'

ସଖୀ ବୋଉ ନାରଣିଆ ମାଆକୁ ଜାଣେ; ସେ ଥରେ ଗାଳି ଦବାକୁ ଆରମ୍ଭ କଲେ ସାତ ଦିନ, ସାତ ରାତି ଗଡ଼ିଯାଏ, ତୋଟି ପଡ଼ିଯାଏ । ସାପ ପରି ସେ ଫୁ-ଫୁ ହଉଥାଏ ।

ସେ ତାକୁ ନ ରଗାଇ ହସି ହସି କହିଲା—'ଏ ସଂସାରରେ ଭଲ କହିଲେ ମନ୍ଦ; କାଚ ସ୍ତ୍ରୀ ଲୋକର ବଳ; ସେ ମୁଠାକ ହାତରେ ଝଣ୍ ଝଣ୍ ହେଉଥିଲେ ମୁଣ୍ଡରେ ସିନ୍ଦୂର ଟୋପାଟେ ଜକ୍ ଜକ୍ କରୁଥିଲେ, କୋଉ ପୁରୁଷ ଭରସି ପାଖକୁ ଆସେ ?

ଆମେ ଅହ୍ୟ ରାଣୀ, ବଞ୍ଚିଥିଲେ ଭାଗ୍ୟବନ୍ତୀ, ମଲେ ସ୍ୱର୍ଗଗତ । ପନ୍ଥ ଆଇ ଚାଲିଗଲେ ଅଇସୁଲକ୍ଷଣୀ, ଖଇ କଉଡ଼ି ବାଆଁ ହୁଏ ।

ନାରଣିଆ ମା ଫାଉଁକିନେ ଜଳି ଉଠି କହିଲା—ଅହ୍ୟ ରାଣୀ ! ରାଣୀ ନା ଚନ୍ଦ୍ରକାଣୀ ! ମତେ ଛୁଗୁଲଉଛ ?

ପିଟଣାରେ ବାଁ ହାତ କାଚ ଉପରେ ପାହାରେ ଦେଲା । ଝଣ୍ ଝଣ୍ ହୋଇ ସେସବୁ ଧୂଳିରେ ଲେଟିଗଲା । ଦ' ହାତ ଲଙ୍ଗଳା, ବାଣ୍ଡ ! ନାରଣିଆ ମା' ଦେହରେ ଡମ୍ ଡମ୍ ହୋଇ ଥରିବାକୁ ଲାଗିଲା ।

ସଖୀ ବୋଉ ଦାଣ୍ଡ ପାହାଚ ଉପରକୁ ଉଠୁ ଉଠୁ କହିଲା—ଏ କଥା କିଏ କରେ ? ତୁମେ କ'ଣ କଲ ନାରଣ ବୋଉ ?

ନାରଣିଆ ମାଆ ଏଡ଼େ ପାଟି କରି କହିଲା—ଯାଉ, ସବୁ ଯାଉ, ପୋଡ଼ି ଯାଉ, ଜଳି ଯାଉ, ନିଆଁ ଲଗି ଯାଉ ।

ପୋଡ଼ା ଦେଇଅଣରେ କି ସୁଆଦ ଅଛି ? ନାକରେ କାନରେ କୋଉଠି ତ କିଛି ନାହିଁ, ଏ କାଚ ମୁଠାକ କାହିଁକି ରହିବ ?

ସିନ୍ଦୂର ? ମତେ କୋଉ ନଇଶୁଆ କିଣି ଆଣି ଦଏ ବା ? ଟିକିଲି ? କୋଉ ଗଛକଳା, ସତ୍ୟାନାଶିଆ ମେଳଣ ଯାତରୁ କିଣି ଆଣି ଦେଇଚ ? କୋଉ ଯାନିଯାତ୍ରାରେ ପୁଣ୍ୟପର୍ବରେ ଏ ଫଟା ପାଦ ଦଟା ଅଳତାରେ ନାଲି ହେବାର ଦେଖିଚ ?

ରସି ଖଡ଼ୁ, ରସି ମୁଦି; ଝୁମ୍ପି, ଚଉରିଭୁଣ୍ଡି, ନାକଚଣା, କାନଫୁଲ ବୋଉ ଯେତିକି ଦେଇଥିଲା ସେତିକି । ସେସବୁ ଘୋର ପାକୁଆ ହୋଇ ମନକୁ ତଳକୁ ଝଡ଼ି ପଡ଼ିଲା । ନାଁକୁ ଥିଲା ଏଇ କାଚ ଦି ଗ୍ରରପଟ; ସେ କାହିଁକି ରହିବ ? ଯିବ ତ ସବୁ ଯାଉ ।

ସଖୀ ବୋଉ କହିଲା—ହଁ ସବୁ ଯାଉ, ହେଲେ ମହତ ଥାଉ,
ମହତ ଗଲେ ନ ମିଳେ ଆଉ ।
ଏ କାଚ ସ୍ତ୍ରୀ ଲୋକର ମହତ, ଦମାକ୍, ସବୁ ଆଶା ଭରସା । ଏ ତାର ଜୀବନ-କାଠି । ଏତକ ଥିଲେ ସେ ଅଛି, ଥିଲାପରି ଅଛି । ସଂସାରରେ ସିଧାସଳଖ ଚାଲିବା ଲାଗି ଦମ୍ ଦଉଚ । ଯାକୁ ଚାହିଁ ସେ ସଂସାରର ସବୁ ଦୁଃଖ ସହି ଯାଉଛି । 'କାଚ ବଜର ହଉ' ଲୋକେ କଇଲାଣି କରିଥାନ୍ତି ।

ନାରଣିଆ ମାଆ ଏଥର ସକେଇ ଉଠି କହିଲା—ମୋ କପାଳରେ ସେ ସୁଖ ନାହିଁଲେ ସଖୀବୋଉ; ଘଇତା ଥେଲେ ମୁଁ କାହିଁକି ବାର ଦୁଆର ଶୁଙ୍ଘିପିଣ୍ଡା ହଉଥାନ୍ତି ?

× × × ×

କେତେ ବିଧବାଙ୍କ ଆଗେ ତ କାଚ ଝୁମୁରୁ ଝୁମୁରୁ କରି ଚାଲିଥିଲା—ଦେଖ, ତୁମର ନାହିଁ, ମୋର ଅଛି । କେତେ ବାଞ୍ଝୀ କରକଟୀଙ୍କ ଆଗରେ ତ ତା ଥାକୁଲି ପୁଅଟିକି ଧେଇ ଧେଇ ନଚାଇଥିଲା । 'ଦାଣ୍ଡରୁ ଆସେ, ହାଣ୍ଡିରେ ପଶେ'ର ସଂସାର; ତଥାପି ତ ଭିତରେ ଗର୍ବ କରିବାକୁ ଅଳ୍ପ କିଛି ନ ଥିଲା । ନାରଣିଆ ମା' ପହିଲାପାଳି ଆସିଥିଲା ବଡ଼ ସନମାନରେ । ସଫାସୁତରା, ଗ୍ରୁପ ଚକ୍‌ଚକିଣିଆ କଳକଣ୍ଢିଆ କୋଇଁ— ମଦନ ମହାରଣା ।

ମଦନା ମାଟିଆବୁରୁଜ୍ ଆସ୍‌ବାବ୍ ଢଆର କମ୍ପାନୀରେ ଚୌକି, ଟେବୁଲ୍, ଆଲମାରି, ଆଲ୍‌ନା ଗଢ଼ୁଥିଲା; ଏବେ ଗାଁରେ ପେଟ ପୋଷିବ କିପରି ? ମୂଳଧନ କାହିଁ ଯେ କାଠ କିଣିବ ? ଚୌକି, ଟେବୁଲ୍ ଗଢ଼ିଲେ ବା ମଫସଲରେ କିଣିବ କିଏ ?

ମଦନା ଲଙ୍ଗଳ ଗଢ଼ି ଶିଖିଲା । ଗାଁ ମକଦ୍ଦମମାନଙ୍କ ମଧ୍ୟରୁ କେତେ ଘର ତାକୁ ଖଣ୍ଡିଏ ହେଲେ ଜମି ଦେଲେ । ବର୍ଷକୁ ବର୍ଷ ଲଙ୍ଗଳମୁଣ୍ଡା ହଣା ବାବଦକୁ ପାଞ୍ଚ ଗୌଣୀ ଧାନ, ଧାନ କଟା ବେଳେ ଗୋଟିଏ ଗୋଟିଏ କଲେଇ ଦେଲେ । ଲଙ୍ଗଳମୁଣ୍ଡା, କଣ୍ଟି, କଣ୍ଟିକଲା, ଇସର ପୂର୍ଣ୍ଣିମାଙ୍କ ଲଙ୍ଗଳଟିଏ ମୁଠିବୁହାକୁ ସାଆନ୍ତ ଦୁଆରେ ଦେଇ ଆସେ । ଅକ୍ଷୟତୃତୀୟାକୁ ହଳରେ ସାତ ଭେଡ଼ା ହଳ ବୁଲେ, ସାତ ମୁଠି ଧାନ ବୁଣା ହୁଏ ।

ମଦନ କ୍ରମେ ସବୁ ଗାଉଁଲିଆ କାମ ଶିଖିଗଲା । ସେ ବ୍ରତଘରକୁ ଯୋଗାଇଲା ପୁଅ ପିଢ଼ା, ବାମ୍ଭଘରକୁ ସ୍ରୁବ ସ୍ରୁଚ, ପୁରାଣିଘରକୁ ପଲଙ୍କ । ଚଟୁ, ଅଣକରୁ ଲୁଣକାଠୁଆ, ଧାନକଢ଼ାରୁ ପିଲାଙ୍କ ଶଗଡ଼ ପର୍ଯ୍ୟନ୍ତ ସବୁ ସେ ଗଢ଼ିଲା ।

ଚାଳ ଘର ତିଆରରେ ମଧ୍ୟ ସେ ଓସ୍ତାଦ୍ ହେଲା । ଦୁଃଖୀର ଚାଳଆରୁ ଓଳି, ଶେଣି, ରୁଅ ପକାଇ ପାଞ୍ଚ ଶେଣିଆ ଘର, ଠାକୁରଙ୍କ ମଣ୍ଡପମଣ୍ଡିଆ ଘର, ଖଡ଼ିଆ ଆଟୁ, ଚାଳିଆ ଆଟୁ, କୋଠି ସେ ଗଢ଼ିଲା । ସେ ଶଗଡ଼ ଚକର ଉମ୍ବ କୁନ୍ଦ ଶିଖିଲା । ଉମ୍ବରେ ପନ୍ଦାଡ଼ ବସାଇଲା, ପଇ, ଅର, ଜୁଆଳି, ଦଣ୍ଡା ତିଆର କଲା; ଘର୍ଷି କଅଁରେ ପଶାଇ ଶଗଡ଼ ଚକରେ ଝାମ ବା ବସାଇଲା ।

ଚକରେ ମାଣିକଖୁଣ୍ଟି ମାଇଲା, କାଠପେଡ଼ି, ମୁରୁଜଘଡ଼ିରୁ ନାସଦାନୀ କଲା, ବଣା କାଟି କୁନ୍ଦିଲା । କାମ ତାର କଣା । ଢନ ପଦ ପଚାରିଲେ ପଦକେ ଉତ୍ତର ଦିଏ । ଖର ମୋହମଦିଆ । କାହା କଥା ଖାତିରି ଦିଏନା । ଦିନଯାକ ଳୁଟୁରୁ ଳୁଟୁରୁ କରୁଥାଏ, ବର୍ତ୍ତନ, ଉପୁର ବନ୍ଦୀରୁ ଯାହା ମିଳେ ମଦନ ସେଥିରେ ଭଲ ଚଳେ ।

ମଦନର ସ୍ତ୍ରୀକୁ କ'ଣ ବୋଲି ଡାକୁଥିଲେ ସାଇପଡ଼ିଶା ଭୁଲି ଗଲେଣି । ପୁଅଟିଏ ହେଲା ପରେ ତା ନାଆଁ ଦିଆ ହେଲା ନାରଣ । ତା ନାଁ ହେଲା ନାରଣିଆ ମାଆ । ସେଇ ଡାକ ଶୁଣିଲେ ହିଁ ଗ୍ରୁଢ ଫୁଲେ—ପୁଅର ମାଆ ! ଏକୋଇର ବଳା ବଶୀକେସନ, କେବେ ଆଖିରୁ ଆଡ଼ କରେ ନାହିଁ ।

ନାରଣ ଜନମ ହେଲା ଦିନୁ ତା ବୋଉକୁ ଘରକାମ ବଳେଇଚି । ଗୁହାଳଗୋବରରୁ ଓଳାପୋଛା, ଲିପାପୋଛା, ଧୁଆମଜା, ଉଷୁଆଁ କୁଟା, ରନ୍ଧାବଢ଼ା; ତା ଉପରେ ପିଲା ଛୁଟା । ମଦନ ସେ ହାଲ ବୁଝେ । ଭାତ ଥାଳୀ ପାଖରେ ପାଣି ଗିଲାସ ଥୁଆ ନ ହେଲେ ସେ ଜକେ ଘେନ ଆସେ । ସେ ଦକେ ଶେଯ ପକାଇ ଶୁଏ । ତା ପାଦ ବନ୍ଧେ ନାହିଁ କି ମୁଣ୍ଡ ବଥାଏ ନାହିଁ, ସେବା ଶୁଶ୍ରୂଷା କରୁ ହେଲେ ଲୋଡ଼ା ପଡ଼େ ନାହିଁ ।

ନାରଣ ହୁଣ୍ଡା । ଅରଦୋଳିଆ ହୋଇ ଯୋଉମାନେ ବଢ଼ନ୍ତି, ଗୁଲିଲି ଖେଳରେ ହାତ ଲଗାନ୍ତି; କୁଟାଖଣ୍ଡିକ ଦି'ଖଣ୍ଡ କରନ୍ତି ନାହିଁ, ଦିନସାରା ବୁଲୁଥାନ୍ତି, ଭୋକ ହେଲେ ଘରେ ପଶନ୍ତି; ଦୁଃଖର କଥା, ନାରଣର ସେଇମାନେ ସାଙ୍ଗ । ସେ ପୈତୃକ ବ୍ୟବସାୟରେ ମନ ଦେଲା ନାହିଁ । ହଉ, ବେକରେ ମୃଦଙ୍ଗ ପକେଇ ଦେଲେ ବଳେ ବଜେଇ ଶିଖିବ ନାହିଁ କି ? ମୁଣ୍ଡ ଉପରେ ଦାୟିତ୍ୱ ପଡ଼ିଲେ ନ କରି ଯିବ କୁଆଡ଼େ ?

ମଦନା ଯେତେ କହୁଥାଏ — ପିଲାର ପୁଅ, ଅସୁସ୍ଥ ଧର; ନାରଣିଆ ମାଆ କହୁଥାଏ—ଘର କାମ ମତେ ବଳେଇଲାଣି, ଗୋଟାଏ ମଣିଷ, କେତେ ଖଟିବ ?

ଅଳ୍ପ ଦିନ ମଧ୍ୟରେ ବୋହୂଟିଏ ଆସିଲା । ନାରଣିଆ ମାଆର ଗୋଡ଼ ତଳେ ଲାଗିଲା ନାହିଁ । ସାଇପଡ଼ିଶାରେ ଭରି ପରଶଂସି କହିଲା—ମୋ ବୋହୂକୁ ବଳି ବୋହୂ ନାହିଁ, କୋଉ ଝିଅ ଏମିତି ହବ ? ଶାଗ ଖରଡ଼ି ଶୁଖୁଆ ଭଜା ସହଳସାହାଳି ପଖାଳ ବାଢ଼େ, ଗୋଡ଼ରେ ହାତ ବୁଲାଏ । ଥରି ବୁଲି, ଭରି କଅଁଳିଆ କଥା !

ଜବାନ୍ ବୋହୂ; ସେ ଥାଉଁ ଥାଉଁ, ବୁଢ଼ୀ ଶାଶୂ କାମ କରିବ ? ନାରଣିଆ ମାଆ ହାତରୁ ବୋହୂ ଗୋଟିକ ପରେ ଗୋଟିକ କାମ ଆଦରି ନେଲା । ବଡ଼ ଯୋଗ୍ୟର । ବଡ଼ି ଭୋରରୁ ଘର ଦୁଆର ଖରକେ, ଢାଳ ମାଜି ଶଶୁର ଲାଗି ଦାନ୍ତକାଠି ପାଣି ଥୁଏ, ଶଶୁର ଗାଧୋଇବା ଲାଗି ଶୀତଦିନେ ପାଣି ତତାଏ । ଘରେ ଶାଗ ମୁଗ ଯାହା ଥାଏ, ବେଳସହଳେ ରାନ୍ଧି ଜାଗା ସଫାସୁତରା କରି ଶଶୁର ଲାଗି ବାଢ଼େ; ଝାଡ଼ିଝୁଡ଼ି ଶେଯ ପାରିଦିଏ । ନାରଣିଆ ମାଆ କେବଳ ଗୁହାଳ ପୋଛେ; ଜାଳ ପତର ଯୋଗାଡ଼ ଆଣି ଦିଏ, କେତେବେଳେ କେମିତି ପନିପରିବା କାଟି ବସିଲେ ବୋହୂ ତା ହାତରୁ ପନିକ ଛଡ଼ାଇ ନିଏ ।

ନାରଣିଆ ମାଆ ଏମିତି ଘରୁ ବାହାରକୁ ଆସିଲା; କ୍ରମେ ବାହାରେ ବାହାରେ ହିଁ ରହିଲା । ଦିଆନିଆ ସବୁ ବୋହୂ କଲା । ସ୍ୱାମୀ ସେବା ନାହିଁ, ପୁଅର ହାନିଲାଭ ବୁଝିବାକୁ କିଛି ନାହିଁ । ସବୁ ବୋହୂ ବୁଝୁଛି । ପୁଅ ବି ତା ହାତରେ ଚଉଦ ପାଆ । ଏକ ପ୍ରକାରେ ସେ ଘରଣୀପଣରୁ ଚ୍ୟୁତ ହୋଇଗଲା ।

ଏଣିକି କଥାକେ କଥାକେ ଚିଡ଼ିଲା ସେ । କାହିଁକି ଏ ବିରକ୍ତି ? କିଏ ତାର ଖାଇଛି ନା ତା'ଠାରୁ ଧାରିଛି ? ସେ ବୋହୂ ଉପରେ ରାଗିଗରଗର ହେଲା; ଯେଉଁ ଯନ୍ତ୍ରରେ ଗନ୍ଧ ବାଢ଼ିଲେ ବି ବାଛି ବସିଲା—ଅଲଣା, କାଠୁଆ, ଲୁଣିଆ, ଝୋଳଚକା, ଗୁରୁସିଆ । ବୋହୂ ମୋଡ଼ିବସିବା ମାତ୍ରେ ସେ ପାଦ ଗୁଡ଼ିଲା; କଥାକେ କଥାକେ ନାକ ଛିଞ୍ଚାଡ଼ିଲା, ମୁହଁ ମୋଡ଼ିଲା । ଛିଟା ପେଲିଲା; ଦେଖୁ ଦେଖୁ ତା ମୁହଁ ଖୋଲିଗଲା; ଯେତେ ଯାହା ଅକଥ୍ୟ ସବୁ କହିଲା । ଏ ଅବସ୍ଥାରେ ସେ ବୋହୂକୁ ବସାଇ ଦେଲା ଶଶୁର ପାଖେ ତା ନିଜ ସ୍ଥାନରେ ।

'ଲୋକେ କହିଲେ—ରାମ୍ ରାମ୍, ଷାଠିଏ ବର୍ଷର ବୁଢ଼ୀ, କେମିତି ତୋ ତୁଣ୍ଡ ଲେଉଟୁଛି, କହୁଛୁ ?'

ତୁଣ୍ଡରେ ବାଟୁଳି ବାଜୁନାହିଁ, ନାରଣିଆ ମାଆ ବକି ଚାଲିଛି, ବଡ଼ ଅପରଛନିଆ ଗାଳି, ଘରଣୀପଣରୁ ଖସି ସେ ହୋଇଚି ଆଜି ଭିକାରୁଣୀ । ନିଜର ପଲଟିଏ ବାନ୍ଧିଚି । ସେଥିରେ ରୋଷେଇ କରେ, ଖାଇ ଶୁଏ । କ୍ଳାନ୍ତ ନ ହେବା ପର୍ଯ୍ୟନ୍ତ ଗାଳି ବର୍ଷି ଚାଲିଥାଏ । ଯେତେ ଯାହା ତୁଣ୍ଡକୁ ଆସେ ସେ କହେ । ଅସଣା, ଅବୁଝା କଥା ବୋଲି କିଛି ନାହିଁ । କେହି ତାକୁ ରୋକନ୍ତି ନାହିଁ; ରୋକିଲେ ଗାଳିର କିଛି ଛିଟିକା ଆସି ପଡ଼ିଯାଏ, ଲମ୍ବା ଲମ୍ବା ଛିଗୁଲା; ଛିଟା ମେଲି ହୋଇଯାଏ; ଅତି ଅସହ୍ୟ ।

ମଦନ ଆଜି ମୃତ୍ୟୁ ଶଯ୍ୟାରେ; ଲୋକେ କହୁଛନ୍ତି, ମଦନ ପରି ମଣିଷଟିଏ ଆଉ ମିଳିବ ନାହିଁ । ଦିନେ କାହାକୁ ଛୁଉଁନାହିଁ । ପୁଅ ରାଜଗାରକୁ ହାତ ବଢ଼ାଇ ନାହିଁ । ମଲାଯାଏ ଖଟି ଖାଉଥିଲା । ପୁଅ ବୋହୂ, ସାଇପଡ଼ିଶା କାନ୍ଦୁଛନ୍ତି । ଲୋକଙ୍କ ମୁ ତୁଣ୍ଡରେ ହିଁ ତାର ସ୍ୱର୍ଗଲାଭ ହୋଇ ଯାଇଛି—

ଜୀବର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।

ନାରଣିଆ ମାଆ ଜଲ୍ ଜଲ୍ ଚାହିଁଚି; ରାଣ୍ଡ ହେବାକୁ ତାର ଦିହରେ କିଛି ନାହିଁ । ଯେ ଅନର୍ଗଳ ଭାବରେ ବକି ଯାଉଥିଲା ଆଜି ତାର ତୁଣ୍ଡ ବନ୍ଦ ହୋଇ-

ଯାଇଛୁ, ସତେ ଯେପରି କିଏ ସିଲେଇ କରିଦେଇଛୁ । ଶୁଣ ସୁମନ୍ତ ସେ ପଦେ ହେଲେ ବାହୁନୁ ନାହିଁ; ଆଖିରୁ ତାର ଟୋପାଟିଏ ହେଲେ ଲୁହ ବୋହୁନାହିଁ । ଗୋଟାଏ ପୋପର୍‌ରୁ, ଦଦରା ଝାଟି ପରି ଛଡ଼ା ହୋଇଚି ।

ସମସ୍ତଙ୍କ କାନ୍ଦ ବନ୍ଦ ହେଲା ପରେ ସେ ଦୌଡ଼ିଲା ମଶାଣିକି, ଯୋଉଠି ମଦନା ପୋଡ଼ା ହୋଇଚି । ସଜ ପାଉଁଶ, ଜୁଇ ଗାଡ଼ରେ ଦରପୋଡ଼ା ଦୁଇଟି କାଠ; କେତେଖଣ୍ଡି ହାଡ଼ । ନାରଣିଆ ମାଆ ସେଇ ପାଉଁଶକୁ ଦିହରେ ବୋଳିଲା, ଲଙ୍ଗଳା ମୁକୁଳା ହୋଇ ହାଡ଼ ଖଣ୍ଡିଏ ଧରି ଗାଁକୁ ଧାଇଁଲା । ଯାହାକୁ ଦେଖିଲା, କହିଲା—ଦେଖୁଚ ? ଏ ମୋର ଦିଅଁ । ମୁଁ ଏହାଙ୍କୁ ପୂଜା କରିବି, ମୁଁ ଆଜି ଅହ୍ୟାଋଣୀ ହେବି ।

ମୁଁ କାଚ ପିନ୍ଧିବି, ମତେ କାଚ ଦିଅ, କାଚ, କାଚ ।



# ନାୟିକା ଓ ନେତ୍ରୀ

କଥା ଅଛି—ଘର ଗୁମର ପଦାରେ ପକାଇବ ନାହିଁ । କହିଲେ କୁଳ କୁଟୁମ୍ବକୁ ଲାଜ । କିନ୍ତୁ କୁଳ ଖସିଗଲା ବେଳେ ନ କହି କ'ଣ ରହି ହୁଏ ? ପୁଣି ଲେଖକର କଥା ଭିନେ । ଅନ୍ୟ ପରିବାରର ଇତିହାସକୁ ବନେଇଚୁନେଇ ସେ ଉପନ୍ୟାସ ଲେଖେ; ବହୁ ଭୌତିକ କାଣ୍ଡ ଘଟାଏ । ସ୍ୱୟଂ ଏକାଧାରରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ପାଲଟେ । ସେ ଦୃଷ୍ଟିରୁ ଦେଖିଲେ ଗୋଟିଏ ପର-ଘରଭୁଡ଼ା ମୁଁ । ଲୌକିକ ଭାବରେ ମିଳନ ଘଟାଇଲେ ଯୋଉଠି ପରିବାର ପ୍ରତି କଲ୍ୟାଣକର ହୋଇଥାନ୍ତା, ମୁଁ ସେଠି ନାଟକୀୟତା ଆଣିବା ଲାଗି ଘଟାଏ ବିଚ୍ଛେଦ, ଉନ୍ମତ୍ତତା, ମୃତ୍ୟୁ, ସର୍ବଗ୍ରାସୀ ପ୍ରଳୟ ।

ଅନ୍ୟ ଗୃହ ସମସ୍ୟାରେ ହସ୍ତକ୍ଷେପ ଅଯୌକ୍ତିକ । ଏହା ଜାଣି ସୁଦ୍ଧା ସେଇଆକୁ ଜପାମାଳି କରିଥାଏ । ଲେଖିଲାବେଳେ ମୁଁ ଏତେ ଅସାଧାରଣ ସ୍ତରକୁ ଗତି କରିଥାଏ ଯେ ପରର ମୃତ୍ୟୁ ମତେ ଉତ୍ପୀଡ଼ିତ କରେ ନାହିଁ, ଯେମିତି ବାଧେ ନାହିଁ ଶ୍ରୀକୃଷ୍ଣଙ୍କୁ ଯଦୁବଂଶ ଧ୍ୱଂସ । ବିହିବିଧାତା ଜଣେ ମୁଁ, ଯେପରି ପର ପ୍ରତି ସେପରି ନିଜ ପ୍ରତି ନିର୍ମମ ହେବି, କାହାଣୀ ନୋହିଲା ନାହିଁ, ହେଉ ଏବେ ଏ ମୋର ଆତ୍ମଚରିତ ।

ପ୍ରଫେସର ଦେବଦୁର୍ଲଭ ଦେଶର ସୁପରିଚିତ ଔପନ୍ୟାସିକ । ତାଙ୍କ ବାକ୍ ପ୍ରବଣତାରେ ମୁହୂର୍ତ୍ତେ ସ୍ତମ୍ଭିତ ହୋଇ ପଚାରିଲି—ଉପନ୍ୟାସ ଲାଗି ତ ବେଶ୍ ନାୟିକାସବୁ ବାଛିଛନ୍ତି, ନିଜ ଲାଗି ନାୟିକାଟିଏ ବାଛି ପାରିଲେ କାହିଁ ?

ଦେବଦୁର୍ଲଭ ଉତ୍ତର ଦେଲେ—ବାଛିବାକୁ ଚେଷ୍ଟା ଯେ କରି ନାହିଁ ତା ନୁହେଁ, ମୋର ସେତେବେଳେ ବିଶ୍ୱାସ—ଯେ ରୂପସୀ ନୁହେ, ସେ ଅବଶ୍ୟ ଗୁଣବତୀ ହୋଇଥିବ । ରୂପବତୀ ଗର୍ବିଣୀ, ରୂପହୀନାର ଅହଙ୍କାର ନଥିବ । ପୁରୁଷର ଅଧିକାର ତା ଉପରେ କାଏମ କରିହେବ, ସବୁ ଜଞ୍ଜାଳ ଜୁଲମ୍ ସେ ହଜମ୍ କରିପାରିବ । ପାଟି ଫିଟାଇବା ହେବ ତା ପକ୍ଷରେ ଏକ ଆସ୍ପର୍ଦ୍ଧା । ଗୋଟିଏ ମଣିଷକୁ ଭୋଗ ଦଖଲ କରି କାଏମ କାହିର୍ କରିବାର ଉଦଗ୍ର ବାସନା ମୋ ଅନ୍ତରରେ ତୀବ୍ର ହୋଇ ଉଠିଥିଲା ।

'ଏ ଗୋଟିଏ ଗ୍ରେଟବ୍ରିଟେନର ସାମ୍ରାଜ୍ୟବାଦୀ ଭାବନା; ବିବାହ ତ ପୂରାପୂରି ଗଣତନ୍ତ୍ର ଉପରେ ପ୍ରତିଷ୍ଠିତ ହେବା ଉଚିତ । ବିନା ଆକର୍ଷଣରେ ଗୋଟାଏ ଦେହକୁ ଦଖଲ କରିବା ଚେଷ୍ଟା ପ୍ରକୃତରେ ଏକ ଜବରଦସ୍ତି; ଏକ ଗୁଣ୍ଡାମି ।'

'ଚନ୍ଦ୍ରାଙ୍କୁ ଯୋଉ ନାମ ଦିଅନ୍ତୁ ପଛକେ ତାହା ଚନ୍ଦ୍ରାରେ ହିଁ ରହିଗଲା । ମୋ ଫାନ୍ଦରେ ସେ କେବେ ଧରା ଦେଇନାହାନ୍ତି, ଜୋର୍ ଜୁଲମର ଶିକାର ହୋଇନାହାନ୍ତି ।'

'ଆପଣଙ୍କ ତଥାକଥିତ ଆଦର୍ଶ କ୍ଷୁଣ୍ଣ ହେବାରେ ମୁଁ ବରଂ ଖୁସି । ତଥାପି ଆପଣଙ୍କ ଉଦ୍ଦେଶ୍ୟ ଯେଉଁଠି ଚରିତାର୍ଥ ହେବାର ସମ୍ଭାବନା ନଥିଲା, ସେଠି ଆପଣ ବନ୍ଦୀ ହେଉଥିଲେ କାହିଁକି ?'

ତାଙ୍କର ଗୋଟିଏ ମାଧୁର୍ଯ୍ୟରେ ମୁଁ ଆକୃଷ୍ଟ ହୋଇଥିଲି । ସ୍ରୋତ ମଧ୍ୟରେ ଚଞ୍ଚଳ ଚନ୍ଦ୍ରିକା ପରି ତାଙ୍କର ମନ । ମୁଖର ଗୋଟିଏ ବାକ୍ୟ ଶେଷ ନ ହେଉଣୁ ଆଉ ଗୋଟିକର ପୁନାଦି ପଡ଼ିଥାଏ । ଅବଶ୍ୟ କେଉଁଠି ଶେଷ ହୁଏ ନାହିଁ । ଶେଷ ହୁଏନାହିଁ ବୋଲି ତାଙ୍କ ପ୍ରତି ମୋର ଅଶେଷ ଆକର୍ଷଣ । ଯେପରି ସୂକ୍ଷ୍ମ କଳା ଆଉ ଗୀତିକବିତା, ସେହିପରି ତାଙ୍କର କଥା । ଘଟଣାରୁ ଘଟଣା ଡେଇଁ ଡେଇଁ ଚାଲନ୍ତି ସେ । ଶୃଙ୍ଖଳା ମଧ୍ୟରେ ତାଙ୍କ ଚେହେରାଟି ଫୁଲର ଶିଶିର ବିନ୍ଦୁ ପରି ଚହଲି ଉଠେ । ବାଲସୁଲଭ ଏକ ଅସଙ୍ଗତି ତାଙ୍କ ଚେହେରାକୁ ସ୍ୱପ୍ନ ମୂର୍ଚ୍ଛିତ କରେ । ମତେ ବୋଧ ହେଉଥିଲା ବିଶ୍ୱମିତ୍ରା ଏକ ତରଙ୍ଗସଙ୍କୁଳା ବେଳା । ସେଇ ତରଙ୍ଗକୁ ଛୁଇଁ ଛୁଇଁ ଡେଇଁ ଡେଇଁ ଯିବାରେ ମୋର ଅନନ୍ତ କୌତୁକ ।'

'ଆପଣଙ୍କ କୌତୁକ ଚରିତାର୍ଥ ହେଉ, ସେ ହୋଇଥାନ୍ତୁ କାମଧେନୁ ।' ଆରେ ତରଙ୍ଗ କାହିଁ ? କୌତୁକ କରିବ କାହା ସହିତ ? କଲେଜର ଆଲୋଚନା ସଭାମାନଙ୍କରେ ବିଶ୍ୱମିତ୍ରାଙ୍କ ବାକ୍‌ପଟୁତାର ଅପୂର୍ବ ପରିଚୟ ମିଳିଥିଲା । ଏହି ଶକ୍ତି ହିଁ ତାଙ୍କୁ ଟାଣିନେଲା ଘରୁ ବାହାରକୁ , ସଦନରୁ ସଭାକୁ ।

ସ୍ୱାମୀଭାବରେ ମୁଁ ତାଙ୍କ ପଦସେବା କେବେ ଲଭ କରିପାରି ନାହିଁ, ତାଙ୍କ ସ୍ୱୀକଯ୍ୟ ରୋଜଗାର ମଧ୍ୟ କେବେ ଭୋଗ କରିପାରି ନାହିଁ ।

ଯାହାର ସ୍ତ୍ରୀ ଅଧ୍ୟାପିକା, ଡାକ୍ତରାଣୀ, ବାଣିଜ୍ୟ ଅଫିସର କର୍ତ୍ତ୍ରୀ, ତାର ଅନୁଭବ ଭିନେ । ମୋ କ୍ଷେତ୍ରରେ ଦୁଇଟି ଚକ ଯେତେ ସଂସାରର ଶଗଡ଼ ତା ଗୋଲାରେ କେବେ ଚାଲିପାରି ନାହିଁ । ଦୁହେଁ ବିଶ୍ରମ୍ଭାଲାପ ମଧ୍ୟରେ କେବେ କରିବସି ନାହୁଁ ଭବିଷ୍ୟତ ଜୀବନର ଏକ ଚିଠା—ଘର ତୋଳିବା, ଗାଡ଼ି କିଣିବା,

ବ୍ୟାଙ୍କରେ ଟଙ୍କା ଜମେଇବା, ପିଲାଙ୍କୁ ମଣିଷ କରିବା—ଯେମିତି ସାଧାରଣତଃ ସରକାରୀ ଚାକିରିଆମାନେ କରିଥାନ୍ତି ।

ମୋ ସ୍ତ୍ରୀ ଅଷ୍ଟାସ୍ତ୍ରୀ ଚାକିରିଟି ଛାଡ଼ି ଦିନେ ସ୍ୱାଧୀନତାସଂଗ୍ରାମରେ ଝାସ ଦେଲେ, ଜେଲ୍ ବରଣ କଲେ, ସ୍ୱାଧୀନତା ଲାଭ ପରେ ଜେଲ୍‌ରୁ ଖଲାସ୍ ହୋଇ ଆସିଲେ—ସେତେବେଳକୁ ପ୍ରତିଷ୍ଠିତା ନେତ୍ରୀ । ତାପରେ ସେ ହେଲେ ଏମ୍. ପି., କେନ୍ଦ୍ରମନ୍ତ୍ରୀ ।

କେବଳ ତାଙ୍କ ପ୍ରାସାଦରେ ସ୍ୱାମୀଟିଏ ହୋଇ ରହିବାକୁ ପୌରୁଷକୁ ବାଧିଲା । ଦିନେ ଘର ପଳାଇଥିଲା ମୋତେ ଛାଡ଼ି । ଏବେ ଘର ଛାଡ଼ି ପଳାଇଗଲି ମୁଁ ନିଜେ । ଆଉ କ'ଣ କରିଥାନ୍ତି ଯେ ?

ମୋ ସ୍ତ୍ରୀ ମନ୍ତ୍ରୀ, ଏଥିଲାଗି ବହୁତ ଅଭିନନ୍ଦନ ମତେ ମିଳିଥିଲା । ତାଙ୍କ କ୍ଷମତାରେ କ୍ଷମତାଶାଳୀ ଦିଶୁଥିଲି ମୁଁ, ଯେପରି ସୂର୍ଯ୍ୟକିରଣରେ ପୂର୍ଣ୍ଣଚନ୍ଦ୍ର । କିନ୍ତୁ ମୋ ନିଜତ୍ୱ, ମହତ୍ତ୍ୱ ଅସ୍ୱୀକୃତ ହେଲା, ବ୍ୟକ୍ତିତ୍ୱ ତିରସ୍କୃତ ହେଲା, ପୌରୁଷ ଧିକ୍‌କୃତ ହେଲା । ନାମକୁ ମାତ୍ର ମୋତେ ବୈଠକ ଘରେ ନମସ୍କାରଟାଏ ପକାଇ ସେକ୍ରେଟରୀମାନେ ବାଈମିଜାଙ୍କ ପାଖକୁ ଯାନ୍ତି । ଅତି ହାସ୍ୟକର କଥା, ମନ୍ତ୍ରୀଙ୍କ ମୁଡ୍ କେମିତି ଅଛି, କେତେକ ମୋଠାରୁ ଜାଣିବାକୁ ଚାହାନ୍ତି, ମନ୍ତ୍ରୀଙ୍କଠାରୁ କିଛି ସୁବିଧା ହାସଲ ଲାଗି ମୋତେ ବ୍ୟବହାର କରିବାକୁ ବସନ୍ତି—ପଦୋନ୍ନତି; ବିଦେଶ ଯାତ୍ରା, ବଦଳିରହିତ୍ୟ । ମୁଁ ଯେପରିକି ଗୋଟାଏ ଲୋକସମ୍ପର୍କ ଅଫିସର୍, ସମ୍ବାଦ ପରିବେଷକ, ସାକ୍ଷୀଗୋପାଳ; ଗୋଟାଏ ଗୋବରଗଣେଶ !

ମନ୍ତ୍ରୀଙ୍କ ସ୍ୱାମୀ ବୋଲି ପଦସ୍ଥ ବ୍ୟକ୍ତିମାନେ ମୋ ମନରେ ଗୌରବ ଜାଗ୍ରତ କରୁଥିବା ବେଳେ ତୁଚ୍ଛତା ମୋତେ ଗ୍ରାସ କରେ, ହୀନମ୍ମନ୍ୟତା ମୋତେ ଅପଦସ୍ଥ କରେ, ଅପ୍ରତ୍ୟୟ ନିଜତ୍ୱକୁ ନିକାଶ କରେ । ବୋଧହୁଏ, ମୁଁ ଯେପରିକି ଗୋଟିଏ ଚିତ୍ରପିତୁଳା, ବାହାର ଇଙ୍ଗିତରେ ସଚଳ, ଚଞ୍ଚଳ ।

ଉତ୍ତମ ସୌଧବାସ, ଉତ୍କୃଷ୍ଟ ଗ୍ରାସ, ଚମତ୍କାର ଯାନବାହନ ଲୋଭ ତ୍ୟାଗ କରି ମୁଁ ପଳାଇ ଆସିଲି ଚାକିରି କ୍ଷେତ୍ରକୁ, ନିର୍ଜନ କୁଟୀରର ଅନ୍ଧ ତାମସ ମଧ୍ୟକୁ, ସେଠି ଗୋଟିଏ ଆରାମ୍ ଚୌକିରେ ବସି ଢୁମାଏ । ଜୀବନ ଏବେ ମୋ ପକ୍ଷରେ ଏକ ନିଦ୍ରା ।

କିନ୍ତୁ ଦାୟ ଓ ଦାୟିତ୍ୱକୁ ଏଡ଼ି ହେବ ନାହିଁ—କ୍ଲାସ୍ ଲାଗି ପଢ଼ା ପ୍ରସ୍ତୁତ କରିବାକୁ ହେବ, ପରୀକ୍ଷା ଲାଗି ପ୍ରଶ୍ନ କରିବାକୁ ହେବ, ଟିଉଟୋରିଆଲ ଖାତା

ଦେଖିବାକୁ ହେବ, ବଜାର ସଉଦା କରିବାକୁ ହେବ, ହାତରେ ରାନ୍ଧି ଖାଇବାକୁ ହେବ ।

ଦିନେ ଉପନ୍ୟାସ ଲେଖୁଥିଲି, ଏବେ ପଢ଼େ ଉପନ୍ୟାସ, ବେଶୀ ଭାଗ ଶସ୍ତା, ବିଦଗ୍ଧ ମଣ୍ଡଳରେ ନିଷିଦ୍ଧ ତାର ପ୍ରବେଶ, କିନ୍ତୁ ସମୟ କାଟିବାର ମୋ ପକ୍ଷରେ ଏକ ବଡ଼ ବାଟ ଏ ।

ପଢ଼ୁ ପଢ଼ୁ ଘୁମାଏ, ପୁଣି ଉଠି ପଢ଼େ । ପଢ଼ା ଲହରରେ ବା ଘୁମ ମଧ୍ୟରେ ତେଣେ ରୋଷେଇଘରେ ତରକାରି ପୋଡ଼ି କୁହୁଳୁଥାଏ ।

ଆତ୍ମନିର୍ଭରତା ମୁଁ ଭଲ ପାଏ । କିନ୍ତୁ ଗତାନୁଗତିକ ରୀତିରେ ସେଇ କଣ୍ଟା, ସେଇ ବଣ୍ଟା, ସେଇ ବାସନ ମଜା, ଘର ଦ୍ୱାର ଓଳିଆ ବିଷ ପରି ଲାଗେ । ସବୁଦିନ ଖଡ଼ା ବଡ଼ି ଥୋଡ଼, ଥୋଡ଼ ବଡ଼ି ଖଡ଼ା ।' ଖାଇ ଖାଇ ବିକାର ଆସେ, ପାଟିରେ ଓକାର, ଆଖିରେ ମୋର ଲୁହ ।

ଅଧ୍ୟାପକ ଜୀବନର ଗବେଷଣା ଯୋଜନା ମୋର ପାଣି ଫାଟି ଯାଇଛି । ଗବେଷଣା କରିବ କାହିଁକି ? ଧନ, କ୍ଷମତା ଏ ଦେଶରେ ସମ୍ମାନିତ, ବିଦ୍ୟା ନୁହେଁ । ଯାହି ତାହି ପିଏଚ୍. ଡ଼ି.ଟିଏ କରିଦେଲେ ଅଧ୍ୟାପକ ଜୀବନ ସାର୍ଥକ ହୋଇଯାଏ । ତାପରେ ଗବେଷଣାକୁ ପଚାରେ କିଏ ? କେତେ ମୂଲ୍ୟବାନ୍ ସନ୍ଦର୍ଭର ପାଣ୍ଡୁଲିପି ବିଶ୍ୱବିଦ୍ୟାଳୟରେ ପଡ଼ି ପଡ଼ି କୀଟଭୁକ୍ତ ହୋଇଯାଏ । ଦାରିଦ୍ର୍ୟ ହିଁ ଏ ପାଣ୍ଡିତ୍ୟର ଅନ୍ତରଙ୍ଗ ସଖା ।

ଆମ ସେଦିନର ପ୍ରଣୟର ଫଳ ଗୋଟିଏ ପୁତ୍ର ସନ୍ତାନ । ମନ୍ତ୍ରୀ ତାର ଜନନୀ—ଶିକ୍ଷାମନ୍ତ୍ରୀ ସେ, ପୁଅକୁ ପଢ଼େଇବାର ସର୍ବୋତ୍କୃଷ୍ଟ ବ୍ୟବସ୍ଥା ସେ କରି ଦେଇଥାନ୍ତି, ବିଭିନ୍ନ ବିଷୟର ବିଶାରଦମାନେ ବିଭିନ୍ନ ସମୟରେ ଆସି ତାକୁ ପଢ଼ାଉଥାନ୍ତି । ପବ୍ଲିକ୍ସ୍କୁଲରୁ ସାଧାରଣ କଲେଜକୁ ଆସିଲାବେଳେ ସେ ମେଧାବୀ ଛାତ୍ର ଭାବରେ ପରିଚିତ ଥିଲା । କିନ୍ତୁ ସେ ଏବେ କର୍ଣ୍ଣଧାରହୀନ ନୌକା ପରି ସ୍ରୋତ ମୁଖରେ ଭାସି ଗଲିଲା । ପ୍ରବୃତ୍ତି ପଥରୁ ରୋକିବା ଲାଗି ପାଖରେ ନଥିଲେ କେହି ଅଭିଭାବକ ।

ସଙ୍ଗୀମାନେ କୁଟିଲେ, କହିଲେ—ତୋ ମାଆ ମନ୍ତ୍ରୀ, ତୋର ଆଉ ଚିନ୍ତା କ'ଣ ? ଆମେ ଯଦି ତୋ ଭଳିଆ ହୋଇଥାନ୍ତୁ ନା' ଦେଖନ୍ତୁ !

ସଖାମାନଙ୍କ ସଙ୍ଗେ ନିତିଦିନ ସିନେମା, କେବେ ବଣଭୋଜି, ଭ୍ରମଣରେ, ଉତ୍ତମ ଭୋଜନରେ କାଳ କାଟେ, ଓଠରୁ ସିଗାରେଟ୍ କେତେବେଳେ ହେଲେ

ପୁରୁଛି ନାହିଁ । ଗଙ୍ଗା ଯମୁନା ଦୁଇସ୍ରୋତରୁ ଜଳ ପାଇ ମିଳୁଚି ଅରଦୋଳଆ ହୋକ ବଢ଼େ । ସେ ହୋଇଉଠେ ଏକ ସଙ୍କଟ । ତାକୁ ଉଦ୍ଧାର କରିବାକୁ ଯିବା ମାନେ ମନ୍ତ୍ରୀଙ୍କ ଅତ୍ୟୁତ୍ତମ ବ୍ୟବସ୍ଥା ଉପରେ ହସ୍ତକ୍ଷେପ କରିବା । ସେ ସାହସ ମୁଁ କରିନାହିଁ । ପରିବାରର ଜୀବମାନଙ୍କ ଉପରେ ମୋର ସେଭଳି ଅଧିକାର ଥିଲା କେବେ ?

ସ୍ତ୍ରୀ ଦିଲ୍ଲୀରେ, ପୁଅ କଲିକତାରେ, ମୁଁ ଦୌଲତାବାଦରେ; ଆମ ସଂସାର ହୋଇଉଠେ ଏକ ତ୍ରିଭୁଜ ।

ବିଶ୍ୱମିତ୍ର କେନ୍ଦ୍ରମନ୍ତ୍ରୀ, ଗୋଟାଏ ଭାରତବର୍ଷର ଦାୟିତ୍ୱ ତାଙ୍କ ମୁଣ୍ଡରେ । ଏତେବଡ଼ ଦେଶ, କେଉଁଠି ଉପନିର୍ବାଚନ ଚାଲିଛି, କେଉଁଠି ଅତିବୃଷ୍ଟି, ବନ୍ୟା ବା ବାତ୍ୟା । କେଉଁଠି ବିଶ୍ୱବିଦ୍ୟାଳୟର ଭିତ୍ତି ପ୍ରସ୍ତର ସ୍ଥାପନ, କେଉଁଠି ଶିକ୍ଷା, ବିଜ୍ଞାନ ବା ସାହିତ୍ୟ ସମ୍ମିଳନୀ ଉଦ୍‌ଘାଟନ, କେବେ ପାର୍ଲାମେଣ୍ଟ ଅଧିବେଶନ, ମନ୍ତ୍ରୀମଣ୍ଡଳ ବୈଠକ, ଯୋଜନା ପରେ ଯୋଜନା ବିସ୍ତାର ଚାଲିଛି—ବିକାଶଶୀଳ ଦେଶକୁ ଅଗ୍ରଗାମୀ ଦେଶମାନଙ୍କର ସମାସ୍କନ୍ଧ କରିବାକୁ ହେବ । ଯୁଗୋପଯୋଗୀ ଚେତନାର ସଞ୍ଚାର ନ କଲେ ଜନଜାଗରଣ ସମ୍ଭବ ହେବନାହିଁ ।

ଦଳ ଲାଗି ପଇସାଟିଏ ଚାନ୍ଦା ନେଲେ ବେପାରୀ ଦରଦାମ୍ ଉପରେ ପାଞ୍ଚ-ପଇସା ଲଦି ଦେଉଛି । ସବୁ ଚାପ ପଡ଼ୁଚି ଗରିବ ଉପରେ, ଯେ ସବା ତଳେ । ଦାରିଦ୍ର୍ୟର ସୀମାରେଖା ତଳକୁ ଚାଲି ଯାଉଛନ୍ତି ସହସ୍ର ସହସ୍ର ଲୋକ । ଜନସଂଖ୍ୟା ବଢ଼ିଚାଲିଛି ସବୁ ଯୋଜନାକୁ ବ୍ୟର୍ଥ କରି । କମି କମି ଯାଉଛି ଜୀବନର ମାନ । ଦେଶମୟ ଅର୍ଦ୍ଧନଗ୍ନ କଙ୍କାଳ ।

ବିଶ୍ୱମିତ୍ର ଅହୋରାତ୍ର ଲାଗିଛନ୍ତି ଦେଶର ଦାରିଦ୍ର୍ୟ ଦୂର କରିବା ଲାଗି । ସମାଜବାଦ ସବୁ ଦୁର୍ବିପାକର ଶ୍ରେଷ୍ଠ ପ୍ରତିକାର । ସେ ବିଶ୍ୱାସ କରନ୍ତି, ଢୋଲ ଭିତରେ ମୂଷା ପଶିଛି । କୋଟି କୋଟି ଟଙ୍କା ପାଣିରେ ପଡ଼ି ଯାଉଛି । ଅଥଚ ଦେଶ ଇଞ୍ଚେ ଆଗେଇ ପାରୁନାହିଁ । ଶୂନ୍ୟକୁ କଙ୍କାଳ ଦେଖାଇ ଶୋଇପଡ଼ୁଛନ୍ତି ଶତ ସହସ୍ର । ଶୁଅନ୍ତୁ । ସମାଜବାଦ ଆସିଲେ ଫେର୍ ଉଠିବେ ସେ !

ସରକାରୀ ଇସ୍ତାହାର କହେ—ଅନାହାରରେ ନୁହେଁ, ରୋଗରେ ମରିଛନ୍ତି । ବିଶ୍ୱମିତ୍ର ପ୍ରକୃତ ସତ୍ୟ ବୁଝନ୍ତି, ମନେ ମନେ କ୍ଷୁବ୍ଧ ହୁଅନ୍ତି । ଅଫିସର ନାନା ଜଟିଳତା, ସମାଜର ନାନା ଦାବୀ ଓ ପ୍ରକୃତିର ନାନା ବିଡ଼ମ୍ବନା ମଧ୍ୟରେ ସ୍ୱାମୀ, ପୁତ୍ରଙ୍କ ଭଲମନ୍ଦ ଭାବିବାକୁ ବେଳ କାହିଁ ?

ସେଦିନ ବିଶ୍ୱମିତ୍ରା କଲିକତା ଆସିଥିଲେ, ଶତ ଶତ ବ୍ୟକ୍ତି ଦର୍ଶନପ୍ରାର୍ଥୀ । ଗୋଟିଏ ରାଜନୀତିକ କର୍ମୀସଭା, ସାଂସ୍କୃତିକ ସଭାରେ ଭାଷଣ ଆଜିର କାର୍ଯ୍ୟକ୍ରମ । ମନ୍ତ୍ରୀ ସରକିଟ୍ ହାଉସ୍‌ରେ ପ୍ରବେଶ କଲେ । ଖିଆପିଆ ହୋଇନାହିଁ । ହଠାତ୍ ଦିଲ୍ଲୀରୁ ଫୋନ୍ ଆସିଲା—ନାଗା ଗୋଳମାଳ ! ତୁରନ୍ତ ଯାଇ ଅବସ୍ଥା ଅନୁସନ୍ଧାନ କରି ଆସ ।

ଦୂର ଦୃଷ୍ଟିଟିଏ, ବୋଧହୁଏ ଦୀର୍ଘଶ୍ୱାସଟିଏ ପକାଇ ମନ୍ତ୍ରୀ ଗାଡ଼ିରେ ବସିଲେ, ଦମ୍‌ଦମ୍ ଆକାଶରେ ହେଲିକୋପ୍‌ଟର ଉଡ଼ିବୁଲିଲା । ଉଡ଼ିଗଲା ତ୍ରିଭୁଜର ଗୋଟିଏ ବାହୁ ଦୂରରୁ ଦୂରକୁ । ବୋକା ପରି ମୁଁ ଆଉ ପଥ ଚାହିଁ ଥାଉ ।

ଅନ୍ଧ ତାମସଗୁମ୍ଫାକୁ ମୋର ଫେରି ଆସିଲି, ମୋ ଦୁଃଖରେ ତାକୁ ନିବିଡ଼ତର କରିବା ପାଇଁ; ଘର ଓ ବାହାର, ନେତ୍ରୀ ଓ ନାୟିକା ମଧ୍ୟରେ ଏକ ସାମଞ୍ଜସ୍ୟ ଆଣିବା ପାଇଁ । ନେତ୍ରୀ ଉଡ଼ା ଚଢ଼େଇ; ନାୟିକା ପଞ୍ଜୁରୀର ପକ୍ଷୀ । ଉଡ଼ିବୁଲିବା ଯାର ଅଭ୍ୟାସରେ ପରିଣତ ହୋଇଗଲାଣି, ପଞ୍ଜୁରୀରେ ବନ୍ଦୀ ହୋଇ ରହିବାକୁ ତାକୁ କ'ଣ ଆଉ ଭଲ ଲାଗିବ ?

ତଥାପି ଦକ୍ଷିଣ ଦ୍ୱାର ମୋର ଖୋଲା ରଖିଛି; ନେତ୍ରୀ ଯଦି ନାୟିକା ହୋଇ ପୁଣି ଫେରିଆସେ, ହଜାଇଥିବା ସୁର୍ ଯଦି ଫେରିଆସେ ମୋର ଛିନ୍ନ ବୀଣାକୁ ।



# ଏ ପୁଅ କ'ଣ କହୁଚି !

ରାଧାଗୋବିନ୍ଦ ବିଶ୍ୱଚନ୍ତି, ବଞ୍ଚିବା ଅର୍ଥ ଯଦି ହୁଏ ନିଃଶ୍ୱାସ ପ୍ରଶ୍ୱାସ ନେବା, ଯାହା ଖାଇଦେବା, ପ୍ରକୃତିର ତାଡ଼ନାରେ ପୁଣି ତାକୁ ଫିଙ୍ଗି ଦେଇ ଆସିବା ।

କିନ୍ତୁ କାହାର ବିଶ୍ୱାସ ହେଉନାହିଁ, ସେ ବଞ୍ଚିଛନ୍ତି ବୋଲି—ବଞ୍ଚିବା ଅର୍ଥ ଯଦି ହୁଏ—ରୁଚିସଙ୍ଗତଭାବେ ଖାଇବା ପିଇବା, ସ୍ୱାଧୀନଭାବେ ଚଳବିଚଳ ହେବା, ପରିବାରରେ, ସମାଜରେ ନିଜର ପ୍ରଭାବ ପ୍ରତିପତ୍ତି ବଜାୟ ରଖିବା ।

ସଂସାରକୁ ଓ ନଶ୍ୱର ଜୀବନକୁ ଭଲ ଭାବେ ସମଜିଥିବା ଲୋକଙ୍କର ଏ ଏକ ଦର୍ଶନ—ଯାହା ଖାଇଯିବ ପେଟକୁ, ଯାହା ପିନ୍ଧିଯିବ ଅଣ୍ଟାକୁ । ପାଶ୍ଚାତ୍ୟ ଦେଶମାନେ ଏଇ ଦର୍ଶନର ଧାରକ । ଅନ୍ୟ ଦିଗରେ ଯେତେ କୃପଣ ହେଉ ପଛକେ, ଖାଇବା ପିନ୍ଧିବାରେ କାହାର କାର୍ପଣ୍ୟ ନଥାଏ । କିନ୍ତୁ ରାଧାଗୋବିନ୍ଦଙ୍କ ଚୂଡ଼ାମଣି ଓଲଟା । ସ୍ନାନ ବେଳେ ଜଳକୁ ବସ୍ତ୍ରକରି ଗାମୁଛା ଖଣ୍ଡି ଚିପୁଡ଼ି ଗୁଡ଼ାଇ ହୋଇ ଘରକୁ ଫେରନ୍ତି ସେ । ବିକନ୍ତି ଧାନ, ଖାଆନ୍ତି ମାଣ୍ଡିଆ, ଯେମିତି କେଉଟ ବୁହେ ମାଛ, ଖାଏ କଙ୍କଡ଼ା ।

ଧନ ଦେଇ ଧର୍ମ କିଣିବା ଚିନ୍ତା ତାଙ୍କ ମନରେ କେବେ ଉଦିତ ହୋଇନାହିଁ । ଅନ୍ଧ, ଛୋଟା, ରୋଗୀ, ଭାଟ, ଭିକାରି, ଯୋଗୀ ସନ୍ନ୍ୟାସୀ ଦୁଆରେ ଭୁକି ଭୁକି ଭିକ ମୁଠାଏ ନ ପାଇ ଫେରନ୍ତି ।

ଖଣ୍ଡକୁ ଖଣ୍ଡ ଜମିବାଡ଼ି ନିଜ ଇଲାକାରେ ମିଶାଇଲା ବେଳେ ସଂସାର ତାଙ୍କୁ ବଡ଼ ସ୍ୱାର୍ଥୀ ବୋଧ ହୋଇଥିଲା —ଏମିତି ବଢ଼ିବଢ଼ିକୁ ବଢ଼ିବ ହେଉଥିବ—ହେବେ ସର୍ବେଶ୍ୱର ।

ତାଙ୍କ ଇଚ୍ଛାକୁ ଭଗବାନ ସତେ କି କାର୍ଯ୍ୟରେ ପରିଣତ କରି ଦେଉଥିଲେ । ତାଙ୍କର ବିଶ୍ୱାସ ଜନ୍ମିଥିଲା— ସେ ଭଗବାନ୍‌ଙ୍କର ଅତି ଗେହ୍ଲା ପୁଅ ।

ସୁଯୋଗ ପାଇ ସେ ବହୁ କୀର୍ତ୍ତି ଅର୍ଜିଗଲେ ।

ବିଧବା ଦୁଲି ନାନୀର ଘର କୋରଖ କରି ସେ ଗ୍ରାହ୍ମଣୀ ଖଡ଼ିକା ମୁଠା ସୁଦ୍ଧା ହରଣଚାଲ୍ କଲେ ।

ସାବି ଝୁଡ଼ୀକି ଅସତୀ ବୋଲି ପ୍ରମାଣ କରି ସେ ବଢ଼ିଦାଣ୍ଡରେ ବସାଇଲେ ।

ମାଲମକଦ୍ଦମା କରି ସେ ମାଲିକଙ୍କୁ ଉଡ଼ାଇଦେଲେ; କେତେ ଘରୁଆଙ୍କୁ ମାଗି ଖୁଆଇଲେ ବା ମୂଲିଆ କଲେ । ବହୁ ରଜାଙ୍କର ଏମିତି ଅଗଣିତ କୀର୍ତ୍ତି ଥାଏ, ଦେଉଳଟାଏ ତୋଳାଇଦେଲେ କିମ୍ବା ପୋଖରୀଟାଏ ଖୋଳାଇଦେଲେ ଘୋଡ଼ାଇ ହୋଇପଡ଼େ ।

ବଡ଼ ଲୋକ ହେବାକୁ ହେଲେ ବହୁ କ୍ଷୁଦ୍ର ଜୀବନକୁ ମାଡ଼ି ମକଚି ଦେବାକୁ ହୁଏ । ଅଧିକାଂଶ ଧନୀ ଲୋକଙ୍କ ଇତିହାସ ପ୍ରାୟ ଏକା ଗୁଣ୍ଠରେ ଗଢ଼ା । କିନ୍ତୁ ଆଶ୍ଚର୍ଯ୍ୟ, କେହି ତାଙ୍କର ଏଇ ପୌରୁଷକୁ ଉଚ୍ଚ ସ୍ଥାନ ଦିଅନ୍ତି ନାହିଁ । ଧନ ବଢ଼େଇଲାବେଳେ ସେ କୁଆଡ଼େ କାହାରି ମୁହଁକୁ ଚାହିଁ ନଥିଲେ—ଏପରିକି ନିଜ ଝିଅ ରାଧୀକୁ । ସେ ଗାଆଁର ହର୍ତ୍ତାକର୍ତ୍ତା ଭାଗ୍ୟବିଧାତା ହେବା ପରେ ପହିଲେ କୋଇଁ ଉପରେ ଅଧିକାର ଜାହିର କରିଥିଲେ । କୋଇଁଙ୍କ ନଡ଼ିଆ ଗଛରେ କଣ୍ଟା ବାନ୍ଧିଥିଲେ, କୋଇଁ ପୋଖରୀରୁ ମାଛ ମାରି ନେଇଥିଲେ । ନାତିମାନେ ବୋକା ପରି ଚାହିଁ ଥିଲେ । ଲାଜରେ ରାଧୀ କବାଟ କିଲି ଦେଇଥିଲା ।

କରଜ ସୂତ୍ରରେ ଗାଆଁର ଅଧିକାଂଶ ଜମିବାଡ଼ି, ଘର ଡିହ ତାଙ୍କ କବଳକୁ ଆସିଥିଲା । ନାନା କାରସାଦିରେ ଗାଆଁର ମକଦ୍ଦମୀ ନିଲାମ୍ ଉଠାଇ ସେ ହୋଇଥିଲେ ଏକମାତ୍ର ମକଦ୍ଦମ—ବଡ଼ ମକଦ୍ଦମ; ଗସ୍ତର ଗସ୍ତର ଜମିର ଏକେଶ୍ୱର, ପୋଷାକ, ମୁକୁଟ ଆଡ଼ମ୍ବର ନଥିଲେବି ଏକାଙ୍ଗଚକ୍ରବର୍ତ୍ତୀ । ତୋଟାବାଡ଼ି, ଗଡ଼ିଆ ପୋଖରୀ, ବାଟଘାଟ, ମଶାଣି ପଡ଼ିଆ ପଦା ସବୁ ହୋଇଗଲା ତାଙ୍କର । କିନ୍ତୁ ଏସବୁ ଧନ ଦଉଲତ ତାଙ୍କର କୌଣସି କାର୍ଯ୍ୟରେ ଲାଗୁ ନଥିଲା, ଅରମା ପାହାଡ଼ ତଳର ହୀରାଖଣି ପରି ସବୁ ଲୁକ୍କାୟିତ ରହିଥିଲା ଉତ୍ତର ପୁରୁଷଙ୍କ ଲାଗି ।

ଏ ମଧ୍ୟରେ ଜମିଦାରୀ, ମକଦ୍ଦମୀ ଉଠିଗଲା । କିନ୍ତୁ ନିସ୍କର ଜମିସବୁ ବେନାମୀ କରି ଦାସେ ଅବସ୍ଥାକୁ ସମ୍ଭାଳି ନେଲେ । କେତେ ଜମିଦାର, ମକଦ୍ଦମ ଉଚ୍ଛନ୍ନ ହୋଇଗଲେ । କିନ୍ତୁ ଦାସଙ୍କ ଜମି ଉପରେ ଆଞ୍ଚ୍ ଆସିଲା ନାହିଁ । ଗୋଟାଏ ହେଲେ ତୋଟା ଉପରେ କୁରାଢ଼ି ଚୋଟ ବସିଲା ନାହିଁ । ଆଗକାଳର ସର୍ବସାଧାରଣ ପୋଖରୀଗୁଡ଼ାକ ବ୍ୟକ୍ତିଗତ ସମ୍ପତ୍ତି ହୋଇଗଲା । ପରିବାର ପିଚ୍ଛା ଜମି ୩୩ ଏକର ରହିବ—କେତେବେଳେ ଶୁଣାଗଲା ଦଶ ବା ପନ୍ଦର ଏକର ମାତ୍ର ରହିବ । ଦାସେ ଏସବୁ ପ୍ରସ୍ତାବକୁ ହସି ଉଡ଼ାଇ ଦେଉଥିଲେ । ଭୂଦାନ, ଗ୍ରାମଦାନକୁ ଏକ ପାଗଳାମି, 'ଲଙ୍ଗଳ ଯାର ଜମି ତାର'କୁ ସେ ଏକ ରାଜନୀତିକ ଧୋକା ମନେ କରୁଥିଲେ । କାରଣ ତାଙ୍କରପରି ମାଲିକମାନଙ୍କ ହାତରେ ଦେଶର ଭାଗ୍ୟ ନିୟନ୍ତ୍ରିତ ହାର ଥିଲା । କିନ୍ତୁ ଯେଉଁଦିନ ତାଙ୍କର ଚେତା ପଶିଲା, ଯେତେବେଳେ ଦେଖିଲେ

ଲୋକେ କରଜ ନେଇ ଆଉ ଶୁଝିବା ନାଁ ଧରୁନାହାନ୍ତି; ରାଜସ୍ୱ, ବ୍ରହ୍ମସ୍ୱ ଦେବସ୍ୱ ସବୁ ଗିଳିଦେବାକୁ ତତ୍ପର । ଜୀବନର ଶେଷ ବିନ୍ଦୁରେ ଛିଡ଼ା ହୋଇ ଗୋବିନ୍ଦ ନିଜର ଜମିବାଡ଼ି, ଧନସମ୍ପତ୍ତି, ଗୃହର ମାନମର୍ଯ୍ୟାଦା ନଷ୍ଟଭ୍ରଷ୍ଟ ହୋଇଯିବାର ଦେଖୁଥିଲେ । କଚେରୀରେ ଟାଣି ନେଉଥିଲେ ଓକିଲ, ଥାନାରେ ପୁଲିସ୍, ଘରେ ଜଗୁଆଳି, ବିଲରେ ଗାଁବାଲା । ବୋହିନେଉଥିଲା ନିଜର କୁଳବୋହୂ, ଦୋହରା ସ୍ତ୍ରୀ ଭଳି । ବିଲର ଗ୍ରୀଷ୍ମପଟ ହିଡ଼ରେ ଗଳିଆ ଫାଟି ଭୁସା ମେଲା ହୋଇ ପାଣି ବୋହିଗଲା ପରି ଧନ କୁଆଡ଼େ ବୋହି ଯାଉଥିଲା ।

ଗାଆଁର ଇତିହାସକୁ ନିଜ ଖିଆଲରେ ଜୀବନସାରା ଲାଗି ଲାଗି ସେ ଗଢ଼ିଥିଲେ । ଏବେ ଇତିହାସ ଅରମା ମାଡ଼ି ଯାଉଛି ଗୋଟାଏ ପଦ୍ମ ତୋଳା ପଦ୍ମ ନ ମାନୁଥିବା ଶଙ୍ଖଚୂଡ଼ ପରି । ଜଣନା ସମାଜବାଦ । "ଆହେ କେତେ ବାଦ ଆମେ ଦେଖିଛୁ । ସବୁ ପାଣି ଫାଟି ଯାଇଛି ମୁଠାଏ ଟଙ୍କା ଆଗରେ ।"

ସେ ଇତିହାସକୁ ଗେଲେଇ ଡାକିଲେ—ଯେପରି ଲୋକେ ଡାକନ୍ତି ପୋଷା ବିଲେଇକି । କିନ୍ତୁ ଫସର ଫାଟି ଆସୁଥିବା ବୋଲର ବଣଭୁଆ ପରି ସେ ଧାଇଁଲା, ଗୋବିନ୍ଦ ଗର୍ଜି ଉଠିଲେ—ନମକ୍ହାରାମ୍ । କିନ୍ତୁ ସେ କଣ ଜଙ୍ଗଲରେ ପଡ଼ିଥିବା ପ୍ରଜା ନା ପିଣ୍ଡାକୁ ମାଟି ବୋଳୁଥିବା ମୂଲିଆ ?

ତାଙ୍କର ମନେ ହେଲା—ସେଇ ବିଲେଇଟା ଗୁହିଁଛି କାଳୀ ଗୋହିରୀ ଭିତରୁ, ବେଣାପାଟ ଯଖଲୁ, ଚୌଦଗରୁ । ଝାଉଁ ଝାଉଁ ଖରାରେ ଜଳୁଛି ତାର ଦିଟା ଆଖି ।

ଗୋବିନ୍ଦ ଗଛର ଆଡ଼କୁ ଦୃଷ୍ଟି ପକାଇଲେ— ଜମି ବଡ଼ ଅସନ୍ତ—ଏକା ପଡ଼ିରେ ତାର ତୋଷ ନାହିଁ, ଚଅର ହେଲା ଦିନୁ ସେ ଏ ହାତରୁ ସେ ହାତ, ଏ ପରିବାରରୁ ସେ ପରିବାର, ରଜାରୁ ଜମିଦାର, ମହାଜନରୁ ସାହୁକାର ସେ ଚଢ଼ି ଗ୍ଲାଣ୍ଡ—ଏବେ ଗ୍ଲାନ୍ତିଛ—ମୂଲିଆ ମାଲିକ ହେବ ! କିରେ ମାଲିକ କଣ ଘାସ କାଟିବ ?

ଅରେ କେତେ କଷ୍ଟରେ ସମ୍ପତ୍ତି ହୁଏ—ଗୁଣ୍ଡ ଗୁଣ୍ଡ କରି ମାଣ, ମାଣ ମାଣ କରି ବାଟି; ଯେ କରେ ସେ ଜାଣେ । ମୋ କଷ୍ଟ ଅର୍ଜିତ ସମ୍ପତ୍ତିକୁ ପଞ୍ଚାଏ ଲଫଙ୍ଗା ମାଗଣାରେ ମାରିନେବେ ବୋଲି ବସିଛନ୍ତି । ମୋ ଦେହରେ ବିନ୍ଦୁଏ ରକ୍ତ ଥିବା ପର୍ଯ୍ୟନ୍ତ ମୁଁ ସେ କଥା କରେଇ ଦେବ ନାହିଁ । ଗୋବିନ୍ଦ ଓଠ କାମୁଡ଼ିଲେ, ହାତକୁ ମୁଠା ମୁଠା କଲେ; ହଦଆ ଘୋଇର ଜଙ୍ଗ ଖଣ୍ଡିକ ଆଜି ଦଖଲ କରିବେ ଜବରଦସ୍ତି । ବରି ମାଡ଼ ଦେଖିଲେ କୋଳଥ ଗ୍ଳେପା ହେବ— ଅନ୍ୟ ପ୍ରଜାମାନେ ଦବମ୍ଭ ଜଙ୍ଗ ଗ୍ରୁଡ଼ିବେ ।

ପ୍ରକୃତରେ ରାଧାଗୋବିନ୍ଦ ଏ ଡିହ ଟେନାକର ମାଲିକ । ତାଙ୍କର କାଗଜପତ୍ର ଅଛି । ତାଙ୍କ ଦାବୀକୁ ସମର୍ଥନ କରିବାଲାଗି କୋର୍ଟ କଚେରୀ ଅଛି, ପୁଲିସ୍ ଥାନା ଅଛି; ଉଦିଆ ନିରାଶ୍ରୟ, କେବେ ତାର କୋଉ ପୁରୁଷ ମକଦ୍ଦମଙ୍କଠ'ରୁ ପାଞ୍ଚଗୌଣୀ ଧାନ କରଜ ନେଇଥିଲେ । ବଢ଼ି ବଢ଼ି ଭରଣେ ହେଲା । ବାଢ଼ି ଖଣ୍ଡିକ ମକଦ୍ଦମଙ୍କ ନାଆଁରେ କବଲା ହୋଇଗଲା । କିନ୍ତୁ ଉଦିଆ ସେଇର ଦଖଲରେ ରହିଗଲା । ତା ଘର କାନ୍ଥକୁ ଲାଗି ବାଡ଼ି, ଗୋରୁ ବନ୍ଧା ହୁଅନ୍ତି, କୁଟା ନଡ଼ା କେରକ ସେଠି ରହେ । ସେଥିରୁ ଅସରକରେ ସାରୁ, ଜହ୍ନୀ, କାକୁଡ଼ି, କଲରା ଦି ମୁନ୍ଦା, କଖାରୁ ଗଛଟି ସେଇ ବାଡ଼ିରୁ ପିଢ଼ାକୁ ଉଠେ ।

ମହାନ୍ତି ଠାଣିର ଥାକୁଲ୍ ଥାକୁଲ୍ ପାଞ୍ଚ ହଳ ବଳଦ, ହଳିଆ ସବୁ ଅନ୍ୟ ଗାଆଁର ଭଡ଼ାଟିଆ । ଚହ୍ଲାକଣା ହେଲେ କାଲେ ମାମ୍ଲାମକଦମା ଆସିବ । ରାଧାଗୋବିନ୍ଦ ଚତୁର୍ଗୁଣ ମଜୁରୀ ଦେଇ ଆଣିଛନ୍ତି; ସେମାନଙ୍କ ଭିତରୁ ଜଣେ କହିଲା—ଉଦିଆଇ, ଏ ହାଣ୍ଡିକୁଣ୍ଡେଇ ଉଠେଇନେ । ଖୁଣ୍ଟରୁ ବଳଦ ଫିଟେଇ ଦେ ।

ଉଦିଆ ବିନୀତ ଭାବରେ କହିଲା—ଜମି ବୋଲି ତ ଏତିକି । ଏ ଖଣ୍ଡିକ ଦଖଲ କରିନେଲେ ପିଲାଏ ମୋର ଚଲାବୁଲା ହେବେ କେଉଁଠି ? ତମେମାନେ ତ ମୋ'ର ପରି ଗରିବ । ମୋ ଦୁଃଖ କଣ ତୁମର ଦୁଃଖ ନୁହେ ? ମାଲିକର ତ ଗସ୍ତାର ଗସ୍ତାର ଜମି, ମାଣ ମାଣ ପଡ଼ିଆ ପଡ଼ିଚି, ଏ ଅସରଟିଏ ପାଇଁ ଏତେ ଜିଦ୍ ଲାଗିଚି କାହିଁକି ?

ଗୋବିନ୍ଦ ରାଗିଉଠି କହିଲେ—ଅସୁଏ ହେଉ ବା ବାଡ଼ିଗୋଡ଼ରେ ଗୋଟେ ହେଉ, ଯାହାର ଜମି ସେ ଅଲ୍ବତ୍ତ ଦଖଲ କରିବ । ଉଦିଆ କହିଲା—ମୁଁ ଦଖଲକାର ଅଛି । ମୋ ପିତୃପୁରୁଷ ଦଖଲ କରି ଆସୁଥିଲେ । ଆପଣ କାରସାଦି କରି ନିଜ ନାମରେ ଦରଜ କରି ନେଇଛନ୍ତି ।

ଭିଲରେ କହୁଚି—"ତମେସବୁ ଚାଲିଯାଅ, ନଚେତ୍ ଏଠି ରକ୍ତନଦୀ ବହିବ ।"

ଉଦିଆ କୃଅନନ୍ଦରେ କଟୁସ୍ତ ଘଟିଲା, ତା ସାନଭାଇ ଗୋଟାଏ ମେଣ୍ଡି ବାଉଁଶ ଓପାଡ଼ି ଉଞ୍ଚେଇ ଧଇଲା ।

ସାନଭାଇ, ଏମିତିକି ମାଇପେ ଛୁଡ଼ା ହୋଇଗଲେ—କାହା ହାତରେ ଗୋଜଣା, କାହା ହାତରେ ଖଣତି, କାହା ହାତରେ ମୁଣ୍ଡି ଖଣ୍ଡିକା, କାହା ହାତରେ ଝାଡ଼ୁଣି ମୂଠା ।

ଏ ଆଶ୍ଚର୍ଯ୍ୟ ବାହିନୀ ଦେଖି ହଳିଆମାନେ ମୁହଁ ଫେରାଇଲେ—ମାମଲାରେ ଫଳିବ କଏ ? ମୁଣ୍ଡ ଉପରେ ପାହାର ବସିଲେ ପିଠିରେ ପଡ଼ିବ କଏ ?

ରାଧାଗୋବିନ୍ଦ ବି ତାଟକା ହୋଇ ଛିଡ଼ା ହୋଇଗଲେ । ମୁହଁକୁ ଚାହିଁ ଚାହିଁ ଏସବୁ କ'ଣ କଲେ ? ଯେ ପାଞ୍ଚହାତ ଦୂରରୁ ଓଳିକି ପକାଉ ଥିଲେ, କାନ କାଟିଲେ ଯାହାଙ୍କ ତୁଣ୍ଡରୁ ବଚନ ବାହାରୁ ନଥିଲା, ଏ ଯୁଗକୁ ସେ ଲୋକସବୁ କଣ ହୋଇଗଲେ ?

ତାଙ୍କ ରକ୍ତ ତାଳୁକୁ ପିଟିଲାଗଲା । ସେ କହିଲେ—ଆରେ ବ୍ରହ୍ମସ୍ୱ ହେ, ବ୍ରହ୍ମଶାପରେ ପୋଡ଼ି ଜଳି ଭସ୍ମ ହୋଇଯିବ । ତମ ଛାତି ଫାଟିଯିବ ।

ଠେଙ୍ଗା, କଟୁରି, ଖଣ୍ଡକା, ଗୁପ୍ତୁଣି ସେମିତି ଉଠିଥାଏ । କାହାର ତୁଣ୍ଡରେ କଥା ନାହିଁ । ଆଖିରେ ଆଖିରେ ଘୃଣା, କ୍ରୋଧ । ଗୋବିନ୍ଦ ଆସ୍ତେ ଆସ୍ତେ ପଛେଇଲେ—ପଛଉ ପଛଉ ଦୂରେଇଗଲେ । ଦାଣ୍ଡ ଦୁଆର ପାହାଚ ଉଠୁ ଉଠୁ କହିଲେ— ନେତାଙ୍କ ବଦ୍‌ଶିକ୍ଷା । ଏ ବଦରକ୍ତ ସବୁ କାଢ଼ିବାକୁ ପଡ଼ିବ । ତାହେଲେ ସବୁ ପୁଣି ଗୁଳାରେ ପଡ଼ିଯିବ, ଧାରରେ ଚାଲିବ ।

ମକଦ୍ଦମା ଉପରେ ମକଦ୍ଦମା ଯୋଡ଼ି ଲାଗିଲେ ଫୌଜଦାରୀ, ଖେସରା ନାଲିସ୍, ଚୁକ୍ତିଭଙ୍ଗ; ଖାଇବା ବିନା ଲୋକେ ଡହଳବିକଳ, ମକଦ୍ଦମା ଖର୍ଚ୍ଚ ତୁଲାଇବେ କିପରି ? ଅଳଙ୍କାରପତ୍ର, କଂସାବାସନ ବନ୍ଧା ପଡ଼ିଲା । ଶେଷରେ ରାଧାଗୋବିନ୍ଦଙ୍କ ଭାଗ ଧାନ ବିକି ଲୋକେ ମକଦ୍ଦମା ଚଳାଇଲେ । ଦରିଆ କୂଳର ଘୁଙ୍ଗା ବାଲିରେ ଦଉଡ଼ାଧାପଡ଼ା କରାଇ ଉପରକୁ ମୁହଁ ଟେକୁଥିବା ଲୋକଙ୍କୁ ମଣ କରିଦେବେ, ଗୋବିନ୍ଦ ବିଚାରୁଥିଲେ । ଏବେ ଫଳ ଓଲଟା ହେଲା । ଭାଗ ଧାନ ନେଇ ରସିଦ୍ ଦେଉ ନଥିଲେ । ଏହା ପରେ ସୁଯୋଗ ନେଇ ଲୋକେ ନୂଆ ନୂଆ ଜମି ଦଖଲ କରିନେଲେ । ଗୋବିନ୍ଦଙ୍କ ଧନରେ ଓକିଲଙ୍କର ମହଲା ପରେ ମହଲା ଉଠିଲା, ଲୋକଙ୍କ ମନରୁ କୋର୍ଟ କଚେରୀ ଭୟ ଛାଡ଼ିଗଲା । ନିରୁପାୟ ହୋଇ ଗୋବିନ୍ଦ କିଛି ଗୁଣ୍ଡା ପୋଷିଲେ । କିନ୍ତୁ ଏକରୋଖା ଗ୍ରାମ, ତା ମଧ୍ୟରେ କେହି ପଶି ପାରିଲେ ନାହିଁ । ଲୋକେ ଗୋବିନ୍ଦଙ୍କ ପାଚିଲା ଧାନ କ୍ଷେତରେ ଗାଈଗୋଠ ପୂରେଇଦେଲେ, ଦିନ ଦିପହରେ ତାଙ୍କ ଗଛରୁ ନଡ଼ିଆ ତୋଳିନେଲେ । କଦଳୀ କ'ନ୍ଧି ହାଣିନେଲେ ।

ମନେ ମନେ କଳୁଥିଲେ ସେ— କଣ ବୋପା କମେଇଛୁ ? ମୋଫତ୍ ପଡ଼ିଚ ? ରଡ଼ସାରା ତାଙ୍କର କୁପ୍ରବୃତ୍ତି ନାନା ବିଭୀଷିକାମୟ ମୂର୍ତ୍ତି ଧରି ପ୍ରଜା

ନିପୀଡ଼ନ କରୁଥିଲା । ତାହାକୁ ଖମ୍ବରେ ବାନ୍ଧି ଅଣନିଃଶ୍ୱାସୀ ହୋଇ ପିଟି ଯାଉଥିଲେ ସେ । ତାହାର ଗୋଟା ପରିବାରକୁ କରିଦେଇଥିଲେ ସୂର୍ପଣଖା । ତାହା ପେଟ ଚିରି ଅନ୍ତ୍ରବୁନ୍ଦୁଲା ବାହାର କରି ଦେଇଥିଲେ । ପୋଡ଼ିଜାଳି ଯାଉଥିଲେ ସାଇକି ସାଇ । ଲୋକେ ପ୍ରାଣ ବିକଳରେ ଇତସ୍ତତଃ ଧାଉଁଥିଲେ, ଡାକ ପକାଉଥିଲେ—ରକ୍ଷା କର, ରକ୍ଷା କର । ଗୋବିନ୍ଦ ଗର୍ଜୁଥିଲେ—ନା, ନା, ତାହାକୁ ଛାଡ଼ ନାହିଁ, ଗୋଟି ଗୋଟି ସମସ୍ତଙ୍କୁ ନିଆଁରେ ପକାଅ ।

ଦିନ ଆଲୁଅରେ ଜଣାଗଲା ଏସବୁ କଳ୍ପନା, ନିଷ୍ଠୁର ମନର ଧୂମକେତୁ ଲୀଳା । ଓଲଟି ଲୋକେ ଜୁଟିଥିଲେ ତାଙ୍କର ନାକ କାଟିଦେବା ପାଇଁ ।

ସେଦିନ ମାର୍ଗଶୀର ମାସ ଗୁରୁବାର । ଦ୍ୱାରେ ଦ୍ୱାରେ ଧାନଶିଷା, ଲକ୍ଷ୍ମୀ ପାଦ ଚିତା, ଘରେ ଘରେ ଶଙ୍ଖଧ୍ୱନି, ହୁଳହୁଳି । ମହସ୍ୱାଧିକ ଲୋକ ଖଳାବାଡ଼ିରେ ପଶି ଧାନଗଦା ଭାଙ୍ଗି ହଳାଇରୁ ବୋହିନେଉଥିଲେ । କ୍ଷୀଣ ପ୍ରତିବାଦଟିଏ କରିବାକୁ ଗୋବିନ୍ଦଙ୍କ ଜିଭ ଓଲଟୁ ନଥିଲା । କୁକୁର ଦିଥର ଭୁକି ନୀରବ ହେଲା—ଏତେ ଲୋକ ଚୋର ନୁହନ୍ତି, ହୋଇ ନପାରନ୍ତି । ପୋଖରୀ ଘାଟରୁ ତରବରରେ ଓଦା ସର ସର ହୋଇ ଉଠି ଆସୁଥିବା ବୋହୂ ପିଲଟି ବଲ୍ ବଲ୍ ଚାହିଁଥାଏ ।

ଗାଆଁର ସମସ୍ତେ ଏକଜୁଟ୍—ନିମ୍ନ ମଧ୍ୟବିତ୍ତ, ଶ୍ରମିକ, ସର୍ବହରା ନିଜ ନିଜ ଦାବୀ ବିଷୟରେ ସଚେତନ । ଗୋବିନ୍ଦ ଗୋଟାଏ ଆହତ ସର୍ପ ପରି ଫଁ ଫଁ ହେଉଥିଲେ । କିନ୍ତୁ ଦଂଶିବେ କାହାକୁ ? ତାଙ୍କ ଫଣା ଚୋଟ ନିଜ ଲାଙ୍ଗୁଡ଼ରେ ହିଁ ବାଜୁଥିଲା ।

ଲକ୍ଷ୍ମୀ ଚୌଦଶରେ ହସୁଥିଲେ ବି ତାଙ୍କୁ ଲାଗିଲା ସେ ଯେପରିକି ହୋଇ ଯାଇଛନ୍ତି ଲକ୍ଷ୍ମୀଛଡ଼ା । ସବୁ ଥାଇ ସର୍ବହରା; ସେ ହୋଇଥିଲେ ଏକଘରକିଆ । ଖଳାବାଡ଼ି ଶୂନ୍‌ଶାନ୍ ହେଲା ପରି ଗର୍ଜି ଉଠୁଥିଲେ ରାଧାଗୋବିନ୍ଦ, ଉକାସ୍ତି ପରେ ଦୁର୍ବଳ ଡ଼ହ କୁତ୍ତା ପରି । ଏତିକିବେଳେ ବୋହୂ ଆସି ସାମ୍ନାରେ ଛିଡ଼ା ହୋଇଗଲା—ବାଳ ମୁକୁଳା, ଆଖି ଲାଲ୍‌ଲାଲ୍, ଓଠ ତାର କ୍ରୋଧରେ କମ୍ପୁଥିଲା । କିନ୍ତୁ ସେ ମୁହଁ ଖୋଲିବା ଆଗରୁ ପୁଅ ହରଗୋବିନ୍ଦ କହିଲା—ନନା, ଆମର ଆଉ କଣ ରହିଲା ?

ରାଧାଗୋବିନ୍ଦ ପାଗଳ ପରି ଗୋଟାଏ ଅଟ୍ଟହାସ କରି କହିଲେ—କେଉଟା କଲେଇ ବୋହିନେଲେ ବୋଲି ପ୍ରଜା କଣ ଆମ କରମ ନେଇଗଲେ ? କିରେ, ଜୀବନସାରା ରକ୍ତକୁ ପାଣି ଫଟାଇ ମୁଁ କେବଳ ତୋ'ର ଲାଗି କମେଇଛି ବାଟି ବାଟି ଜମି, ତୋଟାବାଡ଼ି, ପୋଖରୀ ··

ହରଗୋବିନ୍ଦ କହିଲା—ମୁଣ୍ଡ ଝାଳ ତୁଣ୍ଡରେ ମାରି ଜଡ ଗୌଣିଏ ଆଣୁଥିବା ମୂଲିଆ ଆମଠାରୁ ଢେର୍ ସୁଖୀ ! ଖାଇବାକୁ ନ ଥିଲେ ସେ ଓପାସେ ଶୁଏ । ତାର ଇଜ୍ଜତ ଅଛି, ମହତ ଅଛି ।

'ଆରେ ଇଜ୍ଜତ୍ ମହତ କଣ ? ପଇସା ତ ଇଜ୍ଜତ, ପଇସାଥିବାବାଲା ମହତ···'

'ଆମ ଘରର ଲକ୍ଷ୍ମୀ ତ ଆମ ସାମ୍ନାରେ ବେଇଜତ୍ ହେଲେ, ଆମ ମହତ ତ ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଚି ।'

'ଧନ ଥିଲେ ପୁଣି ସବୁ ଫେରି ଆସିବ—କରଜ ଦେଲେ ଯେପରି ସୁଧ ସହିତ ଫେରିଆସେ ।'

'ଯାହାକୁ ଧନ ବୋଲି କହୁଛ, ସେ ସବୁ ଲାଞ୍ଛନା, ଅପମାନ, ଅଭିଶାପ···?'

'ଏ କୋଠିରେ ଲାଞ୍ଛନା ରହିଛି ? ସେ ଅମାରରେ ଅପମାନ ? ଓଲିଆରେ ଅଭିଶାପ ? ଏ ପୁଅ କ'ଣ କହୁଚି !'



# ଏ ଜଣ ଚାଷୀ

ଗୋଟିଏ ଅସ୍ପଷ୍ଟ ଚଳନ୍ତା ଛାଇ।

ଅନ୍ଧାର ବହଳ ହୋଇଆସୁଛି ବଉଦର ବନ୍ୟାରେ, ଯଦି ବା ସନ୍ଧ୍ୟାର ଶେଷ ରାଗ କ୍ଷୀଣ ଦୀପ ଶିଖା ପରି ପଶ୍ଚିମ ଆକାଶରେ ଜଳୁଛି। ଟର୍ଚ୍ଚ ଅଲୁଅ ଟିପି ଦେଖିଲି—ଓସାରିଆ ଛାତି, ସରୁ ନହକା ଅଣ୍ଟା, ଛେଲ୍ବପିଟା ବାହା, ପିଉଳ ତସଲ ପରି ମୁହଁ, ଅଲରା ଝାମ୍ପୁରା ବାଳ, ଚାଲନ୍ତ ବେଳକୁ ନୁଆଁଣିଆ ଦେହରୁ ଢେଉ-ଢେଉଁପଡ଼ୁଛି। ପିନ୍ଧା ଖଣ୍ଡିଏ ରଙ୍ଗୀନ୍ ଗାମୁଛା, ପିଉଳିଆ ଦେହରେ ମିଶି-ଯାଇଛି।

'କିଏ ?'

'ଆଜ୍ଞା, ମୁଁ ?'

'ତୋ ନାଆଁ କଣ ମଁ ?'

'ମୋ ନାଆଁ ଦାମ ସାହୁ; ଘର ପୋଲସରା।'

'ଏ ଅନ୍ଧାରରେ କୁଆଡ଼େ ?'

'ବାଟବଣା ହୋଇଗଲି; ନୂଆ ଲୋକ, କେବେ ବିଦେଶବାଟ କରିନାହିଁ।'

'ଏଠିକି କେମିତି ଆସିଲୁ ?'

ଘରକୁ ଘର ପଚାରି ଆସୁଚି ଆଜ୍ଞା, ସାତ ନମ୍ବର ଘର କୋଉଠି ? କେହି କହିପାରୁ ନାହାନ୍ତି। ହସୁଛନ୍ତି ମୋ ଭାଷା ଶୁଣି। ମୋ ମନ କଥା କେହି ବୁଝୁ-ନାହାନ୍ତି। ଶେଷକୁ ଜଣେ ବଙ୍ଗାଳୀ ବାବୁ ଆଙ୍ଗୁଳି ଦେଖାଇ କହିଲେ—ଯା, ସେଠି ଓଡ଼ିଆ ବାବୁ ଅଛି, ତୋର ସବୁ ସୁବିଧା କରିଦେବ।

'ଆରେ, ଏତ ବାବୁର ସଂସାର; ସାତ ନମ୍ବରରେ ଯେ ଶହ ଶହ ଲୋକ ଝାଳ ଲହୁରେ ଦିଅ ନହରର ମୁଲକ ତିଆରି କରୁଛନ୍ତି; ସେକଥା ବାବୁମାନେ ବୁଝି ବୁଝୁଁ ନାହାନ୍ତି। ତାଙ୍କ ନିକଟରେ ତୁମ ଜୀବନର କୌଣସି ଓଜନ ନାହିଁ। ମୂଲିଆ ଖଟୁଛନ୍ତି; ଖାଉଛନ୍ତି; ସେମାନେ ଯେପରି ଅଫିସ୍ କାମ କରନ୍ତି; ଦରମା ପାନ୍ତି। ତୁମ ଭଲ ମନ୍ଦ ସେ ବୁଝିବେ କାହିଁକି ? ତୁମେ ଯେ ନୂଆ ଯୁଗର ବୁନିଆଦ ପକାଉଛ—ଏ ଚେତନା ଶିକ୍ଷିତ ହେଲେ ବି ସେମାନଙ୍କର ଆସିନାହିଁ।'

'କେଉଁଠୁଁ ଆସିଲୁଣି ?'

'ଆଜ୍ଞା ଦ୍ୱୀପରୁ ଆସିଛୁ ।'

'ନାଲଖୋଲା କାମ, ଶାବଳ ମାରି ମାରି ହାତରୁ ଫୋପା ଫୁଟିଯାଉଛି । ଖାଲି ପଥର ଢିମା ଆଉ ଟେଗେଡ଼ା; ଶାବଳ ଦାନ୍ତ ଲେଉଟି ପଡ଼ୁଛି । ସାତ ଘଣ୍ଟା ଧାଇଁ ଆସୁଛୁ ଯେ ସାତ ଘଣ୍ଟା ହେଲେ ଯାଉଚୁ । ମଝିରେ ଖାଇବା ପିଇବା ଓ ଦମ୍ଭ ନେବା ଲାଗି ଘଣ୍ଟାଟିଏ । ସେଥିରେ ବି କାଠଗୁହା, ଝାଉଁଳଗୁହା, ପାଣିଗୁହା, ପେଷେଇବାସ । କାମ କରି କରି କୁର୍ମ ହୋଇଗଲୁଣି ବାବୁ । ହାଡ଼ସବୁ କଟ୍‌କଟ୍ ଡାକୁଛି ।'

'ଭଲ ଟଙ୍କାପଇସା ମିଳୁଥିବ । ତାକୁ ଦେଖି ଦୁଃଖକଷ୍ଟ ପାସୋର ହୋଇ-ଯାଉଥିବ ।'

'ନାହିଁ ବାବୁ, ଖାଲି ସାଉଥ ମିଳୁଛି । ପଇସା ମାଗିଲେ କାନଟରାଟି ଲାଲ୍ ଆଖି ଦେଖାଇ କହୁଛି—ସ୍ୱାଙ୍କ ଖୋସାମତ୍ କରିବାକୁ ଯାଇଥିଲେ ?'

'ସତେ ବାବୁ, ମିସ୍ତ୍ରୀ ଆମକୁ ସ୍ୱର୍ଗ ଇନ୍ଦ୍ରପୁର ଦେଖାଇ ଆଣିଲା—ଏ ପଙ୍ଗରେ କାହିଁକି ଘାଣ୍ଟିଚକଟି ହେଉଛ ? ଭଲ ମନ୍ଦ ଖାଇବ, ଘରକୁ କେତେ କଣ ଆଣିବ; ଚାଲ; ଏବେ ଆଉ ଧରାଛୁଆଁ ଦେଉନାହିଁ । କାନଟରାଟି ଆଖିରେ ଆଙ୍ଗୁଠି ଗେଞ୍ଜି କନ୍ଦାଉଛି । ମାସେ କାମ କଲୁଣି, ଗୋଟିଏ ପଇସା ମିଳିବାକୁ ନାହିଁ । ଏବେ ପଳାଇଲେ ସେତକ ବୁଡ଼ିଯିବ । ମିସ୍ତ୍ରୀ ଯୋଉ ଦଶଟଙ୍କା ଆଗୁଆ ହାତରେ ଗୁଞ୍ଜି ଦେଇଥିଲା ତାକୁ ଶୁଝି ନାହୁଁ । ବନ୍ଧା ପଡ଼ିଛୁ; ଏବେ ଚଳିବାକୁ ରାହା ନାହିଁ ।'

'ଭଲା କାହିଁକି ଏଠିକି ଆସୁଛ ? ଗାଆଁରେ ଶାଗଭାତରେ ପେଟ ପୂରାଇ ପାରୁନାହଁ ? କଳକୁ ଭୁଲେଇ ବିକିଲେ କି ମୂଲ୍ୟ ମିଳିବ ? ସତେ ମାଟି ମୂଲ୍ୟରେ ତୁମ ଶ୍ରମ ବିକା ହେଉଛି । ଖରିଦଦାରର ଖାଲି ହାତ ଚକ୍‌କଣ ହେଉନାହିଁ; ଦେହ ମୁଣ୍ଡରୁ ତେଲଧାର ବୋହିପଡ଼ୁଛି ।'

ହେଲେ ବାବୁ, କଣ କରିବୁ ? ପାଞ୍ଚଶ ଭରଣ ଭୂଇଁକି ଆମ ଗାଆଁରେ ଆଠଶ ଘର; ଆମେ ସ୍ୱର ଘର; ମୁଁ ଆନ୍ ଭେଣ୍ଡା; ସମସ୍ତେ ବଡ଼ ହୋଇଛନ୍ତି; ପିଲାଛୁଆ ଗୁଡ଼ିଏ । ଆମର ମୋଟ ଭୂଇଁ ଦଶଭରଣ; ଧାନ ମାଣ୍ଡିଆ ଛଡ଼ା, ଆଖୁ, ଲଙ୍କାମରିଚ, କାନ୍ଦୁଲ ହୁଏ । ଗୋଟିଏ ଖାଇ ଘରେ ରହିଲେ ସୁଖ ଚଳେ । ବାପ ଅଶୀ ବରଷର ବୁଢ଼ା, ହେଲେ ବି ସୁଖ କାମକୁ ବାଘ । ହାତ ଘଣ୍ଡାଏ ଅସ୍ତୁ ହୁଏ

ନାହିଁ । ମୁଁ ଆଉ ଘରେ ବସି ବସି କଣ କରନ୍ତି ? ଯାହା ଦି ପଇସା ଅରଜିଲେ ଲୁଗାପଟା କଣାଯିବ କି ଖଜଣାବାଜଣା ଦିଆହେବ ।

ତୋ ସାଥିରେ ଆଉ କିଏ ସବୁ ଆସିଛନ୍ତି ?

ଗାଆଁରୁ ଅଧେ ଉଠିଆସିଛନ୍ତି ବାବୁ; କିଏ କଲିକତା ଚଟକଲରେ, କିଏ ବର୍ମାର ଧାନ ଜମିରେ; କିଏ ଆସାମର ଚା ବଗିଚାରେ । ହାଲି କେତେ ଉଡ଼ୁମା, ହାଡ଼କୁଡ଼ ଯାଇଛନ୍ତି । ମୁଁ ଆଉ କେତେଟା ଟୋକା ଲୁଚି ଏଠିକି ପଳାଇ ଆସିଛୁ ।

'ହଇରେ, ବାପା ମାଆଙ୍କୁ କହି ଆସିଲୁନି ? ସେମାନେ ଖୋଜୁଥିବେ ।'

'ବାପ କହେ—ଗାଆଁ ମାଟି ସୁନା; କୁଆଡ଼େ ଯାଅନାହିଁ । ଏଇଠି ପେଜ ପାଣି ପିଇ ପଡ଼ିଥାଅ ।'

ପାଟିକି ହେଲେ ପେଟକୁ ନାହିଁ; ପେଟକୁ ହେଲେ ପିଠିକି ନାହିଁ; କେତେ ତୋରାଣି ତେଣ୍ଡି ମାଣ୍ଡିଆ ଜାଉ ହାପୁର ପଡ଼ିଥିବୁ ? ଭଲ କରି ଗଣ୍ଡିଏ ଖାଇବି, ଖଣ୍ଡେ ପିନ୍ଧିବି ବୋଲି ଆସିଲି; କିନ୍ତୁ ମହରଗରୁ ଆସି ନାଲ୍ଲାରରେ ପଡ଼ିଚି ।'

'ସମସ୍ତେ ଏକାଠି ହୋଇ ମାଗୁନାହଁ କାହିଁକି ?'

'ସ୍ୱା ମୁହଁ ଏଣେ; ତା ମୁହଁ ତେଣେ; କେହି କହିବା ବୋଲିବାବାଲା ନାହାନ୍ତି । ଆମେ ତ ହିନ୍ଦୀ ବଙ୍ଗଳା ବୁଝୁନାହୁଁ । ସେ ବି ଓଡ଼ିଆ ବୁଝୁ ନାହିଁ । ଯାହା କଲେ ଯାହା ଦେଲେ ରାଜି । ଯେଝା କଥା ତାର । ଫଳରେ ସମସ୍ତେ ମରୁଛୁ । ପହିଲେ କାନତରାଟି ଆମକୁ ବଡ଼ ଖାତିର କରୁଥିଲା । ଏବେ ବୁଝିଲାଣି; ବଷଦାନ୍ତ ନାହିଁ । ଉକ ପାହାର ପିଟିଲେ ବି ମିଠିରେ ପଡ଼ିବାକୁ କେହି ନାହିଁ । ସତେ ଯେମିତି ଗିଳି ଦେଇବ; ସେମିତି କଥା କହୁଛି ।'

'ଆଚ୍ଛା, ତୁ କେଉଠେ ରହୁଛୁ କହ; ମୁଁ ଯିବି; କାନତରାଟିକି ପଚାରିବି ।'

ଆମେ ଆଉ ରହୁଛୁ କଣ ବାବୁ ? ଗୋଟିଏ ଚାଳ ଭୂଇଁରେ ଥୁଆ ହୋଇଛୁ; ଆଲୁଅ ନାହିଁ କି ପବନ ନାହିଁ । ତା ଭିତରେ ବଲୁଆ ପରି ଗଲି ଗଲି ପଶୁଛୁ । ମାଟିହଣା ବାଧା, ଶେଯ ଶୁଙ୍ଘୁ ଶୁଙ୍ଘୁ ନିଦ ଲାଗିଆସେ । ପ୍ରବାସରେ ଆଉ ଭଲମନ୍ଦ ବାଛିବୁ କଣ ?

ଦାମକୁ ସାଥିରେ ଘେନି ବସାରେ ପହଞ୍ଚିଲି । ଦୁହେଁ ଦାଣ୍ଡ ପିଣ୍ଡାରେ ବସିଲୁ । ଡୁଲ୍ ଡୁଲ୍ କରୁଥିଲା ବର୍ଷା । ପଚାରିଲି—ଦାମ, କିଛି ଗୀତ ଫୀତ ଜାଣୁ ?

ଆଜ୍ଞା, ଗୁହାଳୀକି ପୂଜା ନେଇ ନାହିଁ, ଗଜମୂର୍ଖ, ମୁଁ ଫେର୍ କି ଗୀତ ଗାଇବ ? ଆପଣ ଶୁଣିବେ !

ବନ୍ଧୁ କୁହାବୋଲାରେ ଦାମ ଗାଇଲା—

'ଧାନ ମଣ୍ଡରଗଲୁ ନ ମିଳଇ ମୂଲ
ସାହୁ ପଚାରଇ କେତେ କାମ କଲ
ଚାରିଦିନେ ମଜୁରି
ଅଗାଡ଼ି ଧାନ ଦେଲରେ ।'

ତାପରେ ଦାମର ତୁଣ୍ଡ ଖୋଲିଲା, ଗୋଟାକ ପରେ ଗୋଟାଏ ଗୀତ ସେ ଗାଇଗଲା—ଢ଼ଳଣିଆ, ଦୋଳି, ରାଧାକୃଷ୍ଣ ପ୍ରେମଲୀଳା, ଦାସକାଠିଆ, ଆଉ କେତେ କଣ । ଅନର୍ଗଳ ଚାଲିଛି, ବଳିଷ୍ଠ ବଳିଲ କଣ୍ଠସ୍ୱର । କେଉଁ ସମୃଦ୍ଧ ସଂସ୍କୃତିର ସନ୍ତାନ । ଦିନେ ସଂଗ୍ରାମ ଭୂଇଁକି, ଦରିଆ ମଝିକି ଟହଲାଇ ଦେଇଥିବ । ଏଠି ଶୁଣିବାକୁ କାନ ନାହିଁ, କେବଳ ଆତ୍ମବିନୋଦନ । ଷ୍ଟାମ୍ପ ନିକଟରେ ସେ ଜଣେ ମୂଲିଆ, ତା ଗୀତର କି ମୂଲ୍ୟାଙ୍କନ ହେବ ? କେତେ ଦିନକେ ଜଣେ ଶ୍ରୋତା ପାଇଛି; ଆଖିରେ ତାର ସ୍ୱପ୍ନାତୁର ଭାବ ।

ପଚାରିଲି—ଦାମ, ତୁ ଆଉ ମୂର୍ଖ କ'ଣ ? ବେଶ୍ ପଣ୍ଡିତଟିଏ ତ । ଏତେ ପାଠ ପଢ଼ି ମୁଁ ତୋ ପରି ଗୋଟିଏ ଗୀତ ଗାଇ ପାରିବି ନାହିଁ । ମୋ ଘରକୁ ବହୁ ବିଦ୍ୱାନ୍ ଅତିଥି ଆସୁଛନ୍ତି । ତୁ ବି ଜଣେ । ମୁଁ ଓଡ଼ିଆ, ତୁ ଓଡ଼ିଆ, ଏକା ନାଡ଼ୀ ଦଣ୍ଡେ । ଯୋଉଠି ଥିଲେ ବି ଆମେ ଏକ । ଆମ ଭିତରେ ଏଇ ସ୍ନେହ ଯେତେବେଳେ ଗାଢ଼ ହେବ, ସେତେବେଳେ କୌଣସି ଦୁଃଖ ଦୁର୍ଦ୍ଦଶା ଆଉ ରହିବ ନାହିଁ । ଏକର ଦୁଃଖ ଅନେକଙ୍କର ଏବଂ ଜାତିର ଆନନ୍ଦ ପ୍ରତ୍ୟେକ ପ୍ରାଣେ ପ୍ରାଣେ ଅନୁଭବ କରିବେ । ମୁଠିଏ ପଖାଳ ଆଉ ଖଣ୍ଡିଏ ପାଣିଚିଆ ଗାମୁଛା ଲାଗି ଆଉ ତତେ ପ୍ରବାସରେ ହାଡ଼ ଚୂନା କରିବାକୁ ପଡ଼ିବ ନାହିଁ । ତୁ ହେବୁ ଜମି ଆଉ କାରଖାନା ମାଲିକ । ନିଜ ଦେଶର ରଜା, ଯଥାର୍ଥରେ ସ୍ୱାଧୀନ । ତୋ ସ୍ୱେଦ ଦେଶର ଭଣ୍ଡାରରେ ମୁକ୍ତା ହୋଇ ସଞ୍ଚିତ ହେବ । ତୋ ରକ୍ତ ଦ୍ୱାରେ ଦ୍ୱାରେ ଫୁଲ ଫୁଟାଇବ ।

କେନ୍ଦୁଟା ରକ୍ତମୁଖା ଦଲାଲ୍; ତୁମେ ଯେ ବହୁ ସହସ୍ର । ଆଉ ଡରିବାର ଯୁଗ ନାହିଁ; ପଥର ମାଟିରେ ଶାବଳ ଭାଙ୍ଗୁ ନାହିଁ । ଯୋଉ ସ୍ୱାର୍ଥ ତତେ ଏତେ ଖଟାଉଛି ସେ ପଥରଟାରୁ ଆହୁରି ଟାଣ, ତା ସାଥିରେ ଲଢ଼ିବା ପାଇଁ ତତେ ଶାବଳଠାରୁ ଅଧିକ ଶକ୍ତ ହେବାକୁ ହେବ ।

ଆ, ଘରକୁ ଆ; ଯାହା ଅଛି ଦୁହେଁ ବାଣ୍ଟିକରି ଖାଇବା । ତୁ ଜମି ଚାଷ କରୁ, ମୁଁ କଲମ ଚାଷ କରେ । ତୁ ଧମନୀକୁ ରକ୍ତ ଦେଉ; ମୁଁ ଯୋଗାଏ ମନକୁ ରସ । ଦୁହେଁ ଚାଷୀ ।

# ନୂଆ ସଂସାର

'ମଲାମର, ତୋ ହାତଗୋଡ଼ କ'ଣ ଛିଣ୍ଡି ପଡ଼ିଛି କି ? ଜାଲ ଗୋଟେଇ ଆଣିଲୁ ?' ରାଗ ରଡ଼ ରଡ଼ ହୋଇ ମୁହଁକୁ ଫୁଲେଇ ବକିଗଲା ତରୀ ।

ମକୁନ୍ଦୀ ଦେହରେ କଥାଟା ଛୁରି ପରି ଗଳିଗଲା । କ'ଣ ଭାବି ତା ଆଖି ଜକେଇ ଆସିଲା ।

ଆଃ, ଦେହରେ ଛୁରି ପଶି ଗଲା କି ? କ'ଣ କହୁନୁ ନାହିଁ.... ...ଛିଗୁଲେଇଲା ସେ ।

ଏଥର ମକୁନ୍ଦା ପାଟି ଖୋଲିଲା—ତରୀ !

'କ'ଣ କରେ ନଇଁଣୁଆ ? ଆସିଲା ଆଉ ସାଲୁଲେଇ ହବାକୁ !'

'ସେ ଆଜି ଥିଲେ ' ବାକି ଅକୁହାତକ କଥା ହୋଇଗଲା ଲୁହରେ । ମକୁନ୍ଦାର କଣ୍ଠ ରୁଦ୍ଧ ହୋଇଆସିଲା ଆବେଗରେ ।

ଯାହା କଥା ଭାବି ମକୁନ୍ଦାର ଆଖି ଛଳ ଛଳ ହୋଇ ଆସିଲା ସେ ଜଣକ କିଏ ? ତରୀର ବୁକୁ ନରମ ହୋଇ ଆସିଲା । ଦଶପଦ ଗାଳି ଦେଇଥିଲେ ତରୀକୁ ଏତେ କାଟି ନ ଥାନ୍ତା । ଦୁଇ ବିନ୍ଦୁ ଲୁହ ଏତେ ଆଘାତ କରିପାରେ ?

ସେ ରାତିରେ ମକୁନ୍ଦାର ରୋଷେଇ ବନ୍ଦ । ଛିଣ୍ଡା ଅଖା କେରାଏ ପାରି ମୁହଁ ମାଡ଼ି ଶୋଇ ସେ ସକେଇବାକୁ ଲାଗିଲା ।

ଗୋଟିଏ ଭଙ୍ଗା କୋଠାଘର; ଛାତ ପଡ଼ିଯିବ ଅବା ! ଉପରେ ମାଲିକ ଛାଡ଼ି ଯାଇଛି । ଏଇ ହୋଇଛି ମାଗଣାଙ୍କ ଧରମଶାଳା । ଏଥିରେ ଯେତେକ କୋଢ଼ି, କାଙ୍ଗାଳ, କାଙ୍ଗାଳୁଣୀ ଆସି ଜମନ୍ତି । ଏଥର ଗୋଟିଏ ବଖରାରେ ମକୁନ୍ଦା, ଆଉ ଗୋଟିଏ ବଖରାରେ ତରୀ । ଏମାନେ ସେଥିରେ ଆଉ କାହାକୁ ପୂରେଇ ଦିଅନ୍ତି ନାହିଁ । ସତେ ଯେପରି ନିଜର ଘର । ଦି ବଖରାରେ ଦିହିଁଙ୍କର ଅଲଗା ରୋଷେଇ, ଯା ମନ ଯାଡ଼େ, ତା ମନ ସିଆଡ଼େ । କେହି କାହାର ଶିକ୍ଷା ଦେଖିପାରନ୍ତି ନାହିଁ । ଆଜି କେବଳ ଜାଲ ଲୋଭ କରି ମକୁନ୍ଦା ଗାଳି ଖାଇଲା ।

ଚତୁର୍ଦ୍ଦିଗର ଘନ ଶୂନ୍ୟତା ତାକୁ ବିଦ୍ରୂପ କରିବାକୁ ଲାଗିଲା । ନିବିଡ଼ ଅନ୍ଧକାର ଚପି ହୋଇ ଆସିଲା ତା ଉପରକୁ । ନୈରାଶ୍ୟର ଜମାଟବନ୍ଧା କଠୋରତା ମଧ୍ୟରେ ଏ କାହାର ସ୍ନିଗ୍ଧ ବାଣୀ ? ସେ କହୁଚ—ହଇଏ, ସେ ପୁରୁଖାଇର ଜାଲ କାହିଁକି ଆଣିଲ ? ସେ କେତେ ସତ କରି ଗାଳି ଦେଲା ! ତମେ ବଡ କାଲୁବାଲୁ ହେଲ, ଗଣ୍ଡିଏ ଖାଇବା ପାଇଁ । କିଏ ଯେପରି ତା ଆଖିକି କାନରେ ପୋଛି ପକାଇଲା । ମକୁନ୍ଦା ବିଶ୍ୱାସ କରିପାରିଲା ନାହିଁ । ଏ ଯେ ତାର ସ୍ତ୍ରୀ, ସମ୍ପଦ-ବିପଦର ସଙ୍ଗିନୀ; ଆସିଛି ଶୁଷ୍କ ଜୀବନ ଉପରେ ଏକ ବିନ୍ଦୁ ଶିଶିର ଢାଳି ଦେବା ଲାଗି ।

ତା'ପରେ ଦିଶିଗଲା ଏ କାହାର ମୁହଁ ? ଦୁଃଖୀ, ତାର ଏକମାତ୍ର ସନ୍ତାନ; ସ୍ନେହର ଶୀତଳ ଜ୍ୟୋତ୍ସ୍ନାରେ ବୁକୁ ପୂରି ଆସିଲା ।

ଆଖି ଆଗରେ ନାଚିଗଲା ୧୯୪୩ ଦୁର୍ଭିକ୍ଷର ଛବି । ଟଙ୍କା ଅଣା ଧରି ଗାଆଁ ଗାଆଁ ବୁଲିଲେ ବି ସେରେ ଧାନ ମିଳିଲା ନାହିଁ । ସ୍ତ୍ରୀ ଆଉ ପୁଅର ମଳିନ ମୁଖ ମକୁନ୍ଦା ଆଖିରୁ ଲୁହ ଶେଷ କରି ଦେଇଥିଲା । ଉଭୟେ ମକୁନ୍ଦାକୁ ନରକର ଘନାନ୍ଧକାର ମଧ୍ୟରେ ଫିଙ୍ଗି ଦେଇ ବିଦାୟ ନେଲେ । ରୋଗୀକି ଗଣ୍ଡିଏ ପଥି ରାନ୍ଧି ଦେବା ପାଇଁ ତା ଘୁମାରେ ପୋଷେ ହେଲେ ଚାଉଳ ନ ଥିଲା । ଏ କଥା ଭାବିଲେ ତା ଛାତି ଭାଙ୍ଗି ପଡ଼େ । ଭଗବାନଙ୍କର ଏ କି ବିଚାର ? ପୂର୍ବ ଘରକରଣା କଥା ମନେ ପଡ଼ି ତା ଆଖିରୁ ଶ୍ରାବଣ ଧାରା ଛୁଟିଲା ।

ରାତି ପହରେ; ତଥାପି ଆଜି ତାଳବରଡ଼ା କେତୋଟି ଚୂଲିକି ମୋହିଁ ଦେଇ ବାହୁନି ବସିଲା । ମନ ଭିତରେ ତାର ମସ୍ତ ଫାଙ୍କ; ସ୍ୱାମୀ କୁଆଡ଼େ ଗଲେ ଯେ ଗଲେ । ଖଣ୍ଡେ ଭୂଷା ନାହିଁ କି ଗୋଟିଏ ଟଙ୍କା ନାହିଁ । ଯାହା ଥାନେ ଦି'ଥାନେ ଅଲଙ୍କାର, ବାସନକୁସନ, ଶିଳଚକି ଥିଲା ତାକୁ ବିକିଭାଙ୍ଗି ଦିନ'କେତେ ଚଳାଇଲେ । ତା'ପରେ ମାଆ ପୁଅ ବଡ଼ ଦାଣ୍ଡରେ ଆସି ବସିଲେ । ଏଇଆ ତା ପୋଡ଼ା କପାଳରେ ଲେଖା ଥିଲା ? କେଡ଼େ ଗେଲବସରରେ ବାପାମାଆ ବଢ଼େଇଥିଲେ । ଯାହା ଦୁଃଖେ ସୁଖେ ସଂସାର ଚଳି ଯାଉଥିଲା, ଶେଷକୁ ବିଧାତା ମନରେ ଏଇ ପାପ ଥିଲା ?

ପୁଅ ସନିଆଁ, ତା କାଣୀ ଆଖିର କଜ୍ଜଳ ଗାର । ତାକୁ ସାହାଭରସା କରି ସେ ଭିକ ମାଗି ମାଗି ବୁଲୁଥାଏ—ଏତକ ସୁଖ ମଧ୍ୟ ବିଧାତା ସହିଲା ନାହିଁ । ଘରଆଡ଼େ ଅନ୍ଧାର କରି ସନିଆଁ ଦିନେ କୁଆଡ଼େ ଚାଲିଗଲା । ତଥାପି ଆଖିରୁ ଆଉ ଲୁହ ଶୁଖିଲା ନାହିଁ । ଆଜି ତାର ସ୍ୱାମୀ ଆଉ ପୁଅ କଥା ମନେ ପଡ଼ୁଛି । ରାତି ଢାଉ ହୋଇ ଗଲାଣି; ତେଣିକି ନିଘା ନାହିଁ ।

ଯେଉଁ ସ୍ତ୍ରୀର ସ୍ୱାମୀ ନାହିଁ, ତାର ଗୃହ ଆଉ ଅନ୍ଧାର; ଯାହାର ସ୍ତ୍ରୀ ମରିଛି ତା ଘର ବି ଭାଜିଛି । ଧନଦରବ ସବୁ ଥାଇ ଜଣେ ନ ଥିଲେ ଜୀବନ ହାହାମୟ ମରୁଭୂମି । ସବୁ ନଥାଇ ଜଣେ ଥିଲେ ଅନ୍ଧାର ଘର ଆଲୁଅ ହୁଏ; ପୁଣି ଆଲୁଅରେ ଚନ୍ଦ୍ରଉଦୟ ଜଳେ ।

ମକୁନ୍ଦାର ଅବସ୍ଥା ଯାହା, ତାର ଅବସ୍ଥା ବି ଠିକ୍ ସେଇଆ । ଏକା ଦୁଃଖ ଦହନ୍ତଙ୍କର ହାଡ଼ ମାଂସ କରଉଛି । ଗୁର ଜାଲ କେବଳ ପାଇଁ କାହିଁକି ତାକୁ ଇଙ୍ଗିତସବୁ କରି ବକଲା ସେ ? କୋଉ ସୁଖ ମାତ୍ର ଯାଉଛି ! ନଜେ ନ ଖାଇ ମୁରିଗଲେ ବି କଣ ହଉଚି !

ଲଜ୍ଜା ଓ ଅନୁତାପରେ ତସ୍କର ମୁହଁ ଗ୍ରେଟ ହୋଇ ଆସିଲା ।

ରାତି ଛ' ଘଡ଼ି । ତମ୍ବା ବୋଝେଇ ଶେଷ କରି ଧୀରେ ଧୀରେ ପାଦ ପକେଇ ମକୁନ୍ଦା ଦୁଆରେ ପହଞ୍ଚିଲା । ବୁକୁରେ ସାହସ ଭର୍ତ୍ତି କରି ଡାକିଲା— ମକୁନ୍ଦା, ଉଠ ।

ତିନି ଡାକରେ ବି ଉତ୍ତର ମିଳିଲା ନାହିଁ । ତସ୍କର ମନ ଦବିଗଲା । ମକୁନ୍ଦା ମନରେ କୋହ ଆଉ ଅଭିମାନ ଖୁନ୍ଦ ହୋଇ ରହିଛି । ତସ୍କର ଆଉ ବୁଝିବାକୁ ବାକୀ ରହିଲା ନାହିଁ । ସ୍ତ୍ରୀ ନଥିଲା ମିଣିପିଙ୍କି ଆଉ ଜଣେ ସ୍ତ୍ରୀ ହାତ ହଲେଇଲେ ଗୃହପୂଜା ମାଇକି ପରି କାଟେ । ତା ସ୍ତ୍ରୀ କଣ ତାକୁ କେବେ ତାଳି ଦେଇନାହିଁ ? ସବୁ ମାନଅଭିମାନ ଫେର୍ ଉଠିଯାଏ ନା ଏମିତି ରହିଥାଏ ? ଯାହା ଉଣ୍ଟରୁ ଖସି ଯାଇଛି ତାକୁ କଣ ଆଉ ଲେଉଟେଇ ଆଣି ହେବ ? ତେବେ ସେଇ କଥାକୁ ଗଣ୍ଠି କରି ଲାଭ କଣ ?

ଗାଳି ଦଅନ୍ତୁ, ମାରନ୍ତୁ, ଯାହା କରନ୍ତୁ, ପୁଣି ଡାକିବି । କେତେ ଦୋଷ କରି ତ ପୁଣି ଲୋକେ ପାର ପାଉଛନ୍ତି ? ମୁଁ ଏମିତି କ'ଣ କରିଛି ? ଏଇ ଛୁ ଗ୍ରହର ଜୀବନରେ କୋଉ ମାନ ଅପମାନ ନ ମିଳୁଚି ଯେ ଏଇ କଥାକୁ ଏତେ କରି ବସିଛ ? ମକୁନ୍ଦା, ଉଠ, ତମକୁ ମୋ ରାଣ ।

ଯୋଉ ମାଇପୀଟା ଘଣ୍ଟାକ ଆଗରୁ ତା ମନ ଉପରେ କୁରାଢ଼ି ମାରୁଥିଲା, ସେ ରାଣ ପକାଉଛି ? ସେ ମକୁନ୍ଦାର ଏମିତି କଣ ଯେ ରାଣ ପକାଇବା ମାତ୍ରେ ଧଡ଼ପଡ ହୋଇ ଉଠି ବସିବ ! ଦେଖାଯାଉ, ମାଇପୀଟାର ଗୁମାନ କେତେ ! ମକୁନ୍ଦା ଗାଳେଇ ଶୋଇ ରହିଲା ।

ତମକୁ ସାତ ଅର କଣ ମୋ ରାଣ, ଜଗନ୍ନାଥଙ୍କ ଦ୍ୱାହି, ଉଠ, ଭାତ ଗୁଣ୍ଡାକ ଶୁଖି ଯାଉଚ୍ଛି !

ଯାହାର କେତେ କେତେ ବିପଦ ଘଟିଯାଇଥାଏ, ସେ ପୁଣି ବିପଦର ଶଙ୍କା କରେ; ଏକଦମ୍ ଜଗନ୍ନାଥଙ୍କ ରାଣ ! କାଲେ କିଛି ଖରାପ ହବ ? ହଁ, କୋଉ ଭଲ ହୋଇଚ ଯେ ! ମରିବ ତ ! ଏମିତି ପଡ଼ି ପଡ଼ି ମରିବ ପଛେ ଆଉ ଉଠିବ ନାହିଁ ।

ଏଥର ତପି ବାହୁନା ପକେଇଲା । ମକୁନ୍ଦାର ଏଇ ଲୁହକୁ ଡର, ଯଦି ବା ଲୁହରେ ଭାସି ଭାସି ଆସି ସେ ଏଇ ଅଡଡ଼ରେ ଲଗିଛି । ସେ ଧଡ଼୍‌କିନେ କବାଟଟା ଫିଟେଇ ଡେଢ଼ା ସ୍ୱରରେ ଗର୍ଜିଲା—କିଏ ? କାହିଁକି ଗୋଟାଏ ପାଟି କରୁଚୁ ? ଟିକଏ ଶୁଆଇ ଦେଉନାହୁଁ ?

ଗୋଟାଏ ପର୍ବତ ଯେପରି ତପିର ମୁଣ୍ଡକୁ ମାଡ଼ିବସିଲା । ସେ ମକୁନ୍ଦାର ରାଗିଲା ମୁହଁକୁ ଚାହିଁପାରିଲା ନାହିଁ । ଛେପ ଢୋକି ଢୋକି କହିଲା—ଗଣ୍ଡେ ଭାତ ବାଢ଼ିଚି ।

'ମୋ ପେଟ କଣ ପୋଡ଼ିଯାଉଚି ? ମୁଁ କଣ ଭାହାଣୀ ? ତୋ ଝିଅ ପାଖରେ କୁକୁର ପରି ନାକେଇଚି ? ଯା, ଯା, ପଳା ଏଠୁ ।'

"ତମକୁ ଲୋକନାଥଙ୍କ ରାଣେ—ଜାଗୁଳେଇଙ୍କ ରାଣେ—ଗଣ୍ଡେ ଖାଇ ବସ । ତୁମେ ନ ଖାଇଲେ ମୁଁ ସବୁ ନେଇ ଦାଣ୍ଡରେ ଫୋପାଡ଼ି ଦେବି; ଦୋଷ କରିଚ୍ଛି ତ ଗୋଡ଼ତଳେ ପଡ଼ୁଚ୍ଛି । ହେଇ ଦେଖ, କାନରେ ଗଣ୍ଡି ପକାଉଚ୍ଛି, ଆଉ ଦିନେ ଯଦି ତମକୁ ଏମିତି କହେ, ମୁଁ ବାଧୁଆ ଦଳେଇର ଝିଅ ନୁହେ .....।"

ମକୁନ୍ଦା ଧନରେ ଯେପରି ମନରେ ତାଠାରୁ ଅଧିକ କାଙ୍ଗାଳ ହୋଇଥିଲା । କେତେଦିନ ହେଲା ଗାଳି ତାର ଗଳାମାଳି ହୋଇଥିଲା । କାଙ୍ଗାଳକୁ ଭଲ ପାଏ କିଏ ? ଦବାକୁ ଭଲ ପାନ୍ତି କେତେ ଜଣ ? ଆଜି ଅଯାଚିତ ସ୍ନେହ ବଚନ ଶୁଣି ମନ ତାର ସରସ ହୋଇଉଠିଲା । ତପିର ମନ ବଢ଼ିବା ଲାଗି କହିଲା—ତୋର ଜାତି ଗୋତର କଣ ମୁଁ ଜାଣେନା । ଆର ଜନ୍ମରେ କାହା ଦାନାରେ ଧୂଳି ଦେଇଥିଲି ଯେ, ଏ ଜନ୍ମରେ ସ୍ତ୍ରୀ ଭୋଗ କରିବାକୁ ହଉଚି । ପୁଣି ଜାଣି ଶୁଣି ଜାତି ହରାଇଲେ ଯମ ନରକରେ ସଢ଼ାଇବ ନାହିଁ ?

ହଇଓ ମକୁନ୍ଦା, କାଙ୍ଗାଳର ଗୋଟାଏ ଜାତି ଗୋତର କଣ ? ଯେତେ ହେଲେ ତ ଆମେ ଛତରଖିଆ ଛତରଖାଇ ? ଆମକୁ କିଏ ଆଉ କୁଳରେ

ଫୁଟରେଇବ ? ଆଖି ଛୁଇଁଛ ହେ ମୁଁ ଖଣ୍ଡେଇତ ଘର ଝିଅ । ତମ ଆଗରେ ଫେର୍ କପଟ କରିବ ? ହେ ଆସ, ଆସ, ଭାତ ଦିଟା ଶୁଖି ଚଣା ଗୁଡ଼ଳ ହୋଇଗଲାଣି ।

ଆଦରରେ ତସ୍ୱ ଭାତ ବାଢ଼ିଲା । ମକୁନ୍ଦା ଗୁଣ୍ଡା ପରେ ଗୁଣ୍ଡା ଖାଇ ଗୁଲଲା—ଠିକ୍ ନିଜ ସ୍ତ୍ରୀର ରାନ୍ଧଣା ଭଳି । ରୁଷିଲେ ଛ'ମାସର ମଳୁ ଉଠି ବସିବ । କି ତୃପ୍ତି ! କି ଆନନ୍ଦ ! ମକୁନ୍ଦା ଖାଇ ଶୋଇଲା ।

ତସ୍ୱ ଖାଇଲାବେଳେ ମକୁନ୍ଦାର କଥା ମନେ ପକାଇଲା । ମକୁନ୍ଦାର ଚେହେରା ତ ବେଶ୍ ସୁନ୍ଦର । ସାବେନାବର୍ଣ୍ଣ, ଚକାମୁହଁ, ଝାଇବା ବିନା ଗାଲ ସିନା ଖାଲ ଖାଲ ହୋଇଯାଇଛି । ହେପାଜତ କଲେ କଣ ପୂରିଆସନ୍ତା ନାହିଁ ? ବାଳଗୁଡ଼ାକ ଝାଆଁସିଆ, କହିଁରା ହୋଇଗଲାଣି । କାଲ୍ ଦାଳୋ ରଶିତେଲ ଘଷି କୁଣ୍ଡାଇଦେବ । ଚନ୍ଦ୍ରାରେ ମିଶିପିଟା କୁଢ଼ା ପରି ଦିଶୁବ ।

ସେ ମରଦଟେ ରାନ୍ଧିବ; ମୁଁ ସ୍ୱା ଦେଖି ବରଦାସ୍ତ କରିବ ? କାଲଠୁଁ ଗୁଡ଼ଳ ଏକାଠି ପଡ଼ିବ ।

ଦିନ ପହରେ ହେଲା । ତସ୍ୱ ବାସି ଅଡ଼ଢ ସାରି ମକୁନ୍ଦା ପାଇଁ ଦାନ୍ତକାଠି ପାଣି ଥୋଇଛି । ମକୁନ୍ଦା ଉଠିବାକୁ ନାହିଁ । ତସ୍ୱ ଡାକଲାରୁ କହିଲା—କାଲି ରାତିରେ କେତେକଣ ଭାବି ଭାବି ନିଦ ହେଲା ନାହିଁ । ମୁଣ୍ଡ ଝାଇଁ ଝାଇଁ କରୁଛି ।

କାଙ୍ଗାଳ ବାଧକ ପଡ଼ିଲେ ଗଡ଼ି ଗଡ଼ି ମରେ; ଯେମିତି ପରମାୟୁବଳ ଥିଲେ କେଜାଣି ଅବା ବଞ୍ଚିଯାଏ । ରାସ୍ତାର ଆବର୍ଜ୍ଜନା ସେ । ରୋଗ ବିସ୍ତାର କରେ । ହାଡ଼ ଗାଡ଼ିରେ ଫିଙ୍ଗିଦେଇ ଆସିଲେ ସୁଦ୍ଧେ ସାଥୀ ମଣିଷସମାଜ ଅଶୃପ୍ତି ଲାଭ କରେ । ତା ଜୀବନ ଦ୍ୱାରା କି ସ୍ୱାର୍ଥ ସାଧିତ ହେଉଛି ସମାଜର ? ଔଷଦପଣ, ପଥ୍ୟପାଚନ କିଏ ଦେବ କାହିଁକି ?

ସମୟବେଳେ ନିଜ ଲୋକ ପର ହୁଏ । ପର କିନ୍ତୁ ଅତି ଆପଣାର ହୋଇଯାଏ । ତସ୍ୱ ମକୁନ୍ଦା ଶେଯରେ ବସିପଡ଼ିଲା, ଜଣେ ମରମ ଭିତରର ମଣିଷ ପରି । ଲୁଚିରେ ହାତ ମାରିଦେଇ କହିଲା—ମଲା, ଏ ନିଆଁ ଲଗା ପୋଡ଼ପୋଡ଼ା ଜର୍‌ଟା କୋଉଠୁ ଅଇଲା ? ଓହୋ, କି ତାତିତବତି ? ଦିହରେ ଖଇ ଫୁଟୁଚି । କ'ଣ କରିବଟି !

ତସ୍ୱ ଯେତେବେଳେ ପାଦ ଅଉଁସିଲା, ମକୁନ୍ଦା ତା ଘରେ ଶୋଇଲା ପରି ଅନୁଭବ କଲା । କି କୋମଳ ସ୍ପର୍ଶ ! ଏଇଥର ନିକାଶ ପାଇଯିବ ବୋଲି ଭାବୁଥିଲା । ଯେଝା ଦୁଃଖରେ ସିଏ ଗୁଲିଯିବ । କିଏ ପାଣି ଟୋକେ ଦେବ ?

ତମର ସେବାରେ ସେ ଦିନକେତୁଟାରେ ଭଲ ମଣିଷ ହୋଇ ଉଠିଲା । ସେ ସ୍ନେହ ନ ପାଇଲେ ରୁଷି ବସିଲା । ସତେ ଯେପରି ତମ ଉପରେ ତାର ଦାବୀ ଅଛି ।

ଦିନ ପରେ ଦିନ, ମାସ ପରେ ମାସ ଏମିତି ଗଡ଼ିଚାଲିଲା, ସ୍ନେହର ଝଗଡ଼ା ବଢ଼ି ବି କୂଳ ଖାଇଲା । ମକୁନ୍ଦା ତମକୁ ଘଡ଼ିଏ ନ ଦେଖିଲେ ନୁହେଁ । ଦୁହିଙ୍କୁ ଦୁନିଆଁ ନୂଆ ନୂଆ ଲାଗୁଚି । ସତେ ଯେପରି ଜୀବନର ପହିଲି ଫଗୁଣ ଫେରି ଆସିଚି !

ଦିନେ ମକୁନ୍ଦା ତମକୁ କହିଲା—ଏପରି ହୋଇ ଆଉ କେତେଦିନ ରହିବା ?

'ତମେ କ'ଣ କହୁଚ ?''

'ଯାହାଯାଇଚି ଆଉ ଫେରିବ ନାହିଁ । ଯାହା ମିଳୁଚି ପାଦରେ ଠେଲି ଦେଲେ ଆମେ ଚିର ଦୁଃଖୀ ହୋଇଥିବା ।'

'କଣ କହୁଚ, ମୁଁ କିଛି ବୁଝିପାରୁନାହିଁ ।'

'ଭଙ୍ଗା ସଂସାରଟା ଆଉଥରେ ଗଢ଼ିଲେ .....'

ଲାଜରେ ସୁଙ୍ଗୁଡ଼ୁ ହୋଇ ତମ ଓଢ଼ଣାଟା ଟାଣିଦେଲା । ସେ ମକୁନ୍ଦା ମୁହଁକୁ ଚାହିଁଲା ନାହିଁ, କି ପଦେ କଥା କହିପାରିଲା ନାହିଁ । ସାକ୍ଷାତ୍ ନବାଗତା କୁଳବଧୂ !

ବିବାହ ଆଉ କଣ ହେବ ? ବେଦୀ ବା ଗଢ଼ୁଚି କିଏ ? ଶଙ୍ଖ ମହୁରୀ ବଜେଇବାକୁ କିଏ ଆସିବ ? ଭୋଜିଭାତ କୋଉଠୁ ବା ଖାଇବାକୁ ଦେବେ ? ମକୁନ୍ଦା କାଚ ଚୁଲପଟ, କିଛି ଅଳତାସିନ୍ଦୂର କିଣିଆଣିଲା, ତମ କାଚଖଡ଼ୁ ହୋଇ ରହିଲା । ଏ ମିଳନରେ ଦୁଇଟି ପ୍ରେମଲୋଳ ହୃଦୟ, ଚାରିକାନ୍ଥ ଓ ନୀଳଚକ୍ର ସାକ୍ଷୀ ରହିଲେ । ଦୈନନ୍ଦିନ ସଂସାରଯାତ୍ରା ଚାଲିଲା ।

ସକାଳ । ଭିକାରୀର ଏକ ପଟୁଆର—ଅନ୍ଧ, ବାଡ଼ିଧରି ନେଉଛି ତାର ପୁଅ । କୁବ୍ଜା—ଖେଳଣା ଶଗଡ଼ରେ ବସାଇ ଭିଡ଼ି ନେଉଛି ଜଣେ । ବନ୍ଧୁ ଚଟାରେ ଚଢ଼ିଚି ବାମନ, ଛୋଟା—ହାତରେ ଭର ଦେଇ ଘୁଷୁରି ଘୁଷୁରି ଚାଲିଛି । କୁମ୍ଭିପାଟିଆ—ଏମାନେ ପର ଉପରେ ଚଳନ୍ତି; ଅନ୍ଧାରୁ କନ୍ଧାରୁ, ପେଟବିକଳିଆ, ଦର୍ଶମାରୁ, କର୍ମକୋଢ଼ି—ଅଥରପା ବୁଢ଼ା, ଚୋଦଘା, ଜାବୁଆ, ଆଙ୍ଗୁଠି ଛିଣ୍ଡି ଯାଇଥିବା ବଡ଼ରୋଗୀ, କାଠଗୋଡ଼ ଲଗାଇଥିବା ବୁଢ଼ୀ—ସମାଜ ବାହାରେ ନୂଆ ସମାଜ ଗଢ଼ିଛନ୍ତି ଏମାନେ, ଗଢ଼ିଛନ୍ତି ନୂଆ ସଂସାର, ଜନ୍ମ ହେଉଛନ୍ତି ଦଳ ଦଳ ଛୁଆ ।

ଭିକାରୀଙ୍କ ବଂଶ ବଢ଼ି ଚାଲିଛି । ସଂସାରୀ ଦାନସାଗର ଏହିମାନଙ୍କ ଚଳାରେହିଁ ଶୁଖୁଛି । ଏମାନଙ୍କ ମେଳରେ ଥାଳ ଧରି ବୁଲିବାକୁ ମକୁନ୍ଦାକୁ ଘୃଣା ଲାଗିଲା । ଦେହରେ ବଳଥିବା ଲୋକ ଭିକ ମାଗି ବୁଲିବା ଏକ ପାପ, କାମ କରୁ କରୁ ମରିଯିବା ହିଁ ସବୁଠାରୁ ବଡ଼ ପୁଣ୍ୟ । ମକୁନ୍ଦା ମୂଲ ଲାଗିଗଲା ।

ସନିଆଁ ମାଆ ପାଖରୁ ପଳାଇଯାଇ କଟକର ଜଣେ ବାବୁଙ୍କ ପାଖେ ଚାକିରି କଲା । ଗଣ୍ଠିରେ କିଛି ପଇସା ହେଲାରୁ ମାଆ ମନେ ପଡ଼ିଲା । କିଛି ଟଙ୍କା-ଟୋକର ଧେନ ମାଆକୁ ଦେଖିବାକୁ ଆସିଲା । ଏବେ ମୁଣ୍ଡରୁ ହାତ ପାଇଲାଣି । ଭାବିଛି—ମାଆକୁ ଆଉ ଭିକ ମଗାଇବ ନାହିଁ । ଚାକିରି କରି ମାସକୁ ମାସ ଟଙ୍କା ପଠାଇବ ।

ଗାଆଁ ଘରଖଣ୍ଡ ସର୍ଜି ରୁଜି ଯିବଣି । ତାକୁ ଠିଆ କରିବ । ଶାଗ ପଟାଳି ଦାଟା କରିଦେଲେ ମାଆ ପେଜପାଣି ପିଇ ଚଳିଯିବ ।

ମାଆ ସେଇ ଭଙ୍ଗା କୋଠାରେ ଏବେ ଥିବ କି ନାହିଁ ? ତାକୁ ଚିହ୍ନି ପାରିବ କି ନାହିଁ ? ସେ ତ ଆଉ ମାଗନ୍ତା ନୁହେଁ । ଘୁପଚାଲ୍‌କଣିଆ, ସଫାସୁତରା ଫ୍ରେଟକାଟର ବାବୁଟିଏ !

କେତେ କଣ ଭାବି ଭାବି ଯାଇ ପହଞ୍ଚିଲା ସେଇ ଭଙ୍ଗା କୋଠାରେ; ଘରକୁ ପଶି ଯାଉଁ ଯାଉଁ ମକୁନ୍ଦା କହିଲା—କଣ କାମ ଅଛି ତ ମତେ କହ, ଘରକୁ ପଶିଯାଉଚୁ କାହିଁକି ? ମୋର ତ ଫେର୍ ଇଜ୍ଜତ ମହତ ଅଛି !

ସନିଆଁ ପଚାରିଲା—ମୋ ବୋଉ କାହିଁ ? ତୁ କିଏ ?

ମକୁନ୍ଦା ସେଇ ପ୍ରଶ୍ନକୁ ଓଲଟାଇ ପଚାରିଲା—ତୁ କିଏ ? ଏଇ ସମୟରେ ଶଙ୍କିତ ସ୍ନେହଦୃଷ୍ଟିରେ ଦୁହିଁଙ୍କ ମଝିରେ ଛିଡ଼ା ହୋଇଗଲା ଭୟ । ଉଭୟେଁ ଆଶ୍ଚର୍ଯ୍ୟ ହୋଇ ପରସ୍ପର ମୁହଁକୁ ଚାହିଁ ରହିଲେ ।



# କହିଲି, ମୁଁ କଣ କରିବି

'ବାବୋଇ, ତମେ ଟିକିଏ ଦାଅଙ୍କଠିକି ଯିବ, କହିଥା, ନାରଣିଆ ମତେ ଆଉ ରଖେଇ ଦେଉନାହାନ୍ତି । କହୁଛନ୍ତି—ମୋ ଘର ଖର୍ଜି ଦେବେ, ଡିହରେ ବାଇଗଣ ଗେଣ୍ଡିବେ ।'

ସୁରୁଘି କାନ୍ଦି କାନ୍ଦି କହିଲା ।

ତାଙ୍କ ନାଆଁରେ ତ ଭସ୍ତ କବଲା କରିଦେଲୁ—ଜମି ଡିହବାଡ଼ି ଯାହା ଥିଲା ସବୁ । ଏବେ ପଞ୍ଚାସ୍ତ ବସି କଣ କରିବେ ?

'ସେତେବେଳେ କଣ ମୋର ହୋସ୍ ଥିଲା, ବାବୋଇ ? ବାଇଆ ବ'ଉଳ ପରି ହେଉଥିଲି । ମତେ ସରଗ ଇଣ୍ଡୁରି ଦେଖାଇଦେଲେ, କହିଲେ, ଘର ଛପର କରିଦେବେ, ସବୁ ଚଳାଚଳ କରିବେ, ରୋଗବଇରାଗରେ ପଡ଼ିଲେ ପଥିପାଣି ଦେବେ, ମଲେ ମଧ୍ୟ ଶୁଦ୍ଧି ହେବେ । ପୁରୁଷମାନେ ଯେତେବେଳେ କହୁଛନ୍ତି, ବିଶ୍ୱାସ ନ ଯିବ କେମିତି ?

ସେ ହେଡ଼ାଖିଆ ମୋହରିର ମତେ କାନେ କାନେ ଶିଖାଇଥିଲା—ହାକମ ପଚାରିବେ—ଡିହ, ଜମିବାଡ଼ି ବିକଚୁ !

କହିବୁ—ହଁ

ଟଙ୍କା ପାଇଚୁ ?

କହିବୁ—ହଁ

କେତେ ଟଙ୍କା ?

କହିବୁ—ହ'ଣ !

ସଦ୍ୟ ରାଡ ହେଇ ହୋଇଚ, ପାଦରୁ ଅଳତା ଦାଗ ଲିଭି ନାହିଁ, ଆଖିରୁ ଲୁହ ଶୁଖି ନାହିଁ । ମୂର୍ଖ ବୋକା, କଣ ଜାଣିଚ—ସାରୁ ଭିତରେ ମାରୁ ଅଛି ବୋଲି ? ଟିପରେ କାଳି ବୋଳି କାଗଜ ଉପରେ ବସେଇ ଦେଲେ । ସବୁ ସରିଲା ପରେ ପୁରୁଷମାନେ ମୋତେ କହିଲେ—'ଏଣିକି ତୋର କିଛି ଚଳିବା ନାହିଁ; ତୋ ଚଳିବା ଏଣିକି ଆମକୁ ଲାଗିଲା ।'

‘ବାଉଁଶବୁଦା, ବାଡଖଣ୍ଡିକ ବଙ୍କଦେଲୁ ନାହିଁ ? ସେଥିକରେ କଣ ଶୁଝ-ଘର ହୋଇପାରି ନଥାନ୍ତା ? ଯାହାର ବାପି ଓଳିକ ଦାନାନାହିଁ, ସେ ହେ'ଣ ବ୍ରାହ୍ମଣ ଡାକି ଚୁଡ଼ା ଦହି ଖୋଇବା କି ଦରକାର ଥିଲା ? ସୁରଅଣା ଲେଖାଏଁ ଦକ୍ଷିଣା ଦେବାକୁ କଣ ରୁ ମୁଣ୍ଡ ?

ବାବୁ, ସେ କଣ ଅମୋକ୍ଷ ରହିଥାନ୍ତେ ? ଏଠି ଭଙ୍ଗାଦେଦରୁ ଦେହଟି ଘେନି ତ ବହୁତ କଷ୍ଟ ପାଇଲେ । ସେଠି ପୁଣି କଷ୍ଟ ପାଇଥାନ୍ତେ ? ସମ୍ପତ୍ତି ମୋର କଣ ହୁଅନ୍ତା ? ସେ ମଲା ପରେ ଆଉ କି ସୁଖ ? ଗୋଟାଏ ପେଟ କଣ ଅପୋଷା ରହିଯିବ ? କାହା ଉହା ନଦେଲେ କଏ ପୁଞ୍ଜାଏ ଡାଙ୍ଗୁଆ, ଆଟିକା ଦେବ । ସେଇଆକୁ ବଳି ମୁଁ ଚଳି ଯାଇପାରିବ । ଏବେ ମୁଁ ମୋ ଘରେ ଅଛୁ, ମୂଷାଗାତ ବୁଜିଛୁ, ଘର କାନ୍ଥ ଲିମ୍ପିପୋଛି ସଫା ରଖିଛୁ; ଗୁରୁବାର ଚିତା ଗୁଡିଛୁ, ଲକ୍ଷ୍ମୀ ପାଦ ଲେଖିଛୁ । ମୋ ମାଣ ପେଡ଼ି ମୋ ଘରେ ଅଛୁ । ମୋ ଆଖିରେ ଆଙ୍ଗୁଠି ଗେଞ୍ଜି ପୁତୁରାମାନେ ମୋ କାନ୍ଥ ବାଡ଼େଇବେ, ଭୁଅ ଜାଳିବେ, ମୋ ଦେହ ସ୍ବା ସହିବ ? ମୋ ପାଗହାଣ୍ଡି ଘେନିଯିବେ, ମୋ ଚୂଲ୍ଲୀ ବାଡ଼େଇ ଦେବେ, ମୋ ସଉଡ଼, ଉଧାଡ଼ ଘଞ୍ଚି ଦେବେ, ଚକଶିଳ ବୋହିନେବେ, କଂସାବାସନ ଗରା ଡାଲ ଯାହି ଦଖଣ୍ଡି ଅଛୁ, ଘେନିଯିବେ, ବେକମୁଣ୍ଡାରେ ହାତ ଦେଇ ମତେ ବଡ଼ଦାଣ୍ଡକୁ ଡଡ଼ଦେବେ, ମୋ ଗ୍ରୁଡ କେମିତ ସ୍ବା ସହିବ ?

ଟିପ ଦେଲାବେଳେ କାହାକୁ ତ ପଦେ ପଚାରିଲୁ ନାହିଁ । ଏବେ ବାଡ଼େଇ-ପିଟି ହେଲେ କଣ ହେବ ?

‘ଟିପ ଦେଲେ କଣ ହେଲା, କଟକେଇ ? ମୁଁ ତ ତାଙ୍କ ଖୁଡ଼ୀ, ନିଜ ଲୋକ ; ନିଜ ରକ୍ତ ।

ଏବେ ତ ତାଙ୍କ ବର୍ଷିକିଆ ଯାଇନାହିଁ, କାଲି ପରି ଲାଗୁଚ, ହୁଅନ୍ତୁ ପଛକେ ଶ୍ବାସରୋଗୀ, ସେ ଥିଲେ ମୋର ସବୁ ଥିଲା । ଆମ ଚକ ବୁଲୁଥିଲା । ବନ୍ଧୁବାନ୍ଧବ ଯେ ହେଲେ ଦଟା ହାଣ୍ଡି ଗଡ଼ି ଦେଉଥିଲା । ହଳ ମାଗିଆଣି କୁଣ୍ଟେଇ କୁଣ୍ଟେଇ ସେ ଯାହି ମାଣେ ଦମାଣେ ଚଷୁଥିଲେ । କାହାର ସାଧ ନ ଥିଲା ବଳକୁ ଗାଈ କି ବାଛୁରୀଟାଏ ଗୁଡ଼ିଦେବ । ସେ ବସିଥିଲେ ତ ନଟାରେ ବାଘ ବସିଥିଲା । ଆଜି ବାଘ ଘରେ ମିରିଗ ନାଟ କରୁଛନ୍ତି । ପୁତୁରାମାନେ ସାମ୍ନାରେ ସଲଖ ହୋଇ ମୁହଁକୁ ଚାହିଁ କଥା କହିବାକୁ ଡରୁଥିଲେ, ଏବେ ସେ ନାହାନ୍ତି ବୋଲି ଆଉ ଖୁଡ଼ୀ ମାନ୍ୟ ରଖୁନାହାନ୍ତି । କେତେ ଭଲ ଭଲ ଦରବ ସିଝେଇ ଖୋଇଛୁ ବାବୁ, ମତେ ସେମାନେ ଆଜି ଆଖି ଦେଖାଉଛନ୍ତି ।’

ସୁରୁଯୀ ଗପି ଚାଲୁଥାଏ । ଆଖି ଆଗରେ ମୋର ନାଚଗଲା କୁମ୍ଭାରସାହି—ଚାରି ଛ'ଟି ଘର, ଘରେ ଘରେ ଚକ ବୁଲୁଚି । ହାଣ୍ଡି ଗଢ଼ିବାର ଠକ ଠକ ଶବ୍ଦ । କମାର ଶାଳର ହାତୁଡ଼ି ମାଡ଼ ଶବ୍ଦ ପରି ଏହା କର୍କଶ ନୁହେଁ, ଏଥିରେ ଗୋଟାଏ ମଧୁର ଗାମ୍ଭୀର୍ଯ୍ୟ ଅଛି ।

ଗୋଛା ଗୋଛା ଝାଟି ଶୁଖୁଚି, ଉଷ୍ଣା ଚାରିପାଖ ବାଉଁଶ କଣି, କଆପତର, ଝାଡ଼ାମୁଣ୍ଡି, କଳାଆର ଡାଳ, ଭଇଁଷି କୋଳି ଡାଙ୍ଗ ଗୋଛା ଡେରି ହୋଇଚି । ଗଦା ଗଦା ପାଉଁଶ, ଖପରା । ପଦାରେ କଞ୍ଚା ହାଣ୍ଡି ଶୁଖୁଚି । ଘରେ ହାଣ୍ଡି ଉପରେ ହାଣ୍ଡି, ତା ଉପରେ ହାଣ୍ଡି ଚଟାଣରୁ ଚାଳଯାଏ ଲାଗିଚି, ସେହିପରି ଡାଡ଼ୁଆ ଉପରେ ଡାଡ଼ୁଆ, ଆଟିକା ଉପରେ ଆଟିକା, ଘଡ଼ି ଉପରେ ଘଡ଼ି, ଚେଲୁଣି ଉପରେ ଚେଲୁଣି । ଚକ ବୁଲୁଚି, ଦୈବ ବିଧାତା ପରି କୁମ୍ଭାର ଗୋଟାଏ ପରେ ଗୋଟାଏ ଆକୃତି ଗଢ଼ି ସୂତାରେ କାଟି ଥୋଉଚି । ଏ ଚକ୍ର ପ୍ରକୃତରେ କୁମ୍ଭାରର ଭାଗ୍ୟଚକ୍ର । ଚକ ବୁଲୁଥିବା ଯାଏ, ତାର ପାଟି ବୁଲୁଥାଏ, ପେଟ ପୂରୁ-ଥାଏ ।

କୁସଲ ପଞ୍ଚମୀ ତାର ବଡ଼ ପର୍ବ, ବିଶ୍ବକର୍ମା ତାର ଇଷ୍ଟଦେବତା । ତାର କୋଠ ଭାଗବତ ଗାଦି ଅଛି । ବର୍ଷକୁ ଥରେ ସପ୍ତା ବସେ, ଭାଗବତବଢ଼ା ହୁଏ । ତାର ଭାଗବତ ଚଉଦଳରେ ବସି ମେଳଣକୁ ବଳେ ହୁଅନ୍ତି । ଠାକୁରଙ୍କ ପିଣ୍ଡାରେ ଚାହାଳି ବସେ, ନ୍ୟାୟ ନିଶାପ ହୁଏ, ସାଇ ପିଲାମାନେ ସଙ୍କୀର୍ତ୍ତନ ଶିଖନ୍ତି । ଏ ସାଇରେ ଜମିଦାର ନାହାନ୍ତି, ମକଦ୍ଦମ ନାହାନ୍ତି । ବେଳ ପଡ଼ିଲେ ଘର ଢିଙ୍କି କୁମ୍ଭୀର ହୁଏ । ଭାଇ ଭଗାରି ପାଲଟେ । ଅତି ସାଧାରଣ ଲୋକ ଅତ୍ୟାସ୍ତ ହୋଇଯାନ୍ତି । ଧଣ୍ଡ ସାପ ପାଟିରେ ହାତ ପୂରାଇଲେ ସେ କାମୁଡ଼ିବ ନାହିଁ ତ ଆଉ କଣ କରିବ ?

ସନ୍ଧ୍ୟାବେଳେ ଗୋପୀନାଥଙ୍କ ମଣ୍ଡପରେ ପଞ୍ଚାୟତ ସଭା ବସିଲା । ସରପଞ୍ଚ, ଗାଁର ଜଣେ ଦୁଇଜଣ ମାମଲତକାର, ଦୁଇ ଚାରିଜଣ ଶିକ୍ଷିତଙ୍କ ମଧ୍ୟରେ ମୁଁ । ନଟ, ନାରଣଙ୍କୁ ଡକା ହେଲା । ନାରଣ ପଞ୍ଚାୟତର ସମ୍ମୁଖୀନ ହେବାକୁ ଶଙ୍କିଲା, କୁଣିଆଁ ଘର ବାହାନାରେ କୁଆଡ଼େ ଲୁଚିଲା; ଆସିଲା ଏକା ନଟ । ତାକୁ ପଚାରିଲା—କିଓ ନଟ, ତା ଘର ଭାଙ୍ଗି ଦେବ ବୋଲି କାହିଁକି ଧମକାଉଚ ?

ନଟ କହିଲା—'କଥାରୁ କାର୍ଯ୍ୟ ଯୋଜନେ ଅନ୍ତର, ରାଗରୁଷାରେ କିଏ କଣ କହିଥିବ, ମୁଁ ଜାଣେନାହିଁ । ମୁଁ କିଛି କହିନାହିଁ ।'

'ତା ବୁଦାରୁ କାହିଁକି ବାଉଁଶ କାଟିଲ ?'

ଦଅଙ୍କ ସପ୍ତା ବସିବ ।

ତା'ର ଟଙ୍କାରେ ଦଅଙ୍କ ସପ୍ତା ବସିବ ! ମାଗିଯାଚି ସେ ଟୋପେ ତୋରାଣି ପିଉଚି, ମରିଗଲେ ଲୁହ ଗଡ଼ାଇବାକୁ ତାର କେହି ନାହିଁ । ସେ କାହିଁକି ଠାକୁରଙ୍କୁ ପୂଜିବ ? ଠାକୁରେ ତାର କଣ କରିଛନ୍ତି ? କୋଳକୁ ପୁଅଟିଏ ଦେଇନାହାନ୍ତି; ସ୍ୱାମୀ, ଜମିବାଡ଼ି, ଡିହ, ହରଣଚାଲ୍ କରି ଦେଇଛନ୍ତି ।

'ତା ପୂର୍ବଜନ୍ମ ଦୁଷ୍କୃତିର ଫଳ ସେ ଭୋଗୁଚି; ଠାକୁରଙ୍କୁ ଦୋଷ ଦେଇ ଲାଭ କଣ ? ଗାଆଁରେ ରହିଲେ ଭେଦାଚାନ୍ଦା ତ ଦେବାକୁ ହେବ ।'

'ତା ସମ୍ପତ୍ତିବାଡ଼ି ତୁମେ ନେଲ, ସେ ଭେଦାଚାନ୍ଦା ଦେବ କୁଆଡୁ ? ବାଡ଼ିରେ ଦୁଇ ଚାରିଖଣ୍ଡ ବାଉଁଶ, ଅଗଣାରେ ଗୋଟାଏ ସଜନା ଗଛ ତା ଭୋଗ ଲାଗି ତୁମେ ଛାଡ଼ି ଦେଇଥିଲ । ପକେଇଲା ଛେପ ଢୋକିବ କେମିତି ? ସେ ଆଉ କେତେକାଳ ବଞ୍ଚିବ ?'

'ସେ ମୋ ଘରେ ଆସି ରହୁ । ଗଣ୍ଡେ ରାନ୍ଧି ଦେଉ, ଖାଉ । ରହୁ ମୋର ଖୁଡ଼ୀ ହୋଇ, ଘର ହାନିଲାଭ ବୁଝୁ, ଦୁଃଖ ସୁଖରେ ଭାଗିଦାର ହେଉ । ତା ବନ୍ଧୁ ବେଭାର ମୁଁ ଦେବି; ଭେଦାଚାନ୍ଦା ମୁଁ ଚଳେଇବି !'

'ସେ ଥିଲା କାଳି ଘରଣୀ, ତାର ଥିଲା ଜମିବାଡ଼ି, ଗୋଟାଏ ମାଲିକାଣୀର ଠାଣି; ସ୍ୱାମୀ ତାର ସ୍ୱୟଂ ବିଶ୍ୱକର୍ମା । ହାଣ୍ଡି ମାଠିଆ ଛଡ଼ା ଗଢ଼ୁଥିଲା ଠାକୁରାଣୀଙ୍କ ହସ୍ତୀ, ଘୋଡ଼ା, କମକୁଟକରା ମୂର୍ତ୍ତି, ଫୁଲକୁଣ୍ଡ, ପକ୍ଷୀବସା ଦେଉଳିଆ ଚଉରା । ଯୋଉଦିନ ଉହା ବାହାରୁଥିଲା, ତା ଗୁଡ଼ କୁଣ୍ଡେ ମୋଟ । କିଏ ନେଉଥିଲା ପୂର୍ଣ୍ଣକୁମ୍ଭ ମାଠିଆ, ଆକାଶଦୀପ ଆଟିକା, କିଏ ନେଉଥିଲା ବସୁନ୍ଧରା ଘଡ଼ି, ଚିତଉପିଠା ସରା, ଭଜାଭଜି ଆଟିକା, ଖିରିହାଣ୍ଡି, କିଏ ନେଉଥିଲା କୂଅ ନଦ । ସୁରୁପୀ ହାତରେ ନଡ଼ି ଚଞ୍ଚା ପଇଡ଼ା ପଡ଼ୁଥିଲା, କାନରେ ଝୁଲୁଥିଲା ରୁବିଲେନ୍ଥା । ଅମଳ ବେଳେ ସାଆନ୍ତଙ୍କଠାରୁ ସେ ପାଉଥିଲା ଧାନ, ମୁଗ, ବିରି, କୋଳଥ । ଦର୍ଶମଙ୍ଗୁଳା ହାଣ୍ଡି ଲାଗି କସ୍ତା । ତା ଭାଡ଼ିରେ ଥିଲା ମୁଗ, ବିରି ତେଲିଆ, ରାଶି ସୋରିଷ ପୁଡ଼ା, କୋଠିରେ ଧାନ । କାନ୍ଥ ଉଞ୍ଚା ଦୁମାରେ ଥିଲା ବର୍ଷକ ଲାଗି କୁଟା ଚାଉଳ । ତାହା ଛଡ଼ା ଶ୍ରେଷ୍ଠ ଶ୍ରେଷ୍ଠ ଘଡ଼ିରେ-କାହିଁରେ ଥିଲା ଘିଅ, କାହିଁରେ ମାଲପା, କାହିଁରେ ବଡ଼ି ଶୁଖୁଆ । ଭାଡ଼ି ତଳେ ଗଡ଼ୁଥିଲା ଖୁରୁଡ଼ି ନଡ଼ିଆ, ଦାଣ୍ଡ ଦୁଆର ଚାଳରେ ଝୁଲୁଥିଲା ଧାନ ମେଣ୍ଢା । ପିଣ୍ଡାରେ ଶୋଉଥିଲା ଗଣ୍ଡା ଗଣ୍ଡା ବୋଇତା କଖାରୁ । ଶଙ୍ଖୀ ବଳେଇ ତା ଦୁଧ ହାଣ୍ଡି ଗଡ଼ଉଥିଲା; ପେଣ୍ଡପେଟରରେ ପଶୁଥିଲେ ଅସରପା । ସେ ଥିଲା ଘରକୁ ଘରଣୀ; ହାତରେ ଦି ବଣା ପିତଳବାହା, ନାକରେ

ଦକ୍ଷିଣ ଦଣ୍ଡୀ, ବାହାରେ ଦ ଦ ଧାଡ଼ି କୁନ୍ତଳନ ଲତା; ଓଠ ତଳେ ଲବଙ୍ଗ କଢ଼ି, କପାଳରେ ପୂର୍ଣ୍ଣଚନ୍ଦ୍ର ଟିକା । ସାଙ୍ଗରେ ଦୋଖ୍ଟ ଘର ସଜଡ଼ା ହେଲେ ପସନ୍ଦ ହେବ କି ନ ହେବ ଦେଖିବା ଲାଗି ତାକୁ ଉକଣ୍ଠା ହେଉଥିଲା ।

ନିଜ ଘରର ଆଡ଼, ବଳବନ୍ତପ ଉପରେ ତାର ବିଶ୍ୱାସ ଥିଲା । ଭିକାରୀ ଦୁଆରେ ସାଆନ୍ତାଣୀ ବୋଲି ଡାକଲେ ତା ଛାତି ଫୁଲୁଥିଲା । ସେଇ ସୁରୁଯି ଆଜି ତୋର ଭାତ ରାନ୍ଧିବ; ଅଇଁଠା ବାସନ ଧୋଇବ; ତୋ ସଙ୍ଗେ ଝାଟି କାଟିଯିବ, ମାଟି ବୋହି ଯିବ । ମୁନ୍ଦାଏ ତୋରାଣୀ ପାଇଁ ସେ ତୋର ସବୁ କାମ କରିବ । ଘରକୁ ତ ନେବୁ କହୁଚୁ; ତାକୁ ଖୁଡ଼ୀ ମାନ୍ୟ ଦେଇ ରଖି ପାରିବୁ ?”

“ବାର ଦୁଆରରେ ଭିକ ମାଗିବାରେ କି ମାନ୍ୟ ସେ ପାଉଚି ଯେ !”

“ବୋହୂ ହେବା କାଳରୁ ବୁଢ଼ୀ ହେବାଯାକେ ପାଞ୍ଚ ଦଶ ଖଣ୍ଡ ଗାଆଁରେ ସେ ହାଣ୍ଡି ଦେଇଚି । ଖୁଡ଼ୀ, ମାଉସୀ, ମାଇଁ, ଆଈ କୋଉ ଗାଆଁରେ ତାର ନାହାନ୍ତି ? କାଲିର ଘରଣୀକି ଆଜି ଲୋକେ ଭିକାରୁଣୀ କରି ଦେବେ ? ଲୋକେ ଯାଚି ଦେବେ; ତୁଣ୍ଡ ଫିଟାଇବାକୁ ପଡ଼ିବ ନାହିଁ ।

ତୁ ଯଦି ଖୁଡ଼ୀମାନ୍ୟ ଦେଇ ପାରିବୁ, ନେ । ଖୁଡ଼ୀ ହୋଇ ରହିଲେ ସେ ତୋର ନଳା ଧୋଇପାରେ; ଗୋହିରୀ ଗେଟେଇ ପାରେ । ମାନ୍ୟ ନ ପାଇଲେ ସେ ହେବ ତୋର ପୋଇଲୀ; କଥାକେ କଥାକେ ମିଳିବ ଧମକ, ତାର ଢଳେ ଦୋଷ ତାଳ ପରି ଦିଶିବ । ତୋ ସ୍ତ୍ରୀ ଖୁଣ୍ଟା ଦେବ—ହଇଲୋ ନିଅଁଶୀ, ଏବେ ମୋ ଗୋଡ଼ ତଳକୁ ଆଇଲୁ ! ମୁଠିଏ ବାସି ପଖାଳ, ଟିପେ ଲୁଣ, ଚର୍କାଏ ପୋଡ଼ାପୋଡ଼ି ତରକାରୀରେ ଯଦି ଗୋଟାଏ ଚାକରାଣୀ ମିଳେ, ନାରଣ ଛାଡ଼ିବ କାହିଁକି ? ସେ ବି ଚାହିଁବ – ଖୁଡ଼ୀ ତା ଧାନ ଉସିଁଉ, ପିଲା ଖେଳଉ । ଏଥିରେ ହଂସା ବଢ଼ିବ; ଭାଇ ଭାଇ ଭିତରେ କଳିତକରାଳ ଲାଗିବ ।”

“ମୁଁ ଜବାବ ଦଉଚି—ମୋ ଘରେ ରହିଲେ ଖୁଡ଼ୀକି କେହି କିଛି କହି ପାରିବେ ନାହିଁ, ତାର କିଛି ଅସୁବିଧା ହବ ନାହିଁ ।”

“ଆରେ ସେ ଯୋଉ ସୁବିଧା ନ ମାଗୁଚି, ତୁ ଦେବାକୁ ଆଗଭର ହେଉଚୁ କାହିଁକି ? ତାକୁ ନିଜ ଘରେ ରହିବାକୁ ଦେ । ସେ ନିତି ଦୁଆରେ ଷଣ୍ଢବଳଟିଏ ବସାଉ । ଯୋଗୀ ଭିକାରୀଙ୍କି ନିଜ ହାତରେ ମୁଠିଏ ଦେଉ, ଠାକୁରଙ୍କ ଲାଗି ଦୋଳ ଭୋଗ ବାଢ଼ୁ । ନିଜ ଭିଟାମାଟିରେ ସ୍ୱାଧୀନ ଭାବରେ ତାକୁ ଟିକିଏ ନିଃଶ୍ୱାସ ମାରିବାକୁ ଦେ । ବଞ୍ଚିଥିବା ଯାକେ ଏ ଘର ତାର, ଅନ୍ତେ ତୁମର । ଏବେ

ଠାକୁରଙ୍କ ପାଣ୍ଟିରେ ତାର ଯୋଉ ବାଉଁଶ ବକା ଟଙ୍କା ଜମା ରଖିଚ, ତାକୁ ଦେଇ ଦିଅ ।”

‘ଖର୍ଚ୍ଚ ହୋଇ ଯାଇଚ ।’

‘ସେ ବାଉଁଶ କାହାର ?’

‘ସେ ମୋର ବୋଲି କହୁଚ, ଆମେ କଣିନୁ । ହକ୍ ଟଙ୍କା ଦେଇଚୁ ।’

‘ତାକୁ ଟଙ୍କା ଦେବ ନାହିଁ ?’

‘ଏ ଜୋରମାନା ଦେଲ ପଣ ହେବ । ସେ ଆମକୁ ଏଇ କେତେ ଦିନ ମଧ୍ୟରେ ଢେର୍ ବୁଦ୍ଧି ଶିଖାଇ ସାରିଲଣି । ଆଉ ଶିଖିବା ଦରକାର ନାହିଁ ।’

‘କାଗିଜରେ ଯେ ଲେଖା ଅଛୁ—ତା ଅନ୍ତ୍ରେ ତମେ ଭୋଗ କରିବ ।’

‘ସେ ମକଦ୍ଦମା କରୁ । ତା ଘର ଆମେ ଅଉ ଛପର କରିବୁ ନାହିଁ; ଘର ବଳେ ବଳେ ଭାଙ୍ଗିବ । ସେଥିକ ବେଳେ ଯାଇ ଚେତା ପଶିବ, ତା ଟାଣ ଭାଙ୍ଗିବ । ସେ ଆମକୁ ଚିହ୍ନିବ । ମଣ ପୋଚ ସଢ଼ି ଯିବ, ଆମେ ମଶାଣିକି ନେବୁ ନାହିଁ; ତାକୁ ଶୁଧ ହେବୁ ନାହିଁ ।’

ଗାଆଁ ସମାଜର ସେଇ ଐକ୍ୟ ବା ଦୃଢ଼ତା ନାହିଁ—ଅମାନିଆଁର ନାକରେ ଦଉଡ଼ି ଲଗାଇ ଘୋଷାରିବ । ଏବେ ସ୍ୱଜମାଡ଼ରେ ଜନତା ଫାଙ୍କ ଫାଙ୍କ । ନଟିଆ ଗାଆଁ ସମସ୍ତଙ୍କୁ ଏଡ଼ିଦେଇ ଗ୍ଭଲିଗଲା । ଗୋଟାଏ ଧୂମାଳ ଅଶାନ୍ତ ପରି ମତେ ଦିଶିଲ ସେ । ସେ ଅଶାନ୍ତ ଅପସରି ଯାଇଛୁ ବୋଲି ବୁଝା ଯାଉଛୁ । କିନ୍ତୁ ବଞ୍ଚିଚ ସେ । ତେଣୁ ଜନ୍ମ ମଧ୍ୟବର୍ତ୍ତୀ ନଟର କଣ୍ଠରେ ଅତ୍ୟାଗ୍ଭରୀ ସ୍ୱଜାର, ନିଷ୍ଠୁର ଜମିଦାରର, ଶୋଷକ ସାହୁକାରର ତୀବ୍ର ସ୍ୱର—ପେଷି ଦେବ, ଶୋଷି ନେବ, ଉଡ଼ାଇ ଦେବ, ବୁଡ଼ାଇ ଦେବ । ତାର ରକ୍ତେ ରକ୍ତେ ଅସ୍ଥି ମଜ୍ଜାରେ ଲୁଚିଚ ତାର ପ୍ରେତ, ବହୁତ ଧୋଲେଇ ସଫେଇ ହେଲେ ବି । ଲୋଡ଼ା ଏକ ମହା ବନ୍ୟା, ଯେ ଅଶାନ୍ତର ସେଇ ଘନ କଳଙ୍କ ପୋଛୁ ଦେବ, ମଣିଷକୁ କରିବ କାନ୍ଥବାଡ଼, ଭେଦବାଦଶୂନ୍ୟ ଗୋଟାଏ ଜାତ, ସଫେଦ, ସୁନ୍ଦର ।

ସୁବୁଯୀ ଗ୍ଭଉ ପାହିଲେ ଗଣ୍ୟ ମାନ୍ୟଙ୍କ ଦୁଆରେ ଧାରଣା ଦେଉଚ—ମୁଁ କ’ଣ କରିବ ? ତା କଣ୍ଠରେ ଚିର ବଞ୍ଚିତର କରୁଣ ସ୍ୱର । କେତେବେଳେ ତୋରାଣି ଢୋକେ ପିଉଚ କି ନାହିଁ, ସେ ଖବର ରଖେନା ସାମ୍ବାଦିକ । ଖଣ୍ଡିଏ ବୋଲି ଲୁଗା ଦେହରେ ଶୁଖୁଚ, ତା ପ୍ଲେଟ ଖବର ବୁଝିବାକୁ ନେତାଙ୍କୁ ଅବସର ନାହିଁ ?

ଭୁଲ ଭୁଲ ପାଦ ଅଙ୍କାଳରୁ ସେ ବାଟ ମୁହଁରେ ଆସି ବସୁଛି—ସମସ୍ତଙ୍କ ଲାଗି ବାଟ ସେ; ତାକୁ ଅବାଟ । ବାଟୋଇଙ୍କ ସେ କଣ କହୁଛି ? ଗୋଟିଏ ଶ୍ରେଷ୍ଠ ସଂସାରର ଘରଣୀ ଭିକାରୁଣୀ ହେବାର ଇତିହାସ ?

ତାର ପ୍ରଶ୍ନ—କହିଲ, ମୁଁ କଣ କରିବି ?

ଯେଉଁ ଶିକ୍ଷକ ଗୁରୁଙ୍କ ଲାଗି ସବୁବେଳେ ପ୍ରଶ୍ନ କରନ୍ତି, ସେମାନେ ଏହାର ଉତ୍ତର ଦେଇ ପାରୁନାହାନ୍ତି । ଯୋଗି ବାବାମାନେ ଏତେ ଲୋକଙ୍କୁ ଦୀକ୍ଷା ଦେଉଛନ୍ତି, ନୈତିକତା, ଆଧ୍ୟାତ୍ମିକତା ଶିକ୍ଷା ଦେଉଛନ୍ତି, ସେମାନଙ୍କ ଆଶ୍ରମରେ ତା ଲାଗି ସ୍ଥାନ ନାହିଁ; ତା ପ୍ରଶ୍ନର ଉତ୍ତର ଯୋଗ ଶାସ୍ତ୍ରରେ ଲେଖା ନାହିଁ ।

ସେ ପଚାରୁଛି, ବିରକ୍ତିକର ଭାବରେ ପଚାରୁଛି, କହିଲ, ମୁଁ କଣ କରିବି ? ଏଇ ପ୍ରଶ୍ନର କଣ ଶେଷ ନାହିଁ ?

ମାନବବାଦ କହେ—ଏଇ ପ୍ରଶ୍ନର ଉତ୍ତର ସୁସ୍ଥ ସମାଜ ସଙ୍ଗେ ସଙ୍ଗେ ଦେଉ ।

ସମାଜବାଦ କହେ—ଚୋଟାକ ପରେ ଗୋଟାଏ ଲୌହ ଦୁର୍ଗ ଭାଙ୍ଗି ଚାଲିଚୁ, ନ୍ୟସ୍ତ ସ୍ୱାର୍ଥର । ଅପେକ୍ଷା କର, ଧୈର୍ଯ୍ୟ ଧର ।

ପୂରୁଣୀ ଏବେ ଚାଲିଛି ରାଜଧାନୀର ପଥରୁ ପଥକୁ, ପଥାନ୍ତରକୁ, କାହାର ଉତ୍ତର ସେ ଶୁଣୁ ନାହିଁ; ଶୁଣିପାରୁ ନାହିଁ; ନିଜ ପ୍ରଶ୍ନର ମାଦକତାରେ ବାଚାଳ, ଅନର୍ଗଳ ।



# ଦେଖା ଆକାଶର ସେପାଖେ

ଗଦା ଗଦା ଇତିହାସ ବହି ଭିତରେ 'ପୋତି ହୋଇବସିଛନ୍ତି ଅଧ୍ୟାପକ ନୀରଦଭୂଷଣ—ମୋ ନୀରୁଦା । ଦାଦାଙ୍କ ବହିଃକର୍କଶତା ଭେଦ କରି ହୃଦୟର ନିକଟବର୍ତ୍ତୀ ହୋଇଛନ୍ତି ଯେଉଁ କେତେକ, ସେମାନଙ୍କ ମଧ୍ୟରେ ମୁଁ ଜଣେ । ରୁକ୍ଷ ବ୍ୟବହାର, ମୋଗଲଦରବାରୀ ପୋଷାକ, ପର୍ବତ ଗାମ୍ଭୀର୍ଯ୍ୟ, ତୋଫାନୀ ହସ, ପକେଟଛୁଟ ପିସ୍ତଲ ଓ ଆରବୀୟ ଭାଷା ଚର୍ଚ୍ଚା ତଳେ ମୁଁ ଆବିଷ୍କାର କରିଥିଲି ଏକ ଦିଲ୍‌ଖୁସ୍‌ ମିଜାଜ୍‌, ଅଙ୍ଗୁର ନରମ ଆତ୍ମାର ଓମରଖାୟାମୀ କବିତା । ପ୍ରାଣ ଉପରର ଏଇ ଯମୁନୋତ୍ରୀ ନ ଦେଖି ଅନେକ ଭ୍ରମରେ ପଡ଼ିଛନ୍ତି—ନୀରୁଦା ଅସାମାଜିକ ! ତାଙ୍କ ନିଃସଙ୍ଗ ଜୀବନ ଉପରକୁ ନିର୍ଜନତା ମାଡ଼ି ଆସିଛି । ପ୍ରକୃତିର ଶାନ୍ତ କୋଳ ଏବେ ତାଙ୍କର ଆଶ୍ରୟ ।

ସାଧାରଣ ଆଳାପ ମଧ୍ୟରେ ଦୁହେଁ କିପରି ଦିନେ ଏକାତ୍ମ ହୋଇଗଲୁ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ବିଶ୍ରମ୍ଭାଳାପରେ ବହୁ ସନ୍ଧ୍ୟା କଟାଇନେଇଛୁ । ଦାଦାଙ୍କ ବିନା ପରାମର୍ଶରେ ମୁଁ କୌଣସି ବଡ଼ କାମରେ ହାତ ଦିଏନାହିଁ । ଦାଦା ମଧ୍ୟ ନିଜର ବିପୁଳ ଶକ୍ତି, ବିସ୍ତର ଅର୍ଥ ଓ ସୂକ୍ଷ୍ମ ବୁଦ୍ଧି ସତ୍ତ୍ୱେ ସମାନ୍ୟ କାର୍ଯ୍ୟରେ ବି ସାନ ଭାଇକୁ ବିଗ୍ଭରିବାକୁ ଭୁଲନ୍ତି ନାହିଁ ।

ପୁସ୍ତକର ସ୍ତୂପ ମଧ୍ୟରେ ଦିନେ ନୀରୁଦା ମୋର ବସିଛନ୍ତି, କିନ୍ତୁ ପଢ଼ାରେ ମନଯୋଗ ନାହିଁ । ମନ କୁଆଡ଼େ ଭାସି ଯାଉଛି । କୂଳ କିନାରା ମିଳୁ ନାହିଁ । ଆଖି ଦିଓଟି ଫାଙ୍କା ଫାଙ୍କା । ଭାବନାକୁ ଯେପରି କିଛି ଧରି ରଖି ହେଉନାହିଁ; ଉଡ଼ିଯାଉଛି ସବୁ ।

ନୀରବତା ଭଙ୍ଗ କରି କହିଲି—ନୀରୁଦା, ତୁମେ ଆଉଥରେ ବିଭା ହୁଅ ।

'ଚୁପ୍‌ କର'—ଏପରି ବିକୃତ ଭଙ୍ଗୀରେ କହିଲେ ଯେ ମୁଁ ଚମକି ପଡ଼ିଲି । ମୁଣ୍ଡ ବୋଧେ ଠିକ୍‌ ନାହିଁ । ଖସି ପଳାଇବାକୁ ଉଠ୍‌ ଉଠ୍‌ ହେଉଛି, ଦାଦା ମୋ ହାତକୁ ଧରି ଜବରଦସ୍ତି ଚୌକୀରେ ବସାଇ ଦେଲେ—ଗୁଳି କରିଦେବ ନା କ'ଣ ?

ତକିଆତଳ ବନ୍ଧୁକ ଆଡ଼କୁ ହାତ ନ ବଢ଼ାଇ କିଛିଟା ଉତ୍ତେଜିତ କିନ୍ତୁ ଉଦାସୀନ ସ୍ୱରରେ କହି ଲାଗିଲେ—ଜାଣ ତ, ମୋ ସ୍ତ୍ରୀ ଥିଲେ ମୋ ପ୍ରାଣପକ୍ଷୀର

ଅଶ୍ରୁସ୍ନାତରୁ । ତାଙ୍କର ଅକାଳ ବିୟୋଗରେ କେବଳ କୋଳହରା ହୋଇନାହିଁ, ଅକୂଳ ସମୁଦ୍ରରେ ଭାସୁଛି ମୁଁ ।

ଏଇ ରାଶି ରାଶି ପୁସ୍ତକରୁ ଉଳେ ହେଲେ ସାନ୍ତ୍ୱନା ପାଉନାହିଁ । ଅହୋରାତ୍ର ତାଙ୍କର ଚିନ୍ତା ହିଁ ମୋତେ ଅସ୍ଥିର କରୁଛି । ରାତିରେ ସ୍ୱପ୍ନ ଦେଖୁଛି ତାଙ୍କୁ, ଜାଗରଣରେ ଛାଇ ପରି ଆଖି ଆଗରେ ନାଚୁଛନ୍ତି ସେ । ଫୁଲ ଚନ୍ଦନ ଦେଇ ପୂଜୁଛି ତାଙ୍କର ଫଟୋ । ଦେଖା ହେ । କହୁଦନ ମଣ୍ଡୀଗ୍ନାଲା ଲାଗି ସଂସାରକୁ ଅବତରଣ କରିଥିଲେ ।

"ଦାଦା, ତମେ ଏମିତି କହୁଦନ ରହିଲେ ପାଗଳ ହୋଇଯିବ । କାଙ୍କେରେ ବନ୍ଧା ହୋଇ ପଞ୍ଜରିହେବା ଅପେକ୍ଷା ବିବାହ ବନ୍ଧନରେ ବାନ୍ଧ ହୋଇ ରହିବାରେ କ୍ଷତି କଣ ?"

"ମୋର ବୟସ କେତେ ଜାଣ ? ପଞ୍ଚାଶ ସେ ପାରେ । ଗୃହ ସଂସାରର ତିକ୍ତମଧୁର ଅନୁଭୂତି ଢ଼େର୍ ହୋଇଛି । ପୁଣି ବଡ଼ ପୁଅ ଇଞ୍ଜିନିଅର୍, ସାନପୁଅ ବ୍ୟବସାୟୀ । ନାତିନାତୁଣୀଙ୍କ ମୁହଁ ଦେଖିଲିଣି ।"

'ସେମାନେ ବିଦେଶୀ, ବିଛିନ୍ନ । ଯେ ଯାହା ସଂସାର ଘେନି ବ୍ୟସ୍ତ, ବାର୍ଦ୍ଧକ୍ୟରେ ତୁମ ଖବର ବୁଝିବ କିଏ ? କୃଷି ଯୁଗର ସେଇ ପରସ୍ପର ସାହାଯ୍ୟ-କାରୀ ଏକାନ୍ନବର୍ତ୍ତୀ ପରିବାର ଆଉ ଅଛି ? ତୁମେ ଯଦି ଅଉ ପଚଶ ବର୍ଷ ବଞ୍ଚ, କାହା ଉପରେ ଭରସା କରି ଚଳିବ ?'

"ଭଗବଦ୍ ଗୀତା ପାଠ, ପଣ୍ଡିଚେରୀ ଶାଖା ଗ୍ରହଣ, ଶାସ୍ତ୍ର ଗବେଷଣା ।'

ଏ ମଧ୍ୟରେ ଛ'ମାସ ବୋହିଯାଇଛି । ଦାଦାଙ୍କ ଗୀତା ପାଠ, ଦାର୍ଶନିକ ଚିନ୍ତା ଓ ଧର୍ମଚିନ୍ତାରେ ବାଧା ଦେଇନାହିଁ । ଆଜ ଦୈବାତ୍ ସାକ୍ଷାତ । ମସ୍ତିଷ୍କର ପେଚଗୁଡ଼ାକ ବହୁତ ଢ଼ିଲା ହୋଇଯାଇଥିବାର ଲକ୍ଷ୍ୟ କଲି । ଅକାରଣେ ଅଜସ୍ର ହସୁଛନ୍ତି । ହସିବାର ହେତୁ ଥିଲେ ବି ଗମ୍ଭୀର ରହୁଛନ୍ତି । ଅଯଥା ଗୁଡ଼ାଏ ଶାସ୍ତ୍ର ଉଦ୍‌ଗୀରଣ କରୁଛନ୍ତି । ମାନସମ୍ଭ୍ରମ ଭୁଲି ବୁଲା କୁକୁର ଉପରକୁ ପିମ୍ପୁଳି ଲକ୍ଷ୍ୟ କରୁଛନ୍ତି । ହସି ହସି କହିଲି—ଦାଦା, ତୁମ ଗତିବିଧି କମେ ଅସ୍ୱାଭାବିକ, ଅସାଧାରଣ ହୋଇ ଉଠୁଚି ।

ଦାଦା ଗୋଟାଏ ଚକିତ ହସରେ ତୋଫାନ ଭୁଣିଦେଇ ବ୍ୟଙ୍ଗାତ୍ମକ ସ୍ୱରରେ ପଚାରିଲେ—ଗ୍ରେଷ୍ଟମ୍ୟାନ କ ପ୍ରତିକାର ଚିନ୍ତା କରୁଛନ୍ତି ?

'ବିବାହ । ଦାଦା, ତୁମେ ସମ୍ମତ ହେଲେ କେହି ବସୁଧା କୁମାରୀ ଅବଶ୍ୟ ତାର ଆଜୀବନ ସଂକଳ୍ପ ଭଙ୍ଗ କରିବ ।'

ଦାଦା ବିଷୟଟା ଏଡ଼ି ଦେଇ ଅନ୍ୟ କଥା ପକେଇଲେ । 'ମୋର ଏତେ ବିଶ୍ କଣ ?' ମାମୁଲି ଦି ପଦ କଥା ହୋଇ ଚାଲି ଆସିଲି ।

କେତେ ଦିନ ପରେ ଆକ୍ସିଡେଣ୍ଟ୍ । ଆଉ କିଏ ହୋଇଥିଲେ ନିକାଶ ପାଇଯାଇ ଥାଆନ୍ତା । ସେମିତି ଖେଳୁଆଡ଼୍ ସ୍ୱାସ୍ଥ୍ୟ ବୋଲି ଦାଦା ଏ ମାଡ଼ଟା ସମ୍ଭାଳି ନେଲେ । ମୁଣ୍ଡରେ ସାମାନ୍ୟ କ୍ଷତ ମାତ୍ର ରହିଗଲା, କିନ୍ତୁ ତାଙ୍କ ଚିନ୍ତାର ମୋଡ଼ ସମ୍ପୂର୍ଣ୍ଣ ବଦଳାଇଦେଲା । ପ୍ରାଥମିକ ଚିକିତ୍ସା ପରେ ଦାଦା ଯେତେବେଳେ ଡ଼ାକ୍ତରଖାନାରୁ ଘରକୁ ଫେରିଲେ, ଶୂନ୍ୟତା ହିଁ ତାଙ୍କ ଅଭ୍ୟର୍ଥନା କଲା । ଘର ମଇଳା । ଚାକର ଟଙ୍କାକଟି ପଳାଇଛି । କପେ ଚା ଦେବାକୁ କେହି ନାହିଁ । ଏ ଅବସ୍ଥାରେ ହୋଟେଲକୁ ଖାଇବାକୁ ଯିବାକୁ ହେବ ।

ଅସମର୍ଥକୁ ପୁତ୍ର ନାହିଁ, ପୁତ୍ରବଧୂ ନାହିଁ । ପରିବାର ବିଚ୍ଛିନ୍ନ । ସେ ଏକା, ଓଃ, ଏକାନ୍ତ ଏକା !

ସମାଜ କହେ—ନାରଦଭୂଷଣ ବୃଦ୍ଧ, ବୃଦ୍ଧର ବିବାହ ଅଧିକାର ନାହିଁ । ଏ ଭାବନା ଯୁଗୋପଯୋଗୀ ନୁହେ । ଏଭଳି ବୃଦ୍ଧଙ୍କୁ ସଙ୍ଗ, ସୌଖ୍ୟ ଓ ସ୍ୱାଚ୍ଛନ୍ଦ୍ୟ ଦେବା ଲାଗି ସମାଜରେ ବୃଦ୍ଧାକୁମାରୀ ଅଛନ୍ତି—ସ୍କୁଲ ଶିକ୍ଷୟିତ୍ରୀ, ନର୍ସ, ଡ଼ାକ୍ତରାଣୀ, ବ୍ୟର୍ଥ ପ୍ରେମିକା—ସମାଜର ଭଉଁରୀ ଭିତରେ ଯେଉଁମାନଙ୍କର ଜୀବନ ମୋଡ଼ି ମକଚି ହୋଇଯାଇଛି, ବିବାହର ଦିଲ୍ଲୀ କା ଲଡ଼ୁ ନ ଖାଇ ଯେଉଁମାନଙ୍କ ମନରେ ଅବଶୋଷ ରହିଯାଇଛି, ପରିତ୍ୟକ୍ତା, ପରିତ୍ୟକ୍ତା, ବିଧବା, ଉପଯୁକ୍ତ ପାତ୍ର ଖୋଜି ଖୋଜି ଯେଉଁମାନଙ୍କର ବୟସ ଗଡ଼ିଯାଇଛି, ହତଭାଗିନୀ । ଭଙ୍ଗା ଜୀବନକୁ ପୁଣି ଗଢ଼ା ଯାଇପାରେ ନୂତନ ଅନୁରାଗରେ, ଜୀବନ ବିଚ୍ଛିନ୍ନ ଏକକ ନୁହେ । ଏକରେ ଏକ ମିଶି ଅଙ୍କ ଶାସ୍ତ୍ରରେ ଦୁଇ ହୋଇପାରେ । କିନ୍ତୁ ଜୀବନ ଶାସ୍ତ୍ରରେ ଏକରେ ଏକ ମିଶି ଏକ । ଏହା ଗଭୀର ସତ୍ୟ ।

ସମାଜସେବା, ହରିନାମ ଧ୍ୟାନ, ବିଦ୍ୟାଲୋଚନା—ଏହା ବୃଦ୍ଧ ଅଧ୍ୟାପକର ଧ୍ୟେୟ ହୋଇପାରେ । କିନ୍ତୁ ତାନପୁରାର ତାର ଛିଣ୍ଡିଗଲେ ସେ ଆଉ ବାଜେ ନାହିଁ । ସବୁ ଭାବର ମୂଳ ଉତ୍ସ ପ୍ରେମ । ସେ ଭିତ୍ତି ଭାଙ୍ଗିଗଲେ ହରିନାମ ଧ୍ୟାନ ବ୍ୟର୍ଥ, ବିଦ୍ୟାଲୋଚନା ନିରର୍ଥକ ବୋଧହୁଏ । ଛିଣ୍ଡିଯାଇଥିବା ଜୀବନକୁ ପୁଣି ଗଣ୍ଠେଇବାକୁ ପଡ଼ିବ । ଏହା ହିଁ ନୂତନ ମୂଲ୍ୟବୋଧ, ପରିବର୍ତ୍ତିତ ପରିସ୍ଥିତିରେ ।

ଆକ୍‌ସିଡେଣ୍ଟ୍ ସମ୍ବାଦ ଶୁଣି ଦାଦାଙ୍କୁ ଦେଖିବାକୁ ଯାଇଥିଲି । ଗୃହିଣୀ ଦେଇଥିଲେ କିଛି କର୍ଫି ଓ ଟୋଷ୍ଟ୍ । ଦାଦା ସେତିକ ପାଇ କୃତକୃତ୍ୟ ହୋଇ-ଗଲେ—ବିପଦର ବନ୍ଧୁ ଏକ ।

ନାନା କଥା ମଧ୍ୟରେ ବିବାହ କଥା ପକାଇଲି । ପାତ୍ରୀ ଖୋଜିଦେବା ଦାୟିତ୍ୱ ମୋର ।

ପୂର୍ବ ପ୍ରତିକୂଳ ମନୋବୃତ୍ତି ସହିତ କ୍ଷୀଣ ସଙ୍ଗତ ରକ୍ଷାକରିବା ଲାଗି ଦାଦା କଥାଟାକୁ ପରିହାସରେ ଉଡ଼ାଇ ଦେଲେ, ଏଭଳି ଚିନ୍ତାକୁ ମନରେ ସହଜ ଓ ସ୍ୱାଭାବିକ କରିବା ପ୍ରୟାସରେ ।

କହିଲେ—ଦେହର ପିପାସା ମୋର ମରିଯାଇଛି । ବଞ୍ଚିଛି ଗୋଟାଏ ମନ, କବିତା ନ ଲେଖିଲେ ବି କବିର ମନ ମୋର । ନିଜେ ଝଡ଼ିବା ଆଗରୁ ସେଇ ମନକୁ ମୁଁ ପାଖୁଡ଼ା ପାଖୁଡ଼ା ଝଡ଼େଇ ଦେଇଯିବାକୁ ଚାହେଁ ନାହିଁ ।

'ସ୍ୱପ୍ନର କୁଆଁରୀ ନ ମିଳିଲେ ସେ ଉଡ଼ିଯିବ ଦାଦା, ବିନା ପ୍ରୟାସରେ ।'

'ସେଇଛି ତା ଗୋଟାଏ ଚିତ୍ର ହେବା ମୋ ପକ୍ଷେ ଅସମ୍ଭବ, ବରଂ ଏମିତି ଦୁଃଖକଷ୍ଟ ମଧ୍ୟରେ ପେଡ଼ି ହୋଇ ଶେଷ ପାଇଯିବି ।'

'ସରସ୍ ପରି ଢଳ ଢଳ ଆଖି, ଗୋଲାପପରି ଗଣ୍ଡ, ତଡ଼ିତ୍‌ଚଞ୍ଚଳା, କ୍ଷୀଣାଙ୍ଗୀ, ନାମଟି ହେବ ଚନ୍ଦ୍ରଲେଖା ! ଦାଦା, ତୁମେ କେଉଁଠି ଅଛ ?'

'ମାନେ—ବିନୋଦିନୀ, ଚଟାଣକୁ ଚଞ୍ଚଳ କରିବ ତାର ଚଟୁଳ ଗୃହୁଲି । ରେଡ଼ିଓ ଆଉ ଖୋଲିବି ନାହିଁ, ଶୁଣିବି କେବଳ ତା'ର କଥା, ତାର ଗୀତ ।'

'ପ୍ରୌଢ଼ ମନକୁ ଖାପ ଖାଉନାହିଁ ଏ ସ୍ୱପ୍ନ, ନିତାନ୍ତ କଞ୍ଚା, କୈଶୋର ଅବାସ୍ତବତାରେ ଭରା । ବରଂ କହ—ରନ୍ଧାବଢ଼ା କରିବ, ଘର ସଜାସଜ କରିବ, ଚରଣସେବା କରିବ ।'

'ତୁମ ବୁଦ୍ଧି ଅତି ସ୍ଥୂଳ । ତାଙ୍କୁ ଏସବୁ କିଛି କରାଇବି ନାହିଁ, ବଳେ ବଳେ କଲେ ସହି ପାରିବି ନାହିଁ । ବରଂ ମୋ ଲେଖା କିଛି ଟାଇପ୍ କରିଦେଇ ପାରନ୍ତି, ଯାହା ଡାକିବ ଲେଖିପାରନ୍ତି ।'

'ମାନେ—ତୁମ ସ୍ତ୍ରୀ ହେବେ ତୁମର ଷ୍ଟେନୋ ?'

'ନା, ସହଧର୍ମିଣୀ, ସହାୟିକା ।'

'ହଉ ହଉ, ସେପରି ଝିଅ ମିଳିବେ । କମରସିଆଲ୍ ଅଫିସ୍‌ରେ ଢେର୍ କରାଣୀ ରହିଛନ୍ତି । ଅଛନ୍ତି ବି ଅନେକ ପ୍ରାଇଭେଟ୍ ସେକ୍ରେଟାରୀ ।'

'ଦୂର୍, ଭାରତୀୟ ସ୍ତ୍ରୀଙ୍କ ଯୌବନର ଆୟୁ ଦଶ ବର୍ଷରୁ ବେଶୀ ନୁହେଁ; ମୁଁ ଚାହେଁ—ଚିରକାଳ ସ୍ମାର୍ଟ ଟାଇପ୍ !'

'ମାନେ ମେମ, ଓଠରେ ଲିପ୍‌ଷ୍ଟିକ୍, ପାଦରେ ହାଇହିଲ୍, ଚାଲିଟା ଖଟ୍ ଖଟ୍, କଥା ଫୋସ୍ ଫୋସ୍ ।'

'ତୁମର ବନ୍ଧୁ ବର୍ଗ ସୌନ୍ଦର୍ଯ୍ୟଜ୍ଞାନ ନାହିଁ । କହିଲେ ତା ପରି ଯୌବନକୁ ଏତେ ଦୀର୍ଘ କାଳ ବଞ୍ଚାଇ ପାରେ କିଏ ? ଯୌବନ ଯାହାକୁ ଛାଡ଼ି ଯାଉଛି, ଦେଖିଲେ ମନେ ହେବ—ସେ ଯୌବନକୁ ମୋଟେ ଛାଡ଼ି ପାରି ନାହିଁ ।'

'ଯୌବନ ନୁହେଁ ଦାଦା, ତା ଖୋଳପାଟାକୁ ସେ ମାଜି ଚକ୍ ଚକ୍ କରିଥାଏ । All that glitters is not gold. '

'କଞ୍ଚା ଯୌବନଟାଏ ମୁଁ ଚାହେଁ ନାହିଁ । ସେ ହୁ ହୁ ଜଳିବ, ମୋତେ ଜାଳିବ, ପୋଡ଼ିପାଡ଼ି ଭସ୍ମ କରି ଦେବ ।'

'ଯୌବନକୁ ଏତେ ଭୟ କରନାହିଁ, ଦାଦା ।'

'ମୋର ଶାରୀରିକ ସମ୍ପର୍କ କିଛି ରହିବ ନାହିଁ । ସେ କେବଳ ହେବ ସଖୀ, ସଙ୍ଗିନୀ ।'

'ମାନେ ତାର ତ ବି ଗୋଟାଏ ଦେହ ଅଛି, କ୍ଷୁଧା ଅଛି । ସେ ସନ୍ତାନ-କାମନା କରିପାରେ । ମାଆ ହେବାର କାମନା କେଉଁ ନାରୀର ନାହିଁ ?'

'ତା ହେଲେ ମୁଁ ପାରିବି ନାହିଁ ।'

'ତୁମ ଘରକୁ ରକ୍ତ ମାଂସର ଶରୀର ଧରି କିଏ ଆସିବ ? ବରଂ ନିଉ ମାର୍କେଟକୁ ଯାଇ ଗୋଟାଏ କଣ୍ଢେଇ କିଣି ଆଣ—ବଡ଼ ବଡ଼ ଦୋକାନର ଭେଲ୍-ଭେଟ୍ ପ୍ରଦର୍ଶନୀ ମଞ୍ଚରେ ଛିଡ଼ା ହୋଇଛନ୍ତି, କଟାକ୍ଷକୁ ହିଡାନ୍ଦୃତ କରି ।'

ଦାଦା ଭାବୁଥିଲେ ନିଜର ଉନ୍ନତ ରୁଚି କଥା । ମୋ ପରି କଳାଜ୍ଞାନହୀନ ବ୍ୟକ୍ତି ତାଙ୍କ କଥାର ଉଚିତ ଜବାବ୍ ଦେଇ ପାରିଛି, ମୋର ଅମୃତପ୍ରସାଦ । ଗମ୍ଭୀର ବାତାବରଣ ମଧ୍ୟରେ ବିଦାୟ ନେଲି ।

ସନ୍ଧ୍ୟାରେ ବୁଲିଚାଲି ବେଳେ ଦାଦାଙ୍କୁ କେତେ କନ୍ୟା ଦେଖାଏ, ଦାଦା କହନ୍ତି—ସ୍ୱା ଆଖିରେ ଭଙ୍ଗୀ ନାହିଁ; ତା ଚାଲିରେ ନୃତ୍ୟ ନାହିଁ; ତା ଦେହର ରଙ୍ଗ

ମନରେ କୁଣ୍ଠା ଭରେ, ତା ମୁଖର ଜାଡ୍ୟ ମନକୁ ଛୁଇଁବ କରେ । ଏ ସ୍ଥୂଳାଙ୍ଗୀ, କିଛି ଦିନ ପରେ କୁଆରବନ୍ଧ ଭାଙ୍ଗିବାକୁ ପଡ଼ିବ । ସେ ନହେଲା ବେଳ, ଅଣ୍ଟାରୁ ସତେ କି ଉପର ଦେହଟା ଉପୁଡ଼ି ପଡ଼ିବ ।

ଏମିତି କେତେ ଚିଥ, କେହି ଦାଦାଙ୍କ ମନକୁ ଆସିଲେ ନାହିଁ । ଦାଦା କାହା ମନକୁ ଛୁଇଁବେ କି ନାହିଁ ଗବେଷଣା କରିବା ଲାଗି ପ୍ରସ୍ତାବ ଦେଲି— ବିଜ୍ଞାପନ ।

କେତେ ଥର ଲେଖା ହୋଇ ଚିରା ହେଲା—ଶେଷକୁ ପତ୍ରେପରେ ରହିଲା ଏତିକି—କ୍ଷୀଣାଙ୍ଗୀ, ଗୌରବର୍ଣ୍ଣା, ସୁନ୍ଦରୀ, ସୁଶିକ୍ଷିତା ପାତ୍ରୀ ଆବଶ୍ୟକ, ବୟସ୍କା । ଯେ କୌଣସି ଜାତିର ହେଉ, ଚିନ୍ତା ନାହିଁ । ଦରଖାସ୍ତ ସହିତ ଫଟୋ ଅପରିହାର୍ଯ୍ୟ । ପାତ୍ର ବୟସ୍କ, ବିଦ୍ୱାନ୍, ଅବସ୍ଥାପନ୍ନ, ଜୀବନକ୍ଷେତ୍ରରେ ସୁବ୍ୟବସ୍ଥିତ ।

ମୋ ଠିକଣାରେ ଆସିଲା ଦରଖାସ୍ତ—ମାତ୍ର ପାଞ୍ଚୋଟି । ସମସ୍ତେ କ୍ଷୀଣାଙ୍ଗୀ, ସୁନ୍ଦରୀ, ସୁଶିକ୍ଷିତା । ଏ ଫଟୋ ପ୍ରାର୍ଥିନୀର ନା କୌଣସି ସିନେମା ନକ୍ଷତ୍ରର ? ଚେହେରାରେ ଜଣକୁ ଜଣେ ବଳି—ଗୋଲାପ, ପଦ୍ମ, ରଜନୀଗନ୍ଧା । ଦାଦା କାହାକୁ ବାଛିବେ ? ଏତେ ଗୁଡ଼ିଏ ସୁନ୍ଦରୀ ବାହା ନ ହୋଇ ରହିଛନ୍ତି କାହିଁକି ?

ନିର୍ବାଚନର ଅନ୍ୟ ପନ୍ଥା ନ ପାଇ ଦାଦା ଦରଖାସ୍ତରେ ଖୋଜିଲେ କବିତ୍ୱ, ଅକ୍ଷରର ସାଜସଜା ଶ୍ରୀରୁ ସଜ୍ଜନଶୀଳତାର ପରିଚୟ । ଯେ ଯେପରି, ତା ଅଭିବ୍ୟକ୍ତି ସେହିପରି ହେବା ସମ୍ଭବ ।

ଦୁଇଟି ଦରଖାସ୍ତ ବାଛି ଦାଦା ଚିଠିପତ୍ର ଚଳାଇଲେ । ଇତିହାସ ଗବେଷଣା ଗ୍ରନ୍ଥ ତାଙ୍କୁ ଇଂରାଜୀ, ବଙ୍ଗଳା କବିତା ବହି ଓଲଟାଇବାକୁ ପଡ଼ିଲା । କବିତାର ଏପରି ପ୍ରୟୋଜନୀୟ ମୂଲ୍ୟ ଦାଦାଙ୍କ ଜୀବନରେ ଆଉ କେବେ ଦେଖା ଯାଇ ନ ଥିଲା ।

ପତ୍ରର ପ୍ରତି ଧାଡ଼ିରେ କବିତ୍ୱ—ଯେ ପ୍ରିୟତମା ହେବ ତା ପାଖକୁ କଣ ସାଧାରଣ ଭାଷାରେ ଲେଖା ଯାଏ ? ଯେଉଁଠି ହୃଦୟର ଦିଆନିଆ, ସେଠି ମସ୍ତିଷ୍କପ୍ରସୂତ ଭାଷା ଓ ଐତିହାସିକ ଗବେଷଣା ଅପେକ୍ଷା ଭାବପ୍ରବଣ ଅନୁଭୂତି, ତାରଲ୍ୟ ଲଘୁ କବିତା ଅଧିକ କାମ ଦିଏ ।

ବୟସସୁଲଭ ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦାସଚେତନତା ପତ୍ରକୁ ଅନେକ ସମୟରେ ଅସ୍ୱାଭାବିକ କରୁଥାଏ । ଜୀବନରେ ଯେ ପ୍ରେମ କରି ନାହିଁ, ଏ ବୟସରେ ତାର

ଚେଷ୍ଟା ଭସ୍ମଙ୍କର ଦଶୁଥାଏ । ପତ୍ରକୁ ସାହିତ୍ୟିକ ସ୍ତରରେ ପହଞ୍ଚାଇବାକୁ ଦାଦାଙ୍କୁ ଗଳଦ୍‌ଘର୍ମ ହେବାକୁ ପଡ଼େ ।

ଯାହାହେଉ, ପତ୍ର ଗଲା, ପତ୍ର ଆସିଲା । ନଜର ଦୁଇ ପ୍ରେମିକାଙ୍କର ପତ୍ର ଦାଦା ମୋତେ ଶୁଣାନ୍ତି । ଜଣେ ପ୍ରେମିକର ଦୁଇ ପ୍ରଣୟିନୀ, ଉପନ୍ୟାସର କାହାଣୀ ନୁହେଁ; ଘଟଣାର ନାଟକ, ବାସ୍ତବ ଜୀବନର ।

ଏଇ ପତ୍ରାଳାପର ଘନଘଟା ମଧ୍ୟରେ ଦିନେ କହିଲି—ଦାଦା ଉପକ୍ରମଟା ଅତି ଦୀର୍ଘ ହୋଇ ଯାଉଛି ।

ଦାଦା କହିଲେ—ଦୁହେଁ କବି, ଦୁହେଁ ରସିକା, ଦୁଇ ଦିଗରେ ସମାନ ଆକର୍ଷଣ ।

"ଦୁଇ ନାଆରେ ଗୋଡ଼ ଦେଲେ ପତନ ଅବଶ୍ୟମ୍ଭାବୀ ।"

"କଣ କରିବ ?"

"ଇଣ୍ଟରଭ୍ୟୁ !"

"ଅସମ୍ଭବ, ଏଇଟା ସ୍କୁଲଘର ନୁହଁ । ଭଦ୍ରଘର କନ୍ୟା, ଡାକିବା ଅଶୋଭନୀୟ ହେବ ।"

"ତା ନ ହେଲେ ତୁମେ ଯାଅ, ପ୍ରାର୍ଥୀମାନଙ୍କ ପାଖେ ନିଜେ ଇଣ୍ଟରଭ୍ୟୁ ଦେଇ ଆସ ।"

ସୁସ୍ମିତା—ପିତା ଭୂତନାଥ ବାନାର୍ଜି, ୨୦୩ ଟଲିଗଞ୍ଜ । ହଁ ସୁସ୍ମିତା ଏଇ ଠିକଣା ତ ଦେଇଛି ! ଦାଦା ଦରଜାକୁ ଯାଇ ଡାକିଲେ—ଠାକୁର୍ ।

ଠାକୁର୍ ଆସିଲେ ନାହିଁ, ଆସିଲେ ଠାକୁରାଣୀ—ସୁମିତ୍ର ସେନଙ୍କ ସ୍ତ୍ରୀ— ମହାଶୟ, କାହାକୁ ଖୋଜୁଛନ୍ତି ?

'ଭୂତନାଥ ବାନାର୍ଜି—ତାଙ୍କ କନ୍ୟା ସୁସ୍ମିତା......'

'କିଏ ଆପଣଙ୍କୁ ଭୁଲ୍ ଠିକଣା ଦେଇଛି । ଏ ପଡ଼ାରେ ଏଇ ନାମରେ କୌଣସି ଭଦ୍ରଲୋକ ନାହାନ୍ତି । ସୁସ୍ମିତା କଣ ଆପଣଙ୍କର...'

'ହଁ, ସ୍ତ୍ରୀ...'

'ଓ, ଭୂତନାଥବାବୁ ଆପଣଙ୍କର ଶଶୁର । ବସା ବଦଳାଇ ଏ ପଡ଼ାକୁ କେହି ତ ଆସି ନାହାନ୍ତି, ନା । ଭୁଲ୍, ନିଶ୍ଚୟ କିଛି ଭୁଲ୍ ହୋଇଛି !'

ହଠାତ୍ ଆକାଶରୁ ଖସିବାର ଅନୁଭବ, ବୁଝି ସମ୍ଭାଳି ପାରୁ ନ ଥିଲି । ଏତେ ବଡ଼ ଫାଙ୍କି, ଶାଠ୍ୟ ? ଓଃ ।

ଅନ୍ୟ ନାୟିକା ପାଖକୁ ଯିବେ କି ନାହିଁ ଭାବୁ ଭାବୁ ମାଟିଆବୁରୁଜ ବସ୍ ପହଞ୍ଚିଗଲା, ଦାଦା ଉଠିଲେ । ଠିକଣା ଦେଖି ଦେଖି ଗୋଟାଏ ଗଳି ମୁଣ୍ଡରେ ପହଞ୍ଚିଲେ । ଗୋଟାଏ ପୋଖରୀ—ଆବର୍ଜନାର କୁଣ୍ଡ । ନର୍ଦ୍ଦମାର ଧାରେ ଧାରେ ଘୁଷୁରି ଚରୁଛନ୍ତି । ପୋଖରୀ କୂଳରେ ଗୋଟିଏ ଦୋତାଲା କୋଠା, ଗୋଟିଏ ଫ୍ଲାଟ୍‌ରେ ଅଛନ୍ତି ସିପ୍ରା ଘୋଷ । ମାଟିଆବୁରୁଜ ଗାର୍ଲ୍‌ସ୍ ହାଇସ୍କୁଲର ପ୍ରଧାନ-ଶିକ୍ଷକା । ବୟସ ପଇଁତିରିଶ ସେପାଖେ, ବାଳ ଧଳା ହୋଇ ଆସିଲଣି । ସ୍ଥୂଳାଙ୍ଗୀ, ଓଠ ଫିକା ପଡ଼ି ଆସିଲଣି, ଦାନ୍ତ ବୋଲବସା । ଫଟୋ ଚେହେରା ସହିତ ଏହାର କୌଣସି ସାମଞ୍ଜସ୍ୟ ନାହିଁ । ବହୁ ଯତ୍ନରେ ନିର୍ମିତ ଦାଦାଙ୍କ ସ୍ୱପ୍ନର ତାଜ୍ ହଠାତ୍ ଭୁଷୁଡ଼ି ପଡ଼ିଲା ।

ମନର ଭାବ 'ଲୁଚାଇ ରଖି ଦାଦା ଆଳାପ ଜମେଇଲେ । ସିପ୍ରାର ବ୍ୟବହାର ମଧ୍ୟ ଅନ୍ତରଙ୍ଗ । ଚା ଜଳଖିଆ ମଗା ହେ'ଇ ଆସିଲା—ଆଦରଣୀୟ ଅତିଥି, ପଞ୍ଜର ପ୍ରଶସ୍ତି ମଧ୍ୟରେ ଧରା ପଡ଼ିଛନ୍ତି, ଜାଲରେ ମାଛ ପରି ଛଟପଟ ହେଉଛନ୍ତି ।

ସନ୍ଧ୍ୟା । ବିଦାୟ ଦେବା ଲାଗି ସିପ୍ରା ଆଗେ ହିଁ ଠିଆ ହେଲା, କହିଲା—ମତେ ଭୁଲ୍ ବୁଝିବେ ନାହିଁ । ଜୀବନରେ ବହୁତ ହାରିଛି, ନିଜକୁ ବୋଲି ଅଛି ମାତ୍ର ଖେଳକୌତୁକ । ବହୁ ହୃଦୟ ସହିତ ଲୁଚକାଳି ଖେଳ ମୋର ଏକ ବହୁଦିନର ଆମୋଦ । କିଛି ବନ୍ଧନ ନାହିଁ; ସ୍ୱାତନ୍ତ୍ର୍ୟରେ କିଛି ହାନି ଘଟେ ନାହିଁ । ଜୀବନ ଅର୍ଥ ଖେଳ । ମୋତେ ଭୁଲ୍ ବୁଝିବେ ନାହିଁ । ନମସ୍କାର ।

ଏ ମଧ୍ୟରେ ଚାରିମାସ ଅତୀତ ହୋଇଛି । ଦାଦା ବାସ୍ତବତାର ସମତଳ କ୍ଷେତ୍ରକୁ ଓହ୍ଲାଇଛନ୍ତି—ତାଙ୍କ ବୋଧ, ମୂଲ୍ୟାଙ୍କନ ସବୁ ଭୁଲ୍ । ସେ ପସନ୍ଦ ନାପସନ୍ଦ କରିବେ କଣ ? ରୁଚିର ପ୍ରଶ୍ନ କାହିଁ ? ଖୋଜୁ ଖୋଜୁ ଯାହା ମିଳିବ—ଗାଈ ଅବା ବାଳଗରଡ଼ା । ବଞ୍ଚିବା ଲାଗି ଏହା ଲୋଡ଼ା । ଦାଦା ପତ୍ନୀ ଆଡ଼କୁ ଦୃଷ୍ଟି ଫେରାଇଲେ ।

ଦାଦା ମୋତେ ଆଜି ନିମନ୍ତ୍ରଣ କରିଛନ୍ତି, ବୌଦିଙ୍କ ରନ୍ଧଣା ଚଖାଇବେ । ବୌଦି କେବେ ଆସିଲେ ? କେଉଁଠୁ ?

ଗୌରାଙ୍ଗୀ, ସୁନ୍ଦରୀ, ସୁକଣ୍ଠୀ, କିନ୍ତୁ ଶିକ୍ଷିତା ନୁହନ୍ତି । ପିତା ଡାକ୍ତର, କିନ୍ତୁ ହାତଯଶ ନାହିଁ; ବହୁ ଠେଲାପେଲାରେ 'ସଂସାର ଚଳେ । ପଣ ଦେବାକୁ ଅକ୍ଷମ । ତାଙ୍କ କନ୍ୟା ତିରିଶି ବର୍ଷ ଅଭିଆଡ଼ୀ ରହିଥିଲେ, ହୁଏତ ଆଜୀବନ ରହିଥାନ୍ତେ ।

ଦାଦା ତାଙ୍କୁ ପ୍ରଥମାର ଦୁଇ ଟ୍ରଙ୍କ୍ ଶାଢ଼ୀ, ଅଳଙ୍କାର ବାକ୍ସଟି ଦେଇ କହୁଛନ୍ତି, ଟ୍ରେଞ୍ଚ ଖାଇ, ଦେଖ, ମୋ ସ୍ତ୍ରୀ ମରିନାହିଁ । ଅନ୍ୟ ରୂପରେ ଫେରି ଆସିଛି ।

'ସେ ଦିନର କଳ୍ପନା ଏଇ ରୂପରେ ବାସ୍ତବ ହେଲା । ଏଇ ତେବେ ମୋ ଝିଉଜ, ନା ନୂଆବୋଉ, ନା ବୌଦି ।'

'ଝିଉଜ, ନୂଆବୋଉ କି ହେ ?'

'ସେ ବୌଦି ସେଇ, ଯେଉଁ ଦେଶରେ ଯେଉଁ ନାମରେ ଥିଲେ ବି ସେଇ, ଯେତେ ପୁରାତନ ହେଲେ ବି ଚିର ନୂତନ ।'



# ସୂର୍ଯ୍ୟାସ୍ତର ଜଣେ ଶେଷ ଗ୍ରାହକ

ଏମିତି ଗପ କରୁ କରୁ ଗଳ୍ପଲେଖାର ଖିଅ ବାହାରି ପଡ଼େ, ମୋର ଧାରଣା ନ ଥିଲା । ନରୋତ୍ତମବାବୁଙ୍କ ମନ ତ ଅନୁଭୂତିର ଏକ ଭଣ୍ଡାର । କଥା ଆରମ୍ଭ କରୁ କରୁ ସେ ସୁଅ ହୋଇ ବୋହିଯାନ୍ତି କେତେ ଦିଗ୍‌ବଳୟକୁ । ଅଥଚ ସେ ଗଢ଼ି ବସନ୍ତି ନାହିଁ ଗଳ୍ପ, ଉପନ୍ୟାସ । ସାହସ ହୁଏ ନାହିଁ । ସମସ୍ତଙ୍କ ହାତେ କଣ ସାହିତ୍ୟ ଜୁଟୁରେ ?

ତେଣୁ ସାହିତ୍ୟିକ ବା କଳାକାର ନ ହୋଇ ସେ ହୋଇ ଉଠିଛନ୍ତି ସାହିତ୍ୟ ବା କଳାପ୍ରେମୀ—ଜଣେ ଗ୍ରାହକ ।

ମୋର ଗଳ୍ପ ଲାଗି ବିଷୟବସ୍ତୁର ଅଭାବ ଘଟିଲେ ମୁଁ ତାଙ୍କ ପାଖକୁ ଧାଇଁଯାଏ । କାଳେ ସଚେତନ ହୋଇଯିବେ, ମୋ ଉଦ୍ଦେଶ୍ୟ ତାଙ୍କୁ ଜଣାଏ ନାହିଁ ।

ସେଦିନ କଥା ପ୍ରସଙ୍ଗରେ ସେ କହିଲେ—ଦେଶଟା ଗୋଟାଏ ମରୁଭୂମି ହୋଇଗଲା । ଶିଳ୍ପ, କଳା, କବିତା ଆଉ ଉଧେଇବ କିପରି ? କବି, କଳାକାର ତ ଭୋକରେ ମରୁଛନ୍ତି ।

ମୁଁ କହିଲି—ଟିକିଏ ହେଲେ ବିଷୟବୁଦ୍ଧି ଥିଲେ ଏ ଦୁର୍ଦ୍ଦଶା ଭୋଗନ୍ତେ କାହିଁକି ? ଅହୋରାତ୍ର ଖାଲି ଲେଖା, ଅଙ୍କା ବା ମୂର୍ତ୍ତିଗଢ଼ା । ନରୋତ୍ତମବାବୁ ଟିକିଏ ଚମକି ଉଠି କହିଲେ—ଆପଣ କଣ କହୁଛନ୍ତି—ହାଟବେପାର କରିବେ ? ଶିଳ୍ପୀ, କବି, କଳାକାର ଗୋଟାଏ ଗୋଟାଏ ଖିଆଲ ଘେନି ଚାଲନ୍ତି । ବେପାର ବଣିଜ କରି ବସିଲେ କଳାର ହାନି ଘଟେ । ବଡ ବଡ କଳା, ସ୍ଥାପତ୍ୟ ବା ସାହିତ୍ୟ ପଛରେ ଯେପରି ବଡ଼ ବଡ଼ ଶିଳ୍ପୀ, ସ୍ଥପତି ବା କବି ଅଛନ୍ତି, ସେହିପରି ଜଣେ ଜଣେ ବଡ ପୃଷ୍ଠପୋଷକ, ଗ୍ରାହକ, ରାଜା, ଅମୀର ବା ବାଦସାହା ଅଛନ୍ତି । ଏଇ ରସିକ ଗ୍ରାହକଙ୍କ ଯୋଗୁଁ କଳା ବଞ୍ଚେ, ଉଧାଏ, କବିତ୍ୱର ମାନହାନି ଘଟେ ନାହିଁ । ତେଣୁ କବି କହିଛନ୍ତି—।

"ବିବେକ ଗ୍ରାହକ କୋଟି କବି ଆସୁ ଘେନି
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ ?"

ତାଜମହଲ ନିର୍ମାଣ କଥା ଜାଣିଛନ୍ତି ?

'ନା'

'ତାର ମୁଖ୍ୟ ଶିଳ୍ପୀ ସାଜାହାନଙ୍କୁ କହିଥିଲେ—ସାତୋଟି ହାତୀ ଯେତେ ବୋହି ପାରିବେ ସେତେ ଅସରଫି ନଦ ଆଣ । ଶହ ଶହ ବସ୍ତା ଅସରଫି, ମଣିମୁକ୍ତା, ବୈଦୁର୍ଯ୍ୟ, ପଦ୍ମରାଗ ଜଦା ହୋଇ ଆସିଲା । କୌତୁକ ଦେଖିବା ଲାଗି ବନେ ହେଲେ ସ୍ୱୟଂ ମହାମହିମ ବାଦସାହା । ଶିଳ୍ପୀ ମାହୁନ୍ତମାନଙ୍କୁ ଆଦେଶ ଦେଲେ—ସମସ୍ତ ମଣିରତ୍ନ, ପୋଖରାଜ, ମରକତ ଯମୁନା ସ୍ରୋତରେ ଢାଳିଦିଅ । ବସ୍ତା ପରେ ବସ୍ତା ସମସ୍ତ ରତ୍ନ ତଳା ହୋଇଗଲା । ଶିଳ୍ପୀ ଏକ ଲୟରେ ବାଦଶାହଙ୍କ ମୁହଁକୁ ଚାହିଁଥାନ୍ତି । ଘୃଣା ବା ବିରକ୍ତିରେ ତାଙ୍କର ଭ୍ରୂଲତାର୍ଦ୍ଧ କୁଞ୍ଚିତ ହେଲା ନାହିଁ । ଶିଳ୍ପୀ ହାତ ଯୋଡ଼ି କହିଲେ—ଜାହାଁପନା କଳାର ପ୍ରକୃତ ଗ୍ରାହକ । ଅଜସ୍ର ଭାବରେ ଇତର ପଦାର୍ଥ ପରି ଧନ ରତ୍ନ ଫିଙ୍ଗି ଫୋପାଡ଼ି ଦେଲେ ବି ଜାହାଁପନାଙ୍କ ମନରେ ତିଳେ ହେଲେ ବିକାର ଆସିଲା ନାହିଁ; ଧାରା ଶ୍ରାବଣ ପରି ଅକାତର । ବହୁ ମନ୍ଦିର, ମସ୍‌ଜିଦ୍‌, ଚର୍ଚ୍ଚ ଅଧା ବା ଅପୂର୍ଣ୍ଣ ହୋଇ ରହିଯାଏ । ବ୍ୟୟକୁଣ୍ଠତା ଏହାର ଗୋଟିଏ ମୁଖ୍ୟ କାରଣ; କଳାର ଆର୍ଥିକ ମୂଲ୍ୟ କେତେ କେହି ଜାଣେ ନାହିଁ; କଳନା କରି ପାରେ ନାହିଁ । ଜାହାଁପନା ପ୍ରକୃତ କଳାପ୍ରେମୀ, ତାଜମହଲ ପରି କୀର୍ତ୍ତି ଗଢ଼ିବାକୁ ସମ୍ପୂର୍ଣ୍ଣ ଭାବେ ସମର୍ଥ । ମୋଗଲ ସମ୍ରାଟଙ୍କ ମନ ପରଖିଲା ପରେ ଶିଳ୍ପୀ ନିର୍ମାଣକାର୍ଯ୍ୟରେ ଅଗ୍ରସର ହେଲେ ।

ଇଜିପ୍‌ଟର ପିରାମିଡ୍‌, ଇଣ୍ଡୋନେସିଆର ବୋର୍‌ବୁଦର୍‌, କାମ୍ବୋଡ଼ିଆର ଅଙ୍ଗର ଭଟ୍‌, କୋଣାର୍କ ବା ଖଜୁରାହୋ ଯେ ଗଢ଼ିଛି, ଯେ ଖୋଳାଇଛି ଏଲୋରା ବା ଉଦୟଗିରିର ଗୁମ୍ଫା, ଅଙ୍କାଇଛି ଅଜନ୍ତା, ସିଗିରିଆ ବା ରାବଣଗୁମ୍ଫାର ଭିତ୍ତିଚିତ୍ର, ସେ ଇତିହାସରେ ବେହିସାବୀ ଭାବେ ଖ୍ୟାତ । 'ମୁଁ ଦେବାଳିଆ ହୋଇଯିବି' 'ମୋ ସିଂହାସନ ଟଳମଟଳ ହୋଇଯିବ'—ଏ ଚିନ୍ତା କେବେ ସେଇ ଦିଲ୍‌ଦାର୍‌ ସମ୍ରାଟକୁ ବିବ୍ରତ କରିନାହିଁ । ଏ ମୂର୍ତ୍ତିରେ ତ ଅଳ୍ପ ଖର୍ଚ୍ଚ ହେଲା, ସେ ମୂର୍ତ୍ତିରେ କାହିଁକି ବେଶୀ ଖର୍ଚ୍ଚ ହେଲା ? ସେ ଶିବେଇସାମନ୍ତମାନଙ୍କୁ କୈଫିୟତ୍‌ ମାଗିନାହିଁ । ଜାନତଗତି ବା ବ୍ୟବସାୟବୁଦ୍ଧି ତାର ନଥିଲା । ନଥିଲା ବୋଲି ସେ ଭୁବନମଣ୍ଡନ କୀର୍ତ୍ତି ଗଢ଼ି ପାରିଲା । କୃଷିସଭ୍ୟତାର ସେ ରସିକତା, ଅକାତରତା ଶିଳ୍ପସଭ୍ୟତାରେ ଦୁର୍ଲଭ । ଏବେ ବହୁ ଯୋଜନା, କଳ୍ପନା, ବହୁ ମାପଚୁପ୍‌, ଓଜନବାଜନ, ସବୁ ହିସାବ ଦୋରସ୍ତ; ପ୍ରୟୋଜନନିର୍ଭର; ଭୋଗ ମୁଖ୍ୟ । ମାନବମନର ମହିମାନ୍ୱିତ ଶ୍ରେଷ୍ଠ କୃତିତ୍ୱ ଆଉ ଦେଖିବାକୁ ମିଳୁନାହିଁ । ମିଳୁଛି କୁଏତ ଗୋଟାଏ ସୁରୁଙ୍ଗ ଯୌଥ ନଥିଲେ ଗୋଟାଏ ମହଲ ଯାଦୁଘର । ଇତିହାସର ସେଇ ଅଜ୍ଞାତ

ପ୍ରତୀକମାନ ଏବେ ବି ପୃଥିବୀର ଶ୍ରେଷ୍ଠ ଦର୍ଶନୀୟ ବସ୍ତୁ ହୋଇ ରହିଛି । ଭ୍ରମଣ-କାରୀ ବୁଲିଦେଖୁଛନ୍ତି ରୋମ୍‌ରୁ ଅନୁରାଧାପୁର, କାଏରୋରୁ ଭୁବନେଶ୍ୱର, ଫ୍ଲରେନ୍‌ସ୍‌ରୁ ଏଥେନ୍‌ସ୍‌ । ପୁଣି ସେ ଯୁଗରେ ଶିଳ୍ପର ପ୍ରସିଦ୍ଧି ଅଛି, ଶିଳ୍ପୀର ନାହିଁ । ଆତ୍ମଦାନ ବା ବଳୀପର ନମୁନା ସେସବୁ, ଈଶ୍ୱରଙ୍କ ଚରଣ ତଳେ ଉତ୍ସର୍ଗୀକୃତ । ମାଇକେଲ୍‌ ଆଞ୍ଜେଲୋ, ରାଫେଲ୍‌, ଲିଓନାର୍ଡ଼ ଡା ଭିଞ୍ଚି ବା ରେମବ୍ରାଣ୍ଟଙ୍କ ପରି ଆମର କେତେ ଜଣ ଶିଳ୍ପୀ ଇତିହାସରେ ଖ୍ୟାତ ? ଅଥଚ ସେମାନଙ୍କ କୀର୍ତ୍ତି 'ମୋନାଲିସାର ହସ' ବା 'ମାଡୋନା ଓ ଶିଶୁ' ଠାରୁ କେଉଁ ଗୁଣରେ ଊଣା ?

ଶିଳ୍ପରେ ଯେପରି ଅମାପ ଖର୍ଚ୍ଚ, ଶିଳ୍ପୀର ଜୀବନରେ ସେହିପରି କିଛି ମାପଖାପ ନାହିଁ । ପ୍ରାଣପ୍ରାଚୁର୍ଯ୍ୟର ଅନୁଭବ ଲାଗି ସେ ଜୀବନକୁ ଅକୁଣ୍ଠଭାବେ ଫିଙ୍ଗିଦିଏ, ଢାଳିଦିଏ, ବା ଜାଳିଦିଏ । କେମିତି ଭଲ ଖାଇବାକୁ ମିଳିବ, କି ଉପାୟ କଲେ ବେଶୀ ପଇସା ରୋଜଗାର ହେବ, ସେ ବିଷୟ ବସେନାହିଁ । ଉତ୍କୃଷ୍ଟ କଳା ସ୍ୱତଃସ୍ଫୂର୍ତ୍ତ ଖିଆଲର ହିଁ ସୃଷ୍ଟି । ଅବଚେତନମନରୁ ତାର ଜନ୍ମ ।

ସେଦିନର ଜୀବନସତ୍ୟ ଆଜି ଗଳ୍ପ ହୋଇଯାଇଅଛି । ଶୁଣିବେ ? ନରୋତ୍ତମବାବୁ କହି ଚାଲିଲେ ।

ଗୋଟାଏ ଖଣ୍ଡିଅଭୂତ ପରି ସେ ଆସିଥିଲା । ହାତରେ ତାର କାଠର ଗୋଟିଏ କୋଣାର୍କ । ଦୁର୍ଗନ୍ଧ, ଅପରିଚ୍ଛନ୍ନ, ଦାଢ଼ି ଧୂଳିଧୂସର, ଦାନ୍ତରେ ପାନ-ବୋଳ । ବସ ବୋଲି କହିବାକୁ କୁଣ୍ଠା ହେଲା ମୋର । ସେ ମଧ୍ୟ ଅଭିଜାତ ବଳିଷ୍ଠ ସମାଜରେ ନିଜର ସ୍ଥିତିର ମହତ୍ତ୍ୱ ଯାହା ହୃଦୟଙ୍ଗମ କରିଥିଲା, ତଦନୁଯାୟୀ ନିଜର ଆସନ ବାଛି ନେଲା । ସେ ବସିପଡ଼ିଲା ଚଟାଣରେ ।

ଚାରିଆଡ଼େ ମୋର ଗଦା ଗଦା ଫାଇଲ, କିରାଣୀଙ୍କ ହିସାବ କଷାକଷି ଓ ଟାଇପ୍‌ ରାଇଟରର ଖଟ ଖଟ ଶବ୍ଦ ମଧ୍ୟରେ ଥରଟିଏ ସେଇ ମନ୍ଦିର ଉପରେ ଆଖି ବୁଲାଇ ଆଣିଲି । ଆଶ୍ଚର୍ଯ୍ୟ ଅସାମଞ୍ଜସ୍ୟ ଶିଳ୍ପୀ ଓ ଶିଳ୍ପ ମଧ୍ୟରେ । ଶିଳ୍ପ ଦେଖି ଶିଳ୍ପୀଠାରେ ଅନୁରୂପ ଶ୍ରୀ ଖୋଜି ବସିଲେ ଶୁଣିଛି—ଦର୍ଶକ ବିଡ଼ମ୍ବିତ ହୁଅନ୍ତି ।

ଶିଳ୍ପୀର ମନ ରଖିବା ଲାଗି ଗମ୍ଭୀର ଭାବରେ କହିଲି—ଉପହାର ଲାଗି ଧନ୍ୟବାଦ, ସାଥି ।

ଆକାଶରୁ ଖସି ପଡ଼ିଲା ସେ । ଶୁଣିଥିଲା—ଜଣେ ଗ୍ରାହକ ମୁଁ, ଯେଉଁମାନେ ଦେଶର ଗୌରବ ବୃଦ୍ଧି ଲାଗି ଶିଳ୍ପ ବା ସାହିତ୍ୟ ସାଧନା କରନ୍ତି, ସମାଜରେ

ସେମାନଙ୍କ ସ୍ଥିତି ବଜାୟ ରଖିବା ଲାଗି ସାହାଯ୍ୟ କରେ । ଦୁସ୍ଥ ଶିଳ୍ପୀ ପ୍ରତି ବ୍ୟଙ୍ଗ ମୋ ପକ୍ଷରେ ଏକ ନିଷ୍ଠୁରତା । ଅନୁତାପରେ ଜିହ୍ୱା ଦଂଶନ କରି ଚେକ୍ ଖଣ୍ଡିଏ ଲେଖି ଶିଳ୍ପୀ ହାତକୁ ବଢ଼ାଇଦେଲି ।

'ଏ କାଗଜଖଣ୍ଡି କଣ କରିବ ?' ଶିଳ୍ପୀ ପଚାରିଲା ନାହିଁ, କେବଳ କିଂକର୍ତ୍ତବ୍ୟବିମୂଢ଼ ହୋଇ ମୋ ଆଡ଼କୁ ଚାହିଁ ରହିଲା । ତା ସାଥିରେ ବ୍ୟାଙ୍କ୍‌କୁ ଜଣେ ଲୋକ ପଠାଇଲି । ପାଞ୍ଚଶ ଟଙ୍କା ' ଅବାକ୍ ହୋଇ ଶିଳ୍ପୀ ଘଡ଼ିଏ ଟଙ୍କାକୁ ଚାହିଁ ରହିଲା । ଆନନ୍ଦ ଓ କୃତଜ୍ଞତାରେ ତାର ମନ ପୂରିଉଠିଲା ।

ଠିକଣା ବୁଝି ରଖିଥିଲି; ଦୁଇ ତିନି ଦିନ ପରେ ତା ଘରେ ଯାଇ ପହଞ୍ଚିଲି । ଘର ତ ନୁହେ, ଭୁଇଁକୁଆଁ ଅଣଓସାରିଆ କୁଡ଼ିଆଟିଏ, ମହାନଦୀ କୂଳ ଗଡ଼ଗଡ଼ିଆ ଘାଟରେ ଯାହିତାହି ଆମ୍ବଡ଼ାମ୍ବିଶ କରି ଗଢ଼ିଚି । ତା ଭିତରେ ମୁଗୁର, ଝିହାଣ, କିଛି କାଠ, ପଥରଟିଏ । ମୂର୍ତ୍ତିଟିଏ ଗଢ଼ି ଦଶ ପନ୍ଦର ଟଙ୍କାରେ ବିକି କୌଣସିମତେ ଗୁଜୁରାଣ ମେଣ୍ଟାଏ । କେଉଁ ଦୂର ମଫସଲରେ ତାର ଘର । ଦୈନନ୍ଦିନ ଅଭାବ ଦୂର କରିବାକୁ ଅସମର୍ଥ ହୋଇ ଘର ଛାଡ଼ି ପଳାଇ ଆସିଛି ।

ତାକୁ ଦେଖିବାମାତ୍ରେ ପଚାରିଲି — ଟଙ୍କା କେମିତି ସବୁ ଖର୍ଚ୍ଚ କଲୁ ?

ଶିଳ୍ପୀ ନିରୁତ୍ତର । ତାଙ୍କର ଜଣେ ସଙ୍ଗୀ କହିଲା— ଧାର କରଜରେ ବୁଡ଼ି ଦାଣ୍ଡରେ ବାଟ ଚାଲିପାରୁ ନଥିଲେ । କିଛି କିଛି ଶୁଝି ଏବେ ନିଃଶ୍ୱାସ ମାରୁଛନ୍ତି ।

ତାପରେ ଶିଳ୍ପୀଙ୍କ ହାତରେ ଆଉ ପାଞ୍ଚଶଟଙ୍କା ଦେଇ ବରାଦ୍ ଦେଲି— ବରହଣୀର ପତ୍ରଲେଖା ।

ଶିଳ୍ପୀ ପ୍ରାଚୀନ ଗାତରେ ଅବିକଳ ମୂର୍ତ୍ତିଟିଏ ଗଢ଼ି ଆଣିଦେଲେ । ତାପରେ ପ୍ରସାଧନରତା ନାୟିକା, କୋଣାର୍କର ମର୍ଦ୍ଦଳବାଦନୀ, ସୁକୁମାରୀ ଓଡ଼ିଶୀ ନର୍ତ୍ତକୀ, ଗଜୋପରିସ୍ଥିତ ପାଲଟା ସିଂହ, ଚକ୍ର ଓ ଅଶ୍ୱସମ୍ବଳିତ ଗତିଶୀଳ କୋଣାର୍କ ରଥ । ଶତ୍ରୁ ସୈନ୍ୟମନ୍ଥନକାରୀ ବେଗଗାମୀ ଯୁଦ୍ଧାଶ୍ୱ । ଅଳ୍ପଦିନ ମଧ୍ୟରେ ଏ ସମସ୍ତ ବୈଠକଗୃହ ମଣ୍ଡନ କଲା ।

ଏ ବାଗରେ ପ୍ରାୟ ତିନିହଜାର ଟଙ୍କା ଖର୍ଚ୍ଚ କଲା ପରେ ଭାବିଲି— କେତେ ଦିନ ଶିଳ୍ପୀଙ୍କୁ ଆଉ ଏପରି ଚଳାଇପାରିବି ? ସାମାନ୍ୟ ଚାକିରିଟିଏ ତ ଅବଲମ୍ବନ । ତାଙ୍କର ଆର୍ଥିକ ପୋଷକତା ଲାଗି ଦେଶରେ ରଜା ବା ଜମିଦାର ନାହାନ୍ତି । ପୁଞ୍ଜି-ପତିର ପୁଞ୍ଜି ବୃଦ୍ଧିରେ ସହାୟକ ହୋଇ ନପାରିଲେ ସେ ସାହାଯ୍ୟ କରିବ କାହିଁକି ? ଦେଶରେ ତ ଧନ ବହୁତ ଅଛି, ରସିକ ମନଟିଏ ଦୁର୍ଲଭ । ଇଟାର ପର୍ବତ ଉପରେ

ପଙ୍ଗନ ନଦା ହେଉଛ । ଆସବାବ, ଆପଣାର ତୈଳଚିତ୍ର, ପରିବାରର ପଟଚିତ୍ର, ସମ୍ବର୍ଦ୍ଧନା ଲିପି । ରେଡ଼ିଓ, ଟେଲିଭିଜନରେ ଘର ଭରପୂର । ମୂର୍ତ୍ତି, ଚିତ୍ର ବା ଫ୍ରେସ୍କୋରେ କାନ୍ଥ ସଜାଇବାର ରୁଚି ଆଜି ବିରଳ ।

ଶିଳ୍ପୀ ଓ ଶିଳ୍ପକଳାକୁ ରକ୍ଷା କରିବା ପ୍ରୟାସରେ ଗୋଟିଏ ସାଂସ୍କୃତିକ ଓ ସାମ୍ବାଦିକ ସଂସ୍ଥାକୁ ଫୋନ୍ କଲି—

ଆଜ୍ଞା; ଜଣେ ଅଦ୍‌ଭୁତ ଶିଳ୍ପୀ—ତାର ମୂର୍ତ୍ତି ଦେଖି ମନେ ହୁଏ—ଏହାର ପୂର୍ବପୁରୁଷ ନିଶ୍ଚୟ ଗଢ଼ିଥିବେ—କୋଣାର୍କର ନବଗ୍ରହ ବା ଅରୁଣସ୍ତମ୍ଭ । ମୁକ୍ତେଶ୍ୱରର ତୋରଣ, ଜଗନ୍ନାଥ ମନ୍ଦିରର ବୋଇତ ଯାତ୍ରା, ରାଜାରାଣୀର ମୁଗ୍‌ଧା ନାୟିକା, ପର୍ଶୁରାମେଶ୍ୱର ଓ ସିଂହନାଥର ଚମତ୍କାରୀ ଭାସ୍କର୍ଯ୍ୟ । ତାଙ୍କୁ ବଞ୍ଚାଇ ପାରିଲେ ଉତ୍କଳର କଳା ଓ ଭାସ୍କର୍ଯ୍ୟ ନବକଳେବର ଧରି ଫେରି ଆସିବ । ଜଣେ ଫଟୋବାଲା ପଠାନ୍ତୁ । ଦୈନିକରେ ଜୀବନୀ ଓ ଛବି ଛାପନ୍ତୁ । ଉତ୍ତର ମିଳିଲା—ପ୍ରଧାନମନ୍ତ୍ରୀଙ୍କ ଶୁଭାଗମନ କାର୍ଯ୍ୟରେ ସମସ୍ତେ ବ୍ୟସ୍ତ । ବନ୍ୟା, ଧର୍ମଘଟ, ଘେରାଉ, ଦୁର୍ଭିକ୍ଷ, ଦୁର୍ମୂଲ୍ୟତା ଆଦି ବହୁ ଜଟିଳ ସମସ୍ୟା ମଧ୍ୟରେ ଶିଳ୍ପ, ସାହିତ୍ୟ ଆଦି ବିଷୟରେ ଚିନ୍ତା କରିବାକୁ କାହାକୁ ବେଳ କାହିଁ ? ଆମ ପାଖେ ଏବେ କୌଣସି ସାମ୍ବାଦିକ ନାହାନ୍ତି । ଆପଣ ଶିଳ୍ପୀଙ୍କୁ ଅଫିସ୍‌କୁ ପଠାଇ ଦିଅନ୍ତୁ ।

'ଶିଳ୍ପୀର ଆତ୍ମମର୍ଯ୍ୟାଦା ନାହିଁ ? ସେ ଯାଇ ଅଫିସରେ କରୁଣାପ୍ରାର୍ଥୀ ହୋଇ ଛିଡ଼ା ହେବ ? ଉଦାରତା ଦେଖାଇ ତା ଫଟୋ ନିଆଯିବ, ଅନୁଗ୍ରହ କରି ଛପାଯିବ । ଏହା ଅସହ୍ୟ । ଆପଣ ବରଂ ଗାଡ଼ି ପଠାଇ ସସମ୍ମାନେ ତାଙ୍କୁ କୁଟୀରରୁ ନିମନ୍ତ୍ରଣ କରି ନେଇଯାନ୍ତୁ ।'

ଗଣନାଟକ୍ତ୍ରବିତ୍ ଏତେ ଭାବପ୍ରବଣ କିପରି ହୋଇପାରେ ? ପ୍ରତିଭାପୂଜା ଆବଶ୍ୟକ, ଆମେ ବୁଝୁଛୁ । କିନ୍ତୁ ଏସବୁ ପାଇଁ ତ ବେଳକାଳ ଦରକାର । ସେ ସଙ୍ଗୀତ ନୃତ୍ୟକଳା ଏକାଡେମୀକୁ ଦରଖାସ୍ତ କରୁନାହାନ୍ତି କାହିଁକି ?

ଚନ୍ଦ୍ର ଶିକ୍ଷାପ୍ରଦ ଉପଦେଶ ଶୁଣିବା ପରେ ମୁଁ ଅନ୍ୟ ଏକ ସାଂସ୍କୃତିକ ସଂସ୍ଥାର ସର୍ବମୟ କର୍ତ୍ତାଙ୍କୁ ଫୋନ୍ କରିବାରୁ ସେ ଉତ୍ସାହ ବାଣୀ ଶୁଣାଇଲେ, କଳାର ଜଣେ ପଣ୍ଡା ପୁରୋହିତଙ୍କ ପରି—ତାଙ୍କର ମୂର୍ତ୍ତି ଆମେ ବିଦେଶ ପଠାଇବା, ବିଦେଶୀ ବଜାରରେ ତାର ଚାହିଦା ଅଛି । ସେ ସୁବିଧାମତେ ଆସି ମୂର୍ତ୍ତିଟିଏ ଦେଇ କୋଡ଼ିଏ ପଚିଶି ଯାହା ତାଙ୍କର ପ୍ରାପ୍ୟ, ନେଇଯିବେ ।

ଶିଳ୍ପୀ ଖଣ୍ଡପଥରର 'ଦଶାବତାର'ଟିଏ ଧରି ସେହି ଫର୍ମର ଅଫିସ୍‌ରେ ଏପଟ ସେପଟ ହେବାରେ ବିସ୍ମିତ ଦର୍ଶକମାନଙ୍କ ମନରେ ସଂଶୟ ଜାତ ହେଲା— ମୂର୍ତ୍ତି ଚୋର ?

ଚାରି ପାଞ୍ଚଥର ଆସି ଫେରିବା ପରେ ଶେଷରେ କର୍ତ୍ତାଙ୍କ ସହିତ ଶିଳ୍ପୀର ସାକ୍ଷାତ ହେଲା, ଚାରିଶହ ଟଙ୍କା ମିଳିଲା ।

ଉତ୍ପୀଡ଼ିତ ଶିଳ୍ପୀର ବ୍ୟତିବ୍ୟସ୍ତ ଓ ମ୍ରିୟମାଣ ମୁଖ ଦେଖି ସେହି କର୍ତ୍ତାଙ୍କୁ ପ୍ରାର୍ଥନା କଲି—ଏକକାଳୀନ କିଛି ଟଙ୍କା ଦେଇ ଦିଅ । ଦଶ କୋଡ଼ିଏ ଯାହା ଦେଉଛ ସେ ତ ଖାଇ ଦେଉଛନ୍ତି । କାଠ, ପଥର କିଣିବେ କିପରି ? ଲାଲ୍ ଫିତା କାରସାଦିରୁ ବଞ୍ଚାଅ, ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାଧୀନତା ଦିଅ, କଳ୍ପନାର ଉନ୍ମୁକ୍ତ ଲୀଳାଖେଳା ଲାଗି ଯଥେଷ୍ଟ ଅବସର ଦିଅ । ନହେଲେ ନିଶ୍ଚିନ୍ତ ହୋଇ ସେ ମୂର୍ତ୍ତି ଗଢ଼ି ବସିବେ କିପରି ?

ପ୍ରତିଶ୍ରୁତିଟିଏ ମିଳିଲା, ଅବଶ୍ୟ କୁଣ୍ଠିତ । ଟଙ୍କା ଅନୁଯାୟୀ କାର୍ଯ୍ୟ, ଘଟଣାର ଆବୃତ୍ତି—ପୁନରାବୃତ୍ତି । ମନୋବୃତ୍ତିରେ ପ୍ରାୟ ସମସ୍ତେ ବ୍ୟବସାୟୀ, ବଣିକ୍ ଯୁଗ ଏ ।

ବହୁଦିନ ପରେ ଶିଳ୍ପୀ ପୁଣି ଥରେ ମୋ ଘରକୁ ଆସିଲେ, ମ୍ଳାନତର । ବୋଧ ହେଲା—ବହୁ ଦୁର୍ଦ୍ଦଶା, ଯନ୍ତ୍ରଣା ଭିତରେ ଗତି କରୁଛନ୍ତି ସେ । ତା ମଧ୍ୟରେ ଭାବିଛନ୍ତି— ଯୁଗୋପଯୋଗୀ ନ କଲେ ଶିଳ୍ପର ସମାଦର ହେବ ନାହିଁ ।

ଶିଳ୍ପୀ ନୂତନ ଶିଳ୍ପର ନମୁନାଟିଏ ଆଣି ମୋ ସାମ୍ନାରେ ଥୋଇଲେ— କାଠର ବଗଟିଏ—ସୁଇଟ୍ ଟିପିହେଲଷରି ସିଗାରେଟ୍‌ଟିଏ ଥଣ୍ଟରେ ଗୁଞ୍ଜି ହୋଇ-ଯାଉଛି ।

କ୍ରୋଧରେ ମୋ ହୃଦୟ ଜର୍ଜରିତ ହୋଇଗଲା, ତଥାପି ମନୋଭାବକୁ ଶାନ୍ତ ରଖି ଧୀର କଣ୍ଠରେ କହିଲି—ଏ କଣ କଲ ଶିଳ୍ପୀ ? ମୋ ସ୍ୱପ୍ନରାଜ୍ୟକୁ ଚୂରମାର୍ କରଦେଲ ! ସତ୍ୟ ଶିବ ସୁନ୍ଦର ପୂଜାରୀର ଏ କି ଦୁର୍ଗତି ! ସବୁ କଣ ବ୍ୟବସାୟ ହୋଇଯିବ ? କଳା, କଳ୍ପନା ଆଉ ବଞ୍ଚିପାରିବ ନାହିଁ ? କଳାର ଦେଶ ଉତ୍କଳର ଆଜି ଏ କି ଦୁର୍ଦ୍ଦଶା ।

ଆଖି ବୁଜି କଳ୍ପନା କରି ଲାଗିଛି—ଆଖି ଆଗରେ ମୋର ଭାସି ଯାଉଛି ଗୋଟିଏ ପଟୁଆର—ଲିଙ୍ଗରାଜ ମନ୍ଦିର, ଗୌରୀ ମନ୍ଦିର, ବୋଇତାଳ ଦେଉଳ,

ସ୍ୱର୍ଣ୍ଣ ଜଳେଶ୍ୱର, ମେଘେଶ୍ୱର, ଅନନ୍ତବାସୁଦେବ ମନ୍ଦିର, ମୁକ୍ତେଶ୍ୱର, ପର୍ଶୁରାମେଶ୍ୱର, ବୈତାଳ ମନ୍ଦିର, ଶତ୍ରୁଘ୍ନେଶ୍ୱର, ରାଜରାଣୀ ମନ୍ଦିର, ଜଗନ୍ନାଥ ମନ୍ଦିର, କୋଣାର୍କ ! ପାଷାଣର କାବ୍ୟ ମହାକାବ୍ୟସବୁ, ଚରମଦ୍ୱୈତାକାଶ ସୌନ୍ଦର୍ଯ୍ୟରୁଚ ପ୍ରାଚୀନ ସାମାଜିକତା ଓ ମାନବତାର ଏକ ଏକ ଖୋଦିତ ରସୋଚ୍ଛ୍ୱସିତ ରୂପ ।

ଆଖି ଖୋଲିଲାବେଳକୁ ଶିଳ୍ପୀ ଅନ୍ତର୍ହିତ !

ମହାନଦୀ ତୀରକୁ ଦୌଡ଼ିଯାଇ ଦେଖିଲାବେଳକୁ ବୁଡ଼ିଆଚି ଜଳୁଛୁ, ମହାନଦୀର ଚଳନ୍ତ ସ୍ରୋତରେ ସୃଷ୍ଟି କରୁଛୁ ଏକ ସୂର୍ଯ୍ୟାସ୍ତ । ଚାରିଆଡ଼କୁ ଚାହିଁ ଦେଖିଲି— ସୂର୍ଯ୍ୟାସ୍ତର ଆଲୁଅ ଉକୁଟି ଉଠିଚି । ଦେଖୁ ଦେଖୁ ଏ ଶିଖାଟି ସେଇ ଅସ୍ତରାଗରେ, କ୍ରମେ ତମିସ୍ରରେ ବୁଡ଼ିଗଲା ।

ଏ ମଧ୍ୟରେ କେତେ ସୂର୍ଯ୍ୟାସ୍ତ ଇନ୍ଦ୍ରଧନୁ ଆଉ ବଳଳୀର ଆଲୁଅ ଉକୁଟାଇ ଦେଇ ଯାଇଛି । କିନ୍ତୁ ସେଦିନର ସେଇ ସୂର୍ଯ୍ୟାସ୍ତ ଭୁଲି ପାରୁନାହିଁ ।

କଳାକୁ ବଞ୍ଚାଇବାର ଖିଆଲ ମୋର ଥିଲା, କିନ୍ତୁ ସାଜାହାନ ସମ୍ପଦ ନଥିଲା । କବି, କଳାକାର, ସ୍ରଷ୍ଟାର ହେଲିନାହିଁ ବୋଲି କେବେ କ୍ଷୋଭ ପ୍ରକାଶ କରିନାହିଁ । କାରଣ ଜଣେ ରସିକ ଗ୍ରାହକଭାବେ ବିଦଗ୍ଧ ଗୌରବବୋଧ ମୋର ଥିଲା । ତଥିରେ ମୋର ହାହାକାର—ସେତିକି ବି ହୋଇ ପାରିଲି ନାହିଁ । ସୂର୍ଯ୍ୟାସ୍ତକୁ ବାଟ ଛାଡ଼ିଦେବାକୁ ହେଲା ।



# ଭଗବାନ୍‌ଙ୍କ ଲୀଳା

## ଏକ

ନଟବର ସେଇ ସ୍ତ୍ରୀହାଲୀକ ପୂଜା ନେଇ ନାହିଁ, ଟିପଚିହ୍ନ ଦିଏ । କିନ୍ତୁ ଛୁଞ୍ଚ ଭିତରେ ତାର ଆଞ୍ଚ ଅଛି—ଏହା ତାର ହାସ୍ୟରସ । ସେଠି ଅଙ୍କୁର କାରଣ ଅଧିକ; ଦାରିଦ୍ର୍ୟ, ଦୁଃସ୍ଥିତି; ସେଇ ବିରୋଧାତ୍ମକ ପରିସ୍ଥିତି ମଧ୍ୟରେ ହାସ୍ୟରସ ଜନ୍ମ ନିଏ କିପରି ? ଦୁର୍ଭାଗ୍ୟକୁ ନଟ ଫୁତ୍କାରରେ ଉଡ଼ାଇ ଦିଏ । ଦୁଶ୍ଚିନ୍ତା ମୁଖ୍ୟତଃ ପାଠୁଆଙ୍କର ଏକ ରୋଗ, ଏହା ସାଂସାରିକ ସୁଖଶାନ୍ତିକି ନାଶ କରେ, ସ୍ୱାସ୍ଥ୍ୟହାନିର ଏକ କାରଣ ହୁଏ; ସଂଶୟରେ ଅନ୍ଧୀଭୂତ, ସେ ହୁଏ କାଳ ହସ୍ତର ଏକ କ୍ରୀଡ଼ା କନ୍ଦୁକ । କିନ୍ତୁ ଶାଗ ପଖାଳ ଖାଇ ନଟ ଦେହରେ ସ୍ୱାସ୍ଥ୍ୟ ଲହଡ଼ି ମାରୁଥାଏ । ନାନା ସମସ୍ୟା ଆସେ, କାହାର ସମାଧାନ ହୁଏ, କାହାର ବା ହୁଏ ନାହିଁ । ନାନା ପ୍ରଶ୍ନ ମନରେ ଉଠେ, କାହାର ଉତ୍ତର ସେ ପାଏ, କାହାର ବା ପାଏ ନାହିଁ । ସେଥିଲାଗି ତାର ଭାବନା ନାହିଁ । ପାଠ ନ ପଢ଼ିଥିଲେ ବି ତାର ବହୁଳ ସାଂସାରିକ ଅନୁଭୂତି, ପୁରାଣ ପ୍ରବୀଣତା ଓ ହାସ୍ୟବ୍ୟଙ୍ଗାତ୍ମକ ବ୍ୟକ୍ତିତ୍ୱ ଯୋଗୁଁ ମୁଁ ତାକୁ ମୋ ନାନା ଚିନ୍ତାର ସମପର୍ଯ୍ୟାୟଭାଗୀ ବୋଲି ମନେ କରେ ଓ ତା'ଠାରୁ ଶୁଣେ ଗାଁ । ଗୋଟାକର ଚରିତ ଚଳଣି କଥା । କିନ୍ତୁ ଗୋଟିଏ ଜାଗାରେ ତା ସହିତ ମୋର ମତଦ୍ୱୈଧ ହୁଏ । ମୁଁ କହେ—ଜୀବନଟା ମଣିଷର ଲୀଳା । ସବୁ ଚିନ୍ତା ତା'ରି ଚିନ୍ତା, ସବୁ କାର୍ଯ୍ୟ ତା ନିଜର କରଣି । ସେ ନାଚିବ, କୁଦିବ, ହସିବ, ଖେଳିବ, କଠୋର ଶ୍ରମ କରି ହଳ ବୁହାଇବ, ନିଜକୁ ମନମତେ ଭାଙ୍ଗିବ, ଗଢ଼ିବ, ନିଜ ହାତରେ ନିଜେ ଉଆଁଶ ହେବ, ନିଜ ଶିଙ୍ଘରେ ନିଜେ ମାଟି ତାଡ଼ିବ । ମଣିଷର ଦୈନନ୍ଦିନ ଲୀଳା ଭିତରକୁ ଈଶ୍ୱରଙ୍କୁ ଟାଣିବା ଏକ ଭୁଲ୍ ବିବେଚନା ।

ନଟ କହେ—ଈଶ୍ୱରଙ୍କ ବିନା ଇଚ୍ଛାରେ ଗଛର ପତ୍ରଟିଏ ମଧ୍ୟ ଦୋହଲେ ନାହିଁ । ମଣିଷ ନାଆ, ଭଗବାନ୍ ନାଉରି; ମଣିଷ ରଥ, ଭଗବାନ୍ ରଥୀ । ମଣିଷ କଣ୍ଢେଇ, ଭଗବାନ୍ ସଖୀନାଟୁଆ । 'କରି କରାଉ ଥାଏ ମୁହିଁ, ମୋ ବିନୁ ଆନ ଗତି ନାହିଁ ।' 'ଯାହା କରିବେ ସାଇଁ, ତା କାହାରି ହାତରେ ନାହିଁ ।' ମଣିଷର ବିବେଚନା, ଆଗତ ପାଛ ସବୁ କଥା । କର୍ମକର୍ତ୍ତା ଭଗବାନ୍, ଏ ସଂସାର ତାଙ୍କରି ଲୀଳା ।

ନଟ ରାତିରେ ଉଜାଗର ରହି ପୁରାଣ ଶୁଣେ, ଭାଗବତ ସପ୍ତାହରେ ଶ୍ରୋତା ରୂପେ ବରିତ ହୁଏ, ଅଷ୍ଟପ୍ରହରୀରେ ଅଷ୍ଟପ୍ରହର ପଡ଼ି ରହେ । ଗପ ଶୁଣିଲେ ଗଦ୍‌ଗଦ । ଆଖି ବୁଜି 'ହେ ପ୍ରଭୁ' କହି ତୁଳସୀ, ବେଲପତ୍ରୀ ଆଦି ପାଦୁକ ବା

ମହାପ୍ରସାଦ ପାଏ । ଗ୍ରବେ—ସେ ରାମଚନ୍ଦ୍ରଙ୍କ ବାନର ସେନା ମଧ୍ୟରୁ ଗୋଟିଏ, କୃଷ୍ଣଙ୍କ ଗୋପୀ ମଧ୍ୟରୁ ଜଣେ ।

ରୋଗ ହେଲେ ସେ ଡାକ୍ତରଖାନାକୁ ଯାଏ ନାହିଁ; ବିଶ୍ୱାସ—ଭଗବାନ୍ ଭଲ କରି ଦେବେ । ଜଡଗ୍ରରେ ଗଡ଼ି ଗଡ଼ି ସେ ଜରରୁ, ପେଟମରାରୁ ଉଠେ । ଦୁଃଖ ଦୁର୍ଦ୍ଦଶାରେ ପଡ଼ିଲେ ହସି ହସି କହେ—ଭଗବାନ୍ ଚିତ୍ତ ପରଖୁଛନ୍ତି !

"ଲୀଳା ବିଧୃତ କଳେବର
ଦେବ ମାନବେ ଅଗୋଚର ।"

ମୁଁ କହେ—'ଏ ବିଶ୍ୱାସ ଯୋଗ କେତେ କାଳ ଗ୍ଲଥିବୁ ନଟ ? ବିଶ୍ୱାସ କରିବୁ ତ ନିଜକୁ କର, ନିଜର ବାହୁବଳ ଓ ବୁଦ୍ଧି ଉପରେ କର । ଗୁଡ଼ାଏ, କର୍ମକୋଢ଼, ବାବାଜୀ, ଭିକାରୀଙ୍କ ଯୋଗେ ଦେଶ ତ ନଷ୍ଟ ହୋଇ ଯାଉଛିରେ । ଯୋଉ ଦେଶ ବଡ଼ ହୋଇଛି, ନିଜର କର୍ମ ତତ୍ପରତାରେ ବଡ଼ ହୋଇଛି, ଭଗବାନଙ୍କୁ ଡାକି କେବେ ବଡ଼ ହୋଇ ନାହିଁ । ଭଗବାନ୍ ଦାରିଦ୍ର୍ୟ, ରୋଗବ୍ୟାଧି ଭଲ କରି ଦେବେ ନାହିଁ । ନିଜର ଦାନା ମୁଠିଏ ନିଜେ ହିଁ ଯୋଗାଡ଼ କରିବାକୁ ହେବ । ମଣିଷ ଢେର୍ ବଡରେ ଢେର୍ ବଡ଼, ସେ ନିଜେ କେତେ ବଡ଼ ଜାଣି ନ ପାରିବା ପର୍ଯ୍ୟନ୍ତ ଭଗବାନ୍ କେତେ ବଡ଼ ଜାଣି ପାରିବ ନାହିଁ । ତା ଭିତରେ କେତେ ଶକ୍ତି ଲୁଚି ରହିଛି, ସେ ସାଧନା ନ କଲେ ଜାଣି ପାରିବ ନାହିଁ । ସେ ଯେଉଁଠି ଫେଲ୍ ମାରିବ, ବାରମ୍ବାର ଚେଷ୍ଟା କରିବ । ସେତେବେଳେ ହିଁ ଭଗବାନ୍ ତାର ସହାୟକ ହେବେ । ବିଶ୍ୱକର୍ମୀ ସେ; କର୍ମର ମର୍ଯ୍ୟାଦା ବା ପ୍ରକୃତ ମୂଲ୍ୟ ସେ ଦିଅନ୍ତି । ଅଳସ ଡାକ ତାଙ୍କ କାନରେ ବାଜେ ନାହିଁ କିମ୍ବା ସେ ଶୁଣି ନ ଶୁଣିଲା ପରି ରହନ୍ତି ।

ମୋ କଥା ବୁଝେ କି ନ ବୁଝେ ସେ ଜାଣେ । ବୋଧ ହୁଏ, ବୁଝିବାକୁ ଚେଷ୍ଟା କରେ ନାହିଁ; ବୋଧେ ଆମେ ଦୁହେଁ ଦୁଇଟି ଭିନ୍ନ ଜଗତର । ସେ ଉପରକୁ ଗ୍ହିଁ ନମସ୍କାର କରେ—ଭଗବାନ୍ ମୋତେ ଚଳାଉଛନ୍ତି, ଚଳାଇବେ । ଜନ୍ମ ଦେବା ମାତ୍ରେ ସେ କୂଅର ବେଙ୍ଗଟି ପାଇଁ ଆହାର ଖଞ୍ଜି ରଖନ୍ତି । ଶିଶୁଟି ପାଇଁ ମାଆ ଥନରେ ଛନ୍ଦି ରଖନ୍ତି କ୍ଷୀର ।

'ଗଜଠାରୁ ଦଣ୍ଡିପୋକ ପରିଯନ୍ତେ
ସବୁ ତାଙ୍କର ଭିଆଣ ।'

ନଟ ସଂଶୋଧନର ବୟସ ଅତିକ୍ରମ କରିଛି; ବିଶ୍ୱାସ ତାର ବଦ୍ଧ ହୋଇ ବସିଯାଇଛି, ଊନ ପୁରୁଷର ବୋରଖାଞ୍ଜି ପରି । ମୁଁ ତାକୁ ଚଳାଇବାକୁ ଚେଷ୍ଟା କରେ ନାହିଁ ।

"ପେଟ ପୋଷ, ନାହିଁ ଦୋଷ"—ଏ ନୀତିର ପକ୍ଷପାତୀ ନୁହେଁ ସେ, "ଏ ଗ୍ରେରଙ୍କର ଗୋଟାଏ ଫନ୍ଦି । ଲୋକ ବଜାରରେ କଣ ତାଟିଆ କାମୁଡ଼ିବା ବାବୁ ?" ନଟ କହେ ।

ତାର ସାଧୁତାକୁ ମୁଁ କ୍ଷମା କରିପାରେ ନାହିଁ । ବିକଟ ଦାରିଦ୍ର୍ୟ ସହିତ ଏ ସଚ୍ଚୋଟପଣର କୌଣସି ସାମଞ୍ଜସ୍ୟ ନାହିଁ । ଏଡ଼େ ଦରିଦ୍ର ଏତେ ସଚ୍ଚୋଟ ହେବା କେଉଁଠି ଦେଖି ନାହିଁ । ପେଟ ପଛକେ ପୋଡ଼ିଯାଉ, କାହାରି ଧାନ କିଆରିରୁ କେଣ୍ଡାଟିଏ ଲାଗି ସେ ହାତ ବଢ଼ାଏ ନାହିଁ । ଭଗବାନ୍ ଯାହା ଦେଇଛନ୍ତି ସେଇ ଢେର୍ । ମିଳିଲେ ଖାଇବା, ନ ମିଳିଲେ ପାଣି ମୁନ୍ଦାଏ ପିଇ ଶୋଇ ପଡ଼ିବା । କେତେ ଅନ୍ୟାୟରେ ଲୋକେ ଧନ କମାଉଛନ୍ତି; କୋଠି ଅମାର ଡେରିଛନ୍ତି; ମହଲ ଉପରେ ମହଲ ତୋଳୁଛନ୍ତି; ଧନ ନାମରେ ଲୋକ ପାଗଳ । ଏ ଲୋକଟିର ଏ ପରିସ୍ଥିତିରେ ଧନୀ ହେବାର ଆକାଙ୍କ୍ଷା ହୁଏତ ଦୁରାକାଙ୍କ୍ଷା; କିନ୍ତୁ ଭଲଭାବରେ ଖାଇ ପିନ୍ଧି ଚଳିବାର କାମନା ଜାଗ୍ରତ ହେବ ନାହିଁ କାହିଁକି ? ଉପାୟ, ଉପେୟ ଉଭୟକୁ ଠିକ୍ ରଖି ଏ ଦୁରବସ୍ଥାରେ ଧନ ଅର୍ଜିବାକୁ ଚାହେଁ ସେ, ଆଶ୍ଚର୍ଯ୍ୟ । ନଟର ଜୀବନଦର୍ଶନ ଆଶ୍ରମର କାମ୍ୟ ହୋଇ ପାରେ, କିନ୍ତୁ ତାର ଭଙ୍ଗା କୁଡ଼ିଆ, ସାତ ଥାନରେ ଛିଣ୍ଡା ଗାମୁଛା, ଲୋତରି କୋତରି, ଲଙ୍ଗଳା ଫୁଙ୍ଗୁଳା ଛୁଆଙ୍କ ମଧ୍ୟରେ ବଡ଼ ବେଖାପ ଶୁଣାଯାଏ ।

ନଟ ବୟସ୍କ ହେଲା, ପ୍ରାୟ ବୃଦ୍ଧ; ବାର୍ଦ୍ଧକ୍ୟର ସାଥୀ ସ୍ୱରୂପ ନାନା ରୋଗ ମଧ୍ୟରେ ଦେଖା ଦେଲା ଦୁରାରୋଗ୍ୟ କୁଷ୍ଠ ରୋଗ । ଡାକ୍ତରଖାନାରେ ସେ ଦିନ ଆଖି ଡାକ୍ତର ପଚାରିଲେ—ଦୁଇଟିକୁ ରକ୍ଷା କରିବାକୁ ଚେଷ୍ଟା କଲେ କୋଉଟି ରହିବ ନାହିଁ । କଣ କରିବ ?

ନଟକୁ ପଚାରିଲି—ତୋର ଏଣିକି ଗୋଟିଏ ମାତ୍ର ଆଖି ରହିବ । ଚଳିବଚଳି ହୋଇପାରିବୁ ? କଣ କହୁଚୁ ?

ମତେ କ'ଣ ପଚାରୁଚ ବାବୁ ? ଏଥିରେ ମୋର କଣ କହିବାର ଅଛି ? ମୋର ଯେଉଁଥିରେ ଭଲ ହେବ, ଡାକ୍ତରଙ୍କ ମୁହଁରେ ଭଗବାନ୍ କୁହାଇବେ । ସବୁ ତ ତାଙ୍କରି ଲୀଳା !

ମନେ ମନେ କହେ—ଲୀଳା ? ଏ ବଡ଼ ନିଷ୍ଠୁର, ବଡ଼ ଭୟଙ୍କର ।

## ଦୁଇ

'ଡୁଙ୍ଗେଇ, ଏ ଶାଗୁତକ ପିଇ ଦେ'; ପଡ଼ୋଶିନୀ ହାରମା କହିଲା ।

'ନାଇଁ, ନାଇଁ, ହାଣ୍ଡିଆକୁ ଦେଇଦେ, ମତେ ଭୋକ ନାହିଁ'—

ନଟିଆର ରୁଗ୍ଣା ସ୍ତ୍ରୀ 'ମଲ୍ଲୀ', ଡାକନାମ 'ଡୁଙ୍ଗେଇ';

‘ହଇଲେ ତୋର ପୁଅ, ଗେରସ୍ତ, ନାତି ନାତୁଣୀର ଗହଳ ସଂସାର, କେଡ଼େ ଆର୍‌ବା ଲାଗିଚ, ତୁ ଆଖି ବୁଜିଲା ବାସିଦିନ ଏମାନେ ଅଥ ତା ହୋଇ-ଯିବେ । ତୁ କଣ କରୁଚୁ ନା ପାଟିକି ପାଣି ଟୋପିଏ ନଉନୁ ଗୃହଦାନ ହେଲା । ଆଲୋ ହେ, ଏ ସଂସାର ରହିବଟି ? ନେ, ନେ, ଏ ଟୋପାକ ପିଇଦେ, ମୋ ଧନଟି ।’

‘ନାଇଁ, ନାଇଁ ହାଉଁଆକୁ ଦେ, ଖେଙ୍ଗାକ, ମାଳକୁ ଢୋକେ ଢୋକେ ଦେ । ମୁଁ ବଞ୍ଚି ଥାଉଁ ମୋ ପିଲାଏ କେତେ ନାରଖାର ହେଲେ ଲୋ !’

‘ଆଲୋ ହେ ଡୁଙ୍ଗେଇ, ମୋ ସାନ କୁହା ମାନ; ସବୁବେଳେ ତ ପିଲା, ପିଲା ହେଲୁ; ଏ ପିଲା କୋଉ ଆଲୁଅ କରିବେ, ତତେ କୋଉ ସ୍ୱର୍ଗକୁ ନେବେ ? ଘୁମାରେ ତ ମୁଠାଟିଏ ଚାଉଳ ନାହିଁ, ଘରେ ତ ବକଟେ ଜାଳ ନାହିଁ, ହଁ । ହଁ! ହଉଛନ୍ତି ସାତ ଆଠ ମଣିଷ ।

ଅଲୋ ପୁଅ ବୋହୂ ତ ହେଇଛନ୍ତି ଯେ ପେଟରୁ ସିଆଡ଼ୁ ଧାଡ଼ି ଲାଗିଚ, ଗୋଟିକୁ ବର୍ଷେ କ ପୁରୁଣୁ ସିଆଡ଼େ ମାସ ଗଡ଼ୁଚ, ଏକ-ଦୁଇ-ତିନି-ଚାରି-ପାଞ୍ଚ । ଦୁଧ-ଶାଗୁ-ମିଶ୍ରି-ଚନ୍ଦ । ଆଲୋ, ଘଇତା ତ ପାରୁ ନାହିଁ, ପୁଅ ତ ଗଉଣିଏ ଧାନ ମୂଲ ଆଣୁଚ, ସେଥିରୁ କେତେ ଖାଇବ, କେତେ ଲୁଣ ତେଲ, ଲୁଗାପଟା, ପଥ୍ୟ-ପାଚଣ, ଔଷଧପତ୍ର କରିବ । ମାଗିଲେ କିଏ କେତେ ଦେବ ? କାଳିବାସି ଖୋଜିଲେ ଏ କାଳମହରଗ ଯୁଗରେ କିଏ ଦେବାକୁ ସୁଖ ପାଉଚ ? ଆଲୋ, ତତେ ଜଗନ୍ନାଥଙ୍କ ଦୋହି, ଲୋକନାଥଙ୍କ ଦୋହି, ମା ମଙ୍ଗଳାଙ୍କ ରାଣ । ଢୋକ-ଟିଏ ହେଲେ ପିଇଦେ । ପେଟ ଟିକିଏ ଥଣ୍ଡା ହୋଇଯାଉ ।’

ଡୁଙ୍ଗେଇର ଦାନ୍ତପାଟି ପଡ଼ିଗଲା, ହାର ମା କହୁଁଥାଏ ଦେଇ ଦାନ୍ତ ଫିଟାଉ ଫିଟାଉ ତାର ପ୍ରାଣବାୟୁ ଉଡ଼ିଗଲା ।

ଡୁଙ୍ଗେଇ, ଭାରି ହୋମସ୍ତି ଥିଲା ସେ, ଭାରି କଥାକହା । ଦୁନିଆଁ ଗୋଟାକର ଖବରମାଳ ତା'ର ମୁହଁରେ, ଗାଆଁ ଗୋଟାକର ଇତିହାସ ତାର ନଖଦର୍ପଣରେ । ଦପରଦ୍ତିକିଆ ମାଇପୀଟାଏ, ବୁଲିଗଲେ ଗାଁ ଦାଣ୍ଡ ପୁରିଉଠୁଥିଲା । କୋଉ ଦୁଃଖ, କଷ୍ଟାଳ ତା ଘରେ ନାହିଁ ? କିନ୍ତୁ କୋଉସିଲା କଥାକୁ ତିଳେ ହେଲେ ଶୋଚନା କରୁ ନଥିଲା ସେ । ସୌଜନ୍ୟ ଶିଷ୍ଟାଚାରରେ ସେ ସମସ୍ତଙ୍କ ମନ କିଣି ନେଇଥିଲା । ଏ ଗୋବର ଗଦା ଭିତରେ ଏଡ଼େ ସୁନ୍ଦର ବାସ କଇଁଟିଏ ଫୁଟିଲା କିପରି ?

ଭୁଆଲୀଙ୍କ ଭିତରେ ତାପରି କେହି ନାହିଁ; ଧାନ ତଳି କାଦୁଅ ବଳରେ ଖୋସିଦେଇ ଯାଉଥିଲା ସେ, ଟିପଟାଣେ; ଗୋଟିଏ ହେଲେ ଭାସି ଉଠୁ ନଥିଲା । ଟିକିଏ ଅଣ୍ଟା ସଳଖି ଠିଆ ହେଉ ନଥିଲା ସେ । ନିଜ କାମ ଯେପରି; ସାଆନ୍ତଘର କାମ ସେହିପରି । ଝାଳବୁହା ଧାନ ଗଉଣିକରେ ତାର ସୁନାର ସଂସାର ହସି ଉଠୁ-

ଥିଲା । ସାବତ ପୁଅ ଗୁରୁବାରିଆ ଜନ୍ମିତ ପୁଅଠାରୁ ଅଧିକ ହୋଇଥିଲା । ତାକୁ ବୁଝି ମିଳିଥିଲା ମୂର୍ତ୍ତିଟିଏ ବୋହୂ ।

ସେବାବତୀ; ସୁନ୍ଦରୀ । ଏଇ ସଂସାରକୁ ଗଢ଼ିବା ଲାଗି ସେ ବଳ ବୟସ ଝଡ଼ାଇ ଦେଇଥିଲା । ମାଣେ ବା କଣେ ଜମି ନଥିଲେ ବି ଘରେ କାହାକୁ ଦିନେ ଉପାସେ ଶୋଇବାକୁ ପଡ଼ି ନଥିଲା । ସାଂସାରିକ ଦୃଷ୍ଟିରୁ ସେ ବନ୍ଧୁ ଥିଲାବାଲାଙ୍କ ଉପରେ ଥିଲା । ତାର ସବୁ ଯୋଜନାକୁ ମାଟି କରିଦେଲା ବନ୍ଧୁ ଜନ୍ମ । ଧାଇଁ ଧାଇଁ ଶେଷକୁ ସେ ଆଉ ଧାଇଁ ପାରିଲା ନାହିଁ । ବସୁ ବସୁ ଶୋଇଗଲା; ରୋଗ ତାକୁ ମାଡ଼ି ବସିଲା । ବଢ଼ନ୍ତି ସଂସାରର ଭାର ସମ୍ଭାଳିବାକୁ ଅସମର୍ଥ ହୋଇଥିଲା ସେ । ଦରିଦ୍ର ସଂସାରରେ ବନ୍ଧୁ ଜନ୍ମ ଆଜି ମୃତ୍ୟୁ ପରି ବାଞ୍ଛିକାମସ୍ୟ ହୋଇଚି; ପଞ୍ଚୁଆତି, ଷଠୀ, ଏକୋଇଶାକୁ ପଚାରେ କିଏ ? ସତ୍ୟନାରାୟଣ ପୂଜା କରୁଚି ବା କିଏ ? ଅରମା ପରି ମାଡ଼ି ଯାଉଛନ୍ତି କୁଆପଇ । ଜୀବନର ମାନ ମର୍ଯ୍ୟାଦା; ମଣିଷପଣର ଦମ୍ଭ ନିଃଶେଷ କରିଦେଉଛନ୍ତି ସେମାନେ ।

ପଚାରିଲି—କିରେ ନଟ, ଏ କଣ ହେଲା ? ଏମିତି ସ୍ତ୍ରୀ, ଏମିତି ଘରଣୀ, ଏମିତି ଲକ୍ଷ୍ମୀ ଏ ଖଣ୍ଡମଣ୍ଡଳରେ ଆଉ କୋଉଠି କିଏ ଥିଲା ? ହାଁ ହାଁ ହୋଇ ତାର ପ୍ରାଣ ଗଲା । ତା ଭଲପଣର ସେ କି ପୁରସ୍କାର ପାଇଲା ?

ନଟ କହିଲା—ସେ ଯେତେ ମଣିଷପଣ କମେଇଥିଲା, ଖୁବ୍ ପାଇଛି ବାବୁ । ଜମିଦାର, ସାଆନ୍ତଙ୍କର ଝିଅ ବୋହୂ ବି ଏତେ ଆଦର ସନମାନ ପାଇବେ ନାହିଁ । ସେ ଗଲା; ଯୋଉଦିନ ତାକୁ ଠାକୁରଙ୍କ ଡାକରା ଆସିଲା, ଯାହାର ଯେତେବେଳେ ମାଣିକ ପୂରିଯାଉଚି, ସେ ଚାଲିଯାଉଚି । ଭଗବାନଙ୍କ ଲୀଳା ଏ !

ନଟର ଭଙ୍ଗା ଦଦରା ସଂସାରକୁ ଚାହିଁଦେଇ ଚିତ୍ତରେ ଯେମିତିକି ମୋର ଲୁହ ହାବୁକା ମାରୁଥିଲା; ମନେ ମନେ କହିଲି—ଲୀଳା ? ବଡ଼ ନିଷ୍ଠୁର; ଭୟଙ୍କର ଏ ।

## ତିନି

୧୯୭୧ ଅକ୍ଟୋବର ୨୯-୩୦ ତାରିଖ; ଦୁଇ ଦିନ ମହାକାଳ ଆସିଥିଲା ଘୂର୍ଣ୍ଣୀ ରୂପରେ; କମ୍ପ, ରାଜନଗର, ମହାକାଳପଡ଼ା, କନିକା, ଆଳି, ପାରାଦ୍ୱୀପ, ବୃନ୍ଦବାଳ ଧ୍ୱସ୍ତବିଧ୍ୱସ୍ତ; ମାଡ଼ି ଆସିଥିଲା ସମୁଦ୍ରର ଲୁଣା ଜୁଆର ପନ୍ଦର ଫୁଟ ଉଚ୍ଚରେ, କନ୍ଦୁକ ପରି ଫିଙ୍ଗି ଦେଇଥିଲା ଗୋଟାକ ପରେ ଗୋଟାଏ ଘର; ଗୁଡ଼ି ପରି ଉଡ଼ାଇ ନେଇଥିଲା ଟିଣ ଛାତ, ଛଳ ଛପର, ଶୁଆଇ ଦେଇଥିଲା ମହା ମହା ମେରୁ ମନ୍ଦର; ଗୋରୁ, ମଣିଷ ପ୍ରଳୟ ଜଳରେ ଦ୍ୱୈ ଭାସୁଥିଲେ; କିଏ ପିତା-ହୀନ; କିଏ ପତ୍ନୀ ବା ସନ୍ତାନ ସନ୍ତତିହୀନ; ସଂସାରସବୁ ଛିନ୍ନଛତ୍ର ହୋଇଗଲା; ଜମି, ଡ଼ିହ ସବୁ ହେଲା ଏକାକାର—ବାଲୁଚର । କାଳର ସଗଡସପନ୍ନ ନୃଶଂସ ଅଙ୍କ

ପଥର ଭିକାରି । ମୁଠିଏ ଦାନା, ଖଣ୍ଡିଏ କନା, ମୁଣ୍ଡ ଗୁଞ୍ଜିବା ଲାଗି ହାତେ ଛପର ପାଇଁ କରୁଣ ଚିତ୍କାର । ଓଡ଼ିଶାର ବଡ଼ ବିପତ୍ତି ଥିଲା ବନ୍ୟା; ତା ସହିତ ଏବେ ଆସି ମିଶିଲା ଘୂର୍ଣ୍ଣି; ବନ୍ୟା ଦାଉରୁ ଅଣ୍ଟା ସଳଖି ଛିଡ଼ା ହେଲା ବେଳକୁ ବାଜିଲା ବାତ୍ୟାର କୋରଡ଼ା; ଗଛବୃଛ, ଫସଲ ସହିତ ମଣିଷର ଚେରମୂଳ ହିଁ ଉପୁଡ଼ିଗଲା । ସତେ ବା ଲୁହା ମଇ ବୁଲିସାଇ ସବୁ ମୂଳୋଚ୍ଛେଦ କରିଦେଲା; ବାହାରିଲେ ଦଳ ଦଳ ଶରଣାର୍ଥୀ, ଉଦ୍‌ବାସ୍ତୁ, ଭିକାରି; ମଣିଷର ଚରମ ବିପଦରୁ ପରମ ସମ୍ପଦ ହଜାଉଥିବା ଟାଉଟର, ସାହୁକାର ଓ ରକ୍ତଶୋଷୀ ଅଫିସର ।

ନଟର ଭାଙ୍ଗିବା ପାଇଁ କିଛି ନଥିଲା; କେବଳ ଘରଖଣ୍ଡିକ ମୋଡ଼ି ହୋଇଯାଇଥିଲା । ହରଣଗୁଲ କରି ନେଇଥିଲା ଭାଗ ଓ ହେତା ବିଲର ଫୁଲ ଉଡ଼ଉଥିବା ଧାନ; ବିଲରେ ଛିଡ଼ା ହୋଇଥିଲା ଅଗାଡ଼ି ଝାଟି; ନଟର କିଛି ଭାଙ୍ଗିପ ଶଲା ନାହିଁ ବୋଲି ବାତ୍ୟା ବୋଧେ ତାର ମନରେ ପଶିଗଲା; ସବୁ ନଛ ଚୂରମାର୍ କରିଦେଇଗଲା । ଦୁଇଦିନ ପରେ ଦେଖିଲାବେଳକୁ ଏକମାତ୍ର ରୋଜଗାରିଆ ଭେଣ୍ଡାପୁଅ ଶୋଇଚି; ଚିରଦିନ ଲାଗି ଶୋଇଯାଇଚି । ଦୁଇଦିନ ଧରି ତା ପେଟରେ ଦାନା ପଡ଼ିନଥିଲା । ତାପରେ ଗୁଣ୍ଡାଟିଏ ପାଟିକି ନେଲାବେଳକୁ ପିଲାଏ ହାତ ଧରି ପକାଇଲେ —ତୁ ନ ଖାଇ ଆମକୁ ଦେ ।

ଗୁଣ୍ଡାଏ ଗୁଣ୍ଡାଏ ପିଲାଙ୍କୁ ଦେଇ ନିଜେ ଦଗ୍ଧରି ଗୁଣ୍ଡା ଖାଇଲା ପରେ କାଶ ଉଠିଲା; ବାନ୍ତି, ଝାଡ଼ା ହେଲା; ପରସ୍ତା ବନ୍ଦ ହୋଇଗଲା । ଏ କାଳରାତିରେ ଚିକିତ୍ସାର ପ୍ରଶ୍ନ ଉଠ ନଥିଲା; ଗୁରୁବାରିଆ ମରି ଶୋଇଲା । ଘୋର ଅଭାବରେ ପଡ଼ି ତାର ସ୍ୱଭାବ ନଷ୍ଟ ହୋଇ ନଥିଲା । ମାଗିମୂଳ ସାଧୁତା ଓ ଭୟଙ୍କର ସଚ୍ଚୋଟପଣ ହିଁ ତାର କାଳ ହେଲା ।

ସେ ଘରେ ମୃତକା ଜରରେ ଶୋଇଚି ତାର ସ୍ତ୍ରୀ; ବିଳାପ କରିବା ଲାଗି ତା ଦେହରେ ନାହିଁ ବଳ । ଏ ଦୁଃଖ ମଧ୍ୟ ବିଳାପ ବା ଅଶ୍ରୁର ବହୁ ଉର୍ଦ୍ଧ୍ୱରେ । ପ୍ରାୟ ହତଜ୍ଞାନ । ଘରେ ଏତେବଡ଼ କଥାଟାଏ ଘଟିଗଲାଣି; ସେ ଜାଣେ ନାହିଁ । କଅଁଳା ପିଲାଟା ଗୁହା ଧରି କାନ୍ଦୁଚି; ବୁଢ଼ିଲଭଜା ମୁଠିଏ ଖାଇଥିଲା; ଭାତ ମାଗୁଚି । ଭୋକର ପେଟ ପୋଡ଼ି ଜଳି ଯାଉଚି; ନାଲି ଡଗା ଡଗା ଆଖିରେ ଚାହିଁଚି; ପଲକ ପଡ଼ୁନାହିଁ ।

ଛିଡ଼ା ହୋଇଚି ବୃଦ୍ଧ, ଭୁଗ୍‌ଣ ନଟ ଗୋଟାଏ ନିଷ୍ପ୍ରଭ ଆଖିରେ; ନିଷ୍ପନ୍ଦ ମୁଣ୍ଡା ଗଛପରି ପଥ ଧାରରେ । କହିବାକୁ ତାର କଥା ଫୁଟୁ ନାହିଁ—ଏ ଭଗବାନଙ୍କ ଲୀଳା !

ମୋର ବି ବାକ୍‌ସ୍ଫୁର୍ତ୍ତି ହେଉନାହିଁ କହିବାକୁ—ଏ ଲୀଳା ନିଷ୍ଠୁର, ଭୟଙ୍କର । କାରଣ ଏ କ୍ଷୀଣ ଭାଷା ତାର ବିକଟ ରୂପ ପ୍ରକଟ କରିବାକୁ ଅସମର୍ଥ ।

# ପୁଅ, କାନ୍ଦୁ.........

ଏ ସଂସାରରେ ଯେତେ ମଣିଷ, ସମସ୍ତଙ୍କର ପିଲା ହେବେ, ସ୍ବାର ମାନେ କଣ ?

ଅବସ୍ଥା ଲୋକେ ଜନମ କରି ଚାଲିଛନ୍ତି; ଘରେ ଘରେ ପନ୍ଦର ପନ୍ଦର ଛୁଆ—ଲଙ୍ଗଳା, ଫୁଙ୍ଗୁଳା, ନୁଖୁରା ସୁକୁଟା !

ଏ ଖୁନ୍ଦାଖୁନ୍ଦିରେ ମଣିଷ ରୁନ୍ଧ ହୋଇଗଲାଣି । ଟିକେ ନିଃଶ୍ୱାସ ମାରିବାକୁ ଖୋଲା ଜାଗା ନାହିଁ ।

ଆରେ ବାବୁ, ଜନମ ତ କରି ପକେଇଲ, ଏ ଗୁଡ଼ାକୁ ପୋଷିବ କେମିତି ? କୁଆଡୁ କଣ ଆଣି ଖାଇବାକୁ ଦବ ?

କଣ ନା, ଭଗବାନ୍ ଦେବେ ! କିରେ, କାହିଁକି ଦେବେ ? ତୁମେ କାହାକୁ କଣ ଦେଇ ପକାଉଚ କି ? ସେ କାହିଁକି ତୁମକୁ ସବୁ ଦେବେ ?

କୋଉ ଗୁଣକୁ ? ମୁଣ୍ଡି ଆଟାଏ ମାରିଦେଲ ବୋଲି, ନା, ତାଙ୍କ ନାଆଁରେ ଭୋଗ ପୁଞ୍ଜିଏ ପାଣି ଛଡ଼େଇ ଦେଲ ବୋଲି ? ଦେବତା ଯଦି ଯେତେକ ଭୋଗ ଦେଲ, ସବୁ ପାଇଦିଅନ୍ତେ କିମ୍ବା ପଣ୍ଡା ପରି ଅଧା ଅଧି ଚଣ୍ଡ କାଢ଼ି ନିଅନ୍ତେ, ଆଉ ଦିଅନ୍ତ କି ? ସବୁ ଭକ୍ତ ଫକ୍ତ କୁଆଡ଼େ ଉଡ଼ିଯାନ୍ତା !

ସତରେ ଏ ତୁମ ନିଜର ହିଁ ଭୋଗ । ଦେବତା ବାସନା ପାଉଥିଲେ ପାଉଥିବେ ।

ଆମର ଏ ଟିକି ପୃଥିବୀଟା ପାଦଭାରରେ ଟଳମଳ ହେଲାଣି । କୋଉ ଦିନ ଦରିଆ ଭିତରେ ଗଳି ପଡ଼ିବ, ବୁଝିଲ ରମା !

ଏତେ ମଣିଷ କଣ କରିବେ ?

ଅଳପ ଦାନାକୁ ବହୁତ ପାଟି । ଲାଗିଚି ମରାମରି, ପିଟାପିଟି, କଟାକଟି; ଚୋରି, ଡକାୟତି, ଦଗାବାଜି । ଖବରକାଗଜ ଖୋଲିଲା ମାତ୍ରେ ଦେଖିବ—ଘର ବୁଡ଼ି ପାଣି ଆଣୁ ଏ ହେବା ସମସ୍ୟା, ଯାହାର ଦାନା କନା ଅଛି, ତାଠାରୁ ନଥିଲା ବଳାତ୍କାରେ ଛଡ଼ାଇ ନେବା ସମସ୍ୟା ।

ସେଥିରେ ସେ ଅର୍ଥିତ କଣ କହୁଛନ୍ତି, ଜାଣ ?

"ପେଟ ପୋଷ୍, ନାହିଁ ଦୋଷ୍",

ଏ ସଂସାରରେ କଣ ଆଉ କିଛି ମିଠା ବା ପ୍ରୀତି ରହିବ ନାହିଁ ? ପଚାରିଲେ ଅରବିନ୍ଦ ।

ରମା କହିଲା—ତୁମର ଏ ବଡ଼ ବଡ଼ କଥା କିଛି ମୋ ମୁଣ୍ଡରେ ପଶେ ନାହିଁ । ପୃଥିବୀସାରା ମଣିଷ ହାଉଜାଉ ହେଲେ ତ ଆମର କ ଗଲା ? ଆମର ତ ଗୋଟିଏ ନାହିଁ ।

'ନାହିଁ ତ ନାହିଁ, କଣ ହେଇଗଲା ସେଥିରୁ ? ପୃଥିବୀରେ ସବୁ ଲୋକଙ୍କର କଣ ସବୁ ଅଛି ! ଆମର ପିଲା ନ ହେଲା ତ କଣ ବୁଡ଼ିଗଲା ? ଏତେ ପିଲା ତୁମ ସାମ୍ନାରେ ତାକ୍ ଥିନା ଥେଇ, ତାକ୍ ଥିନା ଥେଇ ନାଚୁଛନ୍ତି, ତୁମ ମନ ଆନନ୍ଦରେ ପୂରି ଉଠୁନାହିଁ ? ଏଠି ସେଠି ଏତେ ପିଲା ଅଣହେଲାରେ ଅସଣା ଅସକରା ହେଇ ଗଡ଼ୁଛନ୍ତି; ତୁମ ମନ ବିକଳ ହଉନାହିଁ ? କଣ ନା, ପିଲା ପିଲା, ଆଉରି ପିଲା ? ଖାଲି ତୁମର ହେଲେ ଯାଇ ହବ, ନଇଲେ ପ୍ରଳୟ ଘଟିଯିବ !

ମୋର ଧାରଣା—ବିଭା ହେଲେ ପଛେ ହୁଅନ୍ତୁ, ଅଧେ କି ଅଧିକ ଲୋକ ଜନମ ନ କରନ୍ତୁ ।

ଖୁବ୍ ସୁସ୍ଥ, ସୁନ୍ଦର, ପ୍ରତିଭାଶାଳୀଙ୍କ ପୁତ୍ରକନ୍ୟା ହିଁ ମନୁବଂଶର କୁଳ ଉଦ୍ଧାରକ ହେବେ !

ଦେଖୁନା, ଦେଶସାରା କେମିତି ଗ୍ରହଣଝାଡ଼ିଆ, କେମ୍ପା, କୁଜା, କଣା, ଅନ୍ଧ, କାଲ, ବୋବା ଆଉ ରୋଗିଣା ବିକଳାଙ୍ଗ ପିଲାରେ ଭର୍ତ୍ତି ହୋଇ ଗଲାଣି ।

ଏମାନେ କଣ କରନ୍ତି ?
କେବଳ ଅନ୍ନଧ୍ୱଂସ !

ଏମିତି ପିଲା ଥିଲେ କେତେ, ନ ଥିଲେ କେତେ !

ଏଇ ପୁଅ ପୁତ୍ ନରକରୁ ତ୍ରାଣ କରିବ ନା, ଜୀଅନ୍ତା ନରକରେ ଘାଣ୍ଟିବ ? ଏଇ ଝିଅକୁ କିଏ ଜୀବନ ସଙ୍ଗିନୀ ରୂପେ ଗ୍ରହଣ କରିବ ? ପିତାମାତାଙ୍କ ପୂର୍ବ ଜନ୍ମ ଅଭିଶାପର ଜୀବନ୍ତ ପ୍ରତିମୂର୍ତ୍ତି ରୂପେ ଅଗତିଗତି ପଥରେ ଛିଡ଼ାହବ । ଜୀବନକୁ କାରୁଣ୍ୟମୟ କରିବ ।

ସନ୍ତାନ ଲାଭର ପୁରୁଣା ମାଳ ଜପି ଜପି ଦହକ ପରେ ଦହକ ବିତିଗଲା । ପ୍ରତିଭା କ୍ୱଚିତ୍ ଜନ୍ମ ନେଲେ, ପୁଣି ସେଇ ମିଞ୍ଜି ମିଞ୍ଜି ଜଳୁଥିବା ଦୀପମାନଙ୍କୁ ଲିଭାଇ ଦବାକୁ ବହୁ ଚେମେଣି—ମୁଁ ତ ହେଲିନାହିଁ, ସେ କାହିଁକି ହବ— ମନରେ ଇର୍ଷା ।

ବହୁ ଅନାଡ଼, ଅପଦାର୍ଥ, ଅକର୍ମଣ୍ୟ, ନିଜତ୍ୱହୀନ, ବ୍ୟକ୍ତିତ୍ୱଶୂନ୍ୟ ଲୋକ ଦେଶକୁ ସାରଦେଲେ । ପ୍ରତିଭା ମୃତ; କାହିଁ ବଡ଼ ହେବ କାହାକୁ ଘେନି ?

ଅପାଳ ପାଉଁଶମାନଙ୍କ ଅତିରିକ୍ତ ବଂଶବୃଦ୍ଧି ଫଳରେ ଦେଶର ଦୂରବସ୍ଥା ବଢ଼ିବାର ଦେଖି ମୁଁ ଚାହିଁଥିଲି ପିତୃତ୍ୱ ତ୍ୟାଗ ।

ଭଗବାନ୍ ମୋ ମନ କଥା ବୁଝିଲେ, କିନ୍ତୁ ମୋ ରୀତି କେହି ଅନୁସରଣ କଲେନାହିଁ । ତା ଫଳରେ ଅନିୟନ୍ତ୍ରିତଭାବେ ଜନସଂଖ୍ୟା ଓ ଦେଶର ଅନାଟନ, ଦୁର୍ଦ୍ଦଶା ବଢ଼ି ଚାଲିଲା ।

କଥା ଅଛି—'ଆପନେ ଆଚରି ଧର୍ମ ପରକେ ଶିଖାଏ' । ମୋ ଘରେ ତ ଏଇ ଧର୍ମ ଆଚରିତ ହେଲାନାହିଁ । ଅନ୍ୟ ଲୋକଙ୍କ ଉପରେ ଏହାର ପ୍ରଭାବ ପଡ଼ିବ କିପରି ?

ମୋ ସ୍ତ୍ରୀ ହିଁ ମୋର ବିରୁଦ୍ଧାଚରଣ କଲା । ସେ ମାଆ ହେବା ଲାଗି ବ୍ୟାକୁଳ ହେଲା—ମାଆ—ମାଆ ।

ଅରେ ମାଆ ହେଲେ ଦୁଃଖ କେତେ ।

ସେ ଦୁଃଖ, ସେ କଷ୍ଟ ରମା ପ୍ରତିଦିନ ଦେଖେ, ତଥାପି ସେ ଦୁଃଖ ଚାହେଁ, ସେ ଦୁଃଖ କୁଆଡ଼େ ସୁଖକର ।

ପିତୃତ୍ୱ ତ୍ୟାଗ ସହଜ । ସେ ତ୍ୟାଗକୁ ତ୍ୟାଗ ବୋଲି କେହି ମାନେନାହିଁ । ମାତୃତ୍ୱ ତ୍ୟାଗହିଁ ଅସଲ ତ୍ୟାଗ, କିନ୍ତୁ ସଂସାରରେ କେଉଁ ନାରୀ ତାହା କରିପାରିଛି ? ତା ଯୁକ୍ତିରେ ମାତୃତ୍ୱରେ ହିଁ ନାରୀ ଜୀବନର ସାର୍ଥକତା ।

ମୁଁ ଏଥିରେ ବିଶ୍ୱାସ କରେ ନାହିଁ । ଏ ଅବୁଝା ନାରୀକୁ ବୁଝାଇବି କେତେ !

ଗୁଡ଼ାଏ ହସ, ନଇଲେ ଗୁଡ଼ାଏ କାନ୍ଦ—ଏଇ ହେଉଚି ମୋଟାମୋଟି ମୋର ଘରଣୀ—ଆଗେ ଥିଲା କେବଳ ହସ, ଏବେ ଯେତେବେଳେ ଦେଖେ, ସେତେବେଳେ ଆଖିରେ ପାଣି । ସବୁ ନିରର୍ଥକ ।

ପୁଅଟିଏ ହେଲେ କୁଆଡ଼େ ପାଟିରେ ଶେଷ ଢୋକ ମହାର୍ଦ୍ଧ ପାଣି ଟିକେ ଦେବ । ବଡ଼ବଡ଼ିଆଙ୍କୁ ଆଲୁଅ ଟେକିବ !

କାହିଁକି ମିଛ ମାୟାରେ ଘାଣ୍ଟି ହେଉଚ ଲୋ ରମା ? ଆଜି ମଲେ କାଲିକି ଦି ଦିନ, କିଏ କାହାକୁ ପଚାରେ, ବୁଝିପାରୁନ ? ବଞ୍ଚିଥିଲାବେଳେ ମଣିଷ ଧନକୁ

ସ୍ୱରବଳିତ, ମଲା ପରେ ବଂଶଙ୍କୁ ଶ୍ରାଦ୍ଧ ପିଣ୍ଡରେ ବଳିତେ ମାଡ଼ି । ତାର ବର୍ଷକର ଖଲପେଟ ବଳିତକେ ପୂରିଯାଏ ? ତାକୁ ବନ୍ଦ କରିବାର ଫିକର ବି ଉତ୍ତରାଧିକାରୀ-ମାନେ କାଢ଼ିଛନ୍ତି—ଗୟାରେ ଫଲ୍‌ଗୁ ନଦୀରେ ପ୍ରଥମ ପିଣ୍ଡ ଦେଇ ଆସିଲା ପରେ ଆଉ ଶ୍ରାଦ୍ଧ ଦେବାକୁ ପଡ଼େ ନାହିଁ ।

ପସ୍ତା ଶ୍ରାଦ୍ଧରେ ଧନେ ଆଲୁଅ ଟେକିଲେ କଣ ପିତୃପୁରୁଷଙ୍କର ବର୍ଷକର ଅନ୍ଧାର ଦୂର ହୋଇଯାଏ ? ପସ୍ତରିଲେ ଅଗବନ୍ଦ ।

ରମା ଏହାର ଉତ୍ତର ଦେଲା ନାହିଁ । ତାକୁ ଏ ଉକ୍ତି ଓ ଯୁକ୍ତି ବିଷପରି ଲାଗେ । ସେ ଦୁଃଖ ମନରେ ଭାବେ—ମୋ ସ୍ୱାମୀ ନାସ୍ତିକ; ନାସ୍ତିକତାର ବିଷମୟ ଫଳ ହିଁ ଆମକୁ ଭୋଗ କରିବାକୁ ହେଉଚି । ଭଗବାନ୍ କୁଳକୁ କାଣ୍ଡାରୀଟିଏ ଦେଉନାହାନ୍ତି । ଆମ ଉପରୁ ତାଙ୍କ ମନ ଗୁଞ୍ଚିଯାଇଚି ।

ରମା ସ୍ୱାମୀଙ୍କ ପାପର ପ୍ରାୟଶ୍ଚିତ୍ତ କରେ, ଠାକୁରଙ୍କ ପୂଜାପୂଜିରେ ତାର ଅନେକ ବେଳ ଯାଏ । ତା ପିଲା ସନ୍ତତି ଖାପ ନ ଖାଇଲେ ବି ସେ ଓଷା ପୂଜା କରିଯାଏ, ତୀର୍ଥବ୍ରତ କରେ, ଦାନଧର୍ମ କରେ, ଦେଉଳ ଦୁଆରେ ମୁଣ୍ଡିଆ ମାରି ମାରି ମୁଣ୍ଡରୁ ବାଳ ଛିଣ୍ଡେ, ଜଣାଣ ଭଜନ ବୋଲି ବୋଲି ଚୋଟି ପଡ଼େ ।

ଏ ସବୁର ପ୍ରତ୍ୟକ୍ଷ ଫଳ ନ ପାଇ ସେ ନିରାଶ ହୁଏ; ଜୀବନ ଲାଗେ ବଡ଼ ଶୁଷ୍କ, ରୁକ୍ଷ, ଅସହ୍ୟ ।

କାହା ଷଠୀ, ପଞ୍ଚୁଆତି ବା ଏକୋଇଶାକୁ ସେ ଯାଏନାହିଁ । କାହା ପିଲାକୁ ଦେଖି ମନ କଟେନାହିଁ, ମୋହମୂଳନାରେ କିଛି ନ କହିଲେ ମଧ୍ୟ କାଳେ କିଏ ଭାବିବ—କାହିଁକି ଏ ଅଲକ୍ଷଣୀଟା ଅଇଲା ? ମୁହଁ ଚାହିଁଲେ ଅଯଶ, ଅମଙ୍ଗଳ, ପିଲା ଉପରେ ଡାହାଣୀ ଦୃଷ୍ଟି ଯଦି ପଡ଼ାଏ !

ମନ ମାରି ରହେ; ପୁଣ୍ୟପର୍ବରେ ପିଠାପଣା କରେନାହିଁ; କାହାଲାଗି କରିବ ?

ଧନେ ଆଇ ଶାଶୂ କହିଲା—ଧର୍ମପୁଅଟିଏ କର; ବାଳଗୋପାଳ ସେବା କଲେ ଆଣୁଆ ଗୋପାଳ ତୋ ମନ କାମନା ପୂର୍ଣ୍ଣ କରିବେ ।

ରମା କହିଲା—ଅଇ, ତୁ ମତେ ଅଉ ସେ କଥା କହନା—

'ଯାହା ଦେଇନାହିଁ କପାଳ
ତାହା ଦେବେ ନ ହିଁ ଗୋପାଳ ।'

× × × × ×

ଯେତେବେଳେ ମନରୁ ସବୁ ଆଶା ହଜିଗଲା, ଆଶ୍ଚର୍ଯ୍ୟ, ସେତିକିବେଳେ ଲତା ଧରିଲା କଷି । ଏ କେମିତି ହେଲା ? କେମିତି ?

ଯେମିତି ହଉ, ହେଲାତ; ଋତୁବନ୍ଦ; ଦୁଇମାସ ଗଲା ରମା ମନେ କଲା— ଉପାବ୍ରତ, ପୂଜା ପୂଜ ବ୍ୟର୍ଥ ଯାଏନାହିଁ । ଠାକୁରେ ଡାକ ଶୁଣିଲେ !

ସବୁବେଳେ ଲୋକଙ୍କ ଅଭିଯୋଗ—ଭଗବାନ୍ ଡାକ ଶୁଣନ୍ତି ନାହିଁ— ଆରେ ବାବୁ, ଡାକ ଶୁଣନ୍ତି ସେ ଜଣ ଜଣ କରି ସମସ୍ତଙ୍କ ଆଶା ପୂର୍ଣ୍ଣ କଲାବେଳକୁ ଟିକିଏ ବିଳମ୍ବ ହୋଇଯାଏ । ଧୈର୍ଯ୍ୟ ଲୋଡ଼ା ।

ରମା ମନେ ମନେ ଆଶ୍ୱସ୍ତ ହେଲା—ସେ ଗର୍ଭବତୀ । ଗର୍ଭବତୀର ସମସ୍ତ ବିଶ୍ୱାସ ମନରେ ଜମାଟ ବାନ୍ଧିଲା, ଘନ ଘନ କାଶ—ବାନ୍ତି ! ତାକୁ ଅରୁଚି ଧରିଲା ।

ସ୍ୱାମୀ ତ କିଛି ବୁଝିଲେ ନାହିଁ; ଠଟ୍ଟାରେ ସବୁକଥା ଉଡ଼ାଇ ଦେବେ । ରମା ତାଙ୍କୁ କିଛି କହିଲା ନାହିଁ ।

ଆଈ ଶାଶୂ ବୁଝିଲେ; ପାଖପଡ଼ିଶା ପଚାରିଲେ କହିଲେ—କାଶ; ଯାହା ଖାଇଲେ ବାନ୍ତି ହୋଇ ଯାଉଛି । ଔଷଧ ଖାଉଛି ।

ପେଟ ବଢ଼ିଲା; ଆଶା ଲତା ଉଙ୍କି ମାରିଲା । ଦେହ ଖସି ଖସି ଲାଗିଲା । ଅଳସ । ଦୁର୍ବଳ । ଘରପାଇଟି କରିବାକୁ ଦେହ ଚଳେନାହିଁ ।

ଗର୍ଭିଣୀର ଅଜବ ସଧ—ତାଳଗଇଁଠା, ପିତାଶାଗ, ପୋଡ଼ା...... । ଆଈ ଶାଶୂ ଗୋଟିକି ଗୋଟି ସଧ ମେଣ୍ଟାଇ ଦେଲେ ।

ଆଈଶାଶୂର ଇସାରାରେ ବାପଘରୁ ଆସେ—ଚୁଡ଼ାକଦଳୀ, ଆରିଷା ପିଠା, ସରୁ ଚକୁଳି ।

ଏ ସବୁ ଦେଖି ରମା ଥରେ ଆଈଶାଶୂ ଉପରେ ଚିଡ଼ି ଉଠିଲା—ତୁମକୁ କିଏ କହିଲା—ଏ କଥା ପ୍ରକଟ କରିବାକୁ ? ଘର ଗୁମର ପଦାରେ ପକାଇବାକୁ ?

ଟିକିଏ କଡ଼ା କରି କହିଦେଲା ସିନା, ମନେ ମନେ ଝୁରୁଥିଲା ।

କେତେ କାଳ ପରେ ତାକୁ ଲାଗିଲା—ପିଲା ପେଟରେ ବୁଲୁଛି, ପେଟରେ ଗୋଇଠା ମାରୁଛି ।

କଷ୍ଟଟା ସମ୍ଭାଳି ନେଇ ରମା ମନେ ମନେ ଭାବଲା—କି ଦୁଷ୍ଟ ! ଆଜିହୁଁ ଏତେ, ପାଣି ପଡ଼ିଲେ ହବ କେତେ !

ବେଳେବେଳେ ତାକୁ ବଡ଼ ଉଦାସିଆ ଲାଗେ । ଶୂନ୍ୟକୁ ଅନାଇ ଭାବେ—କଣ ହବ ? ପୁଅ ନା ଝିଅ ?

ଯାହା ହବ ହଉ, ହଉ । ବାପଙ୍କ ଦୋଷ କଣ୍ଟୁ । ମୁଣ୍ଡ ଟେକି ଟିକିଏ ଦାଣ୍ଡରେ ଚାଲେଁ ; ମନ ଖୋଲି କଥା କହେଁ ।

ବଡ଼ ନିଷ୍ଠୁର ଏ ସଂସାର । କାହା ଦୁଃଖ କିଏ ବୁଝେ ? ଦେଖେଇ ଦେଖେଇ କେତେ ପ୍ରକାର ଲୋକେ କହନ୍ତି, ମର୍ମରେ ବାଜେ । ଜବାବ୍ ଦେଇ ହୁଏ ନାହିଁ ।

ଯେତେ ରୂପ ଥିଲେ, ଗୁଣ ଥିଲେ କିଏ ପଚାରେ ? ପିଲାଟିଏ ନଥିଲେ ଏ ମୂଲ୍ୟହୀନ ।

ଆଚ୍ଛା, କେମିତି ହବ ତାର ମୁହଁଟି ?

'ଜାକର ଛନ ଛନ ଧଳା କଇଁଫୁଲଟି ପରି' ।

କେମିତି ଗହା ଧରବ ? ଗହା ଧରୁ ଧରୁ ଲାଳ୍ ପଡ଼ିଯିବ ! ଦେଖି ଶର୍ଙ୍କି ଯିବ—ପବନ ଅଟକିଗଲା କି !

କେମିତି ହାତ ହଲେଇବ, ଗୋଡ଼ ଗୁଟିବ, ଗୁରୁଣ୍ଡିବ, କାନ୍ଥ ଧରି ଠିଆ ହବ, ଠୁକୁ ଠୁକୁ ଚାଲିବ, ଲାଥୁ ଲାଥୁ ପଡ଼ିବ ! କେମିତି ଡାକିବ ପା-ପା-ପା ବୋ-ବୋ ବୋ...... ।

ଯେତେବେଳେ ହସିବ—ସେତେବେଳେ ସୁଖସମୁଦ୍ର ଉଚ୍ଛୁଳି ଯିବ, ଅଃ ... ।

ବାପ ତ ଜଦା ବର୍ଷ୍ଟୁ ; ଏବେ ସବୁ ଜାଣିଲା ପରେ ଖୁସି ନା ନାଇଁ ?

କଣ ଭାବୁଛନ୍ତି ସେ ? ଯାହା ଭାବନ୍ତୁ, ପିଲାଟି କୋଳକୁ ବଢ଼ାଇଦେବି । ଆଦରେ କଣ କୋଳକୁ ନେବେ ନାହିଁ ? ନଚ୍ଚାଇବେ ନାହିଁ ? କାନ୍ଧ ଅ କରି ଘର-ଆଡ଼େ ବୁଲାଇବେ ନାହିଁ ? ଯିବେ କୁଆଡ଼େ ? ଏତେ କାଳକେ ଯେତେବେଳେ ପିଲାର ବାପ ହେଉଛନ୍ତି, ମନରେ ଗର୍ବ ହବ ନାହିଁ ?

ଦିନେ ଅରବିନ୍ଦଙ୍କୁ ଅଣ୍ଟି ଶାଶୁ ଜଣାଇ ଦେଲେ—ରମା ଦୁଃଖ ପାଉଚି, କଣ ହବ...... । ଡାକ୍ତରଖାନାକୁ ନେଇ ଯାଅ । ପ୍ରଥମ ଗର୍ଭ, ମାଆ ପ୍ରତି ବିପଦ ଅଛି ।

ଡାକ୍ତରାଣୀ, ନର୍ସ, ଧାଈଙ୍କ ମନ ବୋଧ କରାଗଲା—କର୍ତ୍ତବ୍ୟରେ ଢିଲେ ମାତ୍ର ଅବହେଳା ଯେପରି ନ ଘଟେ, ସମସ୍ତେ ଜାଗରୂଥାଅ ।

ରମା ବହୁତ କଷ୍ଟ ପାଇଲା; ରାତିସାରା ଅନିଦ୍ରା, ଛଟପଟ; ଅନିଚ୍ଛା ସତ୍ତ୍ୱେ ଗୋଟେ ଗୋଟେ ବିକଳ ଚିତ୍କାର ବି ବାହାରି ଯାଉଥାଏ ।

ପାହାନ୍ତାକୁ ବୋହିଗଲା ପ୍ରଚଣ୍ଡ ରକ୍ତ ସ୍ରୋତ; ଘର ଭାସିଲା । ରମା ପ୍ରାୟ ଅଜ୍ଞାନ । ସେହି ଅବସ୍ଥାରେ କ୍ଷୀଣ କଣ୍ଠରେ ପଚାରିଲା—ପୁଅ ନା ଝିଅ ?

ଡା'କ୍ତର ବୋଧହୁଏ କହି ଉଠୁଥିଲେ—ମେନପୋଜ୍; ଋତୁସ୍ରାବ ବନ୍ଦର ପୂର୍ବାଭାସ ।

ଅରବିନ୍ଦ ତାଙ୍କ ମୁହଁରେ ଚଟ୍‌କିନେ ହାତ ଦେଇ ବଡ଼ ପାଟିରେ କହିଲେ —ପୁଅ, କିନ୍ତୁ ....

ଏ କଥା କହିଲା ବେଳେ ତାଙ୍କ ଆଖିରୁ ଠକ୍ ଠକ୍ ଲୁହ ଖସି ପଡ଼ୁଥିଲା ।



# ଛି-ଛି, ଏ କଣ କରୁଚ !

"ନନା,

ତୁମ ପାଦ ଛୁଇଁବାର ଅଧିକାର ହରେଇଚି । ମତେ କେଡ଼େ ଗେଲ-ବସରରେ ବଢ଼େଇଥିଲ; ଦିନେ ବି କୋଉ କଥାରେ ଆକଟ କରି ନ ଥିଲ । ମୋର କୋଉ କଥା ତଳେ ପଡ଼ି ନ ଥିଲା । ସେ ଋଣ ମୁଁ କେମିତି ଶୁଝିଲି ?

ତୁମ ମାନ ତଳେ ପକାଇଲି; ତୁମ ମୁଣ୍ଡ ତଳକୁ ନୁଆଁଇଲି । ସମାଜ ଆଖିରେ ତୁମକୁ ଦୋକଡ଼ାର କଲି । କିଏ କଥାର ମର୍ମ ଭିତରେ ପଶେ ? ଯେ ଶୁଣିଲେ କହିବ—କେଡ଼େ ଅଲାଜୁକ ଝିଅଟା ! ବାପମାଆ କେମିତି ବଢ଼େଇଥିଲେ, କି ପାଠ ପଢ଼େଇ ଥିଲେ ! ଅକୁଳରେ ପଶିଲି । ମୁହଁରେ କାଳି ବୋଳିଦେଇ ଗଲି ।

ନନା, ତୁମ ପାଖେ କେଡ଼େ ଅପରାଧ କଲି ! ତୁମ ମନରେ କେଡ଼େ କଷ୍ଟ ଦେଲି !

ତଥାପି ମନ ବୁଝୁନାହିଁ; ସଂସାର ଆଖିକୁ ଭୁଲ ପରି ଦିଶିଲେ ବି ମୁଁ କିଛି ଭୁଲ୍ କରିନାହିଁ । ଜାଣି ନ ଜାଣିଲା ପରି ଗୋଟେ ଅନ୍ଧାରି ଖମା ଆଡ଼କୁ ଟାଣି ହେଇ ଯାଉଥିଲେ ଆମେ ସମସ୍ତେ । ସେଇ ବିପଦ ମୁହଁରୁ ମୁଁ ସମସ୍ତଙ୍କୁ ରକ୍ଷା କରିଚି । ପଛକୁ ବୁଝିବ—ମୋ କଥା ସତ କି ମିଛ; ଏଇଲେ ଅଡ଼ୁଆ, ଅକଡ଼ୁଆ ଲାଗିପାରେ । ମନର କ୍ରୋଧ ବଢ଼ାଇ ଦେଇପାରେ, ଯାହାର ପ୍ରତିଫଳ ଭୋଗୁଥିବ ବୋଉ; ମୋ ପଳେଇବା ଲାଗି ତାକୁ ତୁମେ ବେଶୀ ଦାୟୀ କରୁଥିବ—ସେ କାହିଁକି ଅଚେତା ନିଦ ଶୋଇଲା, ତା'ରି ପାଖରୁ ମୁଁ କେମିତି ଉଠିଗଲି । ଖସ୍‌ଖାସ୍ ବା ଖୁଡ଼୍‌ଖାଡ଼ରେ ତା ନିଦ କାହିଁକି ଭାଙ୍ଗି ନ ଗଲା ! ବଢ଼ିଲା ଝିଅ ପାଖରେ ଶୁଆଇ କୋଉ ମାଆ ଏଡ଼େ ନିହାଲ୍ ହୋଇ ଶୁଏ ?

ସବୁ ଦୋଷ ତା'ରି ମୁଣ୍ଡରେ ଲଦା ହଉଥିବ । ନିଜକୁ ନିର୍ଦ୍ଦୋଷ, ନିରପରାଧ ବୋଲି ପ୍ରମାଣ କରିବାକୁ ସେ କିଛି ହେଲେ କହୁ ନଥିବ । ସବୁ ପ୍ରଶ୍ନର ଗୋଟିଏ ମାତ୍ର ଉତ୍ତର ଦେଉଥିବ—ଲୁହରେ । ଲୁହ ଦେଖି କେହି କିଛି ପଚାରୁ ନ ଥିବେ ।

ଚାରିଦିନ ମାତ୍ର ଥିଲା ବାକି । ଅଳଙ୍କାରପତ୍ର ଗଢ଼ା ହୋଇ ଆସିଥିଲା । ପଞ୍ଜି, ବଉଳ ପାଟ, ବନ୍ଧୁବାନ୍ଧବଙ୍କ ଲାଗି ମର୍ଯାଦା କଣା ହୋଇ ଆସିଥିଲା । ନିମନ୍ତ୍ରଣପତ୍ର ଛପା ହୋଇଥିଲା; ମହାର୍ଘ ବନ୍ଧୁଙ୍କ ଘରେ ଗୁଆ ପକା ହୋ'ଇଥିଲା;

କେତେ ରକମର ରଙ୍ଗୀନ୍ କାଗଜରେ ବିଭାଘର ଗୀତ ବି ଛପା ହୋଇ ଆସିଥିଲା, ସବୁ ଫୁଲ ସବୁରେ ବନ୍ଧା ହୋଇଥାନ୍ତା । ସରକାରୀ କ୍ୱାଟରରେ ସ୍ଥାୟୀ ସିମେଣ୍ଟ୍ ବେଦୀ ତ ଅଛି । ତା ଉପରେ ଗ୍ରାମ୍ଫୋନ୍‌ରେ ଆ ହେଉଥିଲା । ବଡ଼ ବାଜା, ତେଲଙ୍ଗି ବାଜା, ଯୋଡ଼ନାଗରା—ଏମିତି ତିନି ସାର ବାଜାବାଲାଙ୍କୁ ବନ୍ଦନା ଦିଆ ହୋଇ-ଥିଲା । ମାଛ, ଦୁଧ ବି ବରାଦ୍ ଦିଆ ହୋଇଥିଲା, ଏ ସବୁ ଦେଖି ବୋଉ ପାଦ ତଳେ ପଡ଼ୁ ନ ଥିଲା । କେତେ ଜାକଜମକରେ ନିର୍ବନ୍ଧ ହୋଇଥିଲା, କେତେ ସଲଖଣରେ ବିଭାଘରଟା ହୋଇଥାନ୍ତା । ସବୁ ଭଣ୍ଡୁର୍ କରିଦେଲି ମୁଁ । କାହିଁକିନା, ଏ ବିଭାଘରେ ମୋର ମତ ନ ଥିଲା । ଇଞ୍ଜିନିଅରିଂଟାଏ ପାସ୍ କରିଚି ବୋଲି ତା ମୁହଁରେ ଯୋଉ ଔଦ୍ଧତ୍ୟ ଫୁଟି ଉଠୁଥିଲା, ତାକୁ ଦେଖି ମୋ ଗୁହରେ ନିଆଁ ଚରି ଯାଉଥିଲା । ଟେମସ୍ ନଦୀର ପାଣି ଟୋପାଏ ପିଇ ଆସିଚି ବୋଲି ସେ ଇନ୍ଦ୍ର, ଚନ୍ଦ୍ର, ମାନୁ ନ ଥିଲା । ସେ ବିନା ସିଗାରେଟ୍‌ରେ ପାଞ୍ଚ ମିନିଟ୍ ରହିପାରୁ ନାହିଁ; ସେ ମଦ ଖାଉଥିବ; ତାକୁ ଦେଖି ମତେ ଲାଗୁଥିଲା, ଆଉ କୋଉ ଅକଥା ବି ବାଦ୍ ପଡ଼ୁ ନ ଥିବ ।

ମୁଁ କେମିତି ଏ ଲୋକ ସାଙ୍ଗେ ଚଳିଥାନ୍ତି ? ତୁମକୁ ଏ କଣ ଶଶୁର ମାନ୍ୟ ଦେଇଥାନ୍ତା ? ଟଙ୍କା ହିସାବରେ ଯୋଉ ସମାଜରେ ସବୁ ତଉଲ ହୁଏ, ସେଠି ଜଣେ ଶିକ୍ଷକ ବା ଅଧ୍ୟାପକର ମର୍ଯ୍ୟାଦା କେତେ ? ସେ ମୋଟେ ଆମର ସମାସ୍କନ୍ଧ ବନ୍ଧୁ ନୁହେଁ; ଏକା କାଟର ବନ୍ଧୁ ନ ହେଲେ ପଛରେ ପସ୍ତେଇ ଥାନ୍ତି, ବୋଉ ବେଶୀ ବାଡ଼େଇ କଷ୍ଟ ହୋଇଥାନ୍ତା ।

ବହୁତ ଯଉତୁକ ନ ନେଲେ ଏ ଯୁଗରେ ବେଶୀ ରୋଜଗାରିଆ ବର ମିଳନ୍ତି ନାହିଁ । ଯାହା ଟଙ୍କା ଗଲେ ଯାଉ ପଛେ, ଝିଅ କେମିତି ମୋର ସୁଖରେ ରହୁ, ଏଇ ଥିଲା ତୁମ ମନର ଭାବନା ।

ସେ ଲୁଆଡ଼େ ଲକ୍ଷ୍ମୀ ଥିଲାବାଲା; ତାର ତ ଏତେ ଧନ ଅଛି, ସେ ତୁମକୁ ଶୋଷୁଥିଲା କାହିଁକି ? କେଉଁ ଅଧ୍ୟାପକ ଲକ୍ଷେ ଟଙ୍କା ଯଉତୁକ ଦେଇପାରେ ? ତା ମାନେ—ତୁମେ ମର, ସର, ମତେ ଦିଅ । ଧନ ଥିଲେ କଣ ହେବ, ତା ମନ କେତେ ଛୋଟ, ଏଥିରୁ ତୁମେ ବୁଝୁନ ହଁ ?

ବଳଦଫେରନ୍ତା ଏଇ ବଳଦ, ନିଜକୁ ବିକୀ କଲା । ତା ମୁହଁରେ ଟିକିଏ ଲାଜ ଥିଲେ, ମାନସମ୍ମାନ ଜ୍ଞାନ ଥିଲେ ସେ ନିଜକୁ ଏତେ ତଳକୁ ନେଇ ଯାଇ ପାରିଥାନ୍ତା ? ଶଶୁର ବାପ ସମାନେ । ଯେ ବାପକୁ ଶୋଷଣ କଲା, ସେ ଦେଶକୁ ଶୋଷଣ ନ କରିବ କାହିଁକି ?

ଏ ଲୋକ ସରକାରୀ ଚାକିରି କଲେ ଦରମାରେ ତୁଳସୀ ପତ୍ରଟିଏ ପକାଇ ରଖିଦେବ । ଉପୁରିରେ ଘର ଚଳିବ । ସରକାରୀ ଘର ତୋଳାରୁ ସିମେଣ୍ଟ, ଛଡ଼ ଯାଇ ନିଜ ଘର ତୋଳା ହେବ । ରାସ୍ତାଘାଟ, ପୋଲ, ବନ୍ଧରେ ଖଇରା ରଖି ଉପୁରି ରୋଜଗାର କରିବ; ତା ଉଅର ସରକାରୀ ଘରୁ ପାଣି ଗଳିବ; ସେ ଘର ଅଳ୍ପଦିନେ ଭୁଷୁଡ଼ି ପଡ଼ିବ । ଏ ଧନ୍ଦା ତ ତୁମେ ନିତିଦିନ ଦେଖୁଚ; ସେମିତି ଗୋଟାଏ ଶୋଷକ ହାତରେ ମୋତେ ସମର୍ପି ଦେଉଥିଲ କପରି ? ଯୋଉ ପ୍ରକାର ଲୋକକୁ ମୁଁ ଘୃଣା କରେ, ତା ହାତ ଧରି ମୁଁ ବନ୍ଧା ହୋଇଥାନ୍ତି କେମିତି ?

ଉଚ୍ଚ କୁଳରେ ଜନ୍ମ ହୋଇ କେହି ବଡ଼ ହୋଇ ନ ପାରେ; ଅସଲ ହେଲା କର୍ମ । ନୀଚ କର୍ମକାରୀ ଯେତେ ଉଚ୍ଚ ଜାତିରେ ଜନ୍ମ ହୋଇଥିଲେ ବି ଚାଣ୍ଡାଳ । ଲୋଭାତୁର ବ୍ୟକ୍ତି ଯେତେ ଧନୀ ହେଲେ ବି କାଙ୍ଗାଳ ।

ମୁଁ କଣ ତାଠୁ ଅଳ୍ପ ପାଠ ପଢ଼ିଚି କି ? ମୁଁ କୋଉ ଗୁଣରେ ତାଠାରୁ ଊଣା କି ? ତା ବାପ ତାକୁ ପାଠ ପଢ଼େଇବା ଲାଗି ଯେମିତି ଖର୍ଚ୍ଚ କରିଚ, ତୁମେ ବି ମୋ ଲାଗି ସେମିତି ଖର୍ଚ୍ଚ କରିଚ । ସେ ଖାଲି ପୁଅ ବୋଲି କଣ ବିଧାତାର ବରପ୍ରାପ୍ତ ? ମୁଁ ଝିଅ ବୋଲି ଅଭିଶାପଗ୍ରସ୍ତ ? ତା ଯଦି ନୁହେ, ତୁମେ ଚିଠି ଦବ କାହିଁକି ? ବଳି ଗଣିବ ବା ସକାଶେ ? ଏ କଣ ଆମ ପ୍ରତି ଅପମାନ ନୁହେଁ ?

ତୁମେ ଲକ୍ଷେ ଟଙ୍କା ଦବାକୁ ରାଜି ହୋଇଯିବା ଫଳରେ ତା ମୁହଁ ବହୁତ ବଢ଼ି ଥିଲା । ତା ଘରକୁ ଗଲାପରେ ସେ ତୁମକୁ ଆହୁରି ଦୁହିଁଥାନ୍ତା, ଧମକ ଦଉ-ଥାନ୍ତା । ତା ମାଆ ସ୍ତ୍ରୀ ଦେଲ ନାହିଁ, ତା ଦେଲ ନାହିଁ ବୋଲି ଉଲୁଗୁଣା ଦଉଥାନ୍ତା ମୋ ପିଠିରେ ଗୁଞ୍ଚୁଣି, ଖଡ଼ିକାମୁଠା ଉଡ଼ଉଥାନ୍ତା । ତାକୁ ସହି ନ ପାରି ମୁଁ କିରାସିନୀ ଢାଳି ପୋଡ଼ି ହୋଇ ମରିଥାନ୍ତି, ଯେମିତି ବହୁ ଜାଗାରେ ହଉଚି । ତୁମେ ଧାଡ଼େ କାନ୍ଦୁଥାନ୍ତ, କରଜ ଶୁଝି ଶୁଝି ମରୁଥାନ୍ତ । ବହୁତ ଟଙ୍କା ପଇସାର ମାଲିକ ହୋଇ ସେ ନୂଆ ପାତ୍ରୀ ଖୋଜୁଥାନ୍ତା ।

ନନା, ମତେ ଯେତେ ଗାଳି ଦିଅ ପଛେ, ମୁଁ ତୁମକୁ ବହୁତ ଦାଉଘାତରୁ ରକ୍ଷା କରିଚି ।

ମୋର ଏ ଶଶୁର ଘର ବଣିଆ ଘର; ମୋ ଶ୍ୱଶୁର ଅଳଙ୍କାର ଗଢ଼ନ୍ତି । ମୋ ସ୍ୱାମୀ ଗୋଟିଏ ପ୍ଲେଟ ଚାକିରି କରନ୍ତି । ମୋ ଶାଶୁ ମତେ ବୋଉ ପରି ଭଲ ପାଆନ୍ତି । ଏଠି ମୋର ପାଦ ପୂଜା । ଏଠି ମୁଁ ଖଟି ଖାଉଚି, କିନ୍ତୁ ଭାରି ସୁଖରେ ଅଛି । ଚାକିରି ଖୋଜୁଛି । ପାଇଲା ପରେ ଆଉ ଦୁଃଖ କଣ ?

ମୁଁ ଜାଣେ—ତୁମେ ଖୁବ୍ ଜାତିପତି ମାନ; ଏ ଦୁଆରକୁ କେବେ ହେଲେ ପାଣି ଛଡ଼ିବାକୁ ଆସିବ ନାହିଁ । ମୁଁ ମଧ୍ୟ ସ୍ତ୍ରୀ ଦିଅ, ତା ଦିଅ ବୋଲି ତୁମ ପାଖେ ଅଳି

କରିବାର ସାହସ ହରାଇଛ । ତୁମର ସ୍ନେହ ଡ଼ାକ ଏବେ ବି ମୋ କାନରେ ବାଜୁଛି ।

ଘରକୁ ମୁଁ ଫେରି ନଲି । ଜଙ୍ଗଲ ଭିତରେ ବାଡ଼ ପକାଇଲି । ସେ କଥା ଭାବିଲେ ମୋ ମନ କଣ୍ଟ ହୋଇଯାଏ । କିନ୍ତୁ ସେଠି ବନ୍ଦୀ ହୋଇଥିଲେ ମୁଁ ଜୀବନସାରା ଲୁହ ନ କାନ୍ଦି ରକତ କାନ୍ଦିଥାନ୍ତି । ଖାଲି ମୋ'ର ସୁଖଶାନ୍ତି ପାଇଁ ନୁହେଁ, ତୁମ ଉଚ୍ଚ ଆଦର୍ଶ ଓ ମାନସମ୍ମାନ ରକ୍ଷା ଲାଗି ମୁଁ ଯାହା କରୁଛି ।

ଏତେ ପାଠ ପଢ଼ି ଏ ଯୁଗରେ ଅଳଙ୍କାର ପିନ୍ଧୁଚି କିଏ, ତୁମେ ତ ମୋତେ ସବୁବେଳେ ବୁଝାଇଚ – ଗୁଣ ହେଉଚି ଅସଲ ଅଳଙ୍କାର ।

'ଅଳଙ୍କାର ଲୋଭ ଏଡ଼ି ପାରନ୍ତି କି କେବେ ଅଙ୍ଗନା ?' ଏ ଉକ୍ତି ଯୁଗୋପଯୋଗୀ ନୁହେ । ଏଥିରେ କି ହାର ରୂପଶ୍ରୀ ବଢ଼ିଲେ ବା ବଢ଼ୁଥିବ । ମୋର ଧାରଣା—ଏଥିରେ ଅହଙ୍କାର ବଢ଼େ । ସ୍ତ୍ରୀଲୋକ ଉପରେ ଚୋରର ଲୋଭାସକ୍ତ ଆଖି ପଡ଼େ ।

ଏ କଥା ବୁଝିଲେ ବି ଦେଖଣାଇ ପାଇଁକୁ ଗୃହିଁ ଏସବୁ ତୁମେ ଗଢ଼ାଇଛ । ସେତକ ଝୁମା ବାହାଘର ଲାଗି ରଖିବ । ମୋ ଘରପିନ୍ଧା ଲୁଗାତକ କେବଳ ପଠାଇଦବ ।

ମୋ ଲାଗି ବୋଉକୁ ଗାଳି ଦବ ନାହିଁ । ବୁଝେଇ ଶୁଝେଇ ଶାନ୍ତ କରିବ । ବହୁତ ଭୁଲ୍ କରିଥିଲେ ବି ପାଦରେ ଆଡ଼େଇ ଦବନାହିଁ । କ୍ଷମା ଦବ ।

। ଇତି । ସ୍ନେହାଧୀନ

—ଲୁନି—

ଅଧ୍ୟାପକ ଚକ୍ରଧର ଚିଠିପଢ଼ା ଶେଷ କରୁ ନ କରୁଣୁ ଗର୍ଜି ଉଠିଲେ— କୁଆଡ଼େ ଗଲି ହୋ ଶଶିକଳା ? ଏତିକିରେ ଶଶିକଳା କି ବିକଳା ଦିଶୁଚ !

କି ଗୁଣବନ୍ତ ଝିଅଟାଏ ଜନମ କରିନାହଁ କି ! ତୁମ ମୁହଁରେ ଲାଜ ନାହିଁ ? ଆଉରି କାନ୍ଦୁଚ ! ବିଷଗଛ ଲଗେଇ ତା ଫଳ ତୁମେ ଭୋଗ ନ କଲେ ଆଉ କରିବ କିଏ ? କାହିଁକି ମିଛରେ ଲୁହ ଗଡ଼ଉଚ ? ଝିଅ ମୁହଁରେ ଯୋଉ କାଳି ବୋଳି ଦେଇଗଲା, ଭାବିଚ କି, ସେଥିରେ ଯେ ଧୋଇ ହୋଇଯିବ ?

ମିଛକୁ ଆଉ ଏ କାନ୍ଦବୋବା କାହିଁକି ? ଗୋଟାଏ ଅକୁଳକୁ ଗଲା ତ ମଲା ବୋଲି ଜାଣ ।

ଜନସ୍ରୋତ ଯେ ଝାଳନାଳ ହୋଇ ଦୌଡ଼ୁଚି, ସେ କଣ ଆମ ନିଜ ପାଇଁ ? ପିଲାଏ କେମିତି ଭଲ ଗଣ୍ଡିଏ ଖାଇବେ, ଭଲ ଖଣ୍ଡିଏ ପିନ୍ଧିବେ, ଦି ଅକ୍ଷର ପଢ଼ିବେ, ସେଥିଲାଗି ଆମ ଦି ଆଖିରେ ନିଦ ନାହିଁ । କିନ୍ତୁ ଆଜିକାଲିର ପିଲାଏ ସେ ଋଣ ଏମିତି ଶୁଝୁଛନ୍ତି !

ଚକ୍ରଧର ସଂସ୍କୃତ ଅଧ୍ୟାପକ, ଏମ୍. ଏ. ପି ଏଚ୍. ଡ଼ି. । ଲେକ୍‌ଚରର୍‌ରୁ ରିଡ଼ର, ଏବେ ପ୍ରଫେସର ହୋଇଛନ୍ତି । ବିଦ୍ୱାନ୍, ବାଗ୍ମୀ; କିନ୍ତୁ ବିଦ୍‌ବତ୍ତା ତାଙ୍କୁ ସ୍ୱାଭାବିକଭାବେ ଯେତିକି ବିନମ୍ରୀ କରିବାର କଥା, କରିନାହିଁ । ଲେଖକ ଭାବେ ଯଶ ପ୍ରତିଷ୍ଠା ତାଙ୍କ ଔଦ୍ଧତ୍ୟ କିଛି ପରିମାଣରେ ବଢ଼ାଇ ଦେଇଛି । ତାହା ସହ୍ୟ ହୁଏନା, ବ୍ରାହ୍ମଣଗିରି ଜାରି ନ କଲେ, ତାଙ୍କ ପ୍ରଶସ୍ତ ଲଲାଟରେ ପୂର୍ଣ୍ଣଚନ୍ଦ୍ର ପରି ଚିତା ଟୋପାଟା ସହକର୍ମୀଙ୍କ ନିକଟରେ ବଡ଼ ଅସହ୍ୟ ହୁଏ ।

ସେ ଗାୟତ୍ରୀ ପଢ଼ନ୍ତି, ସନ୍ଧ୍ୟା କରନ୍ତି । ପିତୃପକ୍ଷରେ ଦାଢ଼ି ଖିଅର ନ ହୋଇ ତର୍ପଣ କରନ୍ତି । ବର୍ଷସାରା କେବଳ ଜ୍ୟେଷ୍ଠି ବଡ଼ ଏକାଦଶୀ ନୁହେଁ, ବାରମାସର ଚବିଶଟିଯାକ ଏକାଦଶୀ କରନ୍ତି । କାର୍ତ୍ତିକରେ ବକପଞ୍ଚକ ପାଞ୍ଚଦିନ ହବିଷ୍ୟ କରନ୍ତି । ଶାସନୀ ସାମନ୍ତ ବ୍ରାହ୍ମଣ ବୋଲି ମନରେ ଭାରି ଗର୍ବ । କେହି ବିନୀତ ନମସ୍କାର କଲେ ଶ୍ଳୋକ ବୋଲି ଲମ୍ବା ଚୌଡ଼ା ଗୋଟାଏ ଆଶୀର୍ବାଦ କରନ୍ତି ।

ତାଙ୍କର ଏ ଗର୍ବ ମସ୍ତକରେ ବଜ୍ରାଘାତ ହେଲା, ଯେତେବେଳେ ରାତି ଅଧରେ ଯୁବତୀ ଝିଅ ଘର ଗୁଣ୍ଡା କାହା ବୋଲି କାହା ସଙ୍ଗରେ ପଳାଇଯାଇଛି ବୋଲି ରାଷ୍ଟ୍ର ହେଲା । ସମସ୍ତେ ଛି ଛି କଲେ ଓ ଅଧ୍ୟାପକ ମହାଶୟ ଲାଜରେ କାହା ଆଗରେ ମୁହଁ ଦେଖାଇ ପାରିଲେ ନାହିଁ । କାଳେ କିଏ କଣ ଭାବିବେ ବୋଲି ହାଇପଡ଼ିଶା ତାଙ୍କ ଦୁଆର ମାଡ଼ିଲେ ନାହିଁ ।

ଦୃଢ଼ଭାବେ ପରମ୍ପରା ରକ୍ଷାକାରୀ, ନିଷ୍ଠାପର ବ୍ରାହ୍ମଣ ପକ୍ଷରେ ଏ ଅପମାନ ଅସହ୍ୟ । କିନ୍ତୁ କଣ କରିବେ ?

କାହିଁକି ପଢ଼ିବେ ? ପାଠରେ କି ପ୍ରଭାବ ପଡ଼ୁଛି, ଘରେ ବା ବାହାରେ ? କାହିଁକି ଲେଖିବେ ? ହାଟ ମଧ୍ୟରେ ବ୍ରହ୍ମଜ୍ଞାନର କି ମୂଲ୍ୟ ବା ରହୁଛି ?

ଜୀବନରେ କି ତପସ୍ୟା ମୁଁ କରିଛି ? ମୋ ଆଶୀର୍ବାଦରେ କାହାର କି ଉପକାର ହେଉଛି ? ମୋ ଅଭିଶାପକୁ ବା କିଏ ଭୟ କରୁଛି ? ଭିତରେ ଶକ୍ତି ନ ଥିଲେ ଏ ଚିତା ଚଇତନ, ବା ଉପବୀତକୁ କିଏ ଖାତିର କରିବ କାହିଁକି ?

ଯୁଗ ବଦଳିଗଲା । ତା ସହିତ ନ ବଦଳିଲେ ମଣିଷ ମରିଯାଏ । ମୁଁ ଘରେ ବସି ତୁଚ୍ଛାକୁ ଏ ମନ୍ତ୍ରଗୁଡ଼ାକ ଭୁକି ହଉଚି କାହିଁକି ? ମିଛକୁ ସମାଜରୁ ନିଜକୁ ଏକ ଘରକିଆ କରୁଚି କାହିଁକି ? କଣ ଯାର ମୂଲ୍ୟ ? ଯୁଗ ଗୋଟାଏ ବାଟରେ ଯିବ, ମୁଁ କଣ ଆଉ ଗୋଟାଏ ବାଟରେ ଯିବି ?

ଅସ୍ପୃଶ୍ୟଜ୍ଞାନ, ବିଚାରଶୂନ୍ୟ ବୋଲି ମୁଁ ଯାହା ବିଚାରୁଚି, ତାହା ହେଉଚି ଯୁଗର ଆଚାର । ବିଚାର, ଏତେ ଭେଦବାଦ, ବାଛବିଚାର କରି ଆଉ ଲାଭ କଣ ? ଏ ହଉଚି ସମସ୍ତଙ୍କୁ ଏକାକାର କରିବାର ଯୁଗ ।

ଏ ଯୁଗରେ ଯୋଗ୍ୟପାତ୍ର ବୋଲି କାହାକୁ ବିଚାରାଯାଉଛି ? ଆଇ. ଏ.-ଏସ୍, କାନ୍‌ଟ୍ରାକ୍ଟର, ଇଞ୍ଜିନିୟର, ଡାକ୍ତର, ବ୍ୟାଙ୍କ୍ କିରାଣିଆ । କାହାର ଉପାର୍ଜନ ଶକ୍ତି କେତେ, ଉପରି କେତେ, ତାହା ବିଚାରକୁ ନିଆଯାଉଛି । ଏ ଉପୁରିଟି କଣ ? ଦୁର୍ନୀତିର ଚେର କେତେ ଗଭୀରରେ ଓ କିଏ ତାଙ୍କୁ ପ୍ରଶ୍ରୟ ଦେଉଛି, ଏହା କଣ ଭାବିବାର କଥା ନୁହେଁ ?

ଚରିତ୍ର, ମଣିଷପଣକୁ ଦେଖୁଚି କିଏ ? କେହି ନ ଦେଖନ୍ତୁ ହେଲା, ସମାଜର ଏକ ଗୁରୁ ସ୍ଥାନରେ ବସି ମୁଁ ନିଜେ କରୁଥିଲି କଣ ? ମୋ ବିଦ୍ୟାକୁ ତ ମୁଁ ଯଥୋଚିତ ମୂଲ୍ୟ ଦେଲିନାହିଁ, ଆଉ କାହିଁକି କିଏ ଦେବ ?

ଲକ୍ଷେ ଟଙ୍କା ଯେ ଯୌତୁକ ଦେଉଥିଲି, ତାହା କଣ ମୋର ଦେବା ଶକ୍ତିର ବାହାରେ ନୁହେଁ ? ଜୀବନଯାକ ଅର୍ଜନ କରି ସେତିକି ଟଙ୍କା ସଞ୍ଚୟ କରି ପାରିନାହିଁ । ଉଧାର କରି ଦେଇଥାନ୍ତି । ଶୁଝିଥାନ୍ତି କୋଉ ବାପାଘରୁ ଆଣି ? ଏଇଠୁ କଣ ସରିଗଲା କି ? ଅନ୍ୟ ପିଲାଝିଅଙ୍କ କଥା କଣ ଭାବିବାର ନୁହେଁ ? ଯେ ବ୍ୟବସା କାରବାର କରୁଛନ୍ତି, ତାଙ୍କ ପାଖେ ସବୁବେଳେ ଟଙ୍କା ହାଉଳାଉ । ସେମାନେ ଦେଇପାରନ୍ତି । କୋଉ ବିବେଚନାରେ ମୁଁ ସେଇ ସୁଅମୁହଁରେ ଭାସି ଯାଉଥିଲି ?

କୁନ୍ନି ମୋର ଆଖି ଖୋଲିଦେଇଛି । ଯୌତୁକ କଣ ଏକ ପ୍ରଚଣ୍ଡ ରକ୍ତ-ଶୋଷଣ ନୁହେଁ ? ଯାହାକୁ ମୂଳରୁ ଶୋଷା ଘୋଟିଛି, ତା ସହିତ ସ୍ନେହର ଡୋରି ବନ୍ଧା ଯାଇପାରେ କିପରି ?

ମୋ ଝିଅ କଣ ଖଣ୍ଡିଆ ଖାବରା ହୋଇଚି, ନା ତାଠାରୁ କମ୍ ପାଠ ପଢ଼ିଚି ? ନିଜର ବୁଦ୍ଧି ବିବେଚନାରେ ସେ ଯୌତୁକର ବିରୋଧ କଲା ତ, ଭୁଲ୍ କଣ କଲା ?

ଶଶୀକଳା ଘରୁ ଚମକି ଆସି କହିଲା—ନା, ମୋ ଝିଅ କିଛି ଭୁଲ୍ କରିନାହିଁ । ତାକୁ କେହି ହରଣଚୋର୍ କରି ନେଇନାହିଁ । ସେ ସ୍ୱଇଚ୍ଛାରେ ଯୋଗ୍ୟ ବର ବରଣ କରି ଯାଇଛି, ବହୁତ ଖୁସିରେ ଅଛି । ତା ଖୁସିରେ ଆମ ଖୁସି । ସେଇଥିପାଇଁ ତ ସବୁ କରୁଥିଲେ ।

ଲୋକେ କହିବେ ? ଯେ କହିବ, ତା ମୁହଁରେ ନିଆଁ ଲାଗୁ, ତା ପାଟିରେ ପୋକ ପଡ଼ୁ ।

ମୋ ଝିଅ କି ଅକାମଟାଏ କରିଚି ଯେ କହିବେ ? ସେ କଣ ଅବାଟରେ ଯାଇଛି ? କାହାକୁ ସେକି ହୋଟେଲ୍‌ରେ ପଶିଚି, ନା 'ଭାଇ' ବସି କାହାସଙ୍ଗେ ସିନେମା ଦେଖିଯାଇଚି ?

'ଗୋଦରା ଲୋ ଚାଲକୁ ଅନା', ନିଜ ଘରେ କି ନିଆଁ କୁହୁଳୁଚି ଦେଖ୍ ।

ମୋ ଝିଅ ସେଇ ନିଆଁ ଲଗୀଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ଦେଖାଇ ଦେଇଚି—ଯେତେକ ଯୌତୁକ ପାଗଳ, ତଥାକଥିତ ଶିକ୍ଷିତ ଯୁବକଙ୍କୁ ।

ଅର୍ଥଲୋଲୁପ ସ୍ୱାମୀ, ଶାଶୂ ଶଶୁରଙ୍କ ବୋଲଣା ସହି ନ ପାରି କେତେ ଝିଅ ପୋଡ଼ି ହୋଇ ମଲେଣି । ଲୋକଙ୍କ ଆଖି କଣ ଫୁଟି ଯାଇଛି ? ସେମାନେ ଜାତି ବାଛୁଛନ୍ତି କଣ ?

ଶିକ୍ଷିତଙ୍କ ମଧ୍ୟରେ ବହୁ ବଦ୍‌ଜାତ; ସମାଜରେ ଯେତେ ପ୍ରଳୟଙ୍କର ବିଭ୍ରାଟ ଘଟାଉଛନ୍ତି ସେହିମାନେ ।

ଯୋଉ ଜାତିଁ ବାଛୁଥିଲେ, ସେ ପ୍ରକୃତରେ ଅକୁଳର; ଶ୍ରେଷ୍ଠକର୍ମ କରିବା ଅପରାଧରୁ ମଣିଷ ଅଛୁଇଁ, ଅଛୁଆଁ ହୁଏ, ଜାତି ବା କୁଳରେ ଜନ୍ମ ହୋଇ ନୁହେଁ । ଜନ୍ମ ବିଧି ନିର୍ଦ୍ଦେଶ, ସେଥିଲାଗି ମଣିଷ ଦାୟୀ ନୁହେଁ । କର୍ମ ନିଜ ଆୟତ୍ତରେ । ସେଥିଲାଗି ମଣିଷ ଦାୟୀ, ପାପ ବା ପୁଣ୍ୟଭାଗୀ ହୁଏ । କେତେକ ବେଶଭୂଷଣରେ ଆଖି ଝଲସାଇ ଦିଅନ୍ତି, ଭିତରେ ଅସଲ ଚିତାକଟା । ମୋ ଚନ୍ଦ୍ରମାକୁ ରାହୁପରି ଚାପି ଯାଇଥାନ୍ତା, ସେ ଜାନୁଆର୍, ନଖର, ଦନ୍ତୁର । ଝିଅକୁ ତା ହାତରେ ଦେବା ଯାହା, କଣ୍ଢେଇଖିରେ ଭସେଇ ଦେବା ସେଇଆ । ଆମକୁ ଯେ କୁଳବୁଡ଼ା ବୁଡ଼େଇ ମାରନ୍ତେ; ଝିଅ ରକ୍ଷା କରିଚି । ସେ ନିଜେ ବଞ୍ଚି ଯାଇଚି, ଆମକୁ ବଞ୍ଚାଇ ଦେଇଚି ।

ଅଧ୍ୟାପକ ଚକ୍ରଧର ଆନନ୍ଦରେ ଶଶୀକଳାକୁ କୁଣ୍ଢାଇ ପକାଇଲେ । ଶଶୀ ତାଙ୍କୁ ଠେଲିଦେଇ କହିଲା—ଛି, ଛି, ଏ କଣ କରୁଚ !

# ସୁନ୍ଦରମତୀ, ଆହା ମୋ ସୁନ୍ଦରମତୀ

ପଚାରିଲି—ଆଲୋ ସୁନ୍ଦରମତୀ, ତୋର ଚୌଦ ବର୍ଷର ଜବାନ୍ ଝିଅଟିକୁ ବିକିଦେଲୁ କାହିଁକି ?

ସୁନ୍ଦରମତୀ—'ଆଉ କଣ କରନ୍ତି ବାବୁ ? ଘରେ ବସି ସେ ଶୁଖି ଶୁଖି ମରନ୍ତା କାହିଁକି ?

ଆମ ସାଇଟାଯାକ ଦେଖିଛ ? ସବୁ ସୁକୁଟା ଶୁଖୁଆ । ଦିନ ଓଳିରେ ଓଳିଏ ଚୁଲି ଜଳେନାହିଁ । ଭାତ ମୁହଁ ଦେଖି ବର୍ଷକେ କେତେ ଦିନ ?'

'ଆଉ କଣ ଖାଅ ? ବଞ୍ଚିଛ କେମିତି ?'

'ପଥୁରିଆ ଭୁଇଁ । ଏଠି ଧାନ ବେଶୀ ହୁଏ ନାହିଁ । ଧାନକୁ ବି ଆମର ଅପେକ୍ଷା ନ ଥାଏ ।

ଜଙ୍ଗଲ ଆମର ମାଆ । ଜଙ୍ଗଲ କୋଳରେ ଆମେ ମଣିଷ । ବାଘ ଭାଲୁ ଆମ ଭାଇ ପୁରୁଷ । ସେମାନେ ଯେମିତି ଚଳନ୍ତି, ଆମେ ସେମିତି ଚଳୁ । ମାଆ ଆମ ଅଳି ବୁଝେ, ଯାହା ମାଗୁ, ଖାଇବାକୁ ଦିଏ—କେତେବେଳେ ଶାଗ, କେତେବେଳେ ମାଉଁସ । ଚାରିଆଡେ ଯେତେବେଳେ ଶୁଖିଲା ଖଡ଼ ଖଡ଼, ଆମେ ଖୋଳି ଖାଉ କନ୍ଦା, କରବା, ତୋଳି ଆଣୁ ପାଚିଲା କେନ୍ଦୁ । ଗୋଟାଇ ଆଣୁ ମହୁଲ; କରୁ ମହୁଲ ଜାଉ, ପିଠା, ହାଣ୍ଡିଆ । ନିଆଁ ହୁଲା ଜାଳି ସତରେ ବାଘ ଭାଲୁ ମୁହଁରୁ ଆମେ ମହୁଲ ଛଡାଇ ଆଣୁ; ମହୁଲ ଥିଲେ ଆମର କୋଉ କଥାକୁ ପରୁଆ ନଥାଏ । ବରଷକେ ଚାରିମାସ ଜାଣ ସେଇ ଆମ ଜୀବନ ରଖେ ।

ପାହାଡରେ ଠାଏ ଠାଏ ଜଙ୍ଗଲ ପୋଡ଼ି ଆମେ 'ପୋଡ଼ୁ' ଚାଷ କରୁ । ଶିମ୍ବ, ମକ୍କା, ବିରି, ଅଳସୀ, ମାଣ୍ଡିଆ, ବାଜରା, ଢଳା । ବରଷା ହେଲେ ପତର-ପତୁର ସଢ଼େ, ଏଠିସେଠି ଛତୁ ଫୁଟେ । ଛତୁ ଶୁଖେଇ ହଳଦିଗୁଣ୍ଡ ପକାଇ ରଖୁ । ଛୋଟ ଛୋଟ ଅମ୍ବ ଗଛ ଓପାଡି ଟାକୁରୁ କୋଇଲି କାଢ଼ି ଶୁଖେଇ ଗୁଣ୍ଡ କରି ଜାଉ କରୁ । ନହେଲେ ପେଟେ ଜାମୁକୋଳି ଖାଇ କାଳ କାଟୁ । ବରଷଯାକ କରଞ୍ଜ ତେଲ ଜାଳୁ ।'

'ଏବେ ସେଇ ମାଆ ଗଲେ କୁଆଡ଼େ ? ତାକୁ ଖାଇବାକୁ ମାଗୁନାହଁ କାହିଁକି ? ସେ ବା ଆପଣା ଗୁଣେ ଯାଚି ଦଉନାହିଁ କାହିଁକି ?'

'ମାଆ ଆଉ କାହିଁ ବାବୁ ? ଆମର ଆଗରେ, ଟିକିଏ ଦୟାମାୟା ନାହିଁ; କାହୁଁ ଦଳକୁ ଦଳ ବଂଶେଇ ଆସି ତାକୁ କୁଚୁକୁଚା କରି କାଟିନେଲେ । ଗୋଡ ହାତ ଧରି ଯେତେ ଦଇନ କଲୁ, କାନେଇଲେ ନାହିଁ । ଧନୁଶର ଦେଖେଇବାରୁ କେତେଟାଙ୍କୁ ଗୁଳି କରି ମାରିଦେଲେ ।

ତାପରେ ଆଉ କେହି ରୋକିଲେ ନାହିଁ । ଓଳଟି ପଇସା ଲୋଭରେ ଆମ ଭିତରୁ କେତୁଟା ତାଙ୍କୁ ସାହାଯ୍ୟ କଲେ । ଆଗେ ଶାଳ, ପିଆଶାଳ, ଶିଶୁ, କୁରୁମ କଟାଗଲା । ତାପରେ ହସ୍ତାନ୍ତ ହସ୍ତ'ନ୍ତ ଆମ୍ବ ଗଛ, ପଣସ ଗଛ, ଜାମୁଁ, ମହୁଲ, କରଞ୍ଜ, କଇଁଆଁ ଗଛ ଉପରେ ସେ ଶାଗୁଣାଙ୍କ ଆଖି ପଡ଼ିଲା । ସବୁ କର-ତରେ ଘୋରି ଦେଲେଗଲେ । ପାହାଡଗୁଡ଼ାକ ଦେଖୁଚ ବାବୁ ? ସବୁ ନଣ୍ଡା, ଲଙ୍ଗଳା, ଫୁଙ୍ଗୁଳା । ଲାଜରେ ଯେପରି ମରିଯାଉଛନ୍ତି । ଖରାରେ ଯେମିତି ହା ହୁତାଶ ହଉଚି । ଏବେ ତାଙ୍କୁ ଗାଧୋଇ ଦେବାପାଇଁ ମେଘ ବି ଅଟକୁ ନାହିଁ ।

ପାହାଡ଼ୀ ଝରଣା ମୁଣ୍ଡ ଶୁଖି ଯାଇଚି । ନଈରେ ନାହିଁ ପାଣି । ଧାନ ଗଜା ମରୁଡ଼ି । ଘରିଆଡ଼େ ହାହାକାର । ହାତ ବଢ଼େଇବାକୁ ଶାଗପତରଟାଏ କୋଉଠି ନାହିଁ । ରଜା ଗଲେ । ତାଙ୍କ ସଙ୍ଗେ ସଙ୍ଗେ ଜଙ୍ଗଲ ଗଲା । ଜଙ୍ଗଲ ଗାରଡଙ୍କ ସାଙ୍ଗେ ଘେର ସଲାସୂତର । ସେ ପଦେ ହେଲେ କହିଲା ନାହିଁ ।

ଜଙ୍ଗଲ ଲୋପ ପାଇଲା । ତା ସଙ୍ଗେ ସଙ୍ଗେ ବାଘ, ଭାଲୁ, ହରିଣ, ଶମ୍ବର ବି ଶେଷ ହୋଇଗଲେ । ମିଛକୁ ମରଦମାନେ ଶିକାର କରି ଆଉ ଯାଆନ୍ତି କାହିଁକି ?

ଖରା ଦିନର ଟାଣ ଟାଣିଆ ଖରା । ବାଟଘାଟରେ ଛିଡ଼ା ହୋଇଯିବା ଲାଗି ଗଛଟାଏ କୋଉଠି ନାହିଁ । ପାଳୁଅ ଖୋଳି, ମହୁ ମାରି ସହର ବଜାରରେ ବିକୁ-ଥିଲୁ । ଦାନ୍ତକାଠି, ଶାଳ ବା ଶିଆଳି ପତରର ଦନା ବା ଖଲି, ବିଡ଼ କାଠ, କଣ୍ଡାଝଣ୍ଟା ବିକ ବା ଚଳି ଯାଉଥିଲୁ । ସେ ବାଟ ବି ବନ୍ଦ । ଏବେ କିଛି ହେଲେ ବାଟ ଦିଶୁନାହିଁ । କେମିତି ଆମେ ପେଟ ପୋଷିବୁ ବାବୁ ?

ମରୁଡ଼ି ତ ପଡ଼ିଲା । ବଳବାଡ଼ିରେ ଗୋରୁ ଚରିଲେ । ଯେ ଯାହା ଯୋଉଠୁ ପାଇଲା, ଖାଇକ ବାକଳରେ ଖାଇଲା । ନାଲରକ୍ତ ହଗା ଘୋଟିଲା, ଦଳ ଦଳ ହୋଇ ମଲେ । ଯେ ବି ବଞ୍ଚି ରହିଲେ, ଖାଇବାକୁ ନ ପାଇ ତାଙ୍କ ହାତ ପାଦ ଅଚଳ ହେଲା । କାମ ତ ମିଳିଲା ନାହିଁ । ଦରମଲା ଲୋକଗୁଡ଼ାକ କିଛି କରି ନ ପାରି ଭିଟାମାଟି କାମୁଡ଼ି ପଡ଼ି ରହିଲେ । ବିଦେଶ ପଳେଇବା ଲାଗି ବି ବଳ ପାଇଲେ ନାହିଁ ।

କାଲ ପଡ଼ିଥିବା ବେଳେ ମାନ ମହନ୍ତଙ୍କୁ ଜଗୁଚ କଏ ? କୋଉ ପ୍ରକାରେ ଜୀବନ ବଞ୍ଚେଇବା ଲାଗି ଛେଳ ମେଣ୍ଢାଙ୍କଠାରୁ ଶସ୍ତାରେ 'ଖୁଦ୍ରପେଜ' ଗାଆଁର କପୂର ମାଝି ତା ବାଳୁତ ଝୁଅଟିକ କୋଡ଼ିଏ ଟଙ୍କାରେ ବିକଲା; ଧୁବେର ଗାଆଁର ବଶିଆ ଶବର ତା କଙ୍କାଲ ପୁଅଟିକ ଦଶ ଟଙ୍କାରେ ବିକଲା । ଜରଲ ପଡ଼ା, ଶିଆଳଲଟା, ମିଛପାଲ, କୁମନା ଗାଆଁର କେତେ କେତେ ଝିଅପୁଅ ବିକା ହୋଇଗଲେ । ଦରଦାମ୍ କରିବାକୁ ଦମ୍ ପାଇଲା ନାହିଁ । ଯେ ଯାହା ଦେଲେ ନେଇ ଲୋକେ ପିଲା ଧରେଇ ଦେଲେ ।

ଯେ ମଲେ, ଯେ ବିଦେଶକୁ ପଳାଇଗଲେ, ତାଙ୍କ ଛଡ଼ା ଯେ ଅଛନ୍ତି, ତାଙ୍କୁ ଦେଖ ବାବୁ—ସମସ୍ତେ ଅକାଳେ ବୁଢା । ହାଡ଼କଙ୍କାଳ । ଆହୁ ଚାଲିବୁଲି ପାରୁ ନାହାନ୍ତି । ତାଙ୍କୁ ଆଉ କଏ କାହିଁକି ପଇସା ଦେଇ କିଣିବ ? ବାଟରେ ମରିଗଲେ ପଇସା ବୁଡ଼ିବ ନା ନାହିଁ ?

ମୋ ଝିଅ ବେଲମତି, ପାଚିଲା ବେଲ ପରି ଗୋଲ୍ ତାର ମୁହଁ । ସେତେ ଧଡ଼ିଆ ନେକେଡ଼ା ହୋଇ ନ ଥିଲା । ତାକୁ ସାଙ୍ଗରେ ଘେନି ମୁଁ ଶାଗ, ଅନାବନା ପତର ଏଠୁସେଠୁ ତୋଳି ଆଣି ଖରଡ଼ି ଖାଇ କୌଣସି ମତେ ପେଟ ପୁରଉଥିଲି । ଗୋରୁଗାଈ, ମେଣ୍ଢାଛେଳଙ୍କ ଦାଉରୁ ସେ ବି ଶେଷ ହୋଇଗଲା ।

ବିଧାତା କାହିଁକି ଆମକୁ ହୀନଜନମ ଦେଲା ? କାହିଁକି ଏତେ ହିନସ୍ତା କରି ମାରୁଚ ବାବୁ ?

କାହାର କି ଅନିଷ୍ଟ କଲୁ ? କାହିଁକି ଧୋବଧବଳିଆ ବାବୁମାନେ ଆମ ଗାଆଁକୁ ଆସି ଗୋଇଠା ମାରି ଆମ ଭାତ ହାଣ୍ଡି ଭାଙ୍ଗି ଦେଲେ ?

ପେଟଦାଉ ସମ୍ଭାଳି ନ ପାରି ମୋ ଝିଅକୁ ମୁଁ ବିକିଲି । ଏଥିରେ କାହାର କଣ ଗଲା ?

ଖାଇବା ବିନା ମରିହଜିଗଲେ ତ କେହି ବାସି ମୁହଁରେ ପଚାରୁ ନଥିଲେ, ଏବେ କଣ ହୋଇଗଲା ?

କେତେ ତ ପିଲାଝିଲା ବିକି ଚାଲିଗଲେ, କାହା ବେଳକୁ କିଛି ହେଲାନାହିଁ, ମୋ ବେଳକୁ କାହିଁକି ଚହଳ ପଡ଼ିଗଲା ବାବୁ ?

ମୋର କ'ଣ ଭୁଲ୍ ହୋଇଗଲା ?

କୁଣ୍ଢାକୁଣ୍ଢି ହୋଇ ଓପାସରେ ମାଆ ଝିଅ ଦହେଁ ମରିଥାନ୍ତୁ, ସେ କେମିତି ଭଲ ହୋଇଥାନ୍ତା ?'

'ଆଜ୍ଞେ ସୁନ୍ଦରମଣି, ଏଠା ଲୋକେ କି ଦୁଃଖରେ ଅଛନ୍ତି, ମରଣ ଦୁଆରକୁ କେମିତି ଗୋଟି ଗୋଟି ଜଣା ହୋଇ ଯାଉଛନ୍ତି, ସବୁ ଦେଖୁଛୁ ।

ହେଲେ ମାଆ ହେଇ କେମିତି ତୁ ମୁରୁଛୁଲୁ ? ଏଡ଼େ ଅଳ୍ପଲୀ ଯୁବତୀ ଝିଅକୁ କାହାକୁ ବିକିଲୁ ?'

କାହୁଁ କାହୁଁ ବେପାରୀ ଆସି ଦୁଆରୁ ମେଣ୍ଢା ଛେଳି କିଣି ନେଉଛନ୍ତି । ହେଲେ ମଣିଷ ଲାଗି ଗରାକ ମିଳିବା ସହଜ କଥା ନୁହେ ।

ବେଳକୁ ବିକିବା ଲାଗି ମତେ ନାକେଦମ୍ ହେଇଚି । ପୁଲିସ୍ ଭୟରେ ଭବାନୀପାଟଣାରେ କେହି କିଣିଲେ ନାହିଁ । ମତେ ଖଡ଼ିଆଳ ଦୌଡ଼ିବାକୁ ହେଲା । ଡାଲଭଙ୍ଗା କୋଡ଼ିଏ କୋଶ ବାଟ । ମାଗିଯାଚି ଖାଇ ବସିଉଠି ଯାଇ ମା' ଝିଅ ଦି ଦିନରେ ପହଞ୍ଚିଲୁ ।'

'ବେଲକୁ କିଏ କିଣିଲା, କେତେ ଟଙ୍କାରେ ?'

'ନାଆଁ କହିବାକୁ ସେ ମନା କରିଚି, ବାବୁ । ତାକୁ ଚିହ୍ନି ଜାଣି କି ଲାଭ ? ମୋ ଝିଅକୁ କଣ ମୁଁ ଆଉ ମୁକୁଳାଇ ପାରିବି ? ସେ କଣ ଆଉ ଫେରିବ ?'

'ସେ ଯଦି ବିକିଦେବ ?'

'ସେଥିକି ମୋର କି ବଳ ? ତା ଜିନିଷ; ଯେଣିକି ସେ ଯାହା କରୁ । ସେ ଘରେ ରଖିଲା କି କାହାକୁ ବିକିଲା, ଦେଖିବାକୁ ମୁଁ କଣ ସେଠି ଥିବି ? ତେବେ ଏତିକି ମୋର ଦମ୍ଭ ଯେ ମୋ ଝିଅ ମୁଠିଏ ଖାଇ ବଞ୍ଚି ରହିବ । ଯେଣିକି ତା ଇଷ୍ଟ, ମୋ ଝିଅର ଭାଗ୍ୟ । ତାପରେ ମୁଁ ମରେ ବା ସରେ ।

ଏ ଛତ୍ରଭଙ୍ଗର ଜୀବନ ଧରି ଆଉ କି ଲାଭ ? ସ୍ୱାମୀ ନାହିଁ । ପିଲାଝିଲା ନାହାନ୍ତି । ସଂସାର ଭାଙ୍ଗିଚି, କୂଳ ବୁଡ଼ିଚି ।

ଅଣ୍ଟା ଗଛଟାଏ ମରୁଚି ତ ମରିଯାଉ । ସେଥିଲାଗି ଆଉ କାହାର କି ଭାବନା ?'

ଏତିକି କହିଲା ପରେ ସୁନ୍ଦରମଣିର ମୁହଁ କାନ୍ଦିଲା ପରି ଦିଶୁଥିଲା, କିନ୍ତୁ ଝରିବାକୁ ଲୁହ ବା ରକ୍ତ କିଛି ନ ଥିଲା ।

ହାଡ଼ର ଚମଡ଼ା ଦିଖଣ୍ଡି ହାଡ଼ରେ ମିଶି ଯାଉଥିଲା । ଦିଶୁଥିଲା କେବଳ ବେଣ୍ଟ ଦୁଇଟି, କଳା କଳା ପୋଇ ପଣସର ଶୁଖିଲା ଡେମ୍ପ ପରି ।

ଏ ସ୍ତ୍ରୀ ନା ପୁରୁଷ ? ବାରିବା ଲାଗି ପଦାକୁ କିଛି ହେଲେ ସଙ୍କେତ ନ ଥିଲା ।

ଗୋଟାଏ ପଟେ ଉଡ଼ୁଥିଲା ମୁଣ୍ଡ, ଆରପଟେ ପୁଲୁସ୍। କୋଉଟା ଭଲ କୋଉଟା ସଲ, ସୁନ୍ଦରମଣି ବୁଝିପାରୁ ନ ଥିଲା।

ସୁନ୍ଦରମଣିର ଏ ଅସ୍ୱସ୍ତ ଅବସ୍ଥା ଦେଖି ଭାବୁଥିଲି—ଏ କଣ ସ୍ୱାଧୀନ ଭାରତର ଛିଅଟିଏ ?

ଏ ଦେଶରେ ପେଟ ବିକାଇଲେ ଦୋଷ ନାହିଁ ?

ମୁଣ୍ଡ ବିକିଲେ ଦୋଷ ନାହିଁ ?

ଇଜ୍ଜତ ବିକିଲେ ଦୋଷ ନାହିଁ ?

ମଲେ ଦୋଷ ନାହିଁ ?

ଜୀବନ ବଞ୍ଚେଇବା ଲାଗି ଏ ହାତରୁ ସେ ହାତକୁ ପିଲାଟିଏ ଗଲେ ଦୋଷ ! ମଣିଷକୁ ଅପମାନ କରିବା ଲାଗି ତୁମେ କି ଖିଆଲ ପ୍ରୟୋଗ କରନାହଁ ହେ ସମ୍ରାଟ, ରଜା, ଜମିଦାର, ସାହୁକାର, ମହାଜନ, ସାଆନ୍ତ, ସର୍‌ବରାକାର, ସର୍ଦ୍ଦାର, ପୁଞ୍ଜିପତି, କାନ୍‌ଟ୍ରାକ୍ଟର, ଠିକାଦାର ଓ ଖିଆଲି ସରକାରମାନେ। ତୁମ ଅନ୍ୟାୟ ଅବସ୍ଥାର ଦାସବ୍ୟବସାୟ ଓ ଜଘନ୍ୟ ମଣିଷବିକା ବେପାରରୁ କିଏ ଊଣା ?

ତୁମେ ହାତରେ ନ ମାର ଭାତରେ ମାର।

ପିଠି ଆଉଁସି ଚମ ଉତ୍ତାର।

ଚଇତନ ନ ମାର କଇଁଚା କାଠ।

ଆଖିରେ ଆଙ୍ଗୁଠି ଗେଞ୍ଜି ଫୁଟାଇ କାହିଁକି ଏବେ କୁମ୍ଭୀର କାନ୍ଦଣା କାନ୍ଦ ହେ ମଣିଷପଣ ଦେଖେଇ ହଉଥିବା ଗ.ଦବ୍ରହ୍ମମାନେ।

ପୃଥିବୀର ସୁନ୍ଦରବନ୍ତ, ସୁନ୍ଦରମଣିମାନଙ୍କ ଲଲାଟଲିପି ଲେଖିଲ କି ଭାଗ୍ୟ ଖଞ୍ଜିଚ ହେ କୁହାମୁଣ୍ଡା କପିଲାମାନେ।

ଭୋକ ହେଲେ କେମିତି ଲାଗେ ? କେମିତି ?

ଯଦି ବୁଝିପାରୁଥାନ୍ତ, ଭୋକ ନ ହେଉଁ ଖାଉଥିବା, ଅଲସ ହାଇ ମାରି ସବୁ କଥାକୁ ଫୁଙ୍କ୍‌ରେ ଉଡ଼ାଇ ଦେଉଥିବା, ତା ଜଙ୍ଗଲମାଆକୁ ମାରି ତାକୁ ବିଚ୍‌ ବଜାରରେ ଦରକଡ଼ାର କରୁଥିବା, ଭାରତର ଇଜ୍ଜତ ବାନା ଉଡ଼ାଇବା ଲାଗି ତା ଇଜ୍ଜତକୁ ବୁଟ୍‌ ତଳେ ଚାପି ଦଉଥିବା ହେ ସବାସିଆମାନେ;

ପୁଷ୍ଟିହୀନତାରୁ ମରିଚ, ଅଖାଦ୍ୟ ଖାଇ ମରିଚ, ରୋଗରେ ମରିଚ ବୋଲି କହିବାକୁ ତୁମ ଜିଭ ଲେଉଟୁଚି କେମିତି ?

ମାଣ୍ଡିଆ ପେଜ, ହାଣ୍ଡିଆ ଖାଇ ଆନନ୍ଦରେ ପାହାଡ଼ି ଗାଆଁରେ ନାଚୁଥିବା ଏ ପ୍ରକୃତି ପୁତ୍ରକନ୍ୟାମାନଙ୍କର ସୁଖଶ୍ରୀ କାହିଁକି ହରଣଚାଲ୍‌ କରିଚ, କୈଫିୟତ୍‌ ଦେବ କି ହେ, ଜଆଁଗିଳା, ବାହାପିଆମାନେ ?

# ଶାସ୍ତି ନା ପୁରସ୍କାର ?

ପାଞ୍ଚବର୍ଷ ଜହଲ ଖଟିଲା ପରେ ଆଜି ଚଢ଼େଇମରା କାଳକେତୁ ଖଲାସ୍ ହେଲା । କି ଅପରାଧରେ ତାକୁ ଜେଲ୍ ଦିଆଗଲା, ସେ ବୁଝି ପାରି ନ ଥିଲା । ସେ ଭାଗ୍ୟ ଦୋଷରୁ ଦଣ୍ଡ ପାଇଛି ବୋଲି ଭାବୁଥିଲା ।

ଯୋଉ କାମ ଜୀବନରେ କେବେ କରିନାହିଁ, ସେଇ କାମ ତାକୁ ଦିଆ ହେଉଥିଲା—ଘଣାପେଲା, ଚକିପେଷା, କୋଡ଼ିହାଣ, ପାଣିବୁହା । ତାକୁ ବଡ଼ କଷ୍ଟ ଲାଗୁଥିଲା, ଠେଲାପେଲାରେ ସେ ସବୁ କାମ କରୁଥିଲା, ନଇଲେ ପିଠିରେ ବୁଟମାଡ଼ ବାଜୁଥିଲା ବା ଅଧାପେଟ ଖାଇବାକୁ ଦିଆ ହେଉଥିଲା ।

କେତେ ଭାବୁଥିଲା—ଭାବୁଥିଲା । କିଛି କୂଳ କିନାରା ପାଉ ନ ଥିଲା । କଣ ତାର ପାପ ? କାହିଁକି ଏ ଶାସ୍ତି ?

'ମୁଁ ବଣବୁଦାରେ ବୁଲେ, ପକ୍ଷୀ ମାରେ । ତୁମେ ମଣିଷ ଚରାଅ । ମୋ କଥା ଟିକିଏ ଧ୍ୟାନ ବିଚାର କର । ମୋ ଭୁଲ୍ ବୁଝିଦିଅ । ମୁଁ ଅମାନିଆଁ ନୁହେଁ, ଗାଲୁଆ ନୁହେଁ, କାଇଲ୍ ହେଲେ ମୁଁ ମାନିଯିବି ।

ଦୋଷ କରିବ ଜଣେ, ଦଣ୍ଡ ପାଇବ ଆଉ ଜଣେ । ଦିନେ ନୁହେ, ମାସେ କି ବର୍ଷେ ନୁହେ, ନଗଦ୍ ନଗଦ୍ ପାଞ୍ଚ ବର୍ଷ !

ହଉ ମତେ ତ ଯାହା କଷ୍ଟ ଦେଲ, ଦେଲ; ମୋ ପିଲାଏ ତମର କି ଅପରାଧ କରିଥିଲେ ?

ଘରେ ତ ଦଣ୍ଟା ବଢ଼ିଲା ଝିଅ; ସ୍ତ୍ରୀର କଙ୍କାଳ ଗଣିହୋଇ ଯାଉଥିଲା । ଘରେ ଆଉ କିଏ ରୋଜଗାରିଆ ଥିଲା ? ସେମାନେ କଣ ଖାଇଲେ, କେମିତି ଚଳିଲେ ? ଲୁଗୁଆ ବଖରାକ ଛପର ଅଧାବରୁ ଖୋଇପଡ଼ିଲା ନା ନାହିଁ ?

ଓହୋ, ମୋ ମନ କଣ୍ ହୋଇଯାଉଛି ! କେହି ଜଣେ ହେଲେ ଭାବିଲା ନାହିଁ—ସେ ତ ଜେଲ୍‌ରେ ବନ୍ଦୀ ହୋଇ ରହିଲା । ତା ପିଲାକବିଲା ଚଳିବେ କେମିତି ? ଏ ସଂସାରରେ ନ୍ୟାୟ ଆଉ କାହିଁ ? ଯୁଆଡ଼େ ବଡ଼ଲୋକ, ସେଆଡ଼େ ନ୍ୟାୟ, ଯୁଆଡ଼େ ଟଙ୍କା, ସିଆଡ଼େ ବିଚାର !

ବାରବୁଲା ଜୀବନ ମୋର । ଦିନେ ଘରେ ବସିଲେ ମତେ ବିଷପରି ଲାଗେ । ବୁଲେ ଗୋଧନ ପଡ଼ିଆରେ, ଗଛର ବିଲରେ ବା ଗୋହିରି ଦଣ୍ଡାରେ, ତୋଟାବାଡ଼ିରେ ବା ପାହାଡ଼ କନାରେ କମ୍ଭା ନଈ, ନାଳ, ହ୍ରଦ, ପାଣିଚୁଆ, ଚଉଡଗ ବା ସନ୍ତସନ୍ତିଆ ଅପନ୍ତରରେ । ମାରେ କପତା, ବଣକୁକୁଡ଼ା, ହଂସଗଲି, କାମ, ହରଡ଼, ଚକୁଆ ଚକୋଇ, ନନ୍ଦା, ବଢ଼ିଆ କାଙ୍କ ବା କୋଚଲାଖାଇ, ବାଦୁଡ଼ି—ଯୋଉ ପକ୍ଷୀର ମାଉଁସ ବାଗୁମାନେ ଖାନ୍ତି ବା କାଶ ଶ୍ୱାସ, ବାତ ଆଦି ରୋଗ ଭଲ କରିବା ପାଇଁ ଯାହା ମାଉଁସରେ ଔଷଧ ତିଆରି ହୁଏ ।

ଯୋଉ ଇଚ୍ଛା ସେ ଚଢ଼େଇ ମୁଁ ମାରେନାହିଁ । ସେ କେଳା ବା ସବାଖିଆଙ୍କ କାମ । ସେମାନେ ନ ଖାଆନ୍ତି କଣ ? କାଣ୍ଟିଆବଗ, ମାଟିଆଚଲ, ଫୁଲଶାଗୁଣା ଡାମରାକୁଆ ବି ବାଦ୍ ପଡ଼ନ୍ତି ନାହିଁ ।

ମୋ ସାଥୀ ଏଇ ନଳୀ ବନ୍ଧୁକଟି । ପିଠିରେ କଥା ଦେବଦାରୁ ପଞ୍ଜରର ଏଇ ଘୋଡ଼ଣି । ଦଳେ ଚଢ଼େଇ ଚରୁଥିବାର ଦେଖିଲେ ସ୍ୱାକୁ ପିଠିରେ ପକାଇ ହିଡ଼ଉପରେ ଘୁଷୁରି ଘୁଷୁରି ଯାଏ । ଟିକିଏ ଖସ୍ ଖାସ୍ ହେଲେ, ଜୋର୍‌ରେ ନିଃଶ୍ୱାସ ଛାଡ଼ିଲେ କି ଗୋଟେ କାଶିଦେଲେ ଶିକାର ଉଡ୍ଡୁର୍ । କାଶୁଆ, ଧଇଁଆଙ୍କ ଦେହ ଏ ଧନ୍ଦା ହୁଏ ନାହିଁ ।

ଚଢ଼େଇ ଖୁବ୍ ଚରକା ହେଲେ ବି ମଣିଷର ଚରକାପଣ ତାକୁ ବଳେ ? ଘାସଣା ହିଡ଼ ପରି ଦୂରକୁ ଦିଶେ, ସ୍ୱା ତଳେ କାଳଯମ ଲୁଚ ଲୁଚ ପାଖକୁ ଲାଗି ଆସିଲାଣି ବୋଲି ମୋଟେ ଜାଣି ପାରେ ନାହିଁ । ହଠାତ୍ ଫୁଟେ ଢୁ । 'କଣ ହେଲା', 'କଣ ହେଲା' କହି କହି ଚଢ଼େଇସବୁ କଲବଲିଆ ହୋଇ ପ୍ରାଣ ବିକଳରେ ପଳାଇ ଯାନ୍ତି, ବାଟବଣା, ଗୋଠଛଡ଼ା । ତା ଭିତରୁ ୯ଟି ପଡ଼ନ୍ତି କେଉଁଟା । ସେ ସବୁ ବ୍ୟାଗ୍‌ରେ ଭର୍ତ୍ତିକରେ, ସାଇ ସାଇ ବୁଲି ବିକେ । ସନ୍ଧ୍ୟାପକ୍ଷ କରି ଘରକୁ ଫେରେ । ମୋର ନିତିଦିନିଆଁ ଧନ୍ଦା ଏ । ମୋର ଦାଣ୍ଡରୁ ଆସେ, ହାଣ୍ଡିରେ ପଶେ । ହାତ ବଢ଼ାଇବାକୁ ଘରେ ବା ବାଡ଼ିରେ ଆଉ କିଛି ନାହିଁ ।

ବଖୁରିଏ ବୋଲି ଘର । କି କାମ ? ଘରଣୀ ଦାଣ୍ଡ ପିଣ୍ଡାରେ ବସି ଏକ ଆଖିରେ ମୋ ଅଇଲା ବାଟକୁ ଚାହିଁ ବସିଥାଏ ।

ଦିନଯାକ ଦୌଡ଼ି ଦୌଡ଼ି ମୋ ଗୋଡ଼ରୁ ବାକୁଲି ବାହାରେ । ଘରେ ତିନି ପ୍ରାଣୀ କୁଟୁମ୍ବଙ୍କ ଗଣ୍ଡିଏ ଦାନା, ଖଣ୍ଡିଏ କନା ଯୋଗେଇଲା ବେଳକୁ ମୋ ଦଫା ଶେଷ ।

ଝିଅଟା କେମିତି ହାତକୁ ଦି ହାତ ହେବେ, ଭାବିବାକୁ ମୋର ବେଳ ନାହିଁ ? ଭାବି ବସିଲେ ବା କଣ ହୁଅନ୍ତା ? ଚନ ଜାଗା ପାଞ୍ଚ ଜାଗା ଯାଇ ପାଞ୍ଚ ବୁଝିବା ଦରକାର । ଦିନେ ଶିକାରକୁ ନ ଗଲେ ତ ପେଟରେ ଓଦାକନା ଦେଇ ଶୋଇବା କଥା । ଆଗେ ପେଟ ନା ଏ ନାଟ ? ସେ କଥା ବୁଝୁଛି କିଏ ? ଘରଯା କଣ ବସେଇ ଉଠେଇ ଦଉଛି ନା ଖାଇପିଇବା ରଖେଇ ଥୋଇ ଦଉଛନ୍ତି ?

ହେଲେ କଣ କରିବ ? ଶିକାର ବିକି ଗଲାବେଳେ ତ ଭାବଭାବୁଣୀଙ୍କ କହିପୋଛି ଆସୁଚି । ଘରକୁ ଗୁହିଁ ଘରୁ ଆମାନେ ମୁହଁ ମୋଡ଼ି ଦଉଛନ୍ତି । ମୋ ବେଉସା କଥା ଶୁଣି ନାକ ଟେକୁଛନ୍ତି । ଚଢ଼େଇମରାର କି ମାନମର୍ଯ୍ୟାଦା ଅଛି ? ବନ୍ଧୁ ବାନ୍ଧବ କୁ କିଏ ରାଜି ହବ ? ସମାସ୍ତନ ବନ୍ଧୁଟିଏ ମିଳୁଛି କାହିଁ ?

ରାଜି ହୋଇଗଲେ ବି କି ଯାନଯଉତୁକ ଦେବ ? ଝିଅମାନେ ନାକ କାନରେ ଲମ୍ବକାଠି ଲଗେଇ ଶାଶୁଘରକୁ ଯିବେ ? ଭାଇ ବନ୍ଧୁଦରଙ୍କୁ କି ନମିତା ଦେଇପାରିବ ? କଣ ଶୂନ୍ୟରେ ସବୁ ହୋଇଯିବ ?

ବଡ ଆଶ୍ଚର୍ଯ୍ୟ ଲାଗେ—ଭଗବାନ୍ କଣ ଏ ସବୁ ଜାଣନ୍ତି ନାହିଁ ? ଯାହାର ପୋଷିବାକୁ ବଳ ନାହିଁ, ତା ଘରେ ଝିଅ ଦିଅନ୍ତି କେମିତି ? ହଁ, ଦେଲେ ଯଦି ତାକୁ ଉଚ୍ଚ କର୍ମ ଦେବା ଦରକାର—ତା ହେଲେ ଆଖି ପଡ଼ୁ ପଡ଼ୁ ଯିଏ ହେଲେ ଝିଅକୁ ବୋହୂ କରି ନିଅନ୍ତା । ତା ଯଦି ନ ହେଲା, ମୁଁ ବାପ ହୋଇ ଝିଅକୁ ଯୋଉଠି ଇଚ୍ଛା ସେଠି ଗୁଞ୍ଜିଦେଇ ଆସିବି କେମିତି ?

କିଛି ସିନା ନାହିଁ । ମୋର କଣ ମାନମର୍ଯ୍ୟାଦା ନାହିଁ ? ଦେଖିଗୁହିଁ ତ ଯୋଉଠି ଦେବ । ଯେତେ ଖଟିବ ଖଟୁ ପଛକେ ଝିଅ ପେଟପୁରା ମୁଠିଏ ଖାଇବାକୁ ପାଇବା ଦରକାର । ଚିରା ଦଦରା ପିନ୍ଧିଲେ କି ଓପାସ ଭୋକରେ ରହିଲେ ମୋତେ କାଟିବ, ସମ୍ଭିବ । ଏ ହୀନଅବସ୍ଥା ବାପ ହୋଇ ମୁଁ ଦି ଆଖିରେ ଦେଖିପାରିବ ନାହିଁ ।

ମୁଁ ଅଚଳ ପକ୍ଷକୁ ଦେବିନାହିଁ । 'ଝିଅ ଘିଅ, ବେଶୀକାଳ ରଖି ନୁହେଁ', ଏଥିରେ ମୋ ମତ ନାହିଁ । 'ଦେଲି ନାଶ ହେଲି ପାର' ହେବା ଅପେକ୍ଷା ଝିଅକୁ ଅବିହା ଡ଼ି ରଖିବା ବରଂ ଭଲ ।

ନା, ନା, ସେ କଥା କଦାପି ହବନାହିଁ—ମୁଁ ବୁଢ଼ା ହଡ଼ାକୁ ଦେବିନାହିଁ, ଯେତେଦିନ ପାରିବ, ପୋଷିବି, ମଲେ ଗଲି । ତେଣିକି ତାଙ୍କ ଭାଗ୍ୟ ସେ ଭୁଞ୍ଜିବେ । ଆଜୁ ଯେମିତି ଅବିହାଡ଼ି, ରହିଲୁ, ସେତେବେଳ ଯୋଗ୍ୟ ପାତ୍ର ନ ଜୁଟିଛନ୍ତି ।

କହନ୍ତି—ସ୍ୱର୍ଗ ପଥ୍ରେ କୁଆଡ଼େ ଟାଣି ନେଇଯାଏ । ଅଉରି କହନ୍ତି—ଯେ ଯାହା ହାଣ୍ଡିରେ ଚାଉଳ ପକେଇଥିବ । ଦେଖିବା, ଏ କଥା କେତେ ସତ ।

ଯୋଉ ବିଧିବିଧାତା ଏଡ଼େ ସୁନ୍ଦର ରୂପ ଦେଇଛି, ସେ ତାକୁ ବଞ୍ଚିବାର ଶକ୍ତି ନ ଥିବ ? ହଉ, ହଉ, ଅସ୍ତ୍ର ଧର । ବେସ୍ତ ବିକଳ ହେଲେ କୋଉ କଥା ହୁଏ ? ହେଲେ ଏ ମାଇପ ମୂର୍ତ୍ତିକି କିଏ ଟିକିଏ ଅସ୍ତ୍ର କରି ଦେଇଛି !

କେତେ ଲୋକ ଦେଖେଇ ଦେଖେଇ କହନ୍ତି—'ଏ ଚଢ଼େଇ ମାରିବା କୁଆଡ଼େ ଘୋର ପାପ । ଚଢ଼େଇ ବଂଶ ବୁଡ଼ୁଛି । ମୋର ଭଲ ମଙ୍ଗଳ ହବନାହିଁ । କୁଳ ବୁଡ଼ିବ ।'

ସେମିତି ବୁଝିଲେ କେଉଟ କଣ ମାଛର ବଂଶ ବୁଡ଼ଉ ନାହିଁ ? କଂସେଇ ଗୋରୁ, ଛେଳି, ମେଣ୍ଢା ମାରୁନାହିଁ ? ତାଙ୍କର କଣ ଭଲ ମଙ୍ଗଳ ହଉନାହିଁ ? ତାଙ୍କ ପୁଅଝିଅ କଣ ବଞ୍ଚିତୋଳା ହଉନାହାନ୍ତି ?

ଆରେ ବାବୁ, ଆମେ କଣ ଖାଲି ମାରିବା ଲାଗି ଜୀବହତ୍ୟା କରୁଚୁ ? ତୁମେସବୁ ଖାଉଚ ବୋଲି ଆମେ ସିନା ମାରୁଚୁ ! ନଇଲେ ଆମର କି ବଶ୍ ? ଆମେ ତ ଭିନେ ଧନ୍ଦା ଧରିଥାନ୍ତୁ ।

ଏଥିରେ ପାପ ହେଲେ ସମସ୍ତଙ୍କର ହବ, ଏକା ଆମର କାହିଁକି ? ଜୀବନ ବଞ୍ଚେଇବା ଲାଗି କିଏ କେତେ ଧନ୍ଦା କରୁଛନ୍ତି । ସେମିତି ଆମର ଏ ଶିକାର ଧନ୍ଦା, ଏଥିରେ ପାପ ନାହିଁ ।

ବାବୁ, ଖାଇପିଇ ଏତେ ଯେ ହେଣ୍ଡି ମାରୁଚ, କାହା ସକାଶେ ? ମୋ ପରି ଲୋକଙ୍କ ସକାଶେ । ନଇଲେ ଏ ଚଢ଼େଇ ବଂଶ ବଢ଼ି ସଂସାରର ସବୁ ଫସଲ ବରବାଦ୍ କରି ଦିଅନ୍ତେ ।

ଆମ ଲାଗି ଫସଲ ପୋକ ବଢ଼ିଲେ ବୋଲି କେତେଲୋକ ଯାହା କହୁଚନ୍ତି, ତାହା ଭୁଲ୍ ମିଛ । ଆମେ କଣ ଘରଚଟିଆ, ଗୋବରା, ଦୁକାଳିକା, ବଣି, ଶୁଆ, ହଳଦି ବସନ୍ତ, କେଳାଦେଇ, କୁଣ୍ଡାଚିଆ ପକ୍ଷୀ ମାରୁ ? ତୁମେ ଏଲଟି ବିଷାକ୍ତ ଔଷଧ ପକାଇ ଚଢ଼େଇ ବଂଶ ନିପାତ କରୁଚ । ଆମେ ନୁଆଁଣିଆଁ ହୋଇଥିବାରୁ ଆମ ମୁଣ୍ଡରେ ଦୋଷ ବୋଳୁଚ ! ନଇଲେ କେବେହେଲେ ତୁମ ତୁଣ୍ଡ ଲେଉଟନ୍ତା ନାହିଁ ଏ କଥା କହିବାକୁ ।'

ଆମର ଏ ଚଢ଼େଇମାରି ସାଇଟା ଦେଖୁଚ ବାବୁ ? ଘରକରୁ ବଢ଼ି ତେରଶ ଘର, ପାଞ୍ଚଜଣରୁ ପାଞ୍ଚଶ ଲୋକ ହେଇଛନ୍ତି । ଏ ଲୋକେ ଚଢ଼େଇମାରି ଧନ୍ଦା

ଗୁଣ୍ଡଥାନ୍ତେ କି ନାହିଁ, ଆପେ ଆପେ ଗୁଣ୍ଡ ହୋଇଗଲେ । ବଣବୁଦା ଆଉ କାହିଁ ? କେତେ କେତେ ଚଢ଼େଇ ବଂଶ ଗୁଡ଼ିଏ ତ ଲୋପ ପାଇଗଲେ । କୋଉଠି ଗୋଟେ ହେଲେ ଦେଖିବାକୁ ମିଳେନାହିଁ, ଭାବିଲେ ଦୁଃଖ ଲାଗେ ।

ଏବେ ଆମ ଗାଁର ପୁରୁଷଙ୍କ ଭିତରୁ କେତେ ହୋଇଛନ୍ତି ମିସ୍ତ୍ରୀ, କେତେ ରଙ୍ଗ୍ ଲଗାଉଛନ୍ତି । କେତେ କାରଖାନାରେ କାମ କରୁଛନ୍ତି । ଏକା ମୁଁ ଏ କାମ କରୁଚି । ପିତୃପୁରୁଷର ଧନ୍ଦା ମୁଁ ଛାଡ଼ି ପାରିନାହିଁ । ଆଉ କୋଉ କାମ କରିବି ଜାଣେନାହିଁ । ଜୀବନରେ ମୁଁ କାହାରି କିଛି କ୍ଷତି କରିନାହିଁ । ପରର ଅମଙ୍ଗଳ ଚାହିଁବାକୁ ମୋତେ ବି ବେଳ ନ ଥାଏ । ମୋ ଶିକାର ଭଲ ତ ମୁଁ ଭଲ । ଏତିକି ଭଲକୁ ଭେଳ କରିଦେବାକୁ ଲୋକେ ବାହାରୁଛନ୍ତି, ଆଶ୍ଚର୍ଯ୍ୟ ।

ଘୁଷୁରିଆର ମୁଁ କଣ କରିଥିଲି ? ସେ କାହିଁକି ମୋ ବଢ଼ିଲା ଝିଅର ବାଟ ଓଗାଳିଲା, ତା ଗାଧୁଆ ଘାଟରେ ଜଗି ବସିଲା ?

କେତେ ଥର ସ୍ତ୍ରୀ ତା ହାତରେ ଖବର ଦେଲି—ଆରେ, ମୋ ସାଙ୍ଗରେ ଲାଗ୍‌ନା । ତୋ ସାଙ୍ଗରେ ଯୁଝିବାକୁ ମୋର ବେଳକାଳ ନାହିଁ, ବଳ ନାହିଁ । ମୋ ଝିଅକୁ ବାହା ହେବୁ ତ, ତୋ ବାପକୁ କହ, ମୋ ସାଙ୍ଗେ ଆସି କଥାଭାଷା କରୁ । ଘରର ପଛ ଲୁଚି ଲୁଚି ଆସୁଚୁ, ଯାଉଚୁ କାହିଁକି ?

ମୁଁ ଯେତେ ଗରିବ ହେଲେ ବି ମୋର ତ ଫେର୍ ମାନ ଇଜ୍ଜତ ଅଛି ? ତା ଉପରେ ଆଞ୍ଚ୍ ଆସିଲେ ମୁଁ କାହାରି ଲୁହେଁ, ଜାଣିଛୁ କି ନାହିଁ ? ହଁ, ଆଗରୁ କହିଦେଲି—ହୁସିଆର୍ ।

ଦୁଷ୍ଟ ଲୋକକୁ ଶିଷ୍ଟ ବଚନ ରୁଚେ କୋଉଠି ? ସେ ଓଲଟି ଜଣ ମୋଡ଼ିଲା—ଛୁର ମଣାଟାଏ, ଏ ମୋର କଣ କରିବ—ଫୁ......

ଦେଖୁ ଦେଖୁ ଦିନକୁ ଦିନ ବେଶୀ ଉଦ୍ଭଟ ହେଲା । ମୋ ଘରଯା ଗନ୍ଧ ପାଇଲେ ତା ଚଉଦ ପୁରୁଷ ଉଦ୍ଧାରିଲା । ସିଆଡ଼କୁ ଟିକିଏ ହେଲେ କାନେଇଲା ନାହିଁ, ସେ ବେହିଆ, ଜଳଠା, ଅଲାଜୁକ ।

ଏମିତି କାମ କରି ତା ମୁହିଁ ପାଇଗଲାଣି । ବୋପା ଠକଠାକି ଯେତେ ପଇସା ଭିଆଏ, ପୁଅ ସବୁ ଜଳପାନ କରିଦିଏ । ଗୋଟିଏ ବୋଲି ଗେଲବସରିଆ ପୁଅ । ବାପା ତାକୁ ଆକଟ କରେନାହିଁ । ସେ ଅଷ୍ଟ ପ୍ରହର ଭଉଁରି ମାରି ବୁଲୁଥାଏ ।

କାପ୍ତା, ହିଂସ୍ରାଳୀ କେଉଁଠି ପିଠିରେ ଝୁଲୁଛନ୍ତି । ଶିକାରରୁ ରକ୍ତମୁହାଁ ଫେରିଲି । ଖୋଳକରେ କରଡ଼ି ଜଳୁଥାଏ । ହଠାତ୍ ଘୁଷୁରିଆ ହାବୁଡ଼େ ପଡ଼ିଥିଲା । ତାକୁ ଦେଖିବା ମାତ୍ରେ ମୋ ତଳପା ରକ୍ତ ଟାଳୁକୁ ଚମକି ଗଲା । ପଚାରିଦେଲି—କିରେ ଘୁଷୁରିଆ, ତୁ କାହିଁକି ମୋ ଇଜ୍ଜତ ମହତକୁ ଧକଡ଼ାର କରି ଥୋଉଛୁ ? ମୋ ଝିଅଠୁ ଯଦି ତୋର ମନ, ତୁ ତାକୁ ବେହେ ହୋଇ ପଡ଼ୁନୁ !

ଘୁଷୁରିଆ ଘୁଷୁରି ଯୋମଣିକି ଲମ୍ବାଇ କହିଲା—ତୋ ଝିଅଟି ମୋର ମନ, ଏ କଥା ସତ । ଏମିତି କେତେ ଝିଅଙ୍କଠି ତ ମୋର ମନ । ଖୋଜି ଦେଖିବି । ଯୋଉଟା ମତେ ସବୁଠୁ ବେଶୀ ସୁଆଦିଆ ଲାଗିବ, ତାକୁ ବାଛି ନେବି । ତାହା ନ ହେଲେ ମୋ ଘରେ ମାଇପୀ ଗୁହାଳଟେ ହୋଇଯିବ !

'କଣ କହିଲୁରେ ହାରାମ୍‌ଜାଦା, ମୋ ଝିଅ ତୋର ରକ୍ଷିତା ? ତୋ ପରି ଛୁଚୁଙ୍କରଟା ଲାଗି ଏ ଖଣ୍ଡମଣ୍ଡଳ ହବ ବେଶ୍ୟାପଡ଼ା ?'

ତାପରେ କେତେବେଳେ ବନ୍ଧୁକ ଫୁଟିଲା, ଘୁଷୁରିଆ ମାଟି କାମୁଡ଼ି ପଡ଼ିଲା, ମୋର ଚେତା ନାହିଁ, ମୁଁ କିଛି ଜାଣେନାହିଁ ।

ଯେତେବେଳେ ଚେତା ଫେରିଲା, ଦେଖିଲି, ମୁଁ ହାଜତରେ ।

ଘୁଷୁରିଆ ବେଶୀ କାଳ ବଞ୍ଚିଥିଲେ ସଂସାର ନାଶ କରିଥାନ୍ତା । ଝିଅ ବୋହୂଙ୍କ ଇଜ୍ଜତ ମହତ ରହି ନ ଥାନ୍ତା ।

ଏଇ ହିଂସ୍ର ଜନ୍ତୁମାନେ ସମାଜରେ ବହୁତ ବିଭ୍ରାଟ ଘଟାଉଛନ୍ତି । ତାକୁ ମାରି ମୁଁ ସଂସାରର ଉପକାର କରିଚି ନା ନାହିଁ ? ସେଥିଲାଗି ମୋତେ ପୁରସ୍କାର ମିଳିବା କଥା । କାହିଁକି ମିଳିଲା ଶାସ୍ତି ?



## ଧର୍ଷଣ

ବିଘ୍ନରାଜଙ୍କ ଅର୍ଚ୍ଚନା ।

ମୋ ଉଦ୍ୟାନର ଧର୍ଷଣରେ ଅନୁଭବ କଲି—ମୁଁ ନିଜେ ହିଁ ଧର୍ଷିତ ହୋଇଛି ।

ଅଭିଯୋଗ କଲି ବିଘ୍ନରାଜଙ୍କ ଆଗରେ—ରାସ୍ତ ମିଳିଲା—ପ୍ରମାଣ ନାହିଁ ।

ସତରେ ସାକ୍ଷୀ ଛଡ଼ା ନିଜର ମୁଁ ଧର୍ଷିତ ହେଲି କାହିଁକି ? ନିଜକୁ ଭର୍ତ୍ସନା କଲି ।

ମୋ ବହୁରଙ୍ଗୀ ପ୍ରଦୀପମାନଙ୍କୁ ମୁଁ ଜଳାଇ ପାରିବି ନାହିଁ ଆପଣା ରୁଚିରେ ? କି ଅପରାଧରୁ ତା ହେଲେ ମୁଁ ନିର୍ଯାତିତ ? ମୋ ସୌନ୍ଦର୍ଯ ବିପର୍ଯସ୍ତ ? ମୋ ଆଦର୍ଶ ଭୂଲୁଣ୍ଠିତ ?

ପୁଣି ଥରେ ଧର୍ଷିତ ହେବା ଦୁର୍ଯୋଗରୁ ନିଜକୁ ରକ୍ଷା କରିବା ଲାଗି ମୋର ଯାହା କିଛି ଶ୍ରୀ ସାଧନା ସବୁ ନିବେଦନ କଲି ଚିରସୁନ୍ଦରଙ୍କ ଚରଣ ତଳେ ।



## ଲାଲ୍ ଗାର

ଦୁଇଟି ରାଜନୀତିକଦଳ; ଉଭୟର ଲକ୍ଷ୍ୟ—ଲୋକ କଲ୍ୟାଣ । ତୀବ୍ର ପ୍ରତିଯୋଗିତା ଦେଖିଲାଗି ।

ଲୋକଟିର ପିଠିରେ ବାଜିଚି ଛୁରୀ । ଗୋଟିଏ ରାଜନୀତିକ ଦଳ ଡାକ୍ତରଖାନାରେ ପହଞ୍ଚି ଡାକ୍ତରଙ୍କୁ ଅନୁରୋଧ କଲା—ଶୀଘ୍ର ଚିକିତ୍ସା କର ।

ଡାକ୍ତର ବ୍ୟାଣ୍ଡେଜ୍ ବାନ୍ଧିବା ବେଳେ ଆର ଦଳଟି ପହଞ୍ଚିଯାଇ ଗର୍ଜନ କଲା—ଚିକିତ୍ସା ବନ୍ଦ କର । ତାକୁ ଛୁଇଁଲେ ତୁମ ବେକ କାଟିଦେବୁ ।

ତାପରେ ଦୁ ଦଳର ପିଟାପିଟି । ମୁମୂର୍ଷୁର ରକ୍ତଧାର ସେତେବେଳେ ଲାଲ୍ ଗାରରେ କାଟିକାଟି ଗଲା, ଯାହା କିଛି ଲୋକକଲ୍ୟାଣ ହୋଇଥିଲା ।



## ରଖ, ନଇଲେ ମାର ଦିଅ

ଆଜି ଧୋବେଇ ଖଲାସ୍ ହେଲା, ସତଅଁଶ ବର୍ଷ ଜେଲ୍ ଦଣ୍ଡ ଭୋଗିଲା ପରେ । ତାକୁ ହସ ମାଡ଼ୁଚି ନା କାନ୍ଦ ? ସେ ବୁଝି ପାରିଲା ନାହିଁ ।

ତା ବିରୁଦ୍ଧରେ ହତ୍ୟା ଅଭିଯୋଗ; ପ୍ରକୃତ ହତ୍ୟାକାରୀକୁ ନ ପାଇ ଏଇ ନିରୀହକୁ ଘଉଡ଼ି ଅଣି ପୁଲିସ୍ ହାଜତରେ ଭର୍ତ୍ତି କରିଥିଲା, ଯେମିତି ତୁରନ୍ତ କର୍ମ-ତତ୍ପରତାର ଚମକ ଖେଳାଇ ଅନେକ ବେଳେ କରେ ।

ବିନା ବିଗ୍ଭରରେ ସେ ଜେଲ୍ ଭୋଗିଲା । ପୂର୍ବଜନ୍ମର କର୍ମଫଳ ବୋଲି ଭାବିବା ଛଡ଼ା ଏ ଶାସ୍ତି ଭୋଗର ସେ ଅନ୍ୟ କାରଣ ଦେଖିପାରୁ ନ ଥିଲା । ଜୀବନରେ ଏମିତି ବହୁତ କ୍ଷେତ୍ରରେ ଦେଖାଯାଏ—ପାଣ୍ଡିଙ୍କ ଉପରେ ପାଂଚଛଟା, ବେଙ୍ଗ ଉପରେ ବା କୋରଡ଼ା । ଦୈବ ଦୁର୍ବିପାକ, ଦଇ ଅଭିଯୋଗ ହୁଏ ।

ତାର ଦୁର୍ଭୋଗ ଶେଷ ହୋଇ ନ ଥାନ୍ତା, ଜଣେ ପର ଦୁଃଖ ବୁଝିପାରୁଥିବା ସାମ୍ବାଦିକ କର୍ତ୍ତାଙ୍କ କୁମ୍ଭକର୍ଣ୍ଣ ନିଦ୍ରା ଭାଙ୍ଗି ନ ଥିଲେ ।

ଏ ମଧ୍ୟରେ ପୃଥିବୀ ଓଲଟପାଲଟ ହୋଇଯାଇଛି । ଯୋଦ୍ଧମାନେ ତମ୍ବା-ମୁଣ୍ଡ ବାନ୍ଧି ଆସିଛନ୍ତି ଭାବି ବହୁତ ଜନଉଥିଲେ, ପାପପୁଣ୍ୟ ପ୍ରତି ଆଖି ବୁଜିଦେଇ, ସେମାନେ ଅକାଳେ ନିଃଶ୍ୱାସ ଛାଡ଼ିଛନ୍ତି । ଭଙ୍ଗା ଉପରେ ଜୁଆର ଧାଇଁଛି । ଖାଲ ହୋଇଚି ଢ଼ିପ, ବଙ୍କା ସିଧା । ବହୁତ କଛି ଅଦେଖା, ଅଜଣା । ଧୋବେଇକୁ ପୃଥିବୀ ଜାଲଜାଲୁଆ ଦିଶିଲା । କଣ ଭଲ, କଣ ମନ୍ଦ ବୁଝିବା କଷ୍ଟ ହଉଥିଲା ।

ଘରଣୀର ଦଖଲ ଛାଡ଼ିଚି ତିନି ପୁରୁଷ ହେଲା । ଖୋଜି ଖୋଜି ତାକୁ ଠାବ କଲେ ବି ସେ କଣ ଆଉ ତାର ହବ ? ଘରର ଜଅଂଶୀ ତା ହରେ ଭାଇସ୍ଥା ବାଇଗଣ ଲଗେଇଛନ୍ତି । ଧୋବେଇକୁ ଦୋ ଦୋ ହୋ ହେବା ଲୋକ ଗାଁରେ ଜଣେ ବି ଦେଖୁନାହିଁ । କୁକୁର ତଡ଼ିବାରୁ ଧୋବେଇ ପଳେଇ ଅସିଲା, ସରକାରଙ୍କୁ ଦରଖାସ୍ତ କଲା—ମଣିମା, ଜେଲ୍ ମୋର ଘର; ସେଠି ମୋର ଯେତେ ଚିହ୍ନାଜଣା, ବାହାରେ ଜଣେ ହେଲେ ନାହିଁ । ମୋତେ ସେଠି ରଖ, ନଇଲେ ମାରିଦିଅ ।

●

## କେତେ ସୁଧାର ଦିଶେ; କି ବିଷମ !

ଯାତ୍ରାରେ ପୁଲିସ୍ ବାହାରିଚି; ବାପ ମଞ୍ଚ ଉପରକୁ ଉଠିଯାଇ ଚିତ୍କାର କଲା—ରକ୍ଷା କର, ମୋ ପୁଅକୁ ରକ୍ଷା କର !

ଶ୍ରୋତା ତୋଫାନୀ ସ୍ୱରରେ ହସି ଉଠିଲେ—ମିଛ ପୁଲିସ୍, ଏ କଣ ରକ୍ଷା କରିପାରେ ? ପାଗଳ !

ଯାତ୍ରାଟା ଭଣ୍ଡୁର୍ କରିଦେଲା ।

ଦିଲେ ତାକୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଦୂରରେ କରି ଦେଲେ ।

ସେଥିକରିଦେଲେ ଯାତ୍ରାର ଆଡ଼ୁଆଳରେ ଚାଲିଥିଲା ମହାଯାତ୍ରାର ଏକ ଜଘନ୍ୟ ଲୀଳା । କରୁଣ ଚିତ୍କାର ଲୁଚି ଯାଉଥିଲା ଯାତ୍ରାର ମଙ୍ଗଳଗୀତ, ଢୋଲକ, ବିଗୁଲ୍ ଆଉ କ୍ଲାରିଓନେଟ୍‌ର ମୂର୍ଚ୍ଛନା ମଧ୍ୟରେ ।

ସେଇ ବୁଢ଼ାର ପୁଅକୁ ମାରି ପକାଉଥିଲେ ଚାରିଟା ଷଣ୍ଢ ଜୁଆନ୍, ହଠାତ୍ ହାବୁଡ଼େ ପଡ଼ିଲା ବୋଲି କି ପୁରୁଣା ପ୍ରତିଶୋଧରେ ।

ପୁଲିସ୍ ଜାଣିଲା—ଅପରାଧୀମାନେ ନାମ୍‌ଜାଦା, ମହାଦେବଙ୍କ ବୃଷଭ, ଶାସନ ବାହାରେ ଉଦା ଖାଇ ବୁଲନ୍ତି ।

ବାହାରେ ଧର୍ମ ଯୁଧିଷ୍ଠିରଙ୍କ ଶାସନ ଚାଲେ, ତଳେ ଦୁଃଶାସନର ରାଜୁତି ।

କେଡ଼େ ସୁଧାର ଦିଶେ, କି ବିଷମ ଏ ସଂସାର !



## ଶସ୍ତାରୁ ତିନି ଅବସ୍ଥା

ଷ୍ଟିଲ୍ ବାସନ, ସ୍କୁଟର, ରେଡ଼ିଓ, ଟେଲିଭିଜନ୍—ଆଉ କଣ ?

କେତେ କଣ ? ତାଲିକା ଗୋଟେ ମାଲିକା—ଭବିଷ୍ୟତ କହେ—ପ୍ରାପ୍ତିଯୋଗ ।

ଏକ ତୃତୀୟାଂଶ ଦାମ୍ ଦେଲେ ଚାରିମାସ ପରେ ଏସବୁ ଜିନିଷ ମିଳିବ ।

ମହାଜନ ମୃଦୁ ହସେ, ଦୁର୍ଜନ ପରି ତ ଦିଶେ ନାହିଁ—ନିଅ, ନିଅ ଆଖି ବୁଜି ।

ସତକୁ ସତ ଜିନିଷ ବି ମିଳିଗଲା—ପ୍ରଥମ କିସ୍ତି, ଦ୍ୱିତୀୟ କିସ୍ତି ବି । କି ଶସ୍ତା ! କେଡ଼େ ଭାଗ୍ୟ ! ତୃତୀୟ କିସ୍ତିକି ଜମିଲା ଭିଡ଼ ।

ଦୁର୍ଗାପୂଜା ବେଳ; ଷଷ୍ଠୀ—ବର୍ଷା । ତା ଭିତରେ ମହାଜନ ପାର୍, ହପ୍ତାଟିଏ ବାକି, ଲୋକେ ରଙ୍ଗୀନ୍ ସ୍ୱପ୍ନ ଦେଖୁଥିଲେ ବେଳେ । ମହାଜନ୍ ପାର୍, ପକେଟରେ କୋଡ଼ିଏ ଲକ୍ଷ ଟଙ୍କା । ଝଡ଼ ତାର ଅଟ୍ଟହାସ ହିଁ ବଖାଣୁ ଥିଲା । ସହରବାସୀ ଭାବେ—କିଛି କିଳସ ଲାଗି ଯାଇଛି, ଆସିବ ନିଶ୍ଚେ । କିନ୍ତୁ କାହିଁ ? ଆହା କାହିଁ ? କିଏ ଜାଣେ କାହିଁ ? ଯିଷା ଥିଲେ କଣ ହେବ, ଯାଷା ନ ଥିଲେ ଯେ ବୁଝିପାରେ ନାହିଁ ସେ 'ଶସ୍ତାର ତଳ ଅବସ୍ଥା' !

●

## ଫାଶି

ସୌଦାମିନୀ ଜଳିଲା ।

କହୁ

ବାପ ମା ଯୋଗକୁ ଯୌତୁକ ନ ଦେବାର ଶାସ୍ତି । ଯୌତୁକ ତ ବେଶୀ କିଛି ନୁହେଁ—ମାରୁତି ଗାଡ଼ି, ରଙ୍ଗୀନ୍ ଟେଲିଭିଜନ୍, ଫ୍ରିଜ୍; ଦାନକୁ ଦକ୍ଷିଣା ମାତ୍ର ଲକ୍ଷେ ! ଆଇ. ଏ. ଏସ୍. ପାତ୍ରକୁ ଏତିକ ଦାବୀ କଣ ଏମିତି ବଡ଼ କଥା ? ନ ଦେଇ ପାରିବ ତ ଜଲଘର ବା ବର ଖୋଜିବ କାହିଁକି ? ସେକ୍ ଠୋକ୍ ଜବାବ୍ ଦେବ କାହିଁକି ?

ସୌଦାମିନୀର ହାତଗୋଡ଼ ବନ୍ଧା; ଶାଶୁ କିରାସିନି ଢାଳିଲା, ସ୍ୱାମୀ ଦିଆସିଲି ମାରିଲା । ସୌଦାମିନୀ ଜଳିଲା ହୁତୁ ହୁତୁ ହୋଇ, ପେଟରେ ପିଲା ।

ସ୍ୱାମୀ ଆହୁରି କିରାସିନି ଢାଳିଲା—ତୁରନ୍ତ ଏ କଳଙ୍କ ପ୍ରତିମାଟିକୁ ପାଉଁଶ ମୁଠାଏ କରି ଫୁତ୍କାରରେ ଉଡ଼େଇ ଦେବା ପାଇଁ, ଶାଶୁ ବାଜା ବଜେଇଲା, ବିଳାପ ଚିତ୍କାରକୁ ଡୁବେଇ ଦେବା ପାଇଁ ।

ଧନତନ୍ତ୍ରର କଳୁଷିତ ପୃଥିବୀରେ ଏବେ ବି କେତୋଟି ବିଚାରଶୀଳ ମନ ଅଛି । ନଇଲେ ତ କଚେରୀର ବିଚାର ଟଙ୍କାରେ ବନ୍ଧା ହୋଇଯାନ୍ତା । ନ୍ୟାୟକୁ ବାଟ ମିଳନ୍ତା କାହିଁ ?

ଫାଶି ହୁକୁମ୍ ହେଲା ଧନ କାଙ୍ଗାଳୀ ମାଆକୁ, ଧନ ପାଗଳ ପୁଅକୁ ।

ସୌଦାମିନୀ ନାଚୁଛି ସ୍ୱର୍ଗର ବାଦଲରେ, ଝଡ଼ର ଏଇ ଘନ ତମିରରେ ଦେଖୁଚି ଅନେକ ହସ୍ତ ଖୁଣ୍ଟି ଏପରି ବନ୍ଧୁ ବେତାଳିଆ ସଂସାର !

●

## ଖୋରାକ ପୋଷାକ

କେହି ଚାହିଁ ନ ଥିଲେ; ସେ ଆସିଲା ସାତୋଟି ପରେ । ବାପ ରଗି ନାହିଁ; ଯେ ସାତୋଟି ସମ୍ଭାଳିଛି, ଆଉ ଗୋଟିକରେ ମାଆର କେତେ ବା ଅସୁବିଧା ? କେତେବେଳେ ଫଳ କି ବୃକ୍ଷକୁ ହୁଏ ଭାର ?

ଈଶ୍ୱର କୁଆଡ଼େ ପ୍ରତି ଜନ୍ମିତ ପ୍ରାଣୀ ଲାଗି ଦାନା ଖଞ୍ଜି ରଖନ୍ତି ।

କିନ୍ତୁ ତା ପାଇଁ କୋଉଠି କଣ କାହିଁ ? ମାଆର ଥନରେ କ୍ଷୀର ନାହିଁ; ବୋପାର ଗଣ୍ଠିରେ ଧନ ନାହିଁ ।

ଅପରେସନ୍ ଫୁଲପ୍ରୁଫ ଫେଲ୍ ମାରିଲା । ଏଥିଲାଗି ଡାକ୍ତର ଦାୟୀ, ଦାୟୀ ଏ ଅପଦାର୍ଥଙ୍କୁ ନିଯୁକ୍ତ କରିଥିବା ସରକାର ।

ବାପ ସରକାରଙ୍କ ପାଖେ ଖୋରାକ୍ ପୋଷାକ୍ ଦାବୀ କଲା, ଏକୋଇଶି ବର୍ଷର, ଏ ପିଲାର ମୁଣ୍ଡକୁ ହାତ ପାଇବା ପର୍ଯ୍ୟନ୍ତ; ଦୀର୍ଘ ଦୁଃଖଯନ୍ତ୍ରଣା ଲାଗି ଉପଯୁକ୍ତ କ୍ଷତିପୂରଣ ଦେବାକୁ ମଧ୍ୟ ତା ସହିତ ଦାବୀ ହୋଇଥିଲା ।

ହେଲେ ମାମଲାରେ ତ ମାଆ ମରେ, ଘରର ମକଦ୍ଦମା ପଶୁ ବୋଲି ଶଯ୍ୟକୁ ଅଭିଶାପ ଦିଆଯାଏ । ଏ ମାମଲା ଫଇସଲା ହେବାଯାକେ କଣ ସେ ପିଲା ବଞ୍ଚିଥିବ ?



## ଦି ମାଷ୍ଟରାଣୀ

କିଶୋରୀ, ଈଶ୍ୱରୀ ଦି ମାଷ୍ଟରାଣୀ; କିଶୋରୀ ବିବାହିତା; ବର ବାଛୁ ବାଛୁ ଈଶ୍ୱରୀର ଯୌବନ ଖସିଗଲା ।

ଦିନେ ଦି ମାଷ୍ଟରାଣୀ ସୁଖଦୁଃଖ ହେଉଁ ହେଉଁ କିଶୋରୀ କହିଲା—ତୁମର ଭଲ, ନିଶ୍ଚିନ୍ତ ଜୀବନ; ସଂସାର କଲମାନେ ଦରଚିନ୍ତା ମାଡ଼ିପଡ଼େ । ସ୍ୱାମୀ ଲାଗି ଚିନ୍ତା, ପିଲାପିଲିଙ୍କ ଲାଗି ଭାବନା, ନାନା ଦୁଃଖ, ନାନା ଅଶାନ୍ତି । ସଂସାରୀଣୀର ମନ ସଦା ଅସ୍ଥିର ।

ଈଶ୍ୱରୀ କହିଲା—ଭଲ ? ଆମର କଣ ଭଲ ? ସଂସାର କଲେ ଦୁଃଖ ଯେତିକି, ସୁଖ ବି ସେତିକି; ସ୍ୱାମୀ ସୁଖ, ସନ୍ତାନ ସୁଖ ଭୋଗ କରି ନ ପାରି କୁମାରୀ ପସ୍ତାଇ

ହୁଏ । ବେଳେ ବେଳେ ଲାଗେ—ଭଲ ନୁହେଁ ତ କଣ ? ଯାହା ଇଚ୍ଛା ଖାଇଲୁ, ଯୁଆଡ଼େ ଇଚ୍ଛା ମୋହିଲୁ । କେହି ଆକଟିବାକୁ ନାହିଁ । ସ୍ୱାଧୀନ ଜୀବନ; ରାଣୀ ପରି ଆମେ ରହୁ ।

କିନ୍ତୁ ମଲାବେଳେ ତୁମେ ରାଣୀପରି ମର, ତୁମ ଇଲାକାରେ ହାହାକାର ପଡ଼ିଯାଏ । ଅହ୍ୟରାଣୀ ହୋଇଗଲେ ତ ଧନ୍ୟ ଧନ୍ୟ ପଦ; ଶବ ଶୋଭାଯାତ୍ରା ବେଳର ଶୁଭଙ୍କର, କଉଡ଼ି ଲୋକେ ସାଇତି ରଖନ୍ତି ।

ଆମେ ? ଆମେ ରାସ୍ତାର କୁତା ପରି ମରୁ । ଆଖିରୁ ଝୋପାଟିଏ ଲୁହ ଗଡ଼େଇବାକୁ ପାଖରେ ଜଣେ ହେଲେ କେହି ନଥାନ୍ତି ।



## ଦନେଇ ଓକୀଲଙ୍କୁ କହ୍ନେଇ ଚାକର

ଓକିଲାତି ଗୋଟେ ଆର୍ଟ । ତାକୁଙ୍କ ସୁନାରୂପା ରଖନ୍ତି, ଧରାପଡ଼ିଲେ ଖଲାସ୍ କରିବା ଲାଗି ଲଢ଼ନ୍ତି ।

ବଡ଼ ଓକିଲ ବୋଲି ନାଁ—ଡାକ, କିନ୍ତୁ ଓକିଲାତି କରନ୍ତି କୁଚକ୍ର; ମାମଲତକାର, ଟାଉଟର ବୋଲି କେତେ ବଦ୍‌ନାମ୍ କରନ୍ତି । କିନ୍ତୁ ବୃଥା; ତାଙ୍କ ଅଗ ଗୋଡ଼ରେ କଣ୍ଟା ବାଜେନାହିଁ । ମକ୍କେଲର ଅସଲ ଲକ୍ଷ୍ୟ ହାସଲରେ ସୁଦକ୍ଷ ସେ; ଫଳରେ ତାଙ୍କ ଉପରେ ଅର୍ଥ ବୃଷ୍ଟି ହୁଏ ।

କିନ୍ତୁ ଯେତେ ଅର୍ଥଲାଭ, ସେତେ ଲୋଭ ବଢେ । ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ କିଏ ଅଧିକ କୃପଣ ଠିକଣା କରି ନ ପାରି ଲୋକେ ଛଟା ମେଲିଥାନ୍ତି—

କଣାକୁ କାଣୀ

ଭଲ ଭିଆଇଛୁ ଚକରପାଣି ।

ଚାକର କହ୍ନେଇ ଆଠଦିନ ଛୁଟି ନେଇ ଗାଁକୁ ଗଲା । ରହୁ ରହୁ ପନ୍ଦର ଦିନ ରହିଗଲା । ତାପରେ ଓକିଲ ନୋଟିସ୍—"ଚିନାବାଦାମ୍ କିଣି ଆଣିଦେବୁ ବୋଲି ପାଞ୍ଚଶ ଟଙ୍କା ନେଇ ଯାଇଛୁ । ଏ ନୋଟିସ୍ ପାଇ ବସିଲାଠୁ ଉଠି ଆସିବୁ, ନଇଲେ ୱାରେଣ୍ଟ୍ ବଳରେ ଧରାହୋଇ କଚେରୀରେ ହାଜର ହେବାକୁ ବାଧ୍ୟ ହେବୁ ।"

ତାପରେ କହ୍ନେଇର ବାପା ସନେଇ ଓଲଟା ନୋଟିସ୍ ଦେଲା— "ସାତୋଟି ପିଲାରୁ ମୋର ପାଞ୍ଚୋଟି ଝିଅ; ଓଳି ଓଳିରେ ଓଳିଏ ଚୁଲି ଜଳେ ।

ମୁଁ କି ମୋ ଚଉଦ ପୁରୁଷରେ କେବେ ଶହେଟଙ୍କିଆ ନୋଟ୍ ଦେଖିନାହାନ୍ତି । ଇଆଡ଼େ ମୋତେ ଚନାବାଦାମ୍ ହୁଏନାହିଁ । ମୋ ପୁଅ ଏଇଠି ମାଟି କାମୁଡ଼ି ମରିବ ପଛେ ତମ ପାଖକୁ ଆଉ ସୁପାରିଶ କରି ଯିବନାହିଁ । ବେଶୀ ଜୁଲମ୍ କଲେ ବଅଁଶଯାକ ତମ ଦୁଆରେ ଧାରଣା ଦେଇ ମରିବୁ ।"



## ହରିଜନ

ହରିଜନକୁ ଧର୍ମପୁଅ କରି ଦେଇଥିଲି, ଯମ ଛୁଇଁବ ନାହିଁ ବୋଲି, ଯେହେତୁ ବଡ଼ପୁଅ ଅକାଳେ ମରିଥିଲା ।

ଘରପୁଅ ଘରେ ରହିଲା, ସେହି ଆଳରେ ହରିଜନ କୋଟାରେ ସେ ସହଜରେ ଆଇ. ଏ. ଏସ୍. ହେଲା । ସେତେବେଳକୁ ବିବାହିତ, କ୍ଷତ୍ରିୟ ପରିଚୟରେ କେଉଁ ପାଲଟାସିଂହଙ୍କ ଲାବଣ୍ୟବତୀ କନ୍ୟା ସହିତ ।

ସ୍ୱାମୀର ଆଇ. ଏ. ଏସ୍. ପାହ୍ୟାରେ ଫୁଲ୍ ଉଠନ୍ତା କଣ, ସେ ହତଭାଗିନୀ ଛାଡ଼ି ଚାଲିଗଲା, ଏତିକି କହି—ମୁଁ ବିଭା ହୋଇଥିଲି ଜଣେ କ୍ଷତ୍ରିୟକୁ, ହରିଜନକୁ ନୁହେଁ ।

ବୁଦ୍ଧିହୀନା ଏତିକି ବୁଝିଲା ନାହିଁ ଯେ ପୃଥିବୀର ସମସ୍ତ ଜନ ହରିଜନ ।



## ଦର୍ପଣ

ହୋଟେଲର ଅଇଁଠା ଖଣ୍ଡ ଫିଙ୍ଗିଦେଲା ପରେ ଦୌଡ଼ିଗଲେ କେତୋଟି ଲଙ୍ଗଳା ପିଲା, କେତୁଟା ଲୋମଉପୁଡ଼ା କୁକୁର, ଦୂରେଇ ବସିଲେ କେତୁଟା ଡାମରା କୁଆ ଅବଶେଷ ଖୁଣ୍ଟିବାକୁ । ଆଉ ଦର୍ପରେ ମାଡ଼ି ଆସୁଥିଲେ ଦୁଇଟା ବୁଲା ଷଣ୍ଢ ଯଥେଚ୍ଛ ଗିଳି ଦେବାକୁ ।

ଆଉ ଟିକିଏ ଦୂରରେ ଦେଖିଲି, ଗୋଟାଏ ଲମ୍ବା ଧାଡ଼ି, ବାଡ଼ିଥର ଖୋଷେଇ ଚାଲିଛନ୍ତି କୋଡ଼ି, କେତେ ବା ବସିଛନ୍ତି ମଣିଷଠେଲା ଗାଡ଼ିରେ— ଯୁବତୀସବୁ, କୋଳରେ ପିଲା, ଉଚ୍ଚାକାଂକ୍ଷୀ ସମାଜର ନୂଆ ପରିବାରର ମୂର୍ତ୍ତିସବୁ । ଯେତେ ବୁଢ଼ା, ଛୁଡ଼ା, ଅନ୍ଧ, କଣା, ବାଙ୍ଗରଙ୍କ ସହିତ ଗୁନ୍ଥିଛନ୍ତି କେତୁଟା ପଣ୍ଡା

ଅଳସୁଆ, ଏଇ ସହଜ ଉପାୟରେ ଶ୍ରମିକ ଅପେକ୍ଷା ଅଧିକ ରୋଜଗାର କରୁଛନ୍ତି ବୋଲି ମନରେ ଗର୍ବ ।

ଏ ଛି ଦର୍ପଣରେ ଦେଖିଲି ଦେଶର ମୁହଁ, ସ୍ୱାଧୀନତାର ପ୍ରୟତ୍ନିଶ ବର୍ଷ ପରେ ।

## ଭଗବାନ୍‌ଙ୍କ ଦାନ ଅପାତ୍ରରେ ?

ଏ ମୋର ଘର, ସବୁ ରୁମ୍ ମୋଜାଇକ୍ କରାଚ; ବମ୍ବେ ଆର୍ଟିଷ୍ଟ୍ ବିଦେଶୀ ଫେସନରେ ସଜାଇଛି । ଏ ଲନ୍, ଏ ଗାର୍ଡ଼ନ୍, ଦେଶୀ ବିଦେଶୀ ଫୁଲଭରା । ଏଇ କଚ୍ଛ-ନ-ଥିଲାକୁ ଭଗବାନ୍ ଛପରଫାଡ଼ି ଦେଇଛନ୍ତି । ଧନ କେବୁଟାରେ ଧନଜନ ଗୋପଲକ୍ଷ୍ମୀ ବୋଲି ଯାହା କହନ୍ତି, ମୁଁ ସବୁ ପାଇଛି । ଭଗବାନ୍‌ଙ୍କର ଅସୀମ ଦୟା, ବଖାଣିଲେ ପୃଷ୍ଠିପଠ ମୋହ ।

ସତରେ ଶ୍ରୀ ମୋହଙ୍କୁ ଭଗବାନ୍‌ଙ୍କ ଦୟା ବିପୁଳ, ବିସ୍ତୃତ, ତାଙ୍କ ପ୍ରାଙ୍ଗଣରେ ଛୁଡାହୋଇ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲି । ପୃଥିବୀରେ ଏଇ ଦାନ ଯେଉଁ କେତେକ ଭାଗ୍ୟବନ୍ତ ପାଇଛନ୍ତି, ଅଧିକାଂଶ ତାକୁ ସାତଗଣ୍ଠି ପକାଇ ରଖିଛନ୍ତି, କୃପଣ, ନଇଲେ ଭୋଗର ପଙ୍କରେ ଆକଣ୍ଠ ନିମଗ୍ନ ।

ଦୟା ଯେ ଗୋଟାଏ ନଦୀ, ବୋହିଯିବା ତାର ଧର୍ମ—ସେ କଥା ଭୁଲି ଯାଇଛନ୍ତି ।

କହିଲି—ବନ୍ଧୁବର ମୋହ, କଥା ଅଛି—ଦେଇଥିଲେ ପାଇ, ସେହିପରି ପାଇଥିଲେ ମଧ୍ୟ ଦେଇ । ତାହେଲେ ଦେବା ଧନ ଭଗବାନ୍‌ଙ୍କ ଦୟା ରୂପରେ ଫେରିଆସେ । ଆପଣଙ୍କ ଜୀବନରେ ତାହା ହିଁ ଘଟିଛି । କେବେ ଦେଇଥିଲେ, ଏବେ ପାଇଛନ୍ତି ।

ସେ ଦୟା ଜମେଇ ରଖିବା ଲାଗି ନୁହେଁ । ହାତକୁ ହାତ ଯାଇ ସବାତଳ ପାହାଚରେ ପହଞ୍ଚିବା କଥା, ତା ନୋହିବା ଫଳରେ ଆଜି ଏତେ ଦାରିଦ୍ର୍ୟ, ଏତେ ଦୁର୍ଭିକ୍ଷ ଓ ଦୁଃଖ ।

ପୃଥିବୀରେ ଲକ୍ଷକେ ଜଣେ ମାତ୍ର ସେ ଦୟା ଲାଭ କରନ୍ତି । ଅଧିକାଂଶ ଦୀନ, ଦୁଃଖୀ । ସେମାନଙ୍କ ଭାର ଭଗବାନ ଆପଣଙ୍କ ହାତରେ ହିଁ ଦେଇଛନ୍ତି । ଆପଣ ସେମାନଙ୍କ କଥା ନ ବୁଝିଲେ ବୁଝିବ, ଭଗବାନ୍‌ଙ୍କ ଦୟା ଅପାତ୍ରରେ ହିଁ ହୋଇଛି । ଦେଶ କାଳ ପାତ୍ର ନ ଦେଖି ଦାନ ଦେଲେ ତାହା ଅକାର୍ଯ୍ୟରେ ଲାଗେ, ପାଣିଗାଡ଼ରେ ପଡ଼େ ।

# ରାତକେ ହାତଏ ଅଣିବାର ଯୋକା ବାଟ

ଭୁଇଁତଳ ଘରେ ଚୋଟିଚପି ମାରଚ, ଗୋଟାଏ ଦୁଇଟା ନୁହେ, ହଜାରେ ପିଲା; କଂସ ବି ଗୋପପୁରେ ଏତେ ମାରି ନ ଥିବ ।

କାହାର ମୁଣ୍ଡ ଛେଚନାହିଁ, ଗୁଡ଼ରେ ବା ବେକରେ ଛୁରି ମାରନାହିଁ । ହାତଗୋଡ଼ ଆଉ ମୁହଁ ବାନ୍ଧି ଚୋଟି ଚପି ଦେଇଚ । କେଁ ଶବ୍ଦଟିଏ ବି ହୁଏନାହିଁ ।

ଅକ୍ଷତ କଙ୍କାଳସବୁ ପାଶ୍ଚାତ୍ୟ ବିଜ୍ଞାନାଗାର ଲାଗି ଲୋଡ଼ା । ଏ ଜନବହୁଳ ଦେଶର କେତୋଟି କଶୋର କଶୋରୀ ଲୋପ ପାଇଗଲେ କ୍ଷତି କଣ ? ଶିଶୁରୋଗ ଅଧ୍ୟୟନ ଲାଗି ଶହୀଦ୍ ହେବା ଗୌରବର କଥା !

ମୁଁ ପାଇଲି ପ୍ରତି କଙ୍କାଳ ଲାଗି ପାଞ୍ଚହଜାର ଡଲାର୍; ଧନ ଅର୍ଜନବେଳେ ତଳକୁ ଉପରକୁ ଚାହିଁଲେ, ପାପପୁଣ୍ୟ ବିଚାର କଲେ କଣ ଚଲେ ?

ଆଖି ବୁଜିଦେଲେ ହିଁ ବ୍ୟବସାୟ ମାଡ଼ିଚାଲେ—ଔଷଧରେ ଉପଶମ ହେଲା କି ରୋଗ ବଢ଼ିଲା, ଖାଦ୍ୟ ଶକ୍ତି ଦେଲା, କି ହତ୍ୟା କଲା, କିଏ ଦେଖେ ? ରାତାରାତି ବଡ଼ଲୋକ ହେବାଲାଗି ଏହାଠାରୁ ସହଜତର ଉପାୟ ଆଉ କଣ ଅଛି ?

ଧନ ହିଁ ଇଜ୍ଜତ, ଧନ ହିଁ ଗୁରୁତ୍ୱ ଗୌରବ; ଏ ଯୁଗରେ ଧନଥିଲେ ଲୋକ ଅସାଧ୍ୟ ସାଧନ କରିପାରେ । ସ୍ୱର୍ଗକୁ ସିଢ଼ିଟାଏ ଲମ୍ବାଇବା ତା ପକ୍ଷରେ ଅସମ୍ଭବ ନୁହେଁ । ଅକାଳେ ନ ମରିଥିଲେ ରାବଣେଶ୍ୱର କରି ପାରିଥାନ୍ତା, ଲୋକେ ସେଥିରେ ଚଢ଼ି ସିଧା ସ୍ୱର୍ଗକୁ ଚାଲି ଯାଇଥାନ୍ତେ !

ଯେତକ ଚାହିଁଥିଲି, ତା ଅପେକ୍ଷା ଢେର୍ ବେଶୀ ପାଇଲି ।

କିନ୍ତୁ......

ଭୁଇଁତଳୁ ହଠାତ୍ ଉଠି ଦେଖେ ତ ମୋ ଘର ଖାଲି । ମୋ ସ୍ତ୍ରୀ, ପିଲାସବୁ ଗଲେ କୁଆଡ଼େ ? କହିପାରିବ ?

ଭୂତମୁଣ୍ଡ, ମୁହଁରେ ଜଙ୍ଗଲ, ଯାହାକୁ ଦେଖୁଚ, ପଚାରୁଚ—କହିପାରିବ—ମୋ ଲୋକଏ ଗଲେ କୁଆଡ଼େ ?

(ତୁ ଯେମିତି ପ୍ରେତପୁରକୁ ପଠାଇଚୁ, ସେମିତି ଅଉ କିଏ...... । କହିବ ? ନା-ନା)

ମୋ ଦୁଃଖକୁ ଅପେକ୍ଷା ନ କରି ଗୋଟାଏ ଉଦ୍ଭଟ ହୋତା ବରି ସେ ଚାଲିଗଲା; ଯେତେ ଯେମିତି ଅନେକ ଭୂତ ତାକୁ ଗୋଡ଼ାଇଚନ୍ତି ! ●

## ମୋ ଶଙ୍କା କଣ ମୋତେ ଶେଷ କରିଦେବ ?

ଶଙ୍କା ଖାଇଲାବେଳେ—କାଳେ କିଏ ବିଷ ମିଶାଇ ଦେଇଥିବ !

ଗାଡ଼ିରେ ଗଲାବେଳେ—କାଳେ ହଠାତ୍ ଆକ୍ସିଡେଣ୍ଟ୍ ହୋଇଯିବ ?

ଦେବଦର୍ଶନ କଲାବେଳେ—କାଳେ ଦେଉଳଟା ମୁଣ୍ଡ ଉପରେ ଅଜାଡ଼ି ହୋଇପଡ଼ିବ !

ବଗିଚାରେ ବୁଲିଲାବେଳେ—କାଳେ ସାପ ହାଣିଦେବ !

ହଠାତ୍ ଗୁଣ୍ଡା ଆକ୍ରମଣ କରିବ, ମୁଣ୍ଡରେ ଚଡ଼କ ପଡ଼ିବ, କିମ୍ବା ଅସାଧ୍ୟ କର୍କଟ କବଳରେ ପଡ଼ିଯିବ !

ଦୈବର ପ୍ରତିଶୋଧ ଆସିବ କିପରି, କେତେବେଳେ ?

ଗୋଟାଏ କୁହୁଡ଼ି ପରି ଶଙ୍କା ପୋଡ଼ି ଚାଲିଚି ଗୋଟିକି ଗୋଟି ମୋର ଆନନ୍ଦର ପଦ୍ମପାଖୁଡ଼ା ହଠାତ୍ ନିଜ ଛାଇକୁ ଦେଖି କାହିଁକି ମୁଁ ଡରି ଛାନିଆଁ ହୋଇଯାଏ ?

ନିଜ କଣ୍ଠସ୍ୱର ଶୁଣି କାହିଁକି ବା ଚମକିପଡ଼େ ? କୋକୁଆ ଭୟ ମୋର ଭିତରେ, ବାହାରେ, ସବୁଆଡ଼େ ।

ଏତେ ଦିନର ଦାନଧର୍ମ ଗୋଟାଏ ଦିନର ଅପକର୍ମକୁ ଧୋଇ ସଫା କରି ପାରୁନାହିଁ ?

ମୋ ଶଙ୍କା କଣ ମୋତେ ଶେଷ କରିଦେବ ?



## ଦୁର୍ଲଭା

'କଣ୍, ଶଶୁର ସେବା କରିବାକୁ ଯାଇଥିଲୁ ?'

ମାଆ ଦୁଃଶୀଳା ଚିଠି ଲେଖିଲା ।

'ସେ ରାଗିବେ । ଆଜିକାଲି ଚିଡ଼୍ ଚିଡ୍ ହୁଅନ୍ତି । ମୋ କଥା ତାଙ୍କୁ ବିଷ ପରି ଲାଗେ । କଣ୍ କରିବ ?' ଝିଅ ଦୁର୍ଲଭା ଉତ୍ତର ଦେଲା ।

ଶ୍ୱଶୁର ଶଯ୍ୟାଶାୟୀ, ସ୍ୱାମୀ ଟୁର୍‌ରେ । ରାଗରେ ତମ୍ ତମ୍ ହୋଇ ଦୁଃଶୀଳା ମଟରରେ ଝିଅକୁ ନେଇ ଚାଲି ଆସିଲା ।

ଏ ମଧ୍ୟରେ ତିନି ବର୍ଷ ବିତିଗଲା; ସ୍ୱାମୀ ଅରୁଣ ଶ୍ୱଶୁର ଘର ଆଡ଼କୁ ଦୃକ୍‌ପାତ କଲେନାହିଁ, ସ୍ତ୍ରୀର କୌଣସି ଖବର ବି ନେଲେନାହିଁ ।

ଭାଉଜ କଥାକେ କଥାକେ ଚିଡ଼୍ ଚିଡ଼୍; ଭାଇ ସବୁ ଦେଖନ୍ତି, ପାଟି ଫିଟାନ୍ତି ନାହିଁ ।

ଦୁର୍ଲଭା କୁଟା ଖଣ୍ଡିକ ବି ଖଣ୍ଡ କରେନାହିଁ; ନଭେଲ୍ ପଢ଼ିବ, ନଇଲେ ସିନେମା ଦେଖିବ; ମାଆ ଗୋଟେ ପଦଟା କଥାରେ ଝୁଣ୍ଟା ଦେଲାଣି ।

ଲୋକେ ଦେଖେଇ ଦେଖେଇ କହନ୍ତି—କାହା ସହିତ ଭାବ ଥିବ ନା, ନଇଲେ······

ଦୁର୍ଲଭା କାନରେ ହାତ ଦେଲା; ସ୍ୱାମୀ କଥା ତାର ମନେ ପଡ଼ିଲା; କଣ କରିବ ? ଦଉଡ଼ି ଦେଇ ମରିବ ନା, ଶହେ ଅକଲ୍ ସଲାମ୍ ଦେଇ ସ୍ୱାମୀର ଶରଣ ପଶିବ ?

ଲେଖିଲା—ପ୍ରିୟତମ,

'ତମ ପାଦ ତଳେ ଲକ୍ଷେ ଅପରାଧ କରିଚି । ଏବେ ମୋ ଲାଗି ଗୋଟିଏ ବାଟ ଖୋଲା, ତୁମ ପାଦ ତଳେ ଆଶ୍ରୟ ନେବି; ସେ ଆଶ୍ରା ନ ମିଳିଲେ ମରିବି । ଆଖି ଲୁହରେ ଏ କଥା ଲେଖୁଚି । ତୁମେ ଯାହା କରିବ ।'

ଅରୁଣ ତାର ଉତ୍ତରକେ ଲେଖିଲା—

'ପଥ ସୁଗମ ଅଛି । ଆଉ ମିଥିଲାକୁ ମନ କରିବ ବୋଲି ଯଦି ନିର୍ଭର ଜବାବ୍ ଦିଅ, ତେବେ ତୁମର କିଛି ଦୋଷ ନ ଧରି କ୍ଷମା କଲି, ଜାଣିବ ।'

'ଏ ଚିରଦୋଷୀକୁ ସ୍ତ୍ରୀର ମର୍ଯ୍ୟାଦା ଦିଅ । ବଳେ ପଶିଲେ ଭାଉଜ ନାକରେ ଲୁଗା ଦେଇ ହସିବ । ସେ ଲଜ୍ଜା ମରିବିରୁ ବଳେ ।'

ତାପରେ ଅରୁଣ ଲେଖିଲା—'ଏ ମୋର ପୁନର୍ବିବାହ, ଏକ ମର୍ଯ୍ୟାଦାମୟୀ ସହିତ, ଯେ ସୋହାଗ ଦେବ, ନେବ, ପ୍ରକୃତ ପ୍ରାଣସଙ୍ଗିନୀ ପ୍ରିୟା, ଯେ ସବୁ ଅଳି-ଅର୍ଦ୍ଦଳି, ଜଞ୍ଜାଳ ଝିନ୍‌ଝଟ୍ ମୁଣ୍ଡେଇ ପାରିବ, କାରଣ ଦୁଃଖ ଭିତରେ ହିଁ ସଂସାର-ଣୀର ସବୁ କିଛି ସୁଖ ।

ପ୍ରସ୍ତୁତ ରହିବ, ମୋର ପ୍ରାଣର ଦୁର୍ଲଭା । ଯାଉଛି ।'

●

## ଡାକୁ ଓ ମଣିଷ

ରାତିର ଶାନ୍ତ ସ୍ୱାଭାବିକ ନିଃଶ୍ୱାସ ଶବ୍ଦକୁ ସ୍ଥୂଳ ରୂପ ଦେଉଛି ଝିଙ୍କାରି ।

ଏତିକିବେଳେ କବାଟ ଭାଙ୍ଗି ପଶିଲେ ଡାକୁଦଳ । ଘର ମାଲିକଙ୍କୁ ଛୁରି ଦେଖାଇ କାବୁ କଲେ । ଲୁଟି ନେଲେ ସୁନା ରୂପା ଆଦି ଯାହା କିଛି ମୂଲ୍ୟବାନ୍ ।

ପାଟି ଶୁଣି ପଡ଼ୋଶୀ, ଗ୍ରାମବାସୀ ଠେଙ୍ଗା ବାଡ଼ି ଧରି ମିଶି ଆସିଲେ । ହାତବୋମାଟାଏ ଫୁଟାଇ ପଳାଇ ଗଲବେଳେ ଡାକୁଦଳ ମଝିରୁ ଧରାପଡ଼ିଲା ଜଣେ । ତାକୁ ମାଡ଼ି ବସିଲେ ସ୍ୱରଖଣ୍ଡରେ ମଜ୍‌ଭୁତ୍ ଜବାନ୍ ଦି ଜଣ ।

'ମୁଣ୍ଡଟାକୁ ଛେଚି ଦେବା ?'

'ଟାଙ୍ଗ ଦିଟା ଭାଙ୍ଗି ଟା କରିଦେବା ?'

'ଆଖି ଦିଟା ଫୁଟାଇ ଦେବା ?'

'ଯମ ପରି ଯେ ନିଷ୍ଠୁର, ତା ପ୍ରତି ଯେତେ ନିଷ୍ଠୁର ଆଚରଣ କଲେ ବି କିଛି ଦୋଷ ନାହିଁ—ବିଜ୍ଞ କିଏ ଉଚାରିଲା ଗମ୍ଭୀର ସ୍ୱରରେ ।'

ତାପରେ ସ୍ୱର ଉଠିଲା—ଆଖି ଫୁଟାଅ
ଆଖି ଦିଟା ଫୁଟାଇ ଦିଅ ତାର ।

ଡୋଳା ଉପରକୁ ଲୁହା କଣ୍ଟା ଉଞ୍ଚାଇଲା ବେଳେ ଡାକୁ ବିକଳ ସ୍ୱରରେ କାକୁତି କଲା—ମୋ ଆଖି ଯୋଡ଼ିକ ନିଅ ନାହିଁ ।

'ଆଖି ଥିଲେ କେତେ ଘର ପୋଡ଼ିବୁ, କେତେ ମଣିଷ ମାରିବୁ । କେତେ ଇଜ୍ଜତ ହରିବୁ······

ମୁଁ କହୁଁ ମାଇଲେ ·····।'

'ମତେ ବରଂ ମାରିଦିଅ ।'

'ତୁ ତ କେତେ ମାରିଚୁ; ଇଚ୍ଛା କଲେ ନିଜକୁ ମାରି ପାରିବୁ ।

ଆଖି ଥାଇ ଯେ ଅନ୍ଧ ପରି ଆଚରଣ କରେ, ତାର ଆଖି କି ଦରକାର ? ଜୀଇଁ ମଲାପରି ଲାଗୁଥିବ । ହତ୍ୟାଠାରୁ ଭୟଙ୍କରତର, ଯୁଗ ଯୁଗକୁ ଏ ଶାସ୍ତି ଏକ ଚେତାବନୀ ହେବ !'

'ମୁଁ ସିନା ଡାକୁ—ନିର୍ଦ୍ଦୟ, ନିଷ୍ଠୁର······ତୁମେ ତ ମଣିଷ······କରୁଣାର ସମୁଦ୍ର, ମୈତ୍ରୀ ଓ ମାଧୁର୍ଯ୍ୟର ଅବତାର·····'

ଯବାନ୍ ହାତରୁ ଲୁହା କଣ୍ଟାଟା ଖସିପଡ଼ିଲା ।

●

## ରଫୁ କରି ପାରିବ, ଗୁରୁ ?

ହନିଫ୍ ମିଆଁ, କାଶ୍ମୀର ମୁସଲମାନ୍, ରଫୁ ମାଷ୍ଟର; ଶାଲ, ଏଣ୍ଡି, ପାଟ, ସିଲ୍କ ଶାଢ଼ୀ—ଚିରି ଯେଡ଼େ ଅବାଗିଆ ହୋଇଥିଲେ ବି ରଫୁ କରି ମିଶାଇ ଦିଏ ।

ମୀରା ଦିନେ ହନିଫ୍ ବୁଢ଼ା ପାଖେ ଫୁସ୍ ଫୁସ୍ ସ୍ୱରରେ କାକୁତି କଲା—ଗୁରୁ, କେଡ଼େ ଭଲ ପାଉଥିଲେ, ଦଣ୍ଡେ ନ ଦେଖିଲେ ବାଇଆ; ଏବେ କଥାକେ କଥାକେ ଚିଡ଼୍ ଚିଡ଼୍ ହୁଅନ୍ତି, ମାର୍ ନ ମାର୍ । ଆମ ଦିହିଁଙ୍କ ମନକୁ ଚିରି କିଏ ଦିଖଣ୍ଡ କରିଦେଲା, କିଛି ଜାଣେ ନାହିଁ, ଟିକେ ରଫୁ କରିଦେଇ ପାରିବ, ଗୁରୁ ?

ବୋବା ପରି ଦୁହେଁ ଦୁହିଁଙ୍କୁ ଚାହିଁ ରହିଲେ ।



## କିଏ ଆଉ ମୋର ବଦ୍‌ଖିଆଲକୁ ସମ୍ଭାଳିବ ?

ଏଣେ ନର୍ସ ଡ୍ୟୁଟି, ତେଣେ ଘରକରଣା ଖଟଣି; ଝିଅ ପରେ ଝିଅ—ଦୁଶ୍ଚିନ୍ତା; ସ୍ୱାମୀ ଅବୁଝା; ତାର ଝୁଙ୍କ୍—ସ୍ତ୍ରୀ ରାନ୍ଧିବ, ବାଢ଼ି ଦେଲେ ଖାଇବ । ଏଥିରେ ତାର ରୋମାଞ୍ଚ, ଆନନ୍ଦ । ହାର୍ଣ୍ଣିଆ, ପେଟକୁ ଚପି ଚପି ସ୍ତ୍ରୀ କାର୍ଯ୍ୟ କରେ, ଉଠୁଥିବା କୋହକୁ ଚାପି, ମୁହଁରେ ହସ ଫୁଟାଇ ।

ଆନାସ୍ଥେସିଆ ଡୋଜ୍ ବେଶୀ ହେଲା କି କଣ, ଅପରେସନ୍ ପରେ ସ୍ତ୍ରୀର ଆଉ ଚେତା ଫେରିଲା ନାହିଁ ।

ତିନୋଟି ଝିଅ ଆଉ ଗୋଟା ସଂସାର ମୁଣ୍ଡରେ ଲଦି ହୋଇ ପଡ଼ୁଥିବା ବେଳେ ସ୍ୱାମୀ ବିକଳ ହୋଇ କହୁଥିଲା—କିଏ ମୋର ବଦ୍‌ଖିଆଲକୁ ସମ୍ଭାଳିବ ......କିଏ......



## ଯେତେ ଟଙ୍କା ସେତେ ସୁଖ ?

ଏଠି କଣ ଏକା ? ସାରା ପୃଥିବୀରେ ସେଇ ଗୋଟାଏ ଗୀତ; ପାଗଳ ପରି ଲୋକେ ଟଙ୍କା ପଛରେ ଧାଇଁଛନ୍ତି; ବିଶ୍ୱାସ—ଟଙ୍କା ଦେଇ ସବୁ ସୁଖ କିଣି ହେବ, ଯେଡ଼େ ଚରିତ୍ରହୀନ ମଣିଷ ହେଲେ ବି ଦେବତା ପରି ଷୋଡ଼ଶୋପଚାରରେ ପୂଜା ପାଇ ହେବ । ଅହୋରାତ୍ର ଭୋଗବିଳାସରେ କିଞ୍ଚିତ୍ ମାତ୍ର ତ୍ୟାଗ କରି ଦାନବୀର ବୋଲାଇ ହେବ ।

ଯାହାର ବହୁତ ଅଛି, ସେ ଆହୁରି ବହୁତ ଲୋଡ଼େ, କେତେ ବହୁତ କେହି କହି ନ ପାରେ । କିନ୍ତୁ ସେଥିଲାଗି କେତେ ତଳକୁ ଖସିବାକୁ ପଡ଼େ, କେତେ କୁ-ଆଶ୍ଳେଷ, ଜାଲିଆତି କରିବାକୁ ହୁଏ, ତାହା କିଏ କାହାକୁ କହେ ?

ସତରେ ଧନ ଯଦି ସବୁ ସୁଖର ହେତୁ, ଓଭରସିଅର୍ ମହାନ୍ତିଙ୍କର ଏ କଣ ହେଲା ?

ଅନେକ ଜମି, ଅନେକ ଜମା, ଅନେକ କୋଠାବାଡ଼ି, ସହର ଆଉ ମଫସଲରେ ।

ଜିପ୍, କାର୍ ଆଉ ମାଲବୁହା ଟ୍ରକ୍ ।

ଏ ତ ଧନ ! ଜନ ? ଛ ଝିଅ !

ଖର୍ଚ୍ଚର ଦୁଆର ସାହାସାହାଣ ମେଲା । ଦେବାଳିଆ କରିବେ ନା କଣ ?

ବୁଢ଼ା କୋଳକୁ ପୁଅ—'ଆହା ମୋ ନନ୍ଦ କୋଳେ ଗୋବିନ୍ଦ !' ତାପରେ ପୁଣି ପୁଅ—ବାଃ ।

ପୁଅ ଯୋଗା—ସବୁ ନେଇ ଆଣି ଥୋଇବ, ଧନ ବଢ଼ାଇବ ।

ଆରେ—ଆରେ ଏ କଣ ? ସେ ହେଲା ବାଇଆ ! ସାନଟା ମୂକ ! କପାଳ ଆଉ କେମିତି ଫାଟେ ?

ଦିନେ ମାଷ୍ଟ୍ରଙ୍କଠୁ ମାଡ ଖାଇ ନ ଥିଲା । ସେ ଗୋଟେ ବେତ ଧରି ନାଚୁ ଦେଇଯାଉଛି; କାନ୍ଦିବ ନା ମୂକ ହୋଇଯିବ ?

କେତେ ତ ପାପଧନ ଗଦାଉଛନ୍ତି, କାହାର କିଛି ହଉନାହିଁ; ଖାଲି ମୋରି କପାଳକୁ !

ନା ମୁଁ କରୁଚି ପ୍ରାୟଶ୍ଚିତ୍ତ ସବୁ ଯଜମାନଙ୍କ ପୁରୋହିତ ହୋଇ ?



## କ୍ଷୁଧ

ଜମିଜମାହୀନ ଭାଗଚାଷୀ ଜଣେ । ଗୋଡ଼ ଭାଙ୍ଗି ଛିଡ଼ା ହେଲା—ଏ ମହାଜନ, ସେ ସାହୁକାର, ରାସ୍ତା କାନ୍‌ଟ୍ରାକ୍ଟି, ଦାଦନ ଶ୍ରମିକ ଯୋଗାଉଥିବା ଠିକାଦାର, ହୁ ହୁ ହୋଇ ବଢ଼ିଯାଉଥିବା କେତେ ବାବୁଙ୍କ ଦୁଆରେ । 'ଦୁର୍ ଦୁରେ' ମାର୍ ମାର୍ କଲେ । "ଝିଅ କଣ ମୋର ଅବିବାହିତା ରହିବ ? କାହିଁକି ତାହେଲେ ଭଗବାନ୍ ଦେଲେ ଏ ରତ୍ନଟିକ ଏଡ଼େ ନଥିଲା ଘରେ ?" ମଧୁ ଜେନା ଭାଙ୍ଗି ବସିଲା ।

ମଧୁ ମିଶ୍ର ଇଞ୍ଜିନିଅର; ପାଞ୍ଚ ହଜାର ଟଙ୍କା ଧାର୍ ଗୃହାନ୍ତ, କପର ଏ ସମ୍ବାଦ ପ୍ରଘଟ ହେଲା କି "କାଲ ଠାରୁ କାଲ ମାଥା କାଟିଲା ?" ଧାର୍ ଦେବାକୁ କ୍ୟୁ ଲଗିଗଲା ତାଙ୍କ ଦୁଆରେ, ଓଭରସିଅର୍, କାନ୍ଟ୍ରାକ୍ଟର, ଠିକାଦାର ଆଉ କେତେ କଏଙ୍କ ମଧ୍ୟରେ । ସମଦର୍ଶୀ ମଧୁ ମିଶ୍ରେ ଭାବି ବସିଲେ—କାହାଠୁ ନେବେ, କାହାକୁ ଛାଡ଼ିବେ ।



## ରୂପର ଜାଲରେ ଯେ କଲକାଙ୍କୁ ଧରେ...

କାହିଁ କି ଦେଖିଲା ରୂପସୀ ଜଣେ, ଡାହାଣ ଆଖିକି ଝଲସାଇ ଦିଏ ତାର ସୁଟବଣ ଆଉ ରୂପର ଚନ୍ଦ୍ରହଦଥା । ଅନ୍ଧାରଥା, ନିର୍ଜନ ଗଳିରେ ଜଣେ ସୁବେଶିତ ଯୁବକର ହାତକୁ ହଠାତ୍ ଧରିପକାଇ ଚୁମ୍ବନ ଭଙ୍ଗୀରେ ମୁହଁକୁ ଗାଲ ପାଖକୁ ନେଇ କାନରେ ଫୁସ୍‌ଫୁସ୍ କହିଲା—ହଜାରେ ଟଙ୍କା ଦିଅ, ନଇଲେ ମୋ ଇଜ୍ଜତ ନେଲ ବୋଲି ପାଟି କରିବି—ଯଦି ବଦ୍‌ନାମକୁ ଭୟ ଥାଏ, ଶୀଘ୍ର—ଶୀଘ୍ର ।

ଯୁବକ ଗ୍ଲାନିଆଁ ହୋଇ ନଯାଇ କହିଲା—ଯାହା କଲେ ସଂସାରରେ ବଦ୍‌ନାମ୍ ହୁଏ, ମୁଁ ସବୁ କରି ସାରିଛି । ବଦ୍‌ନାମକୁ ଆଉ ମୋର ଭୟ ନାହିଁ । ଯେଉଁ ଯୁବତୀ ଯୁବକ ଧର୍ଷଣ କରେ, ରୂପର ରୂପେଲି ବୁଢ଼ିଆଣୀ ଜାଲରେ କଲକାମାନଙ୍କୁ ଧରେ, ନିଃସହା, ଦୁର୍ବଳା ବୋଲି ଆଳରେ, ସେମାନଙ୍କ ମୁଣ୍ଡରେ ସବୁ ପାପ ନଦି ଦିଏ, ଭେଣ୍ଡାକୁ ମେଣ୍ଢା କରେ, ସେଇ ଜ୍ଞାନଦେଇଙ୍କୁ ଧରିବା ଲାଗି ଏବେ ନିଯୁକ୍ତ, ପୁଲିସ୍‌ର ଏକାନ୍ତ ବିଶ୍ୱସ୍ତ ମୁଁ ।

ଚାଲ୍ ଥାନାକୁ ।



## ଭଜୁଥିବ ଅଲ୍ଲା ଅଲ୍ଲା

ଆଜି କ୍ୟୁ, କାଲି କ୍ୟୁ, ପ'ରି ଦିନ କ୍ୟୁରେ ବି ଫେଲ୍ ମାଇଲା ।

ସରି ପାଚିଗଲା ଉସ୍‌ମାନ୍ ଖାଁ—ଯାଲା କି ଝକ୍‌ମାର୍ଲ ଏ ସିନେମା ଦେଖା !

କଳାବେପାରୀଙ୍କ ଗୋଟା ଗୋଟା ଟିକେଟ୍ ବିକ ହାରାମ୍‌ଜାଦା ଆମ ମୁହଁକୁ ଟିକିଏ ବି ଚାହିଁଲା ନାହିଁ । ଉସ୍‌ମାନର ଆଖି ଲାଲ୍ ହୋଇ ଉଠିଲା ।

ସ୍ପେସାଲ୍ ସିଟ୍‌ରେ ବସି ସିନେମା ଦେଖୁ ଦେଖୁ ମଦ ନିଶାରେ ଢୁଳାଉ-ଥିବ ମାଲିକ, ଷୋର୍ କା ବଚ୍ଚା । ଉସ୍‌ମାନର ଆଖି ଅଙ୍ଗୁର ଲାଲ୍ ହୋଇ ଉଠିଲା । ଲୋକେ ଚେନାଚୁର୍ ଖୋଇବାଉଥିବେ, ନବାବ୍ ପର ଆଉ୍ଡାରେ ସ୍ପାଙ୍କେ ସିଆଡ଼େ ଅନାଉ ଥିବେ । ଇର୍ଷାରେ ଜଳି ଉଠିଲା ଉସ୍‌ମାନ୍—ସାଲା ମକ୍କା ନିକାଲି ଦଉଚ, ଏକା ଅରେ ଆଲ୍ଲା ଆଲ୍ଲା ଭଜୁଥିବ ।

ଯେମିତି କସ୍‌କା ସାଦ, ଏ ସିନେମା ହାଉସ୍‌ରେ ସାଲା କ ଖେସ୍‌ନା ! ସବୁ ଏକା ଅରେ ଧୂଆଁ କରି ଉଡ଼ାଇ ଦଉଚ !

ଏ କଥା କହୁଁ ନ କହୁଁ ତା ହାତବୋମା ଫୁଟିଲା 'ଢୁ' ।

ଉସ୍‌ମାନ୍‌ର ଗଣ୍ଡିମୁଣ୍ଡ, ହାତଗୋଡ଼ ଏଠିସେଠି ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ।



## ସ୍ତ୍ରୀ—ସ୍ତ୍ରୀ—ସ୍ତ୍ରୀ; ପ୍ରିୟା ?

ହମାଦ୍‌ବାବୁ ଆଜି ମରୁଛନ୍ତି । ପାଖରେ ପାଣି ଟୋପାଏ ଦେବାକୁ କେହିନାହିଁ ।

ଜୀବନରେ ବହୁ ସ୍ତ୍ରୀ ବିବାହ କରିଛନ୍ତି, କେବଳ ଆସ୍ୱାଦର ବୈଚିତ୍ର୍ୟ ପାଇଁ ।

ବାପା ଝିଅ ଦେଇଛନ୍ତି, କନ୍ୟା ଦାୟରୁ ମୁକ୍ତ ହେବା ଲାଗି; 'ଦେଲି ନାଗ୍ଣ ହେଲି ପାରି' ହୋଇ ମଧ୍ୟ ଦୂରେଇ ରହିଛନ୍ତି ।

ଜମିବାଡ଼ି କିଛି କିଛି ନେଇ ବିବାହିତାମାନେ ଯେଝା ଦୁଃଖଧନ୍ଦାରେ ଲାଗିଛନ୍ତି, ଲଗାମ୍‌ଛଡ଼ା ଜୀବନ । ନବନବ ଆସ୍ୱାଦ ଚାଖିବାରେ ତୃଷ୍ଣା ଏବେ ତୃପ୍ତ ହୋଇଥିଲା କି ନାହିଁ, ହମାଦ୍‌ଙ୍କୁ ଜଣା; କିନ୍ତୁ ବାର୍ଦ୍ଧକ୍ୟର ଅସାମର୍ଥ୍ୟ ତାଙ୍କୁ ଏ ଦିଗରୁ ନିବୃତ୍ତ କଲା ।

ବିବାହ ନିଶାରେ ସବୁ ସମ୍ପତ୍ତି ବରବାଦ୍ କରିଥିଲେ ସେ । ସାଧାରଣ ଜମିମାଲିକର ଗୋଟାଏ ରାଜ ଅନ୍ତଃପୁର ! ହତା ଭିତରେ ହାଟବଜାରର କୋଳାହଳ । କିନ୍ତୁ ମାରାତ୍ମକ ନିର୍ଜନ ପରିବେଶ ମଧ୍ୟରେ ତାଙ୍କ ଶ୍ୱାସ ବନ୍ଦହୋଇ ଆସୁଥିଲା । ପାଦରେ ଟିକିଏ କଅଁଳ ହାତ ବୁଲାଇବାକୁ, କି ଶେଷ ଢୋକ ମହାର୍ଘ ତୋରାଣି ଟୋପେ ଦେବାକୁ ପାଖରେ କେହିନାହିଁ ।

ତାଙ୍କର ଏକ୍-କୋଡ଼ିଏ-ପଚିଶ-ଅଣୀ ସ୍ତ୍ରୀ, କିନ୍ତୁ ଜଣେହେଲେ ପ୍ରିୟା ନଥିଲା । ସମସ୍ତଙ୍କୁ ପ୍ରିୟା କରିବା ଚେଷ୍ଟାରେ ସେ ଜଣଙ୍କର ବି ପ୍ରିୟ ହୋଇପାରି ନ ଥିଲେ ।

ତୋଫାନ୍ନ ଶେଷ ନିଃଶ୍ୱାସ ଛାଡ଼ିଗଲା, ଦରଭଙ୍ଗା ଖୁଡ଼ିଆ ଖଟୁଲିକୁ ଉଠାଇ ସଜାଇ, ଏକାନ୍ତ ଏକୁଟିଆ, କାହାଁ-ଅଜଣା, କେହି—ନ-ଥିବା ଘରରେ ।



## ଆଉ ସମ୍ଭାଳି ପାରୁ ନାହିଁ

ଚମକି ଉଠୁଥାଏ ମଣିନାଗ ପାହାଡ଼ର ପଥ, ଗୁହାକୁ ଗୁହା ପବନରେ । ତିନି ଜଣରୁ ଜଣକୁ ବନ୍ଧନରୁ ମୁକୁଳାଇ ହନ୍ତା ଦୁଇ ଗୋଡ଼କୁ ଧରି ବୁଲାଇ ବୁଲାଇ ପିଟିଦେଲା—ଏକ୍, ଦୁଇ, ତିନଥର । ଦକ୍ଷିଣ ଗଛରେ ବନ୍ଧାହୋଇ ଲୁହବର୍ଷା ଆଖିରେ ଦେଖୁଥାନ୍ତି ବଡ ଭାଇର ଦଶା । ତାଙ୍କ ଆଖିରୁ ନିଆଁ ଝୁଲ ଝଡ଼ିଲାପରି ଦିଶୁଥାଏ । ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଚାହିଁଥାନ୍ତି ।

ବଡ଼ ପରେ ମଝିଆଁ ର ପାଳି, ସବା ଶେଷରେ ସାନର । ଏ ବଳି ପାଇଲେ କି ନାହିଁ, ସେ ଜାଣନ୍ତି । ସ୍ୱଚ୍ଛାସତ୍ତ୍ୱ ଏ ରକ୍ତ ପଠାହେଲା କଲିକତା କାଳୀଙ୍କୁ । ବାଙ୍ଗୁଡ ରକ୍ତର ସ୍ୱାଦ ପାଇଲେ କି ନାହିଁ, ସେ ଜାଣନ୍ତି ।

ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଚାହିଁଥାନ୍ତି—ଧର୍ମ ନାମରେ କି ଅଧର୍ମ କରେ ଏଇ ନୃଶଂସ ଦ୍ୱିପଦ, ଦେବତା ମୁଣ୍ଡରେ ଲଦିଦିଏ ନିଜର ସବୁ ପାପ ନଦଦିଏ ।

ଯେ ସାତ ସମୁଦ୍ରକୁ ଚଳୁ କରିଦିଏ, ତା ଶୋଷର ଶେଷ କାହିଁ ? ତା ବିକଟ କ୍ଷୁଧାକୁ ଏ କ୍ଷୁଦ୍ର ପୃଥିବୀ ଶାନ୍ତ କରି ପାରିବ କି କାହିଁ ?

ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଦେଖୁଥାନ୍ତି—ସ୍ୱାର୍ଥ ସିଦ୍ଧି ଲାଗି ମଣିଷ କି ଅକର୍ମ ନ କରେ ! କେତେ ତଳକୁ ବା ନଯାଏ !

ମୁଁ ତାର କି ବିପଦ ଦୂର କରିପାରିବି ? ନିଜଲାଗି ପ୍ରତିଦିନ ସେ ଯେତେ ବିପଦ ସୃଷ୍ଟି କରେ, ତାହାର ଯେ ଅନ୍ତ ନାହିଁ ।

ସେ ନିଜେ ହିଁ ନିଜର ବଳୀୟାର ଶତ୍ରୁ । ମୋ ମୁଣ୍ଡରେ ତା ପାପର ଭାର, ଏ ଚୁଆ, ଚନ୍ଦନ, ଫୁଲହାର ଓ ଭୋଗ ରାଗରୁ ସ୍ୱାର୍ଥର ଯେଉଁ ଉତ୍କଟ ଗନ୍ଧ ବାହାରୁଛି, ତାକୁ ମୁଁ ଆଉ ସମ୍ଭାଳି ପାରୁନାହିଁ ।'



## ଅନ୍ଢୁଣୀ

ଭଗବାନ୍ କାହିଁକି ଏ ଅନ୍ଢୁଣୀକି ଜନ୍ମଦେଲେ ଏଡ଼େ ଗରିବ ଘରେ !

ଦୁଃଖିନୀ ଯୁବତୀ ଭିକାରୁଣୀଠାରୁ ରାସ୍ତାଧାର କୁଡ଼ିଆରେ ରାତିଅଧରେ ସୁଖର ଶୁଳ୍କ ଆଦାୟ କଲେ, ଯୋଉମାନେ ବୋଲାନ୍ତି ସଂସାରରେ ସୁଖୀ !

ରାତି ଅଧରେ ରାସ୍ତାଧାରରେ ଜାତ କନ୍ୟାଟିଏ କଳଙ୍କକୁ ଘୋଷଣା କଲା । ଘୋର ଚିତ୍କାରରେ ।

ଯୋଉଠୁ ଏସେନ୍ସ ବାସନା ଛୁଟୁଥିଲା ସୁଲଗଲାବେଳେ, ସେଠୁ ବଦ୍‌ନାମ୍‌ର ଉତ୍କଟ ଗନ୍ଧ ବାହାରିଲା ।

ତାହା ଦୂର କରିଦେବା ଲାଗି ରାତି ଅଧରେ ଏ ଦୁଇଟି ଜୀବନ ଲିଭାଇ ଦିଆହେଲା ।



## କାରଣ ସେ ନିଜେ ବୁଝି ନ ଥିଲେ

ଯେତିକି ଥିଲା, ବେଶ୍ ଚଳିଆସୁ ସନ୍ତୋଷରେ, ଶାନ୍ତିରେ ।

ଏ ଯୁଗ ଅସନ୍ତୋଷର; ଯେତେ ପାଇଲେ ବି ଶାନ୍ତି ନାହିଁ । ଲୋକେ ହୁ ହୁ ହୋଇ ବଢ଼ିଯାନ୍ତି, ବଢ଼ିପରି ମାଡ଼ିଯାନ୍ତି ।

କଣ ଟାଏ ହେବ ! କୁଆ ବାହାରୁଥିବା ନଈ କଣ ବାଟ ଅବାଟ ମାନେ ?

ପଇସା ସୁଅ ମୁହଁରେ ଆସିଲା ।

ସୁଅ ମୁହଁରେ ବୁଲିଲା, ବନ୍ଧୁ ବାନ୍ଧବ ମେଳରେ ନିଶାପାଣିରେ ।

ଉପୁରି ଆୟ ବଦଳରେ ଜଡ଼ାତେଲ ମେଣ୍ଟାବାଲ ।

ବିକିଣି ସରିଲା । ମଜ୍‌ଲିସ୍‌ର ଦୋସ୍ତସବୁ ଆଡ଼େଇଗଲେ । କେବଳ ବନ୍ଧୁ ହୋଇ ରହିଲା ନିଶା, ଦେବାଳିଆ ହେଲା ପରେ ବି ।

'ବାପ୍‌ସେ ବେଟା ଜ୍ୟାଦା !' ବେଟା ଯେତେବେଳେ ରାସ୍ତାରେ ପଡ଼ିଲା, ବାପା ଘରକୁ ଉଠାଇ ନେଇ ନିଶା ଛଡ଼ାଇଲା ପରେ ନୀତିବାକ୍ୟରେ କେତେ ବୁଝାଇଲେ । କିନ୍ତୁ ସବୁ ପାଣି ଫାଟିଲା । କାରଣ ସେ ନିଜେ ବୁଝି ନଥିଲେ ।



## କଅଁ—ରଡ଼—ଚୂଲୀ ପରେ ?

'କଣ ?'

'କ୍ରିଅ'

'କଅଁ !'

'ଏଥର ?'

'କ୍ରିଅ'

'ରଡ଼ !'

'ଏଥର କଣ ?'

'କ୍ରିଅ'

'ଚୂଲୀ !'

ଚତୁର୍ଥ ଥର ମାଆ ଦୁଃଖ ପାଇଲା, ପିଲାଟିଏ ବ ହେଲା । ପ୍ରଶ୍ନ ନଥିଲେ ବ ବଡ଼ ପାଟିରେ ଉତ୍ତର ଦଆଯାଇ ଥିଲା—

ପୁଅ—ପୁଅ—ପୁଅଟିଏ......

ସେ ପୁରକୁ ଯିବା ଆଗରୁ ଏ ଉତ୍ତର ମାଆ ଶୁଣିଥିଲା କ ନାହିଁ, କଏ ଜାଣେ ?



## କେମିତି ? ଆଜ୍ଞେ କାହିଁକି ?

ଖଣ୍ଡା ପାଗଳ ଡାକ୍ତର, ପାଗଳଙ୍କୁ ଦେଖି ଦେଖି ପାଗଳ । କେତେବେଳେ ବାନ୍ତି ପରି ମୁହଁର । ମାସେ ଦୁଇ ମାସରେ ଥରେ ସକ୍ ନଏ । ବାଣୀ ଅଧ୍ୟାପିକା, ବୟସରେ କନିଷ୍ଠା, କଲେଜକୁ ଗଲାବେଳେ ବାଟରେ ଭେଟେ—

'ଖଣ୍ଡା ଅପା ନମସ୍କାର ।'

'ଆରବ'

'ଖଣ୍ଡା ଅପା ନମସ୍କାର ।'

'ନୀରବ ।'

'ନାଣା ଅପା ନମସ୍କାର ।'

'ନୀରବ ।'

ଏମିତି ତିନଥର ଘଟିଲା ପରେ ବାଣୀ ଭାବିଲା—ପାଟଲୀ କୋଉ ଭାବ ରାଜ୍ୟରେ ବୁଲୁଥିବ, ନମସ୍କାରଟା ନଷ୍ଟ କରିବ କାହିଁକି ?

ଦେଖି ନ ଦେଖିଲାପରି ଏଥର ବାଣୀ ଆଗେଇ ଚାଲିଲା; ପଛରୁ ହଠାତ୍ ବିସ୍ଫୋରଣ—ବାଣୀ···ଆଲୋ ବାଣୀ···ତୁ କେମିତି···ଆଲୋ କାହିଁକି ?



## କାହାକୁ ଏ କଥା କହିବ ? କିପରି ?

'ମୋ ଘର ଭାଙ୍ଗିଯିବ
ପିଲାଛୁଆ ଭାସିଯିବେ
ସ୍ତ୍ରୀ ଶେଷ ଅବସ୍ଥାରେ
ତା ଜୀବନ ରକ୍ଷା କର,
ତୁମର ଅନେକ ଧର୍ମ ହେବ ମା' ।
'ରାତି ପ୍ରାୟ ଦଶଟା, ଗୋଳମାଳ କରନାହିଁ
କ୍ଳାନ୍ତ ମୁଁ, ସାରା ଦିନ ପରିଶ୍ରମରେ;
ସକାଳେ ଯାଇ ଦେଖି ଆସିବି ।'

'ମୋ ଘର ଉଚ୍ଛନ୍ନ ହୋଇଯିବ
କଥା ସରିଯିବ ।
ତୁମ ଋଣ ଯଦି ଏ ଜନ୍ମରେ ଶୁଝି ନ ପାରିବି,
ଆର ଜନ୍ମରେ ଲେଉଟିଆ ପଟାଳି ହୋଇ ଶୁଝିବି ।
ରାତି ଯେତେ ହେଲେ ବି ତୁମର କି ଭୟ ଅଛି ମା ?'

× × × ×

ନିର୍ଜନ ଜୋଛନା, ଘନ ଅନ୍ଧାର
ପୂଅ ମୁଖା ପିନ୍ଧି ଯେଉଁମାନେ ଆସିଥିଲେ,
ମୁହୂର୍ତ୍ତିକେ ସେମାନଙ୍କ ଗତିବିଧି ବଦଳିଗଲା !
ଲୁଣ୍ଠନ, ଧର୍ଷଣ !
ଚେତା ହେଲା ବେଳକୁ ଡାକ୍ତରଣୀ ଦେଖିଲା—
ଆକାଶରେ ସିନ୍ଦୂର ଫାଟିଚି
ନା ଏ ତାର ନିଜ ରକ୍ତ ?
'ଧର୍ମ କୋଉଠି ? ମଣିଷ କୋଉଠି !
କାହାକୁ ଏ କଥା କହିବ ? କିପରି ?'



## ପ୍ରକୃତିରେ ହାରିଗଲା

ଆଇନ୍‌ର ଅନେକ ସୂତ୍ର, ଅନେକ ଓଲଟ ପାଲଟ ବ୍ୟାଖ୍ୟା, ଉପର ତଳେ ଅନେକ ବ୍ୟାଖ୍ୟାକାରୀ, ଚଲାକି-ଚତୁର, ଜଡ଼ା ଚଢ଼େଇର ପର ଗଣିଦେବା, ଛେନାରୁ ସ୍ନେପା ଛଡ଼ାଇବା ଲୋକ, ଯୋଉମାନେ ଆଇନ୍‌କୁ ବାଟ କାଟି ଯାନ୍ତି, ଧର୍ମକୁ ଆଖି ମିଟିକା ମାରି, କଳାକୁ ଧଳା କରିବାର ଇନ୍ଦ୍ରଜାଲ ବିଦ୍ୟାରେ ପାରଙ୍ଗମ ।

ଗୋଟାଏ କିଛି ଖିଅ ବାହାର କରି ମନ୍ଦରଧର ଓକିଲ ଖଲାସ୍ କରେ ଘରପୋଡ଼ିଆକୁ, ଚୋର ବଜାରୀକୁ, ହତ୍ୟା ଆଉ ହରଣଚାଲ୍‌କାରୀକୁ ମଣିଷମାରୁ ଆଉ ପିଲାଚୋରକୁ ।

ଖାଦ୍ୟରେ ବିଷ ମିଶାଏ ଯେ, ଧର୍ଷଣ ଲୁଣ୍ଠନ କରେ ଯେ, ଏମିତିକି ଧମନୀରୁ ରକ୍ତ, ଆଖିରୁ କଜ୍ଜଳ କାଢ଼ି ନିଏ ଯେ, ତାଙ୍କୁ କିଛି ନା କିଛି ପାଠ ନା ଶାଠ ବାହାର କରି ଖଲାସ୍ କରିଦିଏ ।

ସବୁଠି ଜିତାପଟ, ସବୁଆଡ଼ୁ ଅର୍ଥବୃଷ୍ଟି, ଅର୍ଥସବୁ ତୁଳସୀ ପତ୍ର ପକାଇ ରଖେ, ଭବିଷ୍ୟତ ବଂଶଧରଙ୍କ ପାଇଁ । ରକ୍ତ ଫୁଲାଇ ବାଟ ଚାଲେ ଇନ୍ଦ୍ରଚନ୍ଦ୍ର ନ ମାନି ।

ତା ଆକାଶଛୁଆଁ କୋଠା ଉପରେ ଦିନେ ହାଓ୍ୱା ଖାଇଲା ବେଳେ ଭୟଙ୍କର ରୂପରେ, ହଠାତ୍ ଦିନେ ପହଞ୍ଚିଗଲା ଅକାଳରେ, ଅବେଳରେ ଏ କିଏ ?

'ଜୁଲମ୍', 'ଅନଧିକାର ଚର୍ଚ୍ଚା'—ବୋଲି ପ୍ରତିବାଦ କରିବା ଆଗରୁ ହୃଦ୍‌ରୋଗର ତୀବ୍ର ଆକ୍ରମଣରେ ଦେହର ଶିରା ଟାଣି ହେଲା । 'ଜାମିନ୍‌ରେ ଛାଡ଼', 'ମହଲତ ଦିଅ', 'ଖଲାସ୍ କର'—କିଛି ହେଲେ କହିବାକୁ ଜିଭ ନେଉଟିଲା ନାହିଁ । ଆଇନରେ ସବୁ ଧାରା ପାସୋର ଗଲା, ଜବରଦସ୍ତି ଆଗରେ ମୁଣ୍ଡ ନୁଆଁଇଲା, ଯାହା ଜୀବନରେ କେବେ କରିନାହିଁ ।

ଶେଷ ଶିଶୁଟିଏ ପରି ବଡ଼ ଅସହାୟ ଭାବରେ ଶୋଇ ପଡ଼ିଲା ସେ ମହାନ୍ ଜୀବନ ବିଜୟୀ ।

ଧନର ପାହାଡ଼ ଉପରେ ଚୂଡ଼ା ହୋଇଥିଲା ଯୋଉ ମରୁଆଲା ଉତ୍ତରାଧିକାରୀ—ଏକ ସ୍ମୃତି ସଭାରେ ଘୁଟୁଉଁ ଘୁଟୁଉଁ କହିଲେ—ଜାତି ତାଙ୍କର ସ୍ମୃତି ରକ୍ଷା କରିବା ଉଚିତ ।

ତାର ଈଷତ୍ ପ୍ରତିବାଦ କରି ଜଣେ ଜାତିପ୍ରେମୀ କହିଲେ—ସେ ଜାତି ଲାଗି କଣ କରିଛନ୍ତି ? ତାଙ୍କୁ ଯଦି କିଏ ସ୍ମରଣ କରିବାର ଥାଏ, ସେ ତାଙ୍କର ପୁଅ, ଯେ ବିନା ପ୍ରୟାସରେ ଲକ୍ଷ ଲକ୍ଷ ଟଙ୍କାର ମାଲିକ ହୋଇ ବସିଛନ୍ତି ।

ପୁଅ ପିତାଙ୍କର ସ୍ମୃତି ରକ୍ଷାକରିବେ ବୋଲି ପ୍ରତିଶ୍ରୁତି ଦେଲେ; କିନ୍ତୁ ତାର ହେଜ ବା ହୋସ୍ ହେଲା ନାହିଁ, ଯାହା ମାତାଲର ସହଜରେ ହୁଏନାହିଁ । ସେଦିନ ଲୋକେ ବୁଝିଲେ—ମନ୍ଦର ମୃତ୍ୟୁ ପାଖରେ ପ୍ରକୃତରେ ହାରିଗଲା ।

